# ଯେ ଦେଶ ଯାଇ, ସେ ଫଳ ଖାଇ

ଭ୍ରମଣକାହାଣୀ

ଲେଖକ:

**ବସନ୍ତ ଦାସ**

ପ୍ରକାଶକ :



କଲ୍ୟାଣୀ ନଗର, କଟକ-୧୩

ପ୍ରଚ୍ଛଦ : ମନସ୍ୱିନୀ ମହାନ୍ତି

ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍

କଲ୍ୟାଣୀନଗର, କଟକ-୧୩

ମୂଲ୍ୟ : ଟ. ୨୨୫/-

ପ୍ରଥମ ସଂସ୍କରଣ :

ଦୋଳପୂର୍ଣ୍ଣିମା, ୨୦୦୯

# JE DESHA JAI SE PHALA KHAI

a travelogue

Written by :

**Basanta Das**

Publisher :




Kalyani Nagar, Katak-13

Cover : Manaswini Mohanty

Printed at **Techno Arts Offset**
Kalyani Nagar, Cuttack-13

Price : **Rs. 225/-**

First Edition :
**Dolapurnima, 2009**

# ଉତ୍ସର୍ଗ



ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ

ମୋର ଅଗ୍ରଜ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ, ଜର୍ମାନୀରେ ଅବସ୍ଥାପିତ ସ୍ୱାଭିମାନୀ ଇଞ୍ଜିନିଅର୍ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କ ହସ୍ତରେ 'ଯେ ଦେଶ ଯାଇ, ସେ ଫଳ ଖାଇ'କୁ ଶ୍ରଦ୍ଧା ଓ ସମ୍ମାନର ସହିତ ଅର୍ପଣ କରୁଛି ।

– ଦାମୋ

# ମୁଖବନ୍ଧ



ଲଳିତ ମାନସିଂହ
ପୂର୍ବତନ ବୈଦେଶିକ ସଚିବ
ଭାରତ ସରକାର

ଓଡ଼ିଶାର ଅନ୍ୟତମ ବରିଷ୍ଠ ସାମ୍ବାଦିକ ଓ ଖ୍ୟାତନାମା ଲେଖକ ଶ୍ରୀ ବସନ୍ତ ଦାସ ତାଙ୍କ ବିଦେଶ ଭ୍ରମଣ ଅନୁଭୂତିକୁ 'ଯେ ଦେଶ ଯାଇ ସେ ଫଳ ଖାଇ' ପୁସ୍ତକରେ ଲିପିବଦ୍ଧ କରିଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ। ବିଶ୍ୱର ବିଭିନ୍ନ ପ୍ରାନ୍ତରେ ଯାହାସବୁ ଘଟୁଛି, ସେ ସମ୍ପର୍କରେ ଓଡ଼ିଆ ପାଠକପାଠିକାମାନଙ୍କୁ ପ୍ରତ୍ୟକ୍ଷ ଧାରଣା ଦେବାରେ ଏହା ଏକ ପ୍ରଶଂସନୀୟ ପ୍ରୟାସ। ମୋର ସ୍ୱର୍ଗୀୟ ପିତା ଡକ୍ଟର ମାୟାଧର ମାନସିଂହଙ୍କ ଦ୍ୱାରା ବିଗତ ଶତାବ୍ଦୀର ମଧ୍ୟଭାଗରେ ଲିଖିତ ବୋଧହୁଏ ପ୍ରଥମ ଭ୍ରମଣକାହାଣୀ ପୁସ୍ତକ 'ପଶ୍ଚିମ ପଥିକ'ରେ ପାଶ୍ଚାତ୍ୟ ଦେଶ, ବିଶେଷକରି ବ୍ରିଟେନ୍‌ର ଜନଜୀବନ ଓ ସମାଜ ସମ୍ପର୍କରେ ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନ ପରିବେଷିତ ହୋଇଥିଲା। ଶ୍ରୀ ବସନ୍ତ ଦାସ, ୟୁରୋପ ମହାଦେଶ, ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଅନ୍ୟାନ୍ୟ ପ୍ରଶାନ୍ତମହାସାଗରୀୟ ରାଷ୍ଟ୍ର ସମ୍ପର୍କରେ ତାଙ୍କ ପୁସ୍ତକରେ ସଫଳତାର ସହିତ ସବିଶେଷ ତଥ୍ୟ ପ୍ରଦାନ କରି ଆମର ଜ୍ଞାନକୁ ଅଧିକ ବିକଶିତ କରିଛନ୍ତି।

ଶ୍ରୀ ଦାସ ହେଉଛନ୍ତି ପ୍ରଥମ ଓଡ଼ିଆ ସାମ୍ବାଦିକ, ଯିଏ କି ଅବିଭକ୍ତ ସୋଭିଏତ୍ ଋଷ, ଡି.ପି.ଆର୍. କୋରିଆଠାରୁ ଆରମ୍ଭ କରି ନେଦରଲାଣ୍ଡ୍, ଉଭୟ ପଶ୍ଚିମ ଓ ପୂର୍ବ ଜର୍ମାନୀ, ସୁଇଜରଲାଣ୍ଡ୍, ଫ୍ରାନ୍ସ, ଇଂଲଣ୍ଡ୍, ବେଲ୍‌ଜିଅମ୍, ଚେକ୍ ରିପବ୍ଲିକ୍, ଅଷ୍ଟ୍ରିଆ, ପୋଲାଣ୍ଡ୍ ଏବଂ ବିଭବଶାଳୀ ଯୁକ୍ତରାଷ୍ଟ୍ର ଆମେରିକାର ଅଧିକାଂଶ ରାଜ୍ୟ ବୁଲିଛନ୍ତି। ଏହି ଭ୍ରମଣ ସମୟ ଭିତରେ ସେ ପ୍ୟାରିସ୍‌ରେ ଅନୁଷ୍ଠିତ ଜାତିସଙ୍ଘ କାର୍ଯ୍ୟାଳୟରେ ଏକ ଆନ୍ତର୍ଜାତୀୟ ସେମିନାର୍‌ରେ ଯୋଗ ଦେବା ସହିତ କାନାଡ଼ାର ଟରଣ୍ଟୋ ସହରରେ ଅନୁଷ୍ଠିତ ଆମେରିକାସ୍ଥ ଓଡ଼ିଆ ସୋସାଇଟି (ଓଶା)ର ୩୯ତମ ଅଧିବେଶନର ଆଲୋଚନାଚକ୍ରରେ ଅଂଶଗ୍ରହଣ କରିଛନ୍ତି। ଏହି ଭ୍ରମଣକାଳରେ ଶ୍ରୀ ଦାସ ବିଦେଶମାଟିରେ ଓଡ଼ିଆ ସଂସ୍କୃତିର ପ୍ରବହମାନ ଧାରାକୁ ଅନୁଧ୍ୟାନ କରିଛନ୍ତି। ବିଦେଶରେ ବସବାସ କରୁଥିବା ପ୍ରବାସୀ ଓଡ଼ିଆମାନଙ୍କର ଜୀବନଶୈଳୀକୁ ଅତି ନିକଟରୁ ଦେଖିଛନ୍ତି ଓ ସେମାନଙ୍କ ମଧ୍ୟରେ ଥିବା ଓଡ଼ିଆପ୍ରୀତିକୁ ଗଭୀରଭାବରେ ଅନୁଭବ କରିପାରିଛନ୍ତି। ତାଙ୍କର ସେଇ ଅନୁଭୂତି ଓ ଅନୁଭବକୁ ଶ୍ରୀ ଦାସ, 'ଯେ ଦେଶ ଯାଇ, ସେ ଫଳ ଖାଇ'ରେ ଅତି ପ୍ରାଞ୍ଜଳ ଭାବରେ ପ୍ରକାଶ କରିଛନ୍ତି। ଏହି ପୁସ୍ତକର ଲେଖା ଯେଭଳି ମନଛୁଆଁ ହୋଇଛି, ସେଥିରେ ସ୍ଥାନ ପାଇଥିବା ରଙ୍ଗିନ୍ ଫଟୋଗୁଡ଼ିକ ସେଭଳି ଆକର୍ଷଣୀୟ ହୋଇପାରିଛି।

ଓଡ଼ିଶାର ସମ୍ବାଦିକତା ଓ ସାହିତ୍ୟ କ୍ଷେତ୍ରରେ ଶ୍ରୀ ବସନ୍ତ ଦାସ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି। ଜଣେ କର୍ତ୍ତବ୍ୟନିଷ୍ଠ ଓ ନିର୍ଭିକ ସାମ୍ବାଦିକ ଭାବରେ ଗତ ଚାରିଦଶନ୍ଧିର ଅନୁଭୂତିକୁ ପାଥେୟ କରି ସେ ରଚନା କରିଥିବା 'ଓଡ଼ିଶା ରାଜନୀତିର ଗୋପନ କଥା' ଓ ଇଂରାଜୀଗ୍ରନ୍ଥ 'ଫୁଟ୍‌ପ୍ରିଣ୍ଟସ୍ ଅଫ୍ ଇଭେଣ୍ଟ୍‌ଫୁଲ୍ ଡେଜ୍-ଓଡ଼ିଶା, ୧୮୦୩-୨୦୦୩' ପାଠକପାଠିକାମାନଙ୍କ ଦ୍ୱାରା ବିଶେଷଭାବରେ ଆଦୃତ ହୋଇଛି।

'ଯେ ଦେଶ ଯାଇ, ସେ ଫଳ ଖାଇ' କେବଳ ଏକ ଭ୍ରମଣକାହାଣୀ ନୁହେଁ, ଏହା ଏକ ଶିକ୍ଷଣୀୟ ପୁସ୍ତକ ଭାବରେ ସମାଜର ସବୁବର୍ଗ ଓ ସବୁଶ୍ରେଣୀର ଲୋକଙ୍କର ଜ୍ଞାନବର୍ଦ୍ଧନରେ ନିଶ୍ଚିତ ଭାବରେ ସହାୟକ ହେବ, ଏହା ନିଃସନ୍ଦେହ।

ଏନ୍-୩୮, ପଞ୍ଚଶୀଳ ପାର୍କ
ନୂଆଦିଲ୍ଲୀ-୧୧୦୦୧୭

ଲଳିତ ମାନସିଂହ
୩/୨/୨୦୦୬

# ସାମାନ୍ୟ କଥନ

ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ (ଆଇ.ଏଫ୍.ଡବ୍ଲୁ.ଜେ.)ର ଯେଉଁ ଚବିଶିଜଣ ପ୍ରତିନିଧି ୧୯୮୫ ମସିହାରେ ଆଠଟି ରାଷ୍ଟ୍ର ଭ୍ରମଣରେ ଯାଇଥିଲେ, ସେମାନଙ୍କ ମଧ୍ୟରେ ଓଡ଼ିଶାରୁ ମୁଁ ଏକମାତ୍ର ପ୍ରତିନିଧି ଥିଲି। ପୂର୍ବରୁ ବିଦେଶଯାତ୍ରାର ଅନୁଭୂତି କିମ୍ବା ଅଭିଜ୍ଞତା ନଥିଲା। ସେଥିପାଇଁ ପ୍ରାଥମିକ ଅବସ୍ଥାରେ ପ୍ରସ୍ତୁତି ପାଇଁ କିଛିଟା ଅସୁବିଧା ଦେଖାଦେଇଥିଲା। ସେଥରର ବିଦେଶଗସ୍ତ ସମୟରେ ଡି.ପି.ଆର. କୋରିଆ, ସୋଭିଏଟ୍ ଋଷ, ନେଦରଲାଣ୍ଡ୍, ଜର୍ମାନୀ, ସୁଇଜରଲାଣ୍ଡ୍, ଫ୍ରାନ୍ସ, ଇଂଲଣ୍ଡ୍ ଓ ବେଲ୍‌ଜିଅମ୍ ଆଦି ରାଷ୍ଟ୍ରର ଅନ୍ୟୂନ ୧୬ଟି ପ୍ରମୁଖ ସହର ଭ୍ରମଣ ସମୟରେ ବହୁ ରୋମାଞ୍ଚକର ଅନୁଭୂତି ହୋଇଥିଲା। ଉତ୍ତରକୋରିଆର ରାଜଧାନୀ ପୋଙ୍ଗ୍‌ୟାଙ୍ଗ୍‌ରେ ସୁନ୍ଦରୀ ଯୁବତୀ ଗାଇଡ୍‌ମାନଙ୍କ ହାତରେ ମୁଦି ପିନ୍ଧାଇଲାବେଳେ ସେମାନଙ୍କ ପ୍ରତିକ୍ରିୟା, ମସ୍କୋର ନେତୃମଣ୍ଡଳୀ ସହିତ ବାଂକ୍ୱେଟ୍‌ରେ ଯୋଗଦାନର ଅନୁଭୂତି, ଆମ୍‌ଷ୍ଟରଡାମ୍‌ରେ ନାଇଟ୍ କ୍ଲବ୍ ଓ ନକଲି ହୀରା କାରଖାନା ପରିଦର୍ଶନ, ଫ୍ରାଙ୍କ୍‌ଫର୍ଟରେ ମାର୍କେଟିଂ, ଜେନେଭାରେ ଜାତିସଂଘ ଦପ୍ତରରେ ବୈଠକ, ପ୍ୟାରିସ୍ ଆର୍ଟ ଗ୍ୟାଲେରୀରେ 'ମୋନାଲିସା' ଫଟୋ ଓ 'ଇଭ୍‌ନିଂ ଇନ୍ ପ୍ୟାରିସ୍', ବ୍ରିଟିଶ୍ ପାର୍ଲାମେଣ୍ଟ, ଲଣ୍ଡନ୍ ଟାୱାର୍‌ରେ କୋହିନୂର ହୀରା ଏବଂ ବେଲ୍‌ଜିଅମ୍‌ର ସ୍ୱଚ୍ଛକାଚର ଦୃଶ୍ୟ ଭୁଲିବାର ନୁହେଁ।

ପ୍ରାୟ ଦୁଇମାସର ଭ୍ରମଣ ପରେ ଘରକୁ ଫେରିଆସି ତେଲଲୁଣର ସଂସାରରେ ପୁଣିଥରେ ପଶିଗଲା ପରେ ବିଦେଶରାଷ୍ଟ୍ରର ସେସବୁ ଅନୁଭୂତି କ୍ରମେ ମନରୁ ପାସୋରିଯିବାକୁ ଲାଗିଲା ଏବଂ ସେଥିସହିତ ବିଦେଶଗସ୍ତ ସମୟର ଟିପାଖାତାର ବିଷୟବସ୍ତୁ କ୍ରମେ ଇତିହାସ ପାଲଟିଗଲା। କର୍ମମୟ ଜୀବନଜଞ୍ଜାଳ ମଧ୍ୟରେ ମୁଁ ସେସବୁକୁ ଭୁଲିଗଲି। ଜୀବନର ପରିଣତ ବୟସରେ ଆଉଥରେ ଯେ ବିଦେଶ ଯିବାର ସୁଯୋଗ ଆସିବ, ସେକଥା କେବେ ବି ମୁଁ ଭାବିନଥିଲି। କିନ୍ତୁ ୨୦୦୭

ମସିହାରେ ଆଉଥରେ ସେ ସୁଯୋଗ ଜୁଟିଲା। ପୁଅ ଚନ୍ଦନ ଓ ବୋହୂ ସାଲୋନୀର ଅନୁରୋଧ କ୍ରମେ ମୁଁ ଓ ମୋର ଧର୍ମପତ୍ନୀ ଏକମାସ ପାଇଁ ବିଦେଶ ରାଷ୍ଟ୍ର ଭ୍ରମଣରେ ଯାଇଥିଲୁ।

୧୯୮୪ରୁ ୨୦୦୭ ମସିହା; ବାଇଶି ବର୍ଷର ବ୍ୟବଧାନ। ଏଇ ଦୀର୍ଘ ସମୟ ମଧ୍ୟରେ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଘଟିଯାଇଥିବା ଘଟଣାବଳୀକୁ ଅନୁଧ୍ୟାନ କଲେ ରୋମାଞ୍ଚ ଜାତ ହୁଏ। ଇତିମଧ୍ୟରେ ବିଶ୍ୱର ଅନ୍ୟତମ ବୃହତ୍ ଶକ୍ତି ଭାବରେ ପରିଚିତ ଥିବା ସୋଭିଏଟ୍ ଋଷ ଖଣ୍ଡବିଖଣ୍ଡିତ ହୋଇଯିବା ଓ ଅନ୍ୟପକ୍ଷରେ ଯୁକ୍ତରାଷ୍ଟ୍ର ଆମେରିକାର ଏକଚାଟିଆ କାରବାର ବୃଦ୍ଧି ବିଶ୍ୱର ଭାରସାମ୍ୟକୁ ଦୋହଲାଇ ଦେଇଛି। ଦୁଇ ଜର୍ମାନୀବାସୀଙ୍କ ମଧ୍ୟରେ କୃତ୍ରିମ ଅନ୍ତରାୟ ସୃଷ୍ଟି କରୁଥିବା 'ବର୍ଲିନ୍‌ୱାଲ୍'ର ପତନ ପରେ ଏବେ ଦୁଇଦେଶ ଏକ ହୋଇଛି ଏବଂ ପୂର୍ବଭଳି ବର୍ଲିନ୍, ଜର୍ମାନ ରାଷ୍ଟ୍ରର ରାଜଧାନୀ ହେବାର ପୂର୍ବ ଗୌରବ ଫେରିପାଇଛି। ଚେକୋସ୍ଲୋଭାକିଆ ରାଷ୍ଟ୍ର ଦୁଇଭାଗରେ ବିଭକ୍ତ ହୋଇ 'ଚେକ୍ ସାଧାରଣତନ୍ତ୍ର' ଓ 'ସ୍ଲୋଭାକିଆ'ରେ ପରିଣତ ହୋଇଛି।

ଦ୍ୱିତୀୟ ପର୍ଯ୍ୟାୟ ବିଦେଶଗସ୍ତ ସମୟରେ ଅଷ୍ଟ୍ରିଆର ରାଜଧାନୀ ଭିଏନା, ଚେକ୍ ସାଧାଣତନ୍ତ୍ରର ରାଜଧାନୀ ପ୍ରାଗ୍, ଅଷ୍ଟ୍ରୋଭା ସମେତ ଜର୍ମାନ ରାଷ୍ଟ୍ରର ରାଜଧାନୀ ବର୍ଲିନ୍, ଶିଳ୍ପନଗରୀ ଡୁସେଲ୍‌ଡର୍ଫ ଓ ଡୁଇସ୍‌ବର୍ଗ ଇତ୍ୟାଦି ସହର ବୁଲି ଦେଖିବାର ସୁଯୋଗ ମିଳିଥିଲା।

ପୂର୍ବଭଳି ଏଥର ମଧ୍ୟ ୟୁରୋପ ମହାଦେଶର ଏହିସବୁ ସହର ବୁଲିଲାବେଳେ ସେସବୁର ଅନୁଭୂତିକୁ ଏକାଠିକରି ଏକ ପୁସ୍ତକ ରଚନା କରିବାର ପରିକଳ୍ପନା ମୋର ନଥିଲା। କେବଳ ମନର ଉତ୍କଣ୍ଠା ପୂରଣ ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନର ବିଶେଷତ୍ୱ ସମ୍ପର୍କରେ କେତେକ କଥା ଟିପାଖାତାରେ ଟିପିଦେଇଥିଲି। ପରବର୍ତ୍ତୀ ସମୟରେ ଯେତେବେଳେ ଭ୍ରମଣ ଅନୁଭୂତିକୁ ପ୍ରକାଶ କରିବାର ସିଦ୍ଧାନ୍ତ ନେଲି, ସେତେବେଳେ ଟିପାଖାତା ଖୋଜାଗଲା ଓ ସେଥିରୁ କେତେକ ମୌଳିକ ତଥ୍ୟ ସଂଗ୍ରହ କରାଯାଇ ଏ ପୁସ୍ତକ ଲେଖାଗଲା। ଉଭୟ ପର୍ଯ୍ୟାୟରେ ଯେଉଁସବୁ ସହର ଦେଖିବାର ସୁଯୋଗ ମିଳିଥିଲା, ସେଥିମଧ୍ୟରୁ ପ୍ରତ୍ୟେକ ସହର ଉପରେ ଅତୀତର ଗୋଟିଏ ଗୋଟିଏ ପୁସ୍ତକ ପ୍ରକାଶିତ ହୋଇଛି। ସେ ଦୃଷ୍ଟିରୁ ପୃଥିବୀର ଅନ୍ୟୁନ ପଚିଶିଟି ଉନ୍ନତ ନଗରୀର ବିଭିନ୍ନ ବିଭବକୁ ଗୋଟିଏ ପୁସ୍ତକରେ ଲିପିବଦ୍ଧ କରିବା ନିଶ୍ଚିତଭାବରେ ଏକ ଦୁଃସାଧ୍ୟ ପ୍ରୟାସ। ତଥାପି ଗୋଟିଏ ପୁସ୍ତକରେ ଏତେଗୁଡ଼ିଏ ସହର ସମ୍ପର୍କରେ କିଞ୍ଚିତ୍ ତଥ୍ୟ ରହିଲେ ତାହା ଓଡ଼ିଆ ପାଠକପାଠିକାମାନଙ୍କ ପାଇଁ ସୁଖପାଠ୍ୟ ହୋଇପାରିବ ବୋଲି ଆଶା କରି ମୁଁ ଏ ଦିଗରେ ମନବଳାଇଛି। ବର୍ତ୍ତମାନର ଆଣବିକ ଯୁଗରେ ଏକାଧିକ କାରଣରୁ ବିଶ୍ୱର ଭୌଗୋଳିକ ସୀମା ଯେଉଳି ବଦଳିବାରେ ଲାଗିଛି, ପୂର୍ବ ସ୍ଥିତିକୁ ନେଇ କୌଣସି ରାଷ୍ଟ୍ର କିମ୍ବା ସହର ସମ୍ପର୍କରେ ବିବରଣୀ ପ୍ରଦାନ ସହଜସାଧ୍ୟ ବ୍ୟାପାର ନୁହେଁ।

ଏ ପୁସ୍ତକ ପାଇଁ ପାଣ୍ଡୁଲିପି ପ୍ରସ୍ତୁତ ହେଉଥିଲାବେଳେ ପୁନର୍ବାର ଯୁକ୍ତରାଷ୍ଟ୍ର ଆମେରିକା ଭ୍ରମଣରେ ଯିବାର ଆଉ ଏକ ସୁଯୋଗ ଜୁଟିଲା। ଆମେରିକାରେ ଥିବା 'ଓଡ଼ିଶା ସୋସାଇଟି ଅଫ୍ ଆମେରିକାଜ୍' (ଓଶା) ହେଉଛି ସେଠାରେ ବସବାସ କରୁଥିବା ପ୍ରବାସୀ ଓଡ଼ିଆମାନଙ୍କର ସର୍ବପୁରାତନ ସଂଗଠନ। ୧୯୬୯ ମସିହାରେ କେତେକ ବିଶିଷ୍ଟ ପ୍ରବାସୀ ଓଡ଼ିଆଙ୍କ ଉଦ୍ୟମରେ ଏହା ଗଠିତ ହୋଇଥିଲା। ଇତିମଧ୍ୟରେ ଆମେରିକାର ବିଭିନ୍ନ ପ୍ରାନ୍ତରେ 'ଓଶା'ର ବାର୍ଷିକ ଅଧିବେଶନ ଦୀର୍ଘ ୩୯ ବର୍ଷ ହେଲା

ଅନୁଷ୍ଠିତ ହୋଇଆସୁଛି । ଗତ ୨୦୦୩ ମସିହାରେ ନିଉଜର୍ସୀଠାରେ 'ଓଶା'ର ୩୪ତମ ବାର୍ଷିକ ଅଧିବେଶନରେ ଯୋଗଦେବା ପାଇଁ ମୁଁ ଆମନ୍ତ୍ରିତ ହୋଇଥିଲେ ହେଁ ବ୍ୟକ୍ତିଗତ ଅସୁବିଧା ଯୋଗୁଁ ସେଥିରେ ମୋର ଯୋଗଦେବା ସମ୍ଭବ ହୋଇନଥିଲା ।

କାନାଡ଼ାର ଟରଣ୍ଟୋ ସହରରେ ଅନୁଷ୍ଠିତ ହୋଇଥିବା 'ଓଶା'ର ୩୯ତମ ଅଧିବେଶନରେ ଯୋଗଦେବାପାଇଁ ଆଉଥରେ ଆନୁଷ୍ଠାନିକ ଆମନ୍ତ୍ରଣ ମିଳିବା ପରେ ଯିବା ନଯିବା ନେଇ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା । ପ୍ରାଥମିକ ଅବସ୍ଥାରେ 'ଓଶା' ସମ୍ମିଳନୀରେ ଯୋଗଦେବା ପାଇଁ ଯିବିନାହିଁ ବୋଲି ଆପାତତଃ ସ୍ଥିର କରି ସାରିଥିଲି । ମାତ୍ର ଜର୍ମାନୀରେ ବାସକରୁଥିବା ମୋର ଅଗ୍ରଜ ବିଶିଷ୍ଟ ଓଡ଼ିଆ ଇଞ୍ଜିନିୟର୍ ଡକ୍ଟର୍ ରାଜେନ୍ଦ୍ର ନାରାୟଣ ଦାସଙ୍କ ଉତ୍ସାହ ଓ ପ୍ରେରଣା ମୋ ନିଷ୍ପତ୍ତିକୁ ବଦଳାଇ ଦେଲା । ଟରଣ୍ଟୋରେ 'ଓଶା' ଅଧିବେଶନରେ ଯୋଗଦାନ ସହିତ ଯୁକ୍ତରାଷ୍ଟ୍ର ଆମେରିକାର ଅନ୍ୟୂନ ପାଞ୍ଚଟି ରାଜ୍ୟ ଭ୍ରମଣରେ ଯିବା ପାଇଁ ଜର୍ମାନୀରେ ଥାଇ ସେ ମୋର ଏକୋଇଶିଦିନିଆ କାର୍ଯ୍ୟକ୍ରମ ସ୍ଥିର କରିଦେଲେ । ମୋର ବିଦେଶ ଯାତ୍ରାର ସଫଳତା ପାଇଁ ତାଙ୍କର ଅବଦାନ ଅବିସ୍ମରଣୀୟ ।

ଆମେରିକାର ବର୍ମିଂହାମ୍ (ଆଲ୍‌ବାମା) ସହରରେ ଅବସ୍ଥାନ କରୁଥିବା ବନ୍ଧୁ ପ୍ରଫେସର ଦିଗମ୍ବର ମିଶ୍ରଙ୍କର ମଧ୍ୟ ଏ ଦିଗରେ ଅବଦାନ କିଛି କମ୍ ନୁହେଁ । ବିଦେଶ ଯିବା ମୋର ମନର ଦ୍ୱନ୍ଦ୍ୱ ସମ୍ପର୍କରେ ସୂଚନା ପାଇବା ପରେ ସେ ଆମେରିକା 'ଭିସା' ପାଇଁ ଆବଶ୍ୟକ ହେଉଥିବା ସମସ୍ତ କାଗଜପତ୍ର ପଠାଇ ମୋର ସମସ୍ୟା ଦୂର କରିଦେଲେ । ସେଥିସହିତ ଦେଶ ଭ୍ରମଣ ସମୟରେ ବିଭିନ୍ନ ସ୍ଥାନରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ଘରେ ରହିବାର ସୁବନ୍ଦୋବସ୍ତ ମଧ୍ୟ କରିଦେଇଥିଲେ । ତାଙ୍କରି ପ୍ରଚେଷ୍ଟାରେ ମୁଁ ନ୍ୟୁଜର୍ସୀରେ ଡକ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ, ସାନଯୋସେ (କାଲିଫର୍ଣ୍ଣିଆ)ରେ ଡକ୍ଟର ଗୌରୀ ଦାସ ଏବଂ ୱାଶିଂଟନ୍ ଡି.ସି.ରେ ଡକ୍ଟର ନରେଶ ଦାସଙ୍କ ଘରେ ଯେପରି ଭାବରେ ଆତିଥେୟତା ଲାଭ କରିଥିଲି ତାହା ଭୁଲିବାର ନୁହେଁ । ସେମାନଙ୍କର ଅକୁଣ୍ଠିତ ଚର୍ଚ୍ଚା ଯୋଗୁଁ ମୁଁ ବିଦେଶଗସ୍ତର ଅବସାଦ ଅନୁଭବ କରିନଥିଲି । ସେମାନଙ୍କ ଋଣ ଶୁଝିବା ସମ୍ଭବ ନୁହେଁ । ବର୍ମିଂହାମ୍‌ରେ ଏକ ସପ୍ତାହ ରହଣି ସମୟରେ ଆମେରିକାରେ ଓଡ଼ିଆଙ୍କ ଆମ୍ବାସାଡର୍ ଭାବେ ଜଣାଶୁଣା ମିଶ୍ର ଦମ୍ପତି (ପ୍ରଫେସର୍ ଦିଗମ୍ବର ମିଶ୍ର ଓ ତାଙ୍କ ପତ୍ନୀ ଜ୍ୟୋତ୍ସ୍ନା ମିଶ୍ରଙ୍କ ଅତିଥିସେବା ମୋତେ ମୁଗ୍ଧ କରିଥିଲା ।

ସେହିଭଳି ଟରଣ୍ଟୋଠାରେ ଅନୁଷ୍ଠିତ ହୋଇଥିବା 'ଓଶା' ଅଧିବେଶନରେ ଯୋଗଦାନ ପାଇଁ ପ୍ରମୁଖ ପ୍ରବାସୀ ଓଡ଼ିଆ ଡକ୍ଟର ମନୋରଂଜନ ପଟ୍ଟନାୟକ, ଡକ୍ଟର ଲାଲୁ ମାନସିଂହ, 'ଓଶା'ର ସଭାପତି ଡକ୍ଟର ପ୍ରତାପ ଦାସ, ଆବାହକ ଡକ୍ଟର ଗଗନବିହାରୀ ତ୍ରିପାଠୀ, ଉପସଭାପତି ଆଶୁତୋଷ ଦତ୍ତ ପ୍ରମୁଖଙ୍କ ଶ୍ରଦ୍ଧା ଓ ସ୍ନେହ ଜୀବନରେ ଅଭୁଲା ହୋଇ ରହିବ । ଏ ସମସ୍ତଙ୍କ ସାହାଯ୍ୟ, ସହଯୋଗ ଓ ସହାନୁଭୂତି ବିନା ମୋ ମନରେ ବସା ବାନ୍ଧିଥିବା ଏକ ଦୀର୍ଘଦିନର ଅଭିଳାଷ ହୁଏତ ସଫଳତାର ସହିତ ପୂରଣ ହୋଇନଥାନ୍ତା ।

ଆମେରିକା ଯାତ୍ରାର ସଫଳତା ପାଇଁ ଦିଲ୍ଲୀରେ ବାସକରୁଥିବା ପ୍ରସିଦ୍ଧ ଚକ୍ଷୁଚିକିତ୍ସା ବିଶାରଦ ଡକ୍ଟର ଜୟଚନ୍ଦ୍ର ଦାସ (ମୋ ଧର୍ମପତ୍ନୀଙ୍କ କନିଷ୍ଠ ଭ୍ରାତା), ତାଙ୍କ ପତ୍ନୀ ଶ୍ରୀମତୀ କଳ୍ପନା ଦାସ, ଭୁବନେଶ୍ୱରସ୍ଥ 'ସୀତା ଟ୍ରାଭେଲସ୍'ର ଦୀପ୍ତି, ଅନ୍ୟ କର୍ମକର୍ତ୍ତା ଓ ଶେଷରେ ମୋର ସହଧର୍ମିଣୀ ପ୍ରମଦା ଦାସଙ୍କ ଅବଦାନ ଅତୁଳନୀୟ । ମୋର ପୁତ୍ର ଚନ୍ଦନ ଓ ପୁତ୍ରବଧୂ ସାଲୋନୀର

ପ୍ରୋତ୍ସାହନ ମତେ ଆମେରିକା ଯିବାପାଇଁ ଯଥେଷ୍ଟ ସହାୟକ ହୋଇଥିଲା । ସେମାନେ ସମସ୍ତେ ଧନ୍ୟବାଦର ପାତ୍ର ।

ବିଦେଶ ଚକ୍ରର ଅନୁଭୂତିକୁ ପାଥେୟ କରି ପୁସ୍ତକଟିଏ ରଚନା କରିବାକୁ ଯେଉଁ ବନ୍ଧୁମାନଙ୍କ ପରାମର୍ଶ ଓ ଅନୁରୋଧକୁ ଅତୀତରେ ଏକାଧିକବାର ଏଡ଼ାଇ ଦେଇଥିଲି, ଆଉଥରେ ବିଦେଶ ରାଷ୍ଟ୍ର ଭ୍ରମଣରେ ଯିବାପରେ ସେ ଅନୁରୋଧ ମୋ ଉପରେ ଏକପ୍ରକାର ଚାପ ସୃଷ୍ଟି କଲା । ସେ ଚାପର ବଶବର୍ତ୍ତୀ ହୋଇ ମୁଁ 'ଯେ ଦେଶ ଯାଇ, ସେ ଫଳ ଖାଇ' ଲେଖିବାକୁ ମନ ବଳାଇଲି । ଟିପଣ ତା ସହିତ ସେ ସମୟର ଫଟୋ ନେଗେଟିଭ୍ ଖୋଜିଲାବେଳକୁ ସେଥିମଧ୍ୟରୁ ଅନେକ ଖରାପ ହୋଇ ଯାଇଥିଲା । ସେଥିରୁ ଯେତିକି ମିଳିଲା ଓ ବର୍ତ୍ତମାନର ଫଟୋସବୁ ଏଥିରେ ସ୍ଥାନିତ ହୋଇଛି । ମୋର ଅନୁଜପ୍ରତୀମ ବିଶିଷ୍ଟ ସାହିତ୍ୟିକ ଶ୍ରୀ ବୈଷ୍ଣବଚରଣ ମହାନ୍ତି ଏ ପୁସ୍ତକର ପାଣ୍ଡୁଲିପିଟିକୁ ସଂଶୋଧନ କରି ମୋ ମନର ବୋଝକୁ ହାଲୁକା କରିଦେଇଛନ୍ତି । ଶେଷରେ 'କାହାଣୀ' ଓଡ଼ିଶାର ପ୍ରଖ୍ୟାତ ପ୍ରକାଶନ ସଂସ୍ଥା ଖୁବ୍ କମ୍ ସମୟରେ ଏ ପୁସ୍ତକଟି ପ୍ରକାଶ କରି ମୋର ସ୍ୱପ୍ନକୁ ସାକାର କରିଛନ୍ତି । ଏମାନଙ୍କ ପାଖରେ ମୁଁ ଋଣୀ ।

ବିଦେଶରାଷ୍ଟ୍ରର ଏତେଗୁଡ଼ିଏ ସହର ବିଷୟରେ ବିବରଣୀ ପ୍ରଦାନ କଲାବେଳେ କେତେକ ବିଷୟ ଛାଡ଼ିଯିବା ଅସ୍ୱାଭାବିକ ନୁହେଁ । ଆଶାକରେ, ଗୁଣଗ୍ରାହୀ ପାଠକପାଠିକା ସେପରି ତ୍ରୁଟିକୁ ନିଜର ମହାନ୍ ଗୁଣରେ ମାର୍ଜନା କରିବେ । ଏ ପୁସ୍ତକ ରଚନାରେ ଯେଉଁମାନେ ମତେ ପ୍ରବର୍ତ୍ତାଇଛନ୍ତି, ଉତ୍ସାହିତ କରିଛନ୍ତି ଏବଂ ସାହାଯ୍ୟ ସହାନୁଭୂତି ପ୍ରଦାନ କରିଛନ୍ତି, ସେମାନେ ସମସ୍ତେ ମୋର ନମସ୍ୟ । ବିଶେଷକରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କୂଟନୀତିଜ୍ଞ ତଥା ପୂର୍ବତନ ବୈଦେଶିକ ସଚିବ ଶ୍ରୀ ଲଳିତ ମାନସିଂହ ଏ ପୁସ୍ତକର ମୁଖବନ୍ଧ ଲେଖିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । 'ଯେ ଦେଶ ଯାଇ, ସେ ଫଳ ଖାଇ' ପୁସ୍ତକଟି ପାଠକପାଠିକା ମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ଭୁବନେଶ୍ୱର
ପଣା ସଂକ୍ରାନ୍ତି, ୨୦୦୯

# ଭିତରେ କ'ଣ ଅଛି

## ଦ୍ୱିତୀୟ ପର୍ଯ୍ୟାୟ

# ତୃତୀୟ ପର୍ଯ୍ୟାୟ

# ପ୍ରଥମ ପର୍ଯ୍ୟାୟ

## ଜୀବନର ସ୍ୱପ୍ନ ପୂରଣ

ଆଗକାଳରେ ବିଦେଶ ଯିବା ଏକ ବଡ଼ ଘଟଣା ବୋଲି ଧରାଯାଉଥିଲା । ଯିଏ ବିଦେଶ ଯାଉଥିଲେ, ଯେଉଁ ଦେଶକୁ ଯାଆନ୍ତୁ ନା କାହିଁକି, ଲୋକେ ସେମାନଙ୍କୁ 'ବିଲାତଫେରନ୍ତା' ବୋଲି କହୁଥିଲେ । ସେହି ଅନୁସାରେ ସମାଜରେ ସେମାନଙ୍କୁ, ସେମାନଙ୍କ ପରିବାର ଲୋକଙ୍କୁ ମର୍ଯ୍ୟାଦା ମିଳୁଥିଲା ଏବଂ ସେମାନଙ୍କ ନାଁ ସଙ୍ଗରେ 'ସାହେବ' ସାଙ୍ଗିଆ ଯୋଡ଼ି ହୋଇଯାଉଥିଲା । ଓଡ଼ିଶାରେ ଆଗେ ଲୋକେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ 'ପରିଜା ସାହେବ', ଶ୍ୟାମାଚରଣ ତ୍ରିପାଠୀଙ୍କୁ 'ତ୍ରିପାଠୀ ସାହେବ' ବୋଲି ଡାକୁଥିଲେ, କେବଳ ସେମାନେ ବିଲାତ ଯାଇ ପାଠ ପଢ଼ିଥିବାରୁ । ସେତେବେଳେ 'ସାହେବ' ସାଙ୍ଗିଆ ଲାଗିଥିବା ବ୍ୟକ୍ତିମାନଙ୍କୁ ଲୋକେ ଭକ୍ତି ଓ ଭୟ କରୁଥିଲେ । ମୋଟାମୋଟି ଭାବରେ କହିଲେ ବିଲାତଫେରନ୍ତା ଲୋକଙ୍କର ସମାଜରେ ଏକ ସ୍ୱତନ୍ତ୍ର ସ୍ଥାନ ଥିଲା ।

ସେଥିପାଇଁ ଜୀବନରେ ଥରେ ବିଲାତ ଯିବା ପାଇଁ ଏକ ଆକାଙ୍କ୍ଷା ମନଭିତରେ ପିଲାଦିନୁ ବସା ବାନ୍ଧିଥିଲା । କିନ୍ତୁ ସାଧାରଣ ଭାବରେ ପାଠ ପଢ଼ିଥିବା ଏବଂ ସାମ୍ପ୍ରଦିକତାକୁ ବୃତ୍ତି କରିଥିବ ଲୋକ ପକ୍ଷରେ ବିଲାତ ଯିବା ବୋଧେ ସମ୍ଭବ ନୁହେଁ ଭାବି ପିଲାଦିନର ଇଚ୍ଛା କେବଳ ଆଶାରେ ରହିଯିବ ବୋଲି ଧରି ନେଇଥିଲି; କାରଣ ଦରିଅପାରି ରାଷ୍ଟ୍ରକୁ ଯିବା କେବଳ ବ୍ୟୟବହୁଳ ନୁହେଁ, ଏଥିପାଇଁ ପ୍ରସ୍ତୁତି ଓ ଯାତ୍ରା କଷ୍ଟସାଧ୍ୟ ।

୧୯୫୦ ମସିହାରେ ପ୍ରତିଷ୍ଠିତ ଭାରତୀୟ ପେସାଦାର ସାମ୍ବାଦିକ ମହାସଙ୍ଘ (ଆଇ.ଏଫ୍.ଡବ୍ଲ୍ୟୁ.ଜେ.) ସର୍ବଭାରତୀୟ କ୍ଷେତ୍ରରେ ସାମ୍ବାଦିକମାନଙ୍କ ପାଇଁ ସର୍ବପୁରାତନ ସଙ୍ଗଠନ। ଏହି ସଂସ୍ଥା ମାଧ୍ୟମରେ ପ୍ରତିବର୍ଷ ଭାରତବର୍ଷରୁ ସାମ୍ବାଦିକମାନଙ୍କୁ ବିଭିନ୍ନ ରାଷ୍ଟ୍ର ଭ୍ରମଣରେ ଯିବା ପାଇଁ ଆମନ୍ତ୍ରଣ ଆସିଥାଏ। କିନ୍ତୁ ଦିଲ୍ଲୀ ଓ ଅନ୍ୟାନ୍ୟ ବଡ଼ବଡ଼ ସହରରେ ଥିବା ସାମ୍ବାଦିକମାନେ ସେସବୁ ବିଦେଶ ଗସ୍ତର ସୁବିଧା ହାସଲ କରୁଥିଲେ। ଓଡ଼ିଶାର ସର୍ବପୁରାତନ ସାମ୍ବାଦିକସଙ୍ଗଠନ ଉତ୍କଳ ସାମ୍ବାଦିକ ସଙ୍ଘ, ଆଇ.ଏଫ୍.ଡବ୍ଲ୍ୟୁ.ଜେ.ର ସ୍ୱୀକୃତିପ୍ରାପ୍ତ ଓଡ଼ିଶା ଶାଖା ଭାବେ ମୂଳରୁ ରହିଛି। ଏହି ସଂସ୍ଥା ସହିତ ସାମ୍ବାଦିକ ବୃତ୍ତିରେ ଯୋଗଦେବା ଦିନୁ (ଅପ୍ରେଲ୍ ୧୯୬୫ ମସିହାରୁ) ମୋର ଘନିଷ୍ଠ ସମ୍ପର୍କ ସ୍ଥାପନ ହୋଇଥିଲା। ତା'ଛଡ଼ା ୧୯୬୮ ମସିହାରୁ ସର୍ବଭାରତୀୟ ସ୍ତରରେ ନିର୍ବାଚନ ଜିଣି ଆଇ.ଏଫ୍.ଡବ୍ଲ୍ୟୁ.ଜେ. ଜାତୀୟ ପରିଷଦର ସଦସ୍ୟ ହୋଇଥିବାରୁ ଦେଶର ପ୍ରତିଷ୍ଠିତ ସାମ୍ବାଦିକଙ୍କ ସହିତ ମଧ୍ୟ ମୋର ସଦ୍ଭାବ ସୃଷ୍ଟି ହୋଇଥିଲା।

୧୯୮୦ ମସିହାରେ ଭାରତୀୟ ସାମ୍ବାଦିକ ମହାସଙ୍ଘର ନେତୃତ୍ୱ ପରିବର୍ତ୍ତନ ହେଲା। ଏଥିପାଇଁ କେ. ବିକ୍ରମ ରାଓ ଏବଂ ଅନ୍ୟମାନଙ୍କୁ ଦୀର୍ଘ ୧୦ବର୍ଷ କାଳ ସଂଗ୍ରାମ କରିବାକୁ ପଡ଼ିଥିଲା। ଶ୍ରୀ ରାଓ, ଦେଶର ପ୍ରତିଷ୍ଠିତ ସାମ୍ବାଦିକ ଶ୍ରୀ କେ. ରାମାରାଓଙ୍କ ପୁତ୍ର ଏବଂ ହାଇଦ୍ରାବାଦରେ ସେ ଟାଇମ୍ସ ଅଫ୍ ଇଣ୍ଡିଆ ପତ୍ରିକାର ସ୍ୱତନ୍ତ୍ର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ। ଦେଶର ବହୁ ସମାଜବାଦୀ ନେତାଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା। ସେ ଇନ୍ଦିରାଗାନ୍ଧୀଙ୍କର ଅନେକ ନୀତିକୁ ବିରୋଧ କରୁଥିଲେ। ସେଥିପାଇଁ ଜରୁରୀକାଳୀନ ପରିସ୍ଥିତିରେ ତାଙ୍କୁ ଜର୍ଜ ଫର୍ଣ୍ଣାଡେସ୍‌ଙ୍କ ସହିତ ବରୋଦା ଡିନାମାଇଟ୍ କେସ୍‌ରେ ଜଡ଼ିତ କରି କାରାଗାରରେ ଠୁଙ୍କି ଦିଆଯାଇଥିଲା ଏବଂ ତାଙ୍କ ଧର୍ମପତ୍ନୀ ଡକ୍ଟର ସୁଧା ରାଓ ଏବଂ ପରିବାରର ଅନ୍ୟ ସଦସ୍ୟମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରାଯାଇଥିଲା। ଜେଲ୍‌ରୁ ଖଲାସ ହେବା ପରେ ଶ୍ରୀ ରାଓ ସାମ୍ବାଦିକ ମହାସଙ୍ଘକୁ ଅଧିକ ସଙ୍ଗଠିତ କଲେ ଏବଂ ଶେଷରେ ନିର୍ବାଚନରେ ଜୟଯୁକ୍ତ ହୋଇ ଆଇ.ଏଫ୍.ଡବ୍ଲ୍ୟୁ.ଜେ.ର ସଭାପତି ହେଲେ।

୧୯୮୪ ମସିହା ଜୁନ୍ ମାସରେ ଉତ୍ତରପ୍ରଦେଶର ଫଇଜାବାଦଠାରେ ସାମ୍ବାଦିକ ମହାସଙ୍ଘର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ଉତ୍କଳ ସାମ୍ବାଦିକ ସଙ୍ଘର ସାଧାରଣ ସମ୍ପାଦକ ଭାବରେ ଓଡ଼ିଶାରୁ ଅନେକ ସାଥୀଙ୍କୁ ନେଇ ସେଥିରେ ଯୋଗ ଦେବାକୁ ମୋତେ ସୁଯୋଗ ମିଳିଥିଲା। ସେ ଅଧିବେଶନରେ ଓଡ଼ିଶାର ଯେଉଁ ପ୍ରମୁଖ ସାମ୍ବାଦିକମାନେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ ନଗେନ ବେଉରିଆ (ଭୁବନେଶ୍ୱର), ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ପୁରୀ), ମିହିର କୁମାର ଆଚାର୍ଯ୍ୟ (ବାଲେଶ୍ୱର), ବସନ୍ତ କୁମାର ମହାନ୍ତି (ସମ୍ବଲପୁର) ଓ ଶୁଭେନ୍ଦ୍ର ବର୍ମା (କଟକ) ଆଜି ଆଉ ଆମ ସାଙ୍ଗରେ ନାହାନ୍ତି। ସାମ୍ବାଦିକ

ସଂଘ ଭିତରେ ରହି କାମ କଲାବେଳେ ଅନେକ ସମୟରେ ଆମ ଭିତରେ ମତାନ୍ତର ହେଉଥିଲା, ମାତ୍ର ତାହା ଆଜିଭଳି କେବେହେଲେ ମନାନ୍ତରରେ ପରିଣତ ହେଉନଥିଲା। ଆଜିର କର୍ମକର୍ତ୍ତାଙ୍କ ଭଳି ମାଲିକଙ୍କ ଦଲାଲ ନ ସାଜି ଦୁଃଖ ଦୁର୍ଦ୍ଦିନରେ କାଳାତିପାତ କରୁଥିବା ଅଗଣିତ ସାମ୍ବାଦିକଙ୍କର ସର୍ବନିମ୍ନ ସ୍ୱାର୍ଥସାଧନ ସେତେବେଳର ନେତୃବର୍ଗଙ୍କର ଧ୍ୟେୟ ଥିଲା।

ଫଇଜାବାଦ ଅଧିବେଶନରେ ଉତ୍ତର କୋରିଆ (ଡି.ପି.ଆର୍. କୋରିଆ) ଜାତୀୟ ସମ୍ବାଦପତ୍ରର ମୁଖ୍ୟ କିମଜୀ ନାନ୍ ଓ ତାଙ୍କର କେତେକ ସହଯୋଗୀ ସ୍ୱତନ୍ତ୍ର ନିମନ୍ତ୍ରିତ ସଦସ୍ୟ ଭାବରେ ଯୋଗଦେଇଥିଲେ। ଉତ୍ତର କୋରିଆ ଏକ କମ୍ୟୁନିଷ୍ଟ ରାଷ୍ଟ୍ର। ସେଠାରେ ସାମ୍ବାଦପତ୍ରର ସ୍ୱାଧୀନତା ନାହିଁ। ସମ୍ବାଦପତ୍ର, ରେଡିଓ, ଟି.ଭି. ଚାନେଲ୍‌ସବୁ ସରକାରୀ-ନିୟନ୍ତ୍ରିତ। ଅଧିବେଶନ ସମୟରେ ଆମର ଏକ ପ୍ରତିନିଧି ଦଳ ତାଙ୍କ ଦେଶକୁ ଯିବା ପାଇଁ ଶ୍ରୀ ନାନ୍ ଆମନ୍ତ୍ରଣ କରିଥିଲେ। ଆମ ସଭାପତି କେ. ବିକ୍ରମ ରାଓ ସେତେବେଳେ ଶ୍ରୀ ନାନ୍‌ଙ୍କ ଆମନ୍ତ୍ରଣକୁ ନୀତିଗତ ଭାବରେ ଗ୍ରହଣ କରିଥିଲେ ହେଁ ତାକୁ କାର୍ଯ୍ୟକାରୀ କରିବାରେ ପ୍ରାୟ ବର୍ଷେ ସମୟ ଲାଗିଯାଇଥିଲା।

ଏକ କମ୍ୟୁନିଷ୍ଟ ରାଷ୍ଟ୍ର ଭାବରେ ଉତ୍ତର କୋରିଆର ସେତେବେଳକାର ସୋଭିଏତ୍ ଋଷ ଓ ଚୀନ୍ ସହିତ ଉତ୍ତମ ସମ୍ପର୍କ ଥିଲା ଏବଂ ସେ ଦୁଇ ରାଷ୍ଟ୍ରର ରାଜଧାନୀ ମସ୍କୋ ଓ ବେଜିଂକୁ ବିମାନ ସଂଯୋଗ ରହିଥିଲା। ଆମେ ଏ ଦୁଇ ସହର ମଧ୍ୟରୁ କୌଣସି ଗୋଟିକରେ ପହଞ୍ଚିଲେ ସେଠାରୁ ଆମକୁ ନେବା-ଆଣିବା ସହ ଉତ୍ତର କୋରିଆର ରାଜଧାନୀ ପୋଙ୍ଗୟାଙ୍ଗ୍ ସହରରେ ଆମକୁ ଅତିଥି କରିବା ପାଇଁ ଆମନ୍ତ୍ରଣ କରାଯାଇଥିଲା। କେବଳ ଏ ତିନୋଟି ସହର ସାମ୍ବାଦିକମାନଙ୍କ ଆକର୍ଷଣୀୟ ହୋଇନପାରେ ବୋଲି ଚିନ୍ତାକରି ଏହି ଗସ୍ତ ସହିତ ୟୁରୋପର ଆଉ ନଅଟି ରାଷ୍ଟ୍ର ଭ୍ରମଣରେ ଯିବାପାଇଁ ଶ୍ରୀ ରାଓ ଯୋଜନା କରିଥିଲେ।

## ବିଦେଶ ଯିବା ପାଇଁ ବିକ୍ରମ ରାଓଙ୍କ ଅନୁରୋଧ

ମୁଁ ସେତେବେଳେ ଅମୃତବଜାରପତ୍ରିକାର ପ୍ରତିନିଧି ଭାବରେ କଟକରେ ୱାଇ.ଏମ୍.ସି.ଏ. ନିକଟରେ ଗୋଟିଏ ସରକାରୀ କ୍ୱାଟରରେ ରହୁଥିଲି। ଜଣେ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ଭାବରେ କଟକ ସହରରେ ସରକାରୀ କ୍ୱାଟର ପାଇବାରେ ବୋଧହୁଏ ମୁଁ ପ୍ରଥମ ଏବଂ ଶେଷ ବ୍ୟକ୍ତି। ୧୯୮୫ ମେ ମାସର ଘଟଣା, ସନ୍ଧ୍ୟାବେଳେ ପ୍ରବଳ ଗରମ ହେଉଥିବାରୁ ବାହାରେ ଚଉକି ପକାଇ ବସିଛି, ହଠାତ୍ ଫୋନ୍ ଘଣ୍ଟି ବାଜିଉଠିଲା। ଆଜିକାଲି ଭଳି ସେତେବେଳେ କଡ୍‌ଲେସ୍ କିମ୍ବା ସେଲୁଲାର୍ ଫୋନ୍‌ର ପ୍ରଚଳନ ନଥିଲା। ଘରକୁ ଯାଇ ଫୋନ୍ ଧରିଲି; ଯାହା ଶୁଣିଲି ପ୍ରଥମେ ନିଜକୁ ବିଶ୍ୱାସ କରି ପାରିଲି ନାହିଁ।

ଏହା ସତ୍ୟ ନା ମୁଁ ସ୍ୱପ୍ନ ଦେଖୁଛି ? ଆରପାଖରୁ ବିକ୍ରମ ରାଓ କହୁଥିଲେ, "ବସନ୍ତ, ଭାରତୀୟ ପେସାଦାର ସାମ୍ବାଦିକ ମହାସଙ୍ଘର ପ୍ରତିନିଧି ଦଳରେ ସାମିଲ ହୋଇ ବିଦେଶ ଗସ୍ତରେ ଯିବାପାଇଁ ତୁମେ ମନୋନୀତ ହୋଇଛ । ଶୀଘ୍ର ପ୍ରସ୍ତୁତ ହୋଇଯାଅ । ମୁଁ ସେଥିପାଇଁ ଆବଶ୍ୟକ କାଗଜପତ୍ର ତୁମ ପାଖକୁ ପଠାଉଛି । ତା' ଉପରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରି ସେଗୁଡ଼ିକ ଯଥାଶୀଘ୍ର ମୋ ପାଖକୁ ପଠାଇଦିଅ ।"

ମୁଁ କିଛି ଉତ୍ତର ଦେବା ପୂର୍ବରୁ ସେ କହି ଚାଲିଥା'ନ୍ତି, "ବସନ୍ତ, ଆମ ହାତରେ ସମୟ କମ୍ । ଜୀବନରେ ସୁଯୋଗ ବାରମ୍ବାର ଆସେ ନାହିଁ । ଥରେ ସୁଯୋଗକୁ ହାତଛଡ଼ା କଲେ ଆଉଥରେ ସେ ସୁଯୋଗ ଆସିବ କି ନାହିଁ ସନ୍ଦେହ । ସେଥିପାଇଁ କୌଣସି ନାହିଁ-ହଁ ଭିତରେ ନପଶି ପ୍ରସ୍ତୁତି କାର୍ଯ୍ୟରେ ଲାଗିପଡ଼ । ମୁଁ ତୁମ ଫୋନ୍‌କୁ ଅପେକ୍ଷା କରିଛି ।"

ଶ୍ରୀ ରାଓଙ୍କ କଥା ଶୁଣିବା ପରେ ବିଦେଶ ଯିବାର ଯେଉଁ କାମନା ମନ ଭିତରେ ଦୀର୍ଘଦିନ ହେଲା ଚାପି ହୋଇଯାଇଥିଲା, ତାହା ପୁଣି ଉଦ୍ରେକ ହେଲା । ଏକାଥରକେ ୧୧ଟି ରାଷ୍ଟ୍ର ଯିବାର ମୋହ ତାକୁ ମୁଁ ହଠାତ୍ ଏଡ଼ାଇ ଦେଇପାରିଲି ନାହିଁ । ରାତିରେ ହାଇଦ୍ରାବାଦ୍ ଫୋନ୍ କରି ବିଦେଶ ଗସ୍ତରେ ଯିବା ପାଇଁ ମୋର ସମ୍ମତି ବିକ୍ରମବାବୁଙ୍କୁ ଜଣାଇଦେଲି ।

## ଅର୍ଥ ସଂଗ୍ରହ ଓ ସୁଟ୍ ତିଆରି

ଶ୍ରୀ ରାଓଙ୍କୁ ଫୋନ୍ କରିସାରିବା ପରେ ରାତିରେ ଆଉ ନିଦ ହେଲାନାହିଁ । ଖଟରେ ପଡ଼ି ଖାଲି ଛଟପଟ ହେଲି; କାରଣ ଶ୍ରୀ ରାଓ କଥାବାର୍ତ୍ତା ବେଳେ ସୂଚନା ଦେଇଥିଲେ ଯେ, ଏହି ଗସ୍ତପାଇଁ ପ୍ରାୟ କୋଡ଼ିଏ ହଜାର ଟଙ୍କା ଆବଶ୍ୟକ ପଡ଼ିବ । ଜଣେ ସ୍ୱଳ୍ପ ବେତନଭୋଗୀ ସାମ୍ବାଦିକ ପକ୍ଷରେ ଏତେଗୁଡ଼ିଏ ଟଙ୍କା ଏତେ କମ୍ ଦିନରେ ଯୋଗାଡ଼ କରିବା ସମ୍ଭବ ହେବ କି ନ ହେବ ସେଇକଥା ଭାବି ଭାବି ନିଦ ହେଉନଥାଏ । ମୁଣ୍ଡରେ ନାନା ପ୍ରକାର ଚିନ୍ତା । ଶ୍ରୀ ରାଓଙ୍କୁ ତ ଜବାବ ଦେଇଦେଲି, ଏବେ ନାହିଁ କରିବି କେମିତି ? ମନ ଭିତରେ ଦ୍ୱନ୍ଦ୍ୱ । ଏମିତି ଭାବୁ ଭାବୁ କେତେବେଳେ ନିଦ ଲାଗିଯାଇ ଥିଲା ମୁଁ ଜାଣି ପାରି ନ ଥିଲି ।

ସକାଳୁ ଉଠିଲାବେଳେ ଗୋଟିଏ ବୁଦ୍ଧି ମୁଣ୍ଡରେ ଢୁକିଲା । ଅର୍ବାନ୍ କୋଅପରେଟିଭ୍ ବ୍ୟାଙ୍କରୁ ଘର ମରାମତି ନାଁରେ କିଛି ଟଙ୍କା ଋଣ ଆଣିଲେ ତ କାମ ଚଳିଯିବ । ଆଉ ଚିନ୍ତା କ'ଣ ? ଅଫିସ୍ ଖୋଲିଲା ପରେ ବ୍ୟାଙ୍କ୍‌ରେ ହାଜର ହେଲି । ବ୍ୟାଙ୍କ୍‌ର ଦରକାର ଅନୁସାରେ ସବୁ କାଗଜପତ୍ର ଦାଖଲ କଲି । ବ୍ୟାଙ୍କ କର୍ମଚାରୀମାନଙ୍କୁ ସବୁକଥା ଖୋଲିକରି କହିଲି । ସେମାନେ ସହାନୁଭୂତିଶୀଳ ଥିଲେ । ସବୁକାମ ଦୁଇ-ତିନି ଦିନ ଭିତରେ ହୋଇଗଲା ।

ବ୍ୟାଙ୍କ୍‌ରୁ ପନ୍ଦର ହଜାର ଟଙ୍କା ଋଣ ମିଳିଗଲା। ତା'ଛଡ଼ା କିଛି ବନ୍ଧୁ ମଧ୍ୟ ମୋତେ ଆର୍ଥିକ ସାହାଯ୍ୟ ଦେଇଥିଲେ।

ଯାହା କୁହାଯାଏ, କୌଣସି ମହତ୍ କାମ ପାଇଁ ଅର୍ଥ ପ୍ରତିବନ୍ଧକ ହୁଏ ନାହିଁ, ମୋ କ୍ଷେତ୍ରରେ ତାହା ହିଁ ହେଲା। ମୁଁ ପିଲାଦିନୁ ଖଦଡ଼ ପିନ୍ଧୁଥିବାରୁ ମୋର ଗରମ ସୁଟ୍ ନଥିଲା। ସୁଟ୍ କନା କିଣିବାଠାରୁ ଆରମ୍ଭ କରି ବିଦେଶ ଯିବା ପାଇଁ ଆବଶ୍ୟକ ପଡୁଥିବା ଚକଲଗା ଭି.ଆଇ.ପି. ସୁଟ୍‌କେଶ କିଣିବା ଇତ୍ୟାଦି ସବୁ କାମରେ ମୁଁ ବନ୍ଧୁମାନଙ୍କ ପାଖରୁ ଯେଉଁ ସାହାଯ୍ୟ ପାଇଥିଲି ତାକୁ ଭୁଲି ପାରିବି ନାହିଁ। ସେତେବେଳେ କଟକର ହିନ୍ଦୁସ୍ଥାନ ଟେଲର୍ ସୁଟ୍ ତିଆରିରେ ଖୁବ୍ ନାଁ କରିଥିଲେ। ତା'ର ମାଲିକ ଖୁବ୍ ମିଜାଜି ଲୋକ। ସୁଟ୍ ତିଆରି କରିବାକୁ ଅନ୍ୟୂନ ଦୁଇମାସ ସମୟ ନିଅନ୍ତି। ଚାରିଦିନ ଭିତରେ ସୁଟ୍ ଦେବା କଥା ଶୁଣି ସେ ପ୍ରଥମେ ହସିଲେ। କିନ୍ତୁ ପରେ ଯେତେବେଳେ ସବୁ ଘଟଣା ଶୁଣିଲେ, କେଜାଣି କାହିଁକି ସୁଟ୍ ଅର୍ଡର୍ ରଖିଲେ ଏବଂ ଚାରିଦିନ ମଧ୍ୟରେ ମୁଁ ସୁଟ୍ ପାଇଗଲି। ଏସବୁ କାମ ସପନ ଭଳି ଲଗିବା ସହିତ ମନରେ ଅହେତୁକ ଆଶଙ୍କା ସୃଷ୍ଟି ହେଉଥିଲେ ବି ବିଦେଶ ଭ୍ରମଣରେ ଯିବାର ମୋହ ସେସବୁକୁ ଦବାଇ ଦେଉଥିଲା।

ବିଦେଶ ଭ୍ରମଣରେ ଯିବା ସମୟ ଯେତିକି ପାଖେଇ ଆସୁଥିଲା ମନର ଉଦ୍‌ବେଗ ଓ ଉତ୍କଣ୍ଠା ସେତିକି ବୃଦ୍ଧି ପାଉଥିଲା। ମୂଳରୁ ଅର୍ଥର ଯେଉଁ ପ୍ରତିବନ୍ଧକ ଥିଲା ତାହା କୌଣସି ପ୍ରକାରେ ଦୂର ହୋଇଗଲା। ମୁଁ ଭାବିଥିଲି, ଟଙ୍କା ଯୋଗାଡ଼ ହୋଇଗଲେ ବୋଧହୁଏ ସବୁକାମ ଛିଡ଼ିଯିବ। କିନ୍ତୁ ପରେ ଅନୁଭବ କଲି, ପଇସା ଯୋଗାଡ଼ ବିଦେଶ ଗସ୍ତ ଆୟୋଜନର ଏକ କ୍ଷୁଦ୍ର ଅଂଶ ମାତ୍ର।

## ପାସ୍‌ପୋର୍ଟ ଓ ଭିସା ଯୋଗାଡ଼

ଯଥା ସମୟରେ ଦଶଟି ରାଷ୍ଟ୍ରର ଭିସା ଫର୍ମ ମୋ ପାଖରେ ଆସି ପହଞ୍ଚିଗଲା। ତା'ସହିତ ଗୋଟିଏ ଅନୁରୋଧ, ସେସବୁ ପୂରଣ ହୋଇ ଯେପରି ସପ୍ତାହକ ମଧ୍ୟରେ ଦିଲ୍ଲୀରେ ଥିବା ସାମ୍ବାଦିକ ମହାସଙ୍ଘ ଅଫିସ୍‌ରେ ପହଞ୍ଚିବ। ଫର୍ମ ପୂରଣ କରି ତାକୁ ଠିକ୍ ସମୟରେ ପଠାଇଦେବା ସେତେଟା କଷ୍ଟସାଧ୍ୟ ବ୍ୟାପାର ନଥିଲା। କିନ୍ତୁ ଯେତେବେଳେ ଦେଖିଲି ସେଥିରେ ସବୁ ପାସପୋର୍ଟ ନମ୍ବର ପକାଇବାକୁ ହେବ, ଭାବିଲି ମୋର ବୋଧେ ବିଦେଶ ଯିବା ଆଉ ସମ୍ଭବ ହେବ ନାହିଁ; କାରଣ ମୋର ସେତେବେଳେ ପାସପୋର୍ଟ ହୋଇ ନ ଥିଲା ଏବଂ ପାସପୋର୍ଟ ପାଇବା ପାଇଁ ଲମ୍ବା ଲାଇନ୍ ସହିତ ପୁଲିସ ସଙ୍ଗଠନର ଦୁଇଟି ବିଭାଗରୁ ଗୁପ୍ତ ତଦନ୍ତ ରିପୋର୍ଟ ଆଣିବା ପାଇଁ ଯେଉଁ ସମୟ ଲାଗୁଥିଲା, ସେତିକି ସମୟ ମଧ୍ୟ ମୋ ପାଖରେ ନଥିଲା। ଅନ୍ୟ ଅଫିସ୍ ହୋଇଥିଲେ କିଛି ହାତଗୁଞ୍ଜା ଦେଇ କାମ ହାସଲ କରିନେବା କିଛି କଷ୍ଟସାଧ୍ୟ ବ୍ୟାପାର ନଥିଲା। ମାତ୍ର ସେତେବେଳେ ଜିଲ୍ଲା

ପୁଲିସ୍ ଅଫିସ୍‌ରେ କିମ୍ବା ସ୍ପେସାଲ ବ୍ରାଞ୍ଚ୍ ଏସ୍.ପି. ଅଫିସ୍‌ରେ ସେ ବ୍ୟବସ୍ଥା ନଥିଲା । ସମୟ କମ୍ ଥିବାରୁ ମନର ବ୍ୟଗ୍ରତା ବଢୁଥିଲା । ସେହିପରି ଅବସ୍ଥାରେ ଯାଇ ପାସପୋର୍ଟ ଅଫିସରଙ୍କୁ ଦେଖାକଲି । କେଜାଣି କାହିଁକି, ସେ ମହାଶୟ ମୋ ପ୍ରତି ସହାନୁଭୂତିଶୀଳ ହେଲେ । ଯେଉଁଦିନ ପୁଲିସ୍ ରିପୋର୍ଟ ଆସିବ, ସେଇଦିନ ସେ ପାସପୋର୍ଟ ଇସୁ କରିଦେବେ ବୋଲି ମତେ ଜବାବ ଦେଲେ ।

ସେତେବେଳେ ପୁଲିସ୍ ଡି.ଜି. ଥିଲେ ପ୍ରଫୁଲ୍ଲ ଚନ୍ଦ୍ର ରଥ । ଚେହେରା ଯେମିତି, କାମ ବି ସେମିତି । ଏକ ଅଭିଜାତ ବଂଶର ସନ୍ତାନ ଭାବରେ ପ୍ରଫୁଲ୍ଲବାବୁ ଅନ୍ୟମାନଙ୍କଠାରୁ ବାରି ହୋଇ ପଡୁଥିଲେ । ତାଙ୍କର ବଡ଼ ନିଶ ତାଙ୍କୁ ଖୁବ୍ ମାନେ । ତାଙ୍କର ତଳିଆ ଅଫିସରମାନେ ତାଙ୍କ ସମ୍ପର୍କରେ ଠାରରେ 'ମୁଷ୍ଟାସ' ବୋଲି ନିଜ ଭିତରେ କଥାବାର୍ତ୍ତା ହୁଅନ୍ତି । ତାଙ୍କ ସହିତ ମୋର ଖୁବ୍ ସଦ୍ଭାବ ଥିଲା । ମୁଁ ତାଙ୍କୁ ମୋ ମନର ଆବେଗ ଜଣାଇଲି । ସେ ସାନ୍ତ୍ୱନା ଦେଇ କହିଲେ, "ଓହୋ ! ଡୋଣ୍ଟ୍ ବଦର୍, ଦିସ୍ ୱିଲ୍ ବି ଡନ୍ ଇନ୍ ଟାଇମ୍ । ଯଦି ଅନ୍ୟମାନେ ଆପଣଙ୍କୁ ବିଦେଶ ଯିବାପାଇଁ ସାହାଯ୍ୟ କରୁଛନ୍ତି, ତେବେ ପୁଲିସ୍ ସଂସ୍ଥା କାହିଁକି ପଛେଇବ ?" ପ୍ରଫୁଲ୍ଲବାବୁଙ୍କର ପୁଲିସ ସଂସ୍ଥାରେ ପ୍ରତିଷ୍ଠା ଥିଲା । ଲୋକେ ତାଙ୍କୁ ଯେତିକି ଭୟ କରୁଥିଲେ, ସେତିକି ଶ୍ରଦ୍ଧା ମଧ୍ୟ କରୁଥିଲେ । ତଳିଆ ଅଫିସରମାନଙ୍କ ପାଇଁ ସେ ଆଦର୍ଶ ଥିଲେ । ପ୍ରଫୁଲ୍ଲବାବୁ ତାଙ୍କ କଥା ରକ୍ଷା କରି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ମୋ ସମ୍ପର୍କରେ ପାସପୋର୍ଟ ଅଫିସ୍‌କୁ ରିପୋର୍ଟ ପଠାଇବାର ବନ୍ଦୋବସ୍ତ କରିଦେଲେ । ସେ ରିପୋର୍ଟ ଦେଖି ପାସପୋର୍ଟ ଅଫିସର୍ ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ । ଏହା କିପରି ସମ୍ଭବ ହେଲା ? ଯେଉଁ ପୁଲିସ ଭେରିଫିକେସନ୍ ରିପୋର୍ଟ ଆସିବାକୁ ମାସ ମାସ ସମୟ ଲାଗେ, ତାହା ଏତେ ଶୀଘ୍ର କିପରି ଆସିଗଲା ?

ଯାହା ହେଉ, ଠିକ୍ ସମୟରେ ଦଶଟି ରାଷ୍ଟ୍ରର ଭିସା ଫର୍ମଗୁଡ଼ିକ ପୂରଣ କରି ପଠାଇ ଦେଲି । କେବଳ ସୋଭିଏଟ୍ ଋଷର ଫର୍ମ ଆସିନଥାଏ । କମ୍ୟୁନିଷ୍ଟ୍ ରାଷ୍ଟ୍ର ହିସାବରେ ସେ ରାଷ୍ଟ୍ରକୁ ଅଣ-କମ୍ୟୁନିଷ୍ଟମାନଙ୍କ ଯିବା ଉପରେ ସେତେବେଳେ କିଛିଟା ଅଘୋଷିତ କଟକଣା ଥିଲା । ଏ ବିଷୟ କେମିତି ଗିରିଜାବାବୁ ('ୟୁନିଭର୍ସ'ର ପ୍ରତିଷ୍ଠାତା ଗିରିଜାଭୂଷଣ ପଟ୍ଟନାୟକ)ଙ୍କ କାନକୁ ଆସିଲା । ସେ ମୋତେ କହିଲେ, "ତମର କିଛି ଅସୁବିଧା ହେବ ନାହିଁ । ବ୍ୟସ୍ତ ହୁଅନି, ସୋଭିଏଟ୍ ଭିସା କଲିକତାରୁ ମିଳିଯିବ ।" ସତକୁ ସତ ଗିରିଜାବାବୁଙ୍କ ସାହାଯ୍ୟରେ ମୁଁ କଲିକତା ଯାଇ ଗୋଟିଏ ଦିନରେ ଭିସା ଫର୍ମ ସଂଗ୍ରହ କରି ତାକୁ ଦିଲ୍ଲୀ ପଠାଇଦେଲି ।

ଭିସା, ପାସ୍‌ପୋର୍ଟ୍ ପରେ ଆସିଲା ଫରେନ୍ ଏକ୍ସଚେଞ୍ଜ୍ ଝମେଲା । ଆମକୁ ହଜାରେ ଡଲାର ମିଳିବା ପାଇଁ ରିଜର୍ଭବ୍ୟାଙ୍କରୁ ଅନୁମତି ମିଳିଥିଲା । କିନ୍ତୁ ଆଜିକାଲି ଭଳି ସେତେବେଳେ ଡଲାର ରାସ୍ତାଘାଟ, ହୋଟେଲ ବଜାରରେ ମିଳୁନଥିଲା । ସେଥିପାଇଁ

ଭୁବନେଶ୍ୱରରେ ଥିବା ରିଜର୍ଭ ବ୍ୟାଙ୍କ ଅଫିସକୁ ଦଉଡ଼ାଦଉଡ଼ି କରିବାକୁ ପଡ଼ିଲା । ସେଠାରେ ଅଧିକାଂଶ ଅଫିସର ଅଣଓଡ଼ିଆ । ଅନେକ ସମୟରେ ସେମାନେ ନିଜକୁ ବଡ଼ ବୋଲି ମନେ କରନ୍ତି । ଅନ୍ୟକୁ ସାହାଯ୍ୟ କରିବା ପରିବର୍ତ୍ତେ ସେମାନଙ୍କ ମନ ଭିତରେ କେମିତି ଗୋଟାଏ ଚାପା ଅସହଯୋଗ ମନୋଭାବ ଥାଏ । କିନ୍ତୁ ମୋର ସୌଭାଗ୍ୟ ଯେ, ମୋ କାମ ଯିଏ ଦେଖୁଥିଲେ, ସେ ଜଣେ ମହିଳା ଅଫିସର ଏବଂ ଖୁବ୍ ଭଦ୍ର । ମୁଁ ତାଙ୍କୁ ସାକ୍ଷାତ କରି ଟଙ୍କା ଋଣ ଆଣିବାଠାରୁ ଭିସାଫର୍ମ, ପାସ୍‌ପୋର୍ଟ ସଂଗ୍ରହ କିପରି ହେଲା ସବୁକଥା ଜଣାଇଲି । ସେ ମୋତେ ସାହାଯ୍ୟ କରିବେ ବୋଲି କେବଳ ଆଶ୍ୱାସନା ଦେଇ ବସିଗଲେ ନାହିଁ, ବ୍ୟକ୍ତିଗତ ଭାବରେ ଉଦ୍ୟମ କରି ଦୁଇଦିନ ଭିତରେ ଡଲାର ଦେବାର ବ୍ୟବସ୍ଥା କରିଦେଲେ । ଡଲାର ପାଇଗଲା ପରେ ବିଦେଶ ଗସ୍ତର ପ୍ରସ୍ତୁତି ପର୍ବ ଏକପ୍ରକାର ସରିଗଲା । ସେତେବେଳେ ଡଲାରର ବିନିମୟ ମୁଦ୍ରା ମାତ୍ର ବାରଟଙ୍କା ଥିଲା ।

## ଭୁବନେଶ୍ୱରରୁ ଗୁଆହାଟୀ ବିମାନଯାତ୍ରା

ଅପ୍ରେଲ ମାସ ପାଞ୍ଚ ଓ ଛଅ ତାରିଖରେ ଆସାମର ଗୁଆହାଟୀରେ ଭାରତୀୟ ପେସାଦାର ସାମ୍ବାଦିକ ମହାସଙ୍ଘ ଜାତୀୟ ପରିଷଦର ବୈଠକ ବସୁଥିଲା । ଅପ୍ରେଲ ଦଶ ତାରିଖରେ ଆମ ଟିମ୍ ବିଦେଶ ଯିବା ପାଇଁ ସମୟ ଧାର୍ଯ୍ୟ ହୋଇଥିଲା । ସେଥିପାଇଁ ମୁଁ ସ୍ଥିରକଲି, ଏକାଥରକେ ଗୁଆହାଟୀ ଯାଇ ସେଠାରୁ ଦିଲ୍ଲୀ ଚାଲିଯିବି । ସାମ୍ବାଦିକ ଦଳରେ ମୁଁ ଏକମାତ୍ର ଓଡ଼ିଆ ଥିବାରୁ ଏତେଦିନ ବିଦେଶରେ କିପରି କଟାଇବି, କାହା ସାଙ୍ଗରେ କଥାବାର୍ତ୍ତା ହେବି, ଏଇକଥା ମୁଣ୍ଡରେ ଢୁକି ମନଟା ଭାରାକ୍ରାନ୍ତ ହେଉଥିଲା । ମାତ୍ର ପର ମୁହୂର୍ତ୍ତରେ ମନରେ ସାନ୍ତ୍ୱନା ଭାବ ଆସିଲା । ମୁଁ ତ ଇଂରାଜୀ, ହିନ୍ଦୀ, ବଙ୍ଗଳା ଭାଷାରେ କଥାବାର୍ତ୍ତା କରିପାରେ, ଆଉ ଅସୁବିଧା କ'ଣ ହେବ ? ତା'ଛଡ଼ା ବିଦେଶରେ ତ ଇଣ୍ଟରପ୍ରିଟର ଅଛନ୍ତି । ବିଦେଶ ରାଷ୍ଟ୍ର ଯିବା ପାଇଁ ଦୀର୍ଘ ସମୟ ବିମାନ ଯାତ୍ରାର ଆବଶ୍ୟକତା ହେଉଥିବାରୁ ବିମାନଯାତ୍ରା ସହିତ ଖାପ ଖାଇବା ଉଦ୍ଦେଶ୍ୟରେ ଭୁବନେଶ୍ୱରରୁ କଲିକତା ବାଟ ଦେଇ ଗୁଆହାଟୀ ବିମାନରେ ଯିବାକୁ ସ୍ଥିର କଲି । ଇଣ୍ଡିଆନ୍ ଏୟାରଲାଇନ୍‌ସ୍‌ର ବିମାନରେ ପ୍ରଥମେ ଭୁବନେଶ୍ୱରରୁ ଦମ୍‌ଦମ୍ ବିମାନବନ୍ଦର ଓ ପରେ ସେଠାରୁ ଗୁଆହାଟୀ ଯିବାକୁ ହେଲା । ବିମାନରେ ମୁଁ ଏକା ଯିବି ବୋଲି ଭାବିଥିଲି । କିନ୍ତୁ ନଗେନ୍‌ବାବୁ (ବିଶିଷ୍ଟ ସାମ୍ବାଦିକ ନଗେନ୍ ବେଉରିଆ) ମୋ ସହିତ ବାହାରିଲେ । ଅସୁବିଧା ସତ୍ତ୍ୱେ ତାଙ୍କ ପାଇଁ ମୋତେ ବିମାନ ଟିକେଟ ଯୋଗାଡ଼ କରିବାକୁ ପଡ଼ିଥିଲା ।

ଗୁଆହାଟୀ ବିମାନବନ୍ଦରକୁ ଆମ ପାଇଁ ଗାଡ଼ି ଆସିଥିଲା ଏବଂ ସହରରେ ଆମ ପାଇଁ ରହିବାର ବନ୍ଦୋବସ୍ତ ମଧ୍ୟ କରାଯାଇଥିଲା । ଆମେ ଗାଡ଼ିରେ ଯାଇ ସମ୍ମିଳନୀ

ସ୍ଥାନରେ ପହଞ୍ଚିଲୁ । ଜାତୀୟ ପରିଷଦ ବୈଠକର ଆୟୋଜକ, ଆସାମ ସାମ୍ବାଦିକ ସଙ୍ଘର କର୍ମକର୍ତ୍ତାମାନେ ଆମକୁ ଦେଖି ଖୁବ୍ ଖୁସି ହୋଇଗଲେ; କାରଣ ଏହା ପୂର୍ବରୁ ଆସାମରେ କୌଣସି ସର୍ବଭାରତୀୟ ସାମ୍ବାଦିକ ସଙ୍ଗଠନର ଅଧିବେଶନ ଅନୁଷ୍ଠିତ ହୋଇନଥିଲା । ଆମ ରାଜ୍ୟର ପ୍ରତିନିଧିମାନେ ସେତେବେଳକୁ ଗୁଆହାଟୀରେ ପହଞ୍ଚି ନଥିଲେ । ସେମାନଙ୍କ ରହିବା ପାଇଁ ଜାଗା ଇତ୍ୟାଦିର ବ୍ୟବସ୍ଥା ଆମେ ଯାଇ ଦେଖିଲୁ । ଆସାମର ଲୋକମାନେ ଖୁବ୍ ମେଳାପୀ । ଅହମୀୟା (ଆସାମୀ) ଓ ଓଡ଼ିଆଭାଷା ମଧ୍ୟରେ ଅନେକ ସାମଞ୍ଜସ୍ୟ ଅଛି । କେବଳ ଉଚ୍ଚାରଣରେ ତାରତମ୍ୟ । ସେଥିପାଇଁ ସେମାନଙ୍କ ସହିତ କଥାବାର୍ତ୍ତା ହେବାରେ କିଛି ଅସୁବିଧା ହେଲା ନାହିଁ ।

ନଗେନ୍‌ବାବୁଙ୍କର ଖୁବ୍ ଓଡ଼ିଆ ପ୍ରୀତି । ଯୁଆଡ଼େ ଯାଆନ୍ତି, ଆଗ ଓଡ଼ିଆଙ୍କ ଖବର ନିଅନ୍ତି । ବନ୍ଧୁବାନ୍ଧବ, ସାଙ୍ଗସାଥୀ ଥିଲେ ଭଲ, ନହେଲେ ନୂଆ ଲୋକଙ୍କ ସାଙ୍ଗରେ ବନ୍ଧୁତା ଜମାନ୍ତି । ତାଙ୍କର ଜଣେ ଆତ୍ମୀୟ, ଗୁଆହାଟୀର ଗୋଟିଏ ବ୍ୟାଙ୍କ୍‌ର ମ୍ୟାନେଜର ଥିଲେ । ସେ ପ୍ରସ୍ତାବ ଦେଲେ ସନ୍ଧ୍ୟାବେଳେ ତାଙ୍କ ଘରକୁ ଯିବା । ସେଦିନ ଅଧିବେଶନ ଆରମ୍ଭ ହୋଇନଥାଏ । ପ୍ରତିନିଧିମାନେ ଆସୁଥାଆନ୍ତି । ସନ୍ଧ୍ୟାବେଳେ ଆମେ ବ୍ୟାଙ୍କ୍ ଅଫିସରଙ୍କ ଘରକୁ ବାହାରିଲୁ । ମୁଁ ଗାଡ଼ି ନେବାପାଇଁ କହୁଥିଲି, ମାତ୍ର ସେ କହିଲେ, "ଖରାଦିନ ସନ୍ଧ୍ୟାରେ ରିକ୍ସାରେ ଗଲେ ଭଲ ଲାଗିବ, ଗାଡ଼ି କ'ଣ ହବ ?" ସେଇୟା ହେଲା । ଆମେ ରାସ୍ତାକୁ ଯାଇ ରିକ୍ସା ଅପେକ୍ଷାରେ ରହିଲୁ । ହଠାତ୍ ୨୦/୨୨ ବର୍ଷର ଟୋକା ରିକ୍ସାବାଲାଟାଏ ଆମ ପାଖରେ ରିକ୍ସା ରଖିଲା । ନଗେନ୍‌ବାବୁ କିଛି ନବିଚାରି ତାକୁ ପଚାରିଲେ, "ହଇରେ ତୁ ଯିବୁ ?" ମୁଁ ତାଙ୍କୁ ଚେତେଇଦେଇ କହିଲି, "ଏଇଟା କ'ଣ କଟକ ନା ଭୁବନେଶ୍ୱର ହୋଇଛି ଯେ ଆପଣ ତାକୁ ଓଡ଼ିଆରେ ପଚାରୁଛନ୍ତି ?" ସେ କିନ୍ତୁ ଦୃଢ଼ ଥିଲେ; କହିଲେ, "ଆସାମରେ କ'ଣ କମ୍ ଓଡ଼ିଆ ଅଛନ୍ତି ? ତା'ଛଡ଼ା ସେ କ'ଣ ଆମ କଥା ବୁଝି ପାରିବ ନାହିଁ ?" ଆମେ ରିକ୍ସାରେ ବସି ଚାଲିଲୁ । ବାଟରେ ଗୋଟିଏ ପାନ ଦୋକାନ ପାଖରେ ନଗେନବାବୁ ରିକ୍ସା ରଖିଲେ । ଦୋକାନୀଙ୍କୁ ଓଡ଼ିଆରେ ପାନ ଭାଙ୍ଗିବାକୁ ବରାଦ ଦେଲେ । ସେଥିରେ ମଧ୍ୟ କିଛି ଅସୁବିଧା ହେଲାନାହିଁ । ଦୋକାନୀ ତାଙ୍କ ବାରଦ ମୁତାବକ ଅଖଇରିଆ, ଗୋପାଳ, କିମାମ୍, ପିପରମେଣ୍ଟ୍ ଦେଇ ପାନ ଭାଙ୍ଗିଦେଲା । ସେଠି ମଧ୍ୟ ସେ ଦୋକାନୀ ସାଙ୍ଗରେ ଓଡ଼ିଆରେ କଥାବାର୍ତ୍ତା ହେଲେ । ଦୋକାନୀ ଓଡ଼ିଆଭାଷାରେ ଉତ୍ତର ଦେଇ ପାରୁନଥିଲେ ବି ଆମ କଥାକୁ ଠିକ୍ ଭାବରେ ବୁଝି ପାରୁଥିଲା । ମୁଁ ନଗେନବାବୁଙ୍କ ବୁଦ୍ଧିକୁ ତାରିଫ୍ ନକରି ରହିପାରିଲି ନାହିଁ ।

## କାମାକ୍ଷାଦେବୀଙ୍କ ଦର୍ଶନ

ପିଲାଦିନେ ଅନେକ ଗପ ଶୁଣିଥିଲି । କାଉଁରୀ କାମାକ୍ଷା ଦେଶରେ କୁଆଡ଼େ ରାଜାଝିଅ, ରାଜାପୁଅକୁ ମନ୍ତ୍ର ବଳରେ ଦିନରେ ମେଣ୍ଢା କରି ପାଖେ ପାଖେ ରଖିଥାଏ

ଆଉ ରାତି ହେଲେ ତାକୁ ପୁଣି ଭେଣ୍ଡାକରି ତା' ସହିତ ସମ୍ଭୋଗ କରେ। କମ୍ ବୟସରେ ଏସବୁ ଗପ ଶୁଣିବାକୁ କିମ୍ବା ଏପରି କାହାଣୀ ଉପନ୍ୟାସ ପଢ଼ିବାକୁ ଭାରି ଭଲ ଲାଗୁଥିଲା। କେଇଜଣ ସାଙ୍ଗ ଏକାଠି ହେଲେ ଇଚ୍ଛା ଥାଉ ବା ନଥାଉ ଏମିତି ସବୁ ଗୁଲିଗପ ଜମିଯାଏ। ପରେ ହେତୁ ହେଲାରୁ ବୁଝିଲି ଯେ, ଆସାମର ରାଜଧାନୀ ଗୁଆହାଟୀରେ ଦେବୀ କାମାକ୍ଷାଙ୍କର ବିଜେସ୍ଥଳୀ ଥିବାରୁ ତାକୁ ହିଁ କାମାକ୍ଷା ଦେଶ ବୋଲି କୁହାଯାଉଥିଲା।

ଗୁଆହାଟୀ ଯାଇଥିଲା ବେଳେ ଦେବୀ କାମାକ୍ଷାଙ୍କ ଦର୍ଶନ ପାଇଁ ମନର ଆବେଗକୁ ଅଟାକଇ ହେଲା ନାହିଁ। ରାତିରେ ଭଲ ନିଦ ହେଲା ନାହିଁ ଓ ଖୁବ୍ ଭୋର୍‌ରୁ ନିଦ ଭାଙ୍ଗିଗଲା। ମୁଁ ନଗେନ୍‌ବାବୁଙ୍କୁ ଉଠାଇଦେଇ ମନର କଥା କହିଲି। ସେ ମୋ ପ୍ରସ୍ତାବ ସହିତ ରାଜି ହୋଇଗଲେ। ଶୀଘ୍ର ନିତ୍ୟକର୍ମ ସାରି କାମାକ୍ଷାଦେବୀଙ୍କ ଦର୍ଶନରେ ବାହାରିପଡ଼ିଲୁ। ଆମେ ଠାକୁରାଣୀଙ୍କ ପାଖରେ ପହଞ୍ଚିଲା ବେଳକୁ ଭିଡ଼ ନଥିଲା। ସେଠାକାର ଚଳଣିମୁତାବକ ଦେଉଳ ହତାରେ ଥିବା ପୋଖରୀରେ ଗୋଡ଼ହାତ ଧୋଇ ଦେବୀ ଦର୍ଶନ କଲୁ। ସେଠାରେ ଥିବା ପୁରୋହିତ ଦେବୀଙ୍କ ମହିମା ସମ୍ପର୍କରେ ଅନର୍ଗଳ କହି ଚାଲିଥାନ୍ତି; ଉଦ୍ଦେଶ୍ୟ, ଆମକୁ ତୁଷ୍ଟ କରି କିଛି ମୋଟା ଧରଣର ମାଲ୍ ଝାଡ଼ିବା। ନଗେନବାବୁ ଛାଡ଼ିବା ଲୋକ ନୁହନ୍ତି। ସେ ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଲେ ଜଗତର ନାଥ ଜଗନ୍ନାଥଙ୍କର ମହିମା କୀର୍ତ୍ତନ। ପଣ୍ଡାଏ ସେତିକିରୁ ବୁଝିଗଲେ ଯେ, ଏମାନଙ୍କଠାରୁ ବେଶି କିଛି ଝାଡ଼ି ହେବନାହିଁ। କିଛି ସମୟର ଆଳାପ ପରେ ତାଙ୍କ ସହିତ ଆମର ଆତ୍ମୀୟତା ବଢ଼ିଲା। ପୁରୀଧାମର ଲୋକ ହୋଇଥିବାରୁ ସେମାନେ ଆମ ପ୍ରତି ଜୁଲମ କରିବା ପରିବର୍ତ୍ତେ ଆମକୁ ଆଦର କଲେ, ପ୍ରସାଦ ଖୁଆଇଲେ।

## ତିନିସୁକିଆ ମେଲ୍‌ରେ ଗୁଆହାଟୀରୁ ନୂଆଦିଲ୍ଲୀ

ଜୁନ୍ ୧୧ ତାରିଖରେ ସାମ୍ବାଦିକ ପ୍ରତିନିଧି ଦଳ ଦିଲ୍ଲୀରୁ ମସ୍କୋ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେଦିନ ଜୁନ୍ ୮ ତାରିଖ। ମଝିରେ ମାତ୍ର ଦୁଇଦିନର ବ୍ୟବଧାନ। ମୋର ବିଦେଶ ଯିବା କାର୍ଯ୍ୟକ୍ରମ ସମ୍ପର୍କରେ ଆସାମର ବନ୍ଧୁମାନେ ଜଣିଥିବାରୁ ଟ୍ରେନ୍‌ରେ ଅଗ୍ରିମ ଟିକେଟର ବ୍ୟବସ୍ଥା କରିଥିଲେ। ତିନିସୁକିଆ ମେଲ୍‌ରେ ମୋର ରିଜର୍ଭେସନ୍ ହୋଇଥିଲା। ମୁଁ ସକାଳ ଓଳିର ପ୍ରାରମ୍ଭିକ ଅଧିବେଶନରେ ଅଂଶଗ୍ରହଣ କରି ଖରାବେଳେ ଟ୍ରେନ୍‌ରେ ଦିଲ୍ଲୀ ଯିବା ପାଇଁ ପ୍ରସ୍ତୁତ ହେବା ସମୟରେ ଆମ ଓଡ଼ିଶା ପ୍ରତିନିଧିଙ୍କ ସାଙ୍ଗରେ ଦେଖା ହୋଇଗଲା। ସେମାନେ ସେଦିନ ସକାଳେ ଭୁବେନେଶ୍ୱରରୁ ଯାଇ ଗୁଆହାଟୀରେ ପହଞ୍ଚିଥିଲେ।

ଦେଖାହେଲା ମାତ୍ରେ ଆରମ୍ଭ ହୋଇଗଲା କ୍ରୋଧମିଶା ଅଭିମାନ। କେତେ ରକମର ଅଭିଯୋଗ, "ଆପଣ କାହିଁକି ଆମକଥା ବୁଝିବେ? ଆପଣ ତ ବ୍ୟୋମଯାନରେ

ଛିବାଆସିବା କରୁଛନ୍ତି; ଟ୍ରେନ୍‌ରେ ପାଣି ଥିଲା କି ନାହିଁ, ବାଟରେ ଖାଇବା ମିଳିଲା କି ନାହିଁ, କିମ୍ବା ଆଉ କ'ଣ ଅସୁବିଧା ହେଲା ସେକଥା ବୁଝିବାକୁ ଆପଣଙ୍କୁ ବେଳ ନାହିଁ? ଆମେ ଆସି ପହଞ୍ଚି ନାହୁଁ, ଆପଣ ବାହାରିଲେଣି; ଏଠି ଆମକଥା କିଏ ବୁଝିବ?"

ଜୀବନର ଦୀର୍ଘ କୋଡ଼ିଏ ବର୍ଷ କାଳ ମୁଁ ଏସବୁ ଅଭିଯୋଗ ସହିତ ଅଭ୍ୟସ୍ତଥିଲି। ପ୍ରଥମେ ପ୍ରଥମେ ମନରେ ପ୍ରତିକ୍ରିୟା ହେଉଥିଲା। ମାତ୍ର ପରେ ସେସବୁ ଦେହସୁହା ହୋଇଯାଇଥିଲା। ତା'ଛଡ଼ା, ସେମାନଙ୍କୁ ଦୋଷ ଦେଇ ଲାଭ କ'ଣ? ସେମାନଙ୍କ ଭିତରୁ କିଏ ପ୍ରଥମଥର ପାଇଁ ଟ୍ରେନ୍ ଚଢୁଥିଲେ ତ ଆଉ କିଏ ପ୍ରଥମେ ଘର ଛାଡ଼ି ବାହାରକୁ ଯାଇଥିଲେ। ବାଟରେ ସାମାନ୍ୟ ଅସୁବିଧା ହେଲେ ସେମାନେ ତ ପୁଣି କାହାକୁ କହିବେ?

ଆମ ଭାଇମାନଙ୍କୁ ବୁଝାବୁଝି କରି ସେମାନଙ୍କର ରହିବାର ବନ୍ଦୋବସ୍ତ ସାଙ୍ଗକୁ ଖାଦ୍ୟପେୟର ବ୍ୟବସ୍ଥା କଲି। ଆସାମ ଓ ଆମ ଭିତରେ ଅନେକ ସାମଞ୍ଜସ୍ୟ। ଖାଇବା ପିଇବା, ଲୁଗାପଟା ଓ କଥାବାର୍ତ୍ତାରେ ଅନେକ ମେଳ। ଆମ ଭାଇମାନେ ଗାଧୁଆପାଧୁଆ ଓ ମଧ୍ୟାହ୍ନ ଭୋଜନ କରିସାରିବା ପରେ ସେମାନଙ୍କ ମନର ଅଭିମାନ କୁଆଡ଼େ ଉଭେଇଗଲା। ମତେ ଷ୍ଟେସନ୍‌ରେ ଛାଡ଼ିବା ପାଇଁ କିଛି ସାଥୀ ବାହାରିଲେ। ମୋର ବାରଣ କିଛି କାମ ଦେଲା ନାହିଁ। ଆସାମ ବନ୍ଧୁମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ମଧ୍ୟ ଷ୍ଟେସନ୍ ଆସିଥିଲେ। ମୋଟାମୋଟି ଭାବରେ ଗୁଆହାଟୀ ଷ୍ଟେସନ୍‌ରେ ମତେ ଏକପ୍ରକାର ଭି.ଆଇ.ପି. ଟ୍ରିଟ୍‌ମେଣ୍ଟ୍ ମିଳିଲା। ମୁଁ ବିଦେଶ ଗସ୍ତରେ ଯାଉଥିବାରୁ ଷ୍ଟେସନ୍ ମାଷ୍ଟରଙ୍କଠାରୁ ଆରମ୍ଭ କରି ଅନ୍ୟମାନେ ସମସ୍ତେ ପୁଷ୍ପଗୁଚ୍ଛ ନେଇ ଶୁଭେଚ୍ଛା ଜଣାଇଲେ। ସେ ଦିନର ସେ ଶୁଭେଚ୍ଛାରେ ମୁଁ ଅଭିଭୂତ ହୋଇଯାଇଥିଲି।

ଠିକ୍ ସମୟରେ ଟ୍ରେନ୍ ଆସି ପହଞ୍ଚିଲା। ମୋର ସିଟ୍ ଖୋଜି ସବୁ ଜିନିଷପତ୍ର ରଖିବାରେ ବନ୍ଧୁମାନେ ସାହାଯ୍ୟ କଲେ। ମୁଁ ସେମାନଙ୍କୁ କୃତଜ୍ଞତା ଜଣାଇ ଗାଡ଼ିରେ ବସିଲି ଓ ଗାଡ଼ି ଷ୍ଟେସନ୍ ଛାଡ଼ିଲା। ଜୁନ୍ ୧୦ ତାରିଖ ସକାଳେ ତିନିସୁକିଆ ମେଲ୍ ନୂଆଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଲା। ଟ୍ରେନ୍‌ରୁ ଓହ୍ଲାଇଲାବେଳେ ଦେହହାତ ଅବଶ ଲାଗୁଥିଲା। ଟ୍ରେନ୍‌ରେ ଆଗରୁ ସିଟ୍ ରିଜର୍ଭେସନ୍ ଥିଲେ ବି ବାଟରେ ସେ ଡବାରେ କିଛି ଫଉଜୀ ପଶିଲେ। ସେମାନଙ୍କ ମୁଭମେଣ୍ଟ୍ ଅର୍ଡର୍ ହୋଇଥିଲା ଏବଂ ସେମାନେ ସାଙ୍ଗରେ ସେମାନଙ୍କର ସବୁ ଜିନିଷ ନେଉଥିଲେ। ଡବାର ଚାରିଆଡ଼େ ଲୋକ ଓ ଜିନିଷ। ଶୋଇବା ତ ଦୂରର କଥା, ଆରାମରେ ବସିବା କିମ୍ବା ଶୌଚାଳୟକୁ ଯିବା ମଧ୍ୟ ସମ୍ଭବ ନଥିଲା। ଅନ୍ୟ ଯାତ୍ରୀ ହୋଇଥିଲେ ଯାହା ବା ହୋଇଥା'ନ୍ତା, କିନ୍ତୁ ଫଉଜୀମାନଙ୍କ ସହିତ ଝଗଡ଼ା କରି କିଏ କାହିଁ ବିପଦକୁ ବରଣ କରିବ? ସେମାନଙ୍କର ବା ଭୁଲ୍ କ'ଣ? ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବାକୁ ଅର୍ଡ଼ର ପାଇଲା ମାତ୍ରେ ସେମାନେ ଗୋଟିଏ

ମୁହୂର୍ତ୍ତ ସମୟ ନଷ୍ଟ କରନ୍ତି ନାହିଁ। ଆଉ ସେପରି କ୍ଷେତ୍ରରେ ସମସ୍ତଙ୍କ ପାଇଁ ଗୋଟିଏ ଟ୍ରେନ୍‌ରେ ରିଜର୍ଭେସନ୍ କୋଉଠୁ ବା ମିଳିବ ?

ଜୁନ୍ ମାସର ଦ୍ୱିତୀୟ ସପ୍ତାହ। ଗରମରେ ଦିଲ୍ଲୀ ପ୍ରାୟ ଜଳୁଥାଏ। ଖରାଦିନେ ଦିଲ୍ଲୀର ଗରମ ଅତି ଅସହ୍ୟ। ଦେହରୁ ଝାଳ ସିନା ବୁହେନାହିଁ, କିନ୍ତୁ ଗରମରେ ଦେହ ଓ ମନ ଅସ୍ଥିର ହୋଇଯାଏ। ହାତରେ ସମୟ ଚବିଶିଘଣ୍ଟାରୁ କମ୍। ଓଡ଼ିଶା ଏମ୍ପୋରିୟମ୍‌ରୁ କିଛି ଜିନିଷ କିଣିବାର ଥିଲା। ବିଦେଶ ଯିବାବେଳେ ପ୍ରତ୍ୟେକ ରାଜ୍ୟର କିଛି ପ୍ରେଜେଣ୍ଟେସନ୍ ଜିନିଷ ସାଙ୍ଗରେ ନେବାପାଇଁ ଆମକୁ କୁହାଯାଇଥିଲା। ବ୍ୟସ୍ତରେ ରହି ମୁଁ ଓଡ଼ିଶାରୁ କିଛି କିଣି ପାରିନଥିଲି। ସେଥିପାଇଁ ସକାଳୁ କାମଦାମ ସାରି ବାବା ଖଡ଼ଗ ସିଂ ମାର୍ଗରେ ଥିବା ଓଡ଼ିଶା ଏମ୍ପୋରିୟମ୍‌ରେ ଢୁକିଲି। ଓଡ଼ିଶାର ତାରକସି କାମ ଓ ସମ୍ବଲପୁର ରୁମାଲର ଦେଶବିଦେଶରେ ଖୁବ୍ ପ୍ରସିଦ୍ଧି। ତେଣୁ ମୁଁ ତାରକସି ଟାଇ କ୍ଲିପ୍ ଓ ଝିଅମାନଙ୍କ ପାଇଁ କିଛି ମୀନା କରା ମୁଦି ଓ ସମ୍ବଲପୁରୀ ରୁମାଲ ସଂଗ୍ରହ କଲି। ଆମ ରାଜ୍ୟରୁ ମୁଁ ଏକା ଥିବାରୁ ସବୁକାମ ମତେ କରିବାକୁ ପଡ଼ିଥିଲା। ବିଦେଶ ଯିବା ପୂର୍ବଦିନ ସନ୍ଧ୍ୟାରେ କସ୍ତୁରବା ଗାନ୍ଧୀ ମାର୍ଗରେ ଥିବା ଆମ ଫେଡେରେସନ୍ (ଆଇ.ଏଫ୍.ଡବ୍ଲ୍ୟୁ.ଜେ) ଦପ୍ତରରେ ଏକ ବୈଠକ ଡକାଯାଇଥିଲା। ଉଦ୍ଦେଶ୍ୟ, ବିଦେଶରାଷ୍ଟ୍ରରେ କିପରି ଚଳିବାକୁ ହେବ, କିପରି କଥାବାର୍ତ୍ତା କରିବାକୁ ହେବ, ସେଠାକାର ଆଦବ କାଏଦା ସହିତ ନିଜକୁ କିପରି ଖାପଖୁଆଇବାକୁ ପଡ଼ିବ, ସେ ବିଷୟରେ ଏକ ସଂକ୍ଷିପ୍ତ ତାଲିମ। ଠିକ୍ ସମୟରେ ମୁଁ ଅଫିସ୍‌ରେ ପହଞ୍ଚିଲି। ଅନ୍ୟମାନେ ମଧ୍ୟ ଆସିଗଲେ। ଦେଶର ୧୨ଟି ରାଜ୍ୟରୁ ୨୫ଜଣ ପ୍ରତିନିଧି ଆମ ଦଳରେ ସାମିଲ ହୋଇଥିଲେ। ପୂର୍ବରୁ ସମସ୍ତଙ୍କର ପାସପୋର୍ଟ, ଭିସା, ଫରେନ୍ ଏକ୍ସଚେଞ୍ଜ ଇତ୍ୟାଦି ଯୋଗାଡ଼ ସରିଥିଲା।

ପ୍ରଥମେ ଆମର ଦିଲ୍ଲୀରୁ ମସ୍କୋ ଓ ମସ୍କୋରୁ ଉତ୍ତର କୋରିଆର ରାଜଧାନୀ ପୋଙ୍ଗ୍‌ୟଙ୍ଗ୍ ଯିବାର ଥିଲା। ପ୍ରତିନିଧି ଦଳ ଯିବା ପୂର୍ବରୁ ଆମ ସଭାପତି ବିକ୍ରମ ରାଓ ସେସବୁ ସ୍ଥାନ ବୁଲି ଆସିଥିଲେ ଏବଂ ସେଠାକାର ଆଦବ କାଏଦା ସହିତ ପରିଚିତ ହୋଇ ସାରିଥିଲେ। ସେସବୁ ରାଷ୍ଟ୍ରରେ ଲୋକେ କିପରି ଝାଡ଼ା ଫେରିବା ପରେ ପାଣି ସାରନ୍ତି ନାହିଁ କିମ୍ବା ଖାଇବା ପରେ ପାଣି ପିଅନ୍ତି ନାହିଁ, ସେକଥା ଶ୍ରୀ ରାଓ ଆମକୁ ସୂଚାଇ 'ଯେ ଦେଶ ଯାଇ ସେ ଫଳ ଖାଇ' ନ୍ୟାୟରେ ବିଦେଶରେ ପରିସ୍ଥିତି ସହିତ ଖାପ ଖୁଆଇ ଚଳିବାକୁ ପରାମର୍ଶ ଦେଲେ। ଆମେ ସେଦିନ ରାତିରେ ଅଫିସରେ ଏକାଠି ଭୋଜନ କଲୁ।

## ଦିଲ୍ଲୀରୁ ମସ୍କୋ ଯାତ୍ରା

ରାତିରେ ଭଲ ନିଦ ହେଲା ନାହିଁ। ମନ ଖାଲି ଛଟପଟ ହେଉଥାଏ। ଛାଇନିଦ ଭିତରେ କେତେବେଳେ ସକାଳ ହୋଇଗଲା ଜାଣି ହେଲାନାହିଁ। ଗୋଟାଏ ବେଳେ

ପ୍ଲେନ୍ ଟାଇମ୍। ଦିଲ୍ଲୀର ଇନ୍ଦିରାଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦର ଦେଶର ସବୁଠାରୁ ବଡ଼ ବିମାନବନ୍ଦର। ଆଗରୁ ଏହାର ନାଁ ପାଲାମ ବିମାନବନ୍ଦର ଥିଲା। ପରେ ଇନ୍ଦିରାଗାନ୍ଧୀଙ୍କ ନାଁରେ ଏହାକୁ ନାମିତ କରାଯାଇଥିଲା। ବିମାନବନ୍ଦରରେ ଦୁଇଟି ପୃଥକ ମାର୍ଗ। ଗୋଟିଏ ଆରାଇଭାଲ୍ ଓ ଅନ୍ୟଟି ଡିପାରଚର୍ ପାଇଁ। ଲଗେଜ୍ ଚେକ୍ ଅପ୍, ଇମିଗ୍ରେସନ୍ ଚେକ୍, ସିକ୍ୟୁରିଟି ଚେକ୍ ଇତ୍ୟାଦି ପାଇଁ ପ୍ରାୟ ଘଣ୍ଟାଏ ସମୟ ଦରକାର। ସେଥିପାଇଁ ଆମକୁ ମଧ୍ୟାହ୍ନ ବାରଟା ସୁଦ୍ଧା ବିମାନ ବନ୍ଦରରେ ପହଞ୍ଚିବାକୁ କୁହାଯାଇଥିଲା।

## ଜୁନ୍ ମାସରେ ଗରମ ସୁଟ୍

ମସ୍କୋର ଉତ୍ତାପ ଶୂନ୍ୟ ଡିଗ୍ରୀରୁ ମାଇନସ୍ ପାଞ୍ଚ ଡିଗ୍ରୀ ସେଲ୍‌ସିଅସ୍ ପର୍ଯ୍ୟନ୍ତ ରହୁଥିବାରୁ ଫୁଲ୍ ସୁଏଟର୍ ସାଙ୍ଗକୁ ଉଲେନ୍ ସୁଟ୍ ପିନ୍ଧିବାକୁ ଆମେ ଯେପରି ନଭୁଲୁ ସେଥିପାଇଁ ବିକ୍ରମବାବୁ ଆମକୁ ବାରମ୍ବାର ଚେତେଇ ଦେଇଥିଲେ। ଅପ୍ରେଲ ମାସରେ ହାୱାଇନ୍ ସାର୍ଟ ଖଣ୍ଡେ ପିନ୍ଧିଲେ ଗରମରେ ରହି ହେଉନଥାଏ, ସେଥିରେ ଫୁଲ୍ ସୁଏଟର୍ ଓ ଉଲେନ୍ ସୁଟ ? କିନ୍ତୁ କ'ଣ କରାଯିବ? ବାଧ୍ୟ ହୋଇ ସେସବୁ ପିନ୍ଧିବାକୁ ପଡ଼ିଲା। ଦିଲ୍ଲୀର ସ୍ୱଳ୍ପକାଳୀନ ରହଣି ମଧ୍ୟରେ ମୁଁ କନଟ୍‌ପ୍ଲେସ୍ ଯାଇ କେତେକ ପୋଷାକପତ୍ର କିଣିଥିଲି। ସେତେବେଳେ 'ଷ୍ଟୋନ୍‌ୱାସ୍'ର ଜୀନ୍‌ପ୍ୟାଣ୍ଟ୍ ବାହାରିଥିଲା। ସେଥିରୁ ଗୋଟାଏ କିଣିଲି। ଭିତରେ ପିନ୍ଧିବାକୁ ଉଲେନ୍ ସ୍ଲାକ୍। ଏସବୁ କିଣିଲାବେଳେ ଭାରି ଅଡୁଆ ଅଡୁଆ ଲାଗୁଥିଲା; କାରଣ ହେତୁ ପାଇଲାଦିନୁ ମୁଁ ଖଦିବସ୍ତ୍ର ପିନ୍ଧିବାରେ ଅଭ୍ୟସ୍ତ। ଏପରିକି ଗଞ୍ଜି ଓ ଗାମୁଛା ମଧ୍ୟ ଖଦିର। ମୋର ଗୋଟିଏ କାଣ୍ଡିଆ ସୁଟ୍ ଥିଲା। କଟକରୁ ଗୋଟିଏ ଉଲେନ୍ ସୁଟ୍ ତିଆରି କରିଥିଲି। ତା'ଛଡ଼ା ବନ୍ଧୁ ମଦନମୋହନ ମହାନ୍ତିଙ୍କଠାରୁ ତାଙ୍କ ଓଭର୍‌କୋଟ୍‌ଟି ମଧ୍ୟ ମାଗି ନେଇଥିଲି। ସେ ଓଭରକୋଟ ଉଭୟ କୋଟ୍ ଓ ବର୍ଷାତି ଭଳି କାମ ଦେଲା। ଶ୍ରୀ ମହାନ୍ତି କମନ୍ ୱେଲ୍‌ଥ ଟ୍ରେନିଂରେ ଯାଇଥିଲାବେଳେ ସେଇଟି ଲଣ୍ଡନ୍‌ରୁ ଆଣିଥିଲେ।

ଦିଲ୍ଲୀରେ ମୁଁ ଡକ୍ଟର ଜୟଚନ୍ଦ୍ର ଦାସ (ମୋ ଧର୍ମପତ୍ନୀଙ୍କ କନିଷ୍ଠ ଭ୍ରାତା)ଙ୍କ ଘରେ ରହିଥିଲି। ସେ ମତେ ଛାଡ଼ିବାକୁ ବିମାନବନ୍ଦରକୁ ଯାଇଥିଲେ। ସେଠାରେ ଅନ୍ୟ ମନ୍ଧୁମାନଙ୍କ ସହିତ ତାଙ୍କର ପରିଚୟ ହେଲା। ବିମାନ ଛାଡ଼ିବା ପର୍ଯ୍ୟନ୍ତ ରହିବାକୁ ଡାକ୍ତରବାବୁ ଚାହୁଁଥିଲେ, ହେଲେ ବନ୍ଧୁମାନେ ତାଙ୍କୁ ବୁଝାସୁଝା କରି ଫେରେଇଦେଲେ। ବିମାନବନ୍ଦରରେ ପହଞ୍ଚିଲାବେଳକୁ ଝାଳରେ ପୋଷାକପତ୍ର ସବୁ ଓଦା ହୋଇ ଏକପ୍ରକାର ଅଣନିଃଶ୍ୱାସୀ ଲାଗୁଥିଲା। ଆମେ ଆଉ କାଳବିଳମ୍ବ ନକରି ବିମାନବନ୍ଦରର ଶୀତତାପ ନିୟନ୍ତ୍ରିତ କକ୍ଷକୁ ପଶିଗଲୁ। ଯଥା ସମୟରେ ଆମର ପାସପୋର୍ଟ, ଭିସା ଓ ଇମିଗ୍ରେସନ୍

ଇତ୍ୟାଦି ଚେକ୍ ସରିଗଲା। ଖାଲି ବାକି ରହିଲା ସିକ୍ୟୁରିଟି ଚେକ୍ ଓ ବିମାନ ଛାଡ଼ିବା ପାଇଁ ଆନାଉନ୍ସ ହେଲେ ଭିତରକୁ ଯିବା କଥା।

ଆମେ ବିମାନବନ୍ଦରର ଲାଉଞ୍ଜରେ ବସି ନିଜ ନିଜ ଭିତରେ କଥାବାର୍ତ୍ତା ହେଉଛୁ; ହଠାତ୍ ମାଇକ୍ରୋଫୋନ୍ ବାଜି ଉଠିଲା, "ବିମାନଯାତ୍ରୀମାନେ ଦୟାକରି ଧ୍ୟାନ ଦିଅନ୍ତୁ, ନୂଆଦିଲ୍ଲୀରୁ ମସ୍କୋ ଯାଉଥିବା ଏୟାରଇଣ୍ଡିଆର ୭୦୭ ବୋଇଂ ବିମାନ ଗୋଟାଏ ବାଜି ପଇଁତିରିଶି ମିନିଟ୍‌ରେ ଛାଡ଼ିବ। ଯାତ୍ରୀମାନେ ସିକ୍ୟୁରିଟି ଚେକ୍ ହୋଇ ବିମାନ ଭିତରକୁ ଯିବାକୁ ଅନୁରୋଧ।"

ଯେଉଁ ମୁହୂର୍ତ୍ତକୁ ଅନେକ ଦିନୁ ଅପେକ୍ଷା ଥିଲା, ସେ ମୁହୂର୍ତ୍ତ ଆସି ପହଞ୍ଚିଯିବାରୁ ମନ ଭିତରେ କେମିତି ଗୋଟିଏ ପୁଲକ ସୃଷ୍ଟି ହେଲା। ଆଗରୁ ଆମର ଲଗେଜ୍ ସବୁ ଚେକ୍ ହୋଇ ବୁକିଂ ସରିଥିଲା। ସାଙ୍ଗରେ ଗୋଟିଏ ହାଣ୍ଡ୍‌ବ୍ୟାଗ୍। ଲଗେଜ୍ କହିଲେ, ଲୁଗାପଟା ଓ ଚଳିବାପାଇଁ ଆବଶ୍ୟକ ଜିନିଷ ଥାଇ ଗୋଟିଏ ସୁଟ୍‌କେଶ୍। ଆଉ ଅଧିକ ପଦାର୍ଥ ନେବାର ଆବଶ୍ୟକତା କିମ୍ବା ସୁବିଧା ନଥିଲା; କାରଣ ବିମାନରେ ଯିବା ସମୟରେ ଜଣେ ଯାତ୍ରୀଙ୍କୁ ୨୦ କିଲୋଗ୍ରାମ୍ ଓଜନର ବ୍ୟକ୍ତିଗତ ଲଗେଜ୍ ନେବାପାଇଁ ଅନୁମତି ଥିଲା। ତା'ଉପରେ ପ୍ରତି କିଲୋଗ୍ରାମ ଓଜନର ଅଧିକ ଲଗେଜ୍ ପ୍ରତି ଦୂରତ୍ୱ ଅନୁଯାୟୀ ମହାସୁଲ୍ ଦେବାକୁ ପଡୁଥିବାରୁ ଆମେ ସମସ୍ତେ ସାବଧାନ ଥିଲୁ।

ଲାଉଞ୍ଜରୁ ବାହାରି ବିମାନ ଭିତରକୁ ଯିବା ବାଟରେ 'ଡିଉଟି ଫ୍ରି ସପ୍'। ନାନା ଦେଶର, ନାନା ଜାତିର ପଦାର୍ଥମାନ ସେଠାରେ ମିଳେ। ଆମେ ସବୁ ବିଦେଶ ଯାଉଥିବାରୁ ସେସବୁ ପଦାର୍ଥ ଏଠାରେ କିଣିବାର କ'ଣ ଆବଶ୍ୟକତା ରହିଛି ବୋଲି ମୁଁ ଭାବୁଥିଲି; କିନ୍ତୁ ଆମ ଭିତରେ ସମସ୍ତଙ୍କର ଏ ଚିନ୍ତାଧାରା ନଥିଲା। ଆମେ ବିମାନବନ୍ଦର ଭିତରକୁ ଆସିଲାବେଳେ ଆମକୁ ଭାରତୀୟ ଟଙ୍କା ବଦଳରେ ବାଟରେ ଖର୍ଚ୍ଚ କରିବା ପାଇଁ ୨୦ ଡଲାର ମିଳିଥିଲା। ମୁଁ ଭାବୁଥିଲି ବିମାନରେ ତ ଯିବା, ବିଦେଶରେ ଆମର ରହିବା ଖାଇବା ବ୍ୟବସ୍ଥା ସବୁ ହୋଇଛି, ପୁଣି ବାଟରେ ଖର୍ଚ୍ଚ କ'ଣ ?

ଏୟାର ଇଣ୍ଡିଆର ୭୦୭ ବୋଇଂ ବିମାନ 'ଧଉଳଗିରି'। ବେଶ୍ ପ୍ରଶସ୍ତ। ବିମାନରେ ଯାତ୍ରୀ ମାତ୍ର ୩୫ଜଣ। ସେଥିମଧ୍ୟରୁ ଆମ ଦଳର ୨୪ଜଣ ଓ ଭାରତ ସରକାରଙ୍କର କେତେକ ଉଚ୍ଚପଦସ୍ଥ ଅଫିସର। ଝରକା ପାଖରେ ବସିଲେ ବାହାରର ଦୃଶ୍ୟ ଉପଭୋଗ କରିବା ଉଦ୍ଦେଶ୍ୟରେ ମୁଁ 'ୱିଣ୍ଡୋ ସିଟ୍' ଦଖଲ କରି ବସିଥିଲି। ସେ ସ୍ଥାନଟି 'ନୋ-ସ୍ମୋକ୍' ଜୋନ୍। ଅର୍ଥାତ୍ ସେ ପାଖରେ ବସିଥିବା ବିମାନଯାତ୍ରୀମାନଙ୍କୁ ସିଗାରେଟ୍ ପିଇବା ମନା।

ଠିକ୍ ଅପରାହ୍ନ ଗୋଟାଏ ବାଜି ପଇଁତିରିଶି ମିନିଟ୍‌ରେ 'ଧଉଳଗିରି' ବିମାନବନ୍ଦର ଛାଡ଼ିଲା। ପୂର୍ବରୁ ଅଣ୍ଟାରେ ବେଲ୍ଟ ବାନ୍ଧିବାକୁ ଓ ସିଗାରେଟ୍ ନ ପିଇବାକୁ ଏୟାର୍‌ହୋଷ୍ଟେସ୍

ବାରମ୍ବାର ଅନୁରୋଧ କରିଥିଲେ। ବିମାନ ଛାଡ଼ିଲାବେଳକୁ ମନରେ ନୂତନ ପୁଲକ ଓ ନୂତନ ଅନୁଭୂତି। ମୁଁ ଦେଖିଲି ମୋ ପାଖ ସିଟ୍‌ରେ ବସିଥିବା ଅହମଦାବାଦର ଘନଶ୍ୟାମଭାଇ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ହାତଟେକି ପ୍ରଣାମ କରୁଥିଲେ। ଅବଶ୍ୟ କାହା ଉଦ୍ଦେଶ୍ୟରେ ତାଙ୍କର ପ୍ରଣାମ ଉଦ୍ଦିଷ୍ଟ ଥିଲା ସେକଥା ମୁଁ ତାଙ୍କୁ ପଚାରି ନଥିଲି। ତେବେ ତାଙ୍କର ଓ ଅନ୍ୟ ସହଯାତ୍ରୀଙ୍କର ଯାତ୍ରା ସଫଳ ହେଉ ଏଇକଥା ମନାସି ସେ ପ୍ରଣାମ କରୁଥିଲେ ବୋଲି ପରେ ନିଜେ ଘନଶ୍ୟାମ ଭାଇ ମତେ ସୂଚାଇଥିଲେ।

କିଛି ସମୟ ଭିତରେ ଆମ ଭିତରେ କିପରି ଏକ ଚାପା ଗୁଞ୍ଜରଣ ଶୁଣିବାକୁ ମିଳିଲା। ଖବର ନେଇ ବୁଝିଲି ଆମ ସାଙ୍ଗରେ ସହଯାତ୍ରୀ ଥିଲେ ଆମ ଦେଶର ପ୍ରଥମ ମହାକାଶଚାରୀ ରାକେଶ ଶର୍ମା। ପ୍ରଥମେ ଏକଥା ବିଶ୍ୱାସ ହେଉ ନ ଥିଲା। କିନ୍ତୁ ତାଙ୍କୁ ଆଖିରେ ଦେଖିଲା ପରେ ସନ୍ଦେହ ଦୂର ହେଲା। ଭାରତୀୟ ମହାକାଶ ଗବେଷଣା କେନ୍ଦ୍ର ସମ୍ପର୍କରେ ଆଲୋଚନା କରିବା ଉଦ୍ଦେଶ୍ୟରେ ଶ୍ରୀ ଶର୍ମା ମସ୍କୋ ଯାଉଥିଲେ। ତାଙ୍କ ଆଚରଣ ଯେତିକି ଭଦ୍ର, ପୋଷାକ ପରିଚ୍ଛଦ ମଧ୍ୟ ସେତିକି ମାର୍ଜିତ। ଆମ ସଭାପତି ଶ୍ରୀ ରାଓ ଆନୁଷ୍ଠାନିକ ଭାବରେ ତାଙ୍କ ସହିତ ଆମର ପରିଚୟ କରାଇ ସମଗ୍ର ଭାରତବର୍ଷର ପ୍ରତିନିଧି ସେ ବିମାନରେ ଥିବା କଥା ଉଲ୍ଲେଖ କରିଥିଲେ। ଶ୍ରୀ ଶର୍ମା ଆମକୁ ଦେଖି ଆନନ୍ଦ ପ୍ରକାଶ କରିବା ସହିତ ବ୍ୟକ୍ତିଗତ ଭାବରେ ଆମ ସହିତ କରମର୍ଦ୍ଦନ କରିଥିଲେ। ବହୁ ଅନୁରୋଧ ପରେ ସେ ମହାକାଶ ଯାତ୍ରା ସମ୍ପର୍କରେ ତାଙ୍କ ବିରଳ ଅନୁଭୂତି ସମ୍ପର୍କରେ ଆମକୁ ସାମାନ୍ୟ ସୂଚନା ଦେଇଥିଲେ। ତାଙ୍କ ସହିତ କେତୋଟି ମୁହୂର୍ତ୍ତର ଆଳାପ ଆଜି ବି ଅଭୁଲା ରହିଛି।

## ବିମାନ ଭିତରେ ସୋମରସର ଆସର

ଆମର ସହଯାତ୍ରୀମାନେ କ'ଣ କରୁଛନ୍ତି ଦେଖିବାକୁ ମୁଁ ଟିକିଏ ପଛଆଡ଼କୁ ଚାଲିଗଲି। ସେଠାରେ ଯାହା ଦୃଶ୍ୟ ହେଲା, ସେଥିରେ ମୁଁ ନିଜକୁ ନିଜେ ବିଶ୍ୱାସ କରି ପାରିଲି ନାହିଁ। ମୁଁ ନିଜେ ଠିକ୍ ଅଛି କି ନାହିଁ, ସେଥିରେ ସନ୍ଦେହ ଜାତ ହେଲା। ଆମର ପ୍ରାୟ ଦଶଜଣ ବନ୍ଧୁ ନିବିଷ୍ଟ ଚିତ୍ତରେ ସୋମରସ ପାନ କରିବାରେ ମଜ୍ଜି ଯାଇଥିଲେ। ଆଉ ଚାରିଜଣ ତାସ ଖେଳରେ ମସ୍‌ଗୁଲ୍ ଥିଲେ। ସେମାନଙ୍କୁ ଦେଖି ଆମେ ଯେ ବିମାନରେ ଯାତ୍ରା କରୁଛୁ, ସେଥିରେ ଭ୍ରମ ସୃଷ୍ଟି ହେଲା। କିନ୍ତୁ ସେମାନଙ୍କର କୋଉକଥାକୁ ଖାତିର ନଥିଲା କିମ୍ବା କାହାଆଡ଼କୁ ନଜର ନଥିଲା। ନଜର କେବଳ 'ଜନିଓ୍ୱାକର' ଆଡ଼େ। ମାତ୍ର କୋଡ଼ିଏ ମିନିଟ୍ କି ଅଧଘଣ୍ଟାଏ ସମୟ ମଧ୍ୟରେ ବିମାନ ଭିତରେ ଏତେ ଜିନିଷ ଏମାନେ ଯୋଗାଡ଼ କଲେ କିପରି ? ହଠାତ୍ 'ଜନିଓ୍ୱାକର୍' ଆସିଲା କେଉଁଠୁ ? ତା'ପରେ ଗ୍ଲାସ୍, ସୋଡ଼ା, ପାଣି ଇତ୍ୟାଦି କିଏ କୋଉଠୁ ଆଣିଲା ? ମୁଁ ଏହାର ଏକ

ସନ୍ତୋଷଜନକ ଉତ୍ତର ପାଇବା ପାଇଁ ଚିନ୍ତା କରୁଛି; ପଛରୁ ବନ୍ଧୁ ପ୍ରକାଶ ଦୁବେ ଚାପା ଗଳାରେ କହିଲେ, "କ୍ୟା ସୋଚ୍ ରହେ ହୋ ଦାସ୍ ସାହେବ୍? ଇନ୍ ଲୋଗୋଁକା ଅଭ୍ୟାସ ଐସା ହୈ। ଇନ୍ ଲୋଗ୍ ଜହାଁ ଭି ଯାୟେଙ୍ଗେ, ଅପନେ ସାଥ ସରାବ ଲେକେ ଯାହେଙ୍ଗେ।" ତା'ପରେ ବନ୍ଧୁଜଣକ ମତେ ବୁଝାଇଦେଲେ ଯେ, "ଦିଲ୍ଲୀ ବିମାନ ବନ୍ଦରରେ ଯେଉଁ କୋଡ଼ିଏ ଡଲାର ଲେଖାଏଁ ବାଟରେ ଖର୍ଚ୍ଚ କରିବାକୁ ଦିଆଯାଇଥିଲା, ସେଥିରେ ଏମାନେ ଏସବୁ ପଦାର୍ଥ ନେଇ ଆସିଥିଲେ। ଆଉ ଦେଖୁଛନ୍ତି କ'ଣ? ଆନ୍ତର୍ଜାତିକ ବିମାନ ବନ୍ଦର ଭିତରେ ବିନା ଟିକସରେ ଏସବୁ ବିଲାତି ସରାବ୍ ମିଳେ। ବିମାନଯାତ୍ରାର ଶ୍ରମ ଲାଘବ ପାଇଁ ଏମାନେ ମୂଳରୁ ଏ ପର୍ବ ଆରମ୍ଭ କରିଦେଇଛନ୍ତି। ଏମାନଙ୍କ ପାଇଁ ଦିନରାତି ସବୁ ସମାନ।"

ଏୟାର ଇଣ୍ଡିଆର 'ଧଉଳଗିରି' କ୍ରମେ ଉପରକୁ ଉଠୁଥାଏ। ଏୟାର ହୋଷ୍ଟେସ୍‌ମାନେ ଦର୍ପଣ ସାମ୍ନାରେ ନିଜକୁ ଟିକେ ସଜାଡ଼ି ନେଇ କର୍ତ୍ତବ୍ୟ ସାଧନ ଉଦ୍ଦେଶ୍ୟରେ ବାହାରିବା ପାଇଁ ଉଦ୍ୟତ ହେଉଥାନ୍ତି। ନିଜର ଇଚ୍ଛା ଥାଉ ବା ନଥାଉ ବିମାନଯାତ୍ରୀମାନଙ୍କର ମନକୁ ହାଲୁକା କରିବା ପାଇଁ ହସି ହସି ସେମାନଙ୍କ ସହିତ ଚାପା ଗଳାରେ କଥା କହିବା, ସେମାନଙ୍କର ହାନିଲାଭ ବୁଝିବାରେ ଏଇ ହୋଷ୍ଟେସ୍‌ମାନେ ସିଦ୍ଧହସ୍ତ। ବେଶଭୂଷା, ଠାଣିମାଣି ଓ ଚାଲିଚଳଣି ଦେଖି ସେମାନଙ୍କ ବୟସ କଳନା କରିବା ଯାତ୍ରୀମାନଙ୍କ ପକ୍ଷରେ ସବୁବେଳେ ସମ୍ଭବ ହୁଏ ନାହିଁ ଏବଂ ତାହାହିଁ ସେମାନଙ୍କର ଇନ୍‌ଭେଷ୍ଟମେଣ୍ଟ୍।

## ଏୟାର୍‌ହୋଷ୍ଟେସ୍‌ମାନଙ୍କ ସାହଚର୍ଯ୍ୟ

କିଛି ସମୟ ମଧ୍ୟରେ ସେମାନେ ନିଜ ନିଜ କାମରେ ଲାଗିପଡ଼ିଲେ। ଏୟାର୍‌ହୋଷ୍ଟେସ୍ ମିସ୍ ଲୀନା ଯାତ୍ରୀମାନଙ୍କୁ ଚା' କଫି ସାଙ୍ଗକୁ ସ୍ନାକ୍ସ ଦେବାରେ ବ୍ୟସ୍ତ ଥିଲାବେଳେ ତାଙ୍କ ସାଙ୍ଗକୁ ଆଉ ଦୁଇଜଣ ମଧ୍ୟ ଏ କାମରେ ଲାଗିଯାଇଥିଲେ। "ଚା'-କଫି କିଛି ମୋର ଆବଶ୍ୟକ ନାହିଁ" ବୋଲି କହି ସ୍ନାକ୍ସ ପ୍ୟାକେଟ୍‌ଟି ତାଙ୍କଠାରୁ ଗ୍ରହଣ କଲି। ସେତେବେଳକୁ ଭାରତୀୟ ସମୟ ଚାରିଟା ବାଜିଥିଲା।

'ଧଉଳଗିରି' ବିମାନ ଭିତରେ ଏକପ୍ରକାର ଚଳନ୍ତା କ୍ୟାଣ୍ଟିନ୍‌ଟିଏ ଥିଲା। ସେଠାରେ ବିଲାତି ପାନୀୟ, ଜନିୱାକର୍, ହ୍ୱାଇଟ୍ ହର୍ସ, ବ୍ଲାକ୍ ଡଗ୍ ଏବଂ ଜନହେଗ୍‌ଠାରୁ ଆରମ୍ଭ କରି ଷ୍ଟେଟ୍‌ଏକ୍ସପ୍ରେସ୍, ଡନହିଲ୍, ରଥମ୍ୟାନ୍ ଇତ୍ୟାଦି ସିଗାରେଟ୍‌ର ଅଭାବ ନଥିଲା। ନିଜର ଚାହିଦା ମୁତାବକ ଯାତ୍ରୀମାନେ ଏସବୁ ମଗାଉଥିଲେ। ମୋ ଭଳି ଜଣେ ଅରସିକ ଲୋକର ଏସବୁ ଦେଖିବା ଛଡ଼ା ଅନ୍ୟ ଉପାୟ ନଥିଲା।

ଆମ ଆଗ ସିଟ୍‌ରେ ଦୁଇଜଣ ଯାତ୍ରୀ ସାମନା ଟ୍ରେରେ ବରଫଯୁକ୍ତ ବିଦେଶୀ ପାନୀୟ ରଖି ହାଲୁକା ଗପ୍ପରେ ମାତିଥିଲେ। ବିମାନ ଭିତରେ ଶୀତତାପ ନିୟନ୍ତ୍ରିତ ବାତାବରଣ ଥିଲେ ବି ସେମାନଙ୍କ ମୁଖମଣ୍ଡଳରେ ସ୍ୱେଦବିନ୍ଦୁ ମୁଁ ସ୍ପଷ୍ଟଭାବରେ ଦେଖିପାରୁଥିଲି। ମୁଁ ଚୁପଚାପ୍ ସିଟ୍‌ରେ ବସିଥିବାର ଦେଖି ଆଉଜଣେ ଏୟାର୍‌ହୋଷ୍ଟେସ୍ ଆସି ପଚାରିଲେ, "କ୍ଷମା କରିବେ, ଆପଣ କୌଣସି ପ୍ରକାର ସୋମରସ ପାନ କରିବାକୁ ଚାହାନ୍ତି କି? ଚାହିଲେ ମୁଁ ଆଣି ଯୋଗାଇଦେବି।" ମୁଁ ନାସ୍ତିସୂଚକ ଉତ୍ତର ଦେବାରୁ ହୋଷ୍ଟେସ୍ ଜଣକ ସାମାନ୍ୟ ସ୍ମିତହାସ୍ୟ କରି ଚାଲିଗଲେ। ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ବିଦେଶ ଗସ୍ତରେ ଯାଉଥିବା ଜଣେ ସାମ୍ବାଦିକ ଯେ ସୋମରସ ପାନକରନ୍ତି ନାହିଁ ସେ କଥା ବୋଧହୁଏ ସେ ବିଶ୍ୱାସ କରିପାରିଲେ ନାହିଁ। କଥାରେ କିଛି ପ୍ରକାଶ ନ କଲେ ବି ତାଙ୍କ ଆଖିର ଛଟା ଓ ସ୍ମିତହାସ୍ୟରୁ ତା'ର ସୂଚନା ମିଳିଥିଲା।

ପରିସ୍ଥିତିକୁ ସୁଧାରିବାକୁ ଯାଇ ମୁଁ ଗୋଟିଏ ସଫ୍ଟଡ୍ରିଙ୍କ୍ ଦେବାକୁ ମିସ୍ ଲୀନାଙ୍କୁ କହିଲି। ସେ ବୋଧହୁଏ ସେପରି ଏକ ଅନୁରୋଧକୁ ଅପେକ୍ଷା କରି ରହିଥିଲେ। କୌଣସି କାଳ ବିଳମ୍ବ ନକରି ସେ ସାଙ୍ଗେ ସାଙ୍ଗେ ଏକ ଗ୍ଲାସ୍ ମାଙ୍ଗୋଜୁସ୍ ମୋ ହାତକୁ ବଢ଼ାଇଦେଲେ।

ବିମାନ ଭିତରେ ବସିବା ପୂର୍ବର ଅଶ୍ୱସ୍ତି ଅନେକ ପରିମାଣରେ କମି ଯାଇଥିଲା। ସେତେବେଳେ ସେ ପରିବେଶରେ ଥଣ୍ଡା ମାଙ୍ଗୋଜୁସ୍ ଖୁବ୍ ଆରାମଦାୟକ ହୋଇଥିଲା। ମୁଁ ଟିକେ ଜୁସ୍ ନେଇ ୱିଣ୍ଡୋସ୍କ୍ରିନ୍ ବାଟେ ବାହାରର ଦୃଶ୍ୟ ଦେଖୁଥିଲି। ବାହାରର ଦୃଶ୍ୟ କହିଲେ ଖାଲି ବାଦଲ। ମନେହେଲା ସତେ ଯେପରି ତଳେ ତୁଳାର ଏକ ଶେଯ ବିଛାଯାଇଛି ଓ ତା' ଉପରେ ଆମ ବିମାନଟି ଚାଲିଛି। ମଝିରେ ମଝିରେ ବାଦଲ ଭିତର ଦେଇ ଗଲାବେଳେ ବିମାନଟି ଟିକିଏ ଦୋହଲି ଯାଉଥିଲା। ତିନିଟିକିଆ ସିଟ୍‌ରେ ମୋ ପାଖରେ ଘନଶ୍ୟାମ ଭାଇ ଓ ଉତ୍ତରପ୍ରଦେଶର ପରମାନନ୍ଦ ପାଣ୍ଡେ। ସୋମରସ ପାନ କରୁଥିବା ବନ୍ଧୁମାନଙ୍କ ବ୍ୟତୀତ ଅନ୍ୟମାନେ ଆରାମ କରୁଥିଲେ। ବିମାନ ଭିତରେ ହଠାତ୍ କେତେବେଳେ ନିଦ ହୋଇଯାଇଥିଲା ମୁଁ ଜାଣି ପାରିନଥିଲି। ସାମାନ୍ୟ କୋଳାହଳ ଶୁଣି ନିଦ ଭାଙ୍ଗିଗଲା, ଘଣ୍ଟାରେ ନଜର ପଡ଼ିଗଲା। ସେତେବେଳକୁ ରାତି ଆଠଟା ପଇଁଚାଳିଶି। ବିମାନ ଭିତରେ ରାତ୍ରିଭୋଜନର ଆୟୋଜନ ଆରମ୍ଭ ହୋଇଯାଇଥିଲା। ଅଧିକାଂଶ ଯାତ୍ରୀଙ୍କର କିନ୍ତୁ ସେ ଭୋଜନ ପ୍ରତି ବିଶେଷ ଆଗ୍ରହ ନଥିବାର ଦେଖିଲି। ସେମାନେ ବିଲାତି ମଦିରାର ପ୍ରଭାବରେ ମତୁଆଲା ହୋଇ ଅର୍ଦ୍ଧଶାୟିତ ଅବସ୍ଥାରେ ଥିଲେ।

## ରାତି ନଅଟାରେ ଖରା

ଏୟାର୍‌ହୋଷ୍ଟେସ୍ ଟ୍ରେ'ରେ ଆଣି ଡିନର୍ ଦେଇଗଲେ। ବିମାନ ଚଢ଼ିବା ସମୟରେ ମୁଁ ନିରାମିଷାଶୀ ବୋଲି ଜଣାଇଥିଲି। ସେ ଦୃଷ୍ଟିରୁ 'ଭେଜ୍' ଲେଖାଥିବା ପ୍ୟାକେଟ୍‌ଟି

ସେ ସାମନା ଟେବୁଲ ଉପରେ ରଖିଦେଇ ଗଲେ। ପ୍ୟାକେଟ୍‌ଟି ଖୋଲି ଦେଖିଲି, ମିକ୍ସଡ୍ ଫ୍ରାଏଡ୍ ରାଇସ୍, ଫୁଲକୋବିକଷା ସାଙ୍ଗକୁ ପନିରବଟର ମସଲା, କାକୁଡ଼ି-ଟମାଟୋ ସାଲାଡ୍, ଦହି, ଲେମ୍ବୁ ଆଚାର, ପେସ୍ତାବାଦାମ ପକା ପାଏସ୍। ସାଙ୍ଗରେ କେଇଖଣ୍ଡ ପୁରୀ ଓ ଦୁଇଟି ବନ୍। ଯେକୌଣସି ବୟସ୍କ ବ୍ୟକ୍ତିଙ୍କ ପାଇଁ ଯଥେଷ୍ଟ। ପ୍ରାୟ ପନ୍ଦର ମିନିଟ୍ ଭିତରେ ଖାଇବା ପର୍ବ ଶେଷ ହୋଇଗଲା। ଖାଇସାରି ବାହାରକୁ ଅନେଇଲାବେଳକୁ ମୁଁ ନିଜକୁ ବିଶ୍ୱାସ କରିପାରିଲି ନାହିଁ। ଇଏ କ'ଣ ? ରାତି ନଅଟାବେଳେ ବାହାରେ ଖରା ପଡ଼ିଛି ! ହଠାତ୍ କିଛି ବୁଝି ହେଲାନାହିଁ; କାରଣ ଆମେ ଅପରାହ୍ନ ସାଢ଼େ ଗୋଟାଏରେ ବିମାନ ଯାତ୍ରା ଆରମ୍ଭ କରିଥିଲୁ ଏବେ ପ୍ରାୟ ସାତଘଣ୍ଟାରୁ ଅଧିକକାଳ ବିମାନରେ କଟାଇ ସାରିଲୁଣି। ତଥାପି ସୂର୍ଯ୍ୟାସ୍ତ ହୋଇନାହିଁ। ତାହାହେଲେ କ'ଣ ଦିନ ଥାଉ ଥାଉ ଆମେ ମସ୍କୋରେ ପହଞ୍ଚିଯିବୁ ?

ଏପରି ଭାବନା ଯେ କେବଳ ମୋ ମନରେ ଆସିଥିଲା ତା' ନୁହେଁ। ଉଣା ଅଧିକେ ସବୁ ଭାରତୀୟ ବିମାନଯାତ୍ରୀ ମୋ ଭଳି ସଂଶୟରେ ପଡ଼ିଥିଲେ। କିନ୍ତୁ ଆମର ସେ ସଂଶୟ ଅଧିକ ସମୟ ରହିଲା ନାହିଁ। ଯେତେବେଳେ ଆମ ସଭାପତି ବୁଝାଇଦେଲେ ଯେ, ଭାରତୀୟ ସମୟ ମସ୍କୋ ସମୟ ମଧ୍ୟରେ ଅନ୍ୟୂନ ଛଅଘଣ୍ଟାର ଅନ୍ତର ଥିବାରୁ ମନରେ ଏପରି ଭ୍ରମ ଧାରଣା ସୃଷ୍ଟି ହେଉଛି। ତା'ପରେ ଆମେ ଟିକିଏ ଆଶ୍ୱସ୍ତ ହେଲୁ।

ବିମାନଯାତ୍ରାର ପ୍ରଥମ ଆଠଘଣ୍ଟା ସମୟ ମଧ୍ୟରେ ଆମର ପ୍ରାୟ ସବୁକାମ ଶେଷ ହୋଇଯାଇଥିଲା। ବିମାନରେ ଜଳପାନଠାରୁ ରାତ୍ରିଭୋଜନ, ଲଘୁ ପାନୀୟଠାରୁ ଜନିଓ୍ୱାକର୍ ଏବଂ କିଛି ସମୟ ପାଇଁ ବିଶ୍ରାମ। ବିମାନଯାତ୍ରାର ଉତ୍କଣ୍ଠା ମଧ୍ୟ ବହୁ ପରିମାଣରେ କମିଯାଇଥିଲା। କେବଳ ଅପେକ୍ଷା ଥିଲା 'ଲାଲ୍ ସଲାମ୍‌ର ସହର'ରେ ଆମେ କେତେବେଳେ ପହଞ୍ଚିବୁ।

# ସାମ୍ୟବାଦୀ ରାଷ୍ଟ୍ର ସୋଭିଏତ୍ ଋଷ୍

ରାତି ଠିକ୍ ଏଗାରଟା ପାଞ୍ଚ ମିନିଟ୍‌ରେ 'ଧଉଳଗିରି' ମସ୍କୋ ଆନ୍ତର୍ଜାତିକ ବିମାନବନ୍ଦରରେ ଓହ୍ଲାଇଲା। ବାହାରେ ଖରା ପଡ଼ିଥିଲେ ବି ସେଥିରେ ତେଜ ନଥିଲା। ଆମେ ବିମାନରୁ ନିଜ ହାଣ୍ଡ୍‌ବ୍ୟାଗ୍ ଧରି ଗୋଟିଏ ଟନେଲ ଭିତରେ ଗଲୁ। କିଛି ବାଟ ଯିବା ପରେ ଚେକିଂ ପାଇଁ ଆମକୁ ଅପେକ୍ଷା କରିବାକୁ ପଡ଼ିଲା। ସେହି ଅବସରରେ ବିମାନବନ୍ଦରଟିକୁ ଆଖି ବୁଲେଇଦେବାର ସୁଯୋଗ ଜୁଟିଥିଲା। କେବଳ ରନ୍‌ୱେଟିକୁ ବାଦ୍ ଦେଲେ ସମଗ୍ର ବିମାନବନ୍ଦରଟି ଶୀତତାପ ନିୟନ୍ତିତ। ଏକ ସମୟରେ ଏକାଧିକ ବିମାନର ଚଳାଚଳ।

ହଜାର ହଜାର ଲୋକଙ୍କ ଗତାଗତ। ମାତ୍ର କେଉଁଠି କିଛି କୋଳାହଳ ଶୁଣାଯାଉ ନଥିଲା। ସବୁ ଯେପରି ପୂର୍ବ ନିୟନ୍ତ୍ରିତ।

## ମସ୍କୋ ବିମାନବନ୍ଦରରେ ମାନସିକ ଯାତନା

ତିନୋଟି କାଉଣ୍ଟରରେ ଆମର ଚେକିଂ ଆରମ୍ଭ ହେଲା। ଅଭ୍ୟାସବଶତଃ ରାତ୍ରିଭୋଜନ ପରେ ଦେହ ନିନ୍ଦା ଲାଗୁଥାଏ। ମନ ବିଶ୍ରାମ ପାଇଁ ସୁଯୋଗ ଅପେକ୍ଷାରେ ଥାଏ, କିନ୍ତୁ ଋଷ ଭଳି ଏକ ବୈଦେଶିକ ରାଷ୍ଟ୍ରରେ ମନର ଆଶା ପୂରଣ କରିବ କିଏ? ମସ୍କୋ ବିମାନବନ୍ଦରର ନିରାପତ୍ତା ବ୍ୟବସ୍ଥା ବାସ୍ତବିକ ଦେଖିବାର କଥା। ପକେଟରେ ସାମାନ୍ୟ ଚାବି ରିଙ୍ଗଟିଏ କିମ୍ବା ହାତରେ ଲୁହାକଡ଼ାଟିଏ ଥିଲେ ଖସିବାର ରାସ୍ତା ନଥିଲା। ମଣିଷ କିଛି କହିବା ପୂର୍ବରୁ ଯନ୍ତ୍ର ତା' କାମ କରିଦେଉଥିଲା। ସର୍ବତ୍ର ଏକ୍ସରେ ପ୍ଲାଣ୍ଟ, ଇଲେକ୍‌ଟ୍ରୋନିକ୍ ମେସିନ୍ ମାଧ୍ୟମରେ ସବୁକଥା ପରିଚାଳିତ। ବ୍ୟାଗେଜ୍ ଖୋଲି ଜିନିଷ ପତ୍ର ତନଖିବାର ପଦ୍ଧତି ବଦଳି ଯାଇଥିଲା। କନ୍‌ଭୟର୍ ବେଲ୍ଟ ଉପରେ ବ୍ୟାଗ ରଖିଦେଲେ ତା' ଭିତରେ କ'ଣ ସବୁ ଅଛି ସେସବୁର ପ୍ରତିଛବି ଏକ୍ସରେ ପରଦା ଉପରେ ପ୍ରତିଫଳିତ ହୋଇଯାଉଥିଲା। ଏପରିକି ବ୍ୟାଗ ଭିତରେ ଥିବା ସେଭିଂ କିଟ୍‌ର କତୁରୀ ମଧ୍ୟ ସ୍ପଷ୍ଟ ଭାବେ ଦେଖାଯାଉଥିଲା।

ପ୍ରାୟ ବାରଟି ବିଦେଶ ରାଷ୍ଟ୍ର ଗସ୍ତରେ ଯିବାକୁ କାର୍ଯ୍ୟକ୍ରମ ଥିବାରୁ ଆମେସବୁ ନିଜ ନିଜ ରାଜ୍ୟର ହସ୍ତଶିଳ୍ପ ସାମଗ୍ରୀମାନ ଉପଢୌକନ ଦେବା ଉଦ୍ଦେଶ୍ୟରେ ସାଙ୍ଗରେ ନେଇଥିଲୁ। ସେଥିମଧ୍ୟରୁ କେରଳର ବନ୍ଧୁମାନଙ୍କ ଲଗେଜ୍‌ରେ ପିତଳର ନାନା ପ୍ରକାରର ଖେଳନାମାନ ଥିଲା। ଏକ୍ସରେ ପ୍ଲାଣ୍ଟ୍‌ରେ ବ୍ୟାଗେଜ୍ ଚେକିଂ ସମୟରେ ସମ୍ପୃକ୍ତ ଅଫିସର ତାକୁ ସୁନା ବୋଲି ବିଚାରି ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କଲେ। ତାଙ୍କୁ ଯେତେ ବୁଝାଇଲେ ବି ସେ ବୁଝିବାକୁ ନାରାଜ। ଘଟଣାକ୍ରମେ ସେଠାରେ ଏକାଧିକ ଅଫିସର ଆସି ପହଞ୍ଚିଗଲେ। ସୌଭାଗ୍ୟକୁ ସେମାନଙ୍କ ଭିତରୁ ଜଣେ ଅଫିସର ଇଂରାଜୀ ଭାଷା ଜାଣିଥିଲେ। ବହୁ କଷ୍ଟରେ ସେ ଆମର ଉଦ୍ଦେଶ୍ୟ ବୁଝିପାରିବାରୁ ପରିସ୍ଥିତି ସୁଧୁରି ଯାଇଥିଲା। ପିତଳ କଣ୍ଢେଇକୁ ବାଦ ଦେଲେ ଆଉ ଗୋଟିଏ ଦୁଇଟି ଜିନିଷ ଆମକୁ ଅଡୁଆରେ ପକାଇଥିଲା। ଆମ ଭିତରୁ କେହି କେହି ସାଙ୍ଗରେ ସୁସ୍ୱାଦୁ ଆଚାର ନେଇଥିଲେ। ଆଉ କାହାରି ପାଖରେ ମସଲାଗୁଣ୍ଡ ମଧ୍ୟ ଥିଲା। ଋଷବାସୀ ଏପରି ପଦାର୍ଥର ବ୍ୟବହାର ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିବା ହେତୁ ପୁଣି ଭୁଲ୍ ବୁଝାମଣା ସୃଷ୍ଟିହେଲା। ସେତେବେଳେ ତାଙ୍କ ଦେଶର ନିୟମ ଦୃଷ୍ଟିରୁ କୌଣସି ରନ୍ଧା ଖାଦ୍ୟକୁ ସେମାନେ ଦେଶ ଭିତରେ ପୂରାଇ ଦେଉ ନଥିଲେ। ସେଥିରେ କାଳେ କୌଣସି ଭୂତାଣୁ ଚାଲିଆସି ବିଭିନ୍ନ ରୋଗର କାରଣ ହେବ, ସେଥିପାଇଁ

ସେମାନଙ୍କର ସବୁ କଥାକୁ ସନ୍ଦେହ ଥିଲା। ତେଣୁ ଆଚାର ଓ ମସଲାଗୁଣ୍ଡକୁ ଦେଖି ସେମାନଙ୍କ ସନ୍ଦେହ ଦ୍ୱିଗୁଣିତ ହୋଇଗଲା। ଆଚାର ଓ ମସଲା ଯେ ଆମର ଏକପ୍ରକାର· ପ୍ରିୟ ଖାଦ୍ୟ, ସେକଥା ସେମାନଙ୍କୁ ବୁଝାଇବାକୁ ଚେଷ୍ଟାକଲେ ମଧ୍ୟ ବିଶେଷ କିଛି ଫଳ ହେଲା ନାହିଁ। ଶେଷରେ ନିଜର ଅନିଚ୍ଛା ସତ୍ତ୍ୱେ ଆମ ଭିତରୁ କେହି କେହି ରାତି ଏଗାରଟା ବେଳେ ସେମାନଙ୍କ ସମ୍ମୁଖରେ ଆଚାର ଖାଇବା ପରେ ସେମାନଙ୍କର ହୃଦ୍‌ବୋଧ ହେଲା ଓ ତା'ପରେ ଆମ ବ୍ୟାଗେଜ୍‌ସବୁ ଛାଡ଼ପାଇଲା।

ଭାରତୀୟ ସମୟ ରାତି ବାରଟାବେଳେ ଆମକୁ ମସ୍କୋ ବିମାନବନ୍ଦରରୁ ମୁକ୍ତି ମିଳିଲା। ବିମାନ ବନ୍ଦର ବାହାରେ ଆମର ଶୀତତାପ ନିୟନ୍ତ୍ରିତ କୋଚ୍‌ଟି ଆଗରୁ ଅପେକ୍ଷା କରିଥିଲା। ଆମେ ଆଉ କାଳବିଳମ୍ବ ନକରି ନିଜ ନିଜର ଲଗେଜ୍ ଧରି କୋଚ୍ ଆଡ଼କୁ ଚାଲିଲୁ।

ଆମର ଧାରଣା ଥିଲା ଆମେ ବୋଧେ ଆରାମରେ ଯାଇ କୋଚ୍‌ରେ ବସିଯିବୁ। କିନ୍ତୁ ଅଳ୍ପ ସମୟ ପରେ ସେ ଧାରଣା ବଦଳିଗଲା; କାରଣ ନିଜର ଲଗେଜ ନିଜେ ବୋହି ଯିବାରେ ଅଭ୍ୟସ୍ତ ନଥିବା ଭାରତୀୟମାନଙ୍କ ପକ୍ଷରେ ରାତ୍ରିର ବିଳମ୍ବିତ ପ୍ରହରରେ ବିମାନବନ୍ଦରର ୱେଟିଂ ହଲ୍ ଟପି ବାହାରକୁ ଆସିବାକୁ ପ୍ରାୟ ପନ୍ଦର ମିନିଟ୍‌ରୁ ଅଧିକ ସମୟ ଲାଗିଗଲା। ମୋର ମନେଅଛି, ପାଞ୍ଚଶ ମିଟର ଯିବା ଭିତରେ ଆମ ଭିତରୁ କେତେକ ଦୁଇ ତିନି ଥର ତାଙ୍କ ବ୍ରିଫକେଶକୁ ବାଟରେ ରଖିରଖି ଯାଉଥିଲେ। ପୂର୍ବରୁ ସେମାନଙ୍କର ଧାରଣା ଥିଲା ବୋଧହୁଏ ପଇସା ବଦଳରେ ସବୁ ଜାଗାରେ ସବୁକଥା କରିହେବ କିନ୍ତୁ ସେମାନଙ୍କ ଧାରଣା ବାହାରେ ଯେ ଗୋଟିଏ ଦୁନିଆ ରହିଛି, ସେମାନେ ନିଜେ ସେକଥା ଅଙ୍ଗେ ନ ନିଭେଇବା ପର୍ଯ୍ୟନ୍ତ ସେକଥାକୁ ବିଶ୍ୱାସ କରିନଥିଲେ।

ବିମାନବନ୍ଦରରୁ ମସ୍କୋ ସହର ବେଶ କିଛି ଦୂର। ତେବେ କୋଚ୍‌ର ଗତି ଦ୍ରୁତ ଥିବାରୁ ଦୂରତ୍ୱର ପ୍ରଭାବ ଅନୁଭୂତ ହେଲାନାହିଁ। ସହର ଯେତିକି ପାଖେଇଉଥାଏ ଜନଗହଳି ସେତିକି ଅଧିକ ଦେଖାଯାଉଥାଏ। ଆମ ପାଇଁ ସିନା ରାତି ବାରଟା, ହେଲେ ସେମାନଙ୍କ ପାଇଁ ତ ଏକପ୍ରକାର ସନ୍ଧ୍ୟା ସମୟ।

## ହୋଟେଲ ୟୁକ୍ରେନାର ସତେଇଶ ମହଲାରେ ରହଣି

ଭାରତୀୟ ସମୟ ବାରଟା ପନ୍ଦର ମିନିଟ୍‌ରେ ଆମ କୋଚ୍ ଯାଇ ଏକ ସୁଉଚ୍ଚ ଅଟ୍ଟାଳିକା ସାମନାରେ ରହିଲା। ସେଠାକାର ଜନଗହଳି ଓ କୋଳାହଳ ଦେଖି ଆମେ ପ୍ରଥମେ କିଛି ବୁଝି ପାରିଲୁ ନାହିଁ। ହଜାର ହଜାର ଲୋକଙ୍କ ସମାଗମ, ଯିବାଆସିବା ଚାଲିଥିଲା। ଆଗରୁ ଆମେ ରାତି ଅଧରେ ଏପରି ଦୃଶ୍ୟ କେବେ ଦେଖିନଥିବାରୁ ସବୁ

କଥା ସମ୍ପୂର୍ଣ୍ଣ ଅଦ୍ଭୁତ ଲାଗିଲା। କିନ୍ତୁ ଏ ପରିସ୍ଥିତି ଅଧିକ ସମୟ ରହିଲା ନାହିଁ। ଶେଷରେ ଆମ ଗାଇଡ୍ ଇଂରାଜୀ ଭାଷାରେ ଆମକୁ ବୁଝାଇ ଦେଲେ ଯେ, "ଏଇଟା ହେଉଛି 'ହୋଟେଲ ୟୁକ୍ରେନା'। ଏଠାରେ ବିଦେଶରୁ ଆସୁଥିବା ଅତିଥିମାନଙ୍କ ପାଇଁ ରହିବା ଓ ଖାଇବାର ବନ୍ଦୋବସ୍ତ ହୁଏ। ଆପଣମାନଙ୍କ ପାଇଁ ମଧ୍ୟ ଏଠାରେ ରହିବାର ବ୍ୟବସ୍ଥା ହୋଇଛି।"

ହୋଟେଲ ସାମନାରେ ଶହ ଶହ ଗାଡ଼ି। ବାହାରେ କନକନିଆ ପବନ। ଥଣ୍ଡାର ପ୍ରକୋପ ଦେଖି ଗାଡ଼ିରୁ ଓହ୍ଲାଇବାକୁ ଇଚ୍ଛା ହେଉ ନଥିଲା। ବିଶେଷକରି ଆମ ଗାଇଡ଼ ଯେତେବେଳେ କହିଲେ ଯେ ବାହାରେ ତାପମାତ୍ରା ହେଉଛି ମାଇନସ୍ ପାଞ୍ଚଡିଗ୍ରୀ, ଆମେ ଶିହରି ଉଠିଲୁ। କିନ୍ତୁ କ'ଣ କରାଯିବ? କର୍ତ୍ତବ୍ୟ ଅନୁରୋଧରେ ଯିବାକୁ ତ ପଡ଼ିବ। କୋଚ୍‌ରୁ ଓହ୍ଲାଇ ନିଜ ନିଜର ବ୍ୟାଗେଜ୍ ଧରି ହୋଟେଲ ୟୁକ୍ରେନାର ଅଭ୍ୟର୍ଥନା କକ୍ଷକୁ ଚାଲିଲୁ। କି ବିରାଟ କକ୍ଷ! ଏକାଥରେ ୧୨ଟି କାଉଣ୍ଟର୍ କାମ କରୁଥିଲା। ସବୁକାମ ନୀତି ନିୟମ ଭିତରେ ଶୃଙ୍ଖଳିତ ଭାବେ ଚାଲିଥିଲା।

ଡି.ପି.ଆର୍. କୋରିଆ କନସୁଲେଟ୍ ଅଫିସ୍ ପକ୍ଷରୁ ମସ୍କୋରେ ଆମର ରହିବାର ବ୍ୟବସ୍ଥା କରାଯାଇଥିବାରୁ ୟୁକ୍ରେନା ହୋଟେଲର ଅଭ୍ୟର୍ଥନା କକ୍ଷରେ ଆମ ପାଇଁ ବିଶେଷ ଅସୁବିଧା ହେଲା ନାହିଁ। ପୂର୍ବରୁ ମସ୍କୋ ବିମାନବନ୍ଦରରେ ଆମକୁ ଯେପରି ମାନସିକ ଯନ୍ତ୍ରଣା ମଧ୍ୟ ଦେଇ ଆସିବାକୁ ପଡ଼ିଥିଲା, ହୋଟେଲରେ କାଳେ ତା'ର ପୁନରାବୃତ୍ତି ଘଟିବ, ଏଇ ଆଶଙ୍କାରେ ଆମ ଭିତରୁ ଅନେକେ ଆତଙ୍କିତ ହୋଇ ଯାଇଥିଲେ।

ଯାହାହେଉ ପ୍ରାୟ ପନ୍ଦର ମିନିଟ୍ ସମୟ ମଧ୍ୟରେ ଆମ ପାଇଁ ୟୁକ୍ରେନା ହୋଟେଲର ୨୭ ମହଲା ଉପରେ ବାରଟି ରୁମ୍ ମିଳିଗଲା। ଗୋଟିଏ ରୁମ୍‌ରେ ଦୁଇଜଣ କରି ରହିବା କଥା। ସତେଇଶ ମହଲାରେ ରହିବା ବ୍ୟବସ୍ଥା ଦେଖି ପ୍ରଥମେ ମନଟା ଟିକେ ନିରସ ହୋଇଯାଇଥିଲା; କାରଣ ଯଦି ବିଦ୍ୟୁତ୍ ଫେଲ୍ କରେ ତେବେ ତ କଥା ସରିଲା। କେବଳ ଯିବା ଆସିବାରେ ସମୟ ଚାଲିଯିବ। କିନ୍ତୁ ଯେତେବେଳେ ଜଣେ ବନ୍ଧୁ ବୁଝାଇଦେଲେ ଯେ ଏ ସହରରେ ସହଜରେ ବିଦ୍ୟୁତ୍ ସରବରାହ ଫେଲ୍ ହୁଏ ନାହିଁ, ମନର ଆଶଙ୍କା ଦୂରହେଲା।

ରୁମ୍‌ରେ କିଏ କାହା ସାଙ୍ଗରେ ରହିବ, ସେକଥା ଆଗରୁ ସ୍ଥିର ହୋଇସାରିଥିଲା। ମୋର ରୁମ୍ ପାର୍ଟନର ଥିଲେ କଲିକତାରୁ ପ୍ରକାଶିତ ବିଖ୍ୟାତ ବଙ୍ଗଳା ଦୈନିକ 'ସତ୍ୟଯୁଗ'ର ବାର୍ତ୍ତାସମ୍ପାଦକ ରନେନ୍ ମୁଖାର୍ଜୀ। ଶ୍ରୀ ମୁଖାର୍ଜୀ ଖୁବ୍ ଅମାୟିକ ଓ ସରଳ ପ୍ରକୃତିର ଭଦ୍ରଲୋକ। କଥାବାର୍ତ୍ତା, ଚାଲି ଚଳଣି ଓ ବେଶ ପୋଷାକରେ ପୂର୍ଣ୍ଣ ଆଭିଜାତ୍ୟ। ସିଗାରେଟ୍ ଇତ୍ୟାଦିର ଅଭ୍ୟାସ ନଥିବା। ଭାବିଲି, ଭାରତୀୟ କମ୍ୟୁନିଷ୍ଟମାନେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତିନାହିଁ ବୋଲି ବାହାରକୁ ଦେଖାଇ ହେଲେ ବି କମ୍ୟୁନିଜିମ୍‌ର ମୂଳ ଭୂଖଣ୍ଡରେ ଈଶ୍ୱର ନିଶ୍ଚିତ ...

ଅଛନ୍ତି। ନହେଲେ ମୋ ମନକଥା କିପରି ବୁଝିବେ। ରୁମ୍ ପାର୍ଟନର୍ ଜଣେ ମଦ୍ୟପ ପଡ଼ିଯାଇଥିଲେ କି ଯେ ଦୁର୍ଦ୍ଦଶା ହୋଇଥାନ୍ତା, ମୁଁ ସେତେବେଳେ ସେକଥା ଭାବି ପାରିନଥିଲି।

ଆମ ଗାଇଡ୍ ୟୁକ୍ରେନା ହୋଟେଲର ୨୭ ମହଲାରେ ଥିବା ଚାରି ନମ୍ବର କୋଠରିର ଚାବି ମତେ ଧରାଇଦେଲେ। ସେତେବେଳକୁ ଅନ୍ୟ ବନ୍ଧୁମାନେ ମଧ୍ୟ ନିଜ ନିଜ କୋଠରିର ଚାବି ନେଇ ସାରିଥିଲେ। ଗାଇଡ୍ ଆମକୁ ବୁଝାଇ ଦେଲେ ଯେ ବିମାନ ଭିତରେ ଆମର ରାତ୍ରିଭୋଜନ ଶେଷ ହୋଇଥିବା ଦୃଷ୍ଟିରୁ ଆମେ ବିଶ୍ରାମ ନେବା କଥା। ତା’ ପରଦିନ ଯାହା କାର୍ଯ୍ୟକ୍ରମ ରହିଛି, ତାହା ସକାଳେ ଆଲୋଚନା ହୋଇ କାର୍ଯ୍ୟକାରୀ ହେବ। ନିଜ ନିଜ ବ୍ୟାଗେଜ୍ ଉଠାଇ ଆମେ ଲିଫ୍ଟ ଆଡ଼େ ଚାଲିଲୁ। ଲିଫ୍ଟ ଦାୟିତ୍ୱରେ ଥିଲେ ଜଣେ ବୟସ୍କା ଭଦ୍ରମହିଳା। ଆମକୁ ଦେଖି ତାଙ୍କ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି ହେଲାନାହିଁ। ଦୁଇ ଦଫାରେ ଆମକୁ ନେଇ ସେ ୨୭ ମହଲାରେ ଛାଡ଼ିଦେଲେ।

ସତେଇଶ ମହଲାରେ ପହଞ୍ଚି ସବୁ କେମିତି ଅଡୁଆ ଅଡୁଆ ଲାଗିଲା। ବିରାଟ ମହଲା। ସବୁଆଡ଼େ ଲାଲ୍ କାର୍ପେଟ୍। ସବୁଆଡ଼ର ବାଟ ପ୍ରାୟ ସମାନ। ଟିକିଏ ଅନ୍ୟମନସ୍କ ହୋଇଗଲେ ନିଜ ରୁମ୍‌କୁ ରାସ୍ତା ପାଇବା କଷ୍ଟସାଧ ହୋଇପଡ଼ିବ। ବାହାରେ ଚିହ୍ନ ରଖିବାକୁ ମଧ୍ୟ କିଛି ନାହିଁ। ସବୁ ଋଷଭାଷାରେ ଲେଖା।

## ତୁଷାରପାତର ବିରଳ ଅନୁଭୂତି

ଭାବିଥିଲି, ଦିନଯାକର କର୍ମବହୁଳ ଝଞ୍ଜାଳ ପରେ ଶୀଘ୍ର ଯାଇ ଶୋଇହେବ। କିନ୍ତୁ ହାୟ! ରୁମ୍‌କୁ ଯିବା ପୂର୍ବରୁ ଦଳପତିଙ୍କ ନିର୍ଦ୍ଦେଶ, “ତୁରନ୍ତ କମ୍‌ରେ ମେ ଅପନା ଅପନା ସାମାନ୍ ରଖ୍‌କର୍ ବାହର ଚଲେଆଁଓ, ଘୁମନେ ଯାଏଙ୍ଗେ। ଜିନ୍ଦଗି ମେ ମସ୍କୋ ଘୁମନେ କେ ଲିଏ ବାର ବାର ମୌକା ନହିଁ ଆୟେଗା।” କଥାଟି ନିରାଟ ସତ। ସେଥିପାଇଁ ଇଚ୍ଛା ନଥିଲେ ବି କୌଣସିମତେ ରୁମ୍ ଭିତରେ ବ୍ୟାଗେଜ୍‌ତକ ଥୋଇ ଦେଇ ବାହାରି ଆସିଲୁ। ସେତେବେଳକୁ ଭାରତୀୟ ସମୟ ରାତି ଗୋଟାଏ ହୋଇଥିଲା।

ତଳକୁ ଆସି ଦେଖିଲୁ ୟୁକ୍ରେନା ହୋଟେଲର କୋଳାହଳ କମିନଥିଲା। ପୂର୍ବ ଭଳି ଲୋକଙ୍କର ଯିବାଆସିବା ଚାଲିଥିଲା। ଯେତିକି ଲୋକ ଯାଉଥିଲେ, ସେତିକି ଆସୁଥିଲେ। ଆମେ ଆଉ କାଳ ବିଳମ୍ବ ନ କରି ରାସ୍ତାକୁ ବାହାରିପଡ଼ିଲୁ। ଉଃ କ’ଣ! ଘଣ୍ଟାଏ ପୂର୍ବେ ଯେଉଁ ପୋଷାକ ଦେହକୁ ଅସହ୍ୟ କରୁଥିଲା, ସେ ପୁଣି ଆରାମ ବୋଧ ହେଉଛି। କେବଳ ପାଟି, ନାକ ଓ ଆଖିକୁ ବାଦ୍ ଦେଲେ ଆଉ ସବୁ ଅଂଶ ଗରମ ପୋଷାକରେ ଆଚ୍ଛାଦିତ। ତଥାପି ଯେଉଁ ଅଂଶତକ ଖୋଲା ଥିଲା, ଶୀତରେ ସେସବୁ ବରଫ ... ଲାଗିବା ଭଳି ଲାଗୁଥିଲା।

ବାହାରେ ସାମାନ୍ୟ ତୁଷାରପାତ ହେଉଥିଲା। ସମିଳି ଗଛରୁ ତୂଳା ଉଡ଼ିଲା ଭଳି ଦେଖାଯାଉଥିଲା। ଶରୀରକୁ କଷ୍ଟ ହେଉଥିଲେ ବି ମନରେ ନୂତନ ଅନୁଭୂତି ଯୋଗୁଁ ସେସବୁ ଉପଭୋଗ୍ୟ ଥିଲା। ଉପରୁ ତୁଷାରପାତ ସାଙ୍ଗକୁ ରାସ୍ତାରେ ବରଫ ଜମିଯାଇଥିଲା। ସେଥିରେ ବୁଲିବାର ଯେଉଁ ଆନନ୍ଦ ତାହା ଆଜି ବି ମନେପଡୁଛି। ରାସ୍ତାରେ ଜନସମାଗମ କମ୍ ଥିଲା। ବିଦେଶ ରାଷ୍ଟ୍ରର ଅଜଣା ରାସ୍ତା। ସେଥିରେ ପୁଣି ଭାଷାଗତ ପ୍ରଭେଦ। ଋଷ ଭାଷା ଆମ ପାଇଁ ଥିଲା ଦୁର୍ବୋଧ, ଆଉ ଇଂରାଜୀଠାରୁ ସେମାନେ ବହୁ ଦୂରରେ। ସେଥିପାଇଁ ଆଉ ଅଧିକ ପଥ ଅଗ୍ରସର ନହୋଇ ହୋଟେଲକୁ ଫେରିବାକୁ ସ୍ଥିର କଲୁ।

ୟୁକ୍ରେନାରୁ ଫେରିଲାବେଳକୁ ଭାରତୀୟ ସମୟ ପ୍ରାୟ ରାତି ତିନିଟା। ରାତି ଆଠଟାବେଳେ ବିମାନରେ ଯାହା ଖିଆପିଆ ହୋଇଥିଲା। ତା'ପରେ ପେଟକୁ ଆଉ କିଛି ଯାଇ ନାହିଁ। ସମସ୍ତଙ୍କର ଖାଇବା ପାଇଁ ଆଗ୍ରହ ସୃଷ୍ଟି ହୋଇଥିଲେ ବି ସାଧାରଣ ସୌଜନ୍ୟ ଦୃଷ୍ଟିରୁ କେହି କିଛି କହୁ ନଥିଲେ। ଶେଷରେ ଭୋପାଳରୁ ଯାଇଥିବା ପି.ଟି.ଆଇ. ପ୍ରତିନିଧି ଅଶ୍ୱିନୀ ଭାର୍ଗବ ବହୁ ସନ୍ତର୍ପଣରେ ସେ ପ୍ରସଙ୍ଗଟି ଉତ୍ଥାପନ କଲେ। କିନ୍ତୁ ଋଷ ଭଳି ଏକ ବିଦେଶ ରାଷ୍ଟ୍ରରେ ରାତି ତିନିଟାବେଳେ କ'ଣ ମିଳିବ ଯେ କିଏ ଖାଇବ? କ୍ରମେ ସମସ୍ତେ ନିଜ ନିଜ ଭିତରେ ଫୁସ୍‌ଫାସ୍ ହେଲେ କାହା ପାଖରେ କ'ଣ ଖାଇବା ଜିନିଷ ଅଛି। ବହୁତ ଖୋଜାଖୋଜି ପରେ ଦୁଇଚାରି ପ୍ୟାକେଟ୍ ବିସ୍କୁଟ୍ ଓ କିଛି ବାରମଜା ମିଳିଲା। ମାତ୍ର କେତୋଟି ମୁହୂର୍ତ୍ତରେ ସେସବୁ ସଫା। ଅହମଦାବାଦର ଘନଶ୍ୟାମ ଭାଇ ନୈଷ୍ଠିକ ଗୁଜୁରାଟୀ। ମାଛମାଂସ କିମ୍ବା ପାନ ସିଗାରେଟ୍‌ର ପାଖ ପଶନ୍ତି ନାହିଁ। ଅନ୍ତତଃ ପନ୍ଦରଦିନ ଚଳିଲା ଭଳି କିଛି ଶୁଖିଲା ଜଳଖିଆ ସେ ସାଙ୍ଗରେ ଧରିଥିଲେ। ବନ୍ଧୁମାନଙ୍କ ଆଗ୍ରହକୁ ସେ ଏଡ଼ାଇ ଦେଇ ପାରିଲେ ନାହିଁ। ତାଙ୍କ ପାଖରେ ଯାହାସବୁ ଖାଦ୍ୟପଦାର୍ଥ ଥିଲା, ସେସବୁ ଆଣି ସମସ୍ତଙ୍କ ଆଗରେ ଥୋଇଦେଲେ। ଆଃ! କି ମଜା! ବନ୍ଧୁମାନଙ୍କ ମୁହଁର ଚିତ୍ର ବଦଳିଗଲା। ଘନଶ୍ୟାମଭାଇଙ୍କ ଘରତିଆରି ଶୁଆଳି, ରାଗସେଉ, ଗାଣ୍ଠିଆ ଖାଇ ବନ୍ଧୁମାନେ ଆନନ୍ଦରେ ଶୋଇବାକୁ ଗଲେ।

ସକାଳୁ ନିଦ ଭାଙ୍ଗିଲାବେଳକୁ ସମୟ ଆଠଟା। ବାହାରେ ଅନ୍ଧାର ପରିଷ୍କାର ହୋଇନଥାଏ। ବିଳମ୍ବରେ ଶୋଇଥିବା ହେତୁ ଆଖିପତା ପୋଡୁଥାଏ। କିଛି ନ ଭାବି ବାଥ୍‌ରୁମ୍ ଭିତରେ ପଶିଗଲି। ଯାହା ଦେଖିଲି ଆଖିକୁ ବିଶ୍ୱାସ ହେଲାନାହିଁ। ଏଇଟା ଶୌଚାଳୟ ନା ଡ୍ରଇଂରୁମ୍? ଗୋଟିଏ କଡ଼କୁ ବାଦିଂଟବ୍ ଓ ଅନ୍ୟ ପଟେ କମୋଡ୍। ମଝିରେ ୱାସ୍ ବେସିନ୍ ଏବଂ ତା' ପାଖରେ ଟାୱେଲ୍ ହାଙ୍ଗର୍‌ରେ ଆଠଖଣ୍ଡ ତଉଲିଆ। ଆମେ ତ ଦି ଜଣ, ଏତେଗୁଡ଼ିଏ ତଉଲିଆ କ'ଣ ପାଇଁ? ମୁଁ କିଛି ବୁଝି ପାରିଲି ନାହିଁ। ସାମନାରେ ଏକ ବିରାଟ ମିରର୍। ଆମେ ସବୁ ପିଲାଦିନେ ଯେଉଁ ବାଥରୁମ୍‌ରେ ଚଳିଛୁ, ତା'ର ବ୍ୟବସ୍ଥା ଭିନ୍ନ। ସେଠି ବାଦିଂଟବ୍‌ର କଳ୍ପନା ନଥାଏ। ପାଇପ ତଳେ ଗୋଟିଏ

ପାଣିକୁଣ୍ଡ କିମ୍ବା ବାଲ୍ଟିଟାଏ ଏବଂ ତା' ସାଙ୍ଗକୁ ଗୋଟାଏ ବା ଦୁଇଟା ପ୍ଲାଷ୍ଟିକ୍ ମଗ୍। ଆଉ ଯେଉଁମାନେ ଥିଲାବାଲା ଲୋକ, ସେମାନେ ଥଣ୍ଡା ଗରମ ପାଣି ଗିଜର୍ ବ୍ୟବସ୍ଥା କରିଥାନ୍ତି। ହେଲେ ବିଦ୍ୟୁତ୍ ସରବରାହର ଅନିୟମିତତା ଯୋଗୁଁ ସେସବୁ ଅନେକ ସମୟରେ କାମରେ ଆସେନାହିଁ।

କେବଳ ରୁମ୍ ନୁହେଁ, ସମଗ୍ର ୟୁକ୍ରେନା ହୋଟେଲଟି ଶୀତତାପ ନିୟନ୍ତ୍ରିତ ଥିଲା। ବାହାରର ପବନକୁ ରୋକିବା ପାଇଁ ଝରକାରେ ଡବଲ କାଚ ଲାଗିଥିଲା। ତଥାପି ରୁମ ଭିତରୁ ବାହାରର ଦୃଶ୍ୟ ସ୍ପଷ୍ଟ ଦେଖି ହେଉଥିଲା। ମୋର ରୁମ୍ ପାର୍ଟନରଙ୍କ ନିଦ ଭାଙ୍ଗିନଥାଏ। ସେ ଦେହରେ ନରମ କମଳ ଖଣ୍ଡିଏ ପକାଇ ଆରାମରେ ଘୁଙ୍ଗୁଡ଼ି ମାରୁଥାନ୍ତି। ମୁଁ ଦେଖିଲି ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ, ଯେତେବେଳେ କି ବିନା ବାଧାରେ ନିତ୍ୟକର୍ମ ଶେଷକରି ହେବ। ବାଥରୁମ୍‌ଟି ମଧ୍ୟ ଶୀତତାପ ନିୟନ୍ତ୍ରିତ। ବେସିନ୍ ଓ ଟବ୍‌ରେ ଗରମ ପାଣିର ବ୍ୟବସ୍ଥା। କେବଳ ଶୌଚ ପାଇଁ ଯାହା ଟିକିଏ ଅସୁବିଧା ହେଲା। ତାକୁ କୌଣସିମତେ ଚଳାଇଦେଇ ସ୍ନାନ ପ୍ରକରଣ ସାରି ରୁମ୍‌କୁ ଫେରିଲି। ରନେନ୍ ମୁଖାର୍ଜୀଙ୍କର ଚା' ପାଇଁ ବରାଦ। ଚା' ପିଇଲେ ବାଥ୍‌ରୁମ୍ ଯିବେ; କିନ୍ତୁ ମୋର ସମସ୍ତ ଚେଷ୍ଟା ସତ୍ତ୍ୱେ ତାଙ୍କ ପାଇଁ ଚା ସଂଗ୍ରହ ସମ୍ଭବ ହେଲା ନାହିଁ।

ରୁମ୍ ଭିତରୁ ବାହାରର ଦୃଶ୍ୟ ଅତ୍ୟନ୍ତ ମନୋରମ। ମସ୍କୋ ନଦୀ କୂଳରେ ଥିବା ଘର ସବୁ ଦିଆସିଲିଖୋଳ ଭଳି ମନେହେଉଥାଏ। ସତେଇଶ ମହଲା ଉପରୁ ତୁଷାରପାତର ଦୃଶ୍ୟ ମଧ୍ୟ ଅତ୍ୟନ୍ତ ଉପଭୋଗ୍ୟ ଥିଲା। ତାକୁ ଦେଖୁଦେଖୁ ମନରେ ଅନେକ ଭାବନା ସୃଷ୍ଟି ହେଉଥିଲା। ଗତ କେଇଘଣ୍ଟାର ଘଟଣାବହୁଳ ଅନୁଭୂତି ମନରେ ଉଙ୍କିମାରୁଥିଲା। କାହିଁ ଓଡ଼ିଶାର ନାଳନର୍ଦ୍ଦମାପୂର୍ଣ୍ଣ କଟକ ସହର, ଆଉ କାହିଁ ମସ୍କୋ ନଗର ? ବିଜ୍ଞାନର ଆବିଷ୍କାର ଫଳରେ ଆଜି ଦୂର ନିକଟ ହୋଇଛି। ଅସମ୍ଭବ ସମ୍ଭବରେ ପରିଣତ ହୋଇଛି ଆଉ ଅଚିହ୍ନା ଚିହ୍ନା ହୋଇଛନ୍ତି। ବିଜ୍ଞାନ ଯୋଗୁଁ ସମଗ୍ର ବିଶ୍ୱ ଆଜି ଛୋଟ ହୋଇଯାଇଛି।

## ମସ୍କୋରେ ବନ୍ଧୁଦର୍ଶନ

ବନ୍ଧୁ ରନେନ୍‌ବାବୁ ବିଛଣା ଛାଡ଼ିନଥାନ୍ତି। ଆମର କର୍ଯ୍ୟକ୍ରମ ଆରମ୍ଭ ହେବାକୁ କିଛି ସମୟ ବିଳମ୍ବ ଥାଏ। ଭାବିଲି, ଏଇ ସମୟତକ ମସ୍କୋରେ ଥିବା ଓଡ଼ିଆ ବନ୍ଧୁମାନଙ୍କ ସହିତ ସମ୍ପର୍କ ରକ୍ଷାକଲେ କିପରି ହୁଅନ୍ତା ? ପ୍ରଥମେ ମନେପଡ଼ିଲେ ସମାଜସେବୀ ବୈଷ୍ଣବଚରଣ ପରିଡ଼ା। ମସ୍କୋରେ ଦୀର୍ଘଦିନ ଅବସ୍ଥାନ କରିବାଦ୍ୱାରା ସେଠାକାର ପାଣିପବନ, ଆବହାୱା ସହିତ ସେ ଖୁବ୍ ପରିଚିତ। 'କ୍ୟାପିଟାଲ୍-ପୋଷ୍ଟ'ର ସମ୍ପାଦକ ବନ୍ଧୁ ସୁରେନ୍ଦ୍ର ସାହୁ ତାଙ୍କର ମସ୍କୋ ଟେଲିଫୋନ୍ ନମ୍ବର ଦେଇଥିଲେ। ନିଜ ରୁମ୍‌ରେ

ଟେଲିଫୋନ୍ ଥିଲେ ବି ମନରେ ଶଙ୍କା ସୃଷ୍ଟିହେଲା। ସେଠାକାର ଟେଲିଫୋନ୍ ବ୍ୟବସ୍ଥା ସମ୍ପର୍କରେ ଆଗରୁ କୌଣସି ଧାରଣା ନଥିବାରୁ ଡରି ଡରି ଟେଲିଫୋନ୍ ଡାଏଲ୍ କଲି। ପ୍ରଥମ ଡାଏଲ୍‌ରେ ହିଁ ବୈଷ୍ଣବବାବୁଙ୍କ ଘରେ ଫୋନ୍ ଲାଗିଗଲା। କିନ୍ତୁ ମୋର ଦୁର୍ଭାଗ୍ୟ ଯେ, ସେ ସେତେବେଳକୁ ଓଡ଼ିଶା ଚାଲିଆସିଥିଲେ। ତା'ପରେ ବନ୍ଧୁ ଧୀରେନ୍ ରାୟଙ୍କ ଟେଲିଫୋନ୍ ନମ୍ବରକୁ ଡାଏଲ୍ କଲି। ଧୀରେନ୍‌ବାବୁ ଇନ୍‌କମ୍ ଟ୍ୟାକ୍ସର ଜଣେ ବରିଷ୍ଠ ଅଫିସର୍। ମସ୍କୋସ୍ଥିତ ଭାରତୀୟ ଦୂତାବାସରେ ଉଚ୍ଚ ପଦବୀରେ ଅବସ୍ଥାପିତ ହୋଇଥିଲେ। ପୂର୍ବରୁ ଆୟକର କମିଶନର ଭାବେ ଧୀରେନ୍‌ବାବୁ ଖବ୍ ଜଣାଶୁଣା ଥିଲେ। ମସ୍କୋରୁ ପ୍ରତିରକ୍ଷା ବିଭାଗର କେତେକ ସରଞ୍ଜାମ ଖର୍ଦ୍ଦିରେ ଜଣେ ସଚ୍ଚୋଟ ଅଫିସରଙ୍କ ପରାମର୍ଶ ଆବଶ୍ୟକତା ପଡ଼ିବାରୁ ଅର୍ଥ ମନ୍ତ୍ରାଳୟ ପକ୍ଷରୁ ତାଙ୍କୁ ମସ୍କୋ ପଠାଯାଇଥିଲା। ଏହା ଯେକୌଣସି ଅଫିସରଙ୍କ ପକ୍ଷରେ ନିଶ୍ଚିତ ଭାବରେ ଗର୍ବ ଓ ଗୌରବର କଥା।

ଧୀରେନ୍‌ବାବୁ ଆମଠାରୁ କଲେଜ୍ ଜୀବନରେ ସିନିଅର୍ ହେଲେ ବି ତାଙ୍କର ସରଳ ଓ ଅମାୟିକ ବ୍ୟବହାର ଯୋଗୁଁ ତାଙ୍କ ସହିତ ଖୁବ୍ ବନ୍ଧୁତା ଥିଲା। ବିଶେଷ କରି ଏକାଧିକ ଏନ୍.ସି.ସି. କ୍ୟାମ୍ପରେ ଏକାଠି ରହିବା ଫଳରେ ଏହି ବନ୍ଧୁତା ଘନିଷ୍ଠତାରେ ପରିଣତ ହୋଇଥିଲା। ତା'ଛଡ଼ା, ସେ ଭୁବନେଶ୍ୱରରେ ଆୟକର ଅଫିସର୍ ଭାବେ ଯୋଗଦେବା ପରେ ସମ୍ପର୍କ ଅତ୍ୟନ୍ତ ନିକଟତର ହେଲା। ମୋର ସୌଭାଗ୍ୟକୁ ଧୀରେନ୍‌ବାବୁ ଘରେ ଥିଲେ। ମୋ ଫୋନ୍ ପାଇ ଆଶ୍ଚର୍ଯ୍ୟ ହେବା ସହିତ ଅତ୍ୟନ୍ତ ଖୁସି ହୋଇଗଲେ। ଆଗରୁ କୌଣସି ଖବର ଅନ୍ତର ନଦେଇ ହଠାତ୍ କିପରି ମସ୍କୋ ସହରରେ ପହଞ୍ଚିଗଲି ସେକଥା ପ୍ରଥମେ ସେ ବିଶ୍ୱାସ କରି ପାରିଲେ ନାହିଁ। ସାକ୍ଷାତ ହେଲେ ସବୁ ବିଷୟ କଥାବାର୍ତ୍ତା ହେବା ବୋଲି ତାଙ୍କୁ କହିଲି। କେତେବେଳେ ସାକ୍ଷାତ ହୋଇପାରିବ ବୋଲି ସେ ପଚାରିଲେ ଏବଂ ଯେତେଶୀଘ୍ର ସମ୍ଭବ ତାଙ୍କ ଘରକୁ ଯିବାକୁ ଆମନ୍ତ୍ରଣ କଲେ। କଥା ପ୍ରସଙ୍ଗରେ ଓଡିଶାର କମ୍ୟୁନିଷ୍ଟ୍ ନେତା ନନ୍ଦ କିଶୋର ପଟ୍ଟନାୟକ ଓ ପାର୍ଲାମେଣ୍ଟ୍ ସଦସ୍ୟ ଶ୍ରୀବଲ୍ଲଭ ପାଣିଗ୍ରାହୀ ମସ୍କୋ ଆସି ଆମେ ରହୁଥିବା ୟୁକ୍ରେନା ହୋଟେଲରେ ଥିବା କଥା ଧୀରେନ୍‌ବାବୁଙ୍କଠାରୁ ଜାଣିବାକୁ ପାଇଲି। ଆମ ପ୍ରତିନିଧି ଦଳରେ ମୁଁ ଏକମାତ୍ର ଓଡ଼ିଆ ଥିବାରୁ ମସ୍କୋ ସହରରେ ଓଡ଼ିଆ ବନ୍ଧୁଙ୍କ ସହିତ କଥାବାର୍ତ୍ତା ହେବାକୁ ମନରେ ପ୍ରବଳ ଆଗ୍ରହ ଜନ୍ମିଲା। ଧୀରେନବାବୁ ସେମାନଙ୍କର ରୁମ୍‌ର ନମ୍ବର ଦେଲେ। ନନ୍ଦବାବୁ ହୋଟେଲର ପାଞ୍ଚ ମହଲାରେ ୫୫ ନମ୍ବର କୋଠରି ଓ ଶ୍ରୀବଲ୍ଲଭବାବୁ ଚାରି ମହଲାର ୮୭ ନମ୍ବର କୋଠରିରେ ରହୁଥିଲେ। ରୁମ୍‌ର ନମ୍ବର ସିନା ମିଳିଗଲା, ହେଲେ ଯିବି କିପରି? ସବୁ ରାସ୍ତା ତ ସମାନ। ଥରେ ବାଉଳା ହେଲେ ତ କଥା ସରିଲା। ତେଣୁ ସେମାନଙ୍କ ରୁମକୁ ଯିବା ପରିବର୍ତ୍ତେ ଫୋନ୍ କରିବା ଶ୍ରେୟସ୍କର ହେବ ବିଚାରି ଫୋନ୍ ଲାଗାଇଲି। ଉଭୟେ ମୋ ଫୋନ୍ ପାଇ ବହୁତ୍ ଖୁସି ହେଲେ। ଏକ ସର୍ବଭାରତୀୟ

ପ୍ରତିନିଧି ଦଳରେ ଯୋଗ ଦେବାର ସୁଯୋଗ ପାଇଥିବାରୁ ସେମାନେ ମତେ ହାର୍ଦ୍ଦିକ ଶୁଭେଚ୍ଛା ଜ୍ଞାପନ କଲେ। ସେମାନେ ମଧ୍ୟ ଏକ ସର୍ବଭାରତୀୟ ପ୍ରତିନିଧି ଦଳରେ ମସ୍କୋ ଯାଇଥିଲେ। ସେଦିନ ସେମାନେ ମସ୍କୋରୁ ଫେରିବା କଥା। ସେଥିପାଇଁ ବ୍ୟସ୍ତ ଥିଲେ। ତଳେ ହୋଟେଲ ଲନ୍‌ରେ ଦେଖା କରିବାକୁ ପରାମର୍ଶ ଦେଇ ସେମାନେ ତଳକୁ ଆସିଲେ। ଅଳ୍ପ ସମୟ ପରେ ମୁଁ ମଧ୍ୟ ଲନ୍‌କୁ ଆସି ନିର୍ଦ୍ଧାରିତ ସ୍ଥାନରେ ସେମାନଙ୍କୁ ସାକ୍ଷାତ କଲି। ମୁଁ ସେଦିନ ଅନୁଭବ କରିଥିଲି ଯେ, ଆମ ସାକ୍ଷାତରେ ମୋ ଅପେକ୍ଷା ସେମାନେ, ବିଶେଷ କରି ଶ୍ରୀବଲ୍ଲଭବାବୁ ଅଧିକ ଖୁସି ହୋଇଥିଲେ। ଅଳ୍ପ ସମୟ ପରେ ସେମାନେ ଅନ୍ୟାନ୍ୟ ପ୍ରତିନିଧିଙ୍କ ସହିତ ବାହାରିବାରୁ ମୁଁ ମୋ ରୁମ୍‌କୁ ଫେରିଆସିଲି।

## ଯେ ଦେଶ ଯାଇ, ସେ ଫଳ ଖାଇ

ଯଥା ସମୟରେ ଆମ ବନ୍ଧୁମାନେ ଆସି ବ୍ରେକଫାଷ୍ଟ ଟେବୁଲରେ ବସି ସାରିଥିଲେ। ମୁଁ ଯାଇ ସେମାନଙ୍କ ସାଙ୍ଗରେ ଯୋଗଦେଲି। କିନ୍ତୁ ସେଠାରେ ପହଞ୍ଚିଲା ପରେ ଭୋକ ଆପେ ଆପେ ମରିଗଲା; କାରଣ ସାକାହାରୀମାନଙ୍କ ପାଇଁ ସେଠାରେ ଯାହା ବ୍ୟବସ୍ଥା ଥିଲା, ତାହା ଖାଇବା ନ ଖାଇବା ସଙ୍ଗେ ସମାନ। କିଛି ସାନ ବନ୍ ଓ ଜାମ୍ ବ୍ୟତୀତ ସାଦା ଖାଇବା ଲୋକଙ୍କ ପାଇଁ ଆଉ କିଛି ଖାଦ୍ୟ ନଥିଲା। ଇଚ୍ଛା ନଥିଲେ ବି ଗୋଟିଏ ବନ୍ ଓ ଚା' ପାଇଁ ଥିବା କିଛି କ୍ଷୀର ଖାଇ ସକାଳର ବ୍ରେକ୍‌ଫାଷ୍ଟ୍ କାମ ସାରିବାକୁ ପଡ଼ିଲା। ମୋ ଭଳି ଅନ୍ୟ ଯେଉଁମାନେ ସାକାହାରୀ ଥିଲେ, ସେମାନଙ୍କର ମଧ୍ୟ ସେଇ ଏକା ଦଶା। ମାତ୍ର ଆମିଷାଶୀମାନଙ୍କ ପାଇଁ କିଛି ଫରକ ନଥିଲା। ଟୋଷ୍ଟ୍, ଓମ୍‌ଲେଟ୍ ନହେଲେ ଅଣ୍ଡା ପୋଚ୍। ବିନା ପ୍ରତିକ୍ରିୟାରେ କେଇ ମିନିଟ୍‌ରେ ସବୁ ଶେଷ।

ଜଳଖିଆ ପର୍ବ ଶେଷରେ ଆମେସବୁ ସଭାପତିଙ୍କ ରୁମ୍‌ରେ ଏକାଠି ହେଲୁ। ମସ୍କୋ ରହଣି ସମୟ ମଧ୍ୟରେ କେତେ ଅଧିକ ଜାଗା ବୁଲିହେବ, ସେସବୁର ତାଲିକା ପ୍ରସ୍ତୁତ ହେଲା। ଆମ ଭିତରୁ କିଛି ବନ୍ଧୁ ମସ୍କୋ ସହରର ନକ୍ସା ଓ ବିଶେଷ ଦର୍ଶନୀୟ ସ୍ଥାନର ତାଲିକା ସାଙ୍ଗରେ ନେଇଥିଲେ। ଆଲୋଚନା ପରେ ସ୍ଥିର ହେଲା, କିଛି ସମୟ ବିଶ୍ରାମ ନେଇ ମଧ୍ୟାହ୍ନଭୋଜନ ପରେ ମସ୍କୋ ସହରକୁ ଯିବା ପାଇଁ।

## ମସ୍କୋ ସହର ଭ୍ରମଣ

ଅପରାହ୍ନ ସାଢ଼େଗୋଟାଏ ବେଳେ ଅନ୍ୟ ବନ୍ଧୁମାନଙ୍କ ସହ ୟୁକ୍ରେନା ହୋଟେଲର ଡାଇନିଂ ହଲ୍‌କୁ ଗଲାବେଳେ ହଲ୍‌ଟି ପ୍ରାୟ ଭରପୂର ହୋଇଯାଇଥିଲା। ହଲ୍‌ଟିକୁ ଦେଖିଲେ

ମନେହେଉଥିଲା ସତେ ଯେପରି ସେଠାରେ ଗୋଟିଏ ଆନ୍ତର୍ଜାତିକ ମେଳା ଚାଲିଥିଲା। ଯାହାହେଉ ପନ୍ଦରମିନିଟ୍ ମଧ୍ୟରେ ବସିବାକୁ ଜାଗା ମିଳିଗଲା। ଅପରାହ୍ନରେ ବହୁ ଅଞ୍ଚଳ ବୁଲିବାକୁ ଯିବାପାଇଁ ଥିବାରୁ ଆମେ ଶୀଘ୍ର ଖାଇବା ଶେଷ କରିବା ଚେଷ୍ଟାରେ ଥିଲୁ।

ଯେଉଁମାନେ ଆମିଷ ଭୋଜନ କରନ୍ତି, ସେମାନଙ୍କ ପାଇଁ କିଛି ଅସୁବିଧା ନଥିଲା। କିନ୍ତୁ ଆମେ ଯେଉଁମାନେ ନିରାମିଷାଶୀ, ସେମାନଙ୍କ ପାଇଁ ସମସ୍ୟା ସୃଷ୍ଟି ହେଲା। ସବୁ ତ ମାଂସ ଆଉ ଖାଇବୁ କ'ଣ? ଭାବିଲୁ ସୁପ୍ ପିଇଦେଲେ କାମ ଚଳିଯିବ। କିନ୍ତୁ ସୁପ୍‌ରୁ ମଧ୍ୟ ଆମିଷ ଗନ୍ଧ ଆସୁଥିଲା। ଶେଷରେ ସ୍ଥିରକଲୁ ସକାଳ ଭଳି କେବଳ ବନ୍ ଓ ଜାମ୍‌ରେ କାମ ଚଳେଇଦେବା। କିନ୍ତୁ ସକାଳେ ସିନା ଜଳଖିଆ ବୋଲି ସେଥିରେ ଚଳିଗଲା, ହେଲେ ମଧ୍ୟାହ୍ନ ଭୋଜନ କେମିତି ଚଳିବ? ଚାରିଆଡ଼େ ପୋର୍କ, ବିଫ୍ ମୁଣ୍ଡା ମୁଣ୍ଡା ହୋଇ ଥୁଆ ହୋଇଥିଲା। ପାଖରେ ଧାରୁଆ ଛୁରି। ହାତରେ କାଟି ଖାଇବା କଥା। ସମୟ କମ୍। ଚିନ୍ତା କରିବାକୁ ବେଳ ନଥିଲା। ଯେନତେନ ପ୍ରକାରେଣ ଯାହା ଟିକିଏ ପାଟିରେ ପକେଇଦେଇ ଆମେ ଶୀଘ୍ର ଯାଇ କୋଚ୍‌ରେ ବସିଲୁ।

ସମୟ ଅଢ଼େଇଟା ବେଳକୁ ଆମ କୋଚ୍ ଯାଇ ପହଞ୍ଚିଲା ମସ୍କୋ ବିଶ୍ୱବିଦ୍ୟାଳୟ ସମ୍ମୁଖରେ। ମସ୍କୋ ନଗରୀରେ ବିଦେଶୀ ନାଗରିକଙ୍କ ଚଳାଚଳ ଉପରେ କଟକଣା ଥିବା ଦୃଷ୍ଟିରୁ ଆମର କାର୍ଯ୍ୟକ୍ରମ ସବୁ ଆଗରୁ ସ୍ଥିର କରାଯାଇଥିଲା। ସେଥିପାଇଁ ଆମର ସେଠାରେ ପହଞ୍ଚିବାରେ କିଛି ଅସୁବିଧା ହେଲାନାହିଁ। ମସ୍କୋ ବିଶ୍ୱବିଦ୍ୟାଳୟଟି 'ମସ୍କୋ ଷ୍ଟେଟ୍ ୟୁନିଭର୍ସିଟି' ନାମରେ ପରିଚିତ। ଲେନିନ୍ ହିଲ୍‌ସ ଉପରେ ୩୨ ମହଲାବିଶିଷ୍ଟ ଟାୱାରରେ ଏହି ବିଶ୍ୱବିଦ୍ୟାଳୟ ଅବସ୍ଥିତ। ବିଶ୍ୱବିଦ୍ୟାଳୟ କୋଠାକୁ ଦେଖି ଆଖି ଝଲସିଗଲା। ଗୋଟିଏ ବିଶ୍ୱବିଦ୍ୟାଳୟ ପାଇଁ ପୁଣି ଏତେ ବଡ଼ କୋଠା! ଯେଉଁ ମହାପୁରୁଷ ଦେଶର ଭବିଷ୍ୟତମାନଙ୍କୁ ଗଢ଼ିବା ପାଇଁ ଏପରି ଏକ ସୌଧର ପରିକଳ୍ପନା କରିଥିଲେ, ତାଙ୍କରି ସ୍ମୃତିରେ ମୁଣ୍ଡ ଆପେ ଆପେ ନଇଁଗଲା। ଆମ ସାଙ୍ଗରେ ଥିବା ଗାଇଡ୍ ଆମକୁ ବୁଝାଇଦେଲେ ଯେ, ମସ୍କୋ ବିଶ୍ୱବିଦ୍ୟାଳୟରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ପ୍ରାୟ ୪୦ ହଜାର। ଏହି ଛାତ୍ରଛାତ୍ରୀମାନଙ୍କ ପାଇଁ ହଷ୍ଟେଲ୍‌ର ବ୍ୟବସ୍ଥା ଅଛି। ସ୍ୱାଭାବିକ ପାଠପଢ଼ା ସହିତ ଏହି ବିଶ୍ୱବିଦ୍ୟାଳୟରେ ଗବେଷଣା କାର୍ଯ୍ୟ କରାଯାଇଥାଏ। ସବୁ ସୁସଙ୍ଗଠିତ ଓ ସବୁକଥା ଶୃଙ୍ଖଳିତ ଭାବରେ ଚାଲେ।

ମସ୍କୋ ବିଶ୍ୱବିଦ୍ୟାଳୟ ଭିତରେ ବୁଲୁ ବୁଲୁ ଆମ ରାଜ୍ୟର ସର୍ବପୁରାତନ ବିଶ୍ୱବିଦ୍ୟାଳୟ (ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର) ହତାର ଦୃଶ୍ୟ ମନେ ପଡ଼ିଗଲା। ରାଜ୍ୟର ରାଜଧାନୀ ଭୁବନେଶ୍ୱର ସହରରେ ଅବସ୍ଥାପିତ ଏହି ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ପାଣି ଅଭାବରୁ କିପରି ମଝିରେ ମଝିରେ ସ୍ୱାଭାବିକ ଶିକ୍ଷାଦାନ ବାଧାପ୍ରାପ୍ତ ହୁଏ, ବିଶ୍ୱବିଦ୍ୟାଳୟ ହତା କିପରି ବୁଲାଗୋରୁ ଓ ଅସାମାଜିକ ଯୁବକଙ୍କ ଚରାଭୂଇଁ

ପାଇଛି, ସେକଥା ମନ ମଧ୍ୟରେ ଉଙ୍କି ମାରିଲା । ଭାବିଲି, ବୋଧହୁଏ ଆମ ଜୀବଦ୍ଦଶାରେ ଭାରତବର୍ଷରେ ଏପରି ଗୋଟିଏ ବିଶ୍ୱବିଦ୍ୟାଳୟ ଆମେ ଦେଖିପାରିବୁ ନାହିଁ। ସତକୁ ସତ ଆଜି ପର୍ଯ୍ୟନ୍ତ ଓଡ଼ିଶାରେ କାହିଁକି, ସମଗ୍ର ଦେଶରେ ମସ୍କୋ ବିଶ୍ୱବିଦ୍ୟାଳୟ ଭଳି ଶିକ୍ଷାନୁଷ୍ଠାନଟିଏ ଦେଖିବାକୁ ମିଳୁନାହିଁ। ବିଶ୍ୱବିଦ୍ୟାଳୟ ବୁଲି ଦେଖିବାରେ ଏତେ ସମୟ ଲାଗିଗଲା ଯେଉଁଥିରେ ସେ ଦିନ ଆଉ ଅଧିକ ସ୍ଥାନ ଦେଖିବାର ସୁଯୋଗ ମିଳିଲା ନାହିଁ। ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଆମେ ସନ୍ଧ୍ୟାରେ ହୋଟେଲକୁ ଫେରିଆସି ରାତିରେ ବିଶ୍ରାମ ନେଇଥିଲୁ।

ମସ୍କୋରେ ଥିବା କୋରିଆ ଦୂତାବାସର ଅଫିସର କମ୍ରେଡ୍ କୀମ୍ ଆମ ସାଙ୍ଗରେ ମସ୍କୋ ସହର ଭ୍ରମଣରେ ଯିବାପାଇଁ ସମ୍ମତି ଦେଇଥିଲେ। ଭାଷା, ସଂସ୍କୃତି ଓ କଥାବାର୍ତ୍ତାରେ ପ୍ରଭେଦ ଥିବାରୁ ଆମେ ଶ୍ରୀ କୀମ୍‌ଙ୍କୁ ସାଙ୍ଗରେ ଯିବା ପାଇଁ ଅନୁରୋଧ କରିଥିଲୁ। ଆମ ଭାଇମାନଙ୍କୁ ଖାଇବାର ଲାଳସା ଏତେଦୂର ଗ୍ରାସ କରିଥିଲା ଯେ, ସେଦିନ ଠିକ୍ ସମୟରେ ବାହାରିବା ପାଇଁ କାହାକୁ ତାଗିଦ୍ କରିବାକୁ ପଡ଼ିନଥିଲା। ସକାଳ ଆଠଟା ପୂର୍ବରୁ ସମସ୍ତେ ପ୍ରସ୍ତୁତ ହୋଇ ପ୍ରାତଃଭୋଜନ ପାଇଁ ଡାଇନିଂ ହଲ୍‌କୁ ଯିବାକୁ ବାହାରିପଡ଼ିଥିଲେ। ଯଥାଶୀଘ୍ର ଜଳଖିଆ ପର୍ବ ଶେଷ କରି ବାହାରକୁ ଆସିଲାବେଳେକୁ ଆମପାଇଁ ଏକ ଶୀତତାପ ନିୟନ୍ତ୍ରିତ କୋଚ୍ ଧରି ଶ୍ରୀ କୀମ୍ ଅପେକ୍ଷା କରି ବସିଥିଲେ। ମସ୍କୋ ସହରରେ ଦୀର୍ଘଦିନ ହେଲା ରହିବା ଫଳରେ ସେଠାକାର ଚାଲିଚଳଣ ସହିତ ସେ ବେଶ୍ ପରିଚିତ ଥିଲେ। ସେଥିପାଇଁ କୁଆଡ଼େ ଗଲେ ତାଙ୍କର କିଛି ଅସୁବିଧା ହେଉନଥିଲା।

ନିର୍ଦ୍ଧାରିତ ସମୟରେ ଆମ କୋଚ୍ ସହର ଅଭିମୁଖେ ହୋଟେଲ ୟୁକ୍ରେନା ଛାଡ଼ିଲା। ଯିବା ବାଟରେ ଲେନିନ୍ ଲାଇବ୍ରେରୀ ପଡ଼ିଲା। ଲେନିନ୍ ଲାଇବ୍ରେରୀଟି ସେ ଦେଶର କେନ୍ଦ୍ରୀୟ ଲାଇବ୍ରେରୀ । ସେଥିରେ ଅଗଣିତ ପୁସ୍ତକ ସାଙ୍ଗକୁ ବିଭିନ୍ନ ଦେଶ-ବିଦେଶର ପତ୍ରପତ୍ରିକା ଦେଖିବାକୁ ମିଳେ। ସେହି ଲାଇବ୍ରେରୀଟି ୟୁରୋପ ମହାଦେଶର ସବୁଠାରୁ ବଡ଼ ଲାଇବ୍ରୋରୀ ବୋଲି କମ୍ରେଡ୍ କୀମ୍ ଆମକୁ ବୁଝାଇଥିଲେ। ଲାଇବ୍ରେରୀ ଭିତରକୁ ଯାଇ ସେଠାକାର ପ୍ରଚଳିତ ବ୍ୟବସ୍ଥାକୁ ଅନୁଧ୍ୟାନ କରିବା ପାଇଁ ମନରେ ପ୍ରବଳ ବାସନା ଥିଲେ ବି ସମୟର ସ୍ୱଳ୍ପତା ଯୋଗୁଁ ତାହା ସାକାର ହୋଇ ପାରିନଥିଲା। କମ୍ରେଡ୍ କୀମ୍ ଆମକୁ ସବୁବେଳେ ସମୟ ସମ୍ପର୍କରେ ଚେତେଇ ଦେଉଥିଲେ। ଆମ ସଭାପତିଙ୍କର ମଧ୍ୟ କଡ଼ା ତାଗିଦ୍, "ଯେତେ ବୁଲିବ ସେତେ ଦେଖିବ। ଯାହା ରହିଯିବ ତାକୁ ଦେଖିବା ହୁଏତ ଜୀବନରେ ଆଉ ସମ୍ଭବ ହୋଇ ନପାରେ।"

ମସ୍କୋର ମୁଖ୍ୟ ଆକର୍ଷଣ 'କ୍ରେମ୍‌ଲିନ୍' ଓ 'ରେଡ୍‌ସ୍କୋୟାର୍' ଦେଖିବାର କାର୍ଯ୍ୟକ୍ରମ ଥିବାରୁ ଆମେ ଅନିଚ୍ଛାସତ୍ତ୍ୱେ ଶୀଘ୍ର ଆସିବାକୁ ବାଧ୍ୟ ହେଲୁ। କ୍ରେମ୍‌ଲିନ୍ ହେଉଛି ମସ୍କୋର ମୁଖ୍ୟ କେନ୍ଦ୍ରସ୍ଥଳୀ ଓ ପ୍ରାଣକେନ୍ଦ୍ର। ତା' ଭିତରେ ରହିଛି 'ପ୍ରେସିଡିୟମ୍ ଅଫ୍ ସୁପ୍ରିମ୍

ସୋଭିଏଟ୍' ବା ସୋଭିଏତ୍ ୟୁନିଅନ୍‌ର ପାର୍ଲାମେଣ୍ଟ୍। କ୍ରେମଲିନ୍‌ର ମଶୋଲିୟମ୍ ଦିଲ୍ଲୀର ରାଜଘାଟ ସଦୃଶ। ସେଠାରେ ମହାନ୍ ବିପ୍ଳବୀ ଯୋଦ୍ଧା ତଥା ଋଷିଆର ମୁକ୍ତିଦାତା ଲେନିନ୍‌ଙ୍କ ମରଶରୀରକୁ ବୈଜ୍ଞାନିକ କୌଶଳ ପ୍ରୟୋଗ କରାଯାଇ ସଂରକ୍ଷିତ ରଖାଯାଇଛି ଏବଂ ସେ ସ୍ଥାନକୁ ଅହୋରାତ୍ର ସଶସ୍ତ୍ର ପ୍ରହରୀ ଜଗି ରହିଛନ୍ତି। ପ୍ରତି ଦୁଇଘଣ୍ଟାରେ ସେଠାରେ ଗାର୍ଡ ବଦଳନ୍ତି। ଗାର୍ଡମାନଙ୍କୁ ଦେଖିଲେ ମନରେ ଭ୍ରମ ଜାତହୁଏ। ସେମାନେ ଜୀବନ ଥିବା ରକ୍ତମାଂସର ଶରୀର କିମ୍ବା ପଥର ନିର୍ମିତ ମୂର୍ତ୍ତି, ସେକଥା ହଠାତ୍ ବୁଝି ହୁଏ ନାହିଁ। ସେହି ଗାର୍ଡ ପରିବର୍ତ୍ତନ ଦୃଶ୍ୟକୁ ଦେଖିବା ପାଇଁ ସର୍ବଦା ଶତାଧିକ ବ୍ୟକ୍ତି କ୍ରେମ୍‌ଲୀନ୍‌ରେ ଉପସ୍ଥିତ ହେଉଥିଲେ। ଆମେ ଯାଇ ସେମାନଙ୍କ ସହିତ ଯୋଗଦେଲୁ। ୧୧ଟା ୫୦ ମିନିଟ୍ ବେଳକୁ ସାମାନ୍ୟ ଆଲୋଡ଼ନ ସୃଷ୍ଟି ହେଲା। ଦୁଇଜଣ ଗାର୍ଡ ସାମରିକ ଆଦବ କାଇଦାରେ ମାର୍ଚ୍ଚ କରି ଆସିଲେ। ଘଣ୍ଟାରେ ଠିକ୍ ବାରଟା ବାଜିଲାବେଳେ ପୁରୁଣା ଗାର୍ଡ ନିଜ ସ୍ଥାନରୁ ହଟିଗଲେ ଏବଂ ନୂଆ ଗାର୍ଡ ସେମାନଙ୍କ ସ୍ଥାନ ଅଧିକାର କରିନେଲେ। ମୁହୂର୍ତ୍ତକ ମଧ୍ୟରେ ସିନେମା ଛବି ଭଳି ଗାର୍ଡ ବଦଳିଗଲେ।

କ୍ରେମଲିନ୍ ସାମନାରେ 'ରେଡ୍‌ସ୍କୋୟାର୍'। ଏହି ସ୍ଥାନକୁ ସେ ଦେଶବାସୀ ଅତି ପବିତ୍ର ସ୍ଥାନ ବୋଲି ମନେକରନ୍ତି। ଅତୀତର ମୁକ୍ତିସଂଗ୍ରାମକୁ ମନେପକାଇ ପ୍ରତିବର୍ଷ ସେଠାରେ ସାମରିକ ପ୍ୟାରେଡ୍ ଅନୁଷ୍ଠିତ ହୋଇଥାଏ। ସେଠାରେ ଆଗନ୍ତୁକମାନଙ୍କ ବସିବା ପାଇଁ ବ୍ୟବସ୍ଥା ରହିଛି। ଋଷବାସୀଙ୍କର ଈଶ୍ୱର ପୂଜାରେ ବିଶ୍ୱାସ ନଥିଲେ ମଧ୍ୟ ରେଡ୍‌ସ୍କୋୟାର୍‌ରେ ଅନେକଗୁଡ଼ିଏ ଗୀର୍ଜା (ଚର୍ଚ୍ଚ) ସୁରକ୍ଷିତ ଅବସ୍ଥାରେ ରହିଛି ଏବଂ ତାହା ଦେଶର ସର୍ବୋଚ୍ଚ ଧର୍ମପୀଠର ମାନ୍ୟତା ଲାଭ କରିଛି। ରେଡ୍‌ସ୍କୋୟାର୍‌ରେ ବୁଲାବୁଲି ସରିଲା ବେଳକୁ ଗୋଟାଏ ବାଜି ସାରିଥିଲା।

ମସ୍କୋର ମେଟ୍ରୋ ଟ୍ରେନ୍ ବାସ୍ତବିକ ଏକ ଉନ୍ନତ ପରିକଳ୍ପନା। ମାଟିତଳେ ଲାଇନ୍ ବିଛାଯାଇ ଟ୍ରେନ୍‌ସବୁ ଚଳାଚଳ କରୁଛି। ଅଳ୍ପ ବ୍ୟବଧାନରେ ଷ୍ଟେସନ୍ ସବୁ ରହିଛି। ବୈଜ୍ଞାନିକ କୌଶଳ ଅବଲମ୍ବନ କରାଯାଇ ମାଟିତଳେ ଥିବା ଷ୍ଟେସନ୍‌ରେ ଯଥେଷ୍ଟ ପରିମାଣର ଆଲୋକ ଓ ଶୁଦ୍ଧ ବାୟୁ ମିଳିପାରୁଛି। ଷ୍ଟେସନ୍‌ରେ ଟିକେଟ୍ ବିକ୍ରି ପାଇଁ କାଉଣ୍ଟର୍ ରହିଥିଲେ ବି ତାକୁ ନିୟନ୍ତ୍ରଣ କରିବାକୁ କେହି ନଥିଲେ। ସବୁ ମେସିନ୍ କରୁଥିଲା। ପାଞ୍ଚ କୋପେକ୍ ପକାଇଦେଲେ ଆପେ ଆପେ ଟିକେଟ୍ ବାହାରି ଆସୁଥିଲା। ତାକୁ ନେଇ ଗେଟ୍‌ରେ ପଞ୍ଚ୍ କରିଦେଲେ ଗେଟ୍ ଖୋଲିଯାଏ। ହେଲେ ଟିକେଟ୍ ନଥିବା ବ୍ୟକ୍ତି କିମ୍ବା ପୁରୁଣା ଟିକେଟ୍ ବ୍ୟବହାର କରୁଥିବା ଯାତ୍ରୀଙ୍କ ପାଇଁ ଗେଟ୍ ବନ୍ଦ।

ଷ୍ଟେସନ୍ ବାହାରେ ରେଜା ଭଙ୍ଗାଇବା ପାଇଁ ଲାଗିଥିବା ମେସିନ୍‌ଟିରୁ ରୁବେଲ୍‌ଟିଏ ପକାଇଦେଲେ କୋପେକ୍ ସବୁ ବାହାରିଆସୁଥିଲା। କାହାରି କିଛି ଅସୁବିଧା ହେଉନଥିଲା। ସେସବୁ ଦେଖି ଆମ ଦେଶର ରେଳ ବ୍ୟବସ୍ଥା କଥା ମନରେ ଆସିଗଲା। ସକାଳୁ ୫.୨

ଟିକେଟ୍ ପାଇଁ ଲାଇନ୍‌ରେ ଛିଡ଼ା ହୋଇଥିଲେ ବି ଦଲାଲ୍‌ମାନଙ୍କ ପ୍ରାଦୁର୍ଭାବ ହେତୁଁ ଅନେକ ସମୟରେ ଟିକେଟ୍ ନପାଇ କିପରି ଲୋକ ନିରାଶରେ ଘରକୁ ଫେରନ୍ତି, ରିଜର୍ଭେସନ୍ ଥିଲେ ସୁଦ୍ଧା ଆମ ଦେଶରେ କିପରି ଲୋକେ ନିଜ ଅଧିକାରରୁ ବଞ୍ଚିତ ହୁଅନ୍ତି, ସେସବୁ କଥା ଆଖି ଆଗରେ ନାଚିଗଲା। ସେଠାରେ ତ ଶହ ଶହ ଲୋକ ଯିବା ଆସିବା କରୁଥିଲେ, ମାତ୍ର କାହାରି କିଛି ଅସୁବିଧା ହେଉନଥିଲା। କାହାରି ମନରେ କ୍ଷୋଭ ବା ଅନୁଶୋଚନା ନଥିଲା। ଯିଏ ଯାହା କର୍ତ୍ତବ୍ୟ ସୁରୁଖୁରୁରେ କରିଚାଲୁଥିଲେ।

## ପୁରୁଣା ବନ୍ଧୁଙ୍କ ଘରେ ତୃପ୍ତିକର ଭୋଜନ

ମସ୍କୋରେ ଖାଦ୍ୟପେୟର ବ୍ୟବସ୍ଥା ଦେଖି ମନ ଖରାପ ହୋଇଯାଇଥିଲା। ରୁଚି ଅନୁଯାୟୀ ଖାଦ୍ୟସାମଗ୍ରୀ ନମିଳିଲେ ଭୋଜନ ତୃପ୍ତିକର ହୁଏନାହିଁ। ସେଥିପାଇଁ ସନ୍ଧ୍ୟାରେ ଧୀରେନ୍‌ବାବୁଙ୍କ ଘରକୁ ଯିବାକୁ କଥା ଦେଇଥିଲି। ସେ ମଧ୍ୟ ନିଜେ ଆସି ମତେ ନେଇଯିବେ ବୋଲି କହିଥିଲେ। ହଠାତ୍ ଆମ ରୁମ୍‌ର ଫୋନ୍ ବାଜିଉଠିଲା। ମୁଁ ରିସିଭର୍ ଉଠାଇଲା ବେଳକୁ ସେପଟୁ ଚିହ୍ନା କଣ୍ଠରେ ଶୁଣାଗଲା, "ମୁଁ ଧୀରେନ୍ କହୁଛି, ମୁଁ ଆଉ ମୋ ମିସେସ୍ ତମକୁ ନେବାପାଇଁ ଆସିଛୁ। ଆମ କାର୍ ୟୁକ୍ରେନା ହୋଟେଲ ସାମନାରେ ଚାରି ନମ୍ବର ଖମ୍ବ ପାଖରେ ପାର୍କିଂ ହୋଇଛି ଏବଂ ଆମେ କାର୍ ସାମନାରେ ଛିଡ଼ା ହୋଇଛୁ। ଆସ, ଆମ ଘରକୁ ଯିବା।" ସନ୍ଧ୍ୟା କାର୍ଯ୍ୟକ୍ରମରେ ଯୋଗ ଦେଇ ପାରିବି ନାହିଁ ବୋଲି ସଭାପତି ବିକ୍ରମବାବୁଙ୍କୁ ଜଣାଇଦେବାପାଇଁ ରୁମ୍‌ମେଟ୍ ଶ୍ରୀ ମୁଖାର୍ଜୀଙ୍କୁ ଅନୁରୋଧ କରି ମୁଁ ଲିଫ୍ଟ ପାଖକୁ ଚାଲିଲି।

ଧୀରେନ୍‌ବାବୁଙ୍କ ସହିତ ଦୀର୍ଘଦିନର ବ୍ୟବଧାନ ପରେ ଦେଖା। ତା' ପୁଣି ଏକ ବିଦେଶ ରାଷ୍ଟ୍ରରେ। ଉଭୟଙ୍କ ମନରେ ଅତୀତର ବହୁ ଘଟଣା ଛବିଭଳି ଆପେ ଆପେ ଆସିଗଲା। କଲେଜ୍ ଜୀବନରେ ଏନ୍.ସି.ସି. କ୍ୟାମ୍ପ୍‌ରେ ନିମ୍ନମାନର ଖାଦ୍ୟ ପରିବେଷଣ ବିରୋଧରେ ସ୍ୱର ଉତ୍ତୋଳନଠାରୁ ଆରମ୍ଭ କରି ଭୁବନେଶ୍ୱରରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନରେ ଅଂଶଗ୍ରହଣ ପର୍ଯ୍ୟନ୍ତ ଜୀବନରେ ବହୁ ଘଟଣା ଘଟିଥିଲା। ଭୁବନେଶ୍ୱରରେ ଶ୍ରୀ ରାୟ ଜଣେ ଆୟକର ଅଫିସର୍, ଆଉ ଏ ଲେଖକ ଜଣେ ପେଷାଦାର ସାମ୍ବାଦିକ। ବହୁଥର ବହୁ ଘଟଣାରେ ସାକ୍ଷାତ ହୋଇଥିଲା। ଉଭୟେ ନିଜ ନିଜର ବୃତ୍ତି ଓ ସ୍ଥିତିକୁ ପ୍ରତିନିଧିତ୍ୱ କରିଥିଲେ ବି ବନ୍ଧୁତା ଅକ୍ଷୁଣ୍ଣ ରହିଥିଲା।

ଧୀରେନ୍‌ବାବୁଙ୍କ ଘରେ ପହଞ୍ଚୁ ପହଞ୍ଚୁ ଶ୍ରୀମତୀ ମାୟା ରାୟ (ଧୀରେନ୍‌ବାବୁଙ୍କ ପତ୍ନୀ)ଙ୍କ ବରାଦ, "କ'ଣ ଖାଇବେ?" ମୁଁ କହିଲି, "ଦେଖନ୍ତୁ, ବିଦେଶରେ ଆମ ଘର ଖାଇବା କଥା ମନେପଡୁଛି। ଏଠି ମୁଁ ଯାହା ଦେଖୁଛି, ଖାଇବା ବିନା ଅଧାପ୍ରାଣ

ହୋଇଯିବି।" ସେ ପରିହାସରେ କହିଲେ, "ଆପଣ ମସ୍କୋ ସହରକୁ ଆସି ସାଦା ତରକାରି ଖୋଜିବେ, କୁଆଡୁ ମିଳିବ ? ଏଠି ଲୋକେ ନିରାମିଷ ଭୋଜନ ସମ୍ପର୍କରେ ସଚେତନ ନୁହଁନ୍ତି। ଲୋକଙ୍କର ଭୋଜନରେ ବାଛବିଚାର କିଛି ନାହିଁ। ଲୋକେ ଖୁବ୍ ଖାଆନ୍ତି ଏବଂ ଖୁବ୍ ପିଅନ୍ତି। ଖୁବ ପରିଶ୍ରମ ମଧ୍ୟ କରନ୍ତି। ସେଥିପାଇଁ ଏଠାକାର ସମସ୍ତେ ପ୍ରାୟ ସ୍ୱାସ୍ଥ୍ୟବାନ। ଆମ ଦେଶଭଳି ଖାଇବା ପିଇବାରେ ଏତେ କଟକଣା ଏଠାରେ ନାହିଁ।"

ଏତିକି କହି ଝିଅ ହାତରେ କିଛି ସ୍ନାକ୍ସ ପଠାଇ ଦେଇ ଶ୍ରୀମତୀ ରାୟ ରାତ୍ରିଭୋଜନ ପ୍ରସ୍ତୁତ କରିବା ନିମନ୍ତେ ରୋଷେଇ ଘରକୁ ଗଲେ। ଏହା ଭିତରେ ଆମର ଆରମ୍ଭ ହୋଇଗଲା ଗପ। ଢିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ। ଗଳ୍ପ ମଧ୍ୟରେ ମୁଁ ମଧ୍ୟ ଋଷିଆର ସାମାଜିକ ଜୀବନର ଏକ ପ୍ରତିଛବି ଧୀରେନବାବୁଙ୍କଠାରୁ ପାଇଯାଇଥିଲି। ମଣିଷ ଜୀବନର ମୌଳିକ ଆବଶ୍ୟକତା ଯଥା - ଶିକ୍ଷା, ସ୍ୱାସ୍ଥ୍ୟ, କର୍ମସଂସ୍ଥାନ, ବାସଗୃହ ଇତ୍ୟାଦି କିପରି ସମସ୍ତଙ୍କୁ ଯୋଗାଇ ଦିଆଯାଇ ପାରୁଥିଲା ଏବଂ ବୃଦ୍ଧାବସ୍ଥାରେ ସମାଜ କିପରି ସମସ୍ତଙ୍କର ଦାୟିତ୍ୱ ଗ୍ରହଣ କରୁଥିଲା ତାଙ୍କ ସହିତ କଥାବାର୍ତ୍ତାରୁ ସେ ସମ୍ପର୍କରେ ମୋର ଏକ ସ୍ୱଷ୍ଟ ଧାରଣା ଜନ୍ମିଥିଲା। ଏହା ଭିତରେ କେତେବେଳ ଦୁଇଘଣ୍ଟା ସମୟ ଅତିବାହିତ ହୋଇ ଯାଇଥିଲା, ସେକଥା ଆମେ ଦି'ଜଣ ଜାଣିପାରି ନଥିଲୁ। "ଖାଇବା ବଢ଼ାହେଲାଣି। କ'ଣ ଆଜି ଗପ ସରିବ ନାହିଁ?" ଶ୍ରୀମତୀ ରାୟଙ୍କର ଏଇ କଥା ଶୁଣି ଆମେ ଗଳ୍ପ ଦୁନିଆରୁ ବାସ୍ତବ ଦୁନିଆକୁ ଫେରିଆସିଲୁ।

ଖାଇବା ଟେବୁଲ ଉପରେ ସୁସ୍ୱାଦୁ ଖାଦ୍ୟସାମଗ୍ରୀ। ବାସୁମତୀ ଚାଉଳ ଭାତ, ଡାଲି, କୋବି ତରକାରି, ଦହି ବାଇଗଣ, ବାଇଗଣ ଭଜା, ସାଲାଡ୍ ଓ ପାମ୍ପଡ୍ ଇତ୍ୟାଦି। ଖାଦ୍ୟର ବାସନାରେ ପେଟ ଅଧା ପୂରିଗଲା। ଦୁଇଦିନ ହେଲା ସ୍ୱାଭାବିକ ଭୋଜନ ହୋଇନଥିଲା, ପୁଣି ସାମ୍ନାରେ ଲୋଭନୀୟ ଖାଦ୍ୟ। ଆଉ ଅପେକ୍ଷା କରିବାକୁ ବେଳ କାହିଁ ? ସାଙ୍ଗେ ସାଙ୍ଗେ ଖାଇବା ଆରମ୍ଭ ହୋଇଗଲା। ମସ୍କୋ ସହରରେ ଆମ ଘର ଭଳି ଖାଦ୍ୟ ଦେଖି ମୁଁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲି। ଆମେ ସରକାରଙ୍କ ଅତିଥି ହୋଇ ଯେଉଁ ଖାଦ୍ୟ ପାଇଲୁନାହିଁ, ଜଣେ ଅଫିସରଙ୍କ ଘରେ ତା' କିପରି ସମ୍ଭବ ହେଲା ? ମୋ ମନୋଭାବ ବୋଧେ ବନ୍ଧୁ ଶ୍ରୀ ରାୟ ବୁଝିପାରିଲେ। ତାଙ୍କ କଥାରୁ ବୁଝିଲି ମଝିରେ ମଝିରେ ସେମାନେ ଦିଲ୍ଲୀରୁ ଏସବୁ ସାମଗ୍ରୀ ସଂଗ୍ରହ କରି ରଖୁଥିଲେ। ମସ୍କୋ ଦିଲ୍ଲୀ ମଧ୍ୟରେ ବିମାନ ଯାତାୟାତ ବରାବର ଲାଗିରହିଥିବାରୁ ସେମାନଙ୍କ ପକ୍ଷରେ ଏସବୁ ମଗାଇବାରେ ବିଶେଷ ଅସୁବିଧା ହେଉନଥିଲା। ସେଦିନ ସନ୍ଧ୍ୟାରେ ରାୟଙ୍କ ଘରେ ଭୋଜନରେ ଯେଉଁ ତୃପ୍ତି ଲାଭ କରିଥିଲି, ଅନେକ ଷ୍ଟାର ହୋଟେଲର ଖାଦ୍ୟ ମଧ୍ୟ ସେତିକି ଆନନ୍ଦ ଅତୀତରେ ଦେଇନଥିଲା କି ଆଜି ପର୍ଯ୍ୟନ୍ତ ମଧ୍ୟ ଦେଇନାହିଁ। ତାଙ୍କ ଘରେ କଟାଇଥିବା କେଇଘଣ୍ଟାର ସ୍ମୃତି ମୋର ସବୁଦିନ ପାଇଁ ଅଭୁଲା ହୋଇ ରହିଗଲା।

ରାତ୍ରିଭୋଜନ ଶେଷବେଳକୁ ସମୟ ରାତି ଦଶଟା ହୋଇଯାଇଥିଲା। ଅପ୍ରେଲ ମାସ ହେଲେ ବି ବାହାରେ ଶୀତର ପ୍ରବଳ ପ୍ରକୋପ। ସେଥିରେ ବନ୍ଧୁ ଶ୍ରୀ ରାୟ ମତେ ନିଜେ ଡ୍ରାଇଭ୍ କରି ଛାଡ଼ିଦେଇ ଆସିବାକୁ ବାହାରିଲେ। ପ୍ରଥମେ ମୁଁ ବାରଣ କରୁଥିଲି। ନିଜେ ନଯାଇ ଡ୍ରାଇଭର ହାତରେ ଗାଡ଼ି ପଠାଇଦେଲେ ଯଥେଷ୍ଟ ହେବ ବୋଲି ମୁଁ ତାଙ୍କୁ କହିଥିଲି। ମୋର ଧାରଣା ଥିଲା, ଏତେବଡ଼ ଅଫିସର, ଅନ୍ତତଃ ଦୁଇତିନିଟା ଗାଡ଼ି ଥିବ। ଡ୍ରାଇଭର୍‌ମାନେ ତଳେ ବସିଥିବେ, ଆଉ ଅସୁବିଧା କ'ଣ? ବନ୍ଧୁ କହିଲେ ଏଠାକାର ଆଦବ କାଏଦା ସବୁ ଭିନ୍ନ। ଏଠି ସରକାରୀ ଲୋକେ ଘରୋଇ କାମ କରନ୍ତି ନାହିଁ କିମ୍ବା ଅଫିସ୍ ସମୟ ପରେ କାହାକୁ ଡିଉଟି କରିବାକୁ କୁହାଯାଏ ନାହିଁ। ଅଫିସ ସମୟ ପରେ ସମସ୍ତେ ସମାନ। ସମସ୍ତଙ୍କୁ ଲାଇନ୍‌ରେ ଛିଡ଼ା ହୋଇ ରେସନ୍ ସଂଗ୍ରହ କରିବାକୁ ପଡ଼େ। ସେଥିରେ କାହାରି ମନରେ କିଛି ହୀନମ୍ମନ୍ୟତା ନଥାଏ। ତା'ଛଡ଼ା, ଏଠାରେ ଶ୍ରମ ପ୍ରତି ଯଥେଷ୍ଟ ସମ୍ମାନ ରହିଛି। ସମସ୍ତ ବାରଣ ସତ୍ତ୍ୱେ ଧୀରେନ୍‌ବାବୁ ମତେ ଆଣି ହୋଟେଲରେ ଛାଡ଼ିଦେଇ ଗଲେ।

ମୁଁ ଭାବିଥିଲି, ବନ୍ଧୁଙ୍କ ଘରୁ ଫେରିବା ପରେ ଚୁପ୍‌ଚାପ୍ ରୁମ୍‌ରେ ଶୋଇଯିବି, ଆଉ କେହି କିଛି ଜାଣିପାରିବେ ନାହିଁ। କିନ୍ତୁ ବିଧିର ବିଧାନ ଆନ। ମୁଁ ବନ୍ଧୁଙ୍କ ଗାଡ଼ିରୁ ଓହ୍ଲାଇଲାବେଳେ ଆମ ପ୍ରତିନିଧି ଦଳର ଅନ୍ୟ ବନ୍ଧୁମାନେ ବୁଲାବୁଲି କରି ଫେରୁଥିଲେ। ସେମାନଙ୍କ ନଜର ଯେମିତି ଆମ ଉପରେ ପଡ଼ିଗଲା, ସେମାନଙ୍କ ପ୍ରଶ୍ନବାଣରେ ମୁଁ ଅତିଷ୍ଠ ହୋଇଗଲି। "କ୍ୟା ଦାସ୍ ସାହବ୍, କହାଁ ଘୁମ୍‌ନେ ଗୟେ ଥେ? ଆଜ୍ ଆପ୍ ଖୁବ୍ ଖୁସ୍ ନଜର୍ ମାଲୁମ୍ ହୋତେ ହେଁ। ବାତ୍ କ୍ୟା ହେ ବତାଇଏ ନା" ଇତ୍ୟାଦି ଇତ୍ୟାଦି। ମୁଁ ଦେଖିଲି ଗୋଟିଏ କଥାକୁ ଲୁଚେଇବାକୁ ଯାଇ ପାଞ୍ଚଟି ମିଛ କହିବି ଏବଂ ଶେଷରେ ସତକଥା ହିଁ ବାହାରିବ। ତା'ଅପେକ୍ଷା ମୂଳରୁ କାହିଁକି ସତ କହିବି ନାହିଁ? ମୋ କଥା ଶୁଣି ଅନେକ ବନ୍ଧୁ ମନ ଦୁଃଖ କଲେ। ଅନେକ ବନ୍ଧୁ ମୁଁ ସ୍ୱାର୍ଥପର ବୋଲି ଅଭିମାନଭରା ସ୍ୱରରେ କହିଲେ। ଯାହାହେଉ ବନ୍ଧୁ ଶ୍ରୀ ରାୟଙ୍କୁ ବିଦାୟ ଦେଇ ଆମେ ସବୁ ହୋଟେଲ ଭିତରକୁ ଉଠିଲୁ।

ମୋର ରାତ୍ରିଭୋଜନ ଶେଷ ହୋଇଥିବାରୁ ଅନ୍ୟ ବନ୍ଧୁମାନେ ଡାଇନିଂ ହଲ୍‌କୁ ଗଲାବେଳେ ମୁଁ ସିଧାସଳଖ ରୁମ୍‌କୁ ଚାଲିଗଲି। ପରେ ଶୁଣିଲି, ଆମ ଭିତରେ ଯେଉଁମାନେ ନିରାମିଷାଶୀ ଥିଲେ, ସେମାନେ ସେଦିନ ରାତିରେ କିଛି ନଖାଇ ଉପାସରେ ଶୋଇଥିଲେ।

## ଜଳତରଙ୍ଗରେ ଭାରତୀୟ ଖାଦ୍ୟ

ମସ୍କୋରେ ପହଞ୍ଚିବାର ଚବିଶିଘଣ୍ଟା ମଧ୍ୟରେ ସେଠାରେ ଥିବା ଅଧିକାଂଶ ଭାରତୀୟ ଆମ ବିଷୟରେ ଖବର ପାଇଯାଇଥିଲେ। ସେମାନଙ୍କ ମଧ୍ୟରୁ 'ପ୍ୟାଟ୍ରିସ୍ ଲୁମୁମ୍ବା ପିପୁଲ୍ସ

ଫ୍ରେଣ୍ଡସିପ୍ ବିଶ୍ୱବିଦ୍ୟାଳୟ'ରେ ଅଧ୍ୟୟନ କରୁଥିବା ଜଣେ ଦି'ଜଣ ଛାତ୍ର ଆମ ହୋଟେଲ ଠିକଣା ବୁଝି ଆସି ପହଞ୍ଚିଗଲେ। ସେମାନଙ୍କୁ ଆମ ବନ୍ଧୁମାନଙ୍କର ଅସଂଖ୍ୟ ପ୍ରଶ୍ନ। ଭାରତୀୟ ଖାଦ୍ୟ କେଉଁଠି ମିଳିବ? ସେମାନଙ୍କ ନିକଟରୁ ଖବର ମିଳିଲା ଯେ, 'ଜଳତରଙ୍ଗ' ହୋଟେଲରେ ଭାରତୀୟ ଖାଦ୍ୟ ମିଳେ। କିନ୍ତୁ ସେଠାରେ ଭାରତ ସମେତ ପାକିସ୍ତାନ, ବର୍ମା, ଶ୍ରୀଲଙ୍କା ଓ ଭୁଟାନ ପ୍ରଭୃତି ଅନ୍ୟୂନ ଛଅଟି ଏସିଆନ୍ ରାଷ୍ଟ୍ରର ଲୋକେ ଖାଦ୍ୟ ଖାଉଥିବାରୁ ଆଗରୁ ସିଟ୍ ରିଜର୍ଭ ନକଲେ ଖାଇବାକୁ ମିଳିବ ନାହିଁ। କଥା ହେଲା, ଯେଉଁମାନେ 'ଜଳତରଙ୍ଗ' ହୋଟେଲର ସୂଚନା ଦେଇଥିଲେ ସେମାନେ ପରଦିନର ଲଞ୍ଚ୍ ପାଇଁ ସିଟ୍ ରିଜର୍ଭ କରିବେ। ଶେଷରେ ପ୍ୟାଟ୍ରିସ୍ ଲୁମୁମ୍ବା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନରତ ଶରତ ପ୍ରଧାନଙ୍କ ଉପରେ 'ଜଳତରଙ୍ଗ'ରେ ୨୪ଜଣଙ୍କ ପାଇଁ ସିଟ୍ ରିଜର୍ଭ କରିବା ପାଇଁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା ଏବଂ ସେ ତାକୁ ସୁଚାରୁରୂପେ ତୁଲାଇଥିଲେ। ଅପରାହ୍ନ ସାଢ଼େଗୋଟାଏରୁ ଦୁଇଟାବେଳେ ସେଠାରେ ପହଞ୍ଚିବା ପାଇଁ ସେ ଫୋନ୍‌ଯୋଗେ ଆମକୁ ଜଣାଇଦେଇଥିଲେ। 'ଜଳତରଙ୍ଗ'ରେ ମଧ୍ୟାହ୍ନଭୋଜନ ପାଇଁ ବ୍ୟବସ୍ଥା ହୋଇ ସାରିଥିବାରୁ ବନ୍ଧୁମାନେ ଆଉ କାଳବିଳମ୍ବ ନକରି ଯିବାପାଇଁ ପ୍ରସ୍ତୁତ ହେଲେ।

ହୋଟେଲ 'ଜଳତରଙ୍ଗ'ର ହୋଟେଲ ବିଷୟରେ ଶୁଣି ମନରେ ଧରଣା ହୋଇଥିଲା, ବୋଧହୁଏ ତାହା ଏକ ପଞ୍ଚତାରକା ହୋଟେଲ ହୋଇଥିବ। ମାତ୍ର ସେଠାରେ ପହଞ୍ଚି ଯାହା ଦେଖିଲୁ ସେଥିରେ ମନ ଫିକା ପଡ଼ିଗଲା। ଗୋଟିଏ ଛୋଟିଆ ପୋଖରୀ କୂଳରେ କଙ୍କ୍ରିଟ୍ ଖୁଣ୍ଟ ଉପରେ ନିର୍ମିତ ଦୋ'ମହଲିଆ ଘରଟିଏ। ତଳ ମହଲାରେ ଗାଡ଼ି ପାର୍କିଂ ଏବଂ ଉପର ମହଲାରେ ଭୋଜନାଳୟ। ଆମେ ସେଠାରେ ପହଞ୍ଚିବା ପୂର୍ବରୁ ଶରତ ପ୍ରଧାନ ସେଠାରେ ପହଞ୍ଚି ଆମ ପାଇଁ ଅପେକ୍ଷା କରିଥିଲେ। ଗତ କେତେଦିନ ହେଲା ଆମେ ଭାରତବର୍ଷରୁ କୌଣସି ସମ୍ବାଦ ପାଇ ନଥିବାରୁ ସେ ବୁଦ୍ଧି ଖର୍ଚ୍ଚକରି ପି.ଟି.ଆଇ.ର କେତେକ ନ୍ୟୁଜ୍ କ୍ଲିପିଂ ଧରି ଆସିଥିଲେ। ତାକୁ ଦେଖିବାପାଇଁ ଆମ ଭିତରେ ପ୍ରତିଯୋଗିତା ଚାଲିଥିଲା।

କିଛିକ୍ଷଣ ଭିତରେ ଆମେ ଯାଇ ଜଳତରଙ୍ଗର ଭୋଜନକକ୍ଷରେ ଆସନ ଗ୍ରହଣ କଲୁ। ହୋଟେଲର କୋଠାବାଡ଼ି ଓ ପରିବେଶ ଦେଖି ମନରେ ଯେଉଁ ବିଷାଦର ଛାୟା ଖେଳିଥିଲା, ହୋଟେଲ ଭିତରେ ଫ୍ରାଏଡ୍-ରାଇସ୍, ତନ୍ଦୁରୀ-ରୁଟି, ଚିକେନ୍‌ବଟର ମସଲା, ଆଳୁପନିର୍, ଫୁଲକୋବି-କଷା, ଡାଲ୍‌ଫ୍ରାଏ ଇତ୍ୟାଦି ଦେଖି ମନର ଭ୍ରମ ଦୂର ହୋଇଗଲା। ସମସ୍ତେ ନିଜନିଜର ପସନ୍ଦ ମୁତାବକ ଖାଦ୍ୟ ମଗାଇ ସନ୍ତୋଷ ମନରେ ଭୋଜନ କଲୁ। ଜଳତରଙ୍ଗ ଦୀର୍ଘ ୧୨ବର୍ଷ ତଳେ ଯେତେବେଳେ ଆରମ୍ଭ ହୋଇଥିଲା, ସେତେବେଳେ ସେଠାରେ ଭାରତୀୟ କୁକ୍ ଥିଲେ। କିଛିବର୍ଷ ହେଲା ସ୍ଥାନୀୟ କୁକ୍‌ମାନେ ଖାଦ୍ୟରେ ତେଲ ମସଲାର ପ୍ରୟୋଗ ପ୍ରଣାଳୀ ଆହରଣ କରିନେଲେ। ଜଳତରଙ୍ଗର ଆକାର କ୍ଷୁଦ୍ର

ଥିଲେ ବି ପ୍ରତ୍ୟହ ସେଠାରେ ଭିଡ଼ ଲାଗିରହୁଥିଲା। ସମଗ୍ର ସୋଭିଏଟ୍ ରଷଠାରେ ଭିନ୍ନ ଧରଣର ଖାଦ୍ୟ ପରିବେଷଣ କରିବାରେ ତାହା ଏକମାତ୍ର ହୋଟେଲ ହୋଇଥିବାରୁ ସେଠାରେ ଦେଶବିଦେଶର ଗ୍ରାହକମାନଙ୍କର ଲମ୍ବା ଧାଡ଼ି ଦେଖିବାକୁ ମିଳିଥିଲା।

ଆମର ମସ୍କୋରେ ସ୍ୱଳ୍ପ ସମୟ ରହଣି ମଧ୍ୟରେ ସୋଭିଏଟ୍ ରଷରେ ସୃଷ୍ଟି ହେଉଥିବା ଅର୍ଥନୈତିକ ସଙ୍କଟ ସମ୍ପର୍କରେ ଆମକୁ ସାମାନ୍ୟ ସୂଚନା ମିଳିଥିଲା। ରୁବେଲର ଅନ୍ତର୍ଜାତିକ ମୂଲ୍ୟ ହ୍ରାସ ସାଙ୍ଗକୁ ରଷ ବାହାରେ ତା'ର ଚାହିଦା ମଧ୍ୟ କମିଯାଇଥିଲା। ସେଥିପାଇଁ ଆମେ ରହୁଥିବା ହୋଟେଲ ପାଖରେ ଚୋରାରେ ଡଲାର ନେବାପାଇଁ ଲୋକଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି ହୋଇଥିଲା। ମାତ୍ର ଆମକୁ ଏପରି ବେନିୟମ କାର୍ଯ୍ୟରୁ ବିରତ ରହିବା ପାଇଁ ବାରମ୍ବାର ସତର୍କ କରି ଦିଆଯାଇଥିଲା।

ମେଟ୍ରୋ ଟ୍ରେନ୍‌ରୁ ଓହ୍ଲାଇ ହୋଟେଲକୁ ଫେରିବା ବାଟରେ ପଡ଼ିଲା କେ.ଜି.ବି. ହେଡ୍‌କ୍ୱାଟର୍। ସେତେବେଳେ କେ.ଜି.ବି. ଥିଲା ସୋଭିଏଟ୍ ରଷର ମୁଖ୍ୟ ଗୁଇନ୍ଦାସଂସ୍ଥା। ସେ କୋଠାର ଆଖପାଖକୁ ଯିବା ସମ୍ଭବ ନଥିଲା। କିଛି ବାଟ ଦୂରରୁ ଶ୍ରୀ କୀମ୍ ଏହି ସଂସ୍ଥା ସମ୍ପର୍କରେ ଆମକୁ କେତେକ ତଥ୍ୟ ଯୋଗାଇଥିଲେ। ସେତେବେଳେ ଏହି ସଂସ୍ଥା ମାଧ୍ୟମରେ ବିଶ୍ୱର ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାର ସମ୍ପର୍କରେ ଗୁପ୍ତ ତଥ୍ୟ ସବୁ ସଂଗ୍ରହ କରାଯାଉଥିଲା।

ହୋଟେଲରେ ପହଞ୍ଚିଲାବେଳକୁ ମସ୍କୋ ସମୟ ଅନୁଯାୟୀ ରାତି ଆଠଟା ବାଜିଯାଇଥିଲା। ରାତି ଦଶଟାବେଳେ ମସ୍କୋରୁ ଉତ୍ତର କୋରିଆ ରାଜଧାନୀ ପୋଙ୍ଗୟାଙ୍ଗ ଯିବା ପାଇଁ ଆମର କାର୍ଯ୍ୟସୂଚୀ ସ୍ଥିର ହୋଇଥିବାରୁ ଆମେ ଶୀଘ୍ର ବାହାରିବା ପାଇଁ ଲାଗିପଡ଼ିଲୁ। ଖୁବ୍‌କମ୍ ସମୟରେ ଆମର ରାତ୍ରିଭୋଜନ ଶେଷ ହୋଇଗଲା। ରୁମ୍‌କୁ ଆସି ଲଗେଜ୍ ସହିତ ତଳକୁ ଆସିଲାବେଳକୁ ଶ୍ରୀ କୀମ୍, କୋଚ୍ ସହିତ ଆମକୁ ଅପେକ୍ଷା କରିଥିଲେ।

## ମସ୍କୋରୁ ପୋଙ୍ଗ୍‌ୟାଙ୍ଗ୍

ମସ୍କୋ ସହରରୁ ବିମାନବନ୍ଦରର ଦୂରତା ୨୦ କିଲୋମିଟର। ଆମେ ଭାବିଥିଲୁ ଆମେ ପହଞ୍ଚିଲାବେଳକୁ ବୋଧହୁଏ ବିମାନ ଛାଡ଼ିଦେଇଥିବ। କିନ୍ତୁ ଆମ ଭାବନାକୁ ଭୁଲ୍ ବୋଲି ପ୍ରମାଣିତ କରି ଆମ କୋଚ୍‌ଟି ଠିକ୍ ସମୟରେ ଯାଇ ବିମାନବନ୍ଦର ଦ୍ୱାରରେ ପହଞ୍ଚିଲା।

ରାତି ଦଶଟା। କନକନିଆ ଶୀତ। ମୋଜା ପିନ୍ଧି ଥିଲେ ବି ହାତଗୋଡ଼ ସବୁ କୋଙ୍କାଡ଼ି ହେଉଥିଲା। ଆମ ଲଗେଜ୍ ଓହ୍ଲାଇଦେଇ କୋଚ୍‌ଟି ଫେରିଗଲା। ଆମର

ଧାରଣା ଥିଲା, ହୁଏତ ପୋର୍ଟର୍ ଆସି ଆମ ଲଗେଜ୍‌ପତ୍ର ନେଇଯିବେ। କିନ୍ତୁ ପର ମୁହୂର୍ତ୍ତରେ ଆମେ ସଚେତନ ହୋଇଗଲୁ ଯେ, ଆମେ ସୋଭିଏଟ୍ ଋଷର ରାଜଧାନୀ ମସ୍କୋରେ ଥିଲୁ। ସେଠାରେ କୁଲି କିମ୍ବା ପୋର୍ଟରଙ୍କର ବ୍ୟବସ୍ଥା ନଥିଲା। ବିମାନବନ୍ଦରର ପ୍ରବେଶଦ୍ୱାରରୁ ରନ୍‌ୱେ ପ୍ରାୟ ଅଧକିଲୋମିଟର ଦୂର। ବହୁ କଷ୍ଟରେ ନିଜ ବ୍ୟାଗେଜ୍ ନିଜେ ବୋହି ଯିବାକୁ ହେଲା। ବାଟରେ ସିକ୍ୟୁରିଟି ଚେକିଂ ସମୟରେ ପୂର୍ବଭଳି ଆମକୁ ମାନସିକ ଯନ୍ତ୍ରଣା ମଧ୍ୟରେ କିଛି ସମୟ କଟାଇବାକୁ ପଡ଼ିଥିଲା।

ବିମାନବନ୍ଦର ଭିତରେ ପଶିଲା ପରେ ଆମେ ଏକପ୍ରକାର ଆଶ୍ୱସ୍ତ ହେଲୁ। ଭିତରଟା ଶୀତତାପ ନିୟନ୍ତ୍ରିତ ହୋଇଥିବାରୁ ଥଣ୍ଡାର କଷ୍ଟ ଆଉ ଅନୁଭୂତ ହେଉନଥିଲା। ଶ୍ରୀ କୀମ୍‌ଙ୍କ ସହାୟତାରେ ସବୁ ଔପଚାରିକ କାମ ସାରି ଆମେ ଏରୋଫ୍ଲୋଟ୍ ବିମାନ ଭିତରକୁ ଗଲୁ।

ମସ୍କୋ ବିମାନବନ୍ଦରରେ ଥିବା ଅଫିସରମାନଙ୍କର ନଜର ଥିଲା ଡଲାର ଉପରେ। ଆମେ ତାଙ୍କ ଦେଶକୁ ଆସିଲାବେଳେ ଆମ ପାଖରେ କେତେ ଡଲାର ଥିଲା ଆଉ ଫେରିଲା ବେଳେ କେତେ ଡଲାର ରହିଲା ସେସବୁର ଟିକିନିଖି ହିସାବ ସେମାନଙ୍କୁ ଦେବାକୁ ପଡ଼ିଥିଲା। କେତେକ କ୍ଷେତ୍ରରେ ସେମାନେ ଆମ କଥାରେ ବିଶ୍ୱାସ ନକରି ବ୍ୟାଗ୍ ଖୋଲି ଡଲାରସବୁ ଗଣିଥିଲେ। ମଣିଷ ମନ ଭିତରେ ଥିବା ବିଶ୍ୱାସ ଓ ସହୃଦୟତା ସେମାନଙ୍କର ପ୍ରାୟ ନଥିଲା। ଯନ୍ତ୍ର ଭଳି ସେମାନେ କାମ କରିଯାଉଥିଲେ।

ଆମେ ବିମାନ ଭିତରକୁ ଯିବା ପୂର୍ବରୁ ଗୋଟିଏ କୌତୁକପୂର୍ଣ୍ଣ ଘଟଣା ଘଟିଥିଲା, ଯାହାର ସନ୍ଧାନ ଆମେ ପୋଙ୍ଗ୍‌ୟାଙ୍ଗ୍‌ରେ ପହଞ୍ଚିଲା ପରେ ପାଇଥିଲୁ। ଆମ ଟିମ୍‌ର ଚବିଶିଜଣ ସଦସ୍ୟଙ୍କର ଚବିଶିଟି ସୁଟ୍‌କେଶ ଥିଲା। ମାତ୍ର ମସ୍କୋରେ ଲଗେଜ୍ ଲୋଡ୍ କରିବା ସମୟରେ ସେମାନେ ଜାଣିଶୁଣି ଆମ ସଭାପତି ବିକ୍ରମ ରାଓଙ୍କ ସୁଟ୍‌କେସ୍‌ଟିକୁ ଲୋଡ୍ ନକରି ରଖି ଦେଇଥିଲେ। ଅଣକମ୍ୟୁନିଷ୍ଟ୍‌ବାଦ ସଙ୍ଗଠନର ଭାରତୀୟ ସାମ୍ବାଦିକମାନେ କେଉଁ ଉଦ୍ଦେଶ୍ୟରେ କମ୍ୟୁନିଷ୍ଟ୍ ରାଷ୍ଟ୍ରକୁ ଆସିଥିଲେ, ସେ ସମ୍ପର୍କରେ ଜାଣିବା ପାଇଁ କାଗଜପତ୍ରସବୁ ଦେଖିବା ଉଦ୍ଦେଶ୍ୟରେ ସେମାନେ ଶ୍ରୀ ରାଓଙ୍କ ସୁଟ୍‌କେସ୍‌କୁ ରଖିଥିଲେ ବୋଲି ପରେ ଆମେ ଜାଣିବାକୁ ପାଇଥିଲୁ। ପରେ କୋରିଆ ଦୂତାବାସ ମାଧ୍ୟମରେ ଯୋଗସୂତ୍ର ରକ୍ଷା କରିପାରିବା ପରେ ସୁଟ୍‌କେଶଟି ମିଳିଥିଲା।

# ଗ୍ରେଟ୍ ଲିଡ଼ର୍‌ଙ୍କ ଦେଶ ଡି.ପି.ଆର୍. କୋରିଆ

ଏକ ସମୟରେ ଉତ୍ତର ଓ ଦକ୍ଷିଣ କୋରିଆ ଗୋଟିଏ ରାଷ୍ଟ୍ର ଥିଲା। ବିଶ୍ୱଯୁଦ୍ଧ ସମୟରେ ଜାପାନ ପକ୍ଷରୁ ଏହା ଉପରେ ନଗ୍ନ ଆକ୍ରମଣ କରାଯାଇ ସମଗ୍ର ରାଷ୍ଟ୍ରକୁ

ଧୂଳିରେ ମିଶାଇ ଦିଆଯାଇଥିଲା। ଯୁକ୍ତରାଷ୍ଟ୍ର ଆମେରିକାର ଷଡ଼ଯନ୍ତ୍ର ଫଳରେ କୋରିଆ ରାଷ୍ଟ୍ର ବିଭାଜିତ ହୋଇ ଉତ୍ତର କୋରିଆ ଓ ଦକ୍ଷିଣ କୋରିଆରେ ପରିଣତ ହୋଇଗଲା। କୋରିଆର ମହାନ ନେତା କିମ୍ ଇଲ୍ ସୁଙ୍ଗଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ମହାନ ବିପ୍ଳବ ଫଳରେ ଜାପାନ କବଳରୁ ଉତ୍ତରକୋରିଆ ମୁକ୍ତିଲାଭ କରିଥିଲେ ହେଁ ଦକ୍ଷିଣ କୋରିଆ ଆମେରିକା କବଳରେ ରହିଗଲା। କିମ୍ ଇଲ୍ ସୁଙ୍ଗ୍ ଏବଂ ତାଙ୍କ ଅନୁଗତମାନେ ଉତ୍ତର କୋରିଆକୁ ପ୍ରକୃତ କୋରିଆ ବା 'ଡେମୋକ୍ରାଟିକ୍ ପିପୁଲ୍ସ ରିପବ୍ଲିକ୍ କୋରିଆ' ବୋଲି ଦାବି କଲେ। ଉତ୍ତର କୋରିଆକୁ 'ଗ୍ରେଟ୍ ଲିଡ଼ରଙ୍କ ଦେଶ' ବୋଲି ମଧ୍ୟ କୁହାଗଲା।

ବିମାନ ଭିତରେ କେତେବେଳେ ନିଦ ହୋଇଯାଇଥିଲା ଜାଣି ପାରିନଥିଲି। ହଠାତ୍ ଏକ ନରମ ହାତର ସ୍ପର୍ଶରେ ନିଦ ଭାଙ୍ଗିଗଲା। ପ୍ରଥମେ କିଛିକ୍ଷଣପାଇଁ ମୁଁ କିଛି ବୁଝି ପାରିନଥିଲି ମୁଁ କେଉଁଠି ଅଛି, କ'ଣ କରୁଛି? ଆଖି ଖୋଲି ଯେତେବେଳେ ଦେଖିଲି ସଖୀକଣ୍ଢେଇ ଭଳି ଜଣେ ଯୁବତୀ ସାମନାରେ ଛିଡ଼ା ହୋଇ ଅଣ୍ଟାରେ ନିରାପତ୍ତା ପଟି ବାନ୍ଧିବାକୁ ଅନୁରୋଧ କରୁଥିଲେ, ସେତେବେଳେ ମୁଁ ବିମାନରେ ଯାତ୍ରା କରୁଥିବା ବିଷୟରେ ସଚେତନ ହୋଇଗଲି। ପରେ ପରେ ଆଉ ଜଣେ ବିମାନ ପରିଚାରିକାଙ୍କ କଣ୍ଠରୁ ଭାସିଆସିଲା, "ଆଉ ଅଳ୍ପ ସମୟ ପରେ ଆମର ଏରୋଫ୍ଲୋଟ୍ ବିମାନଟି ନଭୋସ୍‌କସ୍କ ବନ୍ଦରରେ କିଛି ସମୟ ପାଇଁ ଓହ୍ଲାଇବ। ବର୍ତ୍ତମାନ ସମୟ (ମସ୍କୋ ସମୟ ଅନୁଯାୟୀ) ରାତି ସାଢ଼େ ତିନିଟା। ବାହାରର ତାପମାତ୍ରା ମାଇନସ୍ ତିନି ଡିଗ୍ରୀ। ଯାତ୍ରୀମାନଙ୍କୁ ଅନୁରୋଧ, ସେମାନେ ନିରାପତ୍ତାପଟି ବାନ୍ଧି ନିଜ ନିଜ ଆସନରେ ବସିରୁହନ୍ତୁ।"

ରାତି ଏଗାରଟାରେ ମସ୍କୋସ୍ଥିତ ଅନ୍ତର୍ଜାତୀୟ ବିମାନବନ୍ଦରରୁ ଏରୋଫ୍ଲୋଟ୍ ବିମାନଟି ଛାଡ଼ିଲାବେଳେ ମନରେ ଯେଉଁ ଦୁଶ୍ଚିନ୍ତା ଥିଲା, ତା' କିଛି ପରିମାଣରେ ଦୂର ହୋଇଯାଇଥିଲା। ମସ୍କୋରୁ ଡି.ପି.ଆର୍. କୋରିଆର ରାଜଧାନୀ ପୋଙ୍ଗୟାଙ୍ଗ୍ ସହରର ଦୂରତ୍ୱ ପ୍ରାୟ ଆଠହଜାର କିଲୋମିଟର। ଦୀର୍ଘ ବାରଘଣ୍ଟାର ବିମାନଯାତ୍ରା। ଏକକାଳୀନ ବାରଘଣ୍ଟାକାଳ ବିମାନରେ କଟାଇବାର ଅନୁଭୂତି ନଥିବା ହେତୁ ମନରେ ନାନା ପ୍ରକାର ଆଶଙ୍କା ସତ୍ତ୍ୱେ ବିମାନରେ ବସୁ ବସୁ ନିଦ ହୋଇ ଯାଇଥିଲା। ନଭୋସକସ୍କ ବିମାନବନ୍ଦରଟି ସୋଭିଏଟ୍ ନିୟନ୍ତ୍ରଣାଧୀନ ଥିଲା। ମସ୍କୋରୁ ପୋଙ୍ଗୟାଙ୍ଗ ଯାଉଥିବା ଏବଂ ଫେରୁଥିବା ବିମାନସବୁ ସେଠାରୁ ଇନ୍ଧନ ନେବାପାଇଁ ଅବତରଣ କରୁଥିଲେ।

ବିରାଟ ଏରୋଫ୍ଲୋଟ୍‌ରେ ଆମେ ୨୪ଜଣ ଭାରତୀୟଙ୍କ ବ୍ୟତୀତ ଆଉ ଅଳ୍ପ କେଇଜଣ କୋରିଆ ଯାତ୍ରୀ ଥିଲେ। କିନ୍ତୁ ବିମାନ ଚାଳକଙ୍କଠାରୁ ଆରମ୍ଭ କରି ପରିଚାରିକାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ନଜର ଆମରି ଉପରେ, ଆମର ଯେପରି କିଛି ଅସୁବିଧା ନହୁଏ। ଡି.ପି.ଆର୍ କୋରିଆ ସରକାରଙ୍କ ଆମନ୍ତ୍ରଣ କ୍ରମେ ଆମେ ସେ ଦେଶର ଅତିଥିଭାବେ

ପୋଙ୍ଗୟାଙ୍ଗ ଯାତ୍ରା କରୁଥିବାରୁ ଆମର ସୁଖ ସୁବିଧା ଦେଖିବାପାଇଁ ସେମାନେ ଖୁବ୍ ଯତ୍ନବାନ ଥିଲେ।

କିଛି ସମୟ ପରେ ବିମାନରେ ଜଳପାନର ପର୍ବ ଖୁବ୍ ଯୋରସୋର୍‌ରେ ଆରମ୍ଭ ହୋଇଯାଇଥିଲା। ମନରେ କୌଣସି ବିକାର ନଆଣି ସକାଳର ନିତ୍ୟକର୍ମ ନସାରି ସହଯାତ୍ରୀମାନେ ଗୋଟିଏ ପରେ ଗୋଟିଏ ପଦାର୍ଥ ନିର୍ବିକାର ଚିତ୍ତରେ ଗର୍ଭସ୍ଥ କରୁଥିଲେ। ପରିଚାରିକା ଜଣକ ମୋ ଆସନ ନିକଟରେ ଛିଡ଼ା ହୋଇ ଅତ୍ୟନ୍ତ ନମ୍ର ଭାବରେ ମୁଁ ଚା' କିମ୍ବା କଫି କ'ଣ ନେବି ବୋଲି ପଚାରିଲେ। ମୋଠାରୁ ନାସ୍ତିବାଚକ ଉତ୍ତର ଶୁଣି ଅନ୍ୟକିଛି ପାନୀୟ ଦରକାର କି ବୋଲି ପଚାରିଲେ। ତାକୁ ମଧ୍ୟ ମୁଁ ମୁଣ୍ଡ ହଲାଇ ନାସ୍ତି କଲାରୁ ସେ ଇଂରାଜୀ ଭାଷାରେ ପଚାରିଲେ, "ଆପଣ କ'ଣ ଅସୁସ୍ଥ ଅନୁଭବ କରୁଛନ୍ତି ? କାହିଁ କାଲି ରାତିରେ ତ ଆପଣ କିଛି ପାନୀୟ ଗ୍ରହଣ କଲେନାହିଁ, ଆଜି ମଧ୍ୟ କିଛି ନେବାକୁ ନାସ୍ତି କରୁଛନ୍ତି, ଆମ ସେବାରେ କିଛି ତ୍ରୁଟି ରହିଗଲା କି ?" କିନ୍ତୁ ସକାଳୁ ଉଠି ଦାନ୍ତ ନଘଷି କିମ୍ବା ଝାଡ଼ା ନଯାଇ ଜଳଖିଆ ଖାଇବା ଯେ ଆମ ସଂସ୍କୃତିର ପରିପନ୍ଥୀ, ଏକଥାକୁ ମୁଁ ବିମାନ ଭିତରେ ଯାତ୍ରୀମାନଙ୍କ ସେବାରେ ନିଯୁକ୍ତ ବିଦେଶୀ ତରୁଣୀ ପରିଚାରିକାଙ୍କୁ କିପରି ବୁଝାଇଥାନ୍ତି ? କିଛି ସମୟ ବିରାମ ପରେ ଏରୋପ୍ଲେନ୍‌ଟି ପୁଣି ବିମାନବନ୍ଦର ଛାଡ଼ି ଲକ୍ଷ୍ୟସ୍ଥଳକୁ ଆଗେଇଲା। ସେଦିନ ବିନା ନିତ୍ୟକର୍ମରେ ପ୍ରାତଃଭୋଜନ ସହିତ ମଧ୍ୟାହ୍ନଭୋଜନ କରିବାକୁ ମଧ୍ୟ କେହି କୁଣ୍ଠାବୋଧ କରିନଥିଲେ। ଅନିଚ୍ଛା ସତ୍ତ୍ୱେ ପରିସ୍ଥିତି ଚାପରେ ବିମାନ ଭିତରେ ମୁଁ ମଧ୍ୟ ଅନ୍ୟମାନଙ୍କ ସହିତ ମଧ୍ୟାହ୍ନଭୋଜନ ଗ୍ରହଣ କରିଥିଲି।

ପୋଙ୍ଗ୍‌ୟାଙ୍ଗ୍ ବିମାନବନ୍ଦରରେ ପହଞ୍ଚିଲାବେଳକୁ ସମୟ ଅପରାହ୍ନ ସାଢ଼େଚାରିଟା। କିଛି ବୁଝି ହେଲାନାହିଁ। ରାତି ଏଗାରଟାରେ ବିମାନ ଚଢ଼ିଥିଲୁ, ବାରଘଣ୍ଟାର ଯାତ୍ରା, ମାତ୍ର ପହଞ୍ଚିଲାବେଳକୁ ସାଢ଼େଚାରିଟା ? କିନ୍ତୁ ବିମାନ ପରିଚାରିକାଙ୍କ ଘୋଷଣା ମନରୁ ସଂଶୟ ଦୂରକଲା। ସେ ବୁଝାଇଦେଲେ, ମସ୍କୋ ଓ ପୋଙ୍ଗୟାଙ୍ଗ ମଧ୍ୟରେ ସମୟର ବ୍ୟବଧାନ ପାଞ୍ଚଘଣ୍ଟା।

ପୋଙ୍ଗ୍‌ୟାଙ୍ଗ୍ ବିମାନବନ୍ଦରରେ ମସ୍କୋ ଭଳି କଟକଣା ନଥିଲା। ତା'ଛଡ଼ା, ସେ ଦେଶର ଅତିଥିଭାବେ ଭାରତୀୟ ପ୍ରତିନିଧି ଦଳରେ ଯାଇଥିବା ହେତୁ ଆମ ପାଇଁ ସବୁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା। ଭିସା, ଇମିଗ୍ରେସନ୍ ଚେକ୍ ଆଦି ସବୁ କାମ ଅଧଘଣ୍ଟାଏ ମଧ୍ୟରେ ଶେଷ ହୋଇଗଲା। ବାହାରକୁ ଆସିବା ମାତ୍ରେ ମନରେ ପୁନର୍ବାର ଭ୍ରମ ଜାତ ହେଲା। ଏଠି ଭି.ଆଇ.ପି. କିଏ ଆଉ ଅଧସ୍ତନ କର୍ମଚାରୀ କିଏ ? ସମସ୍ତଙ୍କ ପୋଷାକ ତ ଏକାଭଳି। ସୁଟ୍ ଓ ଟାଇ ପିନ୍ଧି ବିମାନରୁ ଓହ୍ଲାଇ କାହାକୁ ଅପେକ୍ଷା ନକରି ସମସ୍ତେ ନିଜ ନିଜ ଜିନିଷ ଧରି ଚାଲୁଥିଲେ। ଏ ଦୃଶ୍ୟ ଦେଖି ଭୁବନେଶ୍ୱର ବିମାନବନ୍ଦରରେ ସାମାନ୍ୟ କେଇଟା ଟଙ୍କା ପାଇଁ ପୋର୍ଟରଙ୍କ ମଧ୍ୟରେ କିଭଳି ମାଡ଼ଗୋଳ ହୁଏ ଓ ଭି.ଆଇ.ପି.ମାନେ

ବିମାନରେ କଲିକତା କିମ୍ବା ଦିଲ୍ଲୀରୁ ଫେରିଲାବେଳେ ନିଜର ସାମାନ୍ୟ ବ୍ରିଫ୍‌କେଶଟି ନିଜେ ନ ନେଇ ରାଜକୋଷରୁ ବେତନ ପାଇ ଅପେକ୍ଷାରତ ସରକାରୀ କର୍ମଚାରୀଙ୍କୁ କିପରି ଆଧୁନିକ କାଇଦାରେ ସେଇଟି ବଢ଼ାଇଦେଇ ପରମ ଆତ୍ମତୃପ୍ତି ଲାଭ କରନ୍ତି, ତା' ମଧ୍ୟ ମନେ ପଡ଼ିଯାଇଥିଲା।

ବିମାନବନ୍ଦରରୁ ପୋଙ୍ଗୟାଙ୍ଗ୍ ସହରର ଦୂରତ୍ୱ ୨୫ କିଲୋମିଟର। ବାହାରେ ଶୀତତାପ ନିୟନ୍ତ୍ରିତ ଗାଡ଼ି ଓ ଇଂରାଜୀ ଜାଣିଥିବା ଗାଇଡ୍ ଆମ ପାଇଁ ଅପେକ୍ଷା କରିଥିଲେ। ଆମେ ବସିବା ମାତ୍ରେ ଗାଡ଼ି ସହର ଅଭିମୁଖେ ଚାଲିଲା। ମାତ୍ର କୋଡ଼ିଏ ମିନିଟ୍ ମଧ୍ୟରେ କୋଚ୍‌ଟି ଏକ ଅତ୍ୟାଧୁନିକ ହୋଟେଲ ସାମନାରେ ରହିଲା। ଆମର ସେଠାରେ ରହିବାର ବ୍ୟବସ୍ଥା ହୋଇଥିଲା। ହୋଟେଲ ରୁମରେ କିଏ କାହା ସାଙ୍ଗରେ ରହିବ, ସେକଥା ଆଗରୁ ସ୍ଥିର ହୋଇ ସାରିଥିଲା।

ମୋର ରୁମ୍‌ମେଟ୍ ଥିଲେ ଅହମଦାବାଦରୁ ପ୍ରକାଶ ପାଉଥିବା 'ଜନସତ୍ତା' ସମ୍ବାଦପତ୍ରର ବାର୍ତ୍ତାସମ୍ପାଦକ ଘନଶ୍ୟାମ ଭାଇ ଭାଓସାର। ଜାତିରେ ଗୁଜରାଟୀ, ନିରାମିଷାଶୀ। ତାଙ୍କର ପାନ, ସିଗାରେଟ୍ କିମ୍ବା ଗୁରୁପାନୀୟ କିଛି ଚଳେନି। ଖାଦ୍ୟ-ପାନୀୟରେ ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଥିବାରୁ ଆମେ ପରସ୍ପରକୁ ବାଛି ନେଇଥିଲୁ। ହୋଟେଲର ବାରମହଲାରେ ବାରୋଟି କୋଠରିରେ ଆମ୍ଭମାନଙ୍କର ରହିବାର ବ୍ୟବସ୍ଥା ହୋଇଥିଲା। ହୋଟେଲ ରୁମ୍ ସାଙ୍ଗକୁ ବାଥରୁମ୍ ମଧ୍ୟ ତତୋଧିକ ଚିତ୍ତାକର୍ଷକ। ପ୍ରତ୍ୟେକ ବାଥ୍‌ରୁମ୍ 'ସୁଟ'ଠାରୁ କୌଣସି ଗୁଣରେ କମ୍ ନଥିଲା; ସେଥିରେ ପ୍ରତ୍ୟେକ ଅତିଥିଙ୍କ ପାଇଁ ଅନ୍ୟୂନ ଛଅଟି ଲେଖାଏ ଟାଓ୍ୱେଲ୍ ରଖାଯାଇଥିଲା। ବାଥରୁମ୍ ଯିବାକୁ ପୃଥକ ସ୍ଲିପର। ଆମେ ରୁମ୍‌ରେ ପହଞ୍ଚି ପ୍ରଥମେ ଫ୍ରେସ୍ ହୋଇଗଲୁ।

## ପ୍ରଥମ ବାଂକ୍ୱେଟ୍ ଅନୁଭୂତି

ବାହାରେ ଶୀତର ପ୍ରକୋପ ଥିଲେ ବି ଶୀତତାପ ନିୟନ୍ତ୍ରିତ ଘରେ ଆମେ ତା'ର ଆଭାସ ପାଉନଥିଲୁ। କେବଳ ରୁମ୍‌ରୁ ବାହାରି ଗାଡ଼ି ଭିତରକୁ ଯିବା ପର୍ଯ୍ୟନ୍ତ ଯାହା ଥଣ୍ଡା ପବନ ଦେହରେ ବାଜୁଥିଲା। ହୋଟେଲସବୁ ଶୀତତାପ ନିୟନ୍ତ୍ରିତ। ସନ୍ଧ୍ୟାରେ ଆମକୁ ଏକ 'ବାଂକ୍ୱେଟ୍'ରେ ଯୋଗଦେବାର ଥିଲା। ସାଧାରଣତଃ ଗୋଟିଏ ଦେଶକୁ ବାହାର ଦେଶର ଅତିଥିମାନେ ଆସିଲେ ସେମାନଙ୍କୁ ନୈଶ୍ୟଭୋଜିରେ ଆପ୍ୟାୟିତ କରିବା ଅବସରରେ ଏପରି ବାଂକ୍ୱେଟର ଆୟୋଜନ କରାଯାଇଥାଏ। ଯାହାହେଉ, ବିଦେଶରେ ରହିଥିବା ହେତୁ ହେଉ କିମ୍ବା ପରସ୍ଥିତି ଚାପରେ ପଡ଼ି ହେଉ, ଠିକ୍ ସମୟରେ ଆମେ ସମସ୍ତେ ରୁମ୍‌ରୁ ବାହାରି ଅପେକ୍ଷା କରିଥିବା ଗାଡ଼ିରେ ବସିଲୁ। ମାତ୍ର କୋଡ଼ିଏମିନିଟ ମଧ୍ୟରେ

ଗାଡ଼ିଟି ଗୋଟିଏ ଅତ୍ୟାଧୁନିକ ଅଟ୍ଟାଳିକା ସାମନାରେ ଯାଇ ଛିଡ଼ାହେଲା। ସେଠାରେ ଆମକୁ ପାଛୋଟି ନେବା ପାଇଁ ସେ ଦେଶ ସମ୍ବାଦପତ୍ରର ମୁଖ୍ୟ କିମଜୀ ନାନ୍ ଓ ଅନ୍ୟମାନେ ଅପେକ୍ଷା କରି ରହିଥିଲେ। ପରସ୍ପରର ଅଭିବାଦନ ସରିଲା ପରେ ଆମେ ଏକ ବାଂକ୍ୱେଟ୍ ହଲ୍‌ରେ ଯାଇ ପହଞ୍ଚିଲୁ। ସେ ହଲ୍ ଭିତରର ସାଜସଜ୍ଜା ଓ ଅନ୍ୟାନ୍ୟ ବ୍ୟବସ୍ଥା ଦେଖି ଆମେ କିଛିକ୍ଷଣ ହତବାକ୍ ହୋଇଗଲୁ। ଆମର ଭଲ ହଲ୍ କହିଲେ ସେତେବେଳେ ସେକ୍ରେଟାରିଏଟ୍‌ରେ ଥିବା କନ୍‌ଫରେନ୍ସହଲ୍‌କୁ ବୁଝାଉଥିଲା; ଯେଉଁଠି ଅଧିକାଂଶ ସମୟରେ ମାଇକ୍ରୋଫୋନ୍ ଠିକ୍‌ଭାବେ କାମ କେରେନାହିଁ, ଭୋଲ୍‌ଟେଜ୍ ଅଭାବରୁ ଏୟାର୍‌କଣ୍ଡିସନ୍ ମେସିନ୍‌ରୁ ଥଣ୍ଡାପବନ ବାହାରେ ନାହିଁ। ମାତ୍ର ପୋଙ୍ଗ୍‌ୟାଙ୍ଗ୍‌ରେ ସବୁ ଶୃଙ୍ଖଳିତ ଓ ସୁପରିକଳ୍ପିତ ଥିଲା। ବାଂକ୍ୱେଟରେ କିଏ କୋଉଁଠି ବସିବେ ତା' ମଧ୍ୟ ପୂର୍ବରୁ ସ୍ଥିରୀକୃତ ହୋଇଥିଲା।

ଆମେ ନିଜ ନିଜର ଆସନ ଗ୍ରହଣ କରିବା ପରେ ପ୍ରଥମେ ଉତ୍ତର କୋରିଆର ସାମ୍ବାଦିକମାନଙ୍କ ପକ୍ଷରୁ ଆମକୁ ସ୍ୱାଗତ କରାଗଲା। ପ୍ରତିବଦଳରେ ଆମେ ସେଥିପାଇଁ କୃତଜ୍ଞତା ଜଣାଇଲୁ। ବାଂକ୍ୱେଟ୍ ହଲ୍‌ରେ ଥିବା ଟେବୁଲର ଗୋଟିଏ ପଟରେ ଶ୍ରୀ ନାନ୍ ଓ ତାଙ୍କ ସହକର୍ମୀମାନେ ଏବଂ ଟେବୁଲର ଅନ୍ୟପାଖରେ ଆମ୍ଭମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ଥିଲା। ପ୍ରଚଳିତ ବିଧି ଅନୁଯାୟୀ ଆମେ ତାଙ୍କ ଦେଶର ରାଷ୍ଟ୍ରପତି ଓ ଅନ୍ୟାନ୍ୟ ନେତୃବର୍ଗଙ୍କ ଶୁଭକାମନା କରି 'ଟୋଷ୍ଟ୍' ଅଫର୍ କଲୁ। ବାଂକ୍ୱେଟ୍‌ରେ ପ୍ରଚଳିତ ବିଧି ଅନୁଯାୟୀ ମଦ୍ୟଭରା ଗ୍ଲାସରେ ଟୋଷ୍ଟ୍ ଅଫର କରାଯାଇଥାଏ। ଆମେ ଯେଉଁମାନେ ମଦ ପିଉ ନଥିଲୁ କୋକାକୋଲା ଗ୍ଲାସରେ କାମ ଚଳାଇଦେଲୁ। ସେମାନେ ମଧ୍ୟ ଭାରତୀୟ ଗଣତନ୍ତ୍ର ଓ ନେତୃବର୍ଗଙ୍କ ଉଦ୍ଦେଶ୍ୟରେ 'ଟୋଷ୍ଟ' ଅଫର୍ କଲେ। ଏହି ଆନୁଷ୍ଠାନିକ ଆଲୋଚନା ପ୍ରାୟ ଅଧଘଣ୍ଟା କାଳ ଚାଲିଥିଲା। ସେ ଆଲୋଚନା ସମୟରେ ଆମେ ସେ ଦେଶର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସ୍ଥିତି ସମ୍ପର୍କରେ କେତେକ ସୂଚନା ପାଇଥିଲୁ।

ଆଲୋଚନା ପରେ ଆସିଲା ପ୍ରକୃତ ଖାଇବା ସମୟ। ଆମ୍ଭମାନଙ୍କ ପାଇଁ ଖାଇବା ଟେବୁଲ୍ ଆଗରୁ ସୁସଜ୍ଜିତ ହୋଇଥିଲା। ପାଖରେ ପରିଚାରିକାମାନେ ଆମକୁ ଖାଦ୍ୟ ପରିବେଷଣ କରିବା ଉଦ୍ଦେଶ୍ୟରେ ଅପେକ୍ଷା କରିଥିଲେ। ଡାଇନିଂ ହଲ୍‌କୁ ପଶିବାମାତ୍ରେ ସେମାନେ ଆମକୁ ସ୍ୱାଗତ ଜଣାଇଲେ। ଚଉକିରେ ବସିବା ପରେ ସେମାନେ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ଓଦା ଟାୱେଲ୍ ବଢ଼ାଇଦେଲେ। ପ୍ରଥମରେ ମନରେ ଭ୍ରମ ହେଲା, ଏତେ ଥଣ୍ଡାରେ ଏମାନେ ଓଦା ଟାୱେଲ୍ କାହିଁକି ଦେଉଛନ୍ତି ? କିନ୍ତୁ ଦେଖିଲୁ ତଉଲିଆଗୁଡ଼ିକ ଗରମ ପାଣିରେ ବୁଡ଼ି ଚିପୁଡ଼ା ହୋଇ ସେଥିରୁ ବାମ୍ଫ ବାହାରୁଥିଲା। ଆମ ଗାଇଡ୍ ସଂଶୟ ଦୂରକରି କହିଲେ, ଖାଇବା ପୂର୍ବରୁ ମୁହଁ ହାତ ପୋଛିବା ଉଦ୍ଦେଶ୍ୟରେ ସେସବୁ ଅତିଥିମାନଙ୍କୁ

ଯୋଗାଇ ଦିଆଯାଇଥାଏ। ସମସ୍ତେ ମନ ଖୁସିରେ ହାତ ମୁହଁ ପୋଛାପୋଛି କଲେ। କିନ୍ତୁ ଇଏ କ'ଣ ? କା'ଣ ଖାଇବେ ? ଭାତ କି ରୁଟି କିଛି ନଥିଲା କିମ୍ବା ପାଖରେ ବଘରାବଘରି ତରକାରି ମଧ୍ୟ ଦେଖାଯାଉନଥିଲା। ତା' ବଦଳରେ ଖାଦ୍ୟପାତ୍ରରେ ରହିଥିଲା ପୋର୍କ, ବିଫ୍ ଓ ଅନ୍ୟାନ୍ୟ ସାମଗ୍ରୀ।

ଆମ ଦଳରେ ତିନି ଗ୍ରୁପ୍‌ର ସଦସ୍ୟ ଥିଲେ। ଗୋଟିଏ ଗ୍ରୁପ୍ ଲୋକ ସବାଖିଆ ଶ୍ରେଣୀର। ସବୁ ଖାଆନ୍ତି, ସବୁ ପିଅନ୍ତି। ଏସବୁ ଦେଖି ସେମାନଙ୍କର ଖୁସି କହିଲେ ନସରେ। ସ୍ୱାଭାବିକ ରୀତିରେ ଯାହା ଖାଇବାକୁ କି ପିଇବାକୁ ମିଳେ ନାହିଁ, ସେସବୁ ଆଖି ସାମନାରେ ଥୁଆ ହୋଇଥିଲା। ଆଉ ବିଳମ୍ବ କାହିଁକି ? କାହାକୁ ଅପେକ୍ଷା ନରଖି ସେମାନେ ବ୍ୟାଟିଂ ଆରମ୍ଭ କରିଦେଲେ। ଦ୍ୱିତୀୟ ଗ୍ରୁପ୍ ଲୋକେ ସବୁ ପିଅନ୍ତି; କିନ୍ତୁ ଖାଇବାରେ ସେମାନଙ୍କର କେତେକ କଟକଣା ଥିଲା। 'ଟିନ୍ ବିଅର୍' ଦେଖି ସେମାନଙ୍କ ମନ ଅଧାଅଧି ଖୁସି। ଆଉ ତୃତୀୟ ଗ୍ରୁପ୍, ଯେଉଁଥିରେ ଆମେ କେଇଜଣ ଅନ୍ତର୍ଭୁକ୍ତ ଥିଲୁ; ସେମାନଙ୍କର ସବୁକଟକଣା। ନିରାମିଷ ଭୋଜନ ସାଙ୍ଗକୁ ମଦ୍ୟ ପାନଠାରୁ ବହୁ ଦୂରରେ। ପ୍ରଥମରୁ ସେମାନଙ୍କ ଦୁର୍ଦ୍ଦଶା ଆରମ୍ଭ ହୋଇଗଲା। ଯେଉଁ ଦେଶରେ ଲୋକେ କେବଳ ମଦକୁ ପାନୀୟ ଭାବେ ବ୍ୟବହାର କରନ୍ତି, ସେମାନେ କିପରି ବିଶ୍ୱାସ କରିବେ ଯେ ମଦ ନ ଖାଉଥିବା ଲୋକ ମଧ୍ୟ ଏ ଧରାପୃଷ୍ଠରେ ଥାଇପାରନ୍ତି ବୋଲି ? ବହୁ କଷ୍ଟରେ ଆମେ ଯେତେବେଳେ ତାଙ୍କୁ ବୁଝାଇଲୁ ଯେ ଖାଦ୍ୟ ପରେ ପାଣିକୁ ଆମେ ପାନୀୟଭାବେ ଗ୍ରହଣ କରୁ, ସେମାନଙ୍କର ବିସ୍ମୟର ସୀମା ରହିଲା ନାହିଁ। ଯୁବତୀ ପରିଚାରିକାମାନେ ଆମର ହାବଭାବ ଦେଖି ଆଉ ହସ ସମ୍ଭାଳିପାରିଲେ ନାହିଁ। ସେମାନଙ୍କ ମଧ୍ୟରୁ ଜଣେ ପରିହାସରେ ପଚାରିଲେ, "ଓ! ୟୁ ୱାଣ୍ଟ୍ ୱାଟର୍ ଟୁ ଡ୍ରିଙ୍କ୍ ?" ଏହାପରେ ସେମାନଙ୍କର ଚିନ୍ତା ଆରମ୍ଭ ହୋଇଗଲା। ଆମ ପାଇଁ ପିଇବା ପାଣି କେଉଁଠୁ ଆସିବ ? କାରଣ ସାଧାରଣ ଟ୍ୟାପରେ ଆସୁଥିବା ପାଣି ପିଇବା ପାଇଁ ଅନୁପଯୁକ୍ତ ବୋଲି ଆଗରୁ ଆମକୁ ସାବଧାନ କରି ଦିଆଯାଇଥିଲା। ବହୁକଷ୍ଟରେ ଆମ ପାଇଁ ପନ୍ଦରଟି 'ମିନେରାଲ୍ ୱାଟର୍' ବୋତଲ ଯୋଗାଡ଼ ହେଲା। ସଂଖ୍ୟାରେ ଆମେ ଚବିଶି। ବୋତଲ ସଂଖ୍ୟା ମାତ୍ର ପନ୍ଦର। କ'ଣ କରାଯିବ ? ଶେଷରେ ନିଷ୍ପତ୍ତି ହେଲା ଯେଉଁମାନେ ବିଅର୍ ପିଇବେ, ସେମାନେ ମିନେରାଲ୍ ୱାଟର୍ ପିଇବେ ନାହିଁ। ପିଇବା ସମସ୍ୟା ସିନା ଦୂର ହେଲା, ମାତ୍ର ଖାଇବା ସମସ୍ୟା ବଢ଼ିବାରେ ଲାଗିଲା। କେବଳ କେତୋଟି ବନ୍ (ଛୋଟ ପାଉଁରୁଟି)ରେ ଜାମ୍ ଲଗାଇ କୌଣସିମତେ ରାତ୍ରିଭୋଜନ ଶେଷ କରି ଆମେ ହୋଟେଲକୁ ଫେରିଲୁ।

ହୋଟେଲକୁ ଫେରି ଆରମ୍ଭ ହୋଇଗଲା କନ୍‌ଫରେନ୍ସ। କ'ଣ କରାଯିବ ? ଖାଇବାକୁ ଭାତ କି ରୁଟି ନାହିଁ କିମ୍ବା ପିଇବାକୁ ପାଣି ମଧ୍ୟ ନାହିଁ। କିପରି ଚଳିବା ? ଆମେ

ମନର ଭାବ କଥାରେ ପ୍ରକାଶ ନକରିଥିଲେ ମଧ୍ୟ ଆମ ଚର୍ଚ୍ଚା ଦାୟିତ୍ୱରେ ଥିବା ଗାଇଡମାନେ ଆମର କିଛି ଅସୁବିଧା ହେଉଛି ବୋଲି ଠଉରେଇ ନେଲେ। କିନ୍ତୁ ଆମେ କିଛି ନକହି କୌଣସିମତେ ସେମାନଙ୍କୁ ବିଦା କରିଦେଲୁ। ସେମାନେ ସିନା ଚାଲିଗଲେ, ହେଲେ ଆମକୁ ନିଦ ହେଉଛି କେଉଁଠି ? ଚାଲିଲା ପରସ୍ପର ମଧ୍ୟରେ ଆଲୋଚନା। ବିଶେଷ କରି ଆମେ ଯେଉଁ ଆଠଜଣ ଥିଲୁ (ଯେଉଁମାନଙ୍କର ଉଭୟ ଖାଇବା ଓ ପିଇବାରେ କଟକଣା) ସେମାନେ ଘୋର ଚିନ୍ତାରେ ପଡ଼ିଲେ। ଆମ ସଭାପତି ବିକ୍ରମ ରାଓ ଜଣେ ଅଭିଜ୍ଞ ବ୍ୟକ୍ତି। ସେ ମଧ୍ୟ ଆମଭଳି ସାକାହାରୀ। ଆମକୁ ବୋଧ ଦେଇ କହିଲେ, "ସବ୍ ଠିକ୍ ହୋ ଯାଏଗା।" ଆମେ ସବୁ ପୋଙ୍ଗ୍ୟାଙ୍ଗ୍ ଯିବା ପୂର୍ବରୁ ଶ୍ରୀ ରାଓ ସେଠାକୁ ପୂର୍ବରୁ ଯାଇ ବୁଲି ଆସିଥିବାରୁ ସେଠାକାର ଚାଲିଚଳନ, ରୀତିନୀତି ସହିତ ସେ ଉଣା ଅଧିକେ ପରିଚିତ ହୋଇଯାଇଥିଲେ। ତାଙ୍କ ଅନୁଭୂତି ଏବଂ ଅଭିଜ୍ଞତା ଅନେକ କ୍ଷେତ୍ରରେ ଆମ ପାଇଁ ପାଥେୟ ହେଲା। ତାଙ୍କ ପରାମର୍ଶ କ୍ରମେ ଆମ ଭିତରୁ କେହି କେହି ଆଚାର, ମସଲାଗୁଣ୍ଡ ସାଙ୍ଗରେ ନେଇ ଯାଇଥିଲୁ, ଯାହାକି ସମସ୍ତଙ୍କ ପାଇଁ ସହାୟକ ହେଲା।

ଡି.ପି.ଆର୍. କୋରିଆର ରାଜଧାନୀ ପୋଙ୍ଗ୍ୟାଙ୍ଗ୍‌ର ଭାଷା, ସଂସ୍କୃତି, ଖାଦ୍ୟପେୟ ସହିତ ପରିଚିତ ନଥିବାରୁ ପ୍ରଥମେ ପ୍ରଥମେ ଆମକୁ କେମିତି ଅଡୁଆ ଅଡୁଆ ଲାଗୁଥିଲା। ଯାହା ହେଉ, ବାଂକ୍ୱେଟ୍‌ରେ ଆମର ମନ ଭିତରର ପ୍ରତିକ୍ରିୟା ଆମ କଥାରେ କିମ୍ବା ଆମ ଆଚରଣରେ ପ୍ରତିଫଳିତ ହୋଇନଥିବାରୁ ଆମେ ଆଶ୍ୱସ୍ତ ହେଲୁ।

ପ୍ରଥମ ସନ୍ଧ୍ୟାରେ ଭୋଜନର ତିକ୍ତ ଅନୁଭୂତି ଭିବଷ୍ୟତ ପାଇଁ ଏକ ଅନାସକ୍ତ ଭାବ ସୃଷ୍ଟି କଲା। ପୋଙ୍ଗ୍ୟାଙ୍ଗ୍‌ରେ ଅନ୍ୟୂନ ଏକ ସପ୍ତାହ ରହିବାକୁ କାର୍ଯ୍ୟକ୍ରମ ଥିବାରୁ ଯଦି ଖାଦ୍ୟପେୟରେ ପରିବର୍ତ୍ତନ ନଘଟେ, ତେବେ ହୁଏତ ସେଠାରେ ଏତେ ଦିନ କଟାଇବା ସମ୍ଭବପର ହୋଇ ନପାରେ ବୋଲି ମନରେ ଆଶଙ୍କା ସୃଷ୍ଟି ହୋଇଥିଲା। କିନ୍ତୁ ବିକ୍ରମ ରାଓଙ୍କ ବାରମ୍ବାର ସାନ୍ତ୍ୱନା, "ଆପ୍ ବେଫିକର୍ ରହିୟେ, ଟାଇମ୍ ଗୁଜର୍‌ନେ କେ ସାଥ୍ ସବ୍ ଠିକ୍ ହୋ ଯାଏଗା।"

ବାଂକ୍ୱେଟ୍ ପରଦିନ ସକାଳୁ ଉଠିବାରେ ସାମାନ୍ୟ ବିଳମ୍ବ ହେଲା। ନିତ୍ୟକର୍ମ ନସରୁଣୁ ପରସ୍ପର ମଧ୍ୟରେ ଗତରାତିର ଅନୁଭୂତି ସମ୍ପର୍କୀୟ ଭାବର ଆଦାନ ପ୍ରଦାନ ପାଇଁ ସମସ୍ତେ ଗୋଟିଏ ରୁମ୍‌ରେ ଏକାଠି ହୋଇଗଲୁ। ଆରମ୍ଭ ହୋଇଗଲା ଗପ। କଥାରେ କଥା ମିଶିଲା। କେତେ କ'ଣ କଥା ପଡ଼ିଲା, ଯାହାକୁ କହନ୍ତି ଏକ ପ୍ରକାର ଗୁଲିଗପ। ଆମ ଭିତରୁ ଅନେକଙ୍କର ଚା' ପିଇବାର ଅଭ୍ୟାସ ଥିଲା। ପୁଣି କେତେକ ଥିଲେ ଚା' ନ ପିଇଲେ ପାଇଖାନା ଯାଇପାରୁ ନଥିଲେ।

ଗୁଲିଗପ ପରେ ନିତ୍ୟକର୍ମ ସାରି ହୋଟେଲର ଡାଇନିଂ ହଲ୍‌କୁ ବ୍ରେକ୍‌ଫାଷ୍ଟ ପାଇଁ ଗଲୁ। ହୋଟେଲଟି ବସ୍ତୁତଃ ମହିଳାମାନଙ୍କଦ୍ୱାରା ପରିଚାଳିତ। ସ୍ୱାଗତକକ୍ଷଠାରୁ ଆରମ୍ଭ କରି ଭୋଜନକକ୍ଷ ପର୍ଯ୍ୟନ୍ତ ସବୁଠାରେ ମହିଳାମାନଙ୍କର ହିଁ ପ୍ରାଧାନ୍ୟ। ସେମାନଙ୍କୁ ଦେଖିଲେ ପ୍ରଥମେ ମନେ ହେଲା, ଏ ଦେଶରେ ବୋଧେ ପୁରୁଷ କେହି ନାହାନ୍ତି; ଏହା କେବଳ ଏକ ମହିଳାମାନଙ୍କର ଆବାସସ୍ଥଳୀ। ଯୁଆଡ଼େ ଦେଖିଲେ ମହିଳା। ଗାଡ଼ି ଚଳାଇବାଠାରୁ ଆରମ୍ଭ କରି ଯାନବାହନ ନିୟନ୍ତ୍ରଣ, ହୋଟେଲ, ଡାକ୍ତରଖାନା, ସ୍କୁଲ୍, କଲେଜ୍ ସବୁ ମହିଳାମାନଙ୍କଦ୍ୱାରା ପରିଚାଳିତ। ସେମାନଙ୍କ ମନରେ କୌଣସି ବିକାର ବା ଆବିଳତାର ଚିହ୍ନ ନଥିଲା। ଯେକୌଣସି କାର୍ଯ୍ୟକୁ ଅତି ଆଗ୍ରହ ଓ ନିଷ୍ଠାର ସହିତ କରିବାରେ ସେମାନେ ଆନନ୍ଦ ପାଉଥିଲେ।

ମହିଳାମାନେ ଦେଖିବାକୁ ଯେପରି ସୁନ୍ଦରୀ ସେମାନଙ୍କ ବ୍ୟବହାର ମଧ୍ୟ ତତୋଧିକ ମନୋମୁଗ୍ଧକର। ଯାହାକୁ କହନ୍ତି ଏକପ୍ରକାର ଜାପାନୀ କଣ୍ଢେଇ। ସବୁବେଳେ ହସ ହସ ମୁହଁ। ନମ୍ରତା ସତେ ଯେପରି ସେମାନଙ୍କ ଜନ୍ମଗତ ପ୍ରବୃତ୍ତି। ସେମାନଙ୍କ ଆଚରଣରୁ ଅନ୍ୟର ମନୋରଞ୍ଜନ ସେମାନଙ୍କ ଏକମାତ୍ର ଧ୍ୟେୟ ଭଳି ମନେହେଉଥିଲା। ସେମାନଙ୍କ ବ୍ୟବହାର, ଚାଲିଚଳନ ଦେଖି ଏକ କମ୍ୟୁନିଷ୍ଟ ରାଷ୍ଟ୍ରର ରୁକ୍ଷତା ସମ୍ପର୍କରେ ପୂର୍ବରୁ ଯେଉଁ ଧାରଣାଥିଲା, ତା' କେତେ ପରିମାଣରେ ବଦଳି ଗଲା।

ବ୍ରେକ୍‌ଫାଷ୍ଟ ଟେବୁଲରେ ବିଶେଷ ଅସୁବିଧା ହେଲାନାହିଁ। କାରଣ ବନ୍, ବଟର୍, ଜାମ୍, ଅଣ୍ଡା, ଆପେଲ୍ ସବୁ ମହଜୁଦ୍ ଥିଲା। ଯିଏ ଯାହା ଖାଇପାରିବେ, ସେଥିରେ କଟକଣା ନଥିଲା। ରାତିରେ ଖାଇବା ଭଲ ହୋଇ ନଥିବାରୁ ସମସ୍ତେ ପେଟପୂରା ଜଳଖିଆ ଖାଇଲେ। ପାଉଡର କ୍ଷୀରରେ ଚା' ତିଆରି ହେଲା। ସମସ୍ତେ ପୂର୍ବ ରାତିର ଅସୁବିଧାକୁ ଭୁଲିଗଲେ।

## ଗ୍ରେଟ୍ ଲିଡ଼ର୍ କିମ୍-ଇଲ୍-ସୁଙ୍ଗ୍

ପ୍ରାତଃଭୋଜନ ଶେଷ ହେଲାବେଳକୁ ସମୟ ସକାଳ ନଅଟା। ଆଉ ସମୟ ନଷ୍ଟ ନକରି ଆମେ ବାହାରେ ଅପେକ୍ଷା କରିଥିବା ଗାଡ଼ିରେ ଯାଇ ବସିଲୁ। ସେଦିନ ସେ ଦେଶର ଶାସନମୁଖ୍ୟ କିମ୍-ଇଲ୍-ସୁଙ୍ଗ୍‌ଙ୍କ ଜନ୍ମସ୍ଥାନ ଦେଖିଯିବାର କାଯ୍ୟକ୍ରମ ସ୍ଥିର ହୋଇଥିଲା। ଡି.ପି.ଆର. କୋରିଆ ବା 'ଡେମୋକ୍ରାଟିକ୍ ପିପୁଲ୍ସ ରିପବ୍ଲିକ୍ କୋରିଆ'ର ଭାଗ୍ୟନିୟନ୍ତା ସେ ଦେଶର ରାଷ୍ଟ୍ରପତି କିମ୍-ଇଲ୍-ସୁଙ୍ଗ୍, 'ଗ୍ରେଟ୍‌ଲିଡ଼ର୍' ଭାବରେ ସର୍ବତ୍ର ପରିଚିତ। ସେ କେବଳ ସେ ଦେଶର ଶାସନମୁଖ୍ୟ ନଥିଲେ ବରଂ ଜନଗଣଙ୍କ ହୃଦୟର ସମ୍ରାଟ୍‌ଭାବେ ସୁପ୍ରତିଷ୍ଠିତ ଥିଲେ। ସମଗ୍ର ଦେଶରେ ସେ 'ଗ୍ରେଟ୍-ଲିଡ଼ର୍' ନାମରେ ଅଧିକ

ଜଣାଶୁଣା ଥିଲେ। ଡି.ପି.ଆର୍. କୋରିଆର ସମସ୍ତ କୋଠାବାଡ଼ି, ରେଳ, ବସ୍, ଗାଡ଼ିମଟରରେ ତାଙ୍କର ଛବି ଏବଂ ପ୍ରତ୍ୟେକ ଲୋକର ପୋଷାକରେ ତାଙ୍କର ଫଟୋ ଥିବା ବ୍ୟାଚ୍। ଏଇଥିରୁ ଲୋକେ ତାଙ୍କୁ କେତେ ଶ୍ରଦ୍ଧା କରୁଥିଲେ ତା'ର ସୂଚନା ମିଳୁଥିଲା। ଗ୍ରେଟ୍ ଲିଡ଼ରଙ୍କ ଜନ୍ମସ୍ଥାନକୁ ଯିବା ପୂର୍ବରୁ ତାଙ୍କ କର୍ମମୟ ଜୀବନ ସମ୍ପର୍କିତ ଏକ ଚଳଚ୍ଚିତ୍ର ଦେଖିବା ପାଇଁ ଆମକୁ ସୁଯୋଗ ମିଳିଥିଲା। ପୂର୍ବାହ୍ନ ଦଶଟାରେ ଆମେ ଏକ ଅତ୍ୟାଧୁନିକ ଥିଏଟର୍ ହଲରେ ପହଞ୍ଚିଲୁ। ସେଠାରେ ଗ୍ରେଟ୍-ଲିଡ଼ରଙ୍କ ନେତୃତ୍ୱରେ ଘଟିଥିବା ବିପ୍ଳବର ଏକ ପ୍ରାମାଣିକ ଚଳଚ୍ଚିତ୍ର ଦେଖିବା ପରେ ସେହି ମହାନବ୍ୟକ୍ତିଙ୍କ ପ୍ରତି ସ୍ୱତଃ ଶ୍ରଦ୍ଧା ଜାତ ହେଲା। ଗୋଟିଏ ସାଧାରଣ କୃଷକ ପରିବାରରେ ଜନ୍ମଗ୍ରହଣ କରି ନିଜ ଅଧ୍ୟବସାୟ ଓ ସାଧନା ବଳରେ କିମ୍-ଇଲ୍-ସୁଙ୍ଗ୍ କିପରି ଡି.ପି.ଆର୍. କୋରିଆକୁ ବିଦେଶୀ ଶାସନ କବଳରୁ ମୁକ୍ତକରି ଏକ ସ୍ୱାବଲମ୍ବୀ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିଥିଲେ ଚଳଚ୍ଚିତ୍ରଟିରେ ତା'ର ଅନେକ ପ୍ରମାଣ ଥିଲା।

ହୋଟେଲକୁ ଫେରି ମଧ୍ୟାହ୍ନଭୋଜନ ପରେ ଗ୍ରେଟ୍ ଲିଡ଼ରଙ୍କ ଜନ୍ମସ୍ଥାନ ମଙ୍ଗ୍ୟୋଙ୍ଗାଡ୍ ଦେଖିବାକୁ ବାହାରିଲୁ। ଆମ ହୋଟେଲଠାରୁ ସେ ସ୍ଥାନର ଦୂରତା ପ୍ରାୟ ଦଶ କିଲୋମିଟର। ଆମ ମନରେ ଆଗରୁ ଧାରଣା ହେଇଥିଲା ବୋଧହୁଏ ଗ୍ରେଟ୍ ଲିଡ଼ରଙ୍କ ଜନ୍ମ ସ୍ଥାନଟି ଆହ୍ଲାବାଦର 'ଆନନ୍ଦଭବନ' କିମ୍ବା ନୂଆଦିଲ୍ଲୀର 'ତ୍ରିମୂର୍ତ୍ତି ଭବନ' ଭଳି ହୋଇଥିବ। କିନ୍ତୁ ଇଏ କ'ଣ? ପୋଙ୍ଗ୍ୟାଙ୍ଗ୍ ସହର କୋଠାବାଡ଼ି, ଆଧୁନିକ ସଭ୍ୟତାର ଚାକଚକ୍ୟରେ ପରିପୂର୍ଣ୍ଣ ଥିଲାବେଳେ କାହିଁ ତାଙ୍କ ଜନ୍ମସ୍ଥାନରେ କୋଠାଘରର ଚିହ୍ନବର୍ଣ୍ଣ ନ ଥିଲା। ଗୋଟିଏ ପୁରୁଣାକାଳିଆ କଚାଘର ସାମନାରେ ଆମର ଶୀତତାପ ନିୟନ୍ତ୍ରିତ ଗାଡ଼ିଟି ପହଞ୍ଚିବା ମାତ୍ରେ ସେଠାରେ ଥିବା ଗାଇଡ୍ ଆମକୁ ସ୍ୱାଗତ କଲେ। ଶୁଦ୍ଧ ଇଂରାଜୀ ଭାଷାରେ ଗ୍ରେଟ୍ ଲିଡ଼ରଙ୍କ ଜନ୍ମ, ବାଲ୍ୟକାଳ, ସଂଘର୍ଷମୟ ଜୀବନ ସମ୍ପର୍କରେ ସେ ଆମକୁ ସବୁକଥା ବୁଝାଇଦେଲେ। ଗ୍ରେଟ୍ ଲିଡ଼ରଙ୍କ ବାପଅଜା ଗରିବ ଚାଷୀ ଥିଲେ। ସେମାନେ ବ୍ୟବହାର କରୁଥିବା କୃଷିଉପକରଣ, ଲୁଗାବୁଣା ତନ୍ତ, ଘାସରେ ତିଆରି ମଶିଣା, ବାସନକୁସନକୁ ସେଠାରେ ଯତ୍ନର ସହିତ ସାଇତି ରଖାଯାଇଥିଲା। ସେ ଦେଶରେ ଲୋକେ ସେ ସବୁ ବସ୍ତୁକୁ ପବିତ୍ର ଜାତୀୟସମ୍ପତ୍ତି ଭାବେ ଗ୍ରହଣ କରିଥିଲେ। ସେଠାରେ ରାତି ଦିନ ପହରା ଦବାର ବ୍ୟବସ୍ଥା ଥିଲା। ମହିଳା ଗାଇଡ୍ ଜଣକ ଦେଖିବାକୁ ଯେତିକି ସୁନ୍ଦର, ତାଙ୍କର କଣ୍ଠସ୍ୱର ମଧ୍ୟ ତା'ଠାରୁ ଅଧିକ ମଧୁର। ଗତ ଦୁଇଦିନର ଅନୁଭୂତିରୁ ମନେହେଲା ସତେ ଯେପରି ସେ ଦେଶରେ ଭଗବାନ ଅସୁନ୍ଦର ଝିଅ ସୃଷ୍ଟି କରିବାକୁ କୁଣ୍ଠାବୋଧ କରିଥିଲେ। ଗାଇଡ୍ ଅନର୍ଗଳ କହିଚାଲିଥିଲେ। ସବୁକଥା ପ୍ରାଞ୍ଜଳ ଭାବରେ ବୁଝାଇ ଅନ୍ୟକୁ ଆନନ୍ଦ ଦେବା ସତେ ଯେପରି ତାଙ୍କର ଏକ ପବିତ୍ର କର୍ତ୍ତବ୍ୟ ବୋଲି ମନେହେଲା।

ଗ୍ରେଟ୍ ଲିଡ଼ର୍ ପିଲାଦିନେ ଯେଉଁଠି ବସି ପଢୁଥିଲେ, ସେସବୁ ସ୍ଥାନ ସେମିତି ସୁରକ୍ଷିତ ଅବସ୍ଥାରେ ରହିଥିଲା । ସେ ଦେଶବାସୀଙ୍କ ପାଇଁ ସେସବୁ ସ୍ଥାନ ଅତ୍ୟନ୍ତ ଗୌରବପୂର୍ଣ୍ଣ ଥିଲା । ଗାଇଡ୍ ଆମକୁ ସବୁକଥା ଟିକିନିଖି ଭାବେ ବୁଝାଉଥିଲାବେଳେ ତାଙ୍କ ମନରେ ସନ୍ତୋଷ ଓ ମୁଖମଣ୍ଡଳରେ ତୃପ୍ତିର ଆଭାସ ଆମେ ସ୍ପଷ୍ଟ ଲକ୍ଷ୍ୟ କରିପାରୁଥିଲୁ । ଦେଶପାଇଁ ଏକ ପରମ କର୍ତ୍ତବ୍ୟ କରିପାରୁଛନ୍ତି ଭାବି ସେ ଆତ୍ମସନ୍ତୋଷ ଲାଭ କରୁଥିଲେ ।

ସନ୍ଧ୍ୟାରେ ଫେରି ରାତ୍ରିଭୋଜନ ପରେ ବିଶ୍ରାମ୍ ନେଲୁ । ପୂର୍ବ ଅପେକ୍ଷା ଖାଦ୍ୟପେୟରେ ସାମାନ୍ୟ ଉନ୍ନତି ହୋଇଥିଲା । ଆମ ଟିମ୍‌ରେ ଥିବା 'ରବିବାର' ପତ୍ରିକାର ପ୍ରତିନିଧି ରାଜୀବ ଶୁକ୍ଲା ନିଜ ଉଦ୍ୟମରେ ସେତେବେଳକୁ ଗହମ ଅଟାର ସନ୍ଧାନ କରି ସାରିଥିଲେ । ତା ସହିତ ଆମ ମନ ମଧ ପରିସ୍ଥିତିକୁ ଆଦରି ନେଇଥିଲା । ବିଦେଶଗସ୍ତ ସମୟରେ ସବୁକଥା ଘଣ୍ଟାକଣ୍ଟା ଭଳି ଚାଲୁଥିଲା । ଅଳ୍ପ ସମୟ ମଧ୍ୟରେ ଅଧିକ ସ୍ଥାନ ଦେଖିବାର କାର୍ଯ୍ୟକ୍ରମ ଥିବାରୁ ଆମକୁ ଅନିଚ୍ଛା ସତ୍ତ୍ୱେ ସମୟାନୁବର୍ତ୍ତିତା ସମ୍ପର୍କରେ ସଚେତନ ହେବାକୁ ପଡୁଥିଲା । ମୁଁ ଭାବିଲି, ବିଦେଶ ଗସ୍ତରୁ ଆଉ କିଛି ମିଳୁ କି ନମିଳୁ ଆମେ ଭାରତୀୟ ଯେ ସମୟ ସହିତ ତାଳ ଦେବାକୁ ଶିଖିଲୁ, ତାହା ଆମପାଇଁ ବଡ଼ କଥା ଥିଲା ।

## ବିପ୍ଳବର ସ୍ମୃତିସ୍ତମ୍ଭ ଆର୍କ ଅଫ୍ ଟ୍ରମ୍ଫ୍

ପରଦିନ ସକାଳୁ ଜଳଖିଆ ପରେ ଆମେ ହୋଟେଲରୁ ବାହାରି ଏୟାର୍ କଣ୍ଡିସନ୍ ବସ୍‌ରେ ବସିଲୁ । କିଛି ସମୟ ପରେ ଗୋଟିଏ ବିରାଟ ଟାୱାର୍ ନିକଟରେ ଆମ ବସ୍ ଅଟକିଲା । ଗାଇଡ୍‌ଙ୍କ ଇଙ୍ଗିତରେ ଆମେ ସବୁ ଗାଡ଼ିରୁ ଓହ୍ଲାଇଲୁ । ସାମନାରେ ଷାଠିଏ ମିଟର ଉଚ୍ଚର ଏକ ବିରାଟ ଟାୱାର । ଏହି ଟାୱାରଟି 'ଆର୍କ ଅଫ୍ ଟ୍ରମ୍ଫ୍' ନାମରେ ପରିଚିତ । ଏହି ଟାୱାରର ଐତିହ୍ୟ ଓ ଗୁରୁତ୍ୱ ସମ୍ପର୍କରେ ବୁଝାଇଲା ବେଳେ ଗାଇଡ୍‌ଙ୍କ ମୁଖମଣ୍ଡଳରେ ବ୍ୟାପକ ପରିବର୍ତ୍ତନ ଲକ୍ଷ୍ୟକଲୁ । ଏହାର ବିଶେଷତ୍ୱ ବୁଝାଇ ସତେ ଯେପରି ସେ ପରମ ତୃପ୍ତି ଲାଭ କରୁଥିଲେ ବୋଲି ଆମକୁ ଜଣାପଡୁଥିଲା । ଟାୱାର ପାଖରେ ଗ୍ରେଟ୍ ଲିଡ଼ର୍, କିମ୍-ଇଲ୍-ସୁଙ୍ଗ୍‌ଙ୍କର ବିରାଟ ପ୍ରତିମୂର୍ତ୍ତି । ୧୯୪୫ ମସିହା ଅକ୍ଟୋବର ୧୫ ତାରିଖ ଦିନ ନିର୍ବାସନରୁ ଫେରି ସେ ଯେଉଁ ସ୍ଥାନରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇଥିଲେ, ତା'ରି ସ୍ମାରକୀ ସ୍ୱରୂପ ଏହି ପ୍ରତିମୂର୍ତ୍ତି ନିର୍ମାଣ କରାଯାଇଥିଲା । ଏହି ସ୍ଥାନଟିକୁ ସେ ଦେଶର ଲୋକେ ଏକ ପବିତ୍ର ସ୍ମୃତିସ୍ଥାନ ଭାବେ ଗ୍ରହଣ କରିଥିଲେ; କାରଣ ଡି.ପି.ଆର୍ କୋରିଆର ଲୋକେ ରାଷ୍ଟ୍ରପତି କିମ୍-ଇଲ୍-ସୁଙ୍ଗ୍‌କୁ ସେମାନଙ୍କର ମୁକ୍ତିଦାତା, ତ୍ରାଣକର୍ତ୍ତା ତଥା ରକ୍ଷକ ବୋଲି ବିଚାରୁଥିଲେ । ଗାଇଡ୍‌ଙ୍କ କଥାବାର୍ତ୍ତା, ଭାବଭଙ୍ଗୀରୁ ତାଙ୍କ ଦେଶଭକ୍ତିର ସ୍ପଷ୍ଟ ସୂଚନା ମିଳୁଥିଲା । ବିଶ୍ୱଯୁଦ୍ଧରେ ଧ୍ୱଂସସ୍ତୂପରେ ପରିଣତ ହୋଇଥିବା ଡି.ପି.ଆର୍. କୋରିଆ

ନିଜ ଗୋଡ଼ରେ ଛିଡ଼ା ହେବା ପଛରେ ଯେ ଏହିପରି ନାଗରିକମାନଙ୍କର ନିଃସ୍ୱାର୍ଥପର ତ୍ୟାଗ ରହିଥିଲା ସେକଥା ବୁଝିବାକୁ ଆଉ ବାକି ରହିଲା ନାହିଁ।

ଗାଇଡ଼ଙ୍କ କଥାର ଶୈଳୀ ଓ ଦକ୍ଷତା ଦେଖିଲାବେଳେ ମୋର ମନେପଡ଼ିଗଲା ଆମ ରାଜ୍ୟରେ ଥିବା ବିଶ୍ୱବିଖ୍ୟାତ କୋଣାର୍କ ସୂର୍ଯ୍ୟମନ୍ଦିର ହତାରେ ବୁଲୁଥିବା ଗାଇଡ୍‌ମାନଙ୍କ କଥା। କୌଣସି ଶିକ୍ଷା, ଅଭିଜ୍ଞତା କିମ୍ବା ତାଲିମ୍ ନଥାଇ ନିଜକୁ ନିଜେ ଗାଇଡ୍ ବୋଲି ଅଭିହିତ କରି ଯେଉଁମାନେ କୋଣାର୍କମନ୍ଦିର ସମ୍ପର୍କରେ ବିକୃତ ବ୍ୟାଖ୍ୟା କରନ୍ତି, ସେମାନେ ଯେ ନିଜ ଦେଶର କେତେ କ୍ଷତି ଘଟାନ୍ତି ତା' ସେମାନଙ୍କ ପକ୍ଷରେ ବୁଝିବା ସମ୍ଭବ ନୁହେଁ। ମଇଳା ଧୋତି ସାଙ୍ଗକୁ ଚିରା ସାର୍ଟ ଓ ଖାଲି ଗୋଡ଼ରେ ବେକରେ ଡୋର ବନ୍ଧା ହେଇଥିବା କ୍ଲିକ୍ କ୍ୟାମେରା ପକାଇ ବିଦେଶାଗତ ପର୍ଯ୍ୟଟକମାନଙ୍କଠାରୁ ଦି ଚାରିଟଙ୍କା ନେବାପାଇଁ କି ଅସ୍ୱାସ୍ଥ୍ୟକର ପ୍ରତିଯୋଗିତା ସେଠାରେ ଚାଲେ! ପୁଣି ଅଶୁଦ୍ଧ ଓ ଭ୍ରମାତ୍ମକ ଇଂରାଜୀରେ କୋଣାର୍କର ମହିମାମୟ ଐତିହ୍ୟ ବୁଝାଇବା ପାଇଁ ସେମାନଙ୍କର ଅପଚେଷ୍ଟା ଦେଖିଲେ ଲଜ୍ଜାରେ ମୁଣ୍ଡ ନଇଁଯାଏ। କିଛିସମୟ ପାଇଁ ମୁଁ କୋଣାର୍କ ମନ୍ଦିରର ଦୃଶ୍ୟପଟରେ ନିମଗ୍ନ ହୋଇଯାଇଥିଲି। ବାଙ୍ଗାଲୋରର ଜଣେ ବନ୍ଧୁ ମତେ ହଲେଇଦେଇ କହିଲେ "କ୍ୟା ଦାସ୍ ସାହବ! କହାଁ ଖୋ ଗୟେ? ଘର୍ ୟାଦ୍ ଆତା ହୈ କ୍ୟା?" ନିଜକୁ ସଞ୍ଜତ କରି ତରତରରେ ଯାଇ ଗାଡ଼ିରେ ବସିଗଲି। ଅଳ୍ପ ସମୟ ପରେ ଆମ ଗାଡ଼ି ଯାଇ ରହିଲା 'ଟାୱାର ଅଫ୍ ଜୁଚି ଆଇଡିଆ' ସାମନାରେ। ୧୯୮୨ ମସିହାରେ ଗ୍ରେଟ୍-ଲିଡ଼ର୍‌ଙ୍କ ୭୦ତମ ଜୟନ୍ତୀ ଉତ୍ସବର ସ୍ମାରକୀ ସ୍ୱରୂପ ଏହି ଟାୱାରଟି ନିର୍ମାଣ କରାଯାଇଥିଲା। ଦୀର୍ଘ ସତୁରୀବର୍ଷ ମଧ୍ୟରେ ଗ୍ରେଟ୍ ଲିଡ଼ର୍ ଜୀବନର ଯେତିକି ଦିନ ବିତେଇଥିଲେ ତଦନୁଯାୟୀ ଏହି ଟାୱାରରେ ୨୫ ହଜାର ୫୫୦ ଖଣ୍ଡ ପଥର ବ୍ୟବହାର କରାଯାଇଥିବା କଥା ଗାଇଡ୍ ଆମକୁ ବୁଝାଇଥିଲେ। ଶହେସତୁରୀ ମିଟର ଉଚ୍ଚତା ବିଶିଷ୍ଟ ଏହି ଟାୱାରରେ ୨୦ ମିଟର ଉଚ୍ଚ କାଚରେ ତିଆରି ୪୬ଟନ୍ ଓଜନର ଏକ ଟର୍ଚ୍ଚ ଖଞ୍ଜାଯାଇ ରାତିରେ ବିଦ୍ୟୁତ୍ ଅଲୋକରେ ସେଠାରୁ ଡି.ପି.ଆର୍ ବିପ୍ଳବୀ ସଂଗ୍ରାମ କାହାଣୀର ବାର୍ତ୍ତା ପ୍ରଚାର କରୁଥିଲା। ମାତ୍ର ଅଠର ମାସ ସମୟ ମଧ୍ୟରେ ଏତେ ବଡ଼ ବିଶାଳ ଟାୱାରର ନିର୍ମାଣ କିପରି ସମ୍ଭବ ହେଲା ସେକଥା ହଠାତ୍ ବିଶ୍ୱାସ କରି ହେଲାନାହିଁ।

ଟାୱାରର ପ୍ରବେଶ ଦ୍ୱାରରେ ଦୁଇଟି ବିଶାଳ ପଥରନିର୍ମିତ କବାଟ ଲାଗିଥିଲା। ପ୍ରତି କବାଟର ଓଜନ ତିନିଟନ୍। ମାତ୍ର ବୈଜ୍ଞାନିକ ପ୍ରଣାଳୀରେ ଏପରି କୌଶଳରେ ଏହା ତିଆରି କରାଯାଇଥିଲା ଯେ ସାମାନ୍ୟ ପିଲାଟିଏ ମଧ୍ୟ ଏହାକୁ ଚଳାଚଳ କରିବାରେ କୌଣସି ଅସୁବିଧା ହେଉନଥିଲା। ଟାୱାରର ୧୫୦ ମିଟର ଉଚ୍ଚ ପର୍ଯ୍ୟନ୍ତ ଯିବାକୁ ଲିଫ୍ଟର ବ୍ୟବସ୍ଥା ଥିଲା। ସେଥିପାଇଁ ମାତ୍ର ଦେଢ଼ ମିନିଟ୍ ସମୟ ଲାଗୁଥିଲା। ଟାୱାର ଉପରୁ ସମଗ୍ର ପୋଙ୍ଗୟାଙ୍ଗ୍ ସହରର ଦୃଶ୍ୟ ଉପଭୋଗ କରିବାର ସୁବିଧା ଥିଲା।

ଟାୱାର ସାମ୍ନାରେ ଟେଡ୍ ନଦୀରେ ଦୁଇଟି ପାଣି ଫୁଆରା ମନୋରମ ଦୃଶ୍ୟ ସୃଷ୍ଟି କରୁଥିଲା। ଟାୱାରର ଉଚ୍ଚତା ସହିତ ସମତା ରକ୍ଷା କରି ଏହି ଫୁଆରାରୁ ମଧ୍ୟ ୧୫୦ ମିଟର ପର୍ଯ୍ୟନ୍ତ ପାଣି ଉପରକୁ ଉଠିବାର ବ୍ୟବସ୍ଥା ହୋଇଥିଲା। କି ମନୋରମ ସେ ଦୃଶ୍ୟ! ଏହି ଫୁଆରାକୁ ଦେଖିଲାବେଳେ ମନରେ ସ୍ୱତଃ ଭାସିଆସିଲା କଟକ ସହରର କେନ୍ଦ୍ରସ୍ଥଳ କ୍ୟାପିଟାଲ୍ ସିନେମା ସାମ୍ନାରେ ସେ ସମୟରେ ତିଆରି ହୋଇଥିବା ଫୁଆରାର ଦୃଶ୍ୟ। ଚାରିଆଡ଼େ ଆବର୍ଜନା, ସାମ୍ନାରେ ମଦ୍ୟପ ତେଲେଙ୍ଗା ରିକ୍ସାଚାଳକଙ୍କ ଅଶ୍ରାବ୍ୟ ବାକ୍ୟାଳାପ ସାଙ୍ଗକୁ ସ୍ୱଚ୍ଛନ୍ଦରେ ମଳମୂତ୍ର ତ୍ୟାଗ। ଅନ୍ୟପଟରେ ଛତ୍ରବଜାରରୁ ହୁଣ୍ଡି ମୂଳରେ ପୋକା ବାଇଗଣ, ସଢ଼ା କଦଳୀ ଓ ବୁଢ଼ାଲାଉ ଆଣି ବିକ୍ରି ହେଉଥିବା ସ୍ଥାନକୁ କିଏ କେଉଁ ବିଚାରରେ କାହିଁକି ଏକ ପାଣି ଫୁଆରା ନିର୍ମାଣ ନିମିତ୍ତ ନିର୍ବାଚନ କରିଥିଲେ ଏବଂ ସେଥିନିମିତ୍ତ ସର୍ବସାଧାରଣଙ୍କ ଧନକୁ ଅପବ୍ୟୟ କରାଯାଇଥିଲା ସେ କଥା ମନେପଡ଼ିବାରୁ ବିଦେଶରେ ମଧ୍ୟ ମନ କିଛି ସମୟ ପାଇଁ ଆନ୍ଦୋଳିତ ହୋଇଥିଲା। ଏପରି ଉଦ୍ୟମ ଯେ ଶାସକବର୍ଗଙ୍କୁ ତୋଷାମଦ କରି ଦି ପଇସା ହାତ ଚିକ୍କଣ କରିବା ପାଇଁ କେତେକ ଯନ୍ତ୍ରୀଙ୍କର ଏକ ହୀନ ଉଦ୍ୟମ ସେଥିରେ କିଛି ସନ୍ଦେହ ନଥିଲା।

## ମହିଳା ଗାଇଡ୍‌ଙ୍କୁ ମୁଦିପିନ୍ଧା

ଟାୱାର ଉପରେ ଗାଇଡ୍ ଆମକୁ ସବୁକଥା ପ୍ରାଞ୍ଜଳ ଇଂରାଜୀରେ ବୁଝାଉଥିଲେ। ତାଙ୍କର ପ୍ରତିକଥାରେ ଦେଶପ୍ରେମର ସୂଚନା ଓ ଗ୍ରେଟ୍ ଲିଡ଼ର୍‌ଙ୍କ ପ୍ରତି କୃତଜ୍ଞତା ବାରି ହୋଇପଡୁଥିଲା। ସେଠାରେ ବୁଲୁଥିବାବେଳେ ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ଘଟିଲା। ଏପରି କୌତୂହଳ ଘଟଣା ଘଟାଇବା କାହାରି ଅଭିପ୍ରାୟ କିମ୍ବା ଉଦ୍ଦେଶ୍ୟ ନଥିଲା। ତଥାପି ଅନେକ ସମୟରେ କେତେକ ଘଟଣା ଘଟିଥାଏ ଯାହାକି ଅନ୍ୟମାନଙ୍କ ପାଇଁ କୌତୂହଳପୂର୍ଣ୍ଣ ଓ ଉପଭୋଗ୍ୟ ହୋଇଥାଏ। ସେଦିନ ଘଟଣାଚକ୍ରରେ କୌତୂହଳପୂର୍ଣ୍ଣ ଘଟଣାର ନାୟକ ମୋ ଅଜାଣତରେ ମୁଁ ନିଜେ ହୋଇଯାଇଥିଲି।

ଆମେ ବିଦେଶ ଯିବା ସମୟରେ ମୁଁ ଓଡ଼ିଶାର ପ୍ରସିଦ୍ଧ ତାରକସି ମୁଦି, ରୁପାର ଟାଇକ୍ଲିପ୍, କାନଫୁଲ ଓ କିଛି ସମ୍ବଲପୁରୀ ରୁମାଲ ନେଇଥିଲି। ଯେକୌଣସି ସ୍ଥାନକୁ ପରିଦର୍ଶନରେ ଯିବା ସମୟରେ ସେଠାରେ ଥିବା ଗାଇଡ୍, ତତ୍ତ୍ୱାବଧାରକ ଏବଂ ଅନ୍ୟାନ୍ୟ କର୍ମକର୍ତ୍ତାଙ୍କୁ ବିଭିନ୍ନ ରାଜ୍ୟରୁ ଯାଇଥିବା କିଛି ଉପଢୌକନ ଆମେ ଦେଉଥିଲୁ। କେଉଁଠି କେଉଁ ପଦାର୍ଥ ଦିଆଯିବ, ସେକଥା ଆମେ ହୋଟେଲରୁ ବାହାରିବା ପୂର୍ବରୁ ସ୍ଥିର ହେଉଥିଲା। 'ଟାୱାର୍ ଅଫ୍ ଜୁଚି ଆଇଡିଆ'ରେ ଓଡ଼ିଶାର ଉପଢୌକନ ଦିଆଯିବ ବୋଲି ନିଷ୍ପତ୍ତି ହୋଇଥିବାରୁ ତଦନୁଯାୟୀ ମୁଁ ସାଙ୍ଗରେ ରୁପା ମୁଦି, ଟାଇକ୍ଲିପ୍ ଓ କିଛି ରୁମାଲ୍ ନେଇଥିଲି। ସେଦିନ ସେଠାରେ ଜଣେ ଯୁବତୀ ଓ ଦୁଇଜଣ ଯୁବକ କର୍ତ୍ତବ୍ୟରେ ନିୟୋଜିତ ଥିଲେ।

ଯୁବକ ଦୁଇଜଣଙ୍କୁ ଟାଇକ୍ଲିପ୍ ଓ ରୁମାଲ୍ ଦେବା ପରେ ଯେତେବେଳେ ଯୁବତୀଙ୍କ ନିକଟରେ ପହଞ୍ଚିଲି, ମୁଦିଟା ନେବାପାଇଁ ଯୁବତୀଜଣକ ହାତ ବଢ଼ାଇଦେଲେ। ତାଙ୍କୁ ମୁଦି ପିନ୍ଧାଇଦେବା ପାଇଁ ଅନେକ ମତେ ପ୍ରବର୍ତ୍ତାଇଲେ। ମୁଁ କିଛି ନବୁଝି ତାଙ୍କୁ ମୁଦି ପିନ୍ଧାଇ ଦେବା ପରେ ଆମର ବନ୍ଧୁମାନେ ତାଳିମାରି ନାଚିଉଠିଲେ। ଯୁବତୀଜଣକ ମଧ୍ୟ ଏପରି ରହସ୍ୟର ମର୍ମ କିଛି ବୁଝି ନପାରି କେବଳ ଜୁଳୁଜୁଳୁ ହୋଇ ଚାହିଁ ରହିଥିଲେ; କାରଣ ଜଣେ ଯୁବକ ଜଣେ ଯୁବତୀଙ୍କୁ ସାଧାରଣରେ ମୁଦି ପିନ୍ଧାଇବାର ଅନ୍ତର୍ନିହିତ ଉଦ୍ଦେଶ୍ୟ ତାଙ୍କ ପକ୍ଷରେ ବୁଝିବା ସମ୍ଭବ ନଥିଲା। ଟାୱାର ଅଫ୍ ଜୁଚି ଆଇଡିଆ ବୁଲିବା ପରେ ଆମେ ହୋଟେଲକୁ ଫେରିଆସିଲୁ।

## ହେଲ୍‌ଥ କମ୍ପ୍ଲେକ୍ସ: ଏକ ଅଭିନବ ପରିକଳ୍ପନା

ପୋଙ୍ଗ୍‌ୟାଙ୍ଗ୍ ସହରରେ ଥିବା 'ହେଲ୍‌ଥ କମ୍ପ୍ଲେକ୍ସ'କୁ ଦେଖିବା ପାଇଁ ଆମର କାର୍ଯ୍ୟକ୍ରମ ପୂର୍ବରୁ ନିର୍ଦ୍ଧାରିତ ହୋଇସାରିଥିଲା। ତେଣୁ ମଧ୍ୟାହ୍ନଭୋଜନ ତରତରରେ ସାରି ସମସ୍ତେ ସେଠାକୁ ବାହାରିଲୁ। ପ୍ରଥମେ ମୁଁ ଭାବିଲି, କ'ଣ ଗୋଟାଏ ଡାକ୍ତରଖାନା ଭଳିଆ ହୋଇଥିବ, ସେଠିକି ଗଲେ କ'ଣ ଦେଖିବାକୁ ମିଳିବ ଯେ ଯିବି? କିନ୍ତୁ ବନ୍ଧୁମାନେ କହିଲେ, "ତୁମେ ନଗଲେ ନିଶ୍ଚୟ ଗୋଟିଏ ନୂଆ ଜିନିଷ ହରାଇବ। ଶୋଇବାକୁ ତ ଜୀବନରେ ବହୁତ ସମୟ ମିଳିବ।" ସେମାନଙ୍କ ଅନୁରୋଧରେ ଗାଡ଼ିରେ ବସିଲି। ଅଳ୍ପ ସମୟ ପରେ ଏକ ବିରାଟ ସୌଧ ସାମନାରେ ଆମ ଗାଡ଼ିଟି ଅଟକିଲା। ସ୍ୱାଗତ କକ୍ଷ ନିକଟରେ ପହଞ୍ଚିଲା ପରେ ଆମକୁ ଜୋତା ଖୋଲିବାକୁ ଅଭ୍ୟର୍ଥନା ଦାୟିତ୍ୱରେ ଥିବା ମହିଳା ଗାଇଡ୍ ସହାସ୍ୟ ବଦନରେ ଅନୁରୋଧ କଲେ। ଖାଲିପାଦରେ କେତେ ସମୟ କେତେ ବାଟ ବୁଲିବୁ ବୋଲି ଭାବୁ ଭାବୁ ଆମେ ଦେଖିଲୁ ଚବିଶି ଯୋଡ଼ା କନାଜୋତା ଆମ ପାଇଁ ଆସି ଥୁଆହୋଇଗଲା।

ହେଲ୍‌ଥ କମ୍ପ୍ଲେକ୍ସ ଭିତରେ ପଶି ମୋର ଧାରଣା ବଦଳିଗଲା। ବାସ୍ତବରେ ମୁଁ ଯଦି ସେଦିନ ସେଠାକୁ ଯାଇନଥାନ୍ତି, ତେବେ ଜୀବନରେ ଏପରି ଅଭିନବ ପରିକଳ୍ପନା ଦେଖିବାର ସୁଯୋଗ ସବୁଦିନ ପାଇଁ ହରାଇଥାନ୍ତି। ସ୍ୱାସ୍ଥ୍ୟର ଉନ୍ନତି ପାଇଁ କି ବିରାଟ ପରିକଳ୍ପନା! ଗୋଟିଏ ଛାତ ତଳେ ସୁଇମିଂ ପୁଲ୍, ୱାଟର୍ ପୋଲୋ, ସୁପର ସୋନିକ୍ ବାଥ୍, ମସାଜ୍ ହଲ୍ ଇତ୍ୟାଦି ସବୁ ରହିଥିଲା। ପଚିଶି ହଜାର ବର୍ଗମିଟର ବିଶିଷ୍ଟ କମ୍ପ୍ଲେକ୍ସଟି ମାତ୍ର ନଅମାସ ସମୟ ମଧ୍ୟରେ ନିର୍ମିତ ହୋଇଥିବା ବିଷୟ ଗାଇଡ୍ ଆମକୁ ବୁଝାଇଲା ପରେ ଆମ ଦେଶରେ ନିର୍ମାଣକାର୍ଯ୍ୟକୁ ଜାଣିଶୁଣି ବିଳମ୍ବ କରାଇ ଇଞ୍ଜିନିୟରମାନେ କିପରି ପଇସା ମାରନ୍ତି ସେକଥା ମନେପଡ଼ିଯାଇଥିଲା।



ମସ୍କୋ ସହରର ମଧ୍ୟଭାଗରେ ଥିବା ଲେଲିନ୍‌ଙ୍କ ସମାଧି (କ୍ରେମ୍‌ଲିନ୍)

ମସ୍କୋ ସହରର ରେଡ୍ ସ୍କୋୟାର



ଡିପିଆର୍ କୋରିଆର ମୁକ୍ତିଦାତା କିମ-ଇଲ୍-ସୁଙ୍ଗଙ୍କ ପ୍ରତିମୂର୍ତ୍ତି



ପୋଙ୍ଗ୍‌ୟାଙ୍ଗ୍ ସହରର ବିଜୟ ସ୍ମାରକୀ



ପବନଚାଳିତ କଳ (ଆମ୍‌ଷ୍ଟରଡାମ୍)



ବିଶ୍ୱବିଖ୍ୟାତ ରୋଟରଡାମ୍



ଐତିହାସିକ ହେଗ୍ ସହର



ଫ୍ରାଙ୍କଫର୍ଟ ରେଲୱେ ଷ୍ଟେସନ୍ ସାମନାରେ ବିକ୍ରମ ରାଓ ଏବଂ ଘନଶ୍ୟାମ ଭାଓସାରଙ୍କ ସହିତ



ଜେନେଭାର ମନୋରମ ହ୍ରଦ



ଜେନେଭାରେ ଥିବା ଜାତିସଂଘ କାର୍ଯ୍ୟାଳୟ



ଲୁଭ୍ ସଂଗ୍ରହାଳୟରେ ଥିବା ପ୍ରସିଦ୍ଧ ମୋନାଲିସା ଛବି



ପ୍ୟାରିସ୍‌ର ଆଇଫେଲ୍ ଟାୱାର


ଇଭିନିଂ-ଇନ୍-ପ୍ୟାରିସ୍


ଲଣ୍ଡନ୍‌ର ୧୦ ଡାଉନିଂ ଷ୍ଟ୍ରୀଟ୍‌ରେ ବନ୍ଧୁମାନଙ୍କ ସହିତ



ଇଂଲଣ୍ଡ ରାଣୀଙ୍କ ବାସଭବନ ବକିଙ୍ଗ୍‌ହାମ୍ ପାଲେସ୍



ଟାୱାର ଅଫ ଲଣ୍ଡନ୍

ହେଲ୍‌ଥ କମ୍ପ୍ଲେକ୍ସଟି ତିନିଭାଗରେ ବିଭକ୍ତ ଥିଲା। ସେଥିମଧ୍ୟରୁ ଗୋଟିଏ ବାଳକ-ବାଳିକାମାନଙ୍କ ପାଇଁ, ଦ୍ୱିତୀୟଟି ମହିଳାମାନଙ୍କ ପାଇଁ ଏବଂ ଅନ୍ୟଟି ପୁରୁଷମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା। ପ୍ରଥମ ବିଭାଗରେ ଗୋଟିଏ ସୁଇମିଂପୁଲ୍ ଓ ୱାଟର୍‌ପୋଲୋ ଖେଳିବା ପାଇଁ ବ୍ୟବସ୍ଥା ଥିଲା। ସେଥିରେ ସାନସାନ ପିଲାମାନେ ମନ ଆନନ୍ଦରେ ପାଣିରେ ପହଁରୁଥିଲେ ଏବଂ ପୋଲୋ ଖେଳରେ ବ୍ୟସ୍ତ ଥିଲେ। ସୁଇମିଂପୁଲ୍‌ରେ ପ୍ରତି ମୁହୂର୍ତ୍ତରେ ମଇଳାପାଣି ବାହାରିଯାଇ ସଫା ପାଣି ପଶୁଥିଲା। ସବୁ ସ୍ୱୟଂଚାଳିତ ଥିଲା। କେବଳ ଜଣେ ତଦାରଖକାରୀ ସମସ୍ତ କାର୍ଯ୍ୟକୁ ନିରୀକ୍ଷଣ କରି ଆବଶ୍ୟକ ଅନୁଯାୟୀ ଯାହା ବ୍ୟବସ୍ଥା ଗ୍ରହଣ କରୁଥିଲେ।

ଆମେ ହେଲ୍‌ଥ କମ୍ପ୍ଲେକ୍ସ ବୁଲିବା ଭିତରେ କ୍ରମେ ଦୁଇଟି ଦଳରେ ବିଭକ୍ତ ହୋଇଗଲୁ। ଯେଉଁମାନେ ସୁଇମିଂପୁଲ୍‌ର ଲୋଭନୀୟ ଜଳର ଆକର୍ଷଣକୁ ଏଡ଼ାଇ ପାରିଲେ ନାହିଁ, ସେମାନେ ସେଠାରେ ରହିଗଲେ ଓ ଅନ୍ୟମାନେ ଅନ୍ୟ ବିଭାଗ ଦେଖିବାକୁ ଚାଲିଲେ। ପିଲାଦିନୁ ମହାନଦୀ ଓ କାଠଯୋଡ଼ି ନଦୀର ସୁଅ ପାଣିରେ ପହଁରିବାର ସୁଯୋଗ ଲାଭ କରିଥିବାରୁ ସୁଇମିଂ ପୁଲର ପାଣି ମୋ ପାଇଁ ବିଶେଷ ଆକର୍ଷଣୀୟ ନଥିଲା। ତେଣୁ ମୁଁ ଦ୍ୱିତୀୟଦଳରେ ଯୋଗ ଦେଇ ଭାଗ୍ୟରେ କ'ଣ ଜୁଟୁଛି ଦେଖିବାକୁ ଅପେକ୍ଷା କଲି।

ଆମ ସାଙ୍ଗରେ ଥିବା ଗାଇଡ଼ ଆମକୁ କମ୍ପ୍ଲେକ୍ସର ଉପର ମହଲାକୁ ନେଇଗଲେ। ଆମ ଭିତରୁ କିଏ କିଏ 'ସୁପରସୋନିକ୍ ବାଥ୍' ନେବେ ଓ କେଉଁମାନେ 'ମସାଜ୍' ରୁମ୍‌କୁ ଯିବେ ସେ କଥା କମ୍ପ୍ଲେକ୍ସ ଦାୟିତ୍ୱରେ ଥିବା ନିର୍ଦ୍ଦେଶିକା ପ୍ରଥମେ ବୁଝିନେଲେ। ସମୟର ସ୍ୱଳ୍ପତା ଦୃଷ୍ଟିରୁ ଯେଉଁମାନେ ସୁପରସୋନିକ୍ ବାଥ୍ ନେବେ, ସେମାନଙ୍କୁ ମସାଜ୍ ରୁମ୍‌କୁ ଯିବାର ସୁଯୋଗ ମିଳିପାରିବ ନାହିଁ ବୋଲି ସେ ବିନୟଭାବରେ ବୁଝାଇ ଦେଇଥିଲେ। ହେଲ୍‌ଥ କମ୍ପ୍ଲେକ୍ସଟି ମହିଳା, ବିଶେଷ କରି ଯୁବତୀମାନଙ୍କଦ୍ୱାରା ପରିଚାଳିତ ହେଉଥିବାରୁ ଯୁବତୀମାନଙ୍କ କୋମଳ ହାତ ସ୍ପର୍ଶରେ ମସାଜ୍ ହେବାର ଲୋଭ ଆମ ମଧ୍ୟରୁ ଅନେକଙ୍କୁ ଗ୍ରାସକଲା। ମାତ୍ର ମସାଜ୍‌ରୁମର ସୀମିତ ଆସନ ପୂରଣ ହୋଇଯିବାରୁ ଆମେ କେଇଜଣ ସୁପରସୋନିକ୍ ବାଥ୍ ପାଇଁ ଗଲୁ।

ପ୍ରଥମେ ଆମକୁ ଗୋଟିଏ କାଚଘର ଭିତରକୁ ନିଆଗଲା। ସେ ଘର ଭିତରକୁ ଯିବା ପୂର୍ବରୁ ଘରର ଦାୟିତ୍ୱରେ ଥିବା ପରିଚାଳିକା ଆମକୁ ସବୁକଥା ଟିକିନିକି ଭାବେ ବୁଝାଇଦେଲେ। ପ୍ରତ୍ୟେକଙ୍କ ପାଇଁ ଅଲଗା ଅଲଗା କୋଠରି। କୋଠରିର ପ୍ରଥମ ଭାଗରେ ଲୁଗା ବଦଳାଇବା ପାଇଁ ସ୍ଥାନ। ଲୁଗାପଟା ବଦଳିବା ପରେ ଏକ ଆରାମଦାୟକ ଚୌକିରେ ଆମକୁ ବସିବାକୁ ପରାମର୍ଶ ଦେଇ ସେ ଗୋଟିଏ ସୁଇଚ୍ ଅନ୍ କରିଦେଲେ। ସାଙ୍ଗେ ସାଙ୍ଗେ କୋଠରିଟିର ଉଷ୍ମତା ବୃଦ୍ଧି ପାଇବାରେ ଲାଗିଲା। ଶରୀର ଯେତିକି ଉଷ୍ଣତା ସହ୍ୟ କରି ପାରିବ ସେତିକି ଉତ୍ତାପ ପରେ ସୁଇଚଟି ବନ୍ଦ କରିଦେବାକୁ ପରାମର୍ଶ ଦେଇ ସେ

କୋଠରିର ଅନ୍ୟଭାଗକୁ ଚାଲିଗଲେ। ପ୍ରାୟ ତିନି ଚାରି ମିନିଟ୍ ପରେ ଶରୀରର ସମଗ୍ର ଅଙ୍ଗରୁ ଝାଳ ବୋହିବାକୁ ଲାଗିଲା। ଶରୀର ଏକ ପ୍ରକାର ହାଲୁକା ଲାଗିଲା। ସୁଇଚ୍ ବନ୍ଦ ହେବାର ସଙ୍କେତ ପାଇ ଯୁବତୀଜଣକ ପୁନର୍ବାର ସେ ଘରେ ପ୍ରବେଶ କଲେ। ଗୋଟିଏ ଉଷୁମ ତଉଲିଆରେ ଝାଳସବୁ ପୋଛିଦେବା ପରେ ଅନ୍ୟ ଏକ କୋଠରିକୁ ଯିବାପାଇଁ ସେ ଇଙ୍ଗିତ ଦେଲେ। ତାଙ୍କ କଥା ଓ ଇଙ୍ଗିତ ଏବଂ ଆମର କାର୍ଯ୍ୟ ସବୁ ଯେପରି ଯନ୍ତ୍ରଭଳି ପରିଚାଳିତ ହେଉଥିଲା।

ଅନ୍ୟ କୋଠରିରେ ଏକ ବିରାଟ ବାଦିଂଟବ୍ ଥିଲା। କୋଠରିର କାନ୍ଥ ଓ ଚଟାଣ ସବୁ ମାର୍ବଲ। ଛାତରେ ଦର୍ପଣ ସବୁ ଖଞ୍ଜାଯାଇଥିଲା। କୋଠାରିଟି ସବୁଜ ଆଲୋକରେ ଆଲୋକିତ ହେଉଥିଲେ ହେଁ ପ୍ରକୃତରେ ଆଲୋକ କେଉଁଆଡୁ ଆସୁଥିଲା ତା' ଜଣାପଡୁନଥିଲା। ବାଦିଂଟ୍ୟାବ୍ ନିକଟରେ କେବଳ ସୁଇଚ୍‌ବୋର୍ଡଟିଏ ଥିଲା। ଟ୍ୟାବ୍‌ରେ ଶୋଇବା ପରେ ପରିଚାଳିକା ଜଣକ ସୁଇଚ୍‌ବୋର୍ଡର ଗୋଟିଏ ସୁଇଚ୍ ଅନ୍ କରିଦେଲେ। ସଙ୍ଗେ ସଙ୍ଗେ ଘୁଁ କରି ଏକ ଶବ୍ଦ ଶୁଣାଗଲା ଏବଂ ଶରୀରରେ ଏକ କମ୍ପନ ଅନୁଭୂତ ହେଲା। ମୁଁ ଅନୁଭବ କଲି, ସତେଯେପରି ମୋର ସମସ୍ତ ଶରୀର କ୍ରମେ କ୍ରମେ ନିସ୍ତେଜ ହୋଇଯାଉଥିଲା ଏବଂ ତା ସହିତ ଶରୀରର କ୍ଳାନ୍ତି ମଧ୍ୟ ଦୂର ହୋଇଯାଉଥିଲା। ମୁଁ ଦେଖିଲି ବାଦିଂ ଟ୍ୟାବ୍‌ରୁ ଜଳକଣାମାନ ବାହାରି ଶରୀରର ସମସ୍ତ ଅଂଶରେ ବାଜୁଥିଲା। ଜଳକଣା ପ୍ରବାହର ବେଗ ଏତେ ପ୍ରଖର ଥିଲା ଯେ ମାତ୍ର ଦୁଇ ତିନି ମିନିଟ୍ ମଧ୍ୟରେ ଦେହଟା ଫୁଲ ଭଳି ହଲୁକା ଲାଗିଲା। ଆସ୍ତେ ଆସ୍ତେ ଆଖି ବୁଜି ହୋଇଯାଇଥିଲା।

ହଠାତ୍ ଏକ ଉଜ୍ଜ୍ୱଳ ଆଲୋକର ପ୍ରତିଫଳନରେ ନିଦ ଭାଙ୍ଗିଗଲା। ସେତେବେଳକୁ ପ୍ରାୟ ଦଶ ମିନିଟ୍ ସମୟ ଅତିବାହିତ ହୋଇଯାଇଥିଲା। ମୁଁ କେଉଁଠି ଅଛି, କ'ଣ କରୁଛି, ହଠାତ୍ କିଛି ବୁଝିପାରି ନଥିଲି। ଉଜ୍ଜ୍ୱଳ ଆଲୋକର ପ୍ରଜ୍ଜ୍ୱଳନ ବାହାରକୁ ଯିବା ପାଇଁ ସଙ୍କେତ ବୋଲି ପରିଚାଳିକା ବୁଝାଇଦେବାରୁ ଟ୍ୟାବ୍‌ରୁ ଉଠି ଲୁଗାପଟା ବଦଳାଇ ବାହାରକୁ ଆସିଲି। ଯେଉଁମାନେ ମସାଜ୍ ରୁମ୍‌କୁ ଯାଇଥିଲେ ସେମାନଙ୍କ ମଧ୍ୟରୁ ଅନେକ ସେତେବେଳ ପର୍ଯ୍ୟନ୍ତ ସେଠାରୁ ବାହାରି ନଥିଲେ। ମସାଜ୍‌ରୁମ୍‌ରେ କ'ଣ ସବୁ ଚାଲିଥିଲା ତାହା ଦେଖିବା ପାଇଁ ମନରେ ଆଗ୍ରହକୁ ଭାଙ୍ଗି ନପାରି ଆମେ କେଇଜଣ ଭିତରକୁ ଗଲୁ। ଆମର ବନ୍ଧୁମାନେ ସେତେବେଳେ ଯୁବତୀମାନଙ୍କର କୋମଳ ହାତର ସ୍ପର୍ଶ ପାଇ ଆରାମଦାୟକ ଚୌକିରେ ପ୍ରାୟ ଅର୍ଦ୍ଧଶାୟିତ ଅବସ୍ଥାରେ ଥିଲେ। କାହାର ହେୟାର୍ କଟ୍, କାହାର ସାମ୍ପୁ, କାହାର 'ବଡି ମସାଜ୍' ଓ ଆଉ କାହାର କେବଳ 'ଫେସ୍ ମସାଜ୍' ଚାଲିଥିଲା। ସମସ୍ତେ ସ୍ୱପ୍ନ ରାଜ୍ୟରେ ବିଚରଣ କଲାଭଳି ଅନୁଭବ କରୁଥିଲେ। ସମୟର ସ୍ୱଳ୍ପତା ବିଷୟରେ ତାଗିଦ୍ କରା ଯାଇନଥିଲେ ସେମାନେ ବୋଧେ ସେଠାରୁ ବାହାରି ଥାନ୍ତେ କି ନାହିଁ ସନ୍ଦେହ ଥିଲା।

# ପୋଙ୍ଗ୍‌ୟାଙ୍ଗ୍‌ରେ ସର୍କସ ଦେଖା

ହେଲ୍‌ଥ କମ୍ପ୍ଲେକ୍ସରୁ ଫେରିଲାବେଳେ ମନ ଖୁବ୍ ପ୍ରଫୁଲ୍ଲ ଥିଲା। ଶରୀର ମଧ୍ୟ ବେଶ୍ ହାଲୁକା ଲାଗୁଥିଲା। ସୁପରସୋନିକ୍ ବାଥ୍‌ର ପ୍ରଭାବ ମନ ଓ ଶରୀର ଉପରୁ ସମ୍ପୂର୍ଣ୍ଣ ଯାଇ ନଥିଲା। ଆଉ ଯେଉଁମାନେ ମସାଜ୍ ରୁମ୍‌ରୁ ଫେରିଥିଲେ ସେମାନେ ମଧ୍ୟ ଖୁବ୍ ଖୁସି ମାଲୁମ୍ ପଡୁଥିଲେ। ପୋଙ୍ଗ୍‌ୟାଙ୍ଗ୍ ସହରରେ ଚାରି ପାଞ୍ଚଦିନ ରହିବା ମଧ୍ୟରେ ମନରେ ଯେଉଁ ଅବସାଦ ଜନ୍ମିଥିଲା, ହେଲ୍‌ଥ କମ୍ପ୍ଲେକ୍ସରୁ ଫେରିଲା ପରେ ତା' ଅଧିକାଂଶ ଭାବରେ ଦୂର ହୋଇଯାଇଥିଲା।

କୋରିଆରେ ସର୍କସ ଏକ ମୁଖ୍ୟ ଆକର୍ଷଣ। ସେ ରାଷ୍ଟ୍ରର ଲୋକେ ସିନେମା ଦେଖିବାରେ ଆଗ୍ରହୀ ନୁହନ୍ତି ବରଂ ସର୍କସ ସେମାନଙ୍କ ଆମୋଦ ପ୍ରମୋଦର ମୁଖ୍ୟ ଆକର୍ଷଣ। ସେଥିପାଇଁ ସେମାନେ ଆମ ପାଇଁ ସର୍କସ ଦେଖିବାର ବନ୍ଦୋବସ୍ତ କରିଥିଲେ। ସର୍କସ ଯିବା କଥା ଶୁଣିଲାବେଳେ ଭାବିଲି, ସର୍କସ ତ ପିଲାଦିନୁ ଦେଖା ହେଉଛି, କ'ଣ ଆଉ ଅଧିକ ଦେଖିବାର ଥିବ? ବୋଧହୁଏ ଗୋଟିଏ ସର୍କସ ଦଳ ଆସି କୋଉ ପଡ଼ିଆରେ ଚାରିଖୁଣ୍ଟିଆ ତମ୍ବୁ ଟାଣି ସର୍କସ ଦେଖାଉଥିବ। ଅଯଥାରେ ସନ୍ଧ୍ୟାଟା ନଷ୍ଟହେବ। ବରଂ ହୋଟେଲ ରୁମ୍‌ରେ ଶୋଇ ଟିକିଏ ଆରାମ୍ କଲେ ଭଲ। ଆଉ ଜଣେ ଦି'ଜଣ ବନ୍ଧୁ ବିଶେଷ କରି କେରଳର କେ. ମାଥ୍ୟୁ ରାୟ ମଧ୍ୟ ଅନୁରୂପ ମତ ଦେଲେ; କାରଣ ପିଲାଦିନୁ ସେ ସର୍କସ ଦେଖୁଥିଲେ। ଆମ ଦେଶରେ କେରଳରୁ ସର୍କସର ସୃଷ୍ଟି। କିନ୍ତୁ ସଭାପତି ବିକ୍ରମ ରାଓ ନଛୋଡ଼ବନ୍ଧା। ତାଗିଦ୍ କରି କହିଲେ, "ହ୍ୱାଟ୍ ଆର୍ ୟୁ ଥିଙ୍କିଙ୍ଗ୍? ୟୁ ମଷ୍ଟ୍ କମ୍ ଟୁ ଦି ସର୍କସ୍। କୋରିଆନ୍ ସର୍କସ୍ ଇଜ୍ ୱାନ୍ ଅଫ୍ ଦି ବେଷ୍ଟ୍ ଇନ୍ ଦି ୱାର୍ଲ୍ଡ।" (ତମେ ସବୁ କ'ଣ ଚିନ୍ତା କରୁଛ? ତମକୁ ସର୍କସ ଦେଖି ଯିବାକୁ ହେବ। କୋରିଆର ସର୍କସ ପୃଥିବୀର ଅନ୍ୟତମ ଶ୍ରେଷ୍ଠ ସର୍କସ ଭାବରେ ପ୍ରତିଷ୍ଠିତ) ରାଓ ସାହେବଙ୍କ କଥା ଭାଙ୍ଗି ନପାରି ସର୍କସ ଯିବା ଉଦ୍ଦେଶ୍ୟରେ ଆମେ ଯାଇ ଗାଡ଼ିରେ ବସିଲୁ।

ଆମ ଗାଡ଼ିଟି ଏକ ଦୋମହଲା କୋଠା ସାମନାରେ ଛିଡ଼ା ହେବା ପରେ ଆମର ସଂଶୟ ଦୂର ହେଲା। ସେଠାରେ ଥିବା ସର୍କସର ନିର୍ଦ୍ଦେଶକ ଆମକୁ ପ୍ରାରମ୍ଭିକ ସୂଚନା ଦେଇ ସବୁକଥା ବୁଝାଇଦେଲେ। ସେ ଦ୍ୱିତଳ ପ୍ରାସାଦର ଏକ ସ୍ଥାୟୀ ଷ୍ଟେଜ୍‌ରେ ସବୁଦିନେ ସର୍କସ ହେଉଥିଲା। ବହୁ ଚିତ୍ତାକର୍ଷକ ଖେଳକୁ ଏଥିରେ ସାମିଲ୍ କରାଯାଇ ସର୍କସକୁ ଅଧିକ ଉପଭୋଗ୍ୟ କରାଯାଇଥିଲା। ସର୍କସର ବିଭିନ୍ନ ଦୃଶ୍ୟ ଯେପରି ରୋମାଞ୍ଚକର ସେହିପରି ହୃଦୟସ୍ପର୍ଶୀ ଥିଲା। ସର୍କସ ଦେଖିଲାବେଳେ ମୁଁ ଖାଲି କଟକର ବାଲିଯାତ୍ରା ପଡ଼ିଆରେ ଚାଲିଥିବା ସର୍କସର ଦୃଶ୍ୟ ବିଷୟରେ ଭାବୁଥିଲି। ଛିଣ୍ଡା ତମ୍ବୁ ତଳେ ଅଧାମରା ଜୀବଜନ୍ତୁଙ୍କ ସମାବେଶ। ବର୍ଷାରେ ମାଟି ପଚପଚ। ଚାରିଆଡ଼େ ହୋହାଲ୍ଲା। ଟିକେଟ କାଟିବାଠାରୁ ଆରମ୍ଭ କରି ସର୍କସରୁ ବାହାରକୁ ବାହାରିବା ପର୍ଯ୍ୟନ୍ତ ସବୁସ୍ଥାନରେ କିପରି

କସରତ କରିବାକୁ ପଡୁଥିଲା। କିନ୍ତୁ ପୋଙ୍ଗୟାଙ୍ଗରେ ସବୁକଥା ଶୃଙ୍ଖଳା ଭିତରେ ଚାଲିଥିଲା। କେହି କାହାକୁ ଅପେକ୍ଷା କରୁନଥିଲେ। ଯନ୍ତ୍ର ଭଳି ଯିଏ ଯାହା କାମ କରିଚାଲିଥିଲେ। ବାସ୍ତବିକ, ଯଦି ସେଦିନ ସନ୍ଧ୍ୟାରେ ପୋଙ୍ଗ୍‌ୟାଙ୍ଗ୍ ସହରରେ ସର୍କସ ଦେଖା ହୋଇନଥାନ୍ତା, ତେବେ ସର୍କସ ସମ୍ପର୍କରେ ଏକ ଭୁଲ୍ ଧାରଣା ସବୁଦିନ ପାଇଁ ରହିଯାଇଥାଆନ୍ତା।

ପୋଙ୍ଗ୍‌ୟାଙ୍ଗ ସହରରେ ସାତଦିନ ରହିବା ଭିତରେ ଆମ ମନର ଉଚ୍ଛୃଙ୍ଖଳତା ଉବେଇ ଟୁବେଇ ହେବାରେ ଲାଗିଲା। ଦୀର୍ଘ ଚାଳିଶିବର୍ଷ କାଳ ଏକ ଅନୁଶାସନର ଧାରାରେ ପଡ଼ି ଡି.ପି.ଆର. କୋରିଆବାସୀ ମନକୁ ସ୍ଥିର କରି ନେଇଥିଲେ। ସମସ୍ତଙ୍କର ଗୋଟିଏ ଲକ୍ଷ୍ୟ – ଦେଶର ସର୍ବାଙ୍ଗୀନ ଉନ୍ନତି। ଗୋଟିଏ ଭାଷା, ଗୋଟିଏ ନେତା ଏବଂ ସେଥିପାଇଁ ସେମାନେ ଗର୍ବ ଅନୁଭବ କରୁଥିଲେ। ଆମର ସେଠାରେ ଆଉ ମାତ୍ର ଚାରିଦିନ ରହିବାପାଇଁ କାର୍ଯ୍ୟକ୍ରମ ଥିବାରୁ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ସହିତ ଖାପଖୁଆଇବାକୁ ପଡୁଥିଲା। ସେ ଦେଶର ସ୍କୁଲ, ଡାକ୍ତରଖାନା, ଆର୍ଟଗ୍ୟାଲେରୀ, ମ୍ୟୁଜିଅମ୍, କ୍ଷେତଖମାର ଓ ସର୍ବୋପରି ସମ୍ବାଦପତ୍ର ସଂସ୍ଥା ବୁଲି ଦେଖିବା ପାଇଁ ବାକିଥିଲା। ବହୁ ଉଦ୍ୟମ କରି ସେମାନେ ଆମ ପାଇଁ ଅରୁଆଚାଉଳ, ଅଟା, ଆଳୁ, ଟମାଟୋ, ମିଲ୍କପାଉଡର ଇତ୍ୟାଦି ସଂଗ୍ରହ କରିଥିଲେ। ମିଲ୍କପାଉଡର୍‌କୁ ପାଣିରେ ଗୋଳାଇ ଆମେ କୌଣସି ପ୍ରକାରେ ତାକୁ ଦହିରେ ପରିଣତ କରିବା ଫଳରେ ଆମର ଅନେକ ସମସ୍ୟା ହାଲୁକା ହୋଇଯାଇଥିଲା। ଅରୁଆଭାତ ସାଙ୍ଗକୁ ବସାଦହି ଓ ଆଳୁସିଝା ଆମ ନିରାମିଷାଶୀମାନଙ୍କ ପାଇଁ କାମଚଳା ଖାଦ୍ୟ ହୋଇଗଲା। ପଶୁଚର୍ବିରେ ତର୍କାରିପତ୍ର ହେଉଥିବାରୁ ଆମ ପକ୍ଷରେ ସେସବୁ ଅସହ୍ୟ ହେଉଥିଲା। କିନ୍ତୁ ଆମ ଭିତରେ ଯେଉଁମାନେ 'ସବାଖିଆ' ଥିଲେ, ସେମାନଙ୍କ ପାଇଁ କଟେପୁଅ ବାର। ଯାହା ମିଳିଲା ଖାଇଗଲେ, ଯାହା ପାଇଲେ ପିଇଗଲେ। କୌଣସି ଖାଦ୍ୟ ବା ପାନୀୟକୁ ସେମାନଙ୍କର ବାରଣ ନଥିଲା। ପ୍ରକୃତରେ କହିବାକୁ ଗଲେ ସେଇମାନେ ହିଁ ଜୀବନକୁ ଉପଭୋଗ କରୁଥିଲେ।

## ସ୍ନେକ୍ ହ୍ୱିସ୍କିର ନିଶା

'ସ୍ନେକ୍ ହ୍ୱିସ୍କି' କୋରିଆର ଅନ୍ୟତମ ସମ୍ମାନଜନକ ପାନୀୟଭାବରେ ବିଚାର କରାଯାଏ। ବିଦେଶାଗତ ଅତିଥିମାନଙ୍କ ଚର୍ଚ୍ଚାରେ ସେ ଦେଶର ଲୋକେ ତାକୁ ବ୍ୟବହାରରେ ଲଗାଇଥାନ୍ତି। ଆମ ଭିତରୁ ଯେଉଁମାନେ ମଦ୍ୟାସକ୍ତ, ସେମାନେ 'ସ୍ନେକ ହ୍ୱିସ୍କି'ର ସାନ୍ନିଧ୍ୟ ଲାଭ କରିବାକୁ ଆଗ୍ରହ ପ୍ରକାଶ କଲେ। ଆଉ ଆମେ, ଯେଉଁମାନେ ମଦ୍ୟପାନରୁ ଦୂରରେ ରହୁ, ସେ ସମ୍ପର୍କରେ ଜାଣିବାକୁ ଚାହିଁଲୁ। ସ୍ଥିରହେଲା, ସନ୍ଧ୍ୟାରେ ଡିନର୍ ପୂର୍ବରୁ 'ସ୍ନେକ୍ ହ୍ୱିସ୍କି' ପରିବେଷଣ କରାଯିବ। ଆମ ବନ୍ଧୁମାନଙ୍କର କି ଆନନ୍ଦ! ସତେ ଯେପରି ଜୀବନରେ କିଛି ନୂଆଜିନିଷ ଲାଭ କରିବେ।

ସନ୍ଧ୍ୟା ଉପନୀତ ହେବାମାତ୍ରେ ଆମର ମଦ୍ୟାସକ୍ତ ବନ୍ଧୁମାନେ ଡିନର୍ ପୋଷାକ ଚଢ଼େଇ ଦେହରେ ଅତର ମାରି ବାହାରି ପଡ଼ିଲେ। ମୋର ଏବେ ବି ମନେପଡୁଛି ସେଦିନ ସନ୍ଧ୍ୟାରେ ସେମାନଙ୍କ ସେଇ ଆବେଗ। କିଏ ଆସିଲା, ନ ଆସିଲା, ସେକଥାକୁ ଖାତିର ନଥିଲା। ଆଗେ ଯାଇ ଡିନର୍ ଟେବୁଲରେ ବସିଗଲେ। ଯଥା ସମୟରେ ହ୍ୱିସ୍କି 'ସର୍ଭ' ହେଲା। କାଳ ବିଳମ୍ବ ନକରି ଆମ ଭିତରୁ କେତେକ ସଙ୍ଗେ ସଙ୍ଗେ ତାକୁ କଣ୍ଠସ୍ଥ କରିଦେଲେ। କିନ୍ତୁ ଇଏ କ'ଣ ! ପ୍ରାୟ ଦଶମିନିଟ୍ ମଧ୍ୟରେ ମଦ୍ୟପାନ କରିଥିବା ଅଧିକାଂଶ ଟଳମଳ ଅବସ୍ଥାକୁ [illegible]ଲେ। ଆଉ କେହି କେହି ପ୍ରକୃତିସ୍ଥ ରହିଥିଲେ ମଧ୍ୟ ସେମାନଙ୍କର କଥାବାର୍ତ୍ତାରେ ଠିକ୍ ଠିକଣା ରହୁନଥିଲା। ଆମେ ଯେଉଁମାନେ ମଦ ପିଇନଥିଲୁ ହଠାତ୍ କିଛି ବୁଝିପାରିଲୁ ନାହିଁ; କାରଣ ଯେଉଁମାନେ 'ସ୍ନେକ୍ ହ୍ୱିସ୍କି' ପିଇଥିଲେ ସେମାନେ ସମସ୍ତେ ଓସ୍ତାଦ୍ ପିଇଲାବାଲା। ପ୍ରତ୍ୟେକ ଗୋଟିଏ ଗୋଟିଏ 'କ୍ୱାଟ୍' (ବଡ଼ ମଦବୋତଲ) ଖତମ୍ କରିଦେବାର ଶକ୍ତି ସେମାନଙ୍କର ଥିଲା। ଏପରି କ୍ଷେତ୍ରରେ ମାତ୍ର ଗୋଟିଏ ଦୁଇଟି ରାଉଣ୍ଡରେ ସେମାନଙ୍କୁ ନିଶା ଧଇଲା କିପରି ?

ଡାଇନିଂହଲ୍‌ରେ ଥିବା ତରୁଣୀମାନେ ମଧ୍ୟ ଟିକେ ଅସ୍ତବ୍ୟସ୍ତ ହୋଇପଡ଼ିଲେ। କାଳେ କିଛି ଅଘଟଣ ଘଟିବ, ଏଇ ଚିନ୍ତାରେ ସେମାନେ କେବଳ ପରିସ୍ଥିତିକୁ ଲକ୍ଷ୍ୟ କରୁଥିଲେ।

ଏ 'ସ୍ନେକ୍‌ହ୍ୱିସ୍କି' କ'ଣ ଓ ଶରୀର ଉପରେ ଏହାର କି ପ୍ରଭାବ ପଡ଼ିପାରେ ବୋଲି ଆମେ ଜାଣିବାକୁ ଚାହିଲାରୁ ଆମ ସାଙ୍ଗରେ ଥିବା ଗାଇଡ୍ ଆମକୁ ବୁଝାଇ କହିଲେ, "ମଦ ତିଆରି ହେବା ପରେ ତାକୁ ଅଧିକ କଡ଼ା କରିବା ଉଦ୍ଦେଶ୍ୟରେ ମଦ ଥିବା ଡ୍ରମରେ ଗୋଟିଏ ବିଷାକ୍ତ ଜୀବନ୍ତ ସାପକୁ ସେଥିରେ ଛାଡ଼ିଦିଆଯାଏ। ପରେ ମଦପାତ୍ରଟି ସାପ ସହିତ ମାଟିରେ ପୋତାଯାଏ। କିଛିବର୍ଷ ପରେ ସାପ ଦେହରେ ଥିବା ସମସ୍ତ ଗରଳ ଓ ଅନ୍ୟାନ୍ୟ ବିଷାକ୍ତ ପଦାର୍ଥ ମଦରେ ମିଶିଯାଇ ଏକପ୍ରକାର ପାନୀୟରେ ପରିଣତ ହୋଇଯାଏ ଏବଂ କୌଣସି ବିଶେଷ ଅତିଥିମାନଙ୍କ ଚର୍ଚ୍ଚାରେ ତାକୁ ପାନୀୟ ଆକାରରେ ଦିଆଯାଏ।"

କୋରିଆବାସୀଙ୍କର ସିନା ସାପଗରଳ ଥିବା ମଦ ପିଇବାରେ ଅଭ୍ୟାସ ଅଛି ଯେ ସେମାନେ ତାକୁ ପିଇ ସମ୍ଭାଳିଯିବେ, ହେଲେ ଆମଲୋକ ତାକୁ ସମ୍ଭାଳୁଛନ୍ତି କୁଆଡୁ ? ଯାହାହେଉ ବନ୍ଧୁମାନଙ୍କୁ କୌଣସିମତେ ଡାଇନିଂ ଟେବୁଲ୍‌ରୁ ଆଣି ସେମାନଙ୍କ ରୁମ୍‌ରେ ପହଞ୍ଚାଇବାକୁ ପଡ଼ିଲା। ଏହାପରେ ଆମେ ଯେତେଦିନ ପୋଙ୍ଗୟାଙ୍ଗ୍ ସହରରେ ରହିଥିଲୁ, ଆମର ମଦ୍ୟାସକ୍ତ ବନ୍ଧୁମାନେ ଆଉ 'ସ୍ନେକ୍‌ହ୍ୱିସ୍କି' ପିଇବାକୁ ଆଗ୍ରହ ପ୍ରକାଶ କରିନଥିଲେ।

## 'ୱାଉ' ଦ୍ୱୀପରେ ଗୋଟିଏ ଦିନ

ଡି.ପି.ଆର୍. କୋରିଆର ରାଜଧାନୀ ପୋଙ୍ଗ୍ୟାଙ୍ଗ୍ ସହରରେ ବୁଲାବୁଲି କାମ ଶେଷ ହେଲାପରେ ସେ ଦେଶର ଗାଁଗହଳିର ଲୋକେ କେମିତି ଚଳୁଥିଲେ, ଚାଷବାସ କାମ କିପରି ଚାଲୁଥିଲା, ସେଠାରେ ଧନୀ ଦରିଦ୍ରଙ୍କ ମଧ୍ୟରେ ପ୍ରଭେଦ କେତେ; ତାହା ଦେଖିବାକୁ ମନରେ ଉତ୍କଣ୍ଠା ସୃଷ୍ଟି ହେଲା; କାରଣ ଆଗରୁ ଆମ ମନରେ ଗୋଟିଏ ଧାରଣା ସୃଷ୍ଟି ହୋଇଥିଲା ଯେ, କମ୍ୟୁନିଷ୍ଟ୍ ରାଷ୍ଟ୍ରମାନଙ୍କରେ ବିଦେଶାଗତ ଅତିଥିମାନଙ୍କୁ ସବୁସ୍ଥାନକୁ ନିଆଯାଏ ନାହିଁ। ଯେଉଁ ଅଞ୍ଚଳ ସମୃଦ୍ଧ, କେବଳ ସେତିକି ଅଞ୍ଚଳକୁ ବାହାର ଲୋକଙ୍କୁ ନିଆଯାଏ। ଆମର ପୋଙ୍ଗ୍ୟାଙ୍ଗ୍ ସହର ସମ୍ପର୍କରେ ମୋଟାମୋଟି ଗୋଟିଏ ପ୍ରକାର ଧାରଣା ସୃଷ୍ଟି ହୋଇସାରିଥିଲା। ତେଣୁ ରାଜଧାନୀ ବାହାରେ ଥିବା ଅନ୍ୟାନ୍ୟ ସହର ଓ ମଫସଲ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନଅର୍ଜନ ପାଇଁ ଆମେ ଯିବାକୁ ଚାହିବାରୁ ତଦନୁଯାୟୀ ୱାଉ ଦ୍ୱୀପକୁ ଯିବା ପାଇଁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା।

ସକାଳୁ ଶୀଘ୍ର ଜଳଖିଆ ଖାଇ ଆମକୁ ବାହାରିବାକୁ ପଡ଼ିଲା। କୋରିଆର ପଶ୍ଚିମାଞ୍ଚଳରେ ଚୀନ୍ ସୀମାକୁ ଲାଗିଥିବା ସମୁଦ୍ର ଉପକୂଳରେ 'ୱାଉ' ଦ୍ୱୀପକୁ ଯିବାପାଇଁ ଅନ୍ୟୂନ ପାଞ୍ଚଘଣ୍ଟାର ବସ୍‌ଯାତ୍ରା। ସକାଳ ସାତଟାବେଳକୁ ଆମ ଏୟାର୍‌କଣ୍ଡିସନ୍ ଗାଡ଼ିଟି ହୋଟେଲ ଛାଡ଼ିଲା। ଗତ କିଛିଦିନର ନିୟନ୍ତ୍ରିତ କାର୍ଯ୍ୟକ୍ରମ ମଧ୍ୟରେ ଚଳିବା ପରେ ପ୍ରଥମଥର ପାଇଁ ସମୁଦ୍ରକୂଳକୁ ଯିବାର ସୁଯୋଗ ମିଳିଥିବାରୁ ସେଦିନ ମନ ବେଶ୍ ଫୂର୍ତ୍ତି ଥିଲା। ଗାଡ଼ି ଚାଲିଲାବେଳେ ମନରେ ସମୁଦ୍ରଗାଧୁଆ ଏବଂ ତା'ପରେ କୂଳରେ ବୁଲାବୁଲି କରି ଜିହ୍ୱାର ଲାଳସା ମେଣ୍ଟାଇବାର ଆଶା ସଞ୍ଚାର ହୋଇଥିଲା। ଆମେ ଗଲାବେଳେ ରାସ୍ତାରେ ଅନେକ ଗାଡ଼ିମଟର ଯିବାର ଦେଖିଲୁ। ସେଦିନ ଥିଲା ରବିବାର। ରାସ୍ତାରେ ଗାଡ଼ିମଟର ଚଳାଚଳ ଦେଖି ଆମେ ଆଶ୍ଚର୍ଯ୍ୟ ହେଲୁ। ରିବିବାର ସରକାରୀ ଗାଡ଼ିସବୁ କେମିତି ଚାଲୁଥିଲା ? ଆମ ଗାଇଡ୍ ବୁଝାଇଦେଲେ, "ପୋଙ୍ଗ୍ୟାଙ୍ଗ୍‌ରେ ଥିବା ସମସ୍ତ ଦୂତାବାସ ରିବାବାର ବନ୍ଦ ଥାଏ ଏବଂ ଦୂତାବାସର ଅଫିସର ଓ ଅନ୍ୟାନ୍ୟ କର୍ମଚାରୀମାନେ ଛୁଟି ଉପଭୋଗ କରିବା ପାଇଁ 'ୱାଉ' ଦ୍ୱୀପକୁ ଯାଆନ୍ତି। ଏ ଗାଡ଼ିସବୁ ସେଇମାନଙ୍କର।" ଆରାମଦାୟକ ଗାଡ଼ିରେ ପାଞ୍ଚଘଣ୍ଟାର ବସ୍ ଯାତ୍ରା ଜଣାପଡ଼ିଲା ନାହିଁ। ଆମେ ଦିନ ପ୍ରାୟ ବାରଟା ବେଳକୁ 'ୱାଉ'ରେ ପହଞ୍ଚିଗଲୁ।

ମାତ୍ର 'ୱାଉ'ରେ ପହଞ୍ଚିବା ପରେ ମନ ଫିକା ପଡ଼ିଗଲା। ମନର ସବୁ ଭାବନା ପାଣିଫୋଟକା ପରି ମିଳାଇଗଲା। ଖାଇବା ତ ଦୂରର କଥା, ସେଠାରେ କୌଣସି ଦୋକାନ ବଜାର ମଧ୍ୟ ଦେଖିବାକୁ ମିଳିଲା ନାହିଁ। ମେରିନା, କୋବଲମ, ମେରିନ୍‌ଡ୍ରାଇଭ୍ କିମ୍ବା ପୁରୀ ସମୁଦ୍ରକୂଳର ଦୃଶ୍ୟର ଏକ ପ୍ରତିଫଳନ ହୋଇଥିବ ଭାବି ମୋ ଭଳି ଅନେକଙ୍କର

ମନକୁ ହାଲୁକା କରିବାର ଯେଉଁ କାମନା ସୃଷ୍ଟି ହୋଇଥିଲା, ସେଥିରେ ଆପେ ଆପେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ଆମର ସିନା କିଛି ବାଛବିଚାର ନଥାଏ, ଯିଏ ଯେଉଁଠି ଯାହା ଚାହେ ତାହା କରେ, ହେଲେ ବିଶ୍ୱର ସବୁ ଦେଶରେ କାହିଁ ସେପରି ଘଟିବ ? ମନେପଡ଼ିଗଲା, ଆମେ ଏକ ସମାଜବାଦୀ ରାଷ୍ଟ୍ରରେ ଅବସ୍ଥାନ କରୁଥିଲୁ, ଯେଉଁଠି 'ଅନୁଶାସନ' ହେଉଛି ସମାଜର ମୂଳ ଚାବିକାଠି । ସେଠାରେ ସବୁକଥା ମାପିଚୁପି ଚାଲେ । ସମସ୍ତେ ଶୃଙ୍ଖଳିତ ଓ ଧୀରସ୍ଥିର । ସେଠାରେ ଖୋଲା ଅର୍ଥନୀତି କିମ୍ବା ସମ୍ପତ୍ତିରେ ବ୍ୟକ୍ତିଗତ ମାଲିକାନାର ବ୍ୟବସ୍ଥା ନଥିଲା । ତେଣୁ ରାସ୍ତା ଅବରୋଧ କରି ଦୋକାନବଜାର ବସାଇ ଦି'ପଇସା ରୋଜଗାର କରିବାର ବାସନା କାହିଁକି ବା ଆସିବ ? ଏଇକଥା ଭାବୁଛି, ହଠାତ୍ ଗାଇଡ୍ ଆସି କହିଲେ, "ଆପଣମାନେ ଚାଲନ୍ତୁ, ଏଇ ହୋଟେଲରେ ଆପଣମାନଙ୍କର ବିଶ୍ରାମ କରିବାର ବ୍ୟବସ୍ଥା ହୋଇଛି ।"

ସମୁଦ୍ରକୂଳରେ ବିରାଟ ହୋଟେଲ । ହୋଟେଲ ରୁମ୍‌ରୁ ପ୍ରଶାନ୍ତ ମହାସାଗରର ଅପରୂପ ଶୋଭା ଦେଖାଯାଉଥିଲା । ଆମ ଭିତରୁ ଅଧିକାଂଶ ପଥଶ୍ରମ ଲାଘବ ଉଦ୍ଦେଶ୍ୟରେ ରୁମ୍ ଭିତରେ ପଶୁ ପଶୁ ପିଆପିଇ ପର୍ବ ଆରମ୍ଭ କରିଦେଲେ । ସତେ ଯେପରି ସେଇଥିରେ ହିଁ ସେମାନଙ୍କ ଜୀବନର ସମସ୍ତ ସୁଖ ଭରି ରହିଥିଲା । ଶାଳୀନତା ଦୃଷ୍ଟିରୁ ଆମେ କେଇଜଣ ଲଘୁପାନୀୟ ନେଲୁ ।

'ଓ୍ୱାଉ' ବାସ୍ତବରେ ଏକ ଦ୍ୱୀପ ନୁହେଁ । କୃତ୍ରିମ ଉପାୟରେ ପ୍ରଶାନ୍ତ ମହାସାଗର କୂଳରେ ଏକ ସ୍ଥାନକୁ ଦ୍ୱୀପରେ ପରିଣତ କରାଯାଇଥିଲା ବିଦେଶାଗତ ଅତିଥିମାନଙ୍କ ମନୋରଞ୍ଜନ ପାଇଁ । ସହରବଜାରଠାରୁ ଦୂରରେ ଖୋଲା ସ୍ଥାନରେ, ଖୋଲା ପବନରେ କିଛି ସମୟ କଟାଇବା ପାଇଁ ପ୍ରାୟ ସବୁ ବିଦେଶୀ ନାଗରିକ ସେଠାକୁ ଯାଉଥିଲେ । ଆମେ ସେଠାରେ ଥିବା ସମୟରେ ହଠାତ୍ କେଇଜଣ ଭାରତୀୟଙ୍କ ସହିତ ସାକ୍ଷାତ ହୋଇଥିଲା । ସେଥିରେ ମନରେ କି ଆନନ୍ଦ !

ମଧ୍ୟାହ୍ନଭୋଜନ ସରିଲାବେଳକୁ ଦିନ ପ୍ରାୟ ଦୁଇଟା । ଅଳ୍ପ ସମୟ ବିଶ୍ରାମ ପରେ ଆମ ଗାଡ଼ି ଚାଲିଲା ସେ ଦେଶର ସମବାୟ କୃଷିକ୍ଷେତ୍ର ଆଡ଼େ । ଆମ ଦେଶରେ ସମବାୟର କାର୍ଯ୍ୟକଳାପ ଦେଖି ମନରେ ଯେଉଁ ବିଷାଦ ଆସିଥିଲା, ସେଠାକାର କୃଷିକ୍ଷେତ୍ର ଓ ସମବାୟ ବ୍ୟବସ୍ଥା ଦେଖି ତା ବଦଳିଗଲା । ଏକମନ, ଏକପ୍ରାଣ ହୋଇ ସେଠାକାର ଲୋକେ ଯେଭଳି ଫସଲ ଉତ୍ପନ୍ନ କରୁଥିଲେ, ତା' ଦେଖି ମନରେ ଅପାର ଆନନ୍ଦ ସୃଷ୍ଟିହେଲା । ଡି.ପି.ଆର୍. କୋରିଆରେ ସମବାୟ ଆନ୍ଦୋଳନର ପ୍ରବକ୍ତା ହେଉଛନ୍ତି ସେ ଦେଶର ମୁକ୍ତିଦାତା କିମ୍-ଇଲ୍-ସୁଙ୍ଗ୍ । ସମବାୟ ଚାଷ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ଏବଂ ସେ ଦିଗରେ ଜନସାଧାରଣଙ୍କୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଦେଶର ରାଷ୍ଟ୍ରପତି 'ଗ୍ରେଟ୍ ଲିଡ଼ର' ଅନ୍ୟୂନ ୮୮ଥର ସେଠାକୁ ଯାଇଥିଲେ, ଲୋକଙ୍କ ସହିତ ମିଶିଥିଲେ ଏବଂ

ସେଠାରେ ରହୁଥିଲେ। ଦୀର୍ଘ ଚାଳିଶିବର୍ଷ ତଳେ ଗ୍ରେଟ୍ ଲିଡ଼ର୍ ପ୍ରଥମେ ଆସି ଯେଉଁଠାରେ ଲୋକଙ୍କୁ ଉଦ୍‌ବୋଧନ ଦେଇଥିଲେ, ପରବର୍ତ୍ତୀକାଳରେ ସେଠି ଗଢ଼ିଉଠିଥିଲା ଏକ ବିରାଟ ଷ୍ଟାଚ୍ୟୁ ଏବଂ ତାଙ୍କ ମୂଳ ବକ୍ତବ୍ୟର ଭାବାର୍ଥ ବହନ କରୁଥବା ଏକ ଶିଳାଲେଖ। ଜନଗଣଙ୍କ ମୁକ୍ତିଦାତା ଯେଉଁ ମଶିଣାରେ ବସି ଲୋକଙ୍କ ସହିତ କଥାବାର୍ତ୍ତା ହୋଇଥିଲେ, ଯେଉଁ ଖଟରେ ବିଶ୍ରାମ କରିଥିଲେ, ଯେଉଁ ଟେବୁଲ ଚୌକି ବ୍ୟବହାର କରିଥିଲେ, ସେସବୁ ବିଦେଶାଗତ ଅତିଥିମାନଙ୍କୁ ବୁଲାଇ ଦେଖାଇବାରେ ସେଠାରେ ନିଯୁକ୍ତ ଗାଇଡ୍ ପରମ ତୃପ୍ତି ଅନୁଭବ କରୁଥିଲେ।

ଡି.ପି.ଆର୍. କୋରିଆରେ 'ଆପେଲ୍' ହେଉଛି ଅନ୍ୟତମ ଅର୍ଥକରୀ ଫସଲ। ସେଠାରେ ଆପେଲ୍‌କୁ ଏକ କୃଷିଜାତ ପଦାର୍ଥଭାବେ ଗ୍ରହଣ କରାଯାଉଥିଲା। ସମବାୟ ଭିତ୍ତିରେ ହଜାର ହଜାର ଏକର ଜମିରେ ଆପେଲ୍ ବଗିଚାସବୁ କରାଯାଇଥିଲା। ସେମାନଙ୍କ ସହିତ କଥାବାର୍ତ୍ତାରୁ ବୁଝିଲୁ, ଗଛକୁ ସେମାନେ ମଣିଷଭଳି ଭଲ ପାଆନ୍ତି। ଗଛର ଡାଳଟିଏ ଭାଙ୍ଗିଗଲେ ତାକୁ ହାଣି ନଦେଇ ଡାଳଟି ପୁନର୍ବାର କିପରି ଗଛରେ ଯୋଡ଼ି ହୋଇଯିବ, ସେଦିଗରେ ସେମାନେ ଚେଷ୍ଟା କରନ୍ତି। ଆମେ ଆପେଲ୍ ବଗିଚାରେ ବୁଲିଲାବେଳେ ଅନେକ ଗଛରେ ବ୍ୟାଣ୍ଡେଜ୍ ବନ୍ଧାହୋଇଥିବାର ଦେଖିଲୁ। ତା'ଛଡ଼ା ଆପେଲ୍ ଗଛର ବିଭିନ୍ନ ଶାଖାକୁ ସମାନଭାବରେ କଟିଂ କରିବା ସଙ୍ଗେ ସଙ୍ଗେ ସୂତା ସାହାଯ୍ୟରେ ଡାଳକୁ ବାନ୍ଧି ସବୁ ଗଛର ଆକାରକୁ ସମାନ କରାଯାଇଥିବାର ଦୃଶ୍ୟ ମଧ୍ୟ ଆମ ଆଖିରେ ପଡ଼ିଥିଲା। ଏସବୁ ଦେଖି ବୃକ୍ଷରୋପଣ ସପ୍ତାହରେ କଟକ ଭୁବନେଶ୍ୱର ରାସ୍ତା ଚଉଡ଼ା କରିବା ବାହାନାରେ କିପରି ନୃଶଂସ ଭାବରେ ଶହଶହ ଗଛ କଟାଯାଇଥିଲା, ସେ ଦୃଶ୍ୟ ଆପେ ଆପେ ଆଖି ଆଗରେ ଭାସିଆସିଥିଲା।

ଗାଁର କୃଷକମାନେ ଆମକୁ ଦେଖି ଖୁବ୍ ଖୁସି ହେଲେ। ଭାଷାର ତାରତମ୍ୟ ଥିଲେ ବି ସେମାନଙ୍କ ମନର ଭାବ ବୁଝିବାକୁ ଆମ ପକ୍ଷରେ କିଛି ଅସୁବିଧା ହେଲାନାହିଁ। ବିଶେଷକରି ଆମ ସାଙ୍ଗରେ ଥିବା ଭାଷାନ୍ତରକାରୀ (ଇଣ୍ଟରପ୍ରିଟର୍) ଯେତେବେଳେ ସେମାନଙ୍କୁ ବୁଝାଇଦେଲେ ଯେ, ଭାରତଭଳି ଏକ ଗ୍ରାମବହୁଳ ଦେଶର ବିଭନ୍ନ ପ୍ରାନ୍ତରୁ ଆମେ ତାଙ୍କ ଦେଶକୁ ଯାଇଥିଲୁ, ସେମାନେ ଆନନ୍ଦରେ କୁରୁଳିଉଠିଥିଲେ। ସମବାୟ ଚାଷ ପାଇଁ ଆକୃଷ୍ଟ ହୋଇ ସେମାନେ କିପରି ଉପକୃତ ହେଲେ, ଉତ୍ପାଦିତ ଫସଲ ଉପରେ ସେମାନଙ୍କର କି ପ୍ରକାର ଅଧିକାର ରହିଲା ଇତ୍ୟାଦି ବହୁ ପ୍ରଶ୍ନର ଉତ୍ତର ସେମାନେ ପ୍ରାଞ୍ଜଳଭାବରେ ଦେଇଥିଲେ। ଉତ୍ତର ଦେଉଥିଲାବେଳେ ସେମାନେ ଯେ ଛଳନାକାରୀ ନୁହନ୍ତି, ସେମାନଙ୍କ ମୁଖମଣ୍ଡଳରୁ ସେକଥା ସ୍ପଷ୍ଟ ବାରି ହୋଇପଡୁଥିଲା।

ଆପେଲ୍ ଆମଦାନୀର ଋତୁ ଶେଷ ହୋଇଥିଲେ ବି ସେମାନଙ୍କ କୋଠ ଖମାରରେ ମହଜୁଦ୍ ଥିବା ଆପେଲ୍ ସେମାନେ ଆମକୁ ଖାଇବାକୁ ଦେଲେ।

ପ୍ରତିବଦଳରେ ଆମେ ମଧ୍ୟ କେତେକ ସମ୍ବଲପୁରୀ ରୁମାଲ, ମହୀଶୂର ଚନ୍ଦନକାଠରେ ତିଆରି ଖେଳନା ଇତ୍ୟାଦି ସେମାନଙ୍କୁ ଭେଟିଦେଲୁ। ଆମ କଥା ବୁଝିନପାରୁଥିଲେ ମଧ୍ୟ ଅତି କୃତଜ୍ଞତାର ସହିତ ସେମାନେ ସେସବୁ ପଦାର୍ଥ ଆମ ହାତରୁ ଗ୍ରହଣ କରିଥିଲେ। ଦୀର୍ଘଦିନର ବ୍ୟବଧାନ ପରେ ଗୋଟିଏ ସ୍ଥାନରେ କେବଳ ପୁରୁଷଲୋକଙ୍କୁ ଦେଖି ଆମ ମନରେ କୌତୂହଳ ସୃଷ୍ଟିହେଲା। ଗାଇଡ୍ ବୋଧେ ଆମ ମନକଥା ଠଉରାଇନେଲେ। ଆମ ସଂଶୟ ଦୂର କରିବା ପାଇଁ କହିଲେ, "ଡି.ପି.ଆର୍.କୋରିଆରେ କେବଳ ପ୍ରତିରକ୍ଷା ଓ କୃଷିକ୍ଷେତ୍ରରେ ପୁରୁଷଲୋକଙ୍କୁ ନିୟୋଜିତ କରାଯାଇଛି। ଏହାବ୍ୟତୀତ, ଅନ୍ୟାନ୍ୟ ସମସ୍ତ ସାମାଜିକ କାର୍ଯ୍ୟର ଦାୟିତ୍ୱ ମହିଳାଙ୍କ ଉପରେ ନ୍ୟସ୍ତ କରାଯାଇଛି।" ଖାଦ୍ୟ ଉତ୍ପାଦନରେ ଦେଶକୁ ସ୍ୱାବଲମ୍ବନ କରିବା ଏବଂ ଦୁଇ କୋରିଆର ମିଳନ ଉଦ୍ଦେଶ୍ୟରେ ରାଷ୍ଟ୍ରପତି ଏପରି ନିଷ୍ପତ୍ତି ଗ୍ରହଣ କରିଥିବା କଥା ସେ ଆମକୁ କହିଥିଲେ।

## କୋରିଆରେ ରେଳଯାତ୍ରା

ଡି.ପି.ଆର୍. କୋରିଆରୁ ବିଦାୟ ନେବା ପୂର୍ବରୁ ଉତ୍ତର ଓ ଦକ୍ଷିଣ କୋରିଆ ମଧ୍ୟରେ ସୃଷ୍ଟି କରାଯାଇଥିବା ଆନ୍ତର୍ଜାତିକ ସୀମାରେଖାକୁ ଦେଖିବା ପାଇଁ ଆମ ଭିତରୁ ଅନେକେ ମନ ବଳାଇଲେ। ଆନ୍ତର୍ଜାତିକ ସୀମାରେ ସାଧାରଣ ଲୋକ ବିଶେଷକରି ବିଦେଶୀ ନାଗରିକଙ୍କ ଚଳାଚଳ ଉପରେ କେତେକ କଟକଣା ଥିବାରୁ କୋରିଆର ପ୍ରତିରକ୍ଷା ଦପ୍ତର ପକ୍ଷରୁ ପ୍ରଥମେ ଆମ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦିଆଯାଇଥିଲା। କିନ୍ତୁ ଆମେ ସବୁ ବିଭିନ୍ନ ସମ୍ବାଦପତ୍ରର ପ୍ରତିନିଧିଭାବେ ପ୍ରତ୍ୟକ୍ଷଜ୍ଞାନ ଅର୍ଜନ ପାଇଁ ସେଠାକୁ ଯିବାକୁ ଚାହୁଁଛୁ ବୋଲି ଅନୁରୋଧ କରିବାରୁ ସେମାନେ ଶେଷରେ ଅନୁମତି ଦେଲେ। କିନ୍ତୁ ତା'ସହିତ କେତେକ ସର୍ତ୍ତ ମଧ୍ୟ ଆରୋପ କଲେ। ପ୍ରଥମ ସର୍ତ୍ତ ଥିଲା, ସୀମାରେଖାକୁ ଯିବା ପୂର୍ବରୁ ଆମକୁ ପ୍ରତିରକ୍ଷା ବାହିନୀର ନିର୍ଦ୍ଦେଶ ପାଳନ କରିବାକୁ ପଡ଼ିବ। ଦ୍ୱିତୀୟରେ, ଆନ୍ତର୍ଜାତିକ ସୀମାରେଖା ଭିତରେ ଥିବା ସମୟରେ ଆମେ ଯେପରି କୌଣସି ଉତ୍ତେଜନାର ବଶବର୍ତ୍ତୀ ହୋଇ କିଛି ପ୍ରତିକ୍ରିୟା ପ୍ରକାଶ ନକରୁ। ଆମେ ସେମାନଙ୍କର ସବୁ ସର୍ତ୍ତ ପୂରଣ କରିବାକୁ ପ୍ରତିଶ୍ରୁତି ଦେଲାପରେ ଆମର ସୀମାକୁ ଯିବାର ସବୁ ବନ୍ଦୋବସ୍ତ ହୋଇଗଲା। ଡି.ପି.ଆର୍ କୋରିଆର ଶେଷସୀମାରେ ଅବସ୍ଥିତ କେସୁଙ୍ଗ୍ ସହରକୁ ଯିବାକୁ ହେଲେ ରେଳରେ ଯିବାକୁ ପଡ଼େ। ମନେମନେ ଭାବିଲି ଯାହାହେଉ, ଯାତ୍ରା ଦେଖା, କଦଳୀ ବିକା ଏକାସାଙ୍ଗରେ ହୋଇଯିବ। ଯୁଦ୍ଧର ବିଭୀଷିକାରେ ଧ୍ୱସ୍ତବିଧ୍ୱସ୍ତ ସୀମାରେଖା ଦେଖିହେବ ଓ ତା'ସାଙ୍ଗରେ ବିଦେଶ ରାଷ୍ଟ୍ରରେ ରେଳଯାତ୍ରା ମଧ୍ୟ।

ପୋଙ୍ଗ୍ୟାଙ୍ଗ୍ରୁ କେସୁଙ୍ଗ୍ ସାତଘଣ୍ଟାର ରେଳଯାତ୍ରା। ରାତି ନଅଟାରେ ଟ୍ରେନ୍ ଚଢ଼ିଲେ ସକାଳ ପାଞ୍ଚଟାରେ ଓହ୍ଲାଇବାକୁ ହୁଏ। ଆମେ ସବୁ ଶୀଘ୍ର ରାତ୍ରିଭୋଜନ ଶେଷ କରି

ଷ୍ଟେସନ୍ ଅଭିମୁଖେ ଚାଲିଲୁ । ଆଗରୁ ତତ୍ତ୍ୱାବଧାରକ ଷ୍ଟେସନରେ ଆମ ପାଇଁ ସବୁ ବ୍ୟବସ୍ଥା କରିସାରିଥିଲେ । ଷ୍ଟେସନ୍‌ରେ ପହଞ୍ଚିଲାମାତ୍ରେ ଆମକୁ ଆସି ପାଛୋଟି ନେଲେ । ଷ୍ଟେସନ୍‌ରେ ପହଞ୍ଚିବାର ପ୍ରାୟ ପନ୍ଦରମିନିଟ୍ ଭିତରେ ଟ୍ରେନ୍ ଆସିଗଲା । ମାତ୍ର ଦୁଇଦିନ ପାଇଁ ଯାଉଥିବାରୁ ଆମେ ସାଙ୍ଗରେ କୌଣସି ଜିନିଷପତ୍ର ନେଇନଥିଲୁ । କେବଳ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥଭାବେ ଖଣ୍ଡେ ବ୍ୟାଗ୍ କିମ୍ବା ଆଟାଚିରେ ଯାହା ଜିନିଷ ଥିଲା । କୋଚ୍‌ର ପ୍ରତ୍ୟେକ କୁପେରେ ଚାରୋଟି ଆସନ । ସ୍ୱତନ୍ତ୍ର ବିଛଣା । ନରମ କମଳ ସାଙ୍ଗକୁ ମୁଲାୟମ ତକିଆ । ପ୍ରତି କୁପେରେ ଥଣ୍ଡା, ଗରମ ପାନୀୟର ବ୍ୟବସ୍ଥା ।

ଅଳ୍ପ ସମୟ ପରେ ଟ୍ରେନ୍ ପୋଙ୍ଗ୍‌ୟାଙ୍ଗ୍ ଷ୍ଟେସନ୍ ଛାଡ଼ିଲା । ଆମ କୁପେରେ ଯେଉଁ ଚାରିଜଣ ଥିଲେ ସେମାନଙ୍କ ଭିତରୁ କେହି ମଦ୍ୟପାନ କିମ୍ବା ଆମିଷ ଭକ୍ଷଣ କରୁନଥିଲେ । ରାତ୍ରିଭୋଜନ ହୋଟେଲରେ ଶେଷ ହୋଇଥିବା ଦୃଷ୍ଟିରୁ କେବଳ ଶୋଇବା କଥା । ତେବେ କାଳେ କେହି ଟିକେଟ ନିରୀକ୍ଷକ ଆସି ଉଠାଇବେ ସେଥିପାଇଁ ସେ କାମ ଶେଷ ହେଲେ ଶୋଇବୁ, ଏଇକଥା ଭାବି ଆମ ଭିତରେ ଆଲୋଚନା ଚାଲିଛି; ହଠାତ୍ କୁପେ ଦ୍ୱାରରେ ମୃଦୁ ଆଘାତ ଶୁଣାଗଲା । ଆମଭିତରୁ କେହି କେହି ଭାବିଲେ, ବୋଧହୁଏ ଟି.ଟି.ଆଇ. ଆସିଲେ ଟିକେଟ୍ ଯାଞ୍ଚ୍ କରିବାକୁ । ଯାହାହେଉ କାମ ସରିଗଲେ ଶୀଘ୍ର ଶୋଇ ହେବ ଭାବି ମୁଁ କବାଟ ଖୋଲିଲି । କିନ୍ତୁ ଇଏ କ'ଣ ଦେଖୁଛି ? ଟି.ଟି.ଆଇ.ଙ୍କ ସ୍ଥାନରେ ଛିଡ଼ାହୋଇଛନ୍ତି ଜଣେ ସୁନ୍ଦରୀ ତରୁଣୀ । ତାଙ୍କୁ ଦେଖି ମନେହେଲା ସତେ ଯେପରି କଣ୍ଢେଇଟିଏ । ମନରେ ଅନେକ ଭାବନାର ଉଦ୍ରେକ ହେଲା । ଏତେ ରାତିରେ ଟ୍ରେନ୍ କମ୍ପାର୍ଟମେଣ୍ଟ୍ ଭିତରେ ଜଣେ ଯୁବତୀ ! ସେ ପୁଣି ଏକା, ବୟସ ଅଠର ଉଣେଇଶି ଭିତରେ ହେବ । କି ଉଦ୍ଦେଶ୍ୟରେ ଆସିଥାଇ ପାରନ୍ତି ? କିନ୍ତୁ ମୋ ଭାବନାର ଖିଅ ଛିଣ୍ଡାଇଦେଇ ସେ କହିଲେ, "କ୍ଷମା କରିବେ, ମୁଁ ଆପଣଙ୍କ ଆରାମରେ ବାଧା ଦେଲି । କାଳେ ଆପଣମାନଙ୍କର କିଛି ଦରକାର ଥାଇପାରେ ସେଇକଥା ବୁଝିବା ପାଇଁ ମୁଁ ଆସିଥିଲି । ଆପଣମାନଙ୍କର ଆରାମ ପାଇଁ ଯାହା ଦରକାର ଆପଣମାନେ ନିଃସଙ୍କୋଚରେ କହିପାରନ୍ତି । ମୁଁ ଆପଣଙ୍କ ସେବା ପାଇଁ ସାଙ୍ଗରେ କେସୁଙ୍ଗ ଯାଉଛି ।" ଏତିକି କହି ଯୁବତୀଜଣକ ମଥା ଅବନତ କରି ସ୍ମିତହାସ୍ୟରେ ଅନାଇ ରହିଲେ । ତାଙ୍କର ଉଦ୍ଦେଶ୍ୟ, ମୁଁ ତାଙ୍କୁ କିଛି ବରାଦ କରିବି । ମୁଁ ପ୍ରଥମେ କିଛି ବୁଝି ପାରିଲି ନାହିଁ । ରାତି ଦଶଟାବେଳେ ଏକାକୀ ଜଣେ ଯୁବତୀ ବିଦେଶାଗତ ଅଚିହ୍ନା ଅତିଥିମାନଙ୍କର ଆବଶ୍ୟକତା ବିଷୟ ବୁଝୁଛନ୍ତି ? କେବଳ ଆମ କୁପେ ନୁହେଁ, କୋଚ୍‌ର ଛଅଟି ଯାକ କୁପେର ଦ୍ୱାର ଖୋଲି ସେ ସମସ୍ତଙ୍କର ଭଲମନ୍ଦ ବୁଝିଥିଲେ ଏବଂ ବରାଦ ଅନୁଯାୟୀ ବିଅର, ହ୍ୱିସ୍କିଠାରୁ ଆରମ୍ଭ କରି ଆପେଲ୍, ସାଣ୍ଡୱିଚ୍ ପର୍ଯ୍ୟନ୍ତ ପରିବେଷଣ କରିଥିଲେ । ମଝିରେ ମଝିରେ କଫି ବିସ୍କୁଟ୍ ମଧ୍ୟ ଦେଉଥିଲେ । ଚବିଶି ଜଣ ଯାତ୍ରୀଙ୍କର ଅଡ଼ଚାଳିଶି ରକମର ଫର୍ମାଇସ ପୂରଣ କରିବାକୁ କେବଳ ଜଣେ

ମହିଳା; କିନ୍ତୁ ତାଙ୍କର କ୍ଳାନ୍ତି ବା ଅବସାଦ ନଥିଲା। ତାଙ୍କ ମନରେ କୌଣସି ଆବିଳତା କିମ୍ୱା ସଙ୍କୋଚର ଆଭାସ ମଧ୍ୟ ଦେଖିବାକୁ ମିଳୁନଥିଲା। ତାଙ୍କୁ ତାଗିଦ୍ କରିବାକୁ କିମ୍ୱା କୌଣସି କଥା ଦି' ଥର କହିବାକୁ ମଧ୍ୟ ଦରକାର ପଡୁନଥିଲା। ସବୁ ଯେପରି ଏକ ଅଦୃଶ୍ୟ ଶକ୍ତିଦ୍ୱାରା ପରିଚାଳିତ ହେଉଥିଲା।

ରାତିରେ କେତେବେଳେ ନିଦ ହୋଇଛି ଜାଣି ହୋଇନି। ହଠାତ୍ କବାଟରେ ସେଇ ମୃଦୁଆଘାତ। ଏଥର କବାଟ ଖୋଲିବାର ପାଳି ପଡ଼ିଲା ଆମ କୁପେର ଅନ୍ୟତମ ସହଯାତ୍ରୀ ଘନଶ୍ୟାମ ଭାଇ ଭାଓସାରଙ୍କର। ତାଙ୍କର ବୟସ ମୋଠାରୁ ଟିକେ ଅଧିକ, ଗୁଜୁରାଟର ଅଧିବାସୀ। ତାଙ୍କର କଲେଜରେ ପଢୁଥିବା ଦୁଇଟି ଝିଅ ଥିଲେ। ତାଙ୍କ ସ୍ତ୍ରୀ ଜଣେ ଶିକ୍ଷୟିତ୍ରୀ। ଗୁଜରାଟ, ଜାତିର ଜନକଙ୍କର ଜନ୍ମଭୂମି ହୋଇଥିଲେ ମଧ୍ୟ ଆଧୁନିକ ସଭ୍ୟତାର ଗଡ୍‌ଡାଳିକାରେ ସେଠାକାର ଚଳଣି ମଧ୍ୟ ବଦଳିଯାଇଥିଲା। ଘନଶ୍ୟାମ ଭାଇ କୁପେର କବାଟ ଖୋଲି ସାମନାରେ ଜଣେ ଯୁବତୀଙ୍କୁ ଦେଖି ପ୍ରଥମେ କିଛି ବୁଝିପାରିଲେ ନାହିଁ; କାରଣ ପୂର୍ବ ରାତିରେ ଶୋଇବା ପୂର୍ବରୁ କୋଚ୍ ଭିତରେ ସେ ଯୁବତୀଙ୍କୁ ଦେଖିନଥିଲେ। ହେଲେ ଘନଶ୍ୟାମ ଭାଇ କିଛି କହିବା ପୂର୍ବରୁ ଯୁବତୀଜଣକ ତାଙ୍କ ସଂଶୟ ଦୂର କରି କହିଲେ, "କ୍ଷମା କରିବେ, ଆଉ ଅଳ୍ପ ସମୟ ପରେ ଆମ ଟ୍ରେନ୍ କେସୁଙ୍ଗ୍ ସହରରେ ପ୍ରବେଶ କରିବ। ଆପଣମାନଙ୍କର ସୁଖନିଦ୍ରା ଭଙ୍ଗ କରିଥିବାରୁ ମୁଁ ଦୁଃଖିତ। ଆପଣମାନେ ପ୍ରସ୍ତୁତ ହୋଇଯିବା ପାଇଁ ମୁଁ ଅନୁରୋଧ କରୁଛି।"—ଏତିକି କହି ଯୁବତୀଜଣକ ସ୍ମିତହାସ୍ୟ କରି ଅନ୍ୟ କୁପେକୁ ଚାଲିଗଲେ।

ଟ୍ରେନ୍ ଆସି ଷ୍ଟେସନ୍‌ରେ ପହଞ୍ଚିବା ପୂର୍ବରୁ ଆମକୁ ସ୍ୱାଗତ ଜଣାଇବା ପାଇଁ ଡି.ପି.ଆର୍. କୋରିଆର ବୈଦେଶିକ ବ୍ୟାପାର ଓ ପ୍ରତିରକ୍ଷା ବାହୀନୀର ଅଫିସର୍‌ମାନେ ଉପସ୍ଥିତ ଥିଲେ। ମୁଁ ଘଣ୍ଟା ଦେଖିଲା ବେଳକୁ ପାଞ୍ଚଟା ବାଜି ପାଞ୍ଚ ମିନିଟ୍ ହୋଇଥିଲା। କି ସମୟାନୁବର୍ତ୍ତିତା! ଛୋଟିଆ ଦେଶଟିଏ; ଆୟତନରେ ଓଡ଼ିଶାଭଳି ହେବ। ଲୋକସଂଖ୍ୟା ମଧ୍ୟ ଅଢ଼େଇ କୋଟିରୁ ଅଧିକ ନୁହେଁ; କିନ୍ତୁ ସେମାନେ କିପରି ଏତେ ଉନ୍ନତ ହେଲେ! ସେମାନଙ୍କ ମନରେ କିପରି ଏତେ ଦେଶାତ୍ମବୋଧତା ଜାଗ୍ରତ ହେଲା! ଏତେ ସମୟାନୁବର୍ତ୍ତିତା କିଭଳି ସୃଷ୍ଟି ହେଲା! କାହିଁ ଆମ ଦେଶରେ ତ ସେସବୁ ସମ୍ଭବ ହେଉନାହିଁ? କୌଣସି ସ୍ଥାନକୁ ଯିବା ପାଇଁ ଟ୍ରେନ୍‌ରେ ବସିଲେ ନିର୍ଦ୍ଦିଷ୍ଟ ସମୟରେ ଗନ୍ତବ୍ୟସ୍ଥଳରେ ପହଞ୍ଚିହେବ କି ନାହିଁ କେହି ସେ ସମ୍ପର୍କରେ ପ୍ରତିଶ୍ରୁତି ଦେଇପାରନ୍ତି ନାହିଁ। କୋଚ୍‌ରୁ ଓହ୍ଲାଇଲାବେଳେ ସେଇ ଯୁବତୀଜଣକ ମଥାନତ କରି ସ୍ମିତହାସ୍ୟରେ ଆମକୁ ବିଦାୟ ଦେଲେ। ତାଙ୍କ ସେବାରେ କୌଣସି ତ୍ରୁଟି ଥିଲେ ସେଥିପାଇଁ କ୍ଷମା ମଧ୍ୟ ମାଗିନେଲେ। କ୍ଷଣକ ପାଇଁ ହେଲେ ବି ତାଙ୍କର ସେଇ ଅମାୟିକ ଆତ୍ମୀୟତା ଆମ ମନରେ ଗଭୀର ରେଖାପାତ କରିଥିଲା।

ଷ୍ଟେସନରୁ ହୋଟେଲ ପ୍ରାୟ ପନ୍ଦର ମିନିଟ୍‌ର ରାସ୍ତା । ଏକ ଚାରିମହଲା ହୋଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ହୋଟେଲ ରୁମ୍‌ରେ ସେଇ ଏକାଭଳି ବ୍ୟବସ୍ଥା । ବେଡ୍‌ରୁମ୍‌ଠାରୁ ଟଏଲେଟ୍ ପର୍ଯ୍ୟନ୍ତ ସର୍ବତ୍ର ୱାଲ୍ ଟୁ ୱାଲ୍ କାର୍ପେଟ୍ । ଟଏଲେଟ୍‌ରେ ବାଦିଂ ଟବ୍ ସାଙ୍ଗକୁ ଫ୍ଲେକ୍ସିବୁଲ୍ ସାୱାର । ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଛଅ ଛଅଟି ଟାୱେଲ୍ ଏବଂ ଟଏଲେଟ୍ ଭିତରକୁ ଯିବା ପାଇଁ ସ୍ୱତନ୍ତ୍ର ସ୍ଲିପର୍ । କମ୍ୟୁନିଷ୍ଟ୍ ରାଷ୍ଟ୍ର ହେଲେ ·ବି ଅତିଥିଙ୍କ ଚର୍ଚ୍ଚାରେ କୌଣସି ଅବହେଳା ନଥିଲା । ସମସ୍ତ ପ୍ରକାର ଆରାମ ବ୍ୟବସ୍ଥା ସତ୍ତ୍ୱେ ଗତ ରାତିରେ ଟ୍ରେନ୍‌ରେ ଭଲ ନିଦ ହୋଇନଥିଲା । ସକାଳୁ କେମିତି ନିଦୁଆ ନିଦୁଆ ଲାଗୁଥିଲା । ମନ ହେଉଥିଲା ଘଣ୍ଟାଏ ଦି'ଘଣ୍ଟା ଶୋଇପଡ଼ିବାକୁ; କିନ୍ତୁ ଅନ୍ୟ ରୁମ୍‌ରୁ ହୁକୁମ୍ ଆସିଲା, "ୱେକ୍ଅପ୍ କମ୍ ହୈ । ହମ୍‌ଲୋଗ୍ ଜଲ୍‌ଦି ତୟାର୍ ହୋନା ଚାହିୟେ । ଜିନ୍ଦଗି ମେ ଐସା ମୌକା ବାର ବାର ନହିଁ ଆତା ହୈ ।"

ମୁଁ ଭାବନା ଭିତରେ ବୁଡ଼ି ରହିଥିଲା ବେଳେ ଘନଶ୍ୟାମ ଭାଇ କେତେବେଳେ ଯାଇ ନିତ୍ୟକର୍ମ ସାରିଦେଇଥିଲେ ମୁଁ ଜାଣିପାରି ନଥିଲି । ତାଙ୍କ କଥାରେ ମୁଁ ସଚେତନ ହୋଇଗଲି । ସେ ମୋତେ ହଲାଇଦେଇ କହିଲେ, "କ୍ୟା ଦାସ୍ ସାହବ୍, ଓ୍ୱ ଲଡ଼୍‌କୀ ୟାଦ ଆତି ହୈ କ୍ୟା ?" ମୁଁ ମନେମନେ ଟିକେ ଲଜ୍ଜିତ ହୋଇ ତାଙ୍କୁ କୌଣସି ଉତ୍ତର ନଦେଇ ସିଧାସଳଖ ବାଥ୍‌ରୁମ୍‌କୁ ଚାଲିଗଲି ।

## ଆନ୍ତର୍ଜାତିକ ସୀମାରେଖାରେ ରୋମାଞ୍ଚକର ଅନୁଭୂତି

ଚାରିମହଲାସ୍ଥ ଆମ କୋଠରିରୁ ଦି'ମହଲାରେ ଥିବା ଡାଇନିଂ ହଲ୍‌କୁ ଜଳଖିଆ ଖାଇବାକୁ ଆସିଲାବେଳକୁ ଅନ୍ୟ ବନ୍ଧୁମାନେ ଆସି ସାରିଥିଲେ । ଜଳଖିଆ ଖାଇବାରେ ବେଶି କାହାର ମନ ନଥିଲା । କେମିତି ସୀମାରେଖାକୁ ଯିବେ, ଯୁଦ୍ଧ ବିଭୀଷିକାର ପରବର୍ତ୍ତୀ ଦୃଶ୍ୟ ନିଜ ଆଖିରେ ଦେଖିବେ; ଏଇ ଚିନ୍ତାରେ ସମସ୍ତେ ବ୍ୟସ୍ତ ଥିଲେ । ଜଳଖିଆ ପର୍ବ ଶେଷ ପୂର୍ବରୁ ଦୁଇଟି ସାମରିକ ଗାଡ଼ି ଆସି ଆମ ହୋଟେଲ ସାମନାରେ ଛିଡ଼ା ହୋଇ ଯାଇଥିଲା । ଆମେ ବିନା ବାକ୍ୟ ବିନିମୟରେ ଗାଡ଼ିରେ ବସିଲୁ । ଆମ ଗାଇଡ୍ ଆମକୁ ବୁଝାଇଦେଲେ ଯେ, ଏଣିକି ଆମକୁ ସାମରିକ ବାହିନୀର ଶୃଙ୍ଖଳା ଭିତରେ ଚଳିବାକୁ ହେବ । ସୀମାରେଖା ଭିତରକୁ କୌଣସି ବେସାମରିକ ଗାଡ଼ି ପ୍ରବେଶ କରିବାର ଅଧିକାର ନଥିବା ଦୃଷ୍ଟିରୁ ଆମକୁ ସାମରିକ ଗାଡ଼ିରେ ଯିବାକୁ ପଡୁଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ ।

ଅଳ୍ପ ସମୟ ପରେ ଆମକୁ ନେଇ ଯାଉଥିବା ସାମରିକ ଗାଡ଼ି ଦୁଇଟି ଗୋଟିଏ ସେନାଛାଉଣୀ ନିକଟରେ ଅଟକିଲା । ସେଠାରୁ ଅନୁମତିପତ୍ର ଏବଂ ବ୍ୟକ୍ତିଗତ ପାସ୍ ନେଇ ଆଗକୁ ଯିବାକଥା । ସାମରିକ ବାହିନୀରେ ଶୃଙ୍ଖଳା ମୂଳକଥା । ଯେ କେହି ବ୍ୟକ୍ତି ଯେତେ

ଉଚ୍ଚ ପଦାଧିକାରୀ ହୁଅନ୍ତୁ ନା କାହିଁକି, ସମସ୍ତଙ୍କୁ ସେଇ ଶୃଙ୍ଖଳା ଭିତର ଦେଇ ଯିବାକୁ ହୁଏ। ଆମ ଗାଇଡ୍ ଯାଇ ସେଠାକାର ସେନାଛାଉଣୀ ଦାୟିତ୍ୱରେ ଥିବା ବ୍ରିଗେଡ଼ିଅର୍ ଜୁଙ୍ଗ୍‌ଙ୍କ ସହିତ କଥାବାର୍ତ୍ତା କରିବା ପରେ ଆମକୁ ଭିତରକୁ ଯିବାକୁ ଅନୁମତି ମିଳିଲା। ବ୍ରିଗେଡ଼ିଅର ଜୁଙ୍ଗ୍‌ଙ୍କର ଦୀର୍ଘଦିନର ଯୁଦ୍ଧ ଅଭିଜ୍ଞତା ଥିଲା। କିପରି ମର୍ମନ୍ତୁଦ ଅବସ୍ଥାରେ କୋରିଆ ଭାଗଭାଗ ହେଲା, ଆମେରିକୀୟ ସାମ୍ରାଜ୍ୟବାଦୀମାନେ କିପରି କୋରିଆବାସୀଙ୍କ ହୃଦୟରେ ଏକ କୃତ୍ରିମ ସୀମାରେଖା ଟାଣିଦେଲେ, ସେକଥା ବର୍ଣ୍ଣନା କଲାବେଳେ ବ୍ରିଗେଡ଼ିଅର୍‌ଙ୍କ ମୁଖମଣ୍ଡଳ ଗମ୍ଭୀର ଦେଖାଯାଉଥିଲା। ଦେଶ ବିଭାଜନ ପରଠାରୁ ଯେଉଁସବୁ ଘଟଣା ଘଟିଯାଇଥିଲା ତା'ର ବର୍ଣ୍ଣନା ଯେତିକି ରୋମାଞ୍ଚକର ସେତିକି ହୃଦୟସ୍ପର୍ଶୀ ଥିଲା।

ଆମକୁ ଗୋଟିଏ ହଲ୍ ଭିତରକୁ ଯିବାକୁ ଅନୁରୋଧ କରି ବ୍ରିଗେଡିଅର ଜୁଙ୍ଗ୍ କେତେକ ନକ୍ସା ଆଣିବା ପାଇଁ ଅନ୍ୟ ଏକ କୋଠରିକୁ ଚାଲିଗଲେ। ନକ୍ସାରେ ଅବିଭକ୍ତ କୋରିଆର ଭୌଗୋଳିକ ସ୍ଥିତି, ଦକ୍ଷିଣ ଓ ଉତ୍ତରକୋରିଆ (ଡି.ପି.ଆର. କୋରିଆ) ମଧ୍ୟରେ ଟଣାଯାଇଥିବା କୃତ୍ରିମ ସୀମାରେଖା ଇତ୍ୟାଦି ପରିଷ୍କାର ଭାବେ ଦର୍ଶାଯାଇଥିଲା। ଗୋଟିଏ ଗାଁ ଭିତର ଦେଇ ସୀମାରେଖା ଯାଇ ଅଧେ ଗ୍ରାମବାସୀଙ୍କୁ ଦକ୍ଷିଣକୋରିଆ ଓ ଆଉ ଅଧେଙ୍କୁ ଡି.ପି.ଆର. କୋରିଆବାସୀଭାବେ ଦୁନିଆରେ ପରିଚିତ କରାଇଥିଲା। ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ଭାଗ ଭାଗ ହୋଇ ଘଟଣାକ୍ରମେ ଦୁଇଦେଶର ନାଗରିକ ହୋଇଯାଇଥିଲେ। କେହି କାହା ସହିତ ଦେଖାସାକ୍ଷାତ ହେବାର ସମ୍ଭାବନା ନଥିଲା। ଗୋଟିଏ ଭାଷା, ଗୋଟିଏ ସଂସ୍କୃତି, ରାଜନୈତିକ କାରଣରୁ ଅଲଗା ହୋଇଯାଇଥିଲା। ଏହାଠାରୁ ବଳି ଅଧିକ ବିଡ଼ମ୍ବନା ଆଉ କ'ଣ ଥାଇପାରେ? ନକ୍ସା ଦେଖାଇବା ପରେ ସେ ଆମକୁ ଅତି ନମ୍ରଭାବେ ବୁଝାଇଦେଲେ ଯେ, ଏକ ଆନ୍ତର୍ଜାତିକ ସୀମାରେଖାକୁ ଯାଉଥିବା ବିଷୟ ଆମେ ଯେପରି ଭୁଲିନଯାଉ; କାରଣ ସୀମାନ୍ତରେ ସାମାନ୍ୟ ଭୁଲ୍ ଯୋଗୁଁ ବା ଖାମଖିଆଲି ବ୍ୟବହାର ଯୋଗୁଁ ପ୍ରାଣ ଚାଲିଯିବାର ଆଶଙ୍କା ଥାଏ। ବ୍ରିଗେଡ଼ିଅର ଜୁଙ୍ଗ୍ ସେଠାରେ ଆମକୁ ଚା'ପାନରେ ଆପ୍ୟାୟିତ କରିଥିଲେ।

ମନରେ ଆଗ୍ରହ ଓ ଉତ୍କଣ୍ଠା ବେଳୁବେଳ ଅଧିକ ବଢୁଥିଲା। ଯୁଦ୍ଧର ବିଭୀଷିକା ସମ୍ପର୍କରେ ବହୁ ପୁସ୍ତକ ଓ ସମ୍ବାଦପତ୍ରରେ ପଢ଼ିଥିଲେ ହେଁ ପ୍ରକୃତରେ ଯୁଦ୍ଧୋତ୍ତର ପରିସ୍ଥିତି ସମ୍ପର୍କରେ ଆମର କିଛି ପ୍ରତ୍ୟକ୍ଷ ଜ୍ଞାନ ନଥିଲା। ତେଣୁ ଆନ୍ତର୍ଜାତିକ ସୀମାରେଖାର ଭୌଗୋଳିକ ସ୍ଥିତି କିପରି ହୋଇଥିବ, ସେଠାରେ ଜନବସତି ଥିବ କି ନଥିବ, ସ୍ୱାଭାବିକ ଜୀବନଯାତ୍ରା କିପରି ଥିବ, ସେ ବିଷୟରେ ମନ ଭିତରେ ନାନା ପ୍ରକାର କାଳ୍ପନିକ ଚିତ୍ରମାନ ଭାସିଆସୁଥିଲା।

ଯଥା ସମୟରେ ଚା'ପର୍ବ ସରିଲା। ବ୍ରିଗେଡିଅର୍ ଜୁଙ୍ଗ୍‌ଙ୍କ ନେତୃତ୍ୱରେ ପ୍ରାୟ ଦଶଜଣ ସାମରିକ ଅଫିସର ଆମ ସହିତ ସୀମାରେଖା ଆଡ଼େ ଚାଲିଲେ। ଆମେ ଆଗରୁ ଦୁଇଟି

ଗାଡ଼ିରେ ଆସିଥିଲୁ, ଆଉ ତିନୋଟି ଗାଡ଼ିରେ ସାମରିକ ଅଫିସରମାନେ ବସିଲେ। ସାମନାରେ ଗୋଟିଏ ଜିପ୍‌ରେ ଧଳା ପତାକାଟିଏ ଉଡ଼ାଇଦିଆଗଲା। ସେହିପରି ପଛ ଜିପ୍‌ରେ ମଧ୍ୟ ଅନ୍ୟଏକ ସାମରିକ ପତାକା ଉଡ଼ିଲା। ଏସବୁ ନୂଆ ନୂଆ ଲାଗୁଥିଲା। ମନରେ ଏକ ଅଜଣା ଭୟ ମଧ୍ୟ ସଞ୍ଚାର ହୋଇଯାଇଥିଲା। ଯେତେବେଳେ ଯୁଦ୍ଧରେ ଶତାଧିକ ଲୋକ ମରୁଥିଲେ, ସେଥିରେ ଆମକୁ ପଚାରେ କିଏ ?

କିଛି ବାଟ ଯିବାପରେ ସାମନାରେ ଗୋଟିଏ କେନାଲ ପଡ଼ିଲା। କେନାଲଟିର ଚଉଡ଼ା ପଚିଶିଫୁଟ ଏବଂ ଗଭୀରତା ପ୍ରାୟ ଦଶଫୁଟ ଥିଲା। ଆମର ଗାଡ଼ିସବୁ ସେଠାରେ ଅଟକିଲା। ବ୍ରିଗେଡ଼ିଅର ଜୁଙ୍ଗ୍ ତଳକୁ ଓହ୍ଲାଇବା ପାଇଁ ଆମକୁ ଅନୁରୋଧ କଲେ। କେନାଲର ଅବସ୍ଥା ଦେଖି ଆମେ ଭାବିଲୁ ବୋଧହୁଏ ଆଉ ଆଗକୁ ଯାଇହେବନାହିଁ। କିନ୍ତୁ ଅଳ୍ପ ସମୟ ପରେ ଆମର ସେ ଭାବନା ଅମୂଳକ ବୋଲି ପ୍ରମାଣିତ ହେଲା। ବ୍ରିଗେଡ଼ିଅର୍ ଆମକୁ ବୁଝାଇ କହିଲେ, "ଏଇ ସ୍ଥାନରୁ 'ନୋ ମ୍ୟାନ୍‌ସ ଲ୍ୟାଣ୍ଡ୍' ଆରମ୍ଭ ହେବ। ଏହି ନୋ ମ୍ୟାନ୍‌ସ ଲ୍ୟାଣ୍ଡ୍‌ରେ କାହାରି କର୍ତ୍ତୃତ୍ୱ ଜାହିର ନଥାଏ ଏବଂ ସେ ସ୍ଥାନକୁ ନିରପେକ୍ଷ ଦେଶର ସାମରିକ ବାହିନୀ ଜଗି ରହିଥାନ୍ତି। ପ୍ରକୃତ ସୀମାରେଖାଠାରୁ ଉଭୟପଟର ଦୁଇ କିଲୋମିଟର ବ୍ୟାପୀ ଅଞ୍ଚଳକୁ ସାଧାରଣତଃ 'ଶାନ୍ତି ଅଞ୍ଚଳ' ବୋଲି ବିଚାର କରାଯାଇଥାଏ। କିନ୍ତୁ କେତେକ କ୍ଷେତ୍ରରେ ସାମାନ୍ୟ ବୁଝାମଣାର ଅଭାବ ହେଲେ ଏହି ଅଞ୍ଚଳ ମଧ୍ୟରେ ଗୁଳିଚାଳନା ହୋଇ ଧନଜୀବନର ହାନି ମଧ୍ୟ ଘଟିଥାଏ।" କେନାଲକୁ ଦେଖାଇ ବ୍ରିଗେଡ଼ିଅର କହିଲେ, "ଶତ୍ରୁପକ୍ଷର ଅଚାନକ ଆକ୍ରମଣକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ କେନାଲର ପୋଲକୁ ଉଠାଇଦିଆଯାଏ। ନିଜପକ୍ଷର ସାମରିକ ବାହିନୀର ଯାତାୟାତ ଆବଶ୍ୟକ ପଡ଼ିଲେ ପୁନର୍ବାର ପୋଲକୁ ଯୋଡ଼ି ଦିଆଯାଏ।" ସତକୁ ସତ ବ୍ରିଗେଡ଼ିଅରଙ୍କଠାରୁ ଇସାରା ପାଇ ସାମରିକ ବାହିନୀ ଯବାନମାନେ ପନ୍ଦରମିନିଟ୍ ସମୟ ମଧ୍ୟରେ ପୋଲଟି ତିଆରି କରିଦେଲେ। ଆମ ଗାଡ଼ିଗୁଡ଼ିକ କେନାଲ ପାରି ହୋଇ ଯିବା ପରେ ପୋଲଟିକୁ ପୁଣି ଉଠାଇ ନିଆଗଲା।

ସୀମାରେଖା ଯେତିକି ପାଖ ହେଉଥିଲା, ମନରେ ଉତ୍ତେଜନା ସେତିକି ବୃଦ୍ଧି ପାଉଥିଲା। କାଳେ କ'ଣ ଅଘଟଣ ଘଟିବ, ସେଥିପାଇଁ ମନରେ ଅହେତୁକ ଶଙ୍କା ମଧ୍ୟ ଜାତ ହେଉଥିଲା। କ୍ରମେ ଆମ ଗାଡ଼ିଗୁଡ଼ିକ ସୀମାରେଖା ନିକଟରେ ପହଞ୍ଚିଲା। ବ୍ରିଗେଡିଅରଙ୍କ ନିର୍ଦ୍ଦେଶମତେ ଆମେ ଗାଡ଼ିରୁ ଓହ୍ଲାଇ ତାଙ୍କ ପଛେ ପଛେ ଚାଲିଲୁ। କିଛିବାଟ ଯାଇଛୁ, ହଠାତ୍ ଏକ ଅଜଣା ଶବ୍ଦ ଆମ କାନରେ ବାଜିଲା। ସେ ଶବ୍ଦ କ'ଣ ବୋଲି ଆମେ ପଚାରିବାକୁ ଯାଉଛୁ ଜୁଙ୍ଗ୍ ଆମକୁ କହିଲେ, "ସୀମା ଆରପଟେ ଥିବା ସେନାବାହିନୀ ଆମର ଉପସ୍ଥିତି ସମ୍ପର୍କରେ ସଚେତନ ହୋଇ ସଜାଗ ରହିବାକୁ ନିର୍ଦ୍ଦେଶ ପାଇଲେଣି। ଏହା ପ୍ରାୟ ଏକ ନିତିଦିନିଆ ଘଟଣା। ସୀମା ଆରପଟେ ମହଜୁଦ୍ ଥିବା ସାମ୍ରାଜ୍ୟବାଦୀ

ସୈନ୍ୟମାନେ ବିନା କାରଣରେ ଉତ୍ତେଜନା ସୃଷ୍ଟି କରିବା ଏକପ୍ରକାର ଅଭ୍ୟାସରେ ପରିଣତ ହୋଇଗଲାଣି । ବର୍ଷକୁ ପ୍ରାୟ ଦଶହଜାର ଥର ଏପରି ଘଟଣା ଘଟୁଛି । ସାମ୍ରାଜ୍ୟବାଦୀମାନଙ୍କ ଗୁଳିଚାଳନାରେ ଅନେକ ମୃତାହତ ମଧ୍ୟ ହେଉଛନ୍ତି ।"

ବ୍ରିଗେଡିଅର ଆଗରେ ଏବଂ ତାଙ୍କ ପଛରେ ଆମେସବୁ ଚାଲୁଥିଲୁ । ପରେ ଆମେ ଯାଇ ଗୋଟିଏ କୋଠାଘରେ ପହଞ୍ଚିଲୁ । ଏ କୋଠାଟି 'ଅବ୍‌ଜରଭେସନ୍ ଟାୱାର' ବୋଲି ଜାଣିଲୁ । ସୀମା ଆରପଟେ କ'ଣ ସବୁ ଘଟୁଛି, ଶତ୍ରୁପକ୍ଷ ସେନା କ'ଣ କରୁଛନ୍ତି ତାକୁ ଲକ୍ଷ୍ୟ କରିବାପାଇଁ ଏହି ଟାୱାର ନିର୍ମିତ ହୋଇଥିଲା । ସେଠାରେ ଦିନରାତି ପହରାର ବ୍ୟବସ୍ଥା ଥିଲା । ଟାୱାରର ସର୍ବୋଚ୍ଚ ସ୍ଥାନରେ ଏକ ଶକ୍ତିଶାଳୀ ବାଇନାକୁଲର୍ ଖଞ୍ଜା ଯାଇଥିଲା । ବାଇନାକୁଲର୍‌ଟି ଏତେ ଶକ୍ତିଶାଳୀ ଯେ ପ୍ରାୟ ଅଧ କିଲୋମିଟର୍ ଦୂରରେ ପିନ୍‌କଣ୍ଟାଟିଏ ପଡ଼ିଥିଲେ ମଧ୍ୟ ସ୍ପଷ୍ଟ ଦେଖାଯାଉଥିଲା । ଅବ୍‌ଜରଭେସନ୍ ଟାୱାରରେ ଅବସ୍ଥାପିତ ଯବାନମାନଙ୍କୁ ଦେଖିଲେ କର୍ତ୍ତବ୍ୟପରାୟଣତା କ'ଣ ତା'ର ସୂଚନା ମିଳୁଥିଲା । ସେମାନଙ୍କୁ ଦେଖିଲେ ମନେହେଲା ସତେଯେପରି କେବଳ କର୍ତ୍ତବ୍ୟପାଳନ ବ୍ୟତୀତ ଅନ୍ୟକିଛି ସେମାନେ ଜାଣିନଥିଲେ ।

ଡି.ପି.ଆର୍. କୋରିଆ ପଟରେ ସ୍ୱିଜରଲାଣ୍ଡ୍ ସେନାବାହିନୀ ଜଗି ରହିଥିଲାବେଳେ ସୀମା ଆରପଟେ ଦକ୍ଷିଣକୋରିଆରେ ଆମେରିକା ଓ ଅନ୍ୟ ଦେଶର ସୈନ୍ୟମାନେ ଜଗିଥିଲେ । ଦିନରାତି ପହରା, ସେମାନଙ୍କ ଆଖିରୁ ସହଜରେ କିଛି ଖସିବାର ସୁଯୋଗ ନଥିଲା । ଆମ ଉପସ୍ଥିତି ସମ୍ପର୍କରେ ସଚେତନ ଥିବା ଅପର ପକ୍ଷର ଯବାନମାନେ କାଳେ ସେମାନଙ୍କ ପ୍ରତି କିଛି ବିପଦ ପଡ଼ିବ ଭାବି ପ୍ରସ୍ତୁତ ହୋଇଗଲେ । ଆମେ ସୀମା ଏପଟୁ ବାଇନାକୁଲାରରେ ଦେଖିଥିଲାବେଳେ ସେମାନେ ମଧ୍ୟ ଆମ ଗତିବିଧି ଲକ୍ଷ୍ୟ କରୁଥିଲେ । ଅବ୍‌ଜରଭେସନ୍ ଟାୱାର ଭିତରେ ଅସ୍ୱାଭାବିକ ଭାବରେ ଏକକାଳୀନ ଏତେ ସଂଖ୍ୟକ ବେସାମରିକ ଲୋକଙ୍କ ଚଳାଚଳ ସେମାନଙ୍କ ମନରେ ସନ୍ଦେହ ସୃଷ୍ଟି କରିଥିଲା ।

କୋରିଆର ୨୪୦ କିଲୋମିଟର ବ୍ୟାପୀ ସୀମାରେ ଦୁଇଟି ସମାନ୍ତରାଳ ରେଖା ଟଣାଯାଇଛି । ସୀମାରେଖା କେତେକ ସ୍ଥଳରେ ଗାଁଗଣ୍ଡା, ଏପରିକି ଘର ଭିତର ଦେଇ ଯାଇଥିଲା । ଗୋଟିଏ ଘର ଦୁଇଭାଗ, ଗୋଟିଏ ପରିବାର ଦୁଇଟି ଦେଶବାସୀ ହୋଇଯାଇଥିଲେ । ଦେଖା ସାକ୍ଷାତ କଥାବାର୍ତ୍ତା ହେବାର ସୁଯୋଗ ନଥିଲା । ଏଇକଥା କହିଲାବେଳେ ସାମରିକ ଅଫିସରଙ୍କ ଆଖି ଛଳଛଳ ହୋଇଯାଇଥିଲା । ଯେତେହେଲେ ସେମାନେ ବି ତ ମଣିଷ ! ସେମାନଙ୍କ ମନରେ ମଧ୍ୟ ସ୍ନେହ, ମମତା, ସହାନୁଭୂତି ରହିଥିଲା । ଦୀର୍ଘଦିନ ହେଲା ଆତ୍ମୀୟସ୍ୱଜନଙ୍କୁ ଦେଖିବାର ସୁଯୋଗ ନଥିଲା । କେହି କାହା ଖବର ରଖିପାରୁନଥିଲେ । ବିଧିର ବିଧାନ ଏପରି ଯେ ଗୋଟିଏ କୋରିଆ ଆମେରିକା କବଳରେ ଥିଲାବେଳେ ଅନ୍ୟଟି ଋଷିଆଦ୍ୱାରା ପ୍ରଭାବିତ ହେଉଥିଲା ।

ବାଇନାକୁଲର ଘର ଭିତରେ ଥିବାରୁ ଆମେ ବିନା ବାଧାରେ ସୀମା ଆରପଟର ଘଟଣା ସବୁ ଦେଖିବାକୁ ପାଇଲୁ। ଆମେ ସେମାନଙ୍କୁ ଦେଖିବାକୁ ଯେତିକି ଆଗ୍ରହୀ ଥିଲୁ, ସେମାନେ ମଧ୍ୟ ସେତିକି ନିକଟରୁ ଆମର ଗତିବିଧି ଉପରେ ନଜର ରଖୁଥିଲେ। ଅବ୍‌ଜରଭେସନ୍ ଟାୱାର ଭିତରେ ଥିଲାବେଳେ କେଜାଣି କାହିଁକି ଏକ ଅଜଣା ଆଶଙ୍କା ମନରେ ଉଙ୍କିମାରୁଥିଲା। ବିଦେଶ ରାଷ୍ଟ୍ର, କେହି କାହା କଥା ବୁଝିପାରୁ ନଥିଲେ; କାଳେ କେତେବେଳେ କିଛି ଅଘଟଣ ଘଟିଯିବ, ଏଇ ଆଶଙ୍କାରେ ଆମ ଭିତରୁ କେତେକ ବନ୍ଧୁ ଶୀଘ୍ର ସେଠାରୁ ଚାଲିଯିବାକୁ ଚାହିଥିଲେ। ଊଣାଅଧିକେ ଅଧିକାଂଶଙ୍କର ସେଇ ଏକ ପ୍ରକାର ଶଙ୍କା ଥିଲା। କିନ୍ତୁ ଆନ୍ତର୍ଜାତିକ ସୀମାରେଖାରେ କିଛିକ୍ଷଣ କଟାଇବାର ଯେଉଁ ରୋମାଞ୍ଚକର ଅନୁଭୂତି ତାକୁ ସହଜରେ ଛାଡ଼ି ହେଉନଥିଲା। ଯାହାହେଉ, ପ୍ରାୟ ୪୫ ମିନିଟ୍ ସମୟ ସେଠାରେ କଟାଇ ଆମେ ପୁଣି ଗାଡ଼ିକୁ ଫେରିଆସିଲୁ। ଆମକୁ ସେଠାରେ କପେ ଚା' ଦେଇ ପାରିବାରୁ ବ୍ରିଗେଡ଼ିଅର୍ ଆମଠାରୁ କ୍ଷମା ଚାହିଥିଲେ। ଭାଷାରେ ତାଙ୍କର ଯେତିକି ଶାଳୀନତା, ବ୍ୟବହାର ମଧ୍ୟ ସେହିଭଳି ମାର୍ଜିତ। ତାଙ୍କର ଇଶାରାରେ ଗାଡ଼ିଗୁଡ଼ିକ ସହର ଅଭିମୁଖେ ଫେରିବାକୁ ଆରମ୍ଭ କଲା।

## ଦାନର ପ୍ରତିଦାନ

ବିଦେଶ ରାଷ୍ଟ୍ରରେ ସୌଜନ୍ୟମୂଳକ ବ୍ୟବହାର ସବୁଠାରୁ ବଡ଼କଥା। ବିଦେଶରେ ଯେପରି ଆଦର ମିଳେ, ସେପରି ସେ ଆଦରର ପ୍ରତିଦାନ ମଧ୍ୟ ଦେବାକୁ ହୋଇଥାଏ। ଆମେ ଡି.ପି.ଆର୍. କୋରିଆର ରାଜଧାନୀ ପୋଙ୍ଗ୍‌ୟାଙ୍ଗ୍ ସହରରେ ପହଞ୍ଚିବା ଦିନ ସେ ଦେଶ ସମ୍ବାଦପତ୍ର ସଂସ୍ଥାର ମୁଖ୍ୟ କିମଜୀ ନାମ୍ ଆମକୁ ଏକ ନୈଶ୍ୟଭୋଜିରେ ଆପ୍ୟାୟିତ କରିଥିଲେ। ତେଣୁ ବିଦେଶୀ ରାଷ୍ଟ୍ର ହେଲେ ବି ସୌଜନ୍ୟ ଦୃଷ୍ଟିରୁ ଆମେ ତାଙ୍କୁ ଓ ତାଙ୍କ ସହକର୍ମୀ ବନ୍ଧୁମାନଙ୍କୁ ଏକ ଭୋଜି ଦେବାପାଇଁ ସ୍ଥିରକଲୁ। ତା'ଛଡ଼ା ଏତେ ଦିନ ଧରି ଯେଉଁ ଭାଷାନ୍ତରକାରୀ, ଗାଇଡ୍, ହୋଟେଲ ପରିଚାରିକା ଆମ ସୁଖସୁବିଧା ପାଇଁ ଏତେ ପରିଶ୍ରମ କରିଥିଲେ, ସେମାନଙ୍କୁ ମଧ୍ୟ ଆମର କିଛି ଉପଢୌକନ ଦେବାକଥା। ସେଥିପାଇଁ ଆଉ ସମୟ ନଷ୍ଟ ନକରି ପ୍ରାତଃଭୋଜନ ପରେ ଆମେ ସବୁ ବିକ୍ରମ ରାଓଙ୍କ ରୁମ୍‌ରେ ପହଞ୍ଚିଲୁ। ଆମ ଆଗରୁ ଆମ ସାଙ୍ଗରେ ଥିବା ଲକ୍ଷ୍ନୌର ଭଉଣୀ ସୁନୀତା ସେଠି ପହଞ୍ଚି କାହାକୁ କ'ଣ ଦିଆଯିବ, ତା'ର ଏକ ତାଲିକା ପ୍ରସ୍ତୁତ କରି ସାରିଥିଲେ। ବିଭିନ୍ନ ରାଜ୍ୟର କାରୁକାର୍ଯ୍ୟ ଖଚିତ ଗିଫ୍ଟ ଦେଖି ମନେହେଲା ସତେଯେପରି ସମଗ୍ର ଭାରତବର୍ଷ ସେଠାରେ ଏକତ୍ର ହୋଇଥିଲା। ରଙ୍ଗବେରଙ୍ଗର ଭଳିକି ଭଳି ପ୍ୟାକେଟ୍। ଆମ ଓଡ଼ିଶାର ମୀନାକରା ତାରକସି କାମକୁ ସମସ୍ତେ ପସନ୍ଦ କରିଥିଲେ। ପ୍ୟାକେଟ୍ ବନ୍ଧା ଶେଷ ହେବାପରେ ଆମେ ସମସ୍ତେ ଲାଉଞ୍ଜକୁ ଗଲୁ। ଗାଇଡ୍ ଓ ପରିଚାରିକାମାନେ ଆମ ଆଗରୁ ଆସି ଲାଉଞ୍ଜରେ ଅପେକ୍ଷା କରିଥିଲେ। ଆମ ସଭାପତି ସେମାନଙ୍କୁ 'ଗିଫ୍ଟ'ପ୍ୟାକେଟ୍

ଦେଲାବେଳେ ମୁଁ ସେମାନଙ୍କ ମୁହଁକୁ ଲକ୍ଷ୍ୟ କରୁଥିଲି। ଭାଷାରେ ବ୍ୟବଧାନ ଥିଲେ ବି ସେମାନଙ୍କ ମନର ଭାବ ବୁଝିବାରେ କିଛି ଅସୁବିଧା ହୋଇନଥିଲା। ସେମାନେ ପ୍ରତ୍ୟେକ ଆମର ସାମାନ୍ୟ 'ଗିଫ୍ଟ' ଗ୍ରହଣକରି ସେମାନଙ୍କ ହୃଦୟର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରିଥିଲେ। ଯେତେ କଡ଼ା ନୀତିନିୟମ, ଶୃଙ୍ଖଳା ଓ ଶାସନ ଭିତରେ ରହିଲେ ବି ସେମାନେ ତ ମଣିଷ! ଭାଷା ବୁଝିପାରୁନଥିଲେ ବି ସେମାନେ ଆମ ହୃଦୟର ସ୍ନେହ, ଶ୍ରଦ୍ଧା ଓ ଅନୁକମ୍ପାକୁ ଯେ ବେଶ୍ ହୃଦୟଙ୍ଗମ କରିପାରୁଥିଲେ, ସେକଥା ସେମାନଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇପଡୁଥିଲା। ସେମାନେ କେବଳ ସ୍ମିତହାସ୍ୟ ସହ ଆମ 'ଗିଫ୍ଟ'ସବୁ ଗ୍ରହଣ କରି ନିଜ ନିଜ କର୍ତ୍ତବ୍ୟ ପାଇଁ ଚାଲିଗଲେ। ଦଶଟା ସମୟରେ ଉପରାଷ୍ଟ୍ରପତିଙ୍କ ସହିତ ସାକ୍ଷାତ୍ ଆଲୋଚନା ପାଇଁ ଆଗରୁ କାର୍ଯ୍ୟକ୍ରମ ସ୍ଥିର ହୋଇଥିବାରୁ ଆମେ ମଧ୍ୟ ଚଞ୍ଚଳ ହୋଇଉଠିଲୁ।

ସନ୍ଧ୍ୟାରେ କିମଜୀ ନାମ୍‌ଙ୍କ ସମ୍ମାନାର୍ଥେ ଆମ ପକ୍ଷରୁ ନୈଶ୍ୟଭୋଜିର ବନ୍ଦୋବସ୍ତ ଥିବାରୁ ଆମକୁ ଫର୍ମାଲ୍ ଡ୍ରେସ୍‌ରେ ଯିବାକୁ ସଭାପତି ପରାମର୍ଶ ଦେଇଥିଲେ। ସକାଳୁ ପ୍ରକାଶ ଦୁବେ ଓ କେ.ଏମ୍. ରାୟ ଏହି ଭୋଜି ପ୍ରସ୍ତୁତି କାର୍ଯ୍ୟରେ ଲାଗିଥିଲେ। ଶ୍ରୀ ନାମ୍ କି ପ୍ରକାର ପାନୀୟ ଭଲ ପାଉଥିଲେ, ତାଙ୍କର ଅନ୍ୟ ସହକର୍ମୀଙ୍କର କେଉଁ ମଦରେ ଶ୍ରଦ୍ଧା ଥିଲା, ସେ ବିଷୟ ସେମାନେ ଆଗରୁ ବୁଝି ନେଇଥିଲେ। ସେହିଭଳି ଆମ ଭିତରୁ କିଏ ସ୍କଚ୍ ପିଇବେ, କାହା ପାଇଁ ବିଅର୍ ଆସିବ, ଆଉ ଆମପରି କେତେଜଣ କୋକାକୋଲା କିମ୍ବା କମଳା ରସରେ ଟୋଷ୍ଟ୍ ଅଫର କରିବେ, ସେକଥା ମଧ୍ୟ ପୂର୍ବରୁ ସ୍ଥିର ହୋଇସାରିଥିଲା, କାରଣ ଏ ପ୍ରକାର ଭୋଜିରେ ଖାଦ୍ୟପେୟ ଅପେକ୍ଷା ଆଦବ କାଇଦାର ପ୍ରୟୋଜନ ଅଧିକ। ସେଥିରେ ଆମେ କେଇଜଣ ସକ୍ରିୟ ଅଂଶଗ୍ରହଣ କରି କେତେକ ଭାରତୀୟ ଖାଦ୍ୟ ମଧ୍ୟ ପ୍ରସ୍ତୁତ କରାଇଥିଲୁ।

ନିର୍ଦ୍ଧାରିତ ସମୟରେ ଶ୍ରୀଯୁକ୍ତ ନାମ୍ ଓ ତାଙ୍କ ସହକର୍ମୀମାନେ ଆସି ଡାଇନିଂହଲ୍‌ରେ ଉପସ୍ଥିତ ହେଲେ ଏବଂ ପୋଙ୍ଗ୍‌ୟାଙ୍ଗ୍ ସମୟ ଠିକ୍ ଆଠଟାରେ ବାଂକ୍ୱେଟ୍ ପର୍ବ ଆରମ୍ଭ ହେଲା। ପ୍ରଥମେ ଆମ ସଭାପତି, ଶ୍ରୀଯୁକ୍ତ ନାମ୍ ଓ ତାଙ୍କ ସହକର୍ମୀଙ୍କ ଉତ୍ତମ ସ୍ୱାସ୍ଥ୍ୟ କାମନା କରି ଟୋଷ୍ଟ୍ ଅଫର କଲେ। ପରେ ଶ୍ରୀଯୁକ୍ତ ନାମ୍ ତା'ର ପ୍ରତିବଦଳରେ ଅନୁରୂପ ଟୋଷ୍ଟ୍ ଅଫର କଲେ। ତା'ପରେ ଆନୁଷ୍ଠାନିକ ଭୋଜନ ଆରମ୍ଭ ହେବାକଥା; କିନ୍ତୁ ଏଥିରେ ଭୋଜନକୁ ଗୌଣ କରାଯାଇ ଭାଷଣକୁ ମୁଖ୍ୟ କରାଗଲା। ଇଚ୍ଛା ଥାଉ ବା ନଥାଉ ଏପରି ନୈଶ୍ୟଭୋଜିରେ ପରସ୍ପରର ପ୍ରଶଂସା କରିବା ହେଉଛି ଅନ୍ୟ ଏକ ବିଧି। ଆମେ କହିଲୁ, "ଆପଣଙ୍କ ଦେଶକୁ ଆସିଥିବାରୁ ଆମେ ଭାରି ଖୁସି।" ତା'ର ଉତ୍ତରରେ ସେମାନେ କହିଲେ, "ଆପଣମାନେ ଆମ ଦେଶକୁ ଆସି ଖୁସି ହୋଇଥିବା କଥା ଜାଣି ଆମେ ଆମର କୃତଜ୍ଞତା ଜଣାଉଛୁ" ଇତ୍ୟାଦି ଇତ୍ୟାଦି। ଏପରି ପ୍ରାୟ ଘଣ୍ଟାଏ କାଳ

ଚାଲିଲା। ଇତିମଧ୍ୟରେ ଆମ ଭିତରୁ କେତେକ ବିଦେଶୀ ସୁରାର ମୋହ ସମ୍ଭାଳିନପାରି ଆକଣ୍ଠ ପାନ କରିସାରିଥିଲେ। ଅବଶ୍ୟ କିଛି ଅଘଟଣ ଘଟିବା ପୂର୍ବରୁ ସେମାନଙ୍କୁ ରୁମ୍ ଭିତରକୁ ନିଆଯାଇଥିଲା।

ଭୋଜି ଶେଷରେ ଶ୍ରୀ ନାମ୍ ଆମକୁ ଗୋଟିଏ ଛୋଟିଆ ଅନୁରୋଧ କରି କହିଲେ- "ଆମେ ସମସ୍ତେ ପେସାଦାର ସାମ୍ବାଦିକ ହୋଇଥିବା ଦୃଷ୍ଟିରୁ ପୋଙ୍ଗ୍‌ୟାଙ୍ଗ୍‌ରେ ପ୍ରାୟ ଦୁଇ ସପ୍ତାହ ରହଣି ସମୟ ମଧ୍ୟରେ ଡି.ପି.ଆର୍. କୋରିଆ ସମ୍ପର୍କରେ ଆମର ଯେଉଁ ଧାରଣା ହେଲା ତାକୁ ଲିପିବଦ୍ଧ କରିଗଲେ ସେମାନେ ଅନୁଗୃହୀତ ହେବେ।"

ସମୟ କମ୍। କିନ୍ତୁ ଅନୁଭୂତି, ଅଭିବ୍ୟକ୍ତି ବହୁତ। ତେଣୁ ଭୋଜନ ଶେଷରେ ଆମେ ଆଉ ରୁମ୍‌କୁ ନ ଯାଇ ଲାଉଞ୍ଜକୁ ଗଲୁ। କୌଣସି ସମଷ୍ଟିଗତ ଆଲୋଚନା କରିବା ପାଇଁ ଆବଶ୍ୟକ ପଡ଼ିଲେ ଆମେ ପ୍ରାୟ ଲାଉଞ୍ଜରେ ହିଁ ଏକାଠି ହେଉଥିଲୁ। ସଭାପତିଙ୍କ ନିର୍ଦ୍ଦେଶରେ ବିଷୟ ନିର୍ବାଚନ ହୋଇଗଲା। କିଏ କେଉଁ ବିଷୟରେ ଲେଖିବେ ତା' ମଧ୍ୟ ସ୍ଥିର ହୋଇଗଲା। ଆମେ ସାଙ୍ଗେ ସାଙ୍ଗେ କାମରେ ଲାଗିପଡ଼ିଲୁ। ନିର୍ବାଚିତ ବିଷୟବସ୍ତୁ ସମ୍ପର୍କରେ ଧାରଣା ସ୍ପଷ୍ଟ ଥିବାରୁ ବିଶେଷ କିଛି ଅସୁବିଧା ହେଲା ନାହିଁ। ଅଳ୍ପ କେତେକ ବନ୍ଧୁଙ୍କୁ ବାଦ୍ ଦେଲେ ଆମେ ଅଧିକାଂଶ ସେଇ ରାତିରେ ହିଁ ଲେଖା କାର୍ଯ୍ୟ ସାରିଦେଲୁ। ମୁଁ ଯେଉଁ ବିଷୟଟି ବାଛିଥିଲି, ସେଇଟି ହେଉଛି 'ଗ୍ରେଟ୍ ଲିଡ଼ର୍‌ଙ୍କୁ ମୁଁ ଯେମିତି ଦେଖୁଛି' (ଗ୍ରେଟ୍ ଲିଡ଼ର୍, ଆଜ୍ ଆଇ ସି ହିମ୍)।

## ପୋଙ୍ଗ୍‌ୟାଙ୍ଗ୍‌ରୁ ବିଦାୟ

କେଜାଣି କାହିଁକି ଏକ ଅହେତୁକ ଆଶଙ୍କାରେ ସେଦିନ ଭୋର୍‌ରୁ ନିଦ ଭାଙ୍ଗିଗଲା। ସକାଳ ଦଶଟା ସୁଦ୍ଧା ପୋଙ୍ଗ୍‌ୟାଙ୍ଗ୍ ବିମାନବନ୍ଦରକୁ ଯିବାକୁ ହେବ। ସେଠାରୁ ମସ୍କୋ ଏବଂ ମସ୍କୋରୁ ପାଶ୍ଚାତ୍ୟ ରାଷ୍ଟ୍ର ଭ୍ରମଣ ପାଇଁ କାର୍ଯ୍ୟକ୍ରମ ଥିବାରୁ ମନଟା ଚଞ୍ଚଳ ହେଉଥିଲା। ମୁଁ ଆସି ବାରଣ୍ଡାରେ ଦେଖିଲାବେଳକୁ ଆନ୍ୟମାନଙ୍କର ମଧ୍ୟ ସେଇ ଅବସ୍ଥା। ସାତଟାବେଳକୁ ସମସ୍ତେ ପ୍ରସ୍ତୁତ ହୋଇ ସାରିଥିଲେ। ଅନ୍ୟ ଦିନ ହୋଇଥିଲେ ତିନିଥର ନଡାକିଲେ କେହି ଉଠୁନଥିଲେ। ମନରେ କେବଳ ଗୋଟିଏ ଭାବନା। ୟୁରୋପୀୟ ରାଷ୍ଟ୍ରସମୂହରେ ଆମର ଭ୍ରମଣ କିପରି ହେବ, ସେଠାରେ ଆମ ଚାହିଦା ମୁତାବକ ଖାଦ୍ୟପେୟ ମିଳିବ କି ନାହିଁ, ସେସବୁ ଦେଶରେ ସାଧାରଣ ଜୀବନଧାରଣ ପ୍ରଣାଳୀ କିପରି ହୋଇଥିବ ସେ ବିଷୟରେ ଆଗରୁ ବହୁ ବହି ପଢ଼ିଥିଲେ ବି ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ ଓ ପୁସ୍ତକଗତ ଜ୍ଞାନ ଭିତରେ ବହୁ ତଫାତ୍ ଦୃଷ୍ଟିରୁ ଉଦ୍‌ବେଗ ବଢୁଥିଲା। ପ୍ରାତଃଭୋଜନ ପାଇଁ ଡାଇନିଂ ହଲ୍‌କୁ ଗଲୁ। ସେହିଦିନ ଆମ ପାଇଁ ପରଟା, ଆଳୁଚିପ୍ସ ଇତ୍ୟାଦି ପ୍ରସ୍ତୁତ ହୋଇଥିଲା। ଏହି କେଇଦିନ ଭିତରେ ଆମର ଖାଇବା ଅଭ୍ୟାସ ସହିତ ସେମାନେ ଉଣାଅଧିକେ

ଅଭ୍ୟସ୍ତ ହୋଇସାରିଥିଲେ। ତେଣୁ ସେମାନଙ୍କୁ ଆଉ ଅଧିକ କିଛି କହିବାର ଅବଶ୍ୟକ ପଡୁନଥିଲା। ଭୋଜନ ଶେଷବେଳକୁ ହୋଟେଲ ପରିଚାରିକାମାନେ ଆସି ଆମକୁ ବିଦାୟ ଦେଲେ। ମୁଁ ଭାବିଥିଲି ଆମର ସେଠାରୁ ଚାଲିଆସିବାରେ ସେମାନେ ନିଶ୍ଚିତ ଆନନ୍ଦିତ ହେବେ; କାରଣ ଖାଦ୍ୟପେୟ ପାଇଁ ଆଗରୁ ଆଉ କୌଣସି ଅତିଥି ବୋଧହୁଏ ସେମାନଙ୍କ ଉପରେ ଏତେ ଅଧିକ ଚାପ ପକାଇ ନଥିଲେ। କିନ୍ତୁ ସେମାନଙ୍କ ଭାବଭଙ୍ଗୀରୁ ଅନ୍ୟ କଥା ଲକ୍ଷ୍ୟକଲୁ। ଆମ ସାଙ୍ଗରେ ଥିବା ଭାଷାନ୍ତରକାରୀ ସେମାନଙ୍କ ବକ୍ତବ୍ୟକୁ ଆମକୁ ବୁଝାଇ କହିଲେ, "ଆମ୍ଭମାନଙ୍କୁ ବିଦାୟ ଦେଉଥିବାରୁ ସେମାନେ ଦୁଃଖିତ।" ମୁଁ ଦେଖିଲି ଜାପାନୀ କଣ୍ଢେଇଭଳି ଝିଅମାନଙ୍କ ମୁଖମଣ୍ଡଳ ଅତି ଗମ୍ଭୀର ହୋଇଯାଇଥିଲା। ମୁହଁରେ ହସ ଫୁଟାଇବାକୁ ଯେତେ ଚେଷ୍ଟା କଲେ ବି ମନର ଭାବ ତାକୁ ଗ୍ରାସ କରିଯାଉଥିଲା। ତଥାପି ସେମାନେ ମଥାନତ କରି ହାତହଲାଇ ଆମକୁ ବିଦାୟ ଦେଲେ। ସମୟ ଅତିବାହିତ ହୋଇଯାଉଥିବାରୁ ଆମେ ଆଉ କାଳବିଳମ୍ବ ନକରି ବାହାରେ ଅପେକ୍ଷାରତ ଏୟାର କଣ୍ଡିସନ୍ଡ୍ କୋଚ୍‌ରେ ବସିଲୁ।

ସାଢ଼େ ନଅଟା ବେଳକୁ ଆମ କୋଚ୍ ଆସି ପୋଙ୍ଗ୍‌ୟାଙ୍ଗ୍ ବିମାନବନ୍ଦରର ମୁଖ୍ୟ ପ୍ରବେଶପଥରେ ଲାଗିଲା। ଆମର ଲଗେଜ୍ ବୁକିଂ, କଷ୍ଟମ୍ସ କ୍ଲିଅରାନ୍ସ ଓ ସିକ୍ୟୁରିଟି ଚେକିଂ ଇତ୍ୟାଦିରେ ବିଳମ୍ବ ହେଲାନାହିଁ। କେବଳ ବିମାନକୁ ଯିବା ବାକିଥିଲା। ଆମେ ବିମାନ ବନ୍ଦର ଭିତରକୁ ଯିବାକୁ ବାହାରିବା ବେଳେ ଶୁଣିଲୁ କିମଜୀ ନାମ୍ ଆମକୁ ବିଦାୟସମ୍ବର୍ଦ୍ଧନା ଦେବା ଉଦ୍ଦେଶ୍ୟରେ ବିମାନବନ୍ଦରକୁ ଆସୁଛନ୍ତି। ସେ ଦେଶର ପ୍ରଥମ ପାଞ୍ଚଜଣ ଶାସନକର୍ତ୍ତାଙ୍କ ମଧ୍ୟରେ ଶ୍ରୀ ନାମ୍ ଥିଲେ ଅନ୍ୟତମ। ଏତେବଡ଼ ପଦାଧିକାରୀ ହୋଇ ସେ ବା କାହିଁକି ଆମକୁ ବିଦାୟ ଦେବାକୁ ଆସିବେ ? ତେଣୁ ସେକଥା ଆମ ମନରେ ନଥିଲା। ଆମେ ଦୋତାଲା ଲାଉଞ୍ଜ୍‌ରେ ବିମାନଯାତ୍ରାର ପ୍ରାରମ୍ଭିକ ତନଖି କାର୍ଯ୍ୟ ଶେଷକରି ତଳକୁ ଆସିଲାବେଳକୁ ଶ୍ରୀ ନାମ୍ ଓ ତାଙ୍କ ସହକର୍ମୀମାନେ ଆସି ସେଠାରେ ପହଞ୍ଚିସାରିଥିଲେ। ଆମେ ସେଠାରେ ପହଞ୍ଚିଲା ପରେ ନାଟକର ଶେଷଦୃଶ୍ୟ ଆରମ୍ଭ ହେଲା।

କିମଜୀ ନାମ୍ ବ୍ୟକ୍ତିଗତଭାବେ ସମସ୍ତଙ୍କ ନିକଟକୁ ଆସି କରମର୍ଦ୍ଦନ କରି ଯାତ୍ରାର ଶୁଭକାମନା କଲେ। ସେଥିସହିତ ସମସ୍ତଙ୍କୁ ବ୍ୟକ୍ତିଗତଭାବେ ଗୋଟିଏ ଲେଖାଏଁ ଗିଫ୍ଟପ୍ୟାକ୍ ମଧ୍ୟ ବଢ଼ାଇଦେଲେ। ମୁଁ ଦୂରରେ ଥାଇ ଲକ୍ଷ୍ୟ କରୁଥିଲି, ସେଠାରେ ସମସ୍ତଙ୍କ ଆଖି ଛଳଛଳ ଦେଖାଯାଉଥିଲା। ଆନୁଷ୍ଠାନିକ ବିଦାୟସମ୍ବର୍ଦ୍ଧନା ପରେ ବିମାନ ଭିତରକୁ ଯିବାକଥା। ପୂର୍ବରୁ ସମସ୍ତ ଔପଚାରିକ କାର୍ଯ୍ୟ ଶେଷ ହୋଇ ସାରିଥିଲା। କିନ୍ତୁ ବନ୍ଧୁମାନେ ପରସ୍ପର ସହିତ କୋଳାକୋଳି ହୋଇ ବିଦାୟ ନେବାରେ ବେଶ୍ କିଛି ସମୟ ବିଳମ୍ବ ହୋଇଚାଲା।

ସେମାନେ ଭାରତୀୟ ସଂସ୍କୃତି ଓ ଭାଷା ସହିତ ପରିଚିତ ନଥିଲେ କିମ୍ବା ଭାରତବର୍ଷ ଭଳି ସେ ଦେଶରେ ବ୍ୟକ୍ତି ସ୍ୱାଧୀନତା ନଥିଲା। ତା'ସତ୍ତ୍ୱେ କେତେଦିନର ରହଣି ମଧ୍ୟରେ ଡି.ପି.ଆର୍. କୋରିଆବାସୀଙ୍କ ସହିତ ଆମର ଏକପ୍ରକାର ବନ୍ଧୁତା ହୋଇଯାଇଥିଲା। ସେମାନଙ୍କର ଅମାୟିକ ବ୍ୟବହାର, ଆତିଥେୟତା ମାଧ୍ୟମରେ ସେମାନେ ଆମକୁ ଆପଣାଇ ନେଇଥିଲେ। ଆମର ଅନୁରୋଧ କ୍ରମେ କମିଜୀ ନାମ୍ ଓ ତାଙ୍କ ସହକର୍ମୀମାନେ ଆମ ସାଙ୍ଗରେ ଏକତ୍ର ଫଟୋ ଉଠାଇଲେ। ତା'ପରେ ଆମର ବିମାନ ଭିତରେ ପ୍ରବେଶ କରିବା କଥା। କିନ୍ତୁ କିଛି କ୍ଷଣପାଇଁ ଏକ ଅଜଣା କାରଣ ଯୋଗୁଁ ସବୁକିଛି ଅଟକି ଯାଇଥିଲା। ସେମାନଙ୍କଠାରୁ ବିଦାୟ ନେଲାବେଳେ ଆମ ଭାରତୀୟ ମନ୍ଧୁମାନେ କ୍ଷଣକ ପାଇଁ ଭାବପ୍ରବଣ ହୋଇଉଠିଥିଲେ। ଅଜାଣତରେ କେତେକଙ୍କ ଆଖିରୁ କେଇଟୋପା ଲୁହ ଗଡ଼ିପଡ଼ିଥିଲା।

ଭାରତରୁ ଡି.ପି.ଆର୍. (ଉତ୍ତର କୋରିଆ) କୋରିଆ କାହିଁ କେତେ ଦୂର। ଦୁଇ ଦେଶବାସୀଙ୍କ ମଧ୍ୟରେ ଚାଲିଚଳଣ, ଭାଷା ସଂସ୍କୃତି, ଖାଦ୍ୟପେୟରେ କାହିଁ କେତେ ତଫାତ୍। ତଥାପି ସାମାଜିକପ୍ରାଣୀ ଭାବରେ ମଣିଷ ମନର ଯେଉଁ ଭାବାବେଗ, ସେଥିରେ ସମସ୍ତେ ବାନ୍ଧି ହୋଇଯାଇଥିଲେ। କେହି କାହା କଥା ବୁଝି ନପାରୁଥିଲେ ବି ମନର ଆବେଗ କେଇଦିନ ଭିତରେ ଏକ ବନ୍ଧୁତ୍ୱ ଭାବ ସୃଷ୍ଟି କରିଥିଲା। ପୋଙ୍ଗ୍‌ୟାଙ୍ଗ୍‌ରୁ ଫେରିଲାବେଳେ ମନେହେଲା ସତେ ଯେପରି ଆମେ ନିଜଘର ଛାଡ଼ି କାହିଁ କେଉଁ ଅଜଣା ରାଇଜକୁ ଚାଲିଯାଉଥିଲୁ। ଆମକୁ ନେଇଯାଉଥିବା ଏରୋଫ୍ଲୋଟ୍‌ଟି ରନ୍‌ୱେରୁ ଉପରକୁ ଉଠିଲାବେଳେ ମୁଁ ଝରକାରୁ ଲକ୍ଷ୍ୟ କରୁଥିଲି, ଶ୍ରୀ ନାମ୍ ଓ ତାଙ୍କ ସହକର୍ମୀମାନେ ଷ୍ଟାଚ୍ୟୁଭଳି ନିଜ ନିଜ ଜାଗାରେ ଛିଡ଼ା ହୋଇ ହାତ ହଲାଉଥିଲେ।

ଭାରତୀୟ ସାମ୍ବାଦିକ ପ୍ରତିନିଧିଙ୍କୁ ନେଇ ଯାଉଥିବା ଡି.ପି.ଆର୍. କୋରିଆର ଏରୋଫ୍ଲୋଟ୍‌ଟି ମସ୍କୋ ବିମାନବନ୍ଦରରେ ଅବତରଣ କଲାବେଳକୁ ରାତି ଆଠଟା। ବିମାନ ଭିତରେ ଆମର ରାତ୍ରିଭୋଜନ ଶେଷ ହୋଇଥିଲା। ମସ୍କୋରେ ରାତିଟା ବିଶ୍ରାମ ନେଇ ସକାଳେ ଆମର ୟୁରୋପୀୟ ରାଷ୍ଟ୍ରକୁ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। କୋରିଆ ଦୂତାବାସ ପକ୍ଷରୁ ମସ୍କୋରେ ଆମ ପାଇଁ ରହିବାର ବ୍ୟବସ୍ଥା କରାଯାଇଥିଲା।

ବିମାନବନ୍ଦରରେ ସେଇ ପୁରୁଣା ଘଟଣାର ପୁନରାବୃତ୍ତି। ପାସ୍‌ପୋର୍ଟ, ଭିସା ଚେକିଂ, ଡଲାର୍ ଗଣାଗଣି। ଯାହାହେଉ ଅଧଘଣ୍ଟା ମଧ୍ୟରେ ସବୁକାମ ସରିଗଲା। ବାହାରେ ଆମ ପାଇଁ କୋଚ୍‌ଟିଏ ଅପେକ୍ଷା କରିଥିଲା। ଭି.ଆଇ.ପି. ଲାଉଞ୍ଜଠାରୁ ପାର୍କିଂ ସ୍ପେସ୍ ଟିକିଏ ଦୂର। ଲାଉଞ୍ଜରୁ ବାହାରିଲାବେଳେ କନକନିଆ ଶୀତ। ହାତଗୋଡ଼ ସବୁ କୋଲ ମାରିଯାଉଥିଲା। ତା' ସାଙ୍ଗକୁ ପୁଣି ନିଜ ବ୍ୟାଗେଜ୍ ନିଜେ ବୋହି ନେଇ ଯିବାକୁ ପଡ଼ିଲା। କ'ଣ ଆଉ କରାଯିବ ? ମନକଥା ମନରେ ମାରି ଆମେ ସବୁ କୋଚ୍ ଆଡ଼େ ଆଗେଇଲୁ।

ହୋଟେଲରେ ପହଞ୍ଚିଲା ପରେ ରାତିରେ ଭଲ ନିଦ ହୋଇଗଲା। ପରଦିନ ସକାଳ ୫ଟାରେ ଆମର ବିମାନବନ୍ଦରରେ ପହଞ୍ଚିବାର କଥା ଥିଲା। ସେଠାରୁ କେ.ଏଲ୍.ଏମ୍ ବିମାନରେ ୟୁରୋପର ପ୍ରବେଶପଥ ଆମ୍‌ଷ୍ଟରଡାମ୍‌କୁ ଯିବାପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସକାଳୁ ଜଳଖିଆ ଖାଇବାକୁ ଆଗ୍ରହ ନଥିଲା। କୌଣସିମତେ ଜଳଖିଆପର୍ବ ଶେଷ କରି ଆମେ ଶୀଘ୍ର ପ୍ରସ୍ତୁତ ହୋଇଗଲୁ।

କୋରିଆ ଦୂତାବାସର ଅଫିସରମାନେ ଆମକୁ ବିଦାୟ ଦେବା ଉଦ୍ଦେଶ୍ୟରେ ଆଗରୁ ଆସି ଅପେକ୍ଷା କରିଥିଲେ; କାରଣ, ବସ୍ତୁତଃ ସେପର୍ଯ୍ୟନ୍ତ ଆମେ କୋରିଆର ଅତିଥିଭାବରେ ଥିଲୁ। ହୋଟେଲରୁ ବିମାନବନ୍ଦରର ଦୂରତା ପ୍ରାୟ ୨୦ କିଲୋମିଟର। କିନ୍ତୁ ଆମେ ମାତ୍ର ଦଶମିନିଟ୍ ମଧ୍ୟରେ ଯାଇ ପହଞ୍ଚିଗଲୁ। ଓଡ଼ିଶା ହୋଇଥିଲେ ବୋଧହୁଏ ସେତିକି ରାସ୍ତା ପାର ହେବାକୁ ପାଖାପାଖି ଘଣ୍ଟାଏ ଲାଗିଥାନ୍ତା।

କୋରିଆ ଦୂତାବାସ କର୍ମଚାରୀମାନେ ଥିବାରୁ ବିମାନବନ୍ଦରରେ ବେଶି କିଛି ଅସୁବିଧା ହୋଇନଥିଲା। ପୂର୍ବଥର ଭଳି ସେମାନେ ଆମ ଆଟାଚି ସବୁ ଖୋଲି ଡଲାର ଗଣିବା ଉପରେ ଜୋର୍ ଦେଇନଥିଲେ। ପନ୍ଦରମିନିଟ୍ ଭିତରେ ଆମର ଲଗେଜ୍ ଚେକିଂ ଇତ୍ୟାଦି ଫର୍ମାଲିଟି ସବୁ ସରିଗଲା। କେବଳ ଗୋଟିଏ କଥା ସେମାନେ ଜାଣିବାକୁ ଚାହିଁଥିଲେ, ମସ୍କୋ ସହରକୁ ପ୍ରଥମେ ଆସିଲାବେଳେ କାହା ପାଖରେ କେତେ ଡଲାର ଥିଲା ଏବଂ ଫେରିଲାବେଳେ କେତେ ରହିଲା। ଡଲାର ଉପରେ ସେମାନଙ୍କର ଏତେଟା ଗୁରତ୍ୱରୁ ସେ ଦେଶର ଆଭ୍ୟନ୍ତରୀଣ ଅର୍ଥନୈତିକ ସ୍ଥିତି ସମ୍ପର୍କରେ ସେତେବେଳେ ସ୍ପଷ୍ଟ ସୂଚନା ମିଳିଥିଲା। କେ.ଏଲ୍.ଏମ୍. ବିମାନରେ ଆମ ପ୍ରତିନିଧିଦଳକୁ ଛାଡ଼ିଦେଲେ ସେଦିନ ଆଉ କେହି ପାସେଞ୍ଜର୍ ନଥିଲେ।

ମସ୍କୋରୁ ଆମ୍‌ଷ୍ଟର୍‌ଡାମ୍ ଯିବା ବାଟରେ ଆମ ବିମାନ ଇନ୍ଧନ ନେବାପାଇଁ ୱାର୍ସଠାରେ କିଛି ସମୟପାଇଁ ଅବତରଣ କରିଥିଲା। କିନ୍ତୁ ଆମପାଖରେ ପୋଲାଣ୍ଡର ଭିସା ନଥିବାରୁ ଆମକୁ ବିମାନରୁ ଓହ୍ଲାଇବାକୁ ଅନୁମତି ଦିଆଯାଇନଥିଲା। ସେହି ସମୟରେ ପୋଲାଣ୍ଡରେ ବିପ୍ଳବ ଘଟି ଏକଛତ୍ରବାଦ ଶାସନ ପ୍ରତିଷ୍ଠିତ ହୋଇଥିଲା। ବିମାନବନ୍ଦରଟି ଏକପ୍ରକାର ସେନାଛାଉଣୀ ପରି ଦେଖାଯାଉଥିଲା। ଆମେ ସବୁ ଅନୁସନ୍ଧିତ୍ସୁ ହୋଇ ବିମାନର କାଚଝରକା ବାଟେ ବିମାନବନ୍ଦରର ଦୃଶ୍ୟ ଦେଖିବାକୁ ଚେଷ୍ଟା କରୁଥିଲୁ। ଇନ୍ଧନ ଭର୍ତ୍ତି ହେବାପରେ ଆମ ବିମାନଟି ପୁଣି ଆକାଶମାର୍ଗକୁ ଉଠିଲା।

## ୟୁରୋପର ପ୍ରବେଶଦ୍ୱାର ଆମ୍‌ଷ୍ଟର୍‌ଡାମ୍

ସମୟ ଯେତିକି ପାଖେଇ ଆସୁଥିଲା, ମନର ଉତ୍କଣ୍ଠା ସେଇ ପରିମାଣରେ ବଢୁଥିଲା। ଦୁଇଟି କମ୍ୟୁନିଷ୍ଟ ରାଷ୍ଟ୍ରରେ ନିୟନ୍ତ୍ରିତ ଜୀବନ ଓ କଠୋର ଶୃଙ୍ଖଳା ଭିତରେ ଆମଭଳି

ଚାରିଖୁଣ ମାପ୍ ମଣିଷମାନେ ଏକପ୍ରକାର ଅଣନିଶ୍ୱାସୀ ହୋଇଯାଇଥିଲୁ। ପାଶ୍ଚାତ୍ୟ ରାଷ୍ଟ୍ରରେ ସମୟ କେମିତି କଟିବ, କ'ଣ କ'ଣ ସବୁ ଦେଖିହେବ, ଏଇକଥା ଅଧିକାଂଶଙ୍କ ମନରେ ଉଙ୍କିମାରୁଥିଲା। ହଠାତ୍ ଭାବନାର ଖିଅକୁ ଖିନ୍‌ଭିନ୍ କରି ମାଇକ୍‌ରୁ ସୁଲଳିତ କଣ୍ଠରେ ଭାସିଆସିଲା, "କ୍ଷମା କରିବେ, ଆଉ ଅଳ୍ପସମୟ ପରେ ବିମାନଟି ଆମ୍‌ଷ୍ଟରଡାମ୍ ବିମାନବନ୍ଦରରେ ଅବତରଣ କରିବ। ଆପଣମାନେ ଅଣ୍ଟାରେ ପଟି ବାନ୍ଧି ନିଜ ନିଜ ଆସନରେ ବସିବାକୁ ଓ ସିଗାରେଟ ନ ପିଇବାକୁ ଅନୁରୋଧ। ଆମର ବିଶ୍ୱାସ ଆପଣମାନଙ୍କର ବିମାନଯାତ୍ରା ଆରାମଦାୟକ ହୋଇଥିବ।"

ଆନ୍ତର୍ଜାତିକ ବିମାନଚଳାଚଳ କ୍ଷେତ୍ରରେ କେ.ଏଲ୍.ଏମ୍.ର ଏକ ସ୍ୱତନ୍ତ୍ର ସ୍ଥାନ ରହିଥିଲା। ବିମାନର କ୍ୟାପ୍ଟେନ୍‌ଙ୍କଠାରୁ ଆରମ୍ଭ କରି ପରିଚାରିକା ପର୍ଯ୍ୟନ୍ତ ସମସ୍ତେ ଭଦ୍ର ଓ ନମ୍ର। ସେମାନେ ସହାସ୍ୟ ବଦନରେ କଥାବାର୍ତ୍ତା କରୁଥିଲେ। ବିମାନ ଭିତରେ ମୃଦୁପାନୀୟଠାରୁ ଆରମ୍ଭ କରି 'ସ୍କଚ୍ ହ୍ୱିସ୍କି' ପର୍ଯ୍ୟନ୍ତ ସବୁର ବନ୍ଦୋବସ୍ତ ଥିଲା।

## ବିମାନବନ୍ଦରରେ ଡାଫୋଡିଲ୍ ଫୁଲବଗିଚା

ଅପରାହ୍ଣ ଦୁଇଟାବେଳେ ଆମ ବିମାନଟି ଆମଷ୍ଟରଡାମ୍ ବିମାନବନ୍ଦରର ଭୂମି ସ୍ପର୍ଶ କଲା। ଆରେ ବାପ୍‌ରେ ବାପ୍! କି ବିରାଟ ବିମାନବନ୍ଦର! ଆମଷ୍ଟର୍‌ଡାମ୍‌କୁ ପାଶ୍ଚାତ୍ୟ ରାଷ୍ଟ୍ରର ପ୍ରବେଶଦ୍ୱାର ବୋଲି କୁହାଯାଏ; କାରଣ ସେଠାରୁ ବିଶ୍ୱର ସବୁ ରାଷ୍ଟ୍ରକୁ ଯିବାପାଇଁ ବିମାନସେବାର ବ୍ୟବସ୍ଥା ଥିଲା। ବିମାନରୁ ବାହାରିଲାବେଳେ ହଠାତ୍ କିଛି ବୁଝିହେଲାନାହିଁ। ବିଶ୍ୱର ତୃତୀୟ ବୃହତ୍ତମ ବିମାନବନ୍ଦର ଭାବରେ ଖ୍ୟାତିଲାଭ କରିଥିବା ବିମାନବନ୍ଦରରେ ପୁଣି ଡାଫୋଡିଲ୍ ଫୁଲର ବଗିଚା? ଯେଉଁ ବିମାନବନ୍ଦରକୁ ପ୍ରତି ମୁହୂର୍ତ୍ତରେ ଏକାଧିକ ବିମାନ ଯାତାୟାତ କରୁଥିଲା, ସେଠାରେ ଫୁଲବଗିଚା ସମ୍ଭବ ହେଲା କିପରି? ଅନେକ ସମୟରେ ଅନେକ କଥା ଆଶ୍ଚର୍ଯ୍ୟ ଲାଗିଲେ ମଧ୍ୟ ସତ୍ୟ ହୋଇଥାଏ। ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ଭିତରେ ଆମେ ବିମାନରୁ ବାହାରିଆସିଲୁ। ବିମାନବନ୍ଦର କର୍ତ୍ତୃପକ୍ଷ ଆମର ପାସପୋର୍ଟ ଓ ଭିସା ଦେଖି ବାହାରକୁ ଯିବାକୁ ସାଙ୍ଗେ ସାଙ୍ଗେ ଅନୁମତି ଦେଇଦେଲେ। ଆମଷ୍ଟର୍‌ଡାମ୍ ବିମାନବନ୍ଦରଟି ଆଧୁନିକତାର ଛାପରେ ଭରପୂର ଥିଲା। କିନ୍ତୁ ସେଠାରେ ଗୋଟିଏ ଅସୁବିଧା ଥିଲା। ଭି.ଆଇ.ପି. ଲାଉଞ୍ଜ୍‌ଠାରୁ ଗାଡ଼ି ପାର୍କିଂପ୍ଲେସ୍‌ର ଦୂରତା ଅଧକିଲୋମିଟର ବାଟ। ସେଥିପାଇଁ କନ୍‌ଭେୟର୍ ବେଲ୍ଟରେ ବ୍ୟାଗେଜ୍ ନେବା ବ୍ୟବସ୍ଥା ସହିତ ଶାରୀରିକ ଅକ୍ଷମ ବ୍ୟକ୍ତିଙ୍କ ପାଇଁ ହୁଇଲ୍ ଚେୟାରର ବ୍ୟବସ୍ଥା ଥିଲା। ବେଲ୍ଟରେ ବ୍ୟାଗେଜ୍ ରଖି କିଛି ସମୟ ଚାଲିବାକୁ ପଡ଼ିଥିଲା। ବିମାନବନ୍ଦର ଭିତରେ ଥିବା ଫୁଲ ବଗିଚାଟି ଅତ୍ୟନ୍ତ ଆକର୍ଷଣୀୟ ହୋଇଥିବାରୁ ପଥଶ୍ରମ ବାଧୁନଥିଲା। ଆମଭଳି ଶତାଧିକ ପର୍ଯ୍ୟଟକ କନ୍‌ଭେୟର୍ ବେଲ୍ଟ କଡ଼େ କଡ଼େ ଚାଲୁଥିଲେ। ପାଦରେ ଚାଲିବା ଓ

ନିଜ ବ୍ୟାଗ୍‌କୁ ନିଜେ ନେଇ ଯିବା ଘଟଣାକୁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ କେହି ନ୍ୟୁନ ବୋଲି ଦେଖନ୍ତି ନାହିଁ। ଅଥଚ ଆଧୁନିକ ସଭ୍ୟତାର ଦ୍ୱାହି ଦେଇ ଆମେସବୁ ଚାଲି ଚାଲି ଯିବା ଓ ସାଙ୍ଗରେ କିଛି ଜିନିଷପତ୍ର ନେବାକୁ ଘୃଣାର ସହିତ ଦେଖୁଥିଲୁ। ଏସବୁ ଏକପ୍ରକାର ହୀନମ୍ମନ୍ୟତାର ପରିଚାୟକ ଥିଲା।

ଅଧଘଣ୍ଟା ଭିତରେ ଆମେ ବାହାରକୁ ଆସିଗଲୁ। ଆମ ପାଇଁ ଶୀତତାପ ନିୟନ୍ତ୍ରିତ କୋଚ୍ ସହିତ ଗାଇଡ୍ ଅପେକ୍ଷା କରି ରହିଥିଲେ। 'ସୀତା ଟ୍ରାଭେଲ୍‌ସ' ଆମର ପାଶ୍ଚାତ୍ୟ ରାଷ୍ଟ୍ର ଭ୍ରମଣରେ ସବୁ ବ୍ୟବସ୍ଥା କରିଥିଲେ ଏବଂ ଆମ ସୁବିଧା ଅସୁବିଧା ଦେଖିବାକୁ ଜଣେ ଅଫିସର୍‌ଙ୍କୁ ନିଯୁକ୍ତ କରିଥିଲେ। ସୀତା ଟ୍ରାଭେଲ୍‌ସର ପ୍ରତିନିଧି ସିରାଜ ଆମ ସହିତ ଥିବାରୁ ଗାଇଡ୍ ମିସ୍ ମେରୀଙ୍କ ପାଇଁ ଆମକୁ ଚିହ୍ନିବାରେ କିଛି ଅସୁବିଧା ହେଲାନାହିଁ। ମିସ୍ ମେରୀ, ଭାରତୀୟ ବଂଶୋଦ୍ଭବ; କିନ୍ତୁ ଦୀର୍ଘଦିନ ପାଶ୍ଚାତ୍ୟ ରାଷ୍ଟ୍ରରେ ରହିବା ଫଳରେ ସେଠାକାର ପାଣି, ପବନ, ଶିକ୍ଷା ସଂସ୍କୃତିକୁ ଆପଣେଇ ନେଇଥିଲେ। ପୋଷାକପତ୍ର, ଆଦବ କାଇଦା, କଥାବାର୍ତ୍ତାରୁ ଭାରତୀୟ ବୋଲି ଜଣାପଡୁ ନ ଥିଲେ ବି ଭାରତ ମାଟିରେ ଜନ୍ମଲାଭ କରିଥିବାରୁ ସେ ନିଜେ ଗର୍ବ ଅନୁଭବ କରୁଥିଲେ। ତାଙ୍କର ବୟସ ତିରିଶି ଭିତରେ ହେବ। ଡଉଲଡାଉଲ ଚେହେରା ସାଙ୍ଗକୁ ଆଖିରେ ଦାମୀ ଚଷମା ଓ ସ୍କର୍ଟ୍ ବ୍ଲାଉଜ୍ ତାଙ୍କୁ ଖୁବ୍ ମାନୁଥିଲା। ଦୀର୍ଘଦିନର ଅଭିଜ୍ଞତା ଯୋଗୁଁ ସେ ଅନର୍ଗଳ ଭାବରେ ନିର୍ଭୁଲ୍ ଇଂରାଜୀ କହିପାରୁଥିଲେ।

କୋଚ୍‌ର ଡ୍ରାଇଭର୍ ଟମ୍ ଫରାସୀ ଯୁବକ। ବୟସ ବେଶି ହେଲେ ପଚିଶି ଛବିଶ। ଖୁବ୍ ଆଧୁନିକ। ବ୍ୟବହାର ଅତି ଭଦ୍ର ଓ ମାର୍ଜିତ। ଇଂରାଜୀ ଭାଷାରେ ଦକ୍ଷତା ନଥିଲେ ବି ଚଳିଗଲା ଭଳି ଇଂରାଜୀ ଜଣାଥିଲା। କୋଚ୍‌ଟି ଶୀତତାପ ନିୟନ୍ତ୍ରିତ ଓ ଖୁବ୍ ଆଧୁନିକ। ପୁସ୍‌ବ୍ୟାକ୍ ସିଟ୍, ପ୍ରତ୍ୟେକ ସିଟ୍ ପାଖରେ ମ୍ୟୁଜିକ୍ ସିଷ୍ଟମ୍‌ର ବ୍ୟବସ୍ଥା ସହିତ କୋଚରେ ଥଣ୍ଡା ଓ ଗରମ ପାନୀୟର ବ୍ୟବସ୍ଥା ଥିଲା। ସେ କୋଚ୍‌ରେ ଡ୍ରାଇଭର୍ ବ୍ୟତୀତ ଆଉ କେହି ନଥିଲେ। କୋଚ୍‌ର ଦରଜା ଇଲେକ୍‌ଟ୍ରୋନିକ୍ ସୁଇଚ୍ ଦ୍ୱାରା ନିୟନ୍ତ୍ରିତ। ସିଟ୍ ତଳେ ବ୍ୟାଗେଜ୍ ରଖିବା ପାଇଁ ବ୍ୟବସ୍ଥା। ବିଦେଶାଗତମାନଙ୍କୁ ବାରମ୍ବାର ବୁଲାଇବା ଫଳରେ ଟମ୍‌ଙ୍କର ପାଶ୍ଚାତ୍ୟ ରାଷ୍ଟ୍ରର ରାସ୍ତାଘାଟ ସମ୍ପର୍କରେ ଦୀର୍ଘ ଦିନର ଅନୁଭୂତି ଥିଲା ଓ ପର୍ଯ୍ୟଟକମାନଙ୍କୁ ବୁଲାଇବାରେ ସେ ବିଶେଷ ଆନନ୍ଦ ଅନୁଭବ କରୁଥିଲେ। ଟମ୍‌ଙ୍କର ବ୍ୟବହାର, କଥାବାର୍ତ୍ତା ଦେଖିଲାପରେ କଟକ ଭୁବନେଶ୍ୱର ବସ୍‌ରେ ନିଯୁକ୍ତ ଡ୍ରାଇଭର୍, କଣ୍ଡକ୍ଟର୍, କ୍ଲିନର୍ ଇତ୍ୟାଦିଙ୍କର ରୁକ୍ଷ ଓ ଅଭଦ୍ରୋଚିତ ବ୍ୟବହାର ମନେପଡ଼ିଯାଇ ମନ କିଛି ସମୟପାଇଁ ଭାରାକ୍ରାନ୍ତ ହୋଇଯାଇଥିଲା। କଟକ ଭୁବନେଶ୍ୱର ମଧ୍ୟରେ ଆଠଣୀ ଟଙ୍କାଏ ପାଇଁ କିପରି ଭଦ୍ର ପାସେଞ୍ଜରମାନଙ୍କ ସହିତ ମୂର୍ଖ କଣ୍ଡକ୍ଟରମାନେ କଳିତକରାଳ କରନ୍ତି ଓ ଅଭଦ୍ର ଭାଷା ପ୍ରୟୋଗ କରନ୍ତି, ସେକଥା ମନେପଡ଼ିବାରୁ ଲଜ୍ଜା ଲାଗିଲା।

ଆମଷ୍ଟରଡାମ୍ ବିମାନବନ୍ଦରରୁ ଶୀତତାପ ନିୟନ୍ତ୍ରିତ କୋଚ୍ ସହର ଅଭିମୁଖେ ଚାଲିଲା। ଗାଡ଼ି ଷ୍ଟାର୍ଟ ହେବାମାତ୍ରେ ଗାଇଡ୍ ମେରୀଙ୍କ କଥା ଆରମ୍ଭ ହୋଇଗଲା। ଆମଷ୍ଟରଡାମ୍ ସହରରେ ଆମ କର୍ଯ୍ୟକ୍ରମ ସମ୍ପର୍କରେ ସେ ଏକ ସଂକ୍ଷିପ୍ତ ସୂଚନା ଦେଇ କହିଲେ, "ଏହା ହେଉଛି ଏକ ମଉଜ ମଜ୍‌ଲିସ୍‌ର ସହର। ଏଠାରେ ନୌକାବିହାରଠାରୁ ଆରମ୍ଭ କରି ନାଇଟ୍‌କ୍ଲବ ପର୍ଯ୍ୟନ୍ତ ସବୁ ବ୍ୟବସ୍ଥା ରହିଛି।" ତା'ଛଡ଼ା ସେ ସହରରେ ସୁସ୍ୱାଦୁ ଭାରତୀୟ ଖାଦ୍ୟ ମିଳୁଥିବା ସମ୍ପର୍କରେ ମଧ ମିସ୍ ମେରୀ ସୂଚନା ଦେଇଥିଲେ।

ପ୍ରଥମେ ହୋଟେଲକୁ ଯିବୁ କି ପ୍ରଥମେ ସହର ବୁଲିବୁ ସେ ପ୍ରଶ୍ନ ଉପରେ କିଛି ସମୟ ଆମ ଭିତରେ ତର୍କ ଚାଲିଲା। ଶେଷରେ କଥା ହେଲା, ହୋଟେଲକୁ ଯାଇ ବ୍ୟାଗେଜ୍ ରଖିଦେଇ ସହର ବୁଲା ହେବ। ସୀତା ଟ୍ରାଭେଲ୍‌ସ ପକ୍ଷରୁ ଆମପାଇଁ ଆଗରୁ ହୋଟେଲରେ ରୁମ୍ ରିଜର୍ଭ କରାଯାଇଥିଲା। ଆମେ ହୋଟେଲରେ ପହଞ୍ଚିବା ପରେ ପନ୍ଦର ମିନିଟ୍ ମଧରେ ଘରର ଚାବି ସବୁ ମିଳିଗଲା। ଆମେ ହୋଟେଲ ଲାଉଞ୍ଜ୍‌ରେ ବ୍ୟାଗେଜ୍ ରଖିଦେଇ ଚଞ୍ଚଳ ବାହାରିପଡ଼ିଲୁ। ମିସ୍ ମେରୀ ଆମକୁ କହିଲେ, "ଆପଣମାନେ ଏତେ ଶ୍ରମ କରି ଭାରତର ବିଭିନ୍ନ ରାଜ୍ୟରୁ ପାଶ୍ଚାତ୍ୟରାଷ୍ଟ୍ର ଭ୍ରମଣରେ ଆସିଛନ୍ତି। ସେ ଦୃଷ୍ଟିରୁ ହୋଟେଲରେ ବସି ଆରାମ କରିବା ଅପେକ୍ଷା ବୁଲାବୁଲି ଉପରେ ଅଧିକ ଗୁରୁତ୍ୱ ଦେବା ଦରକାର। ଯେତେ ବୁଲିବେ, ସେତେ ଦେଖିବେ ଓ ଯେତେ ଦେଖିବେ ସେତେ ଜାଣିବେ। ପାଶ୍ଚାତ୍ୟ ରାଷ୍ଟ୍ରରେ ସମୟାନୁବର୍ତ୍ତିତା ହେଉଛି ବଡ଼କଥା। ଆପଣମାନେ ମୋ ସହିତ ସହଯୋଗ କରିବାକୁ ଅନୁରୋଧ କରୁଛି।" ମେରୀଙ୍କ କଥା ପ୍ରଥମେ ଟିକିଏ ଅଡ଼ୁଆ ଲାଗିଥିଲେ ବି ଆମ ସମସ୍ତଙ୍କ ପାଇଁ ତାହା ଉପଦେଶ ସଦୃଶ ଥିଲା। ଆମେ ତାଙ୍କ ଅନୁରୋଧକୁ ସମ୍ମାନର ସହିତ ଗ୍ରହଣ କରି ନିର୍ଦ୍ଧାରିତ କାର୍ଯ୍ୟକ୍ରମ ସହିତ ସହଯୋଗ କରିବୁ ବୋଲି ପ୍ରତିଶ୍ରୁତି ଦେଲାରୁ ତାଙ୍କ ମୁହଁରେ ସ୍ମିତହାସ୍ୟ ଦେଖାଦେଇଥିଲା। ସେ ଆମକୁ କୃତଜ୍ଞତା ଜଣାଇ କହିଲେ, "ଆମଷ୍ଟରଡାମ୍ ସହର ଏକ ଚଳଚଞ୍ଚଳ ସହର। ସହରଟି ସମୁଦ୍ର ପତନଠାରୁ ତିନି ମିଟର ନିମ୍ନରେ ଅବସ୍ଥିତ। ସହରର ଗୋଟିଏ ପଟରେ ସମୁଦ୍ର ଓ ଅନ୍ୟପଟେ ଆମଷ୍ଟର୍ ନଦୀ। ଆମଷ୍ଟର୍ ନଦୀ ଉପରେ ଡ୍ୟାମ୍ କରି ଏହି ସହର ପ୍ରତିଷ୍ଠା କରାଯାଇଥିବାରୁ ସହରର ନାମ ଆମଷ୍ଟରଡାମ୍ ରଖାଯାଇଥିଲା।"

## କେନାଲରେ ନୌକାବିହାର

ଆମଷ୍ଟରଡାମ୍ ସହର ଭିତରେ ଅନେକଗୁଡ଼ିଏ କେନାଲ ବୁଢ଼ିଆଣୀ ଜାଲ ଭଳି ଚାରିଆଡ଼େ ବିଛାଡ଼ି ହୋଇଯାଇଥିଲା। କେନାଲର ଲମ୍ବା ପ୍ରାୟ ଶହେ କିଲୋମିଟର ଏବଂ ତା ଉପରେ ହଜାରେଟି ପୋଲ ଥିଲା। ୧୭ଶ ଶତାବ୍ଦୀରେ ଖୋଳାଯାଇଥିବା ଏହି କେନାଲ୍‌ଗୁଡ଼ିକ ମଧ୍ୟରୁ କେତେକର ନାମ ସମ୍ରାଟ୍, ଜେଣ୍ଟଲ୍‌ମ୍ୟାନ୍, ରାଜପୁତ ଇତ୍ୟାଦି

ରଖାଯାଇଥିଲା। ସେତେବେଳେ ବିଦେଶାଗତ ପର୍ଯ୍ୟଟକମାନଙ୍କୁ ନୌକାରେ କେନାଲରେ ବୁଲାଇବା ଅନ୍ୟତମ ଆକର୍ଷଣ ଥିଲା। ପର୍ଯ୍ୟଟକମାନଙ୍କୁ ଖୁସି ରଖିବାର ଆମଷ୍ଟରଡାମବାସୀ ଆନନ୍ଦ ଅନୁଭବ କରୁଥିଲେ।

ଆମ ଦେଶରେ ନୌକା କହିଲେ ଯାହା ବୁଝାଏ, ସେ ଦେଶରେ ନୌକା ତା'ଠାରୁ ଭିନ୍ନ। ନୌକାର ବାଡ଼ କାଚରେ ତିଆରି। ଉପରେ ସୁଦୃଶ୍ୟ ଛାତ। ତଳେ ମନୋରମ ଗାଲିଚା। ବସିବା ପାଇଁ କୁସନ୍ ଲଗା ଚଉକି। ମଝିରେ ଟିପୟ। ପ୍ରତ୍ୟେକ ନୌକାରେ ୨୫/୩୦ଜଣ ପର୍ଯ୍ୟଟକ ବସିବାପାଇଁ ସ୍ଥାନ ଥିଲା। ନୌକାଗୁଡ଼ିକ ଡିଜେଲ୍‌ଚାଳିତ। ବୋଟ୍‌ରେ ବୁଲିବା ପାଇଁ ଆମପାଇଁ ଆକର୍ଷଣୀୟ ନଥିଲେ ବି ଆମ ଭିତରେ ଏପରି କେତେକ ବନ୍ଧୁ ଥିଲେ, ଯେଉଁମାନେ ଜୀବନରେ କେବେ ହେଲେ ନୌକାରେ ବସିନଥିଲେ। ସେମାନେ ନୌକାର ସାଜସଜ୍ଜା ଓ କେନାଲରେ ବୁଲିବା କାର୍ଯ୍ୟକ୍ରମରେ ବିଶେଷ ମୁଗ୍ଧ ହୋଇଯାଇଥିଲେ।

ଆମ୍‌ଷ୍ଟର୍‌ଡାମ୍‌ବାସୀ ଭଲଭାବରେ ଇଂରାଜୀ ବୁଝୁନଥିଲେ ବି ଭାବର ଆଦାନପ୍ରଦାନରେ ବିଶେଷ କିଛି ଅସୁବିଧା ହେଉନଥିଲା। ତା'ଛଡ଼ା ଆମ ଗାଇଡ୍ ମେରୀ ପ୍ରାୟ ସବୁ ପାଶ୍ଚାତ୍ୟ ରାଷ୍ଟ୍ରର ଭାଷା ସହିତ ଊଣାଅଧିକେ ପରିଚିତା ଥିଲେ। ତେଣୁ କୌଣସି ସ୍ଥାନରେ ଆମପାଇଁ କିଛି ଅସୁବିଧା ନଥିଲା। ମେରୀ ଆମର ଆତ୍ମୀୟ ସଦୃଶ ସବୁକଥା ବୁଝୁଥିଲେ।

ଆମ ଦଳରେ ୨୪ଜଣ ସଦସ୍ୟ ଥିବାରୁ ଆମେ ଆଉ କାହାକୁ ଅପେକ୍ଷା ନକରି ଗୋଟିଏ ନୌକା ଭଡ଼ାରେ ନେଇଗଲୁ। ଗାଇଡ୍ ମେରୀ ଓ କୋଚ୍ ଡ୍ରାଇଭର୍ ଟମ୍‌ଙ୍କ ସହିତ ସୀତା ଟ୍ରାଭେଲ୍‌ସର ସିରାଜ ସବୁ ବ୍ୟବସ୍ଥା କରିଦେଲେ। ଆମକୁ ନୌକାରେ ଯିବାପାଇଁ ରିହାତିହାରରେ ପଚାଶ ଡଲାର ଦେବାକୁ ପଡ଼ିଲା। ନୌକାଘାଟରେ ପର୍ଯ୍ୟଟନ ସଂସ୍ଥା ପକ୍ଷରୁ ସବୁକଥା ନିୟନ୍ତ୍ରଣ କରାଯାଉଥିଲା। କେଉଁ ନୌକା କେତେବେଳେ ଛାଡ଼ିବ, କେତେ ବାଟ ଯିବ ଓ କେତେବେଳେ ଫେରିବ, ସବୁକଥା ସେଠାରେ ଲେଖାହୋଇ ରହୁଥିଲା। ସବୁକଥାରେ ନିୟନ୍ତ୍ରଣ ଥିବାରୁ ବିଶୃଙ୍ଖଳା ସୃଷ୍ଟି ହେବାର ଅବକାଶ ନଥିଲା।

ଆବଶ୍ୟକ ସିଗ୍‌ନାଲ୍ ମିଳିବା ପରେ ଆମ ନୌକାଟି ଗନ୍ତବ୍ୟପଥରେ ଚାଲିଲା। କେନାଲରେ ଅନେକ ପର୍ଯ୍ୟଟକ ନୌକାରେ ଭ୍ରମଣ କରୁଥିଲେ। କିଛିବାଟ ଯିବା ପରେ ମେରୀ ନୌକାରେ ଥିବା ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କ'ଣ କହିଲେ। ତା'ପରେ ଆମକୁ କଫି ପିଇବାକୁ ମିଳିଲା। କଫି ପିଇବା ଭିତରେ ଆମ ନୌକାଟି ଆମଷ୍ଟର୍ ନଦୀରେ ପହଞ୍ଚିଲା। ନଦୀରେ ନୌକାବିହାର ବାସ୍ତବରେ ଅମୋଦଦାୟକ ହୋଇଥିଲା; କେତେକ ବନ୍ଧୁ ନଦୀର ବିଶାଳତାରେ ଭୟଭୀତ ହେବାରୁ ଆମେ ଆଉ ଅଧିକ ବାଟ ଅଗ୍ରସର ନ ହୋଇ ଫେରିବାକୁ ସ୍ଥିରକଲୁ।

ନୌକାରେ ଯିବା ସମୟରେ ମୃଦୁ ଇଂରାଜୀ ସଙ୍ଗୀତର ମୂର୍ଚ୍ଛନା ଯାତ୍ରାକୁ ଅଧିକ ମଧୁମୟ କରିଥିଲା । ନେଦରଲାଣ୍ଡବାସୀ କିପରି ସାହସୀ ଓ କର୍ମଠ ସେ ସମ୍ପର୍କରେ ମେରୀ ଆମକୁ ବୁଝାଇଥିଲେ । ନୌକା ଫେରିବାବେଳକୁ ଘଣ୍ଟାରେ ସାତଟା ବାଜିଥିଲେ ବି ସେତେବେଳକୁ ସୂର୍ଯ୍ୟାସ୍ତ ହୋଇନଥିଲା । ମେରୀ ବୋଧହୁଏ ଆମ ମନର ସନ୍ଦେହ ବୁଝିପାରିଥିଲେ । ସେ କହିଲେ, "ଆମଷ୍ଟର୍‌ଡାମରେ ନଅଟା ପରେ ସୂର୍ଯ୍ୟାସ୍ତ ହୁଏ । ଆପଣମାନଙ୍କ ହାତରେ ଆହୁରି ଦିଘଣ୍ଟା ସମୟ ଅଛି । ଆପଣମାନେ ହୋଟେଲକୁ ଫେରିନଯାଇ ସହର ଭିତରେ କେତେକ ଦର୍ଶନୀୟ ସ୍ଥାନ ଦେଖିଗଲେ ଭଲହେବ ।" ଆମେ ସମସ୍ତେ ତାଙ୍କ କଥାରେ ରାଜି ହୋଇ ନୌକାରୁ ଓହ୍ଲାଇଲୁ ।

ଟମ୍ ଆଗରୁ କୋଚ୍ ସହିତ ଅପେକ୍ଷା କରିଥିଲେ । ଆମେ ପହଞ୍ଚିବା ପରେ ଆମକୁ ସ୍ୱାଗତ କରି ଦ୍ୱାର ଖୋଲିଦେଲେ । ପାଶ୍ଚାତ୍ୟ ରାଷ୍ଟ୍ରରେ ଆଦବ କାଇଦା ଓ ଭଦ୍ର ବ୍ୟବହାର ହେଉଛି ସବୁଠାରୁ ବଡ଼କଥା । ପ୍ରତ୍ୟେକ କାମ ପରେ ଧନ୍ୟବାଦ ଅର୍ପଣ ସେ ଲୋକଙ୍କର ଚଳଣିର ଏକ ଅଙ୍ଗ । ସମସ୍ତେ ବସିବା ପରେ କୋଚ୍‌ଟି ସହର ଭିତରକୁ ଚାଲିଲା । କୋଚ୍ ଷ୍ଟାର୍ଟ ହେବା ସହିତ ଗାଇଡ୍ ମେରୀଙ୍କ ମାଇକ୍ ମଧ୍ୟ ଷ୍ଟାର୍ଟ ହୋଇଗଲା । ସେ ଅନର୍ଗଳ କହିଚାଲିଥିଲେ । କଥା ମଝିରେ ମଝିରେ 'ଥାଙ୍କ୍ ୟୁ', 'ଥାଙ୍କ୍ ୟୁ ସୋ ମଚ୍' କହୁଥିଲେ ।

## 'ଇଣ୍ଡିଆନ୍ ତନ୍ଦୁରୀ'ରେ ପନିର୍‌ବଟର ମସଲା

ସହରରେ ବୁଲିଲାବେଳେ 'ଇଣ୍ଡିଆନ୍ ତନ୍ଦୁରୀ' ଲେଖାଥିବା ଏକ ସାଇନ୍‌ବୋର୍ଡ ଉପରେ ଆମ ଆଖିପଡ଼ିଲା । ଆମଷ୍ଟର୍‌ଡାମ୍‌ରେ ଇଣ୍ଡିଆନ୍ ତନ୍ଦୁରୀ କ'ଣ ବୋଲି ପଚାରିବାରୁ ଗାଇଡ୍ ମେରୀ କହିଲେ, "ଏହା ଗୋଟିଏ ଭାରତୀୟ ରେଷ୍ଟୁରାଣ୍ଟ । ଭାରତବର୍ଷର ଜଣେ ପଞ୍ଜାବୀ ଏହି ରେଷ୍ଟୁରାଣ୍ଟ୍‌ଟି କରିଛନ୍ତି । ଏସିଆ ମହାଦେଶରୁ ଯେତେ ପର୍ଯ୍ୟଟକ ଆମଷ୍ଟରଡାମ୍ ଆସନ୍ତି, ସେମାନଙ୍କୁ ମଧ୍ୟରୁ ଅଧିକାଂଶଙ୍କର ସେଠାରେ ଭିଡ଼ ହୁଏ । ଇଣ୍ଡିଆନ୍ ତନ୍ଦୁରୀରେ ତନ୍ଦୁରୀ ରୁଟି ସାଙ୍ଗକୁ ପନିର୍-ବଟର୍-ମସଲା, ଆଳୁକୋବି ତରକାରି, ଚିକେନ୍ ଦୋ ପିଆଜା, ତଡ଼କା, ସାଲାଡ଼, ପାମ୍ପଡ଼, ଧନିଆ ଚଟଣି ଇତ୍ୟାଦି ସବୁପ୍ରକାର ଭାରତୀୟ ଖାଦ୍ୟ ମିଳେ । ମାଲିକ ଦୀଲବର୍ ସିଂହ ଖୁବ୍ ଥଣ୍ଡା ମିଜାଜ୍‌ର ଲୋକ । ହସିହସି ସମସ୍ତଙ୍କୁ ସ୍ୱାଗତ କରନ୍ତି । ସମସ୍ତଙ୍କୁ ମନ ଖୁସିରେ ଖାଇବାକୁ ଦିଅନ୍ତି । ବିଶେଷକରି ଭାରତୀୟମାନଙ୍କୁ ଦେଖିଲେ ତାଙ୍କ ଆନନ୍ଦର ସୀମା ରହେନାହିଁ ।"

ଏତେଗୁଡ଼ିଏ ଭାରତୀୟ ଖାଦ୍ୟର ତାଲିକା ଶୁଣିବା ପରେ କାହାରି କାହାରି ପାଟି ଜକେଇ ଆସିଲା । ଆମେ ସ୍ଥିରକଲୁ କାଳବିଳମ୍ବ ନକରି ରାତ୍ରିଭୋଜନ ପାଇଁ ଆଗରୁ ବରାଦ କରିଦେବା ଭଲ । ସେଇଆ ହେଲା । ଆମ ପକ୍ଷରୁ କେ.ଏମ୍. ରାଏ ଯାଇ ତନ୍ଦୁରୀ

ରୁଟି, ତଡ଼କା, ପନିର୍‌-ବଟର୍‌-ମସଲା ଓ ଚିକେନ୍ ଅର୍ଡର୍ ବୁକ୍ କରିଦେଲେ। ଏତେ ସଂଖ୍ୟକ ଭାରତୀୟଙ୍କୁ ଏକାଠି ଦେଖି ସର୍ଦ୍ଦାରଜୀ ଖୁସି ହୋଇଗଲେ। ସାମାନ୍ୟ ହସି କହିଲେ, "କୋଇ ବାତ୍ ନହିଁ, ଆପ୍‌ଲୋଗ୍ ଜବ୍ ଭି ଆଇୟେ, ମେଁ ଖାନା ଖିଲାନେକେ ଲିୟେ ତୟାର୍ ହୁଁ।" ରାତ୍ରିଭୋଜନ ପାଇଁ ବରାଦ ଦିଆଯିବା ପରେ ଆମ ଭିତରେ ଅନେକ ନିଶ୍ଚିତ ହେଲେ। ଯାହା ହେଉ ଏତେଦିନ ପରେ ବିଦେଶରେ ମନମୁତାବକ ଖାଇବା ମିଳିବ।

ଆମଷ୍ଟରଡାମ୍ ସହରର ରାଜରାସ୍ତାରେ ଆମ କୋଚ୍‌ଟି ଗଲାବେଳେ ସୂର୍ଯ୍ୟାଲୋକ କ୍ରମେ କମିବାକୁ ଲାଗିଲା। ଆଠଟା ବାଜିଲା ପରେ ବି ଅନ୍ଧାର ହୋଇନଥିଲା। ଆମ ଭିତରୁ କେହିକେହି ପ୍ରସ୍ତାବ ଦେଲେ ଚାଲିଚାଲି ବୁଲିବାକୁ। ପ୍ରଥମେ ଗାଇଡ୍ ମିସ୍ ମେରୀ ସେ ପ୍ରସ୍ତାବ ସହିତ ଏକମତ ହୋଇନଥିଲେ। କିନ୍ତୁ ଆମ୍ଭମାନଙ୍କର ଆଗ୍ରହ ଦେଖି ସେ ଆଉ ଆପତ୍ତି କଲେନାହିଁ। କଥା ହେଲା, ହୋଟେଲ ଇଣ୍ଡିଆନ୍ ତନ୍ଦୁରୀ ପାଖରେ ଆମର କୋଚ୍‌ଟି ରହିବ। ମେରୀ ଆମ ସହିତ ନଯାଇ ସେ କୋଚ୍‌ରେ ବସିବେ ଏବଂ ଆମେ ଫେରି ଆସିବା ପରେ ଏକାଠି ରାତ୍ରିଭୋଜନ ପରେ ସେ ଫେରିଯିବେ। ଆମେସବୁ ଏକାଠି ନଯାଇ ଦୁଇଟି ଗ୍ରୁପ୍ ହୋଇଗଲୁ। ସ୍ଥିରହେଲା ଦଶଟା ପୂର୍ବରୁ ସମସ୍ତେ ରେଷ୍ଟୁରାଣ୍ଟ୍‌କୁ ଫେରିଆସିବେ।

କ୍ରମେ ସନ୍ଧ୍ୟା ନଇଁଆସୁଥିଲା। ମୁଁ ଲକ୍ଷ୍ୟକଲି ସୂର୍ଯ୍ୟାସ୍ତ ପରେ ରାଜରାସ୍ତାରେ ଜନଗହଳି ହଠାତ୍ କିପରି ବୃଦ୍ଧି ପାଇବାରେ ଲାଗିଲା। କିଛିବାଟ ଯିବାପରେ ମନରେ ପୁଣି ସନ୍ଦେହ ସୃଷ୍ଟି ହେଲା। ଭାବିଲି ନିକଟରେ କେଉଁଠି କିଛି ମେଳା ମଉଛବ ହେଉଛି ବୋଧହୁଏ, ନହେଲେ ଏତେ ଲୋକ ରାତିରେ ଚାଲି ଚାଲି ବୁଲୁଛନ୍ତି କାହିଁକି ? ବୁଲିଲାବାଲାଙ୍କ ଭିତରେ ଅଧିକାଂଶ ଯୁବକଯୁବତୀ। ସେମାନେ ନିଜନିଜ ଗାଡ଼ିରୁ ଓହ୍ଲାଇ ଅକୁଣ୍ଠିତ ଚିତ୍ତରେ ପରସ୍ପରକୁ ଆଲିଙ୍ଗନ କରି ବେପରୁଆ ଭାବରେ ରାସ୍ତାରେ ଚାଲୁଥିଲେ। ଦେଖିଲେ ମନେହେବ ସତେଯେପରି ନବବିବାହିତ ଦମ୍ପତ୍ତି। ହନିମୁନ୍ ଟ୍ରିପ୍‌ରେ ମନକୁ ହାଲୁକା କରିବା ଉଦ୍ଦେଶ୍ୟରେ ବୁଲୁଥିଲେ; କିନ୍ତୁ ପରେ ଖବର ନେବାରୁ ଜଣାଗଲା ଯେ, ସେମାନେ କେହି କାହାର ପରିଚିତ ନଥିଲେ। ନିଜ ମନ ଓ ଶରୀରକୁ ହାଲୁକା କରିବା ପାଇଁ ସେମାନେ ପ୍ରତ୍ୟହ ରାସ୍ତାରେ ଏକାଠି ହେଉଥିଲେ। ନିଜ ପସନ୍ଦ ମୁତାବକ ସାଥୀଟିଏ ବାଛି ତାଙ୍କ ସହିତ କିଛି ସମୟ ରୋମାନ୍ସ କରି ସେମାନେ ଘରକୁ ଫେରିଯାଉଥିଲେ। ସାଧାରଣ ସ୍ଥାନରେ ଖୋଲାଖୋଲି ଭାବରେ ପରସ୍ପରକୁ ଆଲିଙ୍ଗନ କରିବା କିମ୍ବା ଚୁମ୍ବନ ଆଦାନ ପ୍ରଦାନରେ ସେମାନଙ୍କ ମନରେ କୌଣସି ଦ୍ୱିଧା ନଥିଲା। ଜୀବନକୁ ଉପଭୋଗ କରିବା ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା।

ଆମଷ୍ଟରଡାମ୍ ସହର ବୁଲାବୁଲି ସରିଲାବେଳକୁ ଭାରତୀୟ ସମୟ ରାତି ଦଶଟ ହୋଇଥିଲେ ବି ସେଠାର ଅନ୍ଧାର ହୋଇନଥିଲା। କିନ୍ତୁ ଅଭ୍ୟାସ ଯୋଗୁଁ ଆମର ଡିନର ଖାଇବା ସମୟ ହୋଇଥିଲା। ଆମେ ସିଧା ଚାଲିଲୁ 'ଇଣ୍ଡିଆନ୍ ତନ୍ଦୁରୀ'କୁ। ସର୍ଦ୍ଦାରଜୀ ଆମକୁ ଦେଖି ଖୁସିହୋଇ ରେଷ୍ଟୁରାଣ୍ଟରେ ଆମପାଇଁ ଜାଗା କରିଦେଲେ। ସାଙ୍ଗେସାଙ୍ଗେ ସବୁ ଜିନିଷ ଫ୍ରାଏ ହୋଇଗଲା। ସେ ପାଖରେ ସାଲାଡ୍ କଟା ଚାଲିଥିଲା। ଭାଟି ପାଖରେ ତନ୍ଦୁରୀ ରୁଟି। ଦଶମିନିଟ୍ ମଧ୍ୟରେ ଖାଇବାଜିନିଷସବୁ ଟେବୁଲରେ ଲାଗିଗଲା। ଦୀର୍ଘଦିନ ପରେ ନିଜ ଖାଦ୍ୟ ପାଇ ସମସ୍ତେ ଖୁସି ହୋଇଗଲେ। ମନେହେଲା ସତେଯେପରି ନିଜ ଘରେ ବସି ଖାଉଥିଲେ। କୋଉ ଜିନିଷର କେତେ ଦାମ୍ ସେଥିପ୍ରତି କାହାରି ଖାତିର୍ ନଥିଲା। ମନଖୁସିରେ ରାତ୍ରିଭୋଜନ ଶେଷ ହେଲାପରେ ଆମେ ପୂର୍ବନିର୍ଦ୍ଧାରିତ ହୋଟେଲକୁ ବାହାରିଲୁ।

## ବିନା ବେଡ୍‌ରେ ବେଡ୍‌ରୁମ୍

ସୀତା ଟ୍ରାଭେଲସ୍ ଆମ ପାଇଁ ହୋଟେଲରେ ୧୨ଟି ରୁମ୍ ରିଜର୍ଭ କରିଥିଲେ। ସେଥିପାଇଁ ଆମର ଆଉ ବିଳମ୍ବ ହେଲାନାହିଁ। ପନ୍ଦରମିନିଟ୍ ମଧ୍ୟରେ ରେଜିଷ୍ଟ୍ରେସନ୍ କାର୍ଯ୍ୟ ଶେଷ ହୋଇ ଆମକୁ ରୁମ୍ ଚାବି ମିଳିଗଲା। ଗୋଟିଏ ରୁମ୍‌ରେ ଦୁଇଜଣ ଲେଖାଁ ରହିବା କଥା। କିଏ କହା ସାଙ୍ଗରେ ରହିବେ ଆଗରୁ ସ୍ଥିର ହୋଇ ସାରିଥିଲା। ଓଡ଼ିଶାରୁ ମୁଁ ଏକମାତ୍ର ପ୍ରତିନିଧି ଥିବାରୁ ମୋର ରୁମ୍‌ମେଟ୍ ଯେଉଁ ରାଜ୍ୟର ହେଲେ ବି ମୋର ସେଥିରେ କିଛି ଭାବିବାର ନଥିଲା। ଆମେ ସବୁ ଚାବି ଖୋଲି ନିଜ ନିଜ ରୁମ୍‌ରେ ପଶିଲୁ। ରୁମ୍ ବେଶ୍ ପ୍ରଶସ୍ତ। ରୁମ୍‌ରେ ଆଧୁନିକତାର ଛାପ। ୱାଲ୍ ଟୁ ୱାଲ୍ କାର୍ପେଟ୍, ମଝିରେ ଦାମୀ ସୋଫା ଓ ସେଣ୍ଟର୍ ଟେବୁଲ। ରୁମ୍‌ର ଗୋଟିଏ କୋଣରେ ରଙ୍ଗିନ୍ ଟି.ଭି., ଇଣ୍ଟରକମ୍ ଟେଲିଫୋନ୍। କିନ୍ତୁ ଇଏ କ'ଣ? ଏତେ ବଡ଼ ରୁମ୍, ଏତେସବୁ ସାଜସଜା, ଅଥଚ ଶୋଇବା ପାଇଁ ବେଡ୍ ନାହିଁ! ତେବେ ଥଣ୍ଡାରେ କ'ଣ କାର୍ପେଟ୍ ଉପରେ ଶୋଇବାକୁ ପଡ଼ିବ? ମନରେ ସୀତା ଟ୍ରାଭେଲସ୍ ଉପରେ ବିରକ୍ତି ଭାବ ପ୍ରକାଶପାଇଲା। ଏତେବଡ଼ ନାମକରା ଟ୍ରାଭେଲ ଏଜେଣ୍ଟ, ଅଥଚ ଯେଉଁ ହୋଟେଲ ରୁମ୍ ବୁକ୍ କରିଥିଲେ, ବେଡ୍ କିପରି ନଥିଲା?

ରୁମ୍‌ରେ ବେଡ୍ ନଦେଖି ମୋ ମନରେ ଯେଉଁ ସଂଶୟ ଜାତ ହୋଇଥିଲା, ଉଣା ଅଧିକେ ଅନ୍ୟମାନଙ୍କର ମଧ୍ୟ ସେପରି ଘଟିଥିଲା। ସେଇ ଘଟଣାକୁ କେନ୍ଦ୍ରକରି ଅଳ୍ପ ସମୟ ପାଇଁ କିଛି ଗୁଞ୍ଜରଣ ସୃଷ୍ଟିହୋଇଥିଲା। କତେକଙ୍କର ଧାରଣା ହେଲା ବୋଧହୁଏ ଶୋଇଲାବେଳେ ଖଟ ବିଛଣା ମିଳିବ। ଏମିତି ଭାବନାରେ କିଛି ସମୟ ଯିବାପରେ

ବମ୍ବେର ବନ୍ଧୁମାନେ ଆମ ମନର ସଂଶୟ ଦୂରକଲେ। ବମ୍ବେ ହେଉଛି ଭାରତବର୍ଷର ବ୍ୟାବସାୟିକ ରାଜଧାନୀ। ସେଠାରେ ବେପାର ବଣିଜ ବେଶି ଚାଲେ। ଅଧିକ ଲୋକଙ୍କ ସମାଗମ ଯୋଗୁଁ ଜାଗାର ଅଭାବ। ସେଥିପାଇଁ କମ୍ ଜାଗାକୁ କିପରି ଅଧିକ ବ୍ୟବହାର କରାଯାଇପାରିବ ସେଥିରେ ସେମାନେ ବେଶ୍ ଅଭ୍ୟସ୍ତ। ଆମେ ସବୁ ବେଡ୍ ସନ୍ଧାନରେ ଲାଗିଥିଲାବେଳେ ବମ୍ବେରେ ଅବସ୍ଥାନ କରୁଥିବା 'ନବଭାରତ ଟାଇମ୍ସ୍'ର ସ୍ୱତନ୍ତ୍ର ପ୍ରତିନିଧି ପ୍ରକାଶ ଦୁବେ ଆସି କହିଲେ, "ଆପ୍‌ଲୋଗ୍ କ୍ୟା ଢୁଣ୍ଡ୍ ରହେ ହେଁ, ତକ୍ତା ଦେବାଲ୍ କେ ଅନ୍ଦର୍ ଚିପ୍‌କା ହୁଆ ହୈ। ଆପ୍ ସୁଇଚ୍ ଦବାଇୟେ, ତବ୍ ମାଲୁମ୍ ହୋଗା।" ଏକଥା କହି ସେ କାନ୍ଥରେ ଥିବା ଗୋଟିଏ ସୁଇଚ୍‌ରେ ହାତ ମାରିଲେ। ସାଙ୍ଗେ ସାଙ୍ଗେ ବିନା ଶବ୍ଦରେ କାନ୍ଥ ଭିତରୁ ଦୁଇଟି ବେଡ୍ ବାହାରି ଆସିଲା। ଆମକୁ ସବୁ ସିନେମାର ଦୃଶ୍ୟଭଳି ମନେ ହେଉଥିଲା। କାନ୍ଥରୁ ବେଡ୍ ଦୁଇଟି ବାହାରି ଆସିଲା ପରେ ସେଠାରେ ଦୁଇଟି 'ୱାର୍ଡରୋବ୍' ଦେଖାଦେଲା।

ଖଟ ଉପରେ ନରମ ବିଛଣା ସାଙ୍ଗକୁ ଗରମ କମ୍ବଳ ଓ ମୁଲାୟମ୍ ତକିଆ। ଖଟ ଉପରେ ବସିଲେ ବିଛଣା ଅନ୍ତତଃ ଛଅଇଞ୍ଚ ଦବିଯାଉଥିଲା। ଭାରତୀୟ ଖାଦ୍ୟ ସାଙ୍ଗକୁ ଉତ୍ତମ ଶୋଇବା ବ୍ୟବସ୍ଥାରେ ମନ ଭିତରର ବିରକ୍ତି ଭାବ ମନକୁ ମନ କୁଆଡ଼େ ଉଭେଇଗଲା। ଆମେ ଶୋଇବା ପୂର୍ବରୁ ହୋଟେଲ ଲାଉଞ୍ଜ୍‌ରେ ଏକ ବୈଠକ ବସିଲା। ପାଶ୍ଚାତ୍ୟ ରାଷ୍ଟ୍ରର ପ୍ରଥମ ଭ୍ରମଣ ହୋଇଥିବାରୁ ନିଜନିଜ ଭିତରେ ଭାବର ଆଦାନ ପ୍ରଦାନ ସାଙ୍ଗକୁ ଭବିଷ୍ୟତ କାର୍ଯ୍ୟସୂଚୀ ସମ୍ପର୍କରେ ସମସ୍ତଙ୍କୁ ପରିଚିତ କରିବା ଉଦ୍ଦେଶ୍ୟରେ ବୈଠକର ଆୟୋଜନ ହୋଇଥିଲା। ବିକ୍ରମ ରାଓ ଆମକୁ ବୁଝାଇଦେଲେ ଯେ, "ପାଶ୍ଚାତ୍ୟ ରାଷ୍ଟ୍ରରେ ସବୁ ଜିନିଷ କିଣିବାକୁ ହୁଏ। ରହିବା, ଖାଇବା, ଶୋଇବା, ବୁଲିବା ସବୁ ପାଇଁ ପଇସା ଖର୍ଚ୍ଚ। ସୁତରାଂ ପ୍ରତି ମୁହୂର୍ତ୍ତରେ ସେଥିରୁ ନୂତନ ଅନୁଭୂତି ଅର୍ଜନ କରିବା ଆବଶ୍ୟକ। ସମୟ ସହିତ ତାଳ ନଦେଲେ ସବୁ ଗୋଳମାଳ ହୋଇଯିବ। ଗିଲାକ୍ କରିବାକୁ ଜୀବନରେ ବହୁ ସୁଯୋଗ ମିଳିବ। କିନ୍ତୁ ପାଶ୍ଚାତ୍ୟ ରାଷ୍ଟ୍ର ଭ୍ରମଣରେ ଆସିବା ପାଇଁ ହୁଏତ ସମସ୍ତଙ୍କୁ ଆଉ ଥରେ ସୁଯୋଗ ମିଳି ନପାରେ।" ବୈଠକରେ ଯୋଗ ଦେଇଥିବା ଆମ ଗାଇଡ୍ ମେରୀ ମଧ୍ୟ ଆମକୁ ବିନମ୍ରତାର ସହିତ ଜଣାଇଦେଲେ ଯେ, ସମୟର ସ୍ୱଚ୍ଛତା ଦୃଷ୍ଟିରୁ ଆମ୍ଭେମାନେ ଯେଭଳି ସମୟ ସମ୍ପର୍କରେ ସଚେତନ ରହୁ।

ଆଲୋଚନା ଶେଷ ବେଳକୁ ଭାରତୀୟ ସମୟ ରାତି ବାରଟା। ଆଉ ବିଳମ୍ବ ନକରି ଯିଏ ଯାହା ରୁମ୍‌କୁ ଚାଲିଗଲେ। ଦିନଯାକ ଏପାଖ ସେପାଖ ହେବା ଫଳରେ ଶରୀର ଥକିଯାଇଥିଲା। ବିଛଣା ଧରୁ ଧରୁ ନିଦ ହୋଇଗଲା। ସକାଳେ ନିଦ ଭାଙ୍ଗିବା ପାଇଁ ହୁଏତ ବିଳମ୍ବ ହୋଇଥାନ୍ତା। ମାତ୍ର କଲିଂ ବେଲ୍ ବାଜିବାରୁ ନିଦ ଭାଙ୍ଗିଗଲା। କବାଟ ଖୋଲି ଦେଖିଲାବେଳକୁ ଆମ ଭିତରୁ ଅନେକ ପ୍ରସ୍ତୁତ ହୋଇସାରିଥିଲେ।

ଯାହାହେଉ, ଅଳ୍ପ ସମୟ ଭିତରେ ବାହାରିବାକୁ ପଡ଼ିଲା। ସେଦିନ ଆମର ନେଦରଲାଣ୍ଡର ରାଜଧାନୀ ହେଗ୍ ସହରକୁ ଯିବାର ଥିଲା। ଆମଷ୍ଟରଡାମ୍‌ଟି ଆଧୁନିକ ସହର ହେଲେ ବି ହେଗ୍‌ରେ ନେଦରଲାଣ୍ଡର ରାଜଧାନୀ ଥିଲା। ତା'ଛଡ଼ା ସେଠାରେ 'ଇଣ୍ଟରନ୍ୟାସ୍‌ନାଲ୍ କୋର୍ଟ ଅଫ୍ ଜଷ୍ଟିସ୍' ରହିଥିଲା। ପ୍ରଥମେ କଥା ହୋଇଥିଲା ଆମଷ୍ଟର୍‌ଡାମ୍‌ରୁ ହେଗ୍‌କୁ ଟ୍ରେନ୍‌ରେ ଯିବାପାଇଁ। କିନ୍ତୁ ପରେ ସ୍ଥିର ହେଲା କୋଚ୍‌ରେ ଗଲେ ସୁବିଧା ହେବ। ଗାଇଡ୍ ମେରୀ ଦର୍ଶାଇଥିଲେ ଏ ଦୁଇଟି ସହର ମଧ୍ୟରେ ଥିବା ଅନେକଗୁଡ଼ିଏ ପୃଥିବୀ ପ୍ରସିଦ୍ଧ ଶିଳ୍ପ କାରଖାନା ପର୍ଯ୍ୟଟକମାନଙ୍କ ପାଇଁ ମୁଖ୍ୟ ଆକର୍ଷଣ। କୋଚ୍‌ରେ ଗଲେ ସେଗୁଡ଼ିକ ଦେଖିବାର ସୁଯୋଗ ମିଳିପାରିବ।

## ଆମଷ୍ଟର୍‌ଡାମ୍‌ର କାଠ ଜୋତା

ଯେତେ ତରବର ହେଲେ ବି ବାହାରିଲା ବେଳକୁ ନଅଟା ବାଜିଗଲା। ପୂର୍ବରୁ କୋଚ୍‌ର ଡ୍ରାଇଭର ଓ ଗାଇଡ୍ ଅପେକ୍ଷା କରିଥିଲେ। ଘଟଣାଟି କାହିଁକି କେମିତି ଟିକିଏ ଅଡୁଆ ଲାଗିଲା। ଆମକୁ ସାହାଯ୍ୟ କରିବାକୁ ଯେଉଁମାନେ ଆସିଛନ୍ତି ସେମାନେ ଆସି ଆଗରୁ ପହଞ୍ଚିଯାଇଥିଲେ, ଅଥଚ ଆମର ଆସିବାରେ ବିଳମ୍ବ ହେଲା। ଆମେ ଆସି କୋଚ୍ ପାଖରେ ପହଞ୍ଚିଲା ପରେ ଗାଇଡ୍ ମେରୀ 'ନମସ୍ତେ' କହି ଆମକୁ ଅଭିବାଦନ ଜଣାଇ ଦିନସାରା ଅଧିକ କାର୍ଯ୍ୟକ୍ରମ ଥିବାରୁ ସମୟାନୁବର୍ତ୍ତୀ ହେବାକୁ ଆଉଥରେ ଅନୁରୋଧ କଲେ। ସେ ଯେତିକି ନମ୍ରତାର ସହିତ ଅନୁରୋଧ କରୁଥିଲେ, ଆମେ ସେତିକି ପରିମାଣରେ ଅପମାନିତ ବୋଧ କରୁଥିଲୁ। ଯାହାହେଉ ଅଳ୍ପ ସମୟ ପରେ ଆମ କୋଚ୍ ଷ୍ଟାର୍ଟ ହେଲା। ସେଥିସହିତ ଗାଇଡ୍ ମେରୀଙ୍କ ଧାରାବିବରଣୀ ମଧ୍ୟ ଆରମ୍ଭ ହୋଇଗଲା। ଆମଷ୍ଟରଡାମ୍‌ର କଳକାରଖାନା ସହିତ ହେଗ୍ ସହରର ଭୂଗୋଳ, ଇତିହାସ ସମ୍ପର୍କରେ ସେ କହିଚାଲିଥିଲେ। ହେଗ୍‌ରେ ଥିବା 'ଇଣ୍ଟରନ୍ୟାସ୍‌ନାଲ୍ କୋର୍ଟ ଅଫ୍ ଜଷ୍ଟିସ୍'ର ମୁଖ୍ୟ ଭାବରେ ଜଣେ ଭାରତୀୟ ଥିବା କଥା ଶୁଣି ଆମେ ଆନନ୍ଦିତ ହୋଇଥିଲୁ।

ହୋଟେଲ ଛାଡ଼ିବାର ଅଳ୍ପ ସମୟ ପରେ ଗାଇଡ୍ ମେରୀ କୋଚ୍‌କୁ ରଖିବା ପାଇଁ ଡ୍ରାଇଭର୍ ଟମ୍‌ଙ୍କୁ ଇଙ୍ଗିତ ଦେଲେ। ଆମେ ପ୍ରଥମେ କିଛି ବୁଝିପାରିଲୁ ନାହିଁ। ଯିଏ କିଛି ସମୟ ଆଗରୁ ଆମକୁ ସମୟ ସମ୍ପର୍କରେ ସଚେତନ କରାଉଥିଲେ, ସିଏ ନିଜେ ପୁଣି ଗାଡ଼ି ଅଟକାଇଲେ। ମେରୀ ବୋଧହୁଏ ଆମ ମନର ସଂଶୟ ସମ୍ପର୍କରେ ସୂଚନା ପାଇଗଲେ। କହିଲେ, "କ୍ଷମା କରିବେ, ଏଇ ନିକଟରେ ପୃଥିବୀପ୍ରସିଦ୍ଧ କାଠଜୋତା କାରଖାନା ରହିଛି। ତାକୁ ଦେଖିଲେ ଆପଣମାନେ ନିଶ୍ଚୟ ଆନନ୍ଦିତ ହେବେ।" ଆମେ ଭାବିଲୁ କାଠରେ ପୁଣି ଜୋତା କ'ଣ? ଜୋତା ତ ଚମଡ଼ାରେ ତିଆରି ହୁଏ। ମେରୀ

ବୁଝାଇ ଚାଲିଥାନ୍ତି, "ଏ କାରଖାନାରେ ଉଭୟ ପୁରୁଷ ଓ ମହିଳାମାନଙ୍କ ପାଇଁ କାଠରେ ଜୋତା ତିଆରି ହୁଏ। ସ୍ଥାନୀୟ ଅଧିବାସୀଙ୍କର ଏ ଜୋତା ଖୁବ୍ ପ୍ରିୟ। ତା'ଛଡ଼ା ଅନ୍ୟାନ୍ୟ ରାଷ୍ଟ୍ରରେ ମଧ୍ୟ ସେ ଜୋତାର ଚାହିଦା ରହିଛି।"

କୋଚ୍‌ରୁ ଓହ୍ଲାଇ ଆମେ ଜୋତା କାରଖାନାକୁ ଗଲୁ। କି ବିରାଟ କାରଖାନା! ଶହ ଶହ ଲୋକ କାମରେ ନିଯୁକ୍ତ; କିନ୍ତୁ କୋଳାହଳ କିମ୍ବା ହୋହାଲ୍ଲା କିଛି ନଥିଲା। ଯିଏ ଯାହା କାମରେ ବ୍ୟସ୍ତ ଥିଲେ। ଆମକୁ ଦେଖି ସେମାନଙ୍କର ବିଶେଷ କିଛି ପ୍ରତିକ୍ରିୟା ସୃଷ୍ଟି ହୋଇନଥିଲା। କାଠଜୋତା କହିଲେ ଜୋତାର ତଳଟି ରଙ୍ଗବେରଙ୍ଗ କାଠରେ ତିଆରି ଏବଂ ଉପରେ ଚମଡ଼ାର ଫିତା। ପୁଅଝିଅଙ୍କ ପାଇଁ ସମାନ ଧରଣର ଡିଜାଇନ୍। କାଠଜୋତା ଦେଖି ମୋର ମନେପଡ଼ିଗଲା ଆମ ଦେଶରେ କିଭଳି ଲୋକେ ଆଗରୁ କଠଉ ପିନ୍ଧି ଚଳପ୍ରଚଳ ହେଉଥିଲେ। ପାଶ୍ଚାତ୍ୟ ରାଷ୍ଟ୍ରର ତଥାକଥିତ ଆଧୁନିକତାର ଶିକାର ହୋଇ ଆମେ ଆମ ସଂସ୍କୃତିକୁ ଭୁଲି ଯାଇଥିଲାବେଳେ ସେମାନେ କିପରି ଆମ ସଂସ୍କୃତିର ମୂଳଦୁଆ ଉପରେ ସୌଧ ନିର୍ମାଣ କରୁଥିଲେ, ସେକଥା ଭାବିଲାବେଳକୁ ଲଜ୍ଜା ଲାଗିଲା। ସେ ସମୟରେ ଆମ ଦେଶରେ ଏହି କାଠଜୋତା ପ୍ରଚଳନ ଆରମ୍ଭ ହୋଇଯାଇଥିଲା; ବିଶେଷକରି କଲେଜରେ ପଢୁଥିବା ପୁଅଝିଅଙ୍କ ମଧ୍ୟରେ ଏହା ଖୁବ୍ ଆଦୃତ ହୋଇଥିଲା। ଆମ ଭିତରୁ କିଛି ବନ୍ଧୁ ସେଠାରୁ କାଠଜୋତା କିଣିଲେ।

ଜୋତା କାରଖାନାରୁ ଫେରି କିଛି ବାଟ ଯିବା ପରେ ଆଗରେ 'ଚାଇନା କ୍ଲେ' କାରଖାନା ପଡ଼ିବ ବୋଲି ଗାଇଡ୍ ଆମକୁ ସୂଚନା ଦେଲେ। ଚାଇନାକ୍ଲେ କାରଖାନା କହିଲେ ମୋ ମନରେ ଥିଲା ବାରଙ୍ଗସ୍ଥିତ 'ଓଡ଼ିଶା ଇଣ୍ଡଷ୍ଟ୍ରୀ କାରଖାନା', ଯେଉଁଠି କିଛିବର୍ଷ ପୂର୍ବେ କପ୍, ପ୍ଲେଟ୍, କ୍ୱାଟର୍ ପ୍ଲେଟ୍ ଇତ୍ୟାଦି ତିଆରି ହେଉଥିଲା। ସେଠାରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ଶ୍ରମିକମାନେ କାମ କରୁଥିଲେ। ଉପରେ ଭଙ୍ଗାଟିଣର ଛାତ। ତଳ ମାଟି, କାନ୍ଥ ମଧ୍ୟ ଟିଣରେ ତିଆରି। ଖରାଦିନେ ତଳ, ଉପର ସବୁ ତାତିଯାଉଥିଲା। ତା'ଭିତରେ ପେଟ ବିକଳରେ କେତୋଟି କଳା ମଣିଷ ଫୁଙ୍ଗୁଳା ଦେହରେ ଝାଳନାଳ ହୋଇ ଖଟୁଥିଲେ। ଆମେ ପିଲାଦିନେ ସ୍କୁଲ୍‌ରେ ପଢ଼ିଲାବେଳେ ସାଇକେଲ୍‌ରେ ବାରଙ୍ଗ ବୁଲିବାକୁ ଯାଇ କାଚ କାରଖାନା ପାଖରେ ଥିବା କପ୍-ପ୍ଲେଟ୍ ତିଆରି କାରଖାନା ଦେଖୁଥିଲୁ। ସେଦିନୁ ମନଭିତରେ ସେ ଛବିଟି ଜୀବନ୍ତ ହୋଇ ରହିଥିଲା।

ଗାଇଡ୍ ମେରୀଙ୍କ ଇଙ୍ଗିତରେ ଡ୍ରାଇଭର୍ ଟମ୍ କୋଚ୍‌ର ବ୍ରେକ୍ ଦେଲେ। କୋଚ୍‌ଟି ଗୋଟିଏ କାରଖାନା ସାମନାରେ ରହିଲା। ଆମେ ଆଉ ବିଳମ୍ବ ନକରି ଫଟାଫଟ୍ ଓହ୍ଲାଇପଡ଼ିଲୁ। ଚାଇନା କ୍ଲେ କାରଖାନା ସମ୍ପର୍କରେ ଆଗରୁ ମନରେ ଯେଉଁ ଧାରଣା ଥିଲା, ଆମଷ୍ଟରଡାମ୍‌ରେ ଥିବା କାରଖାନାଟି ଦେଖି ସେ ଧାରଣା ବଦଳିଗଲା। କାରଖାନାଟି ଅଟୋମେଟିକ୍। ଯେଉଁ କର୍ମଚାରୀମାନେ ସେ କାରଖାନରେ କାମ କରୁଥିଲେ, ସମସ୍ତଙ୍କର

ଦେହରେ ଏକା ରକମର ପୋଷାକ ଥିଲା। ଗୋଡ଼ରେ ଜୋତା ଓ ମୋଜା। କାରଖାନାର ମ୍ୟାନେଜର୍ ଆମକୁ ଦେଖି ବହୁତ୍ ଖୁସି ହେଲେ। କାରଖାନାରେ ଭିନ୍ନ ଭିନ୍ନ କିସମର ଜିନିଷ ତିଆରି ହେଉଥିଲା। ସାଧାରଣ କପ୍-ପ୍ଲେଟ୍‌ଠାରୁ ଆରମ୍ଭ କରି ଦାମୀ ଫୁଲଦାନୀ ପର୍ଯ୍ୟନ୍ତ। ସବୁଥିରେ ନିପୁଣ କାରିଗରୀ ହାତର ସ୍ପର୍ଶ ସ୍ପଷ୍ଟ ବାରି ହୋଇ ପଡୁଥିଲା। କାରଖାନା ମ୍ୟାନେଜର ଆମକୁ ଚରିଆଡ଼େ ବୁଲାଇ ଦେଖାଇଲେ। କାରଖାନା ବୁଲି ଆସିଲା ପରେ ଚା'ପାନରେ ଆପ୍ୟାୟିତ କଲେ ଏବଂ ଶେଷରେ ଗୋଟିଏ ଲେଖାଁ ଫୁଲଦାନୀ ଉପହାର ଦେଲେ। ସେଦିନର ସେ ଫୁଲଦାନୀଟିକୁ ବହୁଦିନ ପର୍ଯ୍ୟନ୍ତ ମୁଁ ଘରେ ସାଇତି ରଖିଥିଲି।

## ନକଲି ହୀରା କାରଖାନା

ଆମଷ୍ଟରଡାମ୍‌ର ହୀରା କାରଖାନା ବିଶ୍ୱବିଖ୍ୟାତ। ହୀରାକୁ କାଟି ଚାହିଦା ମୁତାବକ ଆକାର ଦେବାରେ ଆମଷ୍ଟରଡାମ୍‌ର କାରଖାନା ସମଗ୍ର ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲା। ପୃଥିବୀରେ ଯେତେ ହୀରା ବ୍ୟବହୃତ ହୁଏ, ତାର କଟିଂ ଏବଂ ପଲିସିଂ ମୋଟାମୋଟି ଭାବରେ ଆମଷ୍ଟରଡାମ୍‌ରେ ହିଁ ହେଉଥିଲା। ଆମର ସେ କାରଖାନା ଦେଖିବାର କାର୍ଯ୍ୟକ୍ରମ ଆଗରୁ ସ୍ଥିର ହୋଇଥିବାରୁ କାରଖାନା କର୍ତ୍ତୃପକ୍ଷ ଆମକୁ ସ୍ୱାଗତ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ। ଆମେ ପହଞ୍ଚିଲା ପରେ ଅଭ୍ୟର୍ଥନାକାରୀ ଆମକୁ ସ୍ୱାଗତ କଲେ। ତା'ପରେ ଆମେ କାରଖାନା ଭିତରକୁ ଗଲୁ। ସମଗ୍ର କାରଖାନାଟି ବାତାନୁକୂଳ ଥିଲା। କାରଖାନାର ନିରାପତ୍ତା ବ୍ୟବସ୍ଥା ଦେଖିବା କଥା। କ୍ଲୋଜ୍ ସର୍କିଟ୍ କ୍ୟାମେରାଦ୍ୱାରା ସବୁ କଥା ମନିଟରିଂ କରାଯାଉଥିଲା। କାରଖାନାର ଅଧିକାଂଶ କର୍ମଚାରୀ ମହିଳା। କାରଖାନା ଦେଖିବାକୁ ପ୍ରତ୍ୟହ ଏତେ ଲୋକ ଯାଉଥିଲେ ଯେ, ସେଥିରେ କର୍ମଚାରୀମାନେ ଅଭ୍ୟସ୍ତ ହୋଇଯାଇଥିଲେ। ସୁତରାଂ ଆମେ ପହଞ୍ଚିଲା ପରେ ସେମାନଙ୍କର କିଛି ପ୍ରତିକ୍ରିୟା ହେଲାନାହିଁ। ଭାରତବର୍ଷରେ ହୀରାଖଣି ଥିବାରୁ ଆମ ଦେଶ ବିଷୟରେ କାରଖାନା କର୍ତ୍ତୃପକ୍ଷଙ୍କର ପ୍ରତ୍ୟକ୍ଷ ଜ୍ଞାନ ଥିଲା। ଆମକୁ ବୁଲାଇସାରି ସୌଜନ୍ୟ ଦୃଷ୍ଟିରୁ ଟି ପାର୍ଟିକୁ ଆମନ୍ତ୍ରଣ କଲେ। ଇଚ୍ଛା ନଥିଲେ ବି ଆମକୁ ସେ ଆମନ୍ତ୍ରଣ ରକ୍ଷା କରିବାକୁ ପଡ଼ିଲା। କଟିଂ ଓ ପଲିସିଂ ହୋଇଥିବା କୋଉ ହୀରାର କେତେ ମୂଲ୍ୟ ସେ କଥା କହିବାକୁ କାରଖାନାର ଚିଫ୍ ସେଲ୍ସ-ମ୍ୟାନେଜର୍ ଭୁଲିନଥିଲେ। କୋଟି କୋଟି ଟଙ୍କା ମୂଲ୍ୟର ହୀରା ଥିବା ସ୍ଥାନକୁ କିଭଳି ବିଦେଶାଗତ ଲୋକମାନଙ୍କୁ ଛାଡ଼ିଦିଆଯାଉଛି ସେକଥା ଆମ ମନରେ ବିସ୍ମୟ ସୃଷ୍ଟି କରିଥିଲା। କିନ୍ତୁ ମନକଥା ମନରେ ରଖି ଆମେ ହୀରା କାରଖାନାରୁ ଫେରିଲୁ।

ଆଉ କିଏ ବୁଝନ୍ତୁ ନ ବୁଝନ୍ତୁ, ଆମ ଗାଇଡ୍ କିନ୍ତୁ ଆମ ମନରେ ଥିବା ସଂଶୟକୁ ଠିକ୍ ବୁଝିପାରିଥିଲେ। ତାକୁ ଦୂର କରିବା ଉଦ୍ଦେଶ୍ୟରେ ଆମକୁ ବାଟରେ କହିଲେ, "କ୍ଷମା କରିବେ, କୋଟି କୋଟି ଟଙ୍କା ମୂଲ୍ୟର ହୀରା ଦେଖି ଆପଣମାନଙ୍କ ମନରେ ସନ୍ଦେହ ସୃଷ୍ଟି ହେବା ଏକ ସ୍ୱାଭାବିକ ପ୍ରତିକ୍ରିୟା। କେବଳ ଆପଣମାନେ ନୁହନ୍ତି, ଏଠିକି ଯିଏ ଆସନ୍ତି, ସେମାନଙ୍କ ମନରେ ମଧ୍ୟ ଅନୁରୂପ ସଂଶୟ ସୃଷ୍ଟି ହୋଇଥାଏ। କିନ୍ତୁ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ; କାରଣ ସେସବୁ ନକଲି ହୀରା। ପର୍ଯ୍ୟଟକମାନଙ୍କୁ ଦେଖାଇବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ। ପ୍ରକୃତ ହୀରା ଥିବା କୋଠରିଟି ସ୍ୱତନ୍ତ୍ରଭାବରେ ନିର୍ମିତ ଏବଂ ସେଠାକୁ କେବଳ ନିର୍ଦ୍ଦିଷ୍ଟ ବ୍ୟକ୍ତିମାନେ ଯାଇଥାନ୍ତି।" କ୍ଷଣକପାଇଁ ହେଲେ ବି ଆମେ ସମସ୍ତେ କିପରି ବୋକା ବନିଯାଇଥିଲୁ ସେକଥା ଭାବି ହେଲାନାହିଁ।

## ରୋଟରଡ୍ୟାମ୍‌ରେ ଫଟୋଉଠା

ହୀରା କାରଖାନାରୁ ଫେରି ହେଗ୍ ଯିବା ବାଟରେ ପଡ଼ିଲା ରୋଟରଡ୍ୟାମ୍। ନେଦରଲାଣ୍ଡର ତାହା ହେଉଛି ଦ୍ୱିତୀୟ ବୃହତ୍ତମ ସହର। ହୁଏତ ନାମକରଣରୁ ସ୍ଥାନଟି ଗୋଟିଏ ଡ୍ୟାମ୍ ବୋଲି ଧାରଣା ହୋଇପାରେ। କିନ୍ତୁ ସେପରି ନୁହେଁ। ସେ ସ୍ଥାନଟି ଥିଲା ଅତ୍ୟନ୍ତ ରମଣୀୟ ଏବଂ ଏକ ପର୍ଯ୍ୟଟନସ୍ଥଳୀ। ଦେଶବିଦେଶରୁ ଲୋକ ଆସି ସେ ସ୍ଥାନକୁ କୋଳାହଳମୟ କରୁଥିଲେ। ଦୀର୍ଘଦିନ ବିଦେଶରେ କଟକଣାରେ ବୁଲାବୁଲି କରିବା ପରେ ଗୋଟିଏ ଖୋଲା ଜାଗା ଦେଖି ମନରେ ଆନନ୍ଦ ଲାଗିଲା। ନଟର୍ ନଦୀ କୂଳରେ ଏକ ଗାଁରୁ ଏହି ବିରାଟ ସହର ସୃଷ୍ଟି ହୋଇଥିଲା। ସେଠାରେ ଥିବା 'ଇରୋମାଷ୍ଟ୍' ସ୍ତମ୍ଭଟି ସାମୁଦ୍ରିକ ଓ ସ୍ଥଳଭାଗର ଦୃଶ୍ୟ ଉପଭୋଗ କରିବା ପାଇଁ ଅତ୍ୟନ୍ତ ଉପଯୁକ୍ତ ସ୍ଥାନ ଥିଲା। ୧୯୬୦ ମସିହାରୁ ଏହା ଜନସାଧାରଣଙ୍କ ନିମନ୍ତେ ଖୋଲାଯାଇଥିଲା।

ରୋଟରଡ୍ୟାମ୍ ବୁଲିଲା ସମୟରେ କିଛି ଭାରତୀୟଙ୍କ ସହିତ ସାକ୍ଷାତ ହେଲା। ଗୁଜରାଟର ରାଜଧାନୀ ଅହମଦାବାଦରୁ ସେମାନେ ବୁଲିବାକୁ ଯାଇଥିଲେ। ବିଦେଶ ଭ୍ରମଣ ସମ୍ପର୍କରେ ସେମାନଙ୍କର ଅଧିକ ଅଭିଜ୍ଞତା ଥିବା ଦୃଷ୍ଟିରୁ ସେମାନେ ସାଙ୍ଗରେ ରୋଷେଇ ସାମଗ୍ରୀ ସହିତ ଜଣେ ପୁଝାରୀଙ୍କୁ ନେଇ ଯାଇଥିଲେ। ସେମାନଙ୍କ କୋଚ୍ ପଛରେ ଲାଗିଥିବା କାର୍‌ଭାନ୍‌ରେ ଚାଉଳ, ଡାଲି, ପରିବା, ଗ୍ୟାସ୍ ଚୁଲି ଇତ୍ୟାଦି ସବୁ ରହିଥିଲା ଓ ତା ଭିତରେ ରୀତିମତ ରୋଷେଇ ହେଉଥିଲା। ସେମାନେ ସମସ୍ତେ ନିରାମିଷାଶୀ ହୋଇଥିଲେ ବି ବିଦେଶ ରାଷ୍ଟ୍ରରେ ସେମାନଙ୍କୁ ଖାଇବା ପିଇବାରେ କିଛି ଅସୁବିଧା ହେଉନଥିଲା। ଆମେ ହିନ୍ଦୀଭାଷାରେ କଥାବାର୍ତ୍ତା କଲାବେଳେ ମନଟା କିଭଳି ହାଲୁକା ଲାଗିଲା। ସେତିକିବେଳେ ଭାବିଲୁ ସତରେ ମାତୃଭୂମିର ମମତା କେତେ!

ରୋଟରଡ୍ୟାମ୍‌ଟି ଫୁଲବଗିଚାରେ ଭର୍ତ୍ତି ଥିଲା। କିନ୍ତୁ ଆମ ଦେଶଭଳି ସେଠାରେ ଫୁଲ ଛିଣ୍ଡାଇ କେହି ଗର୍ବ ଅନୁଭବ କରୁନଥିଲେ। ଆମେ ଗଣେଶପୂଜା, ସରସ୍ୱତୀ ପୂଜାରେ ପର ବଗିଚାରୁ ଫୁଲ ଚୋରି କରି ଆଣିବାକୁ ସତେଯେପରି ଏକ ମହତ୍ କାର୍ଯ୍ୟ ବୋଲି ମନେକରୁଥିଲୁ। ସେଠାରେ ଲୋକଙ୍କର ବୋଧହୁଏ ଦେଶପ୍ରୀତି ଅଧିକ ଥିବାରୁ ଫୁଲବଗିଚା ସବୁ ଅକ୍ଷୁଣ୍ଣ ରହିଥିଲା। ରୋଟରଡ୍ୟାମ୍ ଭିତରେ ଗୋଟିଏ ବଡ଼ ଜଳାଶୟରେ ବିଭିନ୍ନ ଜାତିର ପକ୍ଷୀଙ୍କର ଉପସ୍ଥିତି ସ୍ଥାନଟିକୁ ଅତ୍ୟନ୍ତ ରମଣୀୟ କରୁଥିଲା। ଆମେ ରୋଟରଡ୍ୟାମ ଭିତରେ ବୁଲିବା ସମୟରେ କେତେକ ଫଟୋ ଉଠାଳି କ୍ୟାମେରା ଧରି ଆମର ଫଟୋ ଉଠାଇବାକୁ ଚାହିଁଲେ। ଆମର ସମୟ କମ୍ ଥିବାରୁ ଆମେ ପ୍ରଥମେ ଫଟୋ ଉଠାଇବାକୁ ରାଜି ହେଉନଥିଲୁ। କିନ୍ତୁ ସେମାନେ ଦଶମିନିଟ୍ ମଧ୍ୟରେ ଫଟୋ ଦେଇପାରିବେ ଏବଂ ଫଟୋ ଦେବାପରେ ପାରିଶ୍ରମିକ ନେବେ ବୋଲି କହିଲାରୁ ଆମେ ସେଥିରେ ରାଜି ହେଲୁ।

ମୋର କିନ୍ତୁ ମନରେ ଧାରଣା ହୋଇଥିଲା ବୋଧହୁଏ ସେମାନେ ଏତେ ଅଳ୍ପ ସମୟ ମଧ୍ୟରେ ଫଟୋ ଆଣି ଦେଇପାରିବେ ନାହିଁ; କାରଣ ଆମର କୋଣାର୍କରେ କୋଡାକ୍ କ୍ୟାମେରାକୁ କତାଦଉଡ଼ିରେ ବାନ୍ଧି ତାକୁ ବେକରେ ପକାଇ ନିଜକୁ ଫଟୋଗ୍ରାଫର୍ ବୋଲାଉଥିବା କେତେକ ବ୍ୟକ୍ତି ଫଟୋ ଉଠାଇ ପର୍ଯ୍ୟଟକମାନଙ୍କଠାରୁ ଅଗ୍ରିମ ନେଇ ଠିକ୍ ସମୟରେ ଫଟୋ ନଦେବାର ବହୁ ଦୃଷ୍ଟାନ୍ତ ରହିଥିଲା। କିନ୍ତୁ ଦଶମିନିଟ୍ ନ ହେଉଣୁ ଯେତେବେଳେ ଫଟୋଗ୍ରାଫର୍ ଆସି ଆମର ଫଟୋସବୁ ଆମକୁ ଦେଇଦେଲେ, ସେମାନଙ୍କ ପ୍ରତି ଆମର ବ୍ୟକ୍ତିଗତ ଶ୍ରଦ୍ଧା ବଢ଼ିଗଲା। ମୋର ରୁମ୍‌ସାଥୀ ଅହମଦାବାଦର ଘନଶ୍ୟାମ ଭାଇ ଭାଓସାରଙ୍କ ସହିତ ଉଠାଇଥିବା ସେଦିନର ସେ ଫଟୋଟି ଅତୀତର ସେହି ସ୍ମୃତିର ସନ୍ତକ ସ୍ୱରୂପ ମୋ ପାଖରେ ଏପର୍ଯ୍ୟନ୍ତ ଅକ୍ଷତ ଅବସ୍ଥାରେ ରହିଛି।

## ନେଦରଲାଣ୍ଡ୍ ରାଜଧାନୀ ହେଗ୍ ଯାତ୍ରା

ରୋଟରଡ୍ୟାମ୍ ବୁଲାସରିଲା ପରେ ଆମେ କୋଚ୍‌ରେ ବସିଲୁ ଏବଂ ଯଥା ସମୟରେ ଆମ କୋଚ୍ ଯାଇ ହେଗ୍ ସହରରେ ପହଞ୍ଚିଲା। ସହରଟି ଅତ୍ୟାଧୁନିକ ନହେଲେ ବି 'ଇଣ୍ଟରନାସ୍‌ନାଲ୍ କୋର୍ଟ ଅଫ୍ ଜଷ୍ଟିସ୍'ର ସଦର ମହକୁମା ହୋଇଥିବାରୁ ତା'ର ଯଥେଷ୍ଟ ଖ୍ୟାତି ଥିଲା। ସେତେବେଳେ ଜଣେ ଭାରତୀୟ ସେ ସଂସ୍ଥାର ଅଧ୍ୟକ୍ଷ ଥିଲେ। ଆମର ହେଗ୍ ସହରକୁ ଯିବା ସମ୍ପର୍କରେ ସେ ଆଗରୁ ଖବର ପାଇଥିଲେ। ଆମେ ଯାଇ ତାଙ୍କୁ ପ୍ରଥମେ ସାକ୍ଷାତ କଲୁ। ଏକାଠି ଏକାଥରକେ ଏତେ ସଂଖ୍ୟକ ଭାରତୀୟଙ୍କୁ ଦେଖି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ। ତା'ଛଡ଼ା ଯେତେବେଳେ ସେ ଶୁଣିଲେ ଭାରତବର୍ଷର ଅଧିକାଂଶ ରାଜ୍ୟର ସାମ୍ବାଦିକ ପ୍ରତିନିଧି ଆମ ଦଳରେ ସାମିଲ୍ ଥିଲେ, ସେ ଆହୁରି ଖୁସି ହୋଇଗଲେ।

ତାଙ୍କ ସହିତ ଆଲୋଚନା ବେଳେ ନାନା କଥା ପଡ଼ିଲା। ଭାରତବର୍ଷର ସାମାଜିକ, ରାଜନୈତିକ ସ୍ଥିତି ସମ୍ପର୍କରେ ସେ ଆମଠାରୁ ଶୁଣିବାକୁ ଚାହିଥିଲେ। ଆମେ ଖୋଲାମନରେ ଯିଏ ଯାହାର ମତ ଦେଇଥିଲୁ। ବିଦେଶ ରାଷ୍ଟ୍ରରେ ଭାରତୀୟମାନଙ୍କ ସ୍ଥିତି ବିଷୟରେ ସେ ଆମକୁ ବୁଝାଇଲେ। ତାପରେ ଆରମ୍ଭ ହେଲା ଚା'ପର୍ବ। ଠିକ୍ ଚା' କହିଲେ ବୋଧେ ଠିକ୍ ହେବନାହିଁ; କାରଣ ଚା' ସହିତ ଫା' ମଧ୍ୟ ଥିଲା।

ଚା'ପର୍ବ ଶେଷ ବେଳକୁ ସମୟ ଅପରାହ୍ଣ ପାଞ୍ଚଟା। କିନ୍ତୁ ସେଠାରେ ଦିନ ଦି ପ୍ରହର। ହେଲେ ସେ ଖରା ଦେହକୁ ବାଧୁ ନଥିଲା। ମେ'ମାସର ଖରା ଦେହକୁ ମୁଲାୟମ ଲାଗୁଥିଲା। ସେଦିନ ସୌଭାଗ୍ୟକୁ ଭଲ ପାଗ ଥିଲା। ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଖରାପାଗ ହେଲେ ଲୋକେ ଭାରି ଖୁସି ହେଉଥିଲେ। ରାସ୍ତାକୁ ଆସି ମଉଜ୍‌ମଜ୍‌ଲିସ୍ କରୁଥିଲେ। ସେସବୁ ରାଷ୍ଟ୍ରମାନଙ୍କରେ ଆମ ଦେଶଭଳି ସାମାଜିକ କଟକଣା ନଥିଲା। ଯୁବକଯୁବତୀମାନେ ଇଚ୍ଛାକଲେ ସ୍ୱଇଚ୍ଛାରେ ଏକା ବୁଲିପାରୁଥିଲେ। ପରସ୍ପର ସହିତ ବନ୍ଧୁତା ସ୍ଥାପନ କରିପାରୁଥିଲେ କିମ୍ବା ପରସ୍ପରକୁ ଜୀବନସାଥୀ ଭାବରେ ମଧ୍ୟ ବାଛିପାରୁଥିଲେ। ସେଥିପାଇଁ ସେସବୁ ରାଷ୍ଟ୍ରମାନଙ୍କରେ ସାମାଜିକ ଚଳଣି ଭିନ୍ନ ଧରଣର ଥିଲା।

ଆମର ନିଜର କୋଚ୍ ଥିବାରୁ ଆମେ ହେଗ୍ ସହରର ମୁଖ୍ୟ ରାସ୍ତାଦେଇ ବୁଲିଲୁ। ଆମ ହାତରେ ସମୟ କମ୍ ଥିବାହେତୁ କୋଚ୍‌ରୁ ଓହ୍ଲାଇ ବୁଲିବା ସମ୍ଭବ ହୋଇନଥିଲା। ହେଗ୍ ସହର ମଧ୍ୟଦେଇ ଆମ କୋଚ୍ ଯାଉଥିଲାବେଳେ ଆମ ଗାଇଡ୍ ସହରର ଗରିମା ଓ ବିଶେଷତ୍ୱ ସମ୍ପର୍କରେ ଆମକୁ ବୁଝାଇ ଚାଲିଥିଲେ।

## ଯୌନ ବ୍ୟଭିଚାରର ଅନ୍ୟନାମ ନାଇଟ୍ କ୍ଲବ୍

ହେଗ୍ ସହରରୁ ଆମଷ୍ଟରଡାମ୍ ଫେରିଲାବେଳକୁ ସନ୍ଧ୍ୟା ସାତଟା; ମାତ୍ର ବାହାରେ ଖରା। ରାତି ହେବାକୁ ଆହୁରି ବାକିଥିଲା। ହୋଟେଲରେ ପହଞ୍ଚି ସନ୍ଧ୍ୟାଟା କେମିତି କଟିବ ସେଥିପାଇଁ ଆଲୋଚନା ଆରମ୍ଭ ହୋଇଗଲା। କିଛି ବନ୍ଧୁ ପ୍ରସ୍ତାବ ଦେଲେ 'ନାଇଟ୍ କ୍ଲବ୍' ଯିବାପାଇଁ। ଆମ ଭିତରୁ ଅଳ୍ପ କେତେଜଣଙ୍କର ନାଇଟ୍ କ୍ଲବ୍ ସମ୍ପର୍କରେ ପ୍ରତ୍ୟକ୍ଷ ଧାରଣା ଥିଲା, ମାତ୍ର ଅନ୍ୟମାନେ ସେ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ।

ଯେଉଁମାନେ ନାଇଟ୍ କ୍ଲବ୍ ଯିବାକୁ ପ୍ରସ୍ତାବ ଦେଲେ, ସେମାନେ ଆମ୍ଭମାନଙ୍କର ଅଜ୍ଞତାର ସୁଯୋଗ ନେଲେ। ସେମାନେ ଯୁକ୍ତି ଦର୍ଶାଇଲେ, "ଭାରତବର୍ଷର ସବୁ ରାଜ୍ୟରେ ନାଇଟ୍ କ୍ଲବ୍ ନାହିଁ। ଯେଉଁଠି ବା କାଁ ଭାଁ ରହିଛି, ସେଠିକି ଯିବାପାଇଁ ସୁବିଧା ସୁଯୋଗ ନାହିଁ। ଭାରତୀୟ ସମାଜ ରକ୍ଷଣଶୀଳ ହୋଇଥିବାରୁ ନାଇଟ୍ କ୍ଲବ୍ ସହିତ ସମ୍ପର୍କକୁ ସାଧାରଣରେ ସ୍ୱୀକୃତି ମିଳିନାହିଁ। ଏପରିକି ଭାରତୀୟ ସମାଜରେ ସୁରା, ସାକୀ ସହିତ

ସମ୍ପର୍କ ରଖିଥିବା ବ୍ୟକ୍ତିମାନଙ୍କ ପ୍ରତି ସାଧାରଣରେ ଭ୍ରୂକୁଞ୍ଚନ ହୋଇଥାଏ। ସେଥିପାଇଁ ବିଦେଶ ଆସିଥିବାବେଳେ ନାଇଟ୍‌କ୍ଲବ୍ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଓ ଅନୁଭୂତି ଅର୍ଜନ କରିବା ଦରକାର।"

ଏ ସମ୍ପର୍କରେ ଅନେକ ସମୟ ପର୍ଯ୍ୟନ୍ତ ଯୁକ୍ତିତର୍କ ଚାଲିଲା। ଶେଷରେ ସ୍ଥିର ହେଲା, ଆମ ଦଳରେ ଥିବା ମହିଳା ଓ ବୟସ୍କ ବ୍ୟକ୍ତିଙ୍କୁ ବାଦ୍ ଦେଇ ଅନ୍ୟମାନେ ନାଇଟ୍‌କ୍ଲବ୍ ଦେଖିବାକୁ ଯିବେ। ଆମ ପଚିଶିଜଣିଆ ଦଳରୁ ମାତ୍ର ପାଞ୍ଚଜଣ ବାଦ୍ ପଡ଼ିଲେ। ଆଲୋଚନା ଶେଷ ହେଲାବେଳକୁ ଭାରତୀୟ ସମୟ ରାତି ନଅଟା। ରାତି ନଅଟା ବେଳକୁ ଆମର ଖାଇବା ସମୟ ହୋଇଯାଇଥିବାରୁ ପ୍ରଥମେ ରାତ୍ରିଭୋଜନ ସାରି ବୁଲିବା ପାଇଁ ସ୍ଥିର ହେଲା। ତାପରେ ଆମେ ଚାଲିଲୁ ହୋଟେଲ 'ଇଣ୍ଡିଆନ୍ ତନ୍ଦୁରୀ'କୁ। ହୋଟେଲ ମାଲିକ ଦଲବୀର୍ ସିଂହଙ୍କ ସହିତ ପୂର୍ବଦିନ ସନ୍ଧ୍ୟାରେ ସାକ୍ଷାତ ହୋଇଥିଲା ଏବଂ ସେତିକିବେଳୁ ଆମେ ହୋଟେଲରେ ସିଟ୍ ରିଜର୍ଭ କରି ଦେଇଥିଲୁ।

ଆମେ ସବୁ ହୋଟେଲରେ ପହଞ୍ଚିଲା ପରେ ସର୍ଦ୍ଦାରଜୀ ନିଜେ କାଉଣ୍ଟରରୁ ଉଠିଆସି ଆମକୁ ସ୍ୱାଗତ କଲେ। କିଏ କ'ଣ ଖାଇବେ ସେ ବିଷୟରେ ନିଜେ ଚିଠା କରିନେଲେ। ଆମେ ଦେଖିଲୁ ଯେତେ ରକମ ଖାଇବା ବରାଦ ଦିଆଗଲା, ସେତକ ତିଆରି କରିବା ପାଇଁ ଅନ୍ତତଃ ଅଧଘଣ୍ଟାଏ ସମୟ ଲାଗିଯାଇପାରେ। ତେଣୁ ପାଖରେ ଥିବା ଏକ କ୍ୟାସେଟ୍ ଦୋକାନରେ ପଶିଲୁ। ସେ ଦୋକାନରେ ହିନ୍ଦୀ କ୍ୟାସେଟ୍ ଦେଖି ଆମ ଭିତରୁ ଜଣେ ଦିଜଣ ଆନନ୍ଦରେ କୁରୁଳି ଉଠିଲେ। କାହିଁ କେଉଁ ବିଦେଶ ରାଷ୍ଟ୍ର, ସେଠି ପୁଣି ହିନ୍ଦୀ ସଙ୍ଗୀତର 'କ୍ୟାସେଟ୍'। କିନ୍ତୁ ଅନେକ ସମୟରେ ଅନେକ ଅସମ୍ଭବ ଘଟଣା ମଧ୍ୟ ସମ୍ଭବରେ ପରିଣତ ହୋଇଥାଏ। ସେହିଭଳି ଆମଷ୍ଟରଡାମ୍‌ରେ ଭାରତୀୟ ଖାଦ୍ୟ ସାଙ୍ଗକୁ ହିନ୍ଦୀ ସଙ୍ଗୀତ କ୍ୟାସେଟ୍ ସନ୍ଧାନ ସେଦିନ ସନ୍ଧ୍ୟାର ପରିବେଶକୁ ଜମେଇ ଦେଇଥିଲା।

ଖାଇବା ଶେଷ ହେଲାବେଳକୁ ଅନ୍ଧାର ହୋଇଯାଇଥିଲା। ଆମେ ହୋଟେଲ ବାହାରକୁ ଆସି ଯେଉଁ ଦୃଶ୍ୟ ଦେଖିଲୁ, ତାକୁ ପ୍ରଥମେ ବିଶ୍ୱାସ କରିହେଲା ନାହିଁ। ରାସ୍ତାରେ ଯୁବକଯୁବତୀମାନେ ଅର୍ଦ୍ଧନଗ୍ନ ଅବସ୍ଥାରେ ବୁଲାବୁଲି କରୁଥିବାର ଦୃଶ୍ୟକୁ ଆମେ ହାଲୁକାଭାବରେ ଗ୍ରହଣ କରିପାରିନଥିଲୁ; କାରଣ ଆମ ଦେଶର ରାଜରାସ୍ତାରେ ଏପରି ଦୃଶ୍ୟ ବିରଳ। ଅବଶ୍ୟ ବମ୍ବେର 'ମେରିନ୍ ଡ୍ରାଇଭ୍'ରେ ଏପରି ଦୃଶ୍ୟ ଦେଖିବାକୁ ମିଳିଥାଏ।

ରାସ୍ତାରେ ବାହୁ ବନ୍ଧନରେ ଆବଦ୍ଧ ହୋଇ ପରସ୍ପରକୁ ଚୁମ୍ବନ ଦେଇ ଯୁବକ ଯୁବତୀମାନେ ବୁଲୁଥିବାର ଦୃଶ୍ୟ ଉପଭୋଗ୍ୟ ହୋଇଥିଲେ ହେଁ ଭାରତୀୟ ସଂସ୍କୃତି ଓ ପରମ୍ପରାରେ ବିଶ୍ୱାସ ରଖୁଥିବା ଆମଭଳି କେତେକଙ୍କୁ କେମିତି କାହିଁକି ଟିକିଏ ଖାପଛଡ଼ା ଲାଗିଲା। ନିଜର ବୁଦ୍ଧି, ବିବେକ, ବିଚାରଶକ୍ତି ଥିବାରୁ ମନୁଷ୍ୟ ଈଶ୍ୱରଙ୍କ ସୃଷ୍ଟିରେ ଶ୍ରେଷ୍ଠଜୀବ ଭାବରେ ପ୍ରତିପାଦିତ ହୋଇଛି। କେତେବେଳେ, କେଉଁ ପରିସ୍ଥିତିରେ କେଉଁ କାମ କିପରିଭାବରେ କରିବାକୁ ହେବ ସେକଥା ମନୁଷ୍ୟ ବୁଝିପାରୁଥିବାରୁ ଜୀବଜଗତକୁ ନିୟନ୍ତ୍ରଣ

କରିବା ପାଇଁ ସେ ସକ୍ଷମ ହୋଇଛି। ଏତେ ଶକ୍ତିର ଅଧିକାରୀ ହେଇ ମନୁଷ୍ୟ କିପରି ପଶୁତ୍ୱର ଶିକାର ହେଉଛି, ସେକଥା ଆମେ ବୁଝିପାରିଲୁ ନାହିଁ। ମାତ୍ର ଆମ ଭିତରେ କେତେକ ବନ୍ଧୁ ଥିଲେ, ଯେଉଁମାନଙ୍କୁ ଏପରି ଦୃଶ୍ୟ ଅଧିକ ଆକର୍ଷଣ କରୁଥିଲା।

ରାସ୍ତାରେ କିଛି ବାଟ ଯିବା ପରେ ପଡ଼ିଲା 'ରେଡ୍‌ଲାଇଟ୍ ଏରିଆ'। ଜୀବନକୁ ଉପଭୋଗ ପାଇଁ ଏକ ନଗ୍ନ କର୍ମଶାଳା। ସେ ଅଞ୍ଚଳରେ ବିଶ୍ୱର ବିଭିନ୍ନ ଦେଶର ରୂପଜୀବୀମାନେ ଆସି ସେମାନଙ୍କର ରୂପର ପସରା ମେଲାଇଥିଲେ। ଗ୍ରାହକମାନଙ୍କ ମନୋରଞ୍ଜନ ପାଇଁ ସବୁରକମର ଆକର୍ଷଣ ସେମାନଙ୍କ ପାଖରେ ଭରପୂର ଥିଲା। ସେମାନଙ୍କର ଦେହ ପ୍ରାୟ ଆବୃତ୍ତ ହୋଇନଥିଲା। ରାସ୍ତାରେ ଯାଉଥିବା ପର୍ଯ୍ୟଟକମାନଙ୍କର ମନରେ ଯୌନ ଆକାଙ୍‌କ୍ଷା ବୃଦ୍ଧି ଉଦ୍ଦେଶ୍ୟରେ ସେମାନେ ନାନାପ୍ରକାର ଇଙ୍ଗିତ ଦେଉଥିଲେ। ପୁରୁଷମାନଙ୍କ ସହିତ ସମ୍ଭୋଗ କରି ତୃପ୍ତିଲାଭ କରିବା ଅପେକ୍ଷା କିଛି ଅର୍ଥ ଉପାର୍ଜନ ସେମାନଙ୍କର ଧ୍ୟେୟ ଥିଲା। ସେ ଦୃଶ୍ୟ ଦେଖି ବ୍ୟାସକବି ଫକୀରମୋହନଙ୍କ 'ହାଟବାହୁଡ଼ା' କବିତାର କେଇପଦ ମୋର ମନେପଡ଼ିଗଲା।

"ଦୋକାନ ଦୁଆରେ କେହି ରୂପସୀ
ଆପଣା ସଉଦା ବିକୁଛି ବସି ।
କୁତ୍ସିତ ବ୍ୟାଧି, ନିନ୍ଦା, ଅପକର୍ମ
ମାଲ ବିକିବାଟି ତାହାର କାମ ।
ବାପ ଅରଜିଲା ବିତ୍ତକୁ ନେଇ
କିଣୁଅଛି ତାକୁ ଭେଣ୍ଡିଆ କେହି।"

କେତେବର୍ଷ ତଳେ ବ୍ୟାସକବି ଯାହା ଲେଖିଥିଲେ, ଆମଷ୍ଟରଡାମର ରେଡ୍‌ଲାଇଟ୍ ଏରିଆ ଦେଖି ତାହା ଯେ କେତେ ବାସ୍ତବ, ସେକଥା ଉପଲବ୍ଧି ହେଲା। କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ନିଜର ଯୌନ ଆକାଙ୍‌କ୍ଷା ପୂରଣ ପାଇଁ ସେଠାରେ କେତେ ଯେ ଯୁବକ ସେମାନଙ୍କ ଭବିଷ୍ୟତକୁ ନଷ୍ଟ କରିଦେଉଥିଲେ ତାହା ରେଡ୍‌ଲାଇଟ୍ ଏରିଆ ନଦେଖିଲେ ଜଣଙ୍କ ପକ୍ଷରେ ବିଶ୍ୱାସ କରିବା ସମ୍ଭବ ନୁହେଁ ।

ରେଡ୍‌ଲାଇଟ୍ ଏରିଆ ଭିତରେ ପଡ଼ିଲା ବହୁ ଆକାଂକ୍ଷିତ 'ନାଇଟ୍ କ୍ଲବ୍'। ନାଇଟ୍ କ୍ଲବ୍ ସମ୍ପର୍କରେ ଆମ ପ୍ରତିନିଧିଦଳର ଦୁଇ ତିନିଜଣଙ୍କୁ ବାଦ୍ ଦେଲେ ଆଉ କାହାରି କିଛି ପ୍ରତ୍ୟକ୍ଷ ଧାରଣା ନଥିଲା। କିଏ ଭାବିଥିଲେ ବୋଧେ କ୍ଲବ୍‌ରେ ନାଚଗୀତ ହେଉଥିବ। ଆଉ କେହି କେହି ଭାବିଥିଲେ ସେଠାରେ ବୋଧେ ଭଲ ରେଷ୍ଟୁରାଣ୍ଟ୍ ଥିବ, ଯେଉଁଠି ଧୁମ୍ ଖାଇବ ପିଇବା ଚାଲିଥିବ। ଏପରି ଭାବନା ଭିତରେ ଆମେ ନାଇଟ୍ କ୍ଲବ୍‌ରେ ପହଞ୍ଚିଗଲୁ। କିନ୍ତୁ ସେଠାରେ 'ଲାଇଭ୍ ସୋ' ଆରମ୍ଭ ହୋଇଯାଇଥିବାରୁ କ୍ଲବ୍‌ର ପରିଚାଳକ ଆମକୁ ଲାଇବ୍ରେରୀରେ ଅପେକ୍ଷା କରିବାକୁ ନମ୍ରତାର ସହିତ ଅନୁରୋଧ କଲେ। ଲାଇବ୍ରେରୀ

ନେଇଏ ବଡ଼ ହଲ୍। ବହି, ମାଗାଜିନ୍, ଫଟୋରେ ଭର୍ତ୍ତି। କିନ୍ତୁ ସେସବୁ ସାଧାରଣ ଲୋକଙ୍କ ପଠନ ଉପଯୋଗୀ ନଥିଲା। ସେଗୁଡ଼ିକ ଯୌନ ଉଦ୍ଦୀପକ, ଅଶ୍ଳୀଳ ଓ ନଗ୍ନ ଚିତ୍ରରେ ଭରପୂର ଥିଲା। ଆମେ ଭାରତ ଭଳି ଏକ ସଂସ୍କୃତିସମ୍ପନ୍ନ ରାଷ୍ଟ୍ରରୁ ଯାଇଥିବାରୁ ଲାଇବ୍ରେରୀର ଅଧ୍ୟକ୍ଷ ଆମକୁ ଖାତିର କଲେ। କଥା ପ୍ରସଙ୍ଗରେ ସେପରି ଲାଇବ୍ରେରୀର ଆବଶ୍ୟକତା ସମ୍ପର୍କରେ ସେ ଆମକୁ ବୁଝାଇ କହିଲେ ଯେ, ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଜଳବାୟୁ ସାଧାରଣତଃ ଥଣ୍ଡା ଥିବା ହେତୁ ଏବଂ କମ୍ ବୟସରୁ ଅବାଧ ଯୌନକ୍ରିୟାରେ ଲିପ୍ତ ହେତୁ ମଧ୍ୟମ ବୟସରେ ଲୋକଙ୍କ ଯୌନ ଆକାଂକ୍ଷା କମ୍ ହୋଇଯାଉଥିଲା। ସେଥିପାଇଁ ସେମାନଙ୍କ ଯୌନ କାମନା ବୃଦ୍ଧି କରିବା ନିମନ୍ତେ ଏସବୁର ପରିକଳ୍ପନା କରାଯାଇଥିଲା। ଉଭୟ ଲାଇବ୍ରେରୀ ଓ ନାଇଟ୍ କ୍ଲବ୍‌କୁ ପ୍ରତ୍ୟହ ଶତାଧିକ ଯୁବକଯୁବତୀ ଆସି ସେମାନଙ୍କ ଯୌନ କାମନା ମେଣ୍ଟାଉଥିଲେ ବୋଲି ତାଙ୍କଠାରୁ ଜାଣିବାକୁ ପାଇଲୁ।

ଆମେ ଲାଇବ୍ରେରୀରେ ଥିବା ସମୟରେ ନାଇଟ୍‌କ୍ଲବ୍‌ର ଦ୍ୱିତୀୟ ଲାଇଭ୍ ସୋ ଆରମ୍ଭ ହେବାପାଇଁ ସମୟ ହୋଇଥିବା ସମ୍ପର୍କରେ ଆମକୁ ସୂଚନା ଦିଆଗଲା। ଆମପାଇଁ ସୀତା ଟ୍ରାଭେଲ୍ସ, କ୍ଲବକୁ ଯିବା ନିମିତ୍ତ ଟିକେଟ୍ କାଟିସାରିଥିଲେ। ଆମେ କ୍ଲବ୍‌ରେ ପ୍ରବେଶ କରିବା ମାତ୍ରେ ହଲ୍‌ର ଉଜ୍ଜ୍ୱଳ ଆଲୋକଗୁଡ଼ିକ ଲିଭାଇ ଦିଆଗଲା। ତାପରେ ଗୋଟିଏ ସ୍କ୍ରୀନ୍‌ରେ କୋମୋଦ୍ଦୀପକ ବ୍ଲୁ ଫିଲ୍ମମାନ ପ୍ରଦର୍ଶିତ ହେଲା। ଆମେ ଭାବିଥିଲୁ ବୋଧହୁଏ ସେତିକିରେ କ୍ଲବ୍‌ର କାର୍ଯ୍ୟକ୍ରମ ସୀମାବଦ୍ଧ ଥିଲା; କିନ୍ତୁ ତା'ପରେ ଯାହାସବୁ ଘଟିଲା ତାହା ଏକ ସଭ୍ୟ ରାଷ୍ଟ୍ରର ସଂସ୍କୃତି ବୋଲି କୁହାଯାଇ ପାରିବ ନାହିଁ। କିଛି ସମୟର ବ୍ୟବଧାନରେ ଜଣେ ଯୁବତୀ ଓ ଜଣେ ଯୁବକ ହଲ୍ ଭିତରେ ଥିବା ଏକ ମଞ୍ଚ ଉପରକୁ ଆସି ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଯୌନକ୍ରିୟାରେ ଲିପ୍ତ ହୋଇଗଲେ। ଏପରି ଏକ ଘୃଣ୍ୟ ଦୃଶ୍ୟରେ ଆମ ମନରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା। ଯେଉଁମାନେ ନିଜକୁ ଅତ୍ୟନ୍ତ ଉନ୍ନତ ଓ ଶିକ୍ଷିତ ବୋଲି ଦାବି କରନ୍ତି, ଏଇୟା କ'ଣ ସେମାନଙ୍କର ସଂସ୍କୃତି, ଶିକ୍ଷା? ନାଇଟ୍‌କ୍ଲବ୍‌ର ମଞ୍ଚ ଉପରେ ସମସ୍ତଙ୍କ ସାମନାରେ ଯୌନକ୍ରିୟାରେ ଲିପ୍ତ ଯୁବକଯୁବତୀ, ସ୍ୱାମୀ-ସ୍ତ୍ରୀ ହୋଇଥାଇପାରନ୍ତି ବୋଲି ପ୍ରଥମେ ଆମର ଧାରଣା ହୋଇଥିଲା, ମାତ୍ର 'ଲାଇଭ୍ ସୋ' ପରେ ଯେତେବେଳେ ସେମାନେ କ୍ଲବରୁ ବାହାରି ନିଜନିଜ କାର୍ ଧରି ଦୁଇ ବିପରୀତ ରାସ୍ତାରେ ଚାଲିଗଲେ, ସେତେବେଳେ ଆମର ମୋହ ଭଙ୍ଗ ହୋଇଗଲା। ଖବର ନେବାରୁ ବୁଝାଗଲା ଯେ ସେମାନେ ଥିଲେ ବ୍ୟାବସାୟିକ କଳାକାର। ଅର୍ଥ ବିନିମୟରେ ସେମାନେ ଅନ୍ୟମାନଙ୍କ ମନୋରଞ୍ଜନ ପାଇଁ 'ଲାଇଭ୍ ସୋ'ରେ ଅଂଶଗ୍ରହଣ କରୁଥିଲେ। କେବଳ ସେ ଦୁଇଜଣ ନୁହନ୍ତି, ପାଶ୍ଚାତ୍ୟ ରାଷ୍ଟ୍ରରେ ସେମାନଙ୍କ ପରି ବହୁ ଯୁବକଯୁବତୀ ଏହି ପେସାକୁ ଆଦରି ଅର୍ଥ ଉପାର୍ଜନ କରୁଥିଲେ।

# ପ୍ରାଚୁର୍ଯ୍ୟର ଦେଶ ପଶ୍ଚିମ ଜର୍ମାନୀ

ରାତିରେ 'ନାଇଟ୍ କ୍ଲବ'ରୁ ଫେରୁ ଫେରୁ ଅନେକ ବିଳମ୍ବ ହୋଇଯାଇଥିଲା। ସଭ୍ୟତା ନାଁରେ ନାଇଟ୍ କ୍ଲବ୍‌ରେ ସେ ବିଭତ୍ସ ଦୃଶ୍ୟ ମନ ଭିତରେ ବାରମ୍ବାର ପ୍ରତିଫଳିତ ହେବାରୁ ରାତିରେ ଭଲ ନିଦ ହୋଇନଥିଲା। ସକାଳୁ ଉଠିଲାବେଳକୁ ଆଖି ମାଡ଼ିପଡୁଥିଲା। ଦେହରେ ଅଳସ ଭରି ରହିଥିଲା। ଆମର ସେଦିନ ପଶ୍ଚିମ ଜର୍ମାନୀ ଗସ୍ତରେ ଯିବା ପାଇଁ ଆଗରୁ କାର୍ଯ୍ୟକ୍ରମ ସ୍ଥିର ନ ହୋଇଥିଲେ ହୁଏତ ଅନେକ ବନ୍ଧୁ ଦିନ ବାରଟାଯାଏ ଶୋଇଥାନ୍ତେ। କିନ୍ତୁ ଅଗତ୍ୟା ଆମ୍ଭମାନଙ୍କୁ କୌଣସିମତେ ନଅଟା ପୂର୍ବରୁ ପ୍ରସ୍ତୁତ ହେବାକୁ ପଡ଼ିଲା; କାରଣ ଆମଷ୍ଟରଡାମ୍‌ରୁ ଫ୍ରାଙ୍କଫର୍ଟ ପର୍ଯ୍ୟନ୍ତ ବିମାନ ଯୋଗେ ଯାତ୍ରା କରିବା ପାଇଁ ଆଗରୁ ସ୍ଥିର ହୋଇଥିଲା। କେହି କେହି କୋଚ୍‌ରେ ଯିବାପାଇଁ ପ୍ରସ୍ତାବ କରିଥିଲେ। କିନ୍ତୁ ସ୍ଥିର ହେଲା, ଆମେ କେ.ଏଲ୍.ଏମ୍. ବିମାନରେ ଯିବୁ ଏବଂ ଆମ କୋଚ୍‌ଟି ଯାଇ ପରେ ଫ୍ରାଙ୍କଫର୍ଟରେ ପହଞ୍ଚି ଆମକୁ ଆମ୍‌ଷ୍ଟରଡାମ୍ ଫେରାଇଆଣିବ।

ଆମଷ୍ଟରଡାମ୍‌ରୁ ଫ୍ରାଙ୍କ୍‌ଫର୍ଟର ଦୂରତା ବେଶି ନୁହେଁ। ମାତ୍ର ୫୦ ମିନିଟ୍‌ର ଉଡ଼ାଣ। ବିମାନବନ୍ଦରରେ ଆମର କିଛି ଅସୁବିଧା ହେଲାନାହିଁ। କେବଳ ସୌଜନ୍ୟ ଦୃଷ୍ଟିରୁ ପାସ୍‌ପୋର୍ଟ, 'ଭିସା' ଇତ୍ୟାଦି ଚେକ୍ ହେବାପରେ ଆମେ ବିମାନ ଭିତରକୁ ଗଲୁ। ବିମାନ ଭିତରେ ସେଇ ଗତାନୁଗତିକ ସ୍ୱାଗତ। ପରିଚାରିକାମାନଙ୍କର ହସହସ ମୁହଁ। ସତେଯେପରି ବହୁଦିନର ପରିଚିତ। କେ.ଏଲ୍.ଏମ୍. ବିମାନ ଉପରକୁ ଉଠିବାର କେଇ ମିନିଟ୍ ମଧ୍ୟରେ ଆମକୁ ସ୍ନାକ୍ସ ଦିଆଗଲା ଏବଂ ସ୍ନାକ୍ସ ନସରୁଣୁ ସେଇ ପରିଚିତ ଘୋଷଣା ପୁଣି କାନରେ ବାଜିଲା, "ଆପଣମାନେ ଦୟାକରି ଚେୟାରରେ ଲଗିଥିବା ବେଲ୍ଟ ବାନ୍ଧିଦିଅନ୍ତୁ ଓ ସିଗାରେଟ୍ ପିଅନ୍ତୁନାହିଁ। ଆଉ ଅଳ୍ପ ସମୟ ପରେ ଆମ ବିମାନଟି ଫ୍ରାଙ୍କଫର୍ଟ ବିମାନବନ୍ଦରରେ ଅବତରଣ କରିବ, ଧନ୍ୟବାଦ।" ଆମେ ବିଦେଶଗସ୍ତରେ ଯାଇଥିଲା ସମୟରେ ଜର୍ମାନ ରାଷ୍ଟ୍ର ଦୁଇଭାଗରେ ବିଭକ୍ତ ହୋଇ ପଶ୍ଚିମଜର୍ମାନୀ ଓ ପୂର୍ବଜର୍ମାନୀରେ ପରିଣତ ହୋଇଯାଇଥିଲା। ଆମର ପଶ୍ଚିମଜର୍ମାନୀ ରାଷ୍ଟ୍ର ପରିଦର୍ଶନରେ ଯିବା ପାଇଁ ଭିସା ଥିବାରୁ ଆମେ ଆଉ ପୂର୍ବଜର୍ମାନୀ ଯାଇପାରିନଥିଲୁ।

ଜର୍ମାନୀର ବିଭାଜନ ପରେ ବନ୍ ସହରରେ ପଶ୍ଚିମଜର୍ମାନୀର ରାଜଧାନୀ ପ୍ରତିଷ୍ଠିତ ହୋଇଥିଲା। ସେହିଭଳି ବର୍ଲିନ ନଗରୀରେ ପୂର୍ବ ଜର୍ମାନୀର ରାଜଧାନୀ ଥିଲା। ଆଗରୁ ଖବର ପାଇ ବିମାନବନ୍ଦରରେ ଆମକୁ ସ୍ୱାଗତ ଜଣାଇବା ପାଇଁ ଭାରତୀୟ ଦୂତାବାସର ଅଫିସରମାନେ ଉପସ୍ଥିତ ଥିଲେ। ସୀତାଟ୍ରାଭେଲସ୍ ପକ୍ଷରୁ ସହରର ଅତ୍ୟାଧୁନିକ ହୋଟେଲ, 'ହୋଟେଲ ଲା'ବେରା'ରେ ଆମର ରହିବାର ବ୍ୟବସ୍ଥା କରାଯାଇଥିଲା। ଆମେ ସିଧାସଳଖ ଦୂତାବାସ ଗାଡ଼ିରେ ବିମାନବନ୍ଦରୁ ହୋଟେଲକୁ ଚାଲିଗଲୁ।

ଫ୍ରାଙ୍କ୍‌ଫର୍ଟ ସହର ପଶ୍ଚିମଜର୍ମାନୀର ଏକ ପ୍ରଧାନ ବାଣିଜ୍ୟକେନ୍ଦ୍ର ଭାବରେ ସମଗ୍ର ବିଶ୍ୱରେ ଜଣାଶୁଣା। ବିଶ୍ୱର ସମସ୍ତପ୍ରକାର ସୌଖୀନପଦାର୍ଥ ସେ ସହରରେ କିଣାବିକା ହୋଇଥାଏ। ଆମ ଭିତରେ ଏପରି ଅନେକ ବନ୍ଧୁ ଥିଲେ, ଯେଉଁମାନଙ୍କ ପାଖରେ ଯଥେଷ୍ଟ ଅର୍ଥ ଥିଲା ଏବଂ ସେମାନେ ବିଦେଶରୁ ଅନେକ ପଦାର୍ଥ କିଣିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ।

ହୋଟେଲରେ ପହଞ୍ଚିଲାବେଳକୁ ଭାରତୀୟ ସମୟ ପୂର୍ବାହ୍ଣ ସାଢ଼େଦଶଟା ହୋଇଥିଲା। ରୁମ୍‌ରେ ନିଜ ନିଜ ଲଗେଜ୍ ରଖିଦେଇ ଆମେ ସବୁ ଆସି ଲାଉଞ୍ଜ୍‌ରେ କିଛି ସମୟ ପାଇଁ ବସିଲୁ। ଦୂତାବାସ ଅଫିସରମାନେ ପ୍ରଥମେ ଆମକୁ ଚା'ପାନରେ ଆପ୍ୟାୟିତ କଲେ। ସେଠାରେ ଉପସ୍ଥିତ ଥିବା ଭାରତର କନ୍‌ସଲ୍ ଜେନେରାଲ୍ ବାଲକ୍ରିଷ୍ଣନ୍ ତାଙ୍କ ଘରେ ରାତ୍ରିଭୋଜନ ପାଇଁ ଆମକୁ ଆମନ୍ତ୍ରଣ କଲେ। ଦୀର୍ଘଦିନର ବ୍ୟବଧାନ ପରେ ସେଦିନ ବିଦେଶ ରାଷ୍ଟ୍ରରେ ହିନ୍ଦୀଭାଷାରେ କଥାବାର୍ତ୍ତା ଶୁଣି କେଜାଣି କାହିଁକି ମନରେ ଅପୂର୍ବ ଆନନ୍ଦ ସୃଷ୍ଟି ହୋଇଥିଲା।

## ଫ୍ରାଙ୍କ୍‌ଫର୍ଟରେ 'ଫ୍ରି ଫର୍ ଅଲ୍'

ଆଲୋଚନାରେ ସ୍ଥିର ହେଲା ପୂର୍ବାହ୍ଣ ୧୧ଟାରୁ ଦି'ଟା ପର୍ଯ୍ୟନ୍ତ 'ଫ୍ରି ଫର୍ ଅଲ୍' ହେବ; ଅର୍ଥାତ୍ ସେ ସମୟରେ ମାର୍କେଟ୍‌କୁ ଯାଇ ଯିଏ ଯାହା କିଣିପାରିବେ, ବଜାର ବୁଲିପାରିବେ। କିନ୍ତୁ ଦୁଇଟାବେଳକୁ ପୁଣି ହୋଟେଲରେ ଏକାଠି ହେଲେ ଭବିଷ୍ୟତ କାର୍ଯ୍ୟସୂଚୀ ଚୂଡ଼ାନ୍ତ କରାଯିବ। ଆମେ ବଜାରକୁ ବାହାରିବା ପୂର୍ବରୁ ଦୂତାବାସର ଜଣେ ଜୁନିଅର ଅଫିସର୍ ଜାକବ୍ ଆମକୁ ଗୋପନରେ ଡାକି ନିଜ ନିଜ ପର୍ସକୁ ସାବଧାନତାର ସହିତ ରଖିବାକୁ ପରାମର୍ଶ ଦେଲେ। ମାର୍କେଟ୍ କମ୍ପ୍ଲେକ୍ସରେ ବିଶ୍ୱର ସବୁ ରାଷ୍ଟ୍ରର ଲୋକ ବୁଲାବୁଲି କରୁଥିବା ଦୃଷ୍ଟିରୁ ଏପରି ସାବଧାନତାର ଆବଶ୍ୟକତା ଥିବା କଥା ସେ ଆମକୁ ବୁଝାଇ ଦେଇଥିଲେ। ସେଥିସହିତ ସମସ୍ତେ ଏକାଠି ନ ଯାଇ ତିନି-ଚାରିଜଣିଆ ଛୋଟଛୋଟ ଗ୍ରୁପ୍‌ରେ ଗଲେ ସୁବିଧା ହେବ ବୋଲି ସେ କହିଥିଲେ।

ଜାକବ୍‌ଙ୍କ ପରାମର୍ଶ ଅନୁଯାୟୀ କିଏ କ'ଣ କିଣାକିଣି କରିବେ ସେଇକଥାକୁ ଆଖି ଆଗରେ ରଖି ଆମର ଗ୍ରୁପ୍ ତିଆରି ହେଲା। ଆମଭିତରୁ ଅଧିକାଂଶଙ୍କର କ୍ୟାମେରା କିଣିବା ପାଇଁ ଇଚ୍ଛାଥିଲା। ଆମ ସାଙ୍ଗରେ ବାଙ୍ଗାଲୋରସ୍ଥିତ 'ଡେକାନ୍ ହେରାଲ୍ଡ'ର ମୁଖ୍ୟ ଫଟୋଗ୍ରାଫର୍ ଜି. ସତ୍ୟ ଥିଲେ। ତାଙ୍କର କ୍ୟାମେରା ସମ୍ପର୍କରେ ଦୀର୍ଘଦିନର ଅଭିଜ୍ଞତା ଥିବାରୁ ଆମେ ତାଙ୍କୁ ଲିଡ଼ର୍ କଲୁ। ସହରର କେନ୍ଦ୍ରସ୍ଥଳରେ ଥିବା ଏକ ଡିପାର୍ଟମେଣ୍ଟ୍ ଷ୍ଟୋର୍‌ରେ କ୍ୟାମେରା ମିଳିବ ବୋଲି ଦୂତାବାସ ଅଫିସରମାନେ ଆମକୁ ସୂଚନା

ଦେଇଥିଲେ। ତେଣୁ ଆମେ ପ୍ରଥମେ ସେଠାକୁ ଗଲୁ। ସେ ଦୋକାନରେ ପଶି ଆମ ଆଖି ଖୋସି ହୋଇଗଲା। ଆରେ ବାପ୍‌ରେ ବାପ୍! ସେଇଟା ଗୋଟିଏ ଦୋକାନ ନା ଆଉକିଛି! ଏକ ବିରାଟ ପ୍ଲିନ୍ଥ ଉପରେ ଚାରିମହଲା କୋଠା। ଉପରକୁ ଯିବାପାଇଁ ଏସ୍କାଲେଟର୍। ଚାଲିବାର ପ୍ରୟୋଜନ ପଡୁନଥିଲା। ଦୋକାନରେ ସବୁ ଜିନିଷ ଉତ୍ତମରୂପେ ସଜା ହୋଇ ଥୁଆ ହୋଇଥିଲା। ଯାହାର ଯାହା କିଣିବା ପାଇଁ ଦରକାର, ନିଜେ ନିଜେ ବାଛି କରି ଆଣିବା କଥା। ଆମ ଦେଶ ଭଳି ସେଠାରେ ସେଲ୍‌ସମ୍ୟାନଙ୍କୁ ଆଜ୍ଞା ଆଜ୍ଞା କରିବାକୁ ପଡୁନଥିଲା।

ସୌଖୀନ ଫଟୋଗ୍ରାଫର୍‌ମାନଙ୍କ ପାଇଁ 'କ୍ୟାନନ୍' ଓ 'ନିକନ୍' କ୍ୟାମେରା ଭଲ ବୋଲି ସତ୍ୟ ଆମକୁ ବାଟରେ ବୁଝାଇଥିଲେ। ସେଥିରେ 'ଅଟୋଫୋକସ୍' ଏବଂ 'ଅଟୋଫ୍ଲାସ୍' ବ୍ୟବସ୍ଥା ଥିବାରୁ ଫଟୋ ଉଠାଇବା ସମୟରେ ବିଶେଷ କିଛି ବୁଦ୍ଧି ଖଟାଇବାର ଦରକାର ପଡୁନଥିଲା। ଆମ ଭିତରେ ଆଠଜଣ ବନ୍ଧୁଙ୍କର କ୍ୟାମେରା କିଣିବାର ଥିଲା। ସେଥିପାଇଁ ଆମେ ଅଲଗା ହୋଇ କ୍ୟାମେରା ଥିବା କାଉଣ୍ଟର୍‌କୁ ଗଲୁ। ଆମର ସେଠାରେ ଗୋଟିଏ ଅସୁବିଧା ହେଲା; କାରଣ ଫ୍ରାଙ୍କଫର୍ଟରେ ଖୁବ୍ କମ୍ ଲୋକ ଇଂରାଜୀ ବୁଝୁଥିଲେ ଓ ଆମକୁ ଜର୍ମାନ୍ ଭାଷା ଜଣାନଥିଲା। କିନ୍ତୁ ଆମ ଲିଡ଼ର୍ ସତ୍ୟଙ୍କ ପାଖରେ କ୍ୟାମେରାଟିଏ ଥିବାରୁ ଆମେ ଠାରଠୁରି କରି କ୍ୟାମେରା କିଣିବାକୁ ଆଗ୍ରହୀ ବୋଲି ଆମର ଅଭିପ୍ରାୟ ବ୍ୟକ୍ତ କଲୁ। ଆମର ପୋଷାକ ପରିଚ୍ଛଦ, କଥାବାର୍ତ୍ତା ଓ ହାବଭାବରୁ ଆମେ ଯେ ବିଦେଶାଗତ ସେକଥା ବୁଝିବାକୁ କାଉଣ୍ଟର୍‌ରେ ଥିବା ସେଲ୍‌ସମ୍ୟାନଙ୍କୁ ଅଧିକ ସମୟ ଦରକାର ପଡ଼ିନଥିଲା। ଆମେ କ୍ୟାମେରା ସହିତ କଲର୍ ରିଲ୍ ଓ ବ୍ୟାଟେରୀ ମଧ୍ୟ କିଣିଲୁ। ସତ୍ୟ ଆମ ପାଇଁ ଗୋଟିଏ ଛୋଟକାଟର ଡେମନ୍‌ଷ୍ଟ୍ରେସନ୍ କ୍ଲାସ୍ କଲେ। କିପରି ରିଲ୍ ଲୋଡ୍ କରିବାକୁ ହେବ, ଲେନ୍ସ କଭର୍ କିପରି ଖୋଲାଯିବ, କିପରି ବ୍ୟାଟେରୀ ପଶିବ ଇତ୍ୟାଦି ଇତ୍ୟାଦି ସବୁ ବିଷୟ ଆମକୁ ସେ ବୁଝାଇଦେଲେ। କିନ୍ତୁ ଗୋଟିଏ କଥା ସେ ବୁଝାଇବାକୁ ଭୁଲି ଯାଇଥିଲେ, ଯାହାକି ଆମ ସମସ୍ତଙ୍କ ପାଇଁ ପରେ ମହଙ୍ଗା ପଡ଼ିଲା। କ୍ୟାମେରାର ଅଟୋରିଓ୍ୱାଇଣ୍ଡିଂ ସୁଇଚ୍‌ଟି ଟିପିଦେଲେ କ୍ୟାମେରା ଭିତରେ ଥିବା ରିଲଟି ଯେ ଆପେ ଆପେ ପଛକୁ ଗୁଡ଼େଇ ହୋଇଯିବ ସେ ଆମକୁ ସେକଥା କହିନଥିଲେ।

କ୍ୟାମେରା କିଣା ସରିଲାବେଳକୁ ପ୍ରାୟ ଘଣ୍ଟାଏ ସମୟ ଅତିବାହିତ ହୋଇଯାଇଥିଲା। ଫ୍ରାଙ୍କ୍‌ଫର୍ଟ ସହରରେ ବହୁ ଜାଗା ଦେଖିବାର ଥିବାରୁ ମନରେ ଉତ୍କଣ୍ଠା ସୃଷ୍ଟି ହେଉଥିଲା। ତେଣୁ ଆମେ ତରତରରେ ସେ ଦୋକାନରୁ ଶୀଘ୍ର ବାହାରି ଆସିଲୁ। କିନ୍ତୁ ଆମ ଭିତରୁ ଆହୁରି ଅନେକ ବନ୍ଧୁଙ୍କର ଜିନିଷପତ୍ର କିଣାକିଣି ସରିନଥିଲା। ବଜାରରେ ବୁଲୁ ବୁଲୁ ହଠାତ୍ ଗୋଟିଏ ଦୋକାନରେ ପାଚିଲା କଦଳୀ ଥିବାର ନଜରରେ ପଡ଼ିଲା। ସେଠାରେ ପାଚିଲା କଦଳୀ ବିକ୍ରି ହେଉଥିବ ବୋଲି ମୁଁ ପ୍ରଥମେ ବିଶ୍ୱାସ କରିପାରିନଥିଲି।

ମୁଁ ଭାବିଲି, ବୋଧହୁଏ କୌଣସି ଖେଳନା ପଦାର୍ଥକୁ କଦଳୀଭଳି ସଜାଇ ରଖଯାଇଥିଲା। କିନ୍ତୁ ପାଖକୁ ଯାଇ ଦେଖିଲି ସେଇଟା ପ୍ରକୃତରେ ପାଚିଲା କଦଳୀ।

ଆମ ଗ୍ରୁପ୍‌ରେ ଆମେ ତିନିଜଣ ଥିଲୁ। ସେ ଦୃଷ୍ଟିରୁ ତିନୋଟି କଦଳୀ ଦେବାକୁ ମୁଁ ଦୋକାନୀଙ୍କୁ ଠାରରେ ଅନୁରୋଧ କଲି। ସେ କଦଳୀ ଦେବା ପୂର୍ବରୁ ଆମଆଡ଼କୁ ଚାହିଁ ପଚାରିଲେ, "ଇଣ୍ଡିଆ, ଇଣ୍ଡିଆ?" ଆମେ କହିଲୁ, "ଏସ୍, ଏସ୍"। ଦୀର୍ଘଦିନ ପରେ ସୁସ୍ୱାଦୁ କଦଳୀ ଖାଇ ମନ ଖୁସ୍ ହୋଇଗଲା। ଦାମ୍ ପଚାରିଲାରୁ ଦୋକାନୀ କହିଲେ, "ଓ୍ୱାନ୍ ଡଲାର୍"। ସେତେବେଳେ ଗୋଟିଏ ଡଲାର୍‌ର ମୂଲ୍ୟ ଥିଲା ବାରଟଙ୍କା। ଦାମ୍ ଦେଲାବେଳେ ଏ କଦଳୀ କେଉଁଠୁ ଆସୁଛି ବୋଲି ଦୋକାନୀକୁ ପଚାରିବାରୁ ସେ ଭଙ୍ଗା ଇଂରାଜୀରେ କହିଲେ ସିଙ୍ଗାପୁରରୁ ସେ କଦଳୀ ଆସିଥିଲା। କେବଳ କଦଳୀ ନୁହେଁ ଆମ୍ବ, ଲେମ୍ବୁ, ନଡ଼ିଆ, କମଳା ଅଦି ବିଭିନ୍ନ ସ୍ୱାଦିଷ୍ଟ ପଦାର୍ଥ ସେ ଦୋକାନରେ ମିଳୁଥିଲା।

## ଯାତରା ଦେଖା, କଦଳୀ ବିକା

ଆମେ ଫ୍ରାଙ୍କ୍‌ଫର୍ଟ ବଜାରରେ ବୁଲାବୁଲି କରୁଥିଲାବେଳେ ଆମର ଆଉ କେଇଜଣ ବନ୍ଧୁଙ୍କର ମାର୍କେଟିଂ ଶେଷ ହୋଇନଥିଲା। ଆମେ ଆଉକିଛି ସୌଖୀନ୍ ଜିନିଷ କଣିବାପାଇଁ ମନ ବଳାଇଥିଲାବେଳେ ଲକ୍ଷ୍ନୌରୁ ଆସିଥିବା ବନ୍ଧୁମାନେ ଗୋଟିଏ ଗୋଟିଏ ରିଭଲ୍‌ଭର୍ କିଣିବା ପାଇଁ ଆଗ୍ରହୀ ଥିଲେ। ମୁଁ ପ୍ରଥମେ ସେମାନଙ୍କ ଉଦ୍ଦେଶ୍ୟ ସମ୍ପର୍କରେ କିଛି ଠଉରେଇ ପାରିନଥିଲି। ସାମ୍ବାଦିକମାନେ କ୍ୟାମେରା, ଟାଇପ୍‌ରାଇଟର୍, ଭଲ ଫାଉଣ୍ଟେନ୍ ପେନ୍ କିଣିବା ଛାଡ଼ି ହଠାତ୍ ରିଭଲ୍‌ଭର୍ ଆଡ଼କୁ କାହିଁକି ମନ ବଳାଇଲେ? ସିତଲା ସିଂ ଉତ୍ତରପ୍ରଦେଶର ଜଣେ ବରିଷ୍ଠ ସାମ୍ବାଦିକ। ତାଙ୍କ ସମ୍ପାଦନାରେ ଫଇଜାବାଦରୁ ପ୍ରକାଶିତ 'ଜନମୋର୍ଚ୍ଚା' ସମ୍ବାଦପତ୍ର ପ୍ରକାଶ ପାଉଥିଲା। ସିତଲା ସିଂ ଆମ ଭିତରେ ଟିକିଏ ମୁରବିଶ୍ରେଣୀୟ ଥିଲେ। କୌଣସି ଜିନିଷ ପତ୍ର କିଣିବାରେ ତାଙ୍କର ଆଗ୍ରହ ନଥିଲା। ତାଙ୍କର ଗୋଟିଏ ଦୁର୍ବଳତା ଥିଲା ଘରକୁ ଫୋନ୍ କରିବା। ବିଦେଶଗସ୍ତ ସମୟରେ ପ୍ରାୟ ସବୁ ସହରରୁ ସେ ଘରକୁ ଫୋନ୍ କରୁଥିଲେ। ସେଥିରେ ତାଙ୍କର ଅପାର ଆନନ୍ଦ। ଏମାନେ ରିଭଲଭର୍ କିଣିବାକୁ କାହିଁକି ଏତେ ଆଗ୍ରହୀ, ମୁଁ ତାଙ୍କୁ ପ୍ରଶ୍ନ କଲି। ସିତଲା ସିଂ କହିଲେ, "ଆରେ, ଆପଣ ଏତିକି କଥା ବୁଝିପାରୁ ନାହାନ୍ତି? ଏ ବିଦେଶଯାତ୍ରା ସେମାନଙ୍କ ପାଇଁ 'ଯାତରା ଦେଖା - କଦଳୀ ବିକା' ଭଳି। ଜର୍ମାନୀତିଆରି ଗୋଟିଏ ଗୋଟିଏ ରିଭଲ୍‌ଭରର ଲକ୍ଷ୍ନୌରେ ଦାମ୍ ହେଉଛି ପ୍ରାୟ ପଚିଶିହଜାର ଟଙ୍କା। ଏମାନେ ସବୁ ପାଞ୍ଚହଜାର ଟଙ୍କାରେ ରିଭଲ୍‌ଭର କିଣି ତାକୁ ଭାରତରେ ଚଢ଼ା ଦାମ୍‌ରେ ବିକିଦେବେ ଏବଂ ସେଥିରେ ସେମାନଙ୍କର ସମସ୍ତ ବିଦେଶଗସ୍ତର ଖର୍ଚ୍ଚ ଉଠିଯିବ। ଉତ୍ତରପ୍ରଦେଶ ଏକ ସ୍ୱର୍ଣ୍ଣକାତର ରାଜ୍ୟ ହୋଇଥିବାରୁ ସେଠାରେ ବିଦେଶୀ ରିଭଲଭରର ଖୁବ୍ ଚାହିଦା ରହିଛି।"

ବନ୍ଧୁମାନେ ଯେଉଁ ଗିଭଲ୍‌ଭର୍ ସବୁ କିଣିଥିଲେ, ଆସିଲାବେଳେ ତାକୁ ବିମାନରେ ପାଇବାକୁ ତାଖରେ ଦାଖଲ କଲେ ଏବଂ ଦିଲ୍ଲୀରେ ଓହ୍ଲାଇବା ସମୟରେ ସାଙ୍ଗରେ ଲକ୍ଷ୍ନୌ ନେଇଯାଇଥିଲେ। ପରେ ଶୁଣିଲି ସେମାନେ ତିରିଶିହଜାର ଟଙ୍କାରୁ ଅଧିକ ଦାମ୍‌ରେ ସେସବୁ ବିକ୍ରି କରିଥିଲେ।

## 'ମହାରାଜା'ରେ ମନଖୁସ୍ ଭୋଜନ

ବନ୍ଧୁମାନେ ମାର୍କେଟିଂ ସାରି ଆସିଲାବେଳକୁ ସମୟ ତିନିଟା ବାଜିଯାଇଥିଲା। ଆମେ ସବୁ ଖରାବେଳେ ଖାଇବା କଥା ପ୍ରାୟ ଭୁଲିଯାଇଥିଲୁ। ବିଦେଶ ଜାଗା, ବେଳ ଅବେଳ ହୋଇଗଲା ପରେ କୋଉଠି କ'ଣ ଖାଇବାକୁ ମିଳିବ ସେଇକଥା ଚିନ୍ତା କଲାବେଳକୁ ସୀତା ଟ୍ରାଭେଲସ୍‌ର ସିରାଜ୍ କୋଚ୍ ନେଇ ଆସି ସେଠାରେ ପହଞ୍ଚିଗଲେ। ସେ ଆମକୁ ସାନ୍ତ୍ୱନା ଦେଇ କହିଲେ, "ଆପଣମାନେ କିଛି ଚିନ୍ତାକରନ୍ତୁ ନାହିଁ। ଆପଣମାନଙ୍କର ଖାଇବା ପିଇବା ବନ୍ଦୋବସ୍ତ ହୋଇଯାଇଛି। ଆପଣମାନେ ଆଉ ସମୟ ନଷ୍ଟ ନକରି ଶୀଘ୍ର ଆସନ୍ତୁ।" ଆମେ ସମସ୍ତେ ତାଙ୍କ କଥା ଅନୁସାରେ ତରବରରେ ଯାଇ କୋଚ୍‌ରେ ବସିଲୁ।

କିଛି ସମୟ ପରେ ଆମ କୋଚ୍‌ଟି ଯାଇ ଗୋଟିଏ ରେଷ୍ଟୁରାଣ୍ଟ୍ ସାମନାରେ ଅଟକିଲା। ରେଷ୍ଟୁରାଣ୍ଟ୍ ଦେଖି ପ୍ରଥମେ ମନରେ ଭ୍ରମ ଜାତ ହେଲା, ଆମେ ବିଦେଶ ରାଷ୍ଟ୍ରରେ ନା ଭାରତବର୍ଷରେ ? କାରଣ ରେଷ୍ଟୁରାଣ୍ଟ୍‌ରୁ ଗରମ ଚିକେନ୍‌ମସଲାର ବାସ୍ନା ବାହାରୁଥିଲା। ଯେକୌଣସି ଭାରତୀୟ ଢାବା ଭଳି ସୁସ୍ୱାଦୁ ଖାଦ୍ୟପଦାର୍ଥ ସବୁ ସଜା ହୋଇ ଥୁଆ ହୋଇଥିଲା। ଚିକେନ୍‌ମସଲା ସାଙ୍ଗକୁ ଧନିଆପତ୍ରର ବାସ୍ନା। ସେଇଥିରେ ପେଟ ଅଧା ପୂରିଗଲା। କୋଚ୍‌ରୁ ଓହ୍ଲାଇ ସିରାଜ । ଆମକୁ ଜଣେଇଲେ ଏଇଟା ହେଉଛି 'ହୋଟେଲ ମହାରାଜା'। ଇଣ୍ଡିଆନ୍ ଏୟାର୍‌ଲାଇନ୍‌ସ୍‌ର 'ଚିହ୍ନ' ମହାରାଜାଙ୍କର ଅବିକଳ ନକଲ ମୂର୍ତ୍ତିଟିଏ ରେଷ୍ଟୁରାଣ୍ଟ୍ ସାମନାରେ ଥୁଆ ହୋଇଥିଲା। ବିଦେଶରେ ଭାରତୀୟ ନାଁ ଓ ଭାରତୀୟ ମୂର୍ତ୍ତି ଦେଖି ସେଦିନ ଆମ ମନରେ ଅପାର ଆନନ୍ଦ ଭରିଯାଇଥିଲା।

'ମହାରାଜା'ରେ ଆମପାଇଁ ଆଗରୁ ସ୍ଥାନ ସଂରକ୍ଷିତ ହୋଇଥିଲା। ଆମେ କୋଚ୍‌ରୁ ଓହ୍ଲାଇଲାମାତ୍ରେ ରେଷ୍ଟୁରାଣ୍ଟ୍‌ର ମାଲିକ ଆମକୁ ସ୍ୱାଗତ ଜଣାଇଲେ। ମାଲିକ ଜଣେ ସର୍ଦ୍ଦାରଜୀ। ତାଙ୍କର ସେଠାରେ ଦି'ପୁରୁଷର ଦୋକାନ। ତାଙ୍କ ବାପା ଭାରତରୁ ଜର୍ମାନୀ ଯିବାବେଳେ ସେ ସାନ ପିଲାଟିଏ ହୋଇଥିଲେ। ପର୍ଯ୍ୟଟକ ଭାବରେ ସେମାନେ ଫ୍ରାଙ୍କଫର୍ଟ ଆସିଥିଲେ। ବାପା ଅର୍ଜନ ସିଂହ କ'ଣ ଭାବିଲେ କେଜାଣି, ଏକ ସବୁଦିନିଆ 'ଭିସା' ପାଇଁ ଆବେଦନ କରି ସେଠାରେ ରହିଗଲେ। ବର୍ତ୍ତମାନର ମାଲିକ ରାଜୀନ୍ଦର ।

ଫ୍ରାଙ୍କ୍‌ଫର୍ଟରେ ବଢ଼ିଲେ, ସେଠାରେ ପାଠ ପଢ଼ିଲେ, ସେ ଦେଶର ଭାଷା ଶିଖିଲେ, ଲୋକଙ୍କ ସାଙ୍ଗରେ ମିଶିଲେ ଏବଂ ପିତାଙ୍କ ଦେହାନ୍ତ ପରେ ରେଷ୍ଟୁରାଣ୍ଟ୍‌ର ଦାୟିତ୍ୱ ନେଲେ।

ଆମେ କିଛି ପଚାରିବା ପୂର୍ବରୁ ସର୍ଦ୍ଦାରଜୀ ଆମ ଖାଇବାର ବନ୍ଦୋବସ୍ତ କରିସାରିଥିଲେ। ଆମ ଭିତରୁ କିଏ ଆମିଷ ଓ କିଏ ନିରାମିଷାଶୀ ସେ ଖବର ବୁଝି ସେମାନଙ୍କ ପାଇଁ ଅଲଗା ଟେବୁଲ୍ ଲଗାଇଦେଲେ। ଫ୍ରାଏଡ୍ ରାଇସ୍, ନାନ୍, ଡାଲ୍‌ଫ୍ରାଏ, କୋବିଭଜା, କୋପ୍ତା ସାଙ୍ଗକୁ ଚିକେନ୍‌ବଟର୍ ମସଲା। ପିଆଜ, ଟମାଟୋ, ଧନିଆପତ୍ରର ସାଲାଡ୍। ମନ ଜାଣି ସର୍ଦ୍ଦାରଜୀ ଆମକୁ ଖାଇବାକୁ ଦେଲେ। ମନେହେଲା ସତେଯେପରି ଆମେ ଆମ ନିଜ ଜାଗାରେ ଚିହ୍ନା ହୋଟେଲରେ ଖାଉଥିଲୁ। ଖାଇସାରିବା ପରେ ସର୍ଦ୍ଦାରଜୀଙ୍କ ସହିତ କିଛିସମୟ ଗପସପ ଚାଲିଲା। ସେଥିରେ ତାଙ୍କର ପରମ ଆନନ୍ଦ। ଏକାସାଙ୍ଗରେ ଏତେ ସଂଖ୍ୟକ ଭାରତୀୟଙ୍କୁ ପାଇ ତାଙ୍କ ଖୁସି କହିଲେ ନସରେ। ପାଖ ଦୋକାନରୁ ପାନ ମସଲା ମଗେଇଲେ। ଭାରତବର୍ଷ ବିଷୟରେ ଅନେକ କଥା ପଚାରିଲେ। ଯେତେହେଲେ ଜନ୍ମଭୂମି ତ ?

ମହାରାଜା ରେଷ୍ଟୁରାଣ୍ଟ୍‌ରୁ ବାହାରିଲା ପରେ ସେଦିନ ଆମର ଆଉ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନଥିଲା। ଫ୍ରାଙ୍କ୍‌ଫର୍ଟରେ ଥିବା ଭାରତୀୟ କନ୍‌ସଲ ଜେନେରାଲ୍ ବାଲ୍‌କ୍ରିଷ୍ଣନ୍ ଆମକୁ ରାତ୍ରିଭୋଜନ ପାଇଁ ତାଙ୍କ ଘରକୁ ଆମନ୍ତ୍ରଣ କରିଥିଲେ। ସେଠାରେ ସନ୍ଧ୍ୟା କହିଲେ ଭାରତୀୟ ସମୟ ରାତି ନଅଟା। ସେ ଦୃଷ୍ଟିରୁ ଆମ ହାତରେ ପ୍ରାୟ ପାଞ୍ଚଘଣ୍ଟା ସମୟ ଥିଲା। ଗୋଟିଏ ନିର୍ଦ୍ଦିଷ୍ଟ ଶୃଙ୍ଖଳା ଭିତରେ ଆବଦ୍ଧ ହୋଇ ବୁଲିବାକୁ ଅଧିକାଂଶ ସଦସ୍ୟ ଚାହୁଁ ନଥିବାରୁ ବ୍ୟକ୍ତିଗତ ଭାବରେ ଯିଏ ଯୁଆଡ଼େ ଯିବାପାଇଁ ସ୍ଥିର ହେଲା। ବିଦେଶ ରାଷ୍ଟ୍ରରେ ଖୋଲାମନରେ ବୁଲିବାକୁ ସମସ୍ତଙ୍କର ଇଚ୍ଛା ଥିଲେ ବି କେହି ସେକଥା କହୁନଥିଲେ।

ଫ୍ରାଙ୍କ୍‌ଫର୍ଟ ଏକ ଆଧୁନିକ ସହର। କୋଠାବାଡ଼ି, ରାସ୍ତାଘାଟ ସବୁଠି ଆଧୁନିକତାର ଛାପ। ସବୁ ନୂଆ ନୂଆ ଲାଗୁଥିଲା। ଆମ ଭିତରୁ କେଇଜଣଙ୍କର ଗୋଲ୍ଡଫ୍ରେମ୍ ଚଷମା କିଣିବାର ଥିଲା। ଆଉ କେହି କେହି ଟେପ୍‌ରେକର୍ଡର୍ କିଣିବାକୁ ମନ କରିଥିଲେ। ତେଣୁ ସେମାନେ ନିଜ ନିଜ ସାଙ୍ଗ ବାଛି ବାହାରିଗଲେ। ଶେଷରେ ଆମେ ଚାରିଜଣ ରହିଗଲୁ। ଚାରିଜଣ, ଭାରତର ଚାରୋଟି ରାଜ୍ୟର। ଜଣେ ଓଡ଼ିଶାର, ଜଣେ ଗୁଜରାଟର, ଜଣେ କର୍ଣ୍ଣାଟକର ଓ ଆଉଜଣେ ଉତ୍ତରପ୍ରଦେଶର। କେହି କାହାରି ଆତ୍ମୀୟ ବା ସମ୍ପର୍କୀୟ ନଥିଲେ। ଭାଷା ମଧ୍ୟ ଏକା ନଥିଲା। ତା ସତ୍ତ୍ୱେ ମନେହେଉଥିଲା ସତେଯେପରି ଆମେ ସବୁ ଏକା ଗାଁର ଲୋକ, ସହରକୁ ଯାତ୍ରା ଦେଖିବାକୁ ଯାଇଥିଲୁ। ଯାହା କୁହାଯାଏ, 'ବିଭିନ୍ନତା ମଧ୍ୟରେ ଏକତା' ହେଉଛି ଭାରତବର୍ଷର ବିଶେଷତ୍ୱ, ସେଦିନ ଆମେ ସେକଥା ଉପଲବ୍ଧି କରିପାରିଥିଲୁ।

କୌଣସି ଗାଡ଼ିମଟର ନନେଇ ପାଦରେ ଚାଲି ଚାଲି ଆମେ ଫ୍ରାଙ୍କ୍‌ଫର୍ଟର ରାସ୍ତାରେ ଦୀର୍ଘ ସମୟ ବୁଲିଲୁ। ବାଟରେ ଅନେକ ସୌଖୀନ ବଜାର। ଆମର ବିଶେଷ କିଛି କିଣାକିଣି କରିବାର ନଥିଲା। ତଥାପି କୌତୂହଳବଶତଃ ଆମେ ଗୋଟିଏ ଦୋକାନରେ ପଶିଲୁ। ଦୋକାନରେ ବହୁ ଲୋକଙ୍କର ସମାଗମ। କିନ୍ତୁ ସବୁ ଶୃଙ୍ଖଳିତ। ଆମ ଭଳି ରାସ୍ତା ଅବରୋଧ କରି ଗପ କରିବାର ଅଭ୍ୟାସ ସେମାନଙ୍କର ନଥିଲା। ସେଥିପାଇଁ ଦୋକାନରେ କିଣାବିକା କରୁଥିବା ଲୋକଙ୍କର କିଛି ଅସୁବିଧା ହେଉନଥିଲା। ଦୋକାନର ସାଜସଜ୍ଜା ଓ ଜିନିଷପତ୍ର ଦେଖି ମୋର ରୁମ୍ ସାଥୀ ଘନଶ୍ୟାମ ଭାଇ ଲୋଭ ସମ୍ଭାଳି ପାରିଲେ ନାହିଁ। ନିଜର ଧର୍ମପତ୍ନୀଙ୍କୁ ବିବାହ ବାର୍ଷିକୀରେ ଉପହାର ଦେବାପାଇଁ ଗୋଟିଏ ସୁନ୍ଦର ଫଟୋଫ୍ରେମ୍ କିଣିଲେ।

ଘନଶ୍ୟାମ ଭାଇଙ୍କ ଦେଖାଦେଖି ମୋ ମନରେ ବି ସଉକ ହେଲା କିଛି ଗୋଟିଏ କିଣିବା ପାଇଁ। ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କ ସଂଖ୍ୟା ଏତେ ବେଶି ଯେ କାହା ପାଇଁ କ'ଣ କିଣିବି ପ୍ରଥମେ କିଛି ସ୍ଥିର କରିପାରିଲି ନାହିଁ। ଆମ ସାଙ୍ଗରେ ବାଙ୍ଗାଲୋରର ପାର୍ଥସାରଥି ଥିଲେ। ସେ ବୋଧେ ମୋ ମନର ଦ୍ୱନ୍ଦ୍ୱ ଠଉରାଇ ପାରିଲେ। ସେ ପରାମର୍ଶ ଦେଇ କହିଲେ, "ୟୁ ମେ ପର୍‌ଚେଜ୍ ଇମ୍ପୋର୍ଟେଡ୍ ବ୍ଲେଡ୍ସ ଫର୍ ଇଓର ଫ୍ରେଣ୍ଡ୍ସ୍। ଦ୍ୟାଟ୍ ଇଜ୍ ଚିପର ଆଣ୍ଡ୍ ଡିସେଣ୍ଟ୍" (ଆପଣଙ୍କ ବନ୍ଧୁମାନଙ୍କ ପାଇଁ ବିଦେଶୀ ବ୍ଲେଡ୍ କିଣିପାରନ୍ତି। ତାହା ଶସ୍ତା ଓ ଦେଖିବାକୁ ସୁନ୍ଦର)। ପାର୍ଥଙ୍କ କଥା ମନକୁ ପାଇଲା। ଆଉ କିଛି ନଭାବି ଦଶ ପ୍ୟାକେଟ୍ "ସେଭେନ୍‌ଓକ୍ଲକ୍' ବ୍ଲେଡ୍ କିଣିଲି। ପରେ ଭୁବନେଶ୍ୱରରେ ଯେଉଁ ବନ୍ଧୁଙ୍କୁ ସେ ବ୍ଲେଡ୍ ଦେଇଥିଲି ସେମାନେ ଖୁସି ହୋଇଯାଇଥିଲେ।

ଘଣ୍ଟାରେ ସାତଟା ବାଜିଥିଲା, ତଥାପି ସନ୍ଧ୍ୟା ହୋଇନଥିଲା। ଆଉ ଦୁଇଘଣ୍ଟା ବାକି ଥିଲା। ଆମେ ଚାରିଜଣଯାକ ବୁଲୁ ବୁଲୁ ଷ୍ଟେସନ୍ ପାଖକୁ ଚାଲିଯାଇଥିଲୁ। କି ବିରାଟ ଷ୍ଟେସନ୍! ସକାଳେ କ୍ୟାମେରା କିଣା ହୋଇ ସେଥିରେ ରିଲ୍ ଓ ବ୍ୟାଟେରୀ ପଡ଼ିଥିଲା। ଷ୍ଟେସନ୍ ପାଖରେ ଫଟୋ କେଇଟା ଉଠାଇଲେ ମନେରହିବ ଭାବି ଫଟୋ ଉଠା ଚାଲିଲା। ବସି, ଠିଆହୋଇ ବିଭିନ୍ନ ପୋଜ୍‌ରେ ଫଟୋ ଉଠିଲା। ବିଦେଶ ଜାଗା, କେତେ ଲୋକଙ୍କର ଯାତାୟାତ। କିଏ କାହାକୁ ଚିହ୍ନୁଛି? 'ଫ୍ରି ଫର୍ ଅଲ୍'।

ବନ୍ଧୁମାନେ ମନ ଖୁସିରେ ବୁଲୁଥିଲେ। ଯେତେ କିଣିଲେ ବି ମାର୍କେଟିଂ ଶେଷ ହେଉନଥିଲା। ଯେଉଁ ବନ୍ଧୁମାନେ ରିଭଲ୍‌ଭର୍ କିଣିଥିଲେ ତାଙ୍କ ମନ କାହିଁରେ କ'ଣ ଖୁସି। ରିଭଲ୍‌ଭର୍ କିଣିବା ପାଇଁ ସେମାନେ ନିଜ ନିଜ ଅଞ୍ଚଳର ଜିଲ୍ଲାପାଳମାନଙ୍କଠାରୁ ଆବଶ୍ୟକ ଲାଇସେନ୍ସ ଆଗରୁ ଯୋଗାଡ଼ କରି ଆଣିଥିଲେ; କାରଣ ଲାଇସେନ୍ସ ନଥିଲେ 'ଆର୍ମସ୍ ଆକ୍ଟ' ଅନୁଯାୟୀ ଅଗ୍ନେୟାସ୍ତ୍ର କିଣାବିକା ହୋଇପାରେ ନାହିଁ। ବିଦେଶ ଯିବା ପୂର୍ବରୁ ମୋ ମୁଣ୍ଡରେ ଏତେ କଥା ପଶିନଥିଲା। କେହି ମଧ୍ୟ ସେ ସମ୍ପର୍କରେ କିଛି ଗାଇଡ୍

କରିନଥିଲେ। ନହେଲେ ରିଭଲ୍‌ଭରଟିଏ କିଣିବା ପାଇଁ ଲାଇସେନ୍ସ ହାସଲ କରିବାରେ ବିଶେଷ କିଛି ଅସୁବିଧା ହୋଇନଥାନ୍ତା। 'ଗତସ୍ୟ ଶୋଚନା ନାସ୍ତି'ଭାବି ମୁଁ ଆଉ ସେ ବିଷୟରେ କିଛି ଚିନ୍ତା କଲିନାହିଁ।

ପ୍ରାୟ ଆଠଟା ବେଳକୁ ବନ୍ଧୁମାନେ ହଲି ହଲି ଆସି ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲେ। ତା'ପରେ ଚାଲିଲା ପଚରାପଚରି। କିଏ କ'ଣ କିଣିଛନ୍ତି! ସେ ଚର୍ଚ୍ଚା ବହୁ ସମୟ ପର୍ଯ୍ୟନ୍ତ ଚାଲିଥାନ୍ତା, କିନ୍ତୁ ଆମ ସଭାପତି ସେଥିରେ ହସ୍ତକ୍ଷେପ କରି ଶୀଘ୍ର ହୋଟେଲକୁ ଫେରିଯାଇ ରାତ୍ରିଭୋଜନ ପାଇଁ ଯିବାକୁ ପ୍ରସ୍ତୁତ ହେବା ନିମନ୍ତେ ପରାମର୍ଶ ଦେବାରୁ ସମସ୍ତଙ୍କ ମନରେ ଚେତା ପଶିଲା। ଆମର ରାତିରେ କନ୍‌ସଲ୍ ଜେନେରାଲ୍ ବାଲକ୍ରିଷ୍ଣନ୍‌ଙ୍କ ଘରକୁ ଯିବାକୁ ଯେ ଆମନ୍ତ୍ରଣ ରହିଛି ସେକଥା ଆମେ ପ୍ରାୟ ଭୁଲିଯାଇଥିଲୁ। ସମସ୍ତେ ଆସିଯିବା ପରେ ଆମ ଗାଡ଼ି ହୋଟେଲ ଅଭିମୁଖେ ଚାଲିଲା।

## ବିଦେଶ ରାଷ୍ଟ୍ରରେ ପ୍ରେସ୍ ସ୍ୱାଧୀନତା

ସେଦିନ ସନ୍ଧ୍ୟାରେ ଫ୍ରାଙ୍କ୍‌ଫର୍ଟରେ ଅବସ୍ଥାପିତ ଭାରତୀୟ କନ୍‌ସଲ୍ ଜେନେରାଲ୍ ବାଲକ୍ରିଷ୍ଣନ୍‌ଙ୍କ ବାସଭବନରେ ରାତ୍ରିଭୋଜନ କରିବାର କାର୍ଯ୍ୟକ୍ରମ ଆଗରୁ ସ୍ଥିର ହୋଇଥଲା। କିନ୍ତୁ ଆମ ସଭାପତି ବିକ୍ରମ ରାଓ ସେଠାକାର ପ୍ରେସ୍‌କ୍ଲବ୍ ଯିବାପାଇଁ କେତେବେଳେ ବ୍ୟବସ୍ଥା କରିଥିଲେ, ସେକଥା ଆମକୁ ଜଣା ନଥିଲା। ହୋଟେଲରେ ପହଞ୍ଚିଲା ପରେ ସେ ଏହି କାର୍ଯ୍ୟକ୍ରମ ସମ୍ପର୍କରେ ଆମକୁ ସୂଚନା ଦେଲେ। ବିଦେଶ ରାଷ୍ଟ୍ରରେ ପ୍ରେସ୍‌କ୍ଲବ୍ କିପରି ଭାବରେ ଚାଲୁଥିଲା, ସେସବୁ ରାଷ୍ଟ୍ରରେ ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କର କି ପ୍ରକାର ଭୂମିକା ରହିଥିଲା, ସେ ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ ପାଇଁ ଆମ ସମସ୍ତଙ୍କର ଆଗ୍ରହ ଥିଲା। ସେଥିପାଇଁ ପ୍ରେସ୍‌କ୍ଲବ୍ ଯିବାକୁ କାର୍ଯ୍ୟକ୍ରମ ରଖିଥିବାରୁ ଆମେ ଶ୍ରୀ ରାଓଙ୍କୁ ଧନ୍ୟବାଦ ନଦେଇ ରହିପାରିଲୁ ନାହିଁ।

ଆମେ ଖୁବ୍‌ଶୀଘ୍ର ପ୍ରସ୍ତୁତ ହୋଇ ଗାଡ଼ିରେ ବସିଲୁ। ଆମ ହୋଟେଲଠାରୁ ପ୍ରେସ୍‌କ୍ଲବ୍‌ର ଦୂରତା ବେଶି ନଥିଲା। ଅଳ୍ପ ସମୟ ପରେ ଆମ ଗାଡ଼ିଟି ଯାଇ ପ୍ରେସ୍‌କ୍ଲବ୍ ସାମନାରେ ଅଟକିଲା। ଆମ ଯିବା ସମ୍ପର୍କରେ ଆଗରୁ ଖବର ପାଇଥିବାରୁ ପ୍ରେସ୍‌କ୍ଲବ୍‌ର ବନ୍ଧୁମାନେ ଅପେକ୍ଷା କରିଥିଲେ। ଆମେ ପହଞ୍ଚିବା ପରେ ଆମକୁ ସ୍ୱାଗତ କରି ଭିତରକୁ ନେଲେ। ପ୍ରେସ୍‌କ୍ଲବ୍ ଭିତରର ଦୃଶ୍ୟ ଦେଖୁ ଦେଖୁ ମୁଁ ବିମୋହିତ ହୋଇଗଲି। ମୋ ମାନସପଟ୍ଟରେ ଭାସିଆସିଲା କଟକରେ ଥିବା ପ୍ରେସ୍‌କ୍ଲବ୍‌ର ଦୃଶ୍ୟ। ଆମର ପ୍ରେସ କ୍ଲବ୍ କହିଲେ, ସନ୍ଧ୍ୟାରେ କିଛି ଗୁଲିଖଟି ଗପ ଓ ମଦ୍ୟପାନ। ପ୍ରତିଦିନର କାମ ହେଲା ସନ୍ଧ୍ୟାବେଳେ କାହାକୁ ଧରି ମଦ ଯୋଗାଡ଼ କରିବା! ଯଦି ମଦ ସାଙ୍ଗକୁ କୁକୁଡ଼ା ଗୋଡ଼

ଗୋଟିଏ ମିଳିଗଲା ଆହୁରି ଭଲ। ସେଥିପାଇଁ ଦିନରୁ ଜାଲ ପଡ଼େ ମ୍ୟୁନିସିପାଲିଟିରେ, ଫୁଡ୍ ଇନିସ୍‌ପେକ୍ଟର୍, ଚେକ୍‌ଗେଟ୍ କିରାଣି, ଏମ୍.ଭି.ଆଇ., ଆର.ଟି.ଓ. ଅଫିସ୍‌ର ଦଲାଲ କିମ୍ବା ସିଭିଲ୍ ସପ୍ଲାଇ ଅଫିସ୍‌ର ଇନିସ୍‌ପେକ୍ଟର୍‌ଙ୍କୁ ଧରିବା ପାଇଁ। କେହି ନମିଳିଲେ ଥାନାବାବୁଙ୍କୁ ଖୋଜା ପଡ଼େ। ସେମାନେ ମଧ୍ୟ ପ୍ରସ୍ତୁତ ହୋଇ ଥାଆନ୍ତି। ଯଦି ଅଳ୍ପକିଛି ଖର୍ଚ୍ଚ କରି ନିଜର ଅପକର୍ମକୁ ଘୋଡ଼େଇ ଦେଇହେବ ଏବଂ ବଦ୍‌ନାମରୁ ରକ୍ଷା ମିଳିବ, ତେବେ ସେଥିପାଇଁ କୁଣ୍ଠା କାହିଁକି ? ପ୍ରତିଦିନ ସନ୍ଧ୍ୟାରେ କେହି ନା କେହି ସେବା କରିବା ପାଇଁ ମିଳିଯାଆନ୍ତି।

ମୁଁ ଏକପ୍ରକାର ଅନ୍ୟମନସ୍କ ହୋଇଯାଇଥିଲି। ମନରେ ନାନା ଭାବନା ପଶିଆସିଥିଲା। ସମସ୍ତ ଚେଷ୍ଟା ସତ୍ତ୍ୱେ ଭୁବନେଶ୍ୱରରେ କିଭଳି ସମସ୍ତଙ୍କୁ ନେଇ ପ୍ରେସ୍ କ୍ଲବଟିଏ ହୋଇ ପାରିଲା ନାହିଁ, ସେଇକଥା ହଠାତ୍ ମନେପଡ଼ିଯାଇଥିଲା। ଅନ୍ୟାନ୍ୟ ସ୍ଥାନରେ ପ୍ରେସ୍ ବନ୍ଧୁମାନଙ୍କ ଭିତରେ ଯେ ମତଭେଦ ନଥିଲା ତା ନୁହେଁ; କିନ୍ତୁ ତା'ସତ୍ତ୍ୱେ ଦେଶର ସବୁ ବଡ଼ ବଡ଼ ସହରରେ ପ୍ରେସ୍‌କ୍ଲବ୍ ଚାଲୁଥିଲାବେଳେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ପ୍ରେସ୍‌କ୍ଲବଟିଏ ନଥିବା କେବଳ ଦୁଃଖଦାୟକ ନୁହେଁ, ଲଜ୍ଜାଜନକ ବ୍ୟାପାର। ଏଥିପାଇଁ ଯେ ଅତୀତରେ ଉଦ୍ୟମ ହୋଇନାହିଁ, ତା' ନୁହେଁ; କିନ୍ତୁ କେତେକ ନ୍ୟସ୍ତସ୍ୱାର୍ଥୀଙ୍କ ଯୋଗୁଁ ତାହା କାର୍ଯ୍ୟରେ ପରିଣତ ହୋଇପାରିନଥିଲା।

କେତେବେଳେ ଆମେ ଯାଇ କ୍ଲବ୍ ଭିତରେ କନ୍‌ଫରେନ୍ସ ରୁମ୍‌ରେ ପହଞ୍ଚିଯାଇଥିଲୁ ସେ କଥା ମୁଁ ଭାବିପାରି ନଥିଲି। ମୋର ଅନ୍ୟମନସ୍କ ଭାବକୁ ଆଉ କେହି ଜାଣନ୍ତୁ ବା ନ ଜାଣନ୍ତୁ ମୋ ରୁମ୍‌ମେଟ୍ ଘନଶ୍ୟାମ ଭାଇ କିନ୍ତୁ ଲକ୍ଷ୍ୟ କରିଥିଲେ। ଦୀର୍ଘ ଏକମାସରୁ ଅଧିକ ସମୟ ଏକାଠି ରହିବା ଫଳରେ ସମସ୍ତେ ସମସ୍ତଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଉଣା ଅଧିକେ ପରିଚିତ ହୋଇଯାଇଥିଲେ। ମତେ ହଲାଇଦେଇ ଘନଶ୍ୟାମ ଭାଇ କହିଲେ, "କ୍ୟା ଦାସ୍ ସାହବ୍! ଆପ୍ ବାରବାର କିସ୍ ସୋଚ୍ ମେଁ ଗୁମ୍ ହୋ ଜାତେ ହୋ ?" ମୁଁ ହଠାତ୍ ସଚେତନ ହୋଇଯାଇ ତାଙ୍କୁ କହିଲି, "ନହିଁ ଐସା କୁଛ ନହିଁ, ଐସା ହମାରା ପ୍ରେସ୍ କ୍ଲବ୍‌କା ବାରେ ମେଁ ସୋଚ୍ ରହା ଥା।"

ପ୍ରେସ୍‌କ୍ଲବ୍‌ର ଦୃଶ୍ୟ ଅତୀବ ମନୋରମ ଥିଲା। ଆଲମାରିରେ ଥାକ ଥାକ ବହି, ମାଗାଜିନ୍ ସାଙ୍ଗକୁ ଦେଶବିଦେଶର ସମ୍ବାଦପତ୍ର। ପ୍ରେସ୍‌କ୍ଲବ୍‌ରେ ସେଦିନ ସନ୍ଧ୍ୟାରେ ୫୦ଜଣରୁ ଅଧିକ ସଦସ୍ୟ ଥିଲେ ବି କୌଣସି କୋଳାହଳ କି ପାଟିତୁଣ୍ଡ ଶୁଣାଯାଉ ନଥିଲା। ଯିଏ ଯାହା କାମରେ ବ୍ୟସ୍ତ ଥିଲେ। ଦେଖିଲେ ମନେହେଉଥିଲା, ସତେଯେପରି ପ୍ରେସ୍‌କ୍ଲବ୍‌ଟି ଗୋଟିଏ ଗବେଷଣାଗାର। ଆମ ସଭାପତି ବିକ୍ରମ ରାଓ ଆମର ପରିଚୟ ପ୍ରଦାନ କରିବା ପରେ ସେଠାକାର ପ୍ରେସ୍‌କ୍ଲବ୍‌ର ସଭାପତି ଆନୁଷ୍ଠାନିକ ଭାବରେ ଆମକୁ ସ୍ୱାଗତ କରି କ୍ଲବ୍ ମେମ୍ବରମାନଙ୍କ ସହିତ ପରିଚୟ କରାଇଲେ। ତା'ପରେ ଆମ୍ଭମାନଙ୍କ ଭିତରେ ଭାବର ଆଦାନ ପ୍ରଦାନ ଚାଲିଲା।

କଥାବାର୍ତ୍ତା ପ୍ରସଙ୍ଗରେ ଭାରତବର୍ଷରେ ଜରୁରୀ ପରିସ୍ଥିତିରେ ଜାରି ହୋଇଥିବା ପ୍ରେସ୍ କଟକଣା ସମ୍ପର୍କରେ କଥା ଉଠିଲା। ଜଣେ ବ୍ୟକ୍ତି କେବଳ କ୍ଷମତାରେ ରହିବା ପାଇଁ ସମଗ୍ର ଦେଶବାସୀଙ୍କ ବ୍ୟକ୍ତି ସ୍ୱାଧୀନତାକୁ ଲୋପ କରିବା ସଙ୍ଗେ ସଙ୍ଗେ ସମ୍ବାଦପତ୍ରର କଣ୍ଠରୋଧ କରିଥିବା ଘଟଣାକୁ ଜର୍ମାନୀର ପ୍ରେସ୍ ବନ୍ଧୁମାନେ ହଠାତ୍ ଗ୍ରହଣ କରିପାରି ନଥିଲେ। ସେମାନେ ଓଲଟା ପ୍ରଶ୍ନ କରିଥିଲେ, ଏହା କିପରି ସମ୍ଭବ ହେଲା ? ଭାରତବର୍ଷ ହେଉଛି ପୃଥିବୀର ଅନ୍ୟତମ ବୃହତ୍ତମ ଗଣତାନ୍ତ୍ରିକରାଷ୍ଟ୍ର। ସାମରିକ ଶାସନରେ ହୁଏତ ଏପରି ଘଟିପାରେ, ମାତ୍ର ଏକ ଲୋକପ୍ରତିନିଧିମୂଳକ ଶାସନରେ ଏପରି ଘଟଣାର ତ କଳ୍ପନା କରାଯାଇ ପାରେନା। ସେଦିନ ସେ ବନ୍ଧୁମାନଙ୍କ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଆମପାଖରେ ନଥିଲା। କୌଣସି କଥା ଲୁଚାଇବା ମଧ୍ୟ ସମ୍ଭବ ନଥିଲା; କାରଣ ସେତେବେଳକୁ ସବୁ ଲୋକ ସବୁ କଥା ଜାଣି ସାରିଥିଲେ। ଆମେ ବାଧ୍ୟ ହୋଇ ଅତୀତର ଘଟଣାବଳୀକୁ ସ୍ୱୀକାର କରିବା ବ୍ୟତୀତ ଆମ ପାଖରେ ଆଉ କିଛି ପନ୍ଥା ନଥିଲା।

ଜର୍ମାନୀରେ ସମ୍ବାଦପତ୍ରଗୁଡ଼ିକ କିପରି ଚାଲେ ଓ ରାଜନୈତିକ ନେତୃବର୍ଗଙ୍କର ତା ଉପରେ କିପରି ପ୍ରାଧାନ୍ୟ ରହିଥିଲା, ସେ ବିଷୟରେ ଆମେ ସାମ୍ବାଦିକ ବନ୍ଧୁମାନଙ୍କୁ କେତେକ ପ୍ରଶ୍ନ ପଚାରିଥିଲୁ। ସେମାନେ ମଧ୍ୟ ନିଃସଙ୍କୋଚରେ ଆମର ସବୁ ପ୍ରଶ୍ନର ଉତ୍ତର ଦେଇଥିଲେ। ସତ୍ୟ ସମ୍ବାଦ ପରିବେଷଣ କରି ଶାସକବର୍ଗଙ୍କ ଆକ୍ରମଣର ଶିକାର ହେବା ସମ୍ପର୍କରେ ସେମାନଙ୍କର କୌଣସି ଦୁଃଖଦ ଅନୁଭୂତି ନଥିବା କଥା ସେମାନଙ୍କ ସହିତ ଆଲୋଚନାରୁ ଆମେ ଜାଣିବାକୁ ପାଇଥିଲୁ। ସାମ୍ବାଦିକମାନେ କିଭଳି ସ୍ୱଚ୍ଛନ୍ଦରେ ସମ୍ବାଦ ସଂଗ୍ରହ ଓ ପରିବେଷଣ କରନ୍ତି, ସେ ସମ୍ପର୍କରେ ସେମାନେ ଆମକୁ ବୁଝାଇଥିଲେ। ଅନୁସନ୍ଧାନମୂଳକ ସମ୍ବାଦ ସଂଗ୍ରହରେ ସେମାନେ କିଭଳି ବିଭିନ୍ନବର୍ଗଙ୍କଠାରୁ ଅକୁଣ୍ଠିତ ସାହାଯ୍ୟ ସହଯୋଗ ପାଇଥାନ୍ତି ସେକଥା ମଧ୍ୟ ସେମାନେ ଆମକୁ କହିଥିଲେ। ଭାରତବର୍ଷ ଭଳି ଦେଶରେ ପ୍ରେସ୍ ଉପରେ କାହିଁକି ଅଙ୍କୁଶ ଲଗାଯାଉଛି ସେମାନଙ୍କ ପାଇଁ ତାହା ଦୁର୍ବୋଧ୍ୟ ହୋଇଯାଇଥିଲା।

ଆଲୋଚନା ପରେ ଚା'ପର୍ବ ଆରମ୍ଭ ହେଲା। ସେମାନେ ଆମକୁ 'କକ୍‌ଟେଲ୍' ପାଇଁ ଆମନ୍ତ୍ରଣ କରିଥିଲେ; କିନ୍ତୁ ଆମ ହାତରେ କମ୍ ସମୟ ଥିବାରୁ ଏବଂ ରାତିରେ ବାଲକ୍ରିଷ୍ଣନ୍‌ଙ୍କ ଘରେ ଭୋଜନ କରିବାର କାର୍ଯ୍ୟକ୍ରମ ଥିବାରୁ ସେମାନଙ୍କ ଆମନ୍ତ୍ରଣ ରକ୍ଷା କରିବାକୁ ଅକ୍ଷମ ବୋଲି ନମ୍ରତାର ସହିତ ଜଣାଇଲୁ। ଚା'ପାନ ବେଳେ ଆମେ ସେମାନଙ୍କୁ ସାମାନ୍ୟ ଉପଢୌକନ ପ୍ରଦାନ କରିଥିଲୁ। ସେ ଉପଢୌକନ ମଧ୍ୟରେ ରୁପାରେ ନିର୍ମିତ ଟାଇକ୍ଲିପ୍ ଓ ଓଡ଼ିଶାର ପ୍ରସିଦ୍ଧ ସମ୍ବଲପୁରୀ ରୁମାଲ ଥିଲା। ରୁମାଲର କାରୁକାର୍ଯ୍ୟ ଦେଖି ସେମାନେ ଅତ୍ୟନ୍ତ ଖୁସି ହୋଇଯାଇଥିଲେ। ଆମର ଉପଢୌକନର ପ୍ରତିବଦଳରେ ସେମାନେ ଆମକୁ ଗୋଟିଏ ଲେଖାଏଁ ଡଟ୍‌ପେନ୍ ଉପହାର ସ୍ୱରୂପ ଦେଇଥିଲେ। ଏହା ହିଁ

ପାଶ୍ଚାତ୍ୟ ରାଷ୍ଟ୍ରର ଚଳଣି । ପାଶ୍ଚାତ୍ୟ ରାଷ୍ଟ୍ରରେ ବିଶେଷକରି ଜର୍ମାନୀରେ ଉଚ୍ଚତର ସାମ୍ବାଦିକତ ପାଠ୍ୟକ୍ରମରେ ତାଲିମ୍ ନେବାକୁ ଚାହୁଁଥିବା ଭାରତୀୟ ସାମ୍ବାଦିକମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଯୋଗାଇଦେବା ପାଇଁ ଆଲୋଚନା ପ୍ରସଙ୍ଗରେ ଜର୍ମାନୀର ପ୍ରେସ୍‌କ୍ଲବ ତରଫରୁ ଆମକୁ ପ୍ରତିଶ୍ରୁତି ଦିଆଯାଇଥିଲା । ଏହାର ବର୍ଷକ ପରେ ଆମ ଦେଶର କେତେକ ସାମ୍ବାଦିକ ଜର୍ମାନୀ ଯାଇ ସେସବୁ ସୁବିଧା ହାସଲ କରିଥିଲେ ।

ଆନୁଷ୍ଠାନିକ ଚା'ପର୍ବ ଶେଷ ହେବାପରେ ସାମ୍ବାଦିକ ବନ୍ଧୁମାନେ ଆମକୁ ପ୍ରେସ୍‌କ୍ଲବର ବିଭିନ୍ନ ବିଭାଗ ବୁଲାଇ ଦେଖାଇଥିଲେ । ପଠନ ଗୃହମାନଙ୍କରେ ଜାତୀୟ ଓ ଅନ୍ତର୍ଜାତୀୟ ବିଷୟ ପାଇଁ ଭିନ୍ନ ଭିନ୍ନ ଆଲମାରି ଥିଲା । କମ୍ପ୍ୟୁଟର୍ ଦ୍ୱାରା ବିନା ସମୟ ଅପଚୟରେ କ୍ୟାଟଲଗ୍ ଦେଖି ହେଉଥିଲା । ପ୍ରେସ୍‌କ୍ଲବ୍‌କୁ ଭିନ୍ନ ଭିନ୍ନ ଗୋଷ୍ଠୀର ସାମ୍ବାଦିକ ଆସୁଥିଲେ । କେହି କେହି ରିଡିଂରୁମ୍ ଓ ଲାଇବ୍ରେରୀର ସଦୁପଯୋଗ କରିବାକୁ ଆସୁଥିଲାବେଳେ ଅନ୍ୟ କାହାରି ନିରୋଳାରେ ମଦ୍ୟପାନ ଉଦ୍ଦେଶ୍ୟ ଥିଲା । ଆମେ ବୁଲାବୁଲି କରି ପ୍ରେସ୍‌କ୍ଲବ୍‌ରେ ଥିବା 'ବାର'କୁ ଗଲୁ । ସେଠାରେ ଏକାଧିକ ସଦସ୍ୟ ମଦ୍ୟପାନ କରୁଥିଲେ ମଧ କିଛି ପାଟିତୁଣ୍ଡ ନଥିଲା କିମ୍ବା ଆମ ଦେଶ ଭଳି ମଦ୍ୟପାନ ପରେ ମାତାଲ ହୋଇ କେହି କାହାକୁ ଗାଳିଗୁଲଜ କରୁନଥିଲେ । ପ୍ରେସ୍‌କ୍ଲବ୍‌ର 'ବାର୍' କେବଳ କ୍ଲବ୍ ସଦସ୍ୟଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଏବଂ ବିଶେଷ ପରିସ୍ଥିତିରେ ସ୍ୱତନ୍ତ୍ର ଅନୁମତି କ୍ରମେ ସଦସ୍ୟମାନେ ସେମାନଙ୍କ ବନ୍ଧୁମାନଙ୍କୁ ସେଠାରେ ଆପ୍ୟାୟିତ କରିପାରୁଥିଲେ ।

ଆମ ଭିତରୁ କାହାରି କାହାରି 'ବାର୍'ରେ ବସିଯିବା ପାଇଁ ପ୍ରବଳ ଆଗ୍ରହ ଥିଲା, କିନ୍ତୁ ସମୟ ଅଭାବରୁ ସେଦିନ ସେମାନଙ୍କର ସେ ଆଗ୍ରହ ଅପୂରଣ ରହିଗଲା । କ୍ଲବ୍ ବୁଲା ଶେଷରେ ଆମେ ବନ୍ଧୁମାନଙ୍କଠାରୁ ବିଦାୟ ନେଇ କୋଚ୍ ଅଭିମୁଖେ ଚାଲିଲୁ । ସେଦିନ ସନ୍ଧ୍ୟାରେ ଆମେ ଯେତିକି ସମୟ ପ୍ରେସ୍‌କ୍ଲବ୍‌ରେ ରହିଥିଲୁ ତା କେବଳ ଆମପାଇଁ ଉପଭୋଗ୍ୟ ହୋଇନଥିଲା ବରଂ ଭବିଷ୍ୟତରେ ନୈତିକତାର ସହିତ ନିରପେକ୍ଷ ଭାବରେ କାର୍ଯ୍ୟ କରିବା ପାଇଁ ଆମକୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା ।

## କନ୍‌ସଲ୍ ଜେନେରାଲ୍‌ଙ୍କ ଘରେ ରାତ୍ରିଭୋଜନ

ସେଦିନ ରାତିରେ ଫ୍ରାଙ୍କଫର୍ଟରେ ଥିବା ଭାରତୀୟ କନ୍‌ସଲ୍ ଜେନେରାଲ ବାଲକ୍ରିଷ୍ଣନ୍‌ଙ୍କ ଘରେ ଭୋଜନ କରିବା ପାଇଁ ଆଗରୁ ସ୍ଥିର ହୋଇଥିଲା । ବାଲ୍‌କ୍ରିଷ୍ଣନ୍ ଜଣେ ଦକ୍ଷିଣଭାରତୀୟ । ତାଙ୍କର ପରିବାର କହିଲେ ସେ, ତାଙ୍କ ଧର୍ମପତ୍ନୀ ଓ ଗୋଟିଏ ମାତ୍ର ଝିଅ । ସେ ଖୁବ୍ ଅମାୟିକ ଓ ମେଳାପୀ । କଥାବାର୍ତ୍ତା ଖୁବ୍ ମାର୍ଜିତ । ତାଙ୍କ ଧର୍ମପତ୍ନୀ ଦେଖିବାକୁ ଯେମିତି ସୁନ୍ଦରୀ, ବ୍ୟବହାରରେ ତା'ଠାରୁ ଅଧିକ ଆକର୍ଷଣୀୟ । ବନ୍ଧୁ ଚର୍ଚ୍ଚା

କରିବାରେ ସେ ଆନନ୍ଦ ଲାଭ କରୁଥିଲେ। ଭାରତବର୍ଷରୁ ଫ୍ରାଙ୍କଫର୍ଟକୁ ଯିଏ ଯାଉଥିଲେ ଉଣା ଅଧିକେ ସେମାନଙ୍କର ବାଲକ୍ରିଷ୍ଣନ୍‌ଙ୍କ ଘରେ ଆସର ହେଉଥିଲା।

ଆମେ ପାଖାପାଖି ଦଶଟାବେଳେ ତାଙ୍କ ଘରେ ପହଞ୍ଚିଲୁ। ସେମାନେ ଆମ ପାଇଁ ଅପେକ୍ଷା କରିଥିଲେ। ପହଞ୍ଚିଲା ମାତ୍ରେ ଆମକୁ ଘରକୁ ପାଛୋଟି ନେଲେ। ତାଙ୍କ ବଙ୍ଗଳାର ଡ୍ରଇଂରୁମ୍‌ଟି ଅପେକ୍ଷାକୃତ ବଡ଼ ହେଲେ ବି ଚବିଶିଜଣ ଅତିଥିଙ୍କ ପାଇଁ ଯଥେଷ୍ଟ ନଥିଲା। କିନ୍ତୁ ସେଥିପ୍ରତି କାହାର ନଜର ନଥିଲା। ଘରେ କ'ଣ କ'ଣ ଭାରତୀୟ ଖାଦ୍ୟ ମିଳିପାରିବ, ସେ ବିଷୟରେ ଆମର ଚର୍ଚ୍ଚା ଆରମ୍ଭ ହୋଇଗଲା। ବାଲକ୍ରିଷ୍ଣନ୍‌ଙ୍କ ଧର୍ମପତ୍ନୀ ଲକ୍ଷ୍ମୀଦେବୀ ଆମର ଭାରତୀୟ ଖାଦ୍ୟପ୍ରତି ଥିବା ଦୁର୍ବଳତାକୁ ଠଉରେଇ ତାଙ୍କ ଘରେ ଥିବା ବିଭିନ୍ନ ପ୍ରକାରର ମିକ୍‌ଶ୍ଚର୍ ଓ ବିସ୍କୁଟ୍ ଡବା ଆଣି ଆମ ଆଗରେ ଥୋଇଦେଲେ। ଜଣେ ଉଚ୍ଚପଦସ୍ଥ କୂଟନୀତିଜ୍ଞଙ୍କ ଧର୍ମପତ୍ନୀ ହିସାବରେ ଅତିଥିମାନଙ୍କୁ ଖୁଆଇବାରେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ଥିଲା। ସେ ଭାବିଥିଲେ ଆମେ ସବୁ ବାହାର ଅତିଥିଙ୍କଭଳି ମାପିଚୁପି ଖାଇବୁ। କିନ୍ତୁ ଅଳ୍ପସମୟପରେ ତାଙ୍କ ଭାବନା ଭୁଲ୍ ବୋଲି ପ୍ରମାଣିତ ହେଲା। କେଇ ମିନଟ୍ ବ୍ୟବଧାନରେ ସବୁ ଡବା ସଫା। ଏତେବଡ଼ ଅଫିସରଙ୍କ ଘର। ବିଦେଶ ରାଷ୍ଟ୍ର। ସେଠାରେ ଆଦବ କାଇଦା ଉପରେ ଅଧିକ ଧ୍ୟାନ ଦେବାକଥା। ହେଲେ କିଛିକ୍ଷଣ ପାଇଁ ଆମେ ସେସବୁ ଭୁଲିଯାଇଥିଲୁ।

ଡବାସବୁ ଶେଷ ହେବା ଦେଖି ବାଲକ୍ରିଷ୍ଣନ୍ ଟିକେ ଅପ୍ରସ୍ତୁତ ହେଲାଭଳି ଜଣାପଡ଼ିଲେ। ଲକ୍ଷ୍ମୀଦେବୀଙ୍କୁ କହିଲେ, "ଏମାନେ ସବୁ ଆମ ଦେଶରୁ ଆସିଛନ୍ତି। ଆମର ଅତିଥି। ଆଉ କ'ଣ ଘରେ କିଛିନାହିଁ?" "ସେମାନେ ରାତିରେ ଡିନର୍ କରିବେବୋଲି ଆଉ କିଛି ସ୍ନାକ୍ସ କରାଯାଇନାହିଁ। ତା'ଛଡ଼ା ସାଢ଼େ ଦଶଟା ହେଲାଣି। ଡିନର୍ ରେଡ଼ି। କହିଲେ ସର୍ଭ ହେବ" ବୋଲି ଲକ୍ଷ୍ମୀଦେବୀ ବିନମ୍ରଭାବରେ ଉତ୍ତର ଦେଇଥିଲେ। ବାଲକ୍ରିଷ୍ଣନ୍ କିନ୍ତୁ ସେଥିରେ ଏକମତ ନହୋଇ କିଛି ପକୋଡ଼ି ପ୍ରସ୍ତୁତ କରିବାକୁ ଧର୍ମପତ୍ନୀଙ୍କୁ କହିଲେ। ସାଙ୍ଗେ ସାଙ୍ଗେ ପକୋଡ଼ି ତିଆରି ଆରମ୍ଭ ହୋଇଗଲା। ପକୋଡ଼ି କରେଇରୁ ବାହାରି ସର୍ଭ ହେବାପର୍ଯ୍ୟନ୍ତ ଆମର କେତେକ ବନ୍ଧୁଙ୍କର ଧୈର୍ଯ୍ୟ ନଥିଲା। ସେମାନେ ନିଜ ଘର ଭଳି କିଚିନ ପର୍ଯ୍ୟନ୍ତ ଚାଲିଯାଇ ନିଜ ହାତରେ ପକୋଡ଼ି ଆଣି ଖାଇବାକୁ ଲାଗିଲେ। ଏପରି ଦୃଶ୍ୟକୁ ଲକ୍ଷ୍ମୀଦେବୀ ଖୁବ୍ ଉପଭୋଗ କରୁଥିଲାଭଳି ମୋର ମନେ ହୋଇଥିଲା। ପକୋଡ଼ି ସାଙ୍ଗକୁ ଚା', କଫି, ମୃଦୁପାନୀୟ ଏବଂ କିଛି ବନ୍ଧୁଙ୍କ ପାଇଁ ବିଦେଶୀ ସୁରା। ଏହା ଭିତରେ ସମୟ କେମିତି ଚାଲିଯାଇଥିଲା ଜାଣି ହୋଇନଥିଲା।

ଲକ୍ଷ୍ମୀଦେବୀ ଯେତେବେଳେ କହିଲେ "ଡିନର୍ ଟେବୁଲ୍ ରେଡ଼ି", ଆମେ ସବୁ ସଚେତନ ହୋଇ ଡାଇନିଂ ଟେବୁଲ୍ ପାଖକୁ ଗଲୁ। ଟେବୁଲ୍‌ରେ ଅରୁଆ ଭାତ, ରସମ୍,

ସମୟର ସମସ୍ତଙ୍କୁ ଆଳୁମଟର ତରକାରି, ବିନ୍‌ଭଜା, ସାଲାଡ୍, ପାମ୍ପଡ଼, ଆଚାର ସବୁ ସଜା ହୋଇଥିଲା । ପାଖରେ କିଛି ରୁଟି ମଧ୍ୟ ଥିଲା । ମୋର ସ୍ପଷ୍ଟ ମନେପଡୁଛି ସେଦିନ ରାତିରେ ସେ ପରିବେଶରେ ଉଣା ଅଧିକେ ସମସ୍ତେ 'ଟେବୁଲ୍ ମ୍ୟାନର୍'କୁ ଭୁଲିଯାଇଥିଲେ । ନିଜ ନିଜ ପସନ୍ଦର ଖାଦ୍ୟ ନିଜ ହାତରେ ଆଣି ଆମେସବୁ ମନ ଆନନ୍ଦରେ ଖାଇଲୁ । ସେଦିନ ଆମ ଘର ଆଉ ବାଲକ୍ରିଷ୍ଣନ୍‌ଙ୍କ ଘର ଭିତରେ ଆମେ କିଛି ପ୍ରଭେଦ ଦେଖୁନଥିଲୁ ।

ରାତ୍ରିଭୋଜନ ପରେ ବାଲକ୍ରିଷ୍ଣନ୍‌ଙ୍କ ସହିତ କେତେକ ବିଷୟରେ ଆଲୋଚନା ହୋଇଥିଲା । ବିଶେଷକରି ବୟନଶିଳ୍ପ କ୍ଷେତ୍ରରେ ଆନ୍ତର୍ଜାତିକ ବଜାରରେ ଚୀନ୍ କିଭଳି ଭାରତବର୍ଷର ମୁଖ୍ୟ ପ୍ରତିଦ୍ୱନ୍ଦୀ ହୋଇ ବାହାରିଥିଲା ସେ ବିଷୟରେ କନ୍‌ସଲ୍ ଜେନେରାଲ୍ ଆମକୁ କେତେକ ସୂଚନା ଦେଇଥିଲେ । ଆମେ ଆସିବା ପୂର୍ବରୁ ବାଲକ୍ରିଷ୍ଣନ୍‌ଙ୍କୁ ଓଡ଼ିଶାରେ ତିଆରି ମୀନାକରା ରୁପା ଟାଇକ୍ଲିପ୍ ଓ ତାଙ୍କ ଧର୍ମପତ୍ନୀଙ୍କୁ ଚାନ୍ଦିର ମୁଦି ଓ ଝିଅଙ୍କୁ ସମ୍ବଲପୁରୀ ରୁମାଲ ଉପହାର ଭାବରେ ଦେଇଥିଲୁ । ସମ୍ବଲପୁରୀ ରୁମାଲର କାରୁକାର୍ଯ୍ୟ ଦେଖି ସେ ଅତ୍ୟନ୍ତ ଖୁସି ହୋଇଥିଲେ । ଏସବୁ ଜିନିଷ ବିଦେଶକୁ କାହିଁକି ରପ୍ତାନୀ ହେଉନାହିଁ ବୋଲି ସେ ଜାଣିବାକୁ ଚାହିଥିଲେ । ମୁଁ ତାଙ୍କୁ ସେତେବେଳେ କିଛି ସନ୍ତୋଷଜନକ ଉତ୍ତର ଦେଇପାରିନଥିଲି ।

ବାଲକ୍ରିଷ୍ଣନ୍‌ଙ୍କ ଘରୁ ଆସି ହୋଟେଲରେ ପହଞ୍ଚିଲାବେଳକୁ ଭାରତୀୟ ସମୟ ପ୍ରାୟ ରାତି ଗୋଟାଏ । ଘଣ୍ଟାରେ ତାରିଖ ବଦଳି ଯାଇଥିଲା । ଆମେସବୁ ଗାଡ଼ିରୁ ଓହ୍ଲାଇ ସିଧା ନିଜ ନିଜ କୋଠରିକୁ ଚାଲିଗଲୁ । ଅନ୍ୟଦିନଭଳି ସେଦିନ ରାତିରେ ଲାଉଞ୍ଜ୍‌ରେ ଆମର ଆଉ ବୈଠକ ହୋଇନଥିଲା । ଦିନତମାମ୍ ଖୁବ୍ ବୁଲାବୁଲି ସାଙ୍ଗକୁ ରାତିରେ ତୃପ୍ତିକର ଭୋଜନ ପରେ ଶାନ୍ତିରେ ନିଦ ହୋଇଯାଇଥିଲା । ପରଦିନ ସକାଳୁ ଆମର ସ୍ୱିଜରଲାଣ୍ଡ୍ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେଥିପାଇଁ ଇଚ୍ଛା ନଥିଲେ ବି ସକାଳୁ ଶୀଘ୍ର ଉଠିବାକୁ ପଡ଼ିଥିଲା ।

# ଧରାସ୍ୱର୍ଗ ସୁଇଜରଲାଣ୍ଡ୍

ସମଗ୍ର ବିଶ୍ୱରେ ସୁଇଜରଲାଣ୍ଡ୍ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ରାଷ୍ଟ୍ର ଭାବରେ ପ୍ରସିଦ୍ଧ । ତା'ଛଡ଼ା ପ୍ରତ୍ୟକ୍ଷ ଗଣତନ୍ତ୍ର ସୁଇଜରଲାଣ୍ଡ୍‌ର ଅନ୍ୟଏକ ବିଶେଷତ୍ୱ ଥିଲା । 'ଆଇନ୍ ଆଖିରେ ସମସ୍ତ ସୁଇଜରଲାଣ୍ଡ୍‌ବାସୀ ସମାନ' ବୋଲି କୁହାଯାଉଥିଲେ ବି ଦୀର୍ଘଦିନ ପର୍ଯ୍ୟନ୍ତ ସେ ରାଷ୍ଟ୍ରରେ ମହିଳାମାନଙ୍କର ଭୋଟ୍‌ଦାନ ଅଧିକାର ନଥିଲା । ୧୯୭୧ ମସିହାରେ ପ୍ରଥମେ

ସେ ଦେଶର ମହିଳାମାନେ ଭୋଟ୍ ଅଧିକାର ପାଇଲେ ଓ ପ୍ରତ୍ୟକ୍ଷ ରାଜନୀତିରେ ଅଂଶଗ୍ରହଣ କଲେ। ଏକ ନିରପେକ୍ଷ ରାଷ୍ଟ୍ର ହୋଇଥିବାରୁ ଦେଶ ବିଦେଶର ବହୁ ବିଭବଶାଳୀ ବ୍ୟକ୍ତି ସୁଇଜରଲାଣ୍ଡରେ ଥିବା ସୁଇସ୍‌ବ୍ୟାଙ୍କରେ ସେମାନଙ୍କ କଳାଧନ ଗଚ୍ଛିତ ରଖନ୍ତି। ଆମ ଓଡ଼ିଶାର କେହି କେହି ରାଜନେତା ସୁଇସ୍‌ବ୍ୟାଙ୍କ୍‌ରେ ସେମାନଙ୍କର କଳାଟଙ୍କା ରଖିଥିବା କଥା ଶୁଣାଯାଏ। ସୁଇଜର୍‌ଲାଣ୍ଡ୍ ସରକାର ୧୯୩୪ ମସିହାରେ ଏକ ଆଇନ୍ ପ୍ରଣୟନ କରି ସେ ଦେଶର ବିଭିନ୍ନ ବ୍ୟାଙ୍କ୍‌ରେ ଜମାଥିବା ଟଙ୍କା ସମ୍ପର୍କରେ କାହାକୁ କିଛି ତଥ୍ୟ ନଦେବା ପାଇଁ ସ୍ଥିର କରିଥିଲେ। ଏହା ଫଳରେ ସୁଇସ୍‌ବ୍ୟାଙ୍କ୍‌ରେ ଗଚ୍ଛିତ ଟଙ୍କା ଗୋପନୀୟ ହୋଇଥାଏ।

## ସୁନାବିସ୍କୁଟ୍‌ର ସହର ଜୁରିଚ୍

ଜୁରିଚ୍ ସହରଟି ବିଶ୍ୱର ଅନ୍ୟ ଏକ ବାଣିଜ୍ୟ କେନ୍ଦ୍ର ଭାବରେ ବିଦିତ। ଏ ସହରରେ ସୁନା ଅଧିକ ପରିମାଣରେ ବିକ୍ରିଖର୍ଦ୍ଦି ହେଉଥିଲା। ଦୋକାନର ସୋ'କେଶ୍‌ମାନଙ୍କରେ ବିଭିନ୍ନ ଆକୃତିର ସୁନାବିସ୍କୁଟ୍ ଦେଖିଲେ ସ୍ୱତଃ ଲୋଭ ଜାତ ହେଉଥିଲା। ଆମେ ସେ ସହରକୁ ଯାଇଥିବା ସମୟରେ ସୁନା ନେବାଆଣିବା ଉପରେ କେତେକ କଟକଣା ଥିଲା। ପରବର୍ତ୍ତୀ ଅବସ୍ଥାରେ ସେ କଟକଣା ଉଠିଗଲା। ସେଥିପାଇଁ ସେତେବେଳେ ବିଦେଶ ଯାଉଥିବା ଲୋକେ ଚୋରାରେ ସୁନା ଆଣିବା ପାଇଁ ମନ ବଳାଉଥିଲେ। ବିସ୍କୁଟ୍ ଆକାରର ସୁନା ଆଣିଲେ ଧରାପଡ଼ିବା ଭୟରେ ମହିଳାମାନେ ସୁନାକୁ ବଳା ଭଳିଆ କରି ହାତରେ ପିନ୍ଧି ଚାଲିଆସୁଥିଲେ। ଥରେ ଜଣେ ବଡ଼ ଅଫିସରଙ୍କ ଧର୍ମପତ୍ନୀ କିପରି ଜୁରିଚ୍‌ରୁ ଚୋରାରେ ସୁନା ଆଣି ଦିଲ୍ଲୀ ବିମାନବନ୍ଦରରେ ଧରାପଡ଼ିଥିଲେ ସେକଥା ମୁଁ ଓଡ଼ିଶାର ଜଣେ ଉଚ୍ଚପଦସ୍ଥ ପୁଲିସ୍ ଅଫିସରଙ୍କ ପାଖରୁ ଶୁଣିଥିଲି। ସେହିଦିନୁ ସୁନା ବିସ୍କୁଟ୍‌ର ସହରଭାବରେ ଖ୍ୟାତିଲାଭ କରିଥିବା ଜୁରିଚ୍ ସହରକୁ ଦେଖିବାକୁ ଇଚ୍ଛା ଥିଲା। ଯାହାହେଉ ଜୁରିଚ୍‌ରେ ପହଞ୍ଚିବା ପରେ ସେ ଇଚ୍ଛା ପୂରଣ ହୋଇଗଲା।

ଫ୍ରାଙ୍କ୍‌ଫର୍ଟରୁ ବାହାରି ଆମେ ଜୁରିଚ୍‌ରେ ପହଞ୍ଚିଲା ବେଳକୁ ଭାରତୀୟ ସମୟ ରାତି ନଅଟା ହୋଇଯାଇଥିଲା। ୟୁରୋପର ଗୋଟିଏ ଦେଶରୁ ଆଉ ଗୋଟିଏ ଦେଶ ସ୍ଥଳପଥରେ ଯିବାକୁ ହେଲେ 'ଅଟୋବାନ୍'ରେ ଯିବାକୁ ପଡ଼େ। ରାସ୍ତାରେ ଯିବାପାଇଁ ଚାରୋଟି ଲେନ୍ ଓ ଫେରିବା ପାଇଁ ଆଉ ଚାରୋଟି ଲେନ୍। ଆମଭଳି ଗୋଟିଏ ରାସ୍ତାରେ ସବୁରକମର ଗାଡ଼ି ଯିବା ଆସିବା ବ୍ୟବସ୍ଥା ସେଠାରେ ନଥିଲା। ଗାଡ଼ିଚାଳକମାନଙ୍କ ପାଇଁ ସେସବୁ ରାସ୍ତାମାନଙ୍କରେ ଦୁଇଟି କଟକଣା ଥିଲା। ଘଣ୍ଟାପ୍ରତି ଚାଳିଶି କିଲୋମିଟର ତଳକୁ ଗାଡ଼ି ଚଳାଇବା କିମ୍ବା ଗାଡ଼ି ଚଳାଇବା ସମୟରେ ହର୍ଣ୍ଣ ବଜାଇବାକୁ ନିଷିଦ୍ଧ

କରାଯାଇଥିଲା । କେବଳ ହସ୍ପିଟାଲ୍‌ର ଆମ୍ବୁଲାନ୍ସ ଏବଂ ପୁଲିସ୍ ଗାଡ଼ିକୁ ରାସ୍ତାରେ ହର୍ଣ୍ଣ ବଜାଇବାକୁ ଅନୁମତି ଦିଆଯାଇଥିଲା । ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଲାଇଟ୍ ସିଗ୍‌ନାଲ୍ ମାଧ୍ୟମରେ ଗାଡ଼ିର ଗତିବିଧିକୁ ଜାଣିହୁଏ । ୟୁରୋପ ମହାଦେଶରେ କେବଳ ଇଂଲଣ୍ଡକୁ ଛାଡ଼ିଦେଲେ ଅନ୍ୟ ରାଷ୍ଟ୍ରମାନଙ୍କରେ ଗାଡ଼ିସବୁ ବାଁ ପାଖରେ ପାସ୍ କରେ । ରାସ୍ତାର ଚାରୋଟି ଲେନ୍ ମଧ୍ୟରୁ ଯିଏ ଯେତେ ସ୍ପିଡ୍‌ରେ ଗାଡ଼ି ଚଳାଇବାକୁ ଚାହାନ୍ତି ସେହି ଅନୁଯାୟୀ ନିଜର ବାଁ ପଟ ଲେନ୍ ନେଇଥାନ୍ତି ।

ଫ୍ରାଙ୍କ୍‌ଫର୍ଟରୁ ଆସିଲାବେଳେ ମୁଁ ଲକ୍ଷ୍ୟକରୁଥିଲି ଆମ ଗାଡ଼ିର ହାରାହାରି ବେଗ ଘଣ୍ଟାକୁ ପ୍ରାୟ ଶହେ କଲୋମିଟର ରହୁଥିଲା । ରାସ୍ତାର ସ୍ଥିତି ଖୁବ୍ ଭଲ ଥିବାରୁ ଏବଂ ଆମେ ଏୟାର୍‌କଣ୍ଡିସନ୍ ଗାଡ଼ିରେ ଯାଉଥିବାରୁ ଯାତ୍ରାର ପୀଡ଼ା ଜଣାପଡୁନଥିଲା । ଗାଡ଼ିରେ ବସିଲାବେଳେ ମୁଁ ଭାବୁଥିଲି, ଆମ ଜୀବଦ୍ଦଶାରେ କ'ଣ ଆମର ଏମିତି ରାସ୍ତା କି କୋଚ୍ ସାଧାରଣ ଯାତ୍ରା ପାଇଁ ଉପଲବ୍ଧ ହୋଇପାରିବ ନାହିଁ? କଟକରୁ ଭୁବନେଶ୍ୱରର ଦୂରତ୍ୱ ମାତ୍ର ପଚିଶି କିଲୋମିଟର । ସେତିକି ରାସ୍ତା ବସ୍‌ରେ ଯିବାପାଇଁ କିପରି ଘଣ୍ଟାକରୁ ଅଧିକ ସମୟ ଲାଗୁଥିଲା ସେକଥା ମନେପଡ଼ିବାରୁ ଲଜ୍ଜା ଲାଗିଲା ।

ଜୁରିଚ୍ ସହରର ଅନ୍ୟତମ ସୌଖୀନ ହୋଟେଲ 'ହଲିଡ଼େ ଇନ୍'ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଆମର ସଫଳ ଯାତ୍ରାପାଇଁ ଯାହା ଯାହା ଆବଶ୍ୟକ, ସୀତାଟ୍ରାଭେଲ୍‌ସ୍ ପକ୍ଷରୁ ସବୁ ବନ୍ଦୋବସ୍ତ କରାଯାଇଥିଲା । ଆମେ ହୋଟେଲରେ ପହଞ୍ଚି ଅଭ୍ୟର୍ଥନା କକ୍ଷରୁ ଚାବି ସଂଗ୍ରହ କରି ନିଜ ନିଜ ରୁମ୍‌ରେ ବ୍ୟାଗେଜ୍‌ପତ୍ର ରଖି ସିଧା ଚାଲିଲୁ ଡାଇନିଂହଲ୍‌କୁ । ହୋଟେଲରେ ୟୁରୋପୀୟ ଖାଦ୍ୟ ସାଙ୍ଗକୁ ଅନ୍ୟାନ୍ୟ ଖାଦ୍ୟ ଥିବାରୁ ଆମ ପାଇଁ ବିଶେଷ ଅସୁବିଧା ହେଲାନାହିଁ ।

ରାତ୍ରିଭୋଜନ ପରେ ଲାଉଞ୍ଜ୍‌ରେ କିଛିସମୟ ବସିବା ଭିତରେ ପରଦିନର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା । ସମୟ କମ୍, ମାତ୍ର ଦର୍ଶନୀୟ ସ୍ଥାନ ଅଧିକ । ତା'ରି ଭିତରେ କିଭଳି ଭାରସାମ୍ୟ ରକ୍ଷାକରି ବେଶି ଜାଗାକୁ ଯାଇହେବ ତାହା ଆମପାଇଁ ଚିନ୍ତାର ବିଷୟ ହୋଇଥିଲା । ବିକ୍ରମ ରାଓ ଆମକୁ ବାରମ୍ବାର ଚେତେଇ ଦେଉଥାନ୍ତି ଯେ, "ବିଦେଶ ରାଷ୍ଟ୍ରରେ ପ୍ରତ୍ୟେକ ମୁହୂର୍ତ୍ତ ପାଇଁ ପଇସା ଖର୍ଚ୍ଚ, ସେଥିରୁ ଯେତେ ସୁବିଧା ହାସଲ କରାଯାଇପାରେ କରିବା କଥା । ଖାଇପିଇ ଶୋଇବା ପାଇଁ ଜୀବନରେ ବହୁତ୍ ସମୟ ମିଳିବ । ସେଥିପାଇଁ ବିଦେଶରେ ସମୟାନୁବର୍ତ୍ତୀ ହେବା ନିହାତି ଆବଶ୍ୟକ ।" ଆମେ ରୁମ୍‌କୁ ଫେରି ଶୋଇଲାବେଳକୁ ରାତି ଏଗାରଟା । ଆରାମଦାୟକ ହୋଟେଲରେ ଆରାମରେ ନିଦ ହୋଇଯାଇଥିଲା ।

## ସୁଇଜରଲାଣ୍ଡ୍‌ରେ ଘାସଚାଷ

ପୂର୍ବଦିନ ରାତିରୁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଥିବାରୁ ସକାଳୁ ଆଉ କିଏ କାହାକୁ ଡାକିବାକୁ ପଡ଼ିଲା ନାହିଁ। ଠିକ୍ ସମୟରେ ସମସ୍ତେ ନିତ୍ୟକର୍ମ ସାରି ଡାଇନିଂହଲ୍‌ରେ ପହଞ୍ଚିଗଲେ। ଡାଇନିଂହଲ୍‌ରେ ପାରମ୍ପରିକ ଜଳଖିଆ, ବନ୍, ବଟର ଓ ଜାମ୍ ନଚେତ୍ ଟୋଷ୍ଟ୍‌ବଟର୍ ଓମ୍‌ଲେଟ୍ ସାଙ୍ଗକୁ ଚା' କିମ୍ବା କଫି। ଚାହିଲେ କୋକାକୋଲାର ଟିଣ ମିଳୁଥିଲା।

ଜଳଖିଆ ପର୍ବ ଶେଷ କରି ଆମେ ବାହାରିପଡ଼ିଲୁ ଲୁଜେରନ୍ ସହର ଅଭିମୁଖେ। ଆମ୍‌ଷ୍ଟରଡାମ୍‌ରୁ ଗାଡ଼ି ଓ ଡ୍ରାଇଭର୍ ଆମ ସାଙ୍ଗରେ ରହିଥିଲେ ହେଁ ଗାଇଡ୍ ବଦଳିଯାଇଥିଲେ। ମେରୀଙ୍କୁ ଆମେ ଫ୍ରାଙ୍କଫର୍ଟରୁ ବିଦାୟ ଦେଇଥିଲୁ। ମାତ୍ର କେଇଦିନର ରହଣି ମଧ୍ୟରେ ତାଙ୍କ ସହିତ କେଜାଣି କାହିଁକି ଏକପ୍ରକାର ଆତ୍ମୀୟତା ବଢ଼ିଯାଇଥିଲା। ସେ ଆମଠାରୁ ବିଦାୟ ନେଲାବେଳେ ତାଙ୍କ ଆଖି ଛଳଛଳ ହୋଇଯାଇଥିଲା। ଆମ ଭିତରୁ ମଧ୍ୟ କେତେକ କିଛି ମୁହୂର୍ତ୍ତ ପାଇଁ ଭାବପ୍ରବଣ ହୋଇଯାଇଥିଲେ। ସୀତା ଟ୍ରାଭେଲ୍‌ସ ପକ୍ଷରୁ ମେରୀଙ୍କ ପ୍ରାପ୍ୟ ପ୍ରଦାନ କରାଯାଇଥିଲେ ହେଁ ସୌଜନ୍ୟ ଦୃଷ୍ଟିରୁ ଆମେ ତାଙ୍କୁ ଉପଢୌକନ ପ୍ରଦାନ କରିଥିଲୁ ଏବଂ ସେ ତାକୁ ଆଦରରେ ଗ୍ରହଣ କରିଥିଲେ।

ଜୁରିଚ୍‌ରୁ ଆମ ଗାଡ଼ିରେ ଯେଉଁ ଗାଇଡ୍ ଗଲେ ସେ ଜଣେ ମଧ୍ୟମବୟସ୍କା। ପର୍ଯ୍ୟଟକମାନଙ୍କୁ ବିଭିନ୍ନ ସ୍ଥାନ ବୁଲାଇ ଦେଖାଇବାରେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ରହିଥିଲା। ଆମେ କୋଚ୍‌ରେ ବସିବା ପରେ ସେ ପ୍ରଥମେ ଆମକୁ ତାଙ୍କର ପରିଚୟ ଦେଇ ସ୍ୱାଗତ କଲେ। ତାଙ୍କ ନାଁ ମିସ୍ ଆନୀ ଓ ଦୀର୍ଘ କୋଡ଼ିଏବର୍ଷ କାଳ ସେ ଗାଇଡ୍‌ଭାବରେ କାର୍ଯ୍ୟ କରୁଛନ୍ତି ବୋଲି ଆମକୁ ଜଣାଇଥିଲେ। ତାଙ୍କ ଇଂରାଜୀ ଉଚ୍ଚାରଣ ସେତେଟା ସ୍ପଷ୍ଟ ନଥିଲା, ତଥାପି ବୁଝିବାପାଇଁ ଆମର କିଛି ଅସୁବିଧା ହେଉନଥିଲା।

ଗାଡ଼ି ଚାଲିଲାମାତ୍ରେ ଆନୀ ଆରମ୍ଭ କରିଦେଲେ ତାଙ୍କ ରନିଂ କମେଣ୍ଟ୍ରି। ଏକ ସୌନ୍ଦର୍ଯ୍ୟମୟ ରାଷ୍ଟ୍ର ଭାବରେ ସୁଇଜରଲାଣ୍ଡ୍ ସମଗ୍ର ବିଶ୍ୱରେ ବିଖ୍ୟାତ ଥିବା ବିଷୟରେ ସେ ଅନର୍ଗଳ କହିଚାଲିଥିଲେ। କିଛିବାଟ ଗଲାପରେ ବାଟରେ ପଡ଼ିଲା ବିସ୍ତୀର୍ଣ୍ଣ ଘାସପଡ଼ିଆ। ଘାସସବୁ ବଢ଼ି ଅଣ୍ଟାଏ ଉଚ୍ଚା ହୋଇଥିଲା। ପ୍ରଥମେ ଆମେ କିଛି ବୁଝିପାରିଲୁ ନାହିଁ। ଏତେ ବଡ଼ ଉନ୍ନତ ଦେଶ, ଅଥଚ ବିଲରେ କୌଣସି ଫସଲ ନହୋଇ ଘାସ ବଢ଼ିଥିଲା ? ଆମ ମନର ସଂଶୟ ଦୂର କରିବା ପାଇଁ ଆମେ ସେ ବିଷୟରେ ଆନୀଙ୍କୁ ପଚାରିଲୁ। ସେ ଯାହା କହିଲେ ବିଶ୍ୱାସ ନ ହେଲେ ମଧ୍ୟ ତାହା ହିଁ ଥିଲା ସତ୍ୟ ଘଟଣା। ସୁଇଜରଲାଣ୍ଡ୍‌ରେ ଗୋପାଳନ ଏବଂ ଦୁଗ୍ଧ ଉତ୍ପାଦନ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଏ। ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିବା ହୋଲ୍‌ଷ୍ଟିନ୍ ଗାଈଙ୍କର ମୂଳ ଜାତି ହେଉଛି ସୁଇଜରଲାଣ୍ଡ୍। ହୋଲ୍‌ଷ୍ଟିନ୍

ବଂ-ଜାତ ବ୍ରେରେନ୍‌ସି, ବ୍ରାଉନ୍‌ସ୍ୱୀସ୍ ଓ ଜର୍ସୀ ଗାଈମାନେ ମଧ୍ୟ ସେଠାରେ ଅଧିକ ସଂଖ୍ୟାରେ ଦେଖାଯାଉଥିଲେ। ଗାଈମାନଙ୍କୁ ସୁସ୍ଥସବଳ ରଖିବା ଓ ଅଧିକ ଦୁଗ୍ଧ ଉତ୍ପାଦନ ଉଦ୍ଦେଶ୍ୟରେ ସେ ଦେଶରେ ଘାସଚାଷ ଉପରେ ଗୁରୁତ୍ୱ ଦିଆଯାଉଥିଲା। ଗାଈମାନଙ୍କୁ ଘରେ ନବାନ୍ଧି ବିଲରେ ମନଇଚ୍ଛା ଘାସ ଖାଇବାକୁ ଛାଡ଼ିଦିଆଯାଉଥିଲା। ଆମେ ବାଟରେ ଗଲାବେଳେ ଅନେକ ଗାଈ ବିଲରେ ଘାସ ଖାଉଥିବାର ଦେଖିଲୁ। ସେମାନଙ୍କ ପହ୍ନାସବୁ ତଳେ ଲାଗିଗଲାଭଳି ଦେଖାଯାଉଥିଲା। ଗୋଟିଏ ଗୋଟିଏ ହୋଲଷ୍ଟିନ୍ ଗାଈ ଦିନକୁ ତିରିଶିରୁ ଚାଳିଶି ଲିଟର କ୍ଷୀର ଦେଉଥିବା କଥା ଆମେ ଆନୀଙ୍କ ପାଖରୁ ଜାଣିଲୁ।

ଆମରାଜ୍ୟରେ ଧାନକୁ ଖଣି ପକାଇଲାଭଳି ସୁଇଜରଲାଣ୍ଡ୍‌ରେ ଘାସକୁ ଖଣି ପକାଯାଏ। ବର୍ଷରେ ପ୍ରାୟ ଚାରିମାସ ଅତ୍ୟଧିକ ଥଣ୍ଡା ଓ ତୁଷାରପାତ ଫଳରେ ଘାସଚାଷ ହୋଇପାରେ ନାହିଁ। ସେଥିପାଇଁ ସେପ୍ଟେମ୍ବର ମାସରୁ ଘାସକୁ କାଟି ସାନସାନ କରି ଘାସଖଣିରେ ରଖିଦିଆଯାଏ। ଏସବୁ ଘାସଖଣିକୁ ସେ ଦେଶରେ 'ସାଇଲୋ ଟାୱାର' ବୋଲି କୁହାଯାଏ। ପ୍ରାୟ ଦୁଇମାସ ପରେ ଖଣିରୁ ଘାସ ବାହାର କରାଯାଇ ଗାଈମାନଙ୍କୁ ଦିଆଯାଏ। ଖଣିଘାସ ଗାଈମାନଙ୍କର ପ୍ରିୟଖାଦ୍ୟ ବୋଲି ସେଠାକାର ଲୋକଙ୍କଠାରୁ ଆମେ ଶୁଣିଲୁ। ଏସବୁ ଶୁଣି ଆମରାଜ୍ୟରେ ରାଜ୍ୟ ସରକାରଙ୍କ ସମସ୍ତ ପ୍ରକାର ପ୍ରତିଶ୍ରୁତି ଓ ପ୍ରଚାର ସତ୍ତ୍ୱେ ଶ୍ୱେତବିପ୍ଲବ କିପରି ବିଫଳ ହୋଇଛି ତାର ଏକ ଚିତ୍ର ମନରେ ଭାସିଆସିଲା। ଆମର ଲୋକେ କେବଳ ଗୋବର ପାଇବା ପାଇଁ ଗାଈଗୋରୁ ପାଳିଥାନ୍ତି ବୋଲି ମୁଁ କେତେକ ସ୍ଥାନରୁ ଶୁଣିଛି। ଗାଈଗୋରୁ ସବୁ ପଡ଼ିଆରେ ଘାସ ଚରି ନଈ ପୋଖରୀରୁ ପାଣି ପିଇ ଘରକୁ ଫେରନ୍ତି। ରାଜଧାନୀ ଭୁବନେଶ୍ୱରର ରାଜରାସ୍ତା ସବୁ ଗାଈଗୋରୁଙ୍କର ଆବାସସ୍ଥଳୀ ଭାବରେ ବ୍ୟବହୃତ ହୁଏ। ରାସ୍ତାରେ ଗାଈ ଛୁଆ ଜନ୍ମ କଲେ ମାଲିକମାନଙ୍କର ନଜର ପଡ଼େ। ସର୍ବସାଧାରଣ ରାସ୍ତାକୁ ଅବରୋଧ କରି ରାଜଧାନୀ ସହରରେ ଗାଈସବୁ କିପରି ଦୀର୍ଘଦିନ ଧରି ରାସ୍ତାରେ ଶୋଇଥାନ୍ତି ସେକଥା ଭାବି ମନ ଖରାପ ହୋଇଗଲା।

## ଲୁଜେରନ୍‌ର ଘଣ୍ଟାବଜାର

କିଛି ସମୟ ପରେ ଆମ ଗାଡ଼ି ଲୁଜେରନ୍ ସହରରେ ପହଞ୍ଚିଲା। ଲୁଜେରନ୍ ସହରଟି ଅପେକ୍ଷାକୃତ ସାନ। କିନ୍ତୁ ଚାରିଆଡ଼େ ପରିଷ୍କାର, ପରିଚ୍ଛନ୍ନ। ରାସ୍ତାକଡ଼ରେ ଥିବା ଗଛସବୁ ଦେଖିବାକୁ ଏକ ପ୍ରକାରର। ସମାନ ଉଚ୍ଚରେ କଟାଯାଇଥିଲା। ଦୂରରୁ ଦେଖିଲେ ଚିତ୍ର କଲାଭଳି ଦେଖାଯାଉଥିଲା।

ଲୁଜେରନ୍‌ରେ ଥିବା ଘଣ୍ଟା କାରଖାନା ପୃଥିବୀ ପ୍ରସିଦ୍ଧ। ଆଗକାଳରେ ଆମଦେଶରେ ଯେଉଁ 'ଓମେଗା', 'ସାଇମା', 'ଟି-ଟଟ୍' ଇତ୍ୟାଦି ଘଣ୍ଟାସବୁ ମିଳୁଥିଲା, ସେସବୁ ଏଇଠି

ତିଆରି ହେଉଥିଲା। ଦେଶ ସ୍ୱାଧୀନ ହେବାପରେ ସେସବୁ ଘଣ୍ଟାର ଦାମ୍ ବୃଦ୍ଧିପାଇଲା। ଆମ ଦେଶରେ ନୂଆ ନୂଆ ଘଣ୍ଟା ମଧ୍ୟ ତିଆରି ହୋଇ ବଜାରକୁ ଆସିଲା। ଆଗେ ସମ୍ଭ୍ରାନ୍ତ ପରିବାରର ବାହାଘରମାନଙ୍କରେ ଓମେଗା ୱାଚ୍, ଗ୍ରୀନ୍ ମଡେଲ୍ ରାଲେ ସାଇକଲ ଓ ଫିଲିପ୍ସ ରେଡ଼ିଓ ଯୌତୁକ ଆକାରରେ ଦିଆଯାଉଥିଲା। ଲୁଜେରନ୍ ସହରରେ ହାତବନ୍ଧା ଘଣ୍ଟା ବ୍ୟତୀତ ଘରର ସମସ୍ତ ବ୍ୟବହାର୍ଯ୍ୟ ପଦାର୍ଥରେ ସାନ ବଡ଼ ଘଣ୍ଟା ଖଞ୍ଜାଯାଇଥିଲା। ଏପରିକି ସ୍ତ୍ରୀଲୋକଙ୍କ ଚୁଡ଼ିରେ ମଧ୍ୟ ଘଣ୍ଟା ଲାଗିଥିଲା।

ଆମର ଘଣ୍ଟା କାରଖାନା ଦେଖିବା ପାଇଁ ଆଗରୁ ବ୍ୟବସ୍ଥା କରାଯାଇଥିଲା। ଆମେ ଆଉ କାଳ ବିଳମ୍ବ ନକରି ସିଧା ଘଣ୍ଟା କାରଖାନକୁ ଚାଲିଲୁ। କାରଖାନା ଗେଟ୍ ପାଖରେ ଆମ ଗାଡ଼ି ରହିବାରୁ କାରଖାନା କର୍ତ୍ତୃପକ୍ଷ ଆସି ଆମକୁ ସ୍ୱାଗତ କଲେ। ଆମେ ସେମାନଙ୍କ ସାଙ୍ଗରେ କାରଖାନା ଭିତରକୁ ଗଲୁ। ଆରେ ବାପ୍‌ରେ ବାପ୍! କେତେବଡ଼ କାରଖାନା! କାରଖାନା ଭିତର ବାତାନୁକୂଳ। ଶତାଧିକ ଲୋକ କାର୍ଯ୍ୟବ୍ୟସ୍ତ। ମାତ୍ର ଦେଖିଲେ କାରଖାନାଟି ଚାଲୁ ଅବସ୍ଥାରେ ଥିଲାଭଳି ପ୍ରଥମେ ମନେ ହୋଇନଥିଲା। ପାଟିତୁଣ୍ଡ କିଛି ନଥିଲା। କେହି କାହା ସାଙ୍ଗରେ କଥାବାର୍ତ୍ତା କରୁନଥିଲେ। ଅଥଚ ସବୁକାମ ସୁରୁଖୁରୁରେ ଚାଲିଥିଲା।

କାରଖାନାଟି ଦୁଇଟି ଭାଗରେ ବିଭକ୍ତ ହୋଇଥିଲା। ପ୍ରଥମଟିରେ ଘଣ୍ଟାର ପାର୍ଟସ୍ ସବୁ ତିଆରି ହେଉଥିଲା ଓ ଦ୍ୱିତୀୟଟିରେ ସେସବୁ ଖଞ୍ଜାଯାଇ ଘଣ୍ଟା ଆକାରରେ ବାହାରୁଥିଲା। କାରଖାନାର ମ୍ୟାନେଜର ଡେଭିଡ୍ ଆମକୁ ବିଭିନ୍ନ ସେକ୍ସନ୍‌କୁ ନେଇ ସବୁ ବିଷୟ ପ୍ରାଞ୍ଜଳ ଭାବରେ ବୁଝାଇଲେ। ଶହଶହ ବର୍ଷ ଧରି ସେ କାରଖାନରେ ଘଣ୍ଟାର 'ମାନ'କୁ କିଭଳି ବଜାୟ ରଖାଯାଇ ପାରିଥିଲା, ସେ ବିଷୟ କହିବାକୁ ସେ ଭୁଲି ନ ଥିଲେ। ଆମ ଭିତରୁ କାହାରି କାହାରି ଘଣ୍ଟା କିଣିବା ପାଇଁ ଆଗ୍ରହ ଥିଲା। ସେକଥା ପ୍ରକାଶ କରିବାରୁ କାରଖାନା ଭିତରେ ଘଣ୍ଟା ବିକ୍ରିର ବ୍ୟବସ୍ଥା ନଥିବା କଥା ଡେଭିଡ୍ ବିନୟତାର ସହିତ ପ୍ରକାଶ କଲେ। କାରଖାନା ବାହାରେ ଥିବା ସେଲ୍ସ କାଉଣ୍ଟରରେ ଘଣ୍ଟା ବିକ୍ରି ପାଇଁ ମିଳୁଥିବା କଥା ଆମକୁ ସେ ସୂଚାଇଥିଲେ। କାରଖାନା ବୁଲିସାରିବା ପରେ ସେ ଆମକୁ ତାଙ୍କ ଅଫିସ୍‌କୁ ଆମନ୍ତ୍ରଣ କରି ସେଠାରେ ଚା' ଭୋଜିରେ ଆପ୍ୟାୟିତ କରିଥିଲେ। ବିଦେଶ ରାଷ୍ଟ୍ରରେ ସର୍ବତ୍ର ଆଦବକାଇଦା ଉପରେ ଗୁରୁତ୍ୱ ଦିଆଯାଇଥାଏ ଏବଂ ଅତିଥିମାନଙ୍କୁ ଚର୍ଚ୍ଚାରେ ଊଣା କରାଯାଏ ନାହିଁ।

ଆମେ ଚା'ପାନ ଶେଷରେ ଘଣ୍ଟାକାଉଣ୍ଟର୍ ଆଡ଼େ ଚାଲିଲୁ। ସେଇଟା ଘଣ୍ଟାକାଉଣ୍ଟର୍ ନଥିଲା; ଏକପ୍ରକାର ଘଣ୍ଟା ମାର୍କେଟ୍। କେତେ ରକମର ଭଳିକି ଭଳି ଘଣ୍ଟା, ନଦେଖିଲେ ବିଶ୍ୱାସ କରିହେବ ନାହିଁ। ଦାମ୍ ମଧ୍ୟ ସେହିଭଳି। ମୁଁ ବିଦେଶ ଭ୍ରମଣରେ ଗଲାବେଳେ ମୋ ଘଣ୍ଟାଟି ନେଇନଥିଲି। ସେଥିପାଇଁ ଘଣ୍ଟାଟିଏ କିଣିବା ପାଇଁ ମନରେ

ଅତ୍ରହ ଥିଲା। ଦୋକାନରେ ବୁଲିଲାବେଳେ ଘଣ୍ଟାର ଦାମ୍ ଆଡ଼େ ଆଖି ପକାଇ ମନ ଫିକା ପଡ଼ିଗଲା; ଭାରତୀୟ ମୁଦ୍ରା ଦଶହଜାରରୁ ଆରମ୍ଭ କରି ଦଶଲକ୍ଷ ଟଙ୍କା ପର୍ଯ୍ୟନ୍ତ। ମୁଁ ବହୁତ ସାହସ ସଞ୍ଚୟ କରି ସେଠାରେ କ'ଣ ସାଧାରଣ ଲୋକଙ୍କ ପାଇଁ ଘଣ୍ଟା ମିଳେନାହିଁ ବୋଲି ଜଣେ କର୍ତ୍ତବ୍ୟରତ କର୍ମଚାରୀଙ୍କୁ ପଚାରିଲି। ସେ କ'ଣ ଭାବିଲେ କେଜାଣି, ମତେ ଗୋଟିଏ କର୍ଣ୍ଣର କାଉଣ୍ଟର୍‌କୁ ନେଇଗଲେ। ସେଠାରେ ସର୍ବନିମ୍ନ ଚାରି ଡଲାର୍ (ଭାରତୀୟ ମୁଦ୍ରାରେ ସେତେବେଳେ ପଚାଶ ଟଙ୍କା)ରୁ ଆରମ୍ଭ କରି ଶହେ ଡଲାର୍ ମୂଲ୍ୟର ଘଣ୍ଟା ବିକ୍ରି ପାଇଁ ଗଚ୍ଛିତ ଥିଲା। ଘଣ୍ଟା ଏତେ କମ୍ ଦାମ୍‌ରେ କିପରି ମିଳୁଛି ବୋଲି ପଚାରିବାରୁ କାଉଣ୍ଟର୍‌ରେ ଥିବା ଜଣେ ଯୁବତୀ କର୍ମଚାରୀ କହିଲେ, "ଏସବୁ ଘଣ୍ଟା ହେଉଛି ୟୁଜ୍ ଆଣ୍ଡ୍ ଥ୍ରୋ ପାଇଁ।" ମୁଁ ହଠାତ୍ ସେ ଯୁବତୀଙ୍କ କଥାର ଗୂଢ଼ମର୍ମ ବୁଝି ପାରିନଥିଲି। ପରେ ଯେତେବେଳେ ମୋର ବନ୍ଧୁ ବହୁଗୁଣା ବୁଝାଇଦେଲେ ଯେ, ବିଦେଶ ରାଷ୍ଟ୍ରମାନଙ୍କରେ 'ୟୁଜ୍ ଆଣ୍ଡ୍ ଥ୍ରୋ' ଯୋଗୁଁ କାରଖାନା ସବୁ ଚାଲୁ ରହିଥିଲା। ପ୍ରତିଦିନ ନୂଆ ନୂଆ ଜିନିଷ ତିଆରି ହୋଇପାରୁଥିଲା ଏବଂ ଲୋକେ ସବୁବେଳେ ଲେଟେଷ୍ଟ୍ ମଡେଲର ଜିନିଷ ବ୍ୟବହାର କରିବାପାଇଁ ସୁଯୋଗ ପାଉଥିଲେ।" ମୋର ସେତେବେଳେ ହେଜ ପଶିଲା। ଆମ ପିଲାଦିନେ ବିଶିଷ୍ଟ ଦେଶପ୍ରେମୀ ସ୍ୱର୍ଗତ ଭିକାରି ପଟ୍ଟନାୟକ କଟକ ସହରରେ ବସାଇଥିବା "ଅଭଙ୍ଗା କଣ୍ଢେଇ' କାରଖାନା କାହିଁକି ଭାଙ୍ଗିଗଲା ସେକଥା ମନେପଡ଼ିଗଲା। ଘରର ଅଳିଆ ଆବର୍ଜନାକୁ ପଚେଇ ସ୍ୱର୍ଗତ ପଟ୍ଟନାୟକ ଯେଉଁ ଅଭଙ୍ଗା କଣ୍ଢେଇ ପ୍ରସ୍ତୁତ କରୁଥିଲେ ତାହା ଦୀର୍ଘସ୍ଥାୟୀ ହେଉଥିଲା। ବାପାଙ୍କ ପାଇଁ କିଣାଯାଉଥିବା କଣ୍ଢେଇ ପିଲାଙ୍କ ଖେଳିବା ପାଇଁ ରହୁଥିଲା। ଯାହାଫଳରେ କଣ୍ଢେଇ ବଜାର ମାନ୍ଦା ହୋଇଗଲା ଏବଂ ଶେଷରେ କାରଖାନାଟି ବନ୍ଦ ହୋଇଗଲା।

ମୁଁ ସେ କାଉଣ୍ଟରରୁ ସର୍ବନିମ୍ନ ଚାରି ଡଲାର ମୂଲ୍ୟର ଗୋଟିଏ ହାତଘଣ୍ଟା କିଣିଲି। ମୋର ମନେଅଛି ଚାରି ଡଲାରବାଲା ଘଣ୍ଟା ସହିତ ଅନ୍ୟ କେତେକ ସୌଖୀନ ଘଣ୍ଟା ମଧ୍ୟ କିଣିଥିଲି। ସେ ଘଣ୍ଟାଟି ଚାରି ପାଞ୍ଚ ବର୍ଷ କାଳ ଠିକ୍ ଭାବରେ ଚାଲି ହଠାତ୍ ଦିନେ ବନ୍ଦ ହୋଇଗଲା। କୌତୂହଳବଶତଃ ତାକୁ ନେଇ କଟକର ବହୁ ପୁରୁଣା ଘଣ୍ଟା କାରିଗରମାନଙ୍କୁ ଦେଖାଇଲି। ସେମାନେ ମୋ ମୁହଁକୁ ଅନାଇ ଟିକିଏ ହସିଦେଇ ଘଣ୍ଟାଟି କୋଉଠୁ ଆଣିଥିଲେ ବୋଲି ପଚାରିଲେ। ସେମାନଙ୍କର ପଚାରିବାର ମଧ୍ୟ ଯଥାର୍ଥତା ଥିଲା; କାରଣ ସେ ଘଣ୍ଟାରେ ମରାମତି ହେଲାଭଳି କୌଣସି ପାର୍ଟସ୍ ନଥିଲା। ଯାହାହେଉ ପଚାଶ ଟଙ୍କାର ଘଣ୍ଟା ଯେ ବିନା ମରାମତିରେ ଦୀର୍ଘ ପାଞ୍ଚବର୍ଷ କାଳ ଚାଲିଲା, ତାହା କମ୍ କଥା ନୁହେଁ।

## ମେଘ ଭିତରେ ସନ୍ତରଣ

ଲୁଜେରନ୍‌ର ଘଣ୍ଟା କାରଖାନା ଓ ଘଣ୍ଟା ବଜାର ବୁଲିସାରିଲା ପରେ ଆମେ ସହରର ଅନ୍ୟ ଅଞ୍ଚଳକୁ ଯିବାପାଇଁ ଇଚ୍ଛା ପ୍ରକାଶ କଲୁ । ଗାଇଡ୍ ସେହି ଅନୁସାରେ ଗାଡ଼ି ଡ୍ରାଇଭର୍‌କୁ ନିର୍ଦ୍ଦେଶ ଦେଲେ । ଆମ ଭିତରେ ଥିବା କେତେକ ବନ୍ଧୁଙ୍କର ଗୋଟିଏ ଦୁର୍ବଳତା ଥିଲା । ଯୁଆଡ଼େ ଗଲେ ମାର୍କେଟିଂ କରିବା । ସେମାନଙ୍କ ପାଖରେ ଉଭୟ ମନ ଓ ଧନ ଥିବାରୁ କିଛି ଅସୁବିଧା ହେଉନଥିଲା । କିନ୍ତୁ ଆଉ କେତେକଙ୍କ ପାଖରେ ମନ ଥିଲେ ବି ଧନ ନଥିବାରୁ ସେମାନେ ସେ ଦିଗରେ ବିଶେଷ ଆଗ୍ରହ ଦେଖାଉ ନଥିଲେ । ଆଉ ଆମେ କେଇଜଣ; ଆମର ଧନ ନଥିଲା କି ଆମେ ମାର୍କେଟିଂ ପାଇଁ ମନ ବଳାଉନଥିଲୁ । ଆମର ଉଦ୍ଦେଶ୍ୟ ଥିଲା, କିପରି ଅଧିକ ସ୍ଥାନ ବୁଲିହେବ । ସେସବୁ ସ୍ଥାନମାନଙ୍କର ଐତିହ୍ୟ, ସଂସ୍କୃତି, ପରମ୍ପରା ସମ୍ପର୍କରେ ଅଧିକ କଥା ଜାଣିହେବ ।

ମାର୍କେଟିଂ ସରିଲାବେଳକୁ ସମୟ ପ୍ରାୟ ଗୋଟାଏ ବାଜି ଯାଇଥିଲା । ପାଗ ମେଘୁଆ ଥିଲା । ବର୍ଷା ହୋଇଗଲେ ଥଣ୍ଡା ପଡ଼ିଯିବାର ଆଶଙ୍କା ସମ୍ପର୍କରେ ଆମ ଗାଇଡ୍ ମିସ୍ ଆନୀ ଆମକୁ ଚେତେଇ ଦେବାରୁ ଆମେ ତରତରରେ ଆସି କୋଚ୍‌ରେ ବସିଲୁ । ଜୁରିଚ୍ ଫେରିଲାବେଳେ ହଠାତ୍ ଚାରିଆଡ ଅନ୍ଧାର ହୋଇଗଲା । ବାହାରର ଥଣ୍ଡା ପବନକୁ ଉପଭୋଗ କରିବା ପାଇଁ ଆମେ ଗାଡ଼ିର କାଚ ଝରକାକୁ ସାମାନ୍ୟ ଖୋଲିଥିଲୁ । ଆମେ କିଛି ବୁଝିବା ପୂର୍ବରୁ ଦଲକାଏ ପବନ ଆମ ଗାଡ଼ିରେ ପଶିଗଲା । ପର ମୁହୂର୍ତ୍ତରେ ଆମେ ଅନୁଭବ କଲୁ ଆମର ଲୁଗାପଟା ଅଧାଅଧି ଓଦା । ଏହା କିପରି ହେଲା, ବାହାରେ ତ ବର୍ଷା ହେଉନାହିଁ, ତେବେ ଲୁଗା ଓଦା ହେଲା କେମିତି ? ଏଇକଥା ଭାବୁଛୁ ଆନୀ ଆମକୁ କହିଲେ, "କ୍ଷମା କରିବେ । ଆପଣମାନେ ପ୍ରଥମେ ଗାଡ଼ିର ଝରକା କାଚ ବନ୍ଦ୍ କରିଦିଅନ୍ତୁ । ନଚେତ୍ ପୂରାପୂରି ଓଦା ହୋଇଯିବେ । ବାୟୁମଣ୍ଡଳରେ ଭାସୁଥିବା ବାଦଲରେ ଜଳକଣା ପୂରିରହିଥିବାରୁ ସାମାନ୍ୟ ଆଘାତରେ ତାହା ଜଳରେ ପରିଣତ ହୋଇଯାଉଛି ।" ଆମେ ଅନୁଭବ କଲୁ ସତେଯେପରି ଆମ ଗାଡ଼ିଟି ମେଘ ଭିତରେ ସନ୍ତରଣ କରୁଛି । ସେଦିନର ସେ ଦୃଶ୍ୟ ଓ ସେ ଅନୁଭୂତି ବହୁଦିନ ପର୍ଯ୍ୟନ୍ତ ଅଭୁଲା ହୋଇ ରହିଥିଲା ।

## ଜୁରିଚ୍‌ରୁ ବିଶ୍ୱ ରାଜଧାନୀ ଜେନେଭା ଯାତ୍ରା

ଜେନେଭା ସହରରେ ଏକାଧିକ ବିଶ୍ୱ ସଙ୍ଗଠନ ରହିଥିବା ଦୃଷ୍ଟିରୁ ସେ ସହରକୁ ବିଶ୍ୱ ରାଜଧାନୀର ମାନ୍ୟତା ଦିଆଯାଇଥାଏ । ସେଠାରେ ଜାତିସଂଘ (ୟୁନାଇଟେଡ୍ ନେସନ୍‌ସ୍), ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (ଡବ୍ଲ୍ୟୁ.ଏଚ୍.ଓ.), ଅନ୍ତର୍ଜାତୀୟ ଶ୍ରମ ସଙ୍ଗଠନ

(ଆଇ.ଏଲ୍.ଓ) ଏବଂ ଅନ୍ତର୍ଜାତୀୟ ରେଡ୍କ୍ରସ୍ ସୋସାଇଟି ଇତ୍ୟାଦି ବହୁ ସଂସ୍ଥାର ସଦର କାର୍ଯ୍ୟାଳୟ କାର୍ଯ୍ୟ କରୁଛି। ପିଲାଦିନେ ଜେନେଭା ସହରର ଐତିହାସିକ ଗୁରୁତ୍ୱ ସମ୍ପର୍କରେ ଅନେକ କିଛି ପଢ଼ିବାର ସୁଯୋଗ ମିଳିଥିଲା। କିନ୍ତୁ ଦିନେ ଯେ ସେ ସହରକୁ ଯାଇହେବ ସେକଥା କଳ୍ପନା ବାହାରେ ଥିଲା। ଜେନେଭା ବିଶ୍ୱର ଏକ ରମଣୀୟ ସହର। ସେଠାରେ ରୋନ୍ ନଦୀ ପୂର୍ବରୁ ଆସି ଜେନେଭା ହ୍ରଦ ଦେଇ ପଶ୍ଚିମକୁ ବହିଯାଇଛି। ସହରଟି ବିଶେଷ ବଡ଼ ନହେଲେ ବି ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ଯଥେଷ୍ଟ ପ୍ରତିଷ୍ଠା ରହିଛି। ଏହ ସହରକୁ ପ୍ରତ୍ୟହ ବିଶ୍ୱର ବିଭିନ୍ନ ରାଷ୍ଟ୍ରରୁ ବହୁ କୂଟନୀତିଜ୍ଞ ତଥା ଉଚ୍ଚ ପଦାଧିକାରୀ ରାଜନୈତିକ ବ୍ୟକ୍ତିଙ୍କର ଯିବାଆସିବା ଲାଗିଥାଏ।

ସକାଳେ ଜଳଖିଆ ପର୍ବ ଶେଷ କରି ଗାଡ଼ିରେ ବସିଲାବେଳକୁ ସାଢ଼େ ନଅଟା ହୋଇଯାଇଥିଲା। ସକାଳୁ ଯିବା ପାଇଁ ଯେତେ ଉଦ୍ୟମ କଲେ ବି ଦୀର୍ଘଦିନର ଅଳସୁଆ ଅଭ୍ୟାସ ଯୋଗୁ ବିଳମ୍ବ ହେଉଥିଲା। ବିଦେଶରାଷ୍ଟ୍ରରେ ସମୟ ସହିତ ତାଳଦେଇ ଚାଲିବା ପାଇଁ ଯେଉଁ ଶୃଙ୍ଖଳାର ଆବଶ୍ୟକ, ଆମଭିତରେ ତାର ଘୋର ଅଭାବ ରହିଯାଇଥିଲା।

## ବିଦେଶ ରାଷ୍ଟ୍ରରେ ସମୟାନୁବର୍ତ୍ତିତା

ଜୁରିଚ୍‌ରୁ ଜେନେଭା ଯିବା ବାଟରେ ସ୍ୱିଜରଲାଣ୍ଡର ରାଜଧାନୀ ବର୍ଣ୍ଣ ସହର ପଡ଼େ। ସେଠାରେ ସେ ଦେଶର ପାର୍ଲାମେଣ୍ଟ୍ ଅବସ୍ଥିତ। ପାର୍ଲାମେଣ୍ଟ୍ ଦେଖିବା ପାଇଁ ଆମ ମନରେ ଖୁବ୍ ଆଗ୍ରହ ଥିଲା। ତେବେ ମଧ୍ୟାହ୍ନଭୋଜନ ଶେଷକରି ପାର୍ଲାମେଣ୍ଟ୍ ଦେଖିବୁ ନା ପ୍ରଥମେ ପାର୍ଲାମେଣ୍ଟ୍ ବୁଲିସାରି ପରେ ମଧ୍ୟାହ୍ନଭୋଜନ କରିବୁ ସେଇକଥା ଉପରେ ଆଲୋଚନା କରୁକରୁ କିଛିସମୟ ଡେରି ହୋଇଗଲା। ଆମେ ପାର୍ଲାମେଣ୍ଟ୍ ହଲ୍ ପାଖରେ ପହଞ୍ଚିଲାବେଳକୁ ସେଠାକାର ସମୟ ଅନୁସାରେ ଗୋଟାଏ ବାଜି ପାଞ୍ଚ ମିନିଟ୍ ହୋଇଯାଇଥିଲା। ଆମେ ଭାବିଥିଲୁ ଯାହାହେଉ, ଠିକ୍ ସମୟରେ ପହଞ୍ଚିଯାଇଛୁ, ପାର୍ଲାମେଣ୍ଟ୍ ଭିତରେ ବୁଲାବୁଲି ସାରି ଦି'ଟାବେଳକୁ ଲଞ୍ଚ୍ ଖାଇହେବ। କିନ୍ତୁ ହାୟ! ଆମେ ପହଞ୍ଚିବାର ମାତ୍ର ପାଞ୍ଚ ମିନିଟ୍ ପୂର୍ବରୁ ପାର୍ଲାମେଣ୍ଟ୍ ହଲ୍‌ର ମେନ୍‌ଗେଟ୍‌ଟି ବନ୍ଦ୍ ହୋଇଯାଇଥିଲା। ସେଠାରେ ଥିବା ସିକ୍ୟୁରିଟି ଗାର୍ଡଙ୍କ ମୁଖ୍ୟ ଆମ ସମ୍ପର୍କରେ ଆଗରୁ କୌଣସି ଖବର ପାଇନଥିଲେ କିମ୍ବା ଆମକୁ ଦେଖି ତାଙ୍କର କୌଣସି ପ୍ରତିକ୍ରିୟା ମଧ୍ୟ ପ୍ରକାଶ ପାଇନଥିଲା।

ତାଙ୍କର ବୟସ ପ୍ରାୟ ଷାଠିଏ ହେବ। ହୃଷ୍ଟପୁଷ୍ଟ ଚେହେରା। ଦେଖିଲେ ବୟସ ସେମିତି କିଛି ହେଉନଥିଲା। ଆମକୁ ଦେଖି ଆମର ଉଦ୍ଦେଶ୍ୟ ସମ୍ପର୍କରେ ପଚାରିଲେ। ଆମେ ପାର୍ଲାମେଣ୍ଟ ଭବନ ଦେଖିବାକୁ ଆସିଛୁ ବୋଲି କହିଲାରୁ ସେ ରୋକ୍‌ଠୋକ୍

ଭାବରେ କହିଦେଲେ ଯେ, "ମଧ୍ୟାହ୍ନ ବିରତି ସମୟ ହୋଇଥିବାରୁ ଭିତରକୁ କାହାରିକୁ ଛାଡ଼ିବ ପାଇଁ ସେ ଅକ୍ଷମ।" ଆମର ଯୁକ୍ତି ଥିଲା, ମାତ୍ର ପାଞ୍ଚମିନିଟ୍ ସମୟ ଡେରି ହୋଇଛି, ଆମକୁ ଭିତରକୁ ଛାଡ଼ିଦେଲେ କାହାର କ'ଣ ଅସୁବିଧା ହୋଇଯିବ? ଏପରି ଯୁକ୍ତି ତାଙ୍କୁ ସନ୍ତୁଷ୍ଟ କରିପାରି ନଥିଲା। ସେ ବିସ୍ଫାରିତ ନେତ୍ରରେ ଆମ ଆଡ଼କୁ ଟିକିଏ ଚାହିଁଲେ। ତାଙ୍କ ମୁଖମଣ୍ଡଳ ଗମ୍ଭୀର ଜଣାପଡୁଥିଲା। ନିଜର ପ୍ରତିକ୍ରିୟାକୁ ପ୍ରକାଶ ନକରି ସେ କହିଲେ, "କ୍ଷମା କରିବେ, ମଧ୍ୟାହ୍ନ ବିରତି ସମୟରେ ଗେଟ୍ ଖୋଲିବାର ଅଧିକାର ମୋର ନାହିଁ। ଆପଣମାନେ ଅପରାହ୍ନ ତିନିଟାରେ ଆସିପାରନ୍ତି।" ଆମ ସଭାପତି ସେଥିରେ ହସ୍ତକ୍ଷେପ କରି କହିଲେ, "ଦେଖନ୍ତୁ, ଆମେସବୁ ସୁଦୂର ଭାରତବର୍ଷରୁ ଆସିଛୁ। ଆମ ହାତରେ ସମୟ ସୀମିତ। ଦୁଇଘଣ୍ଟା ପରେ ଆଉଥରେ ଏଠାକୁ ଆସିବା ଆମ ପକ୍ଷରେ ସମ୍ଭବ ନୁହେଁ। ତେଣୁ ଆପଣଙ୍କ ଦେଶର ପାର୍ଲାମେଣ୍ଟ ଦେଖିବାରୁ ଆମକୁ ବଞ୍ଚିତ କରନ୍ତୁ ନାହିଁ; କାରଣ ଏହା ହୁଏତ ଆମପାଇଁ ଶେଷ ସୁଯୋଗ ହୋଇପାରେ।"

ଆମର ଧାରଣା ଥିଲା ବୋଧହୁଏ ଶ୍ରୀ ରାଓଙ୍କ ଅନୁରୋଧକୁ ଗ୍ରହଣ କରି ସେ କୋହଳ ମନୋବୃତ୍ତି ପୋଷଣ କରିବେ। ସେ କିନ୍ତୁ ନଛୋଡ଼ବନ୍ଦା। ସେ ପାଲଟା ଯୁକ୍ତି ଦର୍ଶାଇ କହିଥିଲେ ଯେ, "କ'ଣ ହେଲା ସେଇଠୁ? ଏ ଦୁନିଆରେ ବହୁ ଲୋକ ବହୁ ଜାଗା ଦେଖିପାରୁ ନାହାନ୍ତି। ମୁଁ ଜଣେ ବୃଦ୍ଧ ବ୍ୟକ୍ତି। ଆପଣଙ୍କ ଦେଶରେ ଥିବା କାରୁକାର୍ଯ୍ୟ ଖଚିତ ମାର୍ବଲ୍‌ପ୍ରସ୍ତର ନିର୍ମିତ ବିଶ୍ୱବିଖ୍ୟାତ ତାଜମହଲ ମୁଁ ଦେଖିନାହିଁ। ମୋ ଭାଗ୍ୟରେ ହୁଏତ ତାହା ଦେଖିବା ସମ୍ଭବ ହୋଇ ନପାରେ ଏବଂ ତାଜମହଲ ନଦେଖି ମୁଁ ମଧ ସଂସାରରୁ ବିଦାୟ ନେଇଯାଇପାରେ। ମୁଁ ଅତ୍ୟନ୍ତ ଦୁଃଖିତ ଯେ, ଆପଣମାନଙ୍କ ଅନୁରୋଧ ରକ୍ଷା କରିବା ମୋ ପକ୍ଷରେ ସମ୍ଭବ ନୁହେଁ।" ବୃଦ୍ଧଙ୍କ ଯୁକ୍ତି ଆଗରେ ଆମେ ହାର ମାନିଲୁ ଏବଂ ସମୟାନୁବର୍ତ୍ତୀ ହୋଇ ନଥିବାରୁ ଲଜ୍ଜିତ ହୋଇଥିଲୁ।

ପାର୍ଲାମେଣ୍ଟ ହଲ୍ ଦେଖି ନପାରିବାରୁ କିଛି ସମୟ ପାଇଁ ମନଟା ଟିକିଏ ଫିକା ପଡ଼ିଗଲା। ବିଳମ୍ବର କାରଣ ପାଇଁ ଆମେ ପରସ୍ପରକୁ ଦୋଷ ଦେବାରେ ଲାଗିଲୁ। କୁହାବୋଲା ଓ ଧରାଧରି କରି ସବୁକାମ କରାଇନେବାରେ ଅଭ୍ୟସ୍ତ ଆମଭଳି ଭାରତୀୟମାନଙ୍କ ପାଇଁ ଏହା ଏକ ଶିକ୍ଷା ସଦୃଶ ହୋଇଥିଲା। ସମୟ ସହିତ ତାଳଦେଇ ଚାଲିବା ପାଇଁ ବାରମ୍ବାର ଅନୁରୋଧ ଓ ତାଗିଦ୍ ସତ୍ତ୍ୱେ ଆମେ ଅବହେଳା କରିବାର ଫଳ ପାଇଲୁ ବୋଲି ଭାବି ଚୁପ୍ ରହିଲୁ। ଆମ ଗାଡ଼ିର ଡ୍ରାଇଭର ଆମ ମନର ପ୍ରତିକ୍ରିୟାକୁ ବୋଧେ ବୁଝିପାରିଲେ। କିନ୍ତୁ ହଠାତ୍ କିଛି ନକହି ଗୋଟିଏ ହୋଟେଲ ସାମନାରେ ନେଇ ଗାଡ଼ି ରଖି ସେଠାରେ ମଧ୍ୟାହ୍ନଭୋଜନ କରିବାକୁ ଅନୁରୋଧ କଲେ। ଆମଦେଶ ଭଳି ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଖରାବେଳ ଖାଇବା ଉପରେ କେହି ଗୁରୁତ୍ୱ ଦିଅନ୍ତି ନାହିଁ। ସାମାନ୍ୟ ସାଣ୍ଡୱିଚ୍ କିମ୍ବା ଅଳ୍ପ କିଛି ସ୍ନାକ୍ସରେ ସେମାନଙ୍କ କାମ ଚଳିଯାଏ। କିନ୍ତୁ

ଆମର ଖରାବେଳ ଖାଇବା ହେଉଛି ମୁଖ୍ୟ ଭୋଜନ। ସକାଳେ ଯେତେ ଯାହା ଖାଇଥିଲେ ବି ଖରାବେଳେ ଗୋଟାଏ ଠା' ନହେଲେ ମନ ଶାନ୍ତି ହୁଏନାହିଁ।

ହୋଟେଲରେ କିନ୍ତୁ ସେଇ ଏକା ଦୃଶ୍ୟ। ଯାହାହେଉ, ଯାହା ମିଳିଲା ତାକୁ ଭୋଜନ ବୋଲି ଭାବି ଆମେ କିଛି କିଛି ଖାଇଲୁ। ଆମ ଭିତରୁ କେହି କେହି କିଛି ସୋମରସ ପାନ କଲେ। ଅଳ୍ପ ସମୟ ଭିତରେ ଆମର ତଥାକଥିତ ମଧ୍ୟାହ୍ନଭୋଜନ ଶେଷ ହେଲା ପରେ ଆମ ଗାଡ଼ି ଜେନେଭା ଅଭିମୁଖେ ଆଗେଇଲା। ଜୁରିଚ୍‌ରୁ ଜେନେଭା ଯିବା ସମୟରେ ଆମ ସାଙ୍ଗରେ କେହି ଗାଇଡ୍ ନଥିବାରୁ ବାଟରେ ଯାହାସବୁ ଦୃଶ୍ୟ ଦେଖିବାକୁ ମିଳୁଥିଲା ସେ ସମ୍ପର୍କରେ ସବିଶେଷ ବିବରଣୀ ଆମକୁ ମିଳୁନଥିଲା। ଆମେସବୁ ନିଜ ନିଜ ଭିତରେ ଆଲୋଚନା କରି ଏବଂ 'ଗାଇଡ୍‌ବୁକ୍' ଧରି ଯାହା କିଛି ତଥ୍ୟ ସଂଗ୍ରହ କରୁଥିଲୁ। ସମଗ୍ର ରାସ୍ତା ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ଥିବାରୁ ଆମକୁ ପଥଶ୍ରମ ବାଧୁନଥିଲା। ତା'ଛଡ଼ା ସେସବୁ ରାସ୍ତା ଯେପରି ଗାଡ଼ି ମଧ୍ୟ ସେହିପରି। ସର୍ବନିମ୍ନ ଘଣ୍ଟାକୁ ଶହେ କିଲୋମିଟର ବେଗରେ ଚାଲିଲେ ମଧ୍ୟ ଜଣାପଡୁନଥିଲା। ବାତାନୁକୂଳ ଗାଡ଼ିରେ ପୁସ୍‌ବ୍ୟାକ୍ ସିଟ୍, କାନରେ ଇଅର୍‌ଫୋନ୍। ଯାହାକୁ କହନ୍ତି ମଜାଦାର ଟ୍ରିପ୍। ଅପରାହ୍ନ ଚାରିଟାବେଳେ ଆମେ ଯାଇ ଜେନେଭା ସହରରେ ପହଞ୍ଚିଲୁ। ସହର ଭିତର ଦେଇ ଆମ ଗାଡ଼ିଟି ଯାଉଥିଲାବେଳେ ମୋ ମନ ଭିତରେ ନୂତନ ପୁଲକ ସୃଷ୍ଟି ହେଉଥିଲା। କାହିଁ ନାଳର୍ଦ୍ଦମାପୂର୍ଣ୍ଣ କଟକ ସହର, ଆଉ କାହିଁ ବିଶ୍ୱରାଜଧାନୀ ଜେନେଭା? ଭାରତୀୟ ହୋଟେଲ 'ଦର୍ଶନା'ରେ ଆମର ରହିବାର ବନ୍ଦୋବସ୍ତ ହୋଇଥିଲା। ହୋଟେଲ ସାମନାରେ ଗାଡ଼ି ରହିଲାରୁ ଆମେ ଆମର ଲଗେଜ୍ ଧରି ହୋଟେଲକୁ ଗଲୁ।

## ମହଶିନା କିଦ୍ୱାଇଙ୍କ ସହିତ ସାକ୍ଷାତ

ସନ୍ଧ୍ୟା ହେବାକୁ ଆହୁରି ପାଞ୍ଚଘଣ୍ଟା ବାକିଥିଲା। ମନ ହେଉଥିଲା ହୋଟେଲ ରୁମ୍‌ର ନରମ ବିଛଣାରେ ଗଡ଼ି ଆରାମ୍ କରିବାକୁ; କିନ୍ତୁ ଅନ୍ୟପଟୁ ଏକପ୍ରକାର କଡ଼ା ନିର୍ଦ୍ଦେଶ ଆସିଲା, "ଯେତେ ବୁଲିବ ସେତେ ଦେଖିବ। ଶୋଇଲା ପୁଅର ଭାଗ ନାହିଁ।" ସତକଥା। ଆମର କ'ଣ ଘରେ ଶୋଇବା ପାଇଁ ସମୟ ସୁଯୋଗ ନଥିଲା ଯେ ଆମେ ହଜାର ହଜାର ଟଙ୍କା ଖର୍ଚ୍ଚ କରି ଜେନେଭା ଯାଇଥିଲୁ ଶୋଇବାକୁ? ଦଶମିନିଟ୍ ଭିତରେ ଆମେ ହୋଟେଲ ଲାଉଞ୍ଜ୍‌ରେ ପହଞ୍ଚି ସେଦିନ ସନ୍ଧ୍ୟାର କାର୍ଯ୍ୟକ୍ରମ ସମ୍ପର୍କରେ ଚର୍ଚ୍ଚା କଲୁ। ଜେନେଭା ସହରରେ ଚାରି ପାଞ୍ଚଘଣ୍ଟା କାଳ ବିନା କଟକଣାରେ ବୁଲି ରାତିରେ ହୋଟେଲ ଫେରିବା ପାଇଁ ଆମେ ସ୍ଥିର କରିଥିଲୁ। କିନ୍ତୁ ହୋଟେଲର ମ୍ୟାନେଜର୍ ହଠାତ୍ ଆସି ଆମକୁ ଖବର ଦେଲେ ଯେ, ଭାରତର ସ୍ୱାସ୍ଥ୍ୟମନ୍ତ୍ରୀ ମହସିନା କିଦ୍ୱାଇ ସେଠାରେ ଅନ୍ୟ

ଏକ ହୋଟେଲରେ ରହୁଛନ୍ତି। ଆମ ଭିତରୁ କେହି କେହି ପ୍ରାସ୍ତାବ ଦେଲେ, "ବଜାରରେ ଅଯଥାରେ ବୁଲିବା ଅପେକ୍ଷା ତାଙ୍କ ସାଙ୍ଗରେ ଦେଖା କଲେ ଭଲ ହୁଅନ୍ତା।" ଆମେ ସମସ୍ତେ ସେ ପ୍ରସ୍ତାବ ଗ୍ରହଣ କରିନେଲୁ।

ହୋଟେଲ ମ୍ୟାନେଜର୍ ଆମ ଅନୁରୋଧ ରକ୍ଷାକରି ଶ୍ରୀମତୀ କିଦ୍ୱାଇ ରହୁଥିବା ହୋଟେଲରେ ତାଙ୍କ ବ୍ୟକ୍ତିଗତ ସଚିବଙ୍କ ସହିତ ଯୋଗାଯୋଗ କରି ଆମର ସାକ୍ଷାତ ସମୟ ସ୍ଥିର କରିଦେଲେ। ସମୟ ସାତଟା ବେଳକୁ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହିତ ଦେଖା ହେବ ବୋଲି ବ୍ୟକ୍ତିଗତ ସଚିବଙ୍କ ପାଖରୁ ଜଣାପଡ଼ିଲା। ଆମେ ବଜାରରେ ଦି'ଘଣ୍ଟା କାଳ ବୁଲାବୁଲି କରି ନିର୍ଦ୍ଧାରିତ ସମୟରେ ଶ୍ରୀମତୀ କିଦ୍ୱାଇ ରହୁଥିବା ହୋଟେଲରେ ପହଞ୍ଚିଲୁ। ଅଭ୍ୟର୍ଥନାକକ୍ଷରେ ଥିବା କର୍ମଚାରୀ ଆମର ପରିଚୟ ପାଇବା ମାତ୍ରେ ଆମକୁ ହୋଟେଲ ଲାଉଞ୍ଜ୍‌କୁ ନେଇଗଲେ। ସେଠାରେ ଅପେକ୍ଷା କରିଥିବା ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସଚିବ ଆମକୁ ସ୍ୱାଗତ ଜଣାଇ ମନ୍ତ୍ରୀଙ୍କୁ ଖବର ଦେଲେ। ହାଠତ୍ ଏତେସଂଖ୍ୟକ ଭାରତୀୟଙ୍କୁ ଦେଖି ଶ୍ରୀମତୀ କିଦ୍ୱାଇ ଭାରି ଖୁସି ହୋଇଯାଇଥିଲେ। ଆମ ଭିତରୁ କେତେକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ପରିଚୟ ଥିଲା। ସେଥିପାଇଁ ତାଙ୍କ ସହିତ ସେ ସନ୍ଧ୍ୟାରେ ଆମର ଆଲୋଚନା ଖୁବ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ହୋଇଥିଲା। କଥାବାର୍ତ୍ତା ଭିତରେ ସଚିବ ଆମପାଇଁ ଚା'ପାନର ବନ୍ଦୋବସ୍ତ କରି ସାରିଥିଲେ। ଭାରତବର୍ଷର ଗ୍ରାମାଞ୍ଚଳରେ ବ୍ୟାପୁଥିବା ମ୍ୟାଲେରିଆ ଓ ଅନ୍ୟ କେତେକ ରୋଗର ନିରାକରଣ ଉଦ୍ଦେଶ୍ୟରେ ବିଶ୍ୱସ୍ୱାସ୍ଥ୍ୟସଙ୍ଗଠନର ଦୃଷ୍ଟି ଆକର୍ଷଣ କରିବା ତାଙ୍କର ଜେନେଭା ଗସ୍ତର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଶ୍ରୀମତୀ କିଦ୍ୱାଇ ଆମକୁ ଜଣାଇଥିଲେ। ଅର୍ଥର ଅଭାବ ନଥିଲାବେଳେ ପ୍ରଶାସନିକ ଅବହେଳା ଯୋଗୁଁ ଆମଦେଶରେ ବିଭିନ୍ନ ପ୍ରାନ୍ତରେ କିଭଳି ରୋଗସବୁ ବ୍ୟାପୁଥିଲା, ସେଥିପାଇଁ ସେ କ୍ଷୋଭପ୍ରକାଶ କରିଥିଲେ। ଶ୍ରୀମତୀ କିଦ୍ୱାଇ, ଆମ ଭିତରୁ କାହାର କ'ଣ ଅସୁବିଧା ଅଛି କି ବୋଲି ପଚାରି ସାହାଯ୍ୟର ହାତ ବଢ଼ାଇଥିଲେ। କିନ୍ତୁ ଆମେ ନମ୍ରତାର ସହିତ ନାହିଁ କରିଥିଲୁ। ତାଙ୍କ ସହିତ ଆଲୋଚନା ପରେ ଆମେ ରାତି ଦଶଟାରେ ହୋଟେଲ ଫେରିଲୁ।

## ଭାରତୀୟ ହୋଟେଲରେ ତୃପ୍ତିକର ଭୋଜନ

ହୋଟେଲ 'ଦର୍ଶନା'ରେ ଭାରତୀୟ ଖାଦ୍ୟ ଦେଖି ମନ ଖୁସି ହୋଇଗଲା; ଯାହା କୁହାଯାଏ 'ଆଘ୍ରାଣେ ଅର୍ଦ୍ଧଭୋଜନ'। ଖରାବେଳେ ଖାଇବାରେ ମନ ଶାନ୍ତି ହୋଇନଥିଲା। ତେଣୁ ଆଉ ଡେରି ନକରି ଆମେ ଗାଡ଼ିରୁ ଓହ୍ଲାଇ ସିଧା ଚାଲିଲୁ ଡାଇନିଂ ହଲ୍‌କୁ। ଆମେ ସନ୍ଧ୍ୟା ବେଳେ ବାହାରକୁ ଗଲାବେଳେ ରାତି ଖାଇବା ପାଇଁ ବରାଦ ଦେଇ ଯାଇଥିଲୁ ଏବଂ ହୋଟେଲ କର୍ତ୍ତୃପକ୍ଷ ସେହି ଅନୁସାରେ ଖାଇବା ପ୍ରସ୍ତୁତ କରିଥିଲେ। ଆମେ ଡାଇନିଂ

ହଲ୍‌କୁ ଗଲାବେଳେ ରିସେପ୍‌ସନ୍ କାଉଣ୍ଟର୍ ପାଖରେ ବମ୍ବେର ପ୍ରକାଶ ଦୁବେ ଟଛଗୁ ପାଟିକରି କହିଲେ, "ଦାସ୍ ସାହବ ! ଆପକା ଖତ୍ ଆୟା ହୈ।" ମୁଁ ପ୍ରଥମେ ଭାବିଲି ବୋଧହୁଏ ପ୍ରକାଶ ମୋ ସହିତ ଥଟ୍ଟା କରୁଛନ୍ତି। ସେ ଯେତେବେଳେ ମୋ ହାତକୁ ଇନ୍‌ଲ୍ୟାଣ୍ଡ୍ ଲେଟରଟିଏ ବଢ଼େଇଦେଲେ ମୁଁ ଆଶ୍ଚର୍ଯ୍ୟ ହେଇଯାଇଥିଲି।

ଆମେ ଦିଲ୍ଲୀ ଛାଡ଼ିବା ପୂର୍ବରୁ କେଉଁଦିନ କେଉଁ ସହରର କେଉଁ ହୋଟେଲରେ ରହିବୁ ସେକଥା ସ୍ଥିର ହୋଇସାରିଥିଲା ଏବଂ ସମସ୍ତଙ୍କ ଘରେ ସେ କାର୍ଯ୍ୟକ୍ରମ ସମ୍ପର୍କରେ ସମସ୍ତେ ସଚେତନ ଥିଲେ। ସେଇ କାର୍ଯ୍ୟସୂଚୀକୁ ଆଧାର କରି ମୋର ଏକମାତ୍ର ପୁତ୍ର ଚନ୍ଦନ କଟକରୁ ଯେଉଁ ଚିଠିଟି ପଠାଇଥିଲା, ହିସାବ ଅନୁଯାୟୀ ସେଇଟି ଠିକ୍ ସମୟରେ ଜେନେଭାର 'ଦର୍ଶନା' ହୋଟେଲରେ ପହଞ୍ଚିଥିଲା। ଚନ୍ଦନ ସେତେବେଳେ କଟକ ଷ୍ଟୁଆର୍ଟ ସ୍କୁଲ୍‌ରେ ଷ୍ଟାଣ୍ଡାର୍ଡ ଆଠର ଛାତ୍ର। ଆମଭିତରେ ବୟସର ବ୍ୟବଧାନ ଥିଲେ ବି ଆମେ ପ୍ରାୟ ସାଙ୍ଗଭଳି ଚଳୁଥିଲୁ। ମୁଁ ଚିଠିଟି ପାଇ ସାଙ୍ଗେ ସାଙ୍ଗେ ଖୋଲି ପଢ଼ିବାକୁ ଲାଗିଲି। ଇଂରାଜୀରେ ଲେଖା ହୋଇଥିଲା। ସେଇଟା ତ ଚିଠି ନଥିଲା, ମୁଁ ଦେଢ଼ମାସ ହେଲା ଘରେ ନଥିଲାବେଳେ ଯାହାସବୁ ଘଟିଥିଲା, ତାର ଏକ ସଂକ୍ଷିପ୍ତ ବିବରଣୀ। ମୋ ଅନୁପସ୍ଥିତିରେ ଆମ କୁକୁର 'ପିଣ୍ଟୋ' କିପରି ଠିକ୍ ଭାବରେ ଖାଉନଥିଲା, ଅତ୍ୟଧିକ ଖରା ଫଳରେ ଗୋଲାପକୁଣ୍ଡ କିପରି ଶୁଖିଯାଇଥିଲା ଇତ୍ୟାଦି ଇତ୍ୟାଦି ବିଷୟର ବର୍ଣ୍ଣନା ସହିତ ମୁଁ ପୋଙ୍ଗ୍‌ୟାଙ୍ଗ୍‌ରୁ ଟେବୁଲ ଟେନିସ୍ ବ୍ୟାଟ୍ ଆଣିଛି କି ନାହିଁ, ସେକଥା ମଧ୍ୟ ସେ ଚିଠିରେ ଉଲ୍ଲେଖ ଥିଲା। ଚିଠିଟି ପଢ଼ିବା ମାତ୍ରେ ମୁଁ କିଛି ସମୟପାଇଁ ଟିକିଏ ଭାବବିହ୍ୱଳ ହୋଇପଡ଼ିଥିଲି। ଘରକଥା ମନେ ପଡ଼ିଯାଇଥିଲା। ପ୍ରକାଶ ଯାଇ ଅନ୍ୟବନ୍ଧୁମାନଙ୍କୁ ମୋ ଚିଠି ବିଷୟରେ ଜଣାଇ ଦେଇଥିଲେ। ସେକଥା ମୋର ଜାଣିବାର ଉପାୟ ନଥିଲା। ମୁଁ ସେଠାରେ ପହଞ୍ଚିଲା ପରେ ବନ୍ଧୁମାନେ ତାଳିମାରି ମୋତେ ସ୍ୱାଗତ କଲେ। ମୁଁ କିଛି ବୁଝିନପାରି ବୋକାଙ୍କଭଳି କିଛି ସମୟ ଛିଡ଼ାହୋଇ ରହିଲି। ମୋର ନୀରବତାକୁ ଲକ୍ଷ୍ୟକରି ଲକ୍ଷ୍ନୌର ରବୀନ୍ ସିଂ ଥଟ୍ଟା କରି କହିଲେ, "କ୍ୟା ଦାସ୍ ସାହବ ! ଆଜ୍ ବଡ଼େ ଖୁସ୍ ନଜର୍ ଆତେ ହୈ ? କ୍ୟା ବାତ୍ ହୈ ? ବିବିସେ ଖତ୍ ମିଲା କ୍ୟା ? ତଭି ତୋ ଜମ୍ ଗୟା। ଆପ୍‌କୋ ସେଲିବ୍ରେଟ୍ କର୍‌ନା ପଡ଼େଗା।" ସେଠାରେ ସେଲିବ୍ରେଟ୍ କରିବା ଅର୍ଥ କିଛି ମଦ ପିଆଇବା। ମୁଁ କୌଣସି ପ୍ରତିକ୍ରିୟା ପ୍ରକାଶ ନକରି ୱେଟର୍‌କୁ ଡକାଇ ବନ୍ଧୁମାନଙ୍କ ଚାହିଦା ମୁତାବକ ଡ୍ରିଙ୍କ୍‌ସ୍ ଦେବାକୁ ଅର୍ଡର୍ ଦେଲି।

ସେଦିନ ସମସ୍ତେ ଖୁସ୍ ମିଜାଜ୍‌ରେ ଥିଲେ। ଡାଇନିଂହଲ୍‌ରେ ରାତ୍ରିଭୋଜନ ସାଙ୍ଗକୁ ଗପ ଆରମ୍ଭ ହୋଇଗଲା। କିଏ କେତେଟଙ୍କାର ଘଣ୍ଟା କିଣିଛି, କିଏ କାହା ମିସେସ୍‌ଙ୍କ ପାଇଁ କେତେ ସୁନା ନେଇଛି, ସେ ବିଷୟରେ ଚର୍ଚ୍ଚା ଚାଲିଲା। ଆଉ କିଏ କିଛି କହିବା ପୂର୍ବରୁ ମୁଁ ମୋ ଘଣ୍ଟାଟି ଦେଖାଇ କହିଲି, "ମୁଁ ସିନା ସବୁଠାରୁ ବେଶିଦାମ୍‌ରେ ଘଣ୍ଟା

କିଣିପାରିଲି ନାହିଁ, ହେଲେ ସବୁଠାରୁ କମ୍ ଦାମ୍‌ର ଘଣ୍ଟାଟିଏ ଆଣି ଗୋଟିଏ ରେକର୍ଡ କରିଛି। ଏଥିରେ ସାମାନ୍ୟ ହାସ୍ୟରୋଳ ହୋଇଥିଲା।

କିଛି ବନ୍ଧୁ ବୋତଲ ଧରି ବସି ଯାଇଥିଲେ। ସମୟକୁ ସେମାନଙ୍କର ଖାତିର ନଥିଲା। କିନ୍ତୁ ୱେଟର୍, ରାତି ଏଗାରଟାରେ ରେଷ୍ଟୁରାଣ୍ଟ୍ ବନ୍ଦ୍‌ହେବ ବୋଲି ପରୋକ୍ଷରେ ସୂଚାଇ ଦେବାରୁ ସେମାନେ ସଚେତନ ହେଲେ। ଆମେ ଡାଇନିଂ ହଲରୁ ସିଧା ରୁମ୍‌କୁ ଯାଇ ଶୋଇପଡ଼ିଲୁ।

## ଜାତିସଂଘ କାର୍ଯ୍ୟାଳୟରେ ଆଲୋଚନା ବୈଠକ

ଜେନେଭା ସହରରେ ଆଉ ଗୋଟିଏ ଦିନ ରହଣିର କାର୍ଯ୍ୟକ୍ରମ ଥିଲା। ତା'ପରେ ପ୍ୟାରିସ୍, ଲଣ୍ଡନ୍ ଇତ୍ୟାଦି ସହର ସବୁ ବୁଲିବା ପାଇଁ ସ୍ଥିର ହୋଇଥିଲା। ମନର ଉତ୍କଣ୍ଠା କ୍ରମେ ବୃଦ୍ଧି ପାଉଥିଲା। ଅନେକ ସମୟରେ ବାସ୍ତବ ଘଟଣାସବୁ ସ୍ୱପ୍ନଭଳି ମନେହେଉଥିଲା। କାହିଁ କଟକ ସହର, ଆଉ କାହିଁ ଜେନେଭା, ପ୍ୟାରିସ୍, ଲଣ୍ଡନ୍?

ସକାଳେ ଆରାମରେ ଜଳଖିଆପର୍ବ ଶେଷ ହେଲା। ସେଇ ଗତାନୁଗତିକ ଖାଇବା। ତଥାପି ସେସବୁ ଦେହସୁହା ହୋଇଯାଇଥିଲା। ପୋଙ୍ଗ୍‌ୟାଙ୍ଗ୍ ଓ ମସ୍କୋରେ ଯେଉଁ ଖାଦ୍ୟ ଦେଖିଲେ ଭୋକ ମରିଯାଉଥିଲା, ପରେ ତାକୁ କୌଣସିମତେ ଖାଇଦେଇ ହେଉଥିଲା। ଆଉ ଯାହା ମିଳୁ ନମିଳୁ, ସକାଳ ଜଳଖିଆରେ ବନ୍, ବଟର୍, ଜାମ୍ ଓ କିଛି ତଟକା ଫଳ ରହୁଥିଲା। ବରାଦ ଦେଲେ ସାଣ୍ଡୱିଚ୍‌ମଧ ମିଳୁଥିଲା; କିନ୍ତୁ ସେଠାକାର ଘିଉଁରୁଟି ସେତେଟା ସୁସ୍ୱାଦୁ ନଥିଲା। ଚା', କଫି ପାଇଁ ପଟ୍‌ରେ ଯେଉଁ କ୍ଷୀର ଦିଆଯାଉଥିଲା ମୁଁ ତାକୁ ଏକାଠି କରି ସେଥିରେ ଚିନି ପକାଇ ଗ୍ଲାସ୍‌ରେ ପିଇଦେଉଥିଲି ଏବଂ ସକାଳଓଳି ପାଇଁ ତାହା ଯଥେଷ୍ଟ ହେଉଥିଲା। ଯେଉଁମାନେ ଆମିଷ ଖାଉଥିଲେ, ସେମାନଙ୍କ ପାଇଁ କିଛି ଅସୁବିଧା ନଥିଲା। ସକାଳେ ଡବଲ୍ ଅଣ୍ଡାର ଓମ୍‌ଲେଟ୍‌ଟିଏ ଅପରାହ୍ନ ଦି'ଟା ପର୍ଯ୍ୟନ୍ତ ଭୋକ ବନ୍ଦ କରିଦେଉଥିଲା।

ଖାଇବା ଟେବୁଲ୍‌ରେ ପୂର୍ବ ସନ୍ଧ୍ୟାର ପୁନରାବୃତ୍ତି। ବନ୍ଧୁମାନଙ୍କର ହାଲୁକା ମନ୍ତବ୍ୟ। ରାତିରେ କେମିତି ନିଦ ହେଲା? ଚିଠିରେ କ'ଣସବୁ ଲେଖା ହୋଇଥିଲା? କ'ଣସବୁ ମାର୍କେଟ୍ କରିବାକୁ ବରାଦ ଆସିଛି, ଇତ୍ୟାଦି ଇତ୍ୟାଦି। ଚିଠିଟି ଧର୍ମପତ୍ନୀଙ୍କର ନୁହେଁ, ପୁଅ ଲେଖିଛି ବୋଲି ଯେତେ କହିଲେ ବି ସେମାନେ ବୁଝିବାକୁ ନାରାଜ ଥିଲେ। ସକାଳ ସାଢ଼େ ଦଶଟା ସମୟରେ ଜାତିସଙ୍ଘ କାର୍ଯ୍ୟାଳୟରେ ଭାରତର ସ୍ଥାୟୀଦୂତ ମୁଚୁକୁନ୍ଦ ଦୁବେଙ୍କ ସହିତ ସାକ୍ଷାତ ଆଲୋଚନାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେ ଦୃଷ୍ଟିରୁ ବନ୍ଧୁମାନେ ଏକପ୍ରକାର ରିଲାକ୍ସ ମୁଡ୍‌ରେ ଥିଲେ।



ଲଣ୍ଡନ୍ ଟାୱାରରେ ଆକର୍ଷଣୀୟ ପୁଲିସ୍‌ବ୍ୟାଣ୍ଡ୍



ଲଣ୍ଡନ୍ ଟାୱାର ଭିତରେ ଥିବା ଡାମରା କାଉ



ବ୍ରିଟିଶ୍ ପାର୍ଲାମେଣ୍ଟ୍ ହାଉସ୍‌ର ବିଗ୍‌ବେନ୍ ଘଣ୍ଟା

ଲଣ୍ଡନ୍ ଟାୱାର ବ୍ରିଜ୍



ସେକ୍ସପିୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ ଅପନ୍ ଆଭନ୍



ବ୍ରସେଲ୍ସର ଏକ ସୌଖୀନ ହୋଟେଲର ଅଭ୍ୟର୍ଥନାକକ୍ଷ



ସେକ୍ସପିୟରଙ୍କ ବାସଗୃହ ସାମନାରେ



ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ସାମନାରେ ବନ୍ଧୁ ପ୍ରକାଶ ଦୁବେଙ୍କ ସହିତ



ଅଷ୍ଟ୍ରଭା (ଚେକ୍ ରିପବ୍ଲିକ୍) ସେଣ୍ଟ୍ରାଲ୍ ମାର୍କେଟ୍



ଅଷ୍ଟ୍ରଭା (ଚେକ୍ ରିପବ୍ଲିକ୍) ଟାଉନହଲ୍



ପ୍ରାଗ୍ ମ୍ୟୁନିସିପାଲ୍ ହାଉସ୍



ଚାର୍ଲସ୍ ବ୍ରିଜ୍ (ପ୍ରାଗ୍)



ପ୍ରାଗ୍‌ରେ ପର୍ଯ୍ୟଟକମାନଙ୍କ ପାଇଁ ସୁସଜ୍ଜିତ ଘୋଡ଼ାଗାଡ଼ି




ପ୍ରାଗ୍‌ରେ ପର୍ଯ୍ୟଟକମାନଙ୍କ ପ୍ରିୟ ରୋଲ୍‌ସ ରଏସ୍ କାର୍

ପ୍ରଥମ ବିଶ୍ୱଯୁଦ୍ଧ ପରେ ଜେନେଭାଠାରେ 'ରାଷ୍ଟ୍ରସଙ୍ଘ' (ଲିଗ୍ ଅଫ୍ ନେସନ୍ସ) ପ୍ରତିଷ୍ଠିତ ହୋଇଥିଲା। ପରବର୍ତ୍ତୀ ଅବସ୍ଥାରେ ମିଳିତ ଜାତିସଙ୍ଘ (ୟୁନାଇଟେଡ୍ ନେସନ୍ସ) ଗଠିତ ହେବାପରେ ତା'ର ଅନେକ ଦପ୍ତର ଜେନେଭାରେ କାର୍ଯ୍ୟ କଲା। ସୁଇଜରଲ୍ୟାଣ୍ଡ୍ ଏକ ନିରପେକ୍ଷ ରାଷ୍ଟ୍ର ହୋଇଥିବାରୁ ସେଠାରେ ଅନେକ ଦପ୍ତର ପ୍ରତିଷ୍ଠା ନିମନ୍ତେ ବିଭିନ୍ନ ରାଷ୍ଟ୍ର ଏକମତ ହୋଇଥିଲେ। ଆମେ ସୁଇଜରଲାଣ୍ଡ୍ ଯାଇଥିବା ପର୍ଯ୍ୟନ୍ତ ସେ ଦେଶ ଜାତିସଙ୍ଘର ସଭ୍ୟ ହୋଇନଥିଲା। ଏପରିକି ୧୯୮୬ ମସିହାରେ ସୁଇଜରଲ୍ୟାଣ୍ଡ୍‌ବାସୀ ଜାତିସଙ୍ଘ ସଦସ୍ୟତା ବିରୋଧରେ ମତ ପ୍ରଦାନ କରିଥିଲେ। ତେବେ ସୁଇଜରଲ୍ୟାଣ୍ଡକୁ ଜାତିସଙ୍ଘର ସ୍ଥାୟୀ ପର୍ଯ୍ୟବେକ୍ଷକର ମର୍ଯ୍ୟାଦା ଦିଆଯାଇଥିଲା।

ନିର୍ଦ୍ଦିଷ୍ଟ ସମୟରେ ଆମ ଗାଡ଼ି ଆସି ଜାତିସଙ୍ଘ ସଦର କାର୍ଯ୍ୟାଳୟ ସାମନାରେ ପହଞ୍ଚିଲା। ସେଠାରେ କେତେକ କର୍ମଚାରୀ ଆଗରୁ ଉପସ୍ଥିତ ଥିଲେ। ଆମେ ପହଞ୍ଚିବା ମାତ୍ରେ ଆମକୁ ସ୍ୱାଗତ କରି ଭିତରକୁ ନେଇଗଲେ। ଏପରି ବ୍ୟବସ୍ଥା ଆମ ଦେଶରେ ନାହିଁ। ଆମ ଦେଶର ବ୍ୟବସ୍ଥା ଯେପରି ନେତାମାନେ ମଧ୍ୟ ସେହିପରି। ସାକ୍ଷାତକାର ପାଇଁ ସମୟ ଦେଇ ହୁଏତ ନିର୍ଦ୍ଦିଷ୍ଟ ସମୟରେ ପ୍ରସ୍ତୁତ ହୋଇନଥିବେ କିମ୍ବା ଅନ୍ୟତ୍ର ଚାଲିଯାଇଥିବେ। ଅଶି ଦଶନ୍ଧିରେ ଏପରି ଗୋଟିଏ ଘଟଣା ବୁଦ୍ଧିଜୀବୀମାନଙ୍କୁ କିଭଳି ମର୍ମାହତ କରିଥିଲା, ସେକଥା ମନେପଡ଼ିଯାଇଥିଲା। ଆମ ଦେଶର ରାଷ୍ଟ୍ରପତି ଅବ୍‌ଦୁଲ୍ କାଲାମ୍‌ଙ୍କର ଜଣେ ବୈଜ୍ଞାନିକ ଭାବରେ ସାରା ବିଶ୍ୱରେ ପ୍ରସିଦ୍ଧି ରହିଛି। ସେ ଭାରତବର୍ଷରେ 'କ୍ଷେପଣାସ୍ତ୍ରର ଜନକ' ବୋଲି ବିବେଚିତ ହୋଇଥାନ୍ତି। ଥରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ନୂଆଦିଲ୍ଲୀରୁ ଭୁବନେଶ୍ୱର ଆସିଥିଲେ। ସାକ୍ଷାତକାର ପାଇଁ ପୂର୍ବରୁ ସରକାରୀ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେହି ଅନୁସାରେ ଶ୍ରୀ କାଲାମ ଭୁବନେଶ୍ୱର ବିମାନଘାଟୀରୁ ସିଧାସଳଖ ସଚିବାଳୟକୁ ଯାଇଥିଲେ। ତାଙ୍କ ସହିତ ଦେଶର ସାମରିକ ଉଚ୍ଚ ପଦାଧିକାରୀ ଅଫିସରମାନେ ମଧ୍ୟ ଥିଲେ। କିନ୍ତୁ ହାୟ ! ସେମାନେ ନିର୍ଦ୍ଦିଷ୍ଟ ସମୟରେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ପହଞ୍ଚିବା ପୂର୍ବରୁ ମୁଖ୍ୟମନ୍ତ୍ରୀ କଟକ ଚାଲିଯାଇଥିଲେ। ସେଦିନ ସନ୍ଧ୍ୟାରେ ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକଙ୍କୁ ମୁଖ୍ୟମନ୍ତ୍ରୀଙ୍କ ସାନିଧ୍ୟ ଲାଭ ନିମନ୍ତେ ଅତି ଦୟନୀୟ ଭାବରେ ଘଣ୍ଟାଘଣ୍ଟା ଧରି ଅପେକ୍ଷା କରିବାକୁ ପଡ଼ିଥିଲା। ସବୁଠାରୁ ଦୁଃଖର କଥା ଯେ, ଏପରି ଏକ ଅକ୍ଷମଣୀୟ ଅପରାଧ ପାଇଁ ମୁଖ୍ୟମନ୍ତ୍ରୀଙ୍କର କୌଣସି ଅନୁଶୋଚନା ନଥିଲା କିମ୍ବା ତାଙ୍କ ଅଫିସ୍‌ର କୌଣସି ବ୍ୟକ୍ତି ସେଥିପାଇଁ ଦୁଃଖ ପ୍ରକାଶ କରିନଥିଲେ। କେବଳ ସେଇ ଘଟଣା ନୁହେଁ, ଅନେକ ଘଟଣାରେ ନିର୍ଦ୍ଦିଷ୍ଟ ସମୟଠାରୁ ବିଳମ୍ବରେ ପହଞ୍ଚିବାକୁ ଆମ ରାଜ୍ୟ ତଥା ଦେଶର ନେତାମାନେ ଏକ ଗୌରବ ଏବଂ ସମ୍ମାନର ବିଷୟ ବୋଲି ବିଚାରିଥାନ୍ତି। ଡେରିରେ ଆସିଲେ ଅପେକ୍ଷାରତ ଲୋକଙ୍କ ମନରେ ଅଧିକ ଉତ୍କଣ୍ଠା ପ୍ରକାଶ ପାଇବ ଏବଂ ତଦ୍ୱାରା ସେମାନଙ୍କର ମର୍ଯ୍ୟାଦା ବୃଦ୍ଧି ପାଇବ ବୋଲି

ଅନେକ ନେତାଙ୍କର ଏକ ଭ୍ରାନ୍ତ ଧାରଣା ରହିଛି। କିନ୍ତୁ ଏପରି ବ୍ୟବହାର ଲୋକଙ୍କ ପ୍ରତି ଯେ ଏକ ପ୍ରତାରଣା, ସେକଥା ସେମାନେ ବୁଝିପାରନ୍ତି ନାହିଁ।

ଜାତିସଂଘ ସଦର କାର୍ଯ୍ୟାଳୟର ଏକ ହଲ୍‌ରେ ଆମର ବସିବାର ବନ୍ଦୋବସ୍ତ ହୋଇଥିଲା। ଯେଉଁ ହଲ୍‌ରେ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ପ୍ରତିନିଧିମାନେ ବସି ଆନ୍ତର୍ଜାତିକ ସମସ୍ୟା ସମ୍ପର୍କରେ ଆଲୋଚନା କରୁଥିଲେ, ସେଠାରେ ଆମେ ଯାଇ ଦିନେ ବସିବୁ, ସେକଥା ଚିନ୍ତା ବାହାରେ ଥିଲା। ନିଜ ପଇସାରେ ବିଦେଶ ଗଲେ ବି ଜାତିସଂଘ ଦପ୍ତର ହତା ଭିତରେ ପ୍ରବେଶ କରିବା ଏକ ଅସମ୍ଭବ ବ୍ୟାପାର। କିନ୍ତୁ ପରମେଶ୍ୱରଙ୍କର ଅପାର କରୁଣା, ଅସମ୍ଭବ ଘଟଣା ଆମପାଇଁ ସମ୍ଭବରେ ପରିଣତ ହୋଇଥିଲା।

ଆମ ପାଇଁ ଆଗରୁ ଚୌକିସବୁ ପଡ଼ିଥିଲା। ଆମେ ବସିବାର ଅଳ୍ପ କେଇମିନିଟ୍ ଭିତରେ ଶ୍ରୀ ଦୁବେ ଓ ତାଙ୍କ ସହକର୍ମୀମାନେ ଆସି ସେ ହଲ୍‌ରେ ପହଞ୍ଚିଲେ। ଶ୍ରୀ ଦୁବେଙ୍କର ଧୂସର ରଙ୍ଗର ପ୍ରିନ୍ସ କୋଟ୍ ସାଙ୍ଗକୁ ହସହସ ମୁହଁରୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳୁଥିଲା। ବିକ୍ରମ ରାଓଙ୍କ ସହିତ ତାଙ୍କର ଆଗରୁ ପରିଚୟ ଥିଲା। ଶ୍ରୀ ରାଓ, ପ୍ରଥମେ ଆମ୍ଭମାନଙ୍କର ପରିଚୟ ପ୍ରଦାନ କଲେ। ଆମ୍ଭେମାନେ ସମଗ୍ର ଭାରତବର୍ଷର ପ୍ରତିନିଧିତ୍ୱ କରୁଥିବାର ଜାଣି ଶ୍ରୀ ଦୁବେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ପରିଚୟ ପ୍ରଦାନ ପରେ ଶ୍ରୀ ଦୁବେ ଜାତିସଂଘର କାର୍ଯ୍ୟ ସମ୍ପର୍କରେ ଆମକୁ କେତେକ ସୂଚନା ପ୍ରଦାନ କରିଥିଲେ। ଆମଭିତରୁ ଅନେକ ସଦସ୍ୟ ତାଙ୍କୁ କେତେକ ପ୍ରଶ୍ନ ପଚାରିଥିଲୁ ଏବଂ ସେ ସହାସ୍ୟବଦନରେ ସେସବୁର ଉତ୍ତର ଦେଇଥିଲେ। ଜାତିସଂଘର କାର୍ଯ୍ୟଶୈଳୀ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଉଦ୍ଦେଶ୍ୟରେ ଆମେ ଅନ୍ୟକେତେକ ଦପ୍ତର ବୁଲି ଦେଖିବା ପାଇଁ ଚାହିବାରୁ ସେ ସାଙ୍ଗେସାଙ୍ଗେ ଆମପାଇଁ ଅନୁମତି ପତ୍ରର ବ୍ୟବସ୍ଥା କରିବା ସହ ତାଙ୍କର ଦୁଇଜଣ ସହକର୍ମୀଙ୍କୁ ଆମ ସହିତ ପଠାଇଥିଲେ। ବୁଲାବୁଲି ଶେଷରେ ତାଙ୍କ ସହିତ ମଧ୍ୟାହ୍ନଭୋଜନ ପାଇଁ ଶ୍ରୀ ଦୁବେ ଆମକୁ ଅନୁରୋଧ କରିଥିଲେ।

ଜାତିସଂଘର ସଦର କାର୍ଯ୍ୟାଳୟର କି ଚରିକଚ୍ଛନା! ସବୁ ବୁଲି ଦେଖିଲେ ପୂରା ଗୋଟିଏ ଦିନ ଲାଗିବ। କିନ୍ତୁ ଆମ ହାତରେ ମାତ୍ର ଦୁଇଘଣ୍ଟା ସମୟ। ସେତିକି ସମୟ ଭିତରେ ଯାହା ଦେଖିବା କଥା ଦେଖିଲୁ। ଜାତିସଂଘ କାର୍ଯ୍ୟାଳୟ ପରିଦର୍ଶନର ସ୍ମାରକ ସ୍ୱରୂପ କାର୍ଯ୍ୟାଳୟ କୋଠା ସାମନାରେ ଫଟୋ ଉଠାଇବାକୁ ବନ୍ଧୁମାନେ ମନ ବଳାଇଲେ। କୋଠା ଉପରେ ଜାତିସଂଘର ପତାକା ଫରଫର ହୋଇ ଉଡୁଥିଲା। ପତାକା ଓ କୋଠା ସହିତ ଆମର କିପରି ଫଟୋ ରହିବ ସେଥିପାଇଁ ଆମେ ବନ୍ଧୁ ସତ୍ୟଙ୍କୁ ଅନୁରୋଧ କରିଥିଲୁ। ସେ ଜଣେ ବୃତ୍ତିଗତ ଫଟୋଗ୍ରାଫର୍ ହୋଇଥିବାରୁ ସେ କାମଟି ଅନାୟାସରରେ କରିଦେଇଥିଲେ। ଫଟୋଉଠା ସରିଲାବେଳକୁ ସମୟ ଅପରାହ୍ନ ଦୋଟାଏରୁ ଅଧିକ ହୋଇଯାଇଥିଲା।

ଶ୍ରୀ ଦୁବେ ଆମକୁ ମଧ୍ୟାହ୍ନଭୋଜନ ପାଇଁ ଆମନ୍ତ୍ରଣ କରିଥିବା କଥା ମନେ ପଡ଼ିଯିବାରୁ ଆମେ ସଚେତନ ହୋଇ ଶୀଘ୍ର ଫେରିଲୁ। ରେଷ୍ଟୁରାଣ୍ଟ୍‌ରେ ଆଗରୁ ସ୍ଥାନ ସଂରକ୍ଷଣ କରାଯାଇଥିଲା ଏବଂ ଶ୍ରୀ ଦୁବେ ଆମପାଇଁ ଅପେକ୍ଷା କରିଥିଲେ। ଆମର ସେଠାରେ ପହଞ୍ଚିବାରେ ଡେରି ହୋଇଥିବାରୁ ପ୍ରଥମେ ଆମେ କ୍ଷମା ମାଗିଥିଲୁ। ଶ୍ରୀ ଦୁବେଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଫଳରେ ଆମ ପାଇଁ ଭାରତୀୟ ଖାଦ୍ୟ ପ୍ରସ୍ତୁତ ହୋଇଥିଲା। ଫ୍ରାଏଡ୍ ରାଇସ୍, ଡାଲ୍, ଚିକେନ୍‌ବଟର୍‌ମସଲା ସାଙ୍ଗକୁ କୋବି ଫ୍ରାଏ, ସାଲାଡ଼ ଓ ଦହି। ଶ୍ରୀ ଦୁବେ ମଧ୍ୟ ଆମ ସାଙ୍ଗରେ ଏକତ୍ର ଭୋଜନ କଲେ।

ଅପରାହ୍ନ ତିନିଟାରେ ବିଶ୍ୱ ଶ୍ରମ ସଙ୍ଗଠନ (ଇଣ୍ଟର୍‌ନାସନାଲ୍ ଲେବର୍ ଅର୍ଗାନାଇଜେସନ୍)ର ଡେପୁଟି ଡାଇରେକ୍ଟର୍ ଜେନେରାଲ୍‌ଙ୍କ ସହିତ ସାକ୍ଷାତ ଆଲୋଚନା ପାଇଁ ସମୟ ଧାର୍ଯ୍ୟ ହୋଇଥିଲା। ଆମେ ମଧ୍ୟାହ୍ନଭୋଜନ ଶେଷକରି ଆଉ ବାହାରକୁ ନଯାଇ ସିଧା ତାଙ୍କ ଦପ୍ତରକୁ ଚାଲିଲୁ। ସେଠାରେ ବିଭିନ୍ନ ବିଷୟରେ ଆଲୋଚନା ହେଲା। ବିଶେଷକରି ଭାରତବର୍ଷରେ ଶ୍ରମିକମାନଙ୍କର ସ୍ଥିତାବସ୍ଥା, ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ଦିଗରେ ସରକାରୀ ପଦକ୍ଷେପ ସମ୍ପର୍କରେ ସେ ଆମଠାରୁ ଜାଣିବାକୁ ଚାହିଥିଲେ। ଆଲୋଚନା ପ୍ରସଙ୍ଗରେ ଆନ୍ତର୍ଜାତିକ ସ୍ତରରେ କର୍ମଜୀବୀ ସାମ୍ବାଦିକ ସଙ୍ଗଠନକୁ କିପରି ଅଧିକ କ୍ରିୟାଶୀଳ କରାଯାଇପାରିବ ଏବଂ ସାମ୍ବାଦିକମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ଆଇ.ଏଲ୍.ଓ. କିଭଳି ପଦକ୍ଷେପ ନେଇପାରିବ ସେ ସମ୍ପର୍କରେ ଆମେ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲୁ। ସେଦିନ ଦୀର୍ଘ ଏକଘଣ୍ଟା ଆଲୋଚନା ବେଶ୍ ମନଛୁଆଁ ହୋଇଥିଲା। ଆଲୋଚନା ଶେଷରେ ଚା'ପର୍ବ। ଆମେ ସେଠାରୁ ଫେରିବା ସମୟରେ ଡାଇରେକ୍ଟର ଜେନେରାଲ୍‌ଙ୍କ ଦପ୍ତର ପକ୍ଷରୁ ଆମ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଛୋଟିଆ ଛୋଟିଆ ଉପହାର ଦିଆଯାଇଥିଲା।

ଜାତିସଂଘ ସଦର କାର୍ଯ୍ୟାଳୟରୁ ବାହାରିଲା ବେଳକୁ ସାଢ଼େ ଚାରିଟା ବାଜିଯାଇଥିଲା ଏବଂ ଆମର ସେଦିନ ପାଇଁ ଆଉ କୌଣସି ଔପଚାରିକ କାର୍ଯ୍ୟକ୍ରମ ନଥିଲା। ସମସ୍ତେ ସ୍ଥିର କଲେ ଆଉ ହୋଟେଲକୁ ନଫେରି ଅନ୍ତତଃ ଦୁଇ ତିନିଘଣ୍ଟା ଖୁସିମନରେ ବଜାରରେ ବୁଲିହେବ। ତା'ପରଦିନ ସକାଳୁ ଆମର ପ୍ୟାରିସ୍ ଯିବାପାଇଁ କାର୍ଯ୍ୟକ୍ରମ ଥିଲା। ସେଠାରେ ଅପରାହ୍ନ ଦୁଇଟାରେ ୟୁନେସ୍କୋ ଦପ୍ତରରେ ବୃତ୍ତିଗତ ଆଲୋଚନା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ଜେନେଭାରୁ ପ୍ୟାରିସ୍‌ର ଦୂରତା ପ୍ରାୟ ଆଠଶହ କିଲୋମିଟର। କିପରି ଯାଇହେବ ତାହା ଆମ୍ଭମାନଙ୍କ ପାଇଁ ଚିନ୍ତାର ବିଷୟ ହୋଇଥିଲା; କାରଣ ଆମ ଦେଶରେ ବିଶେଷକରି ଓଡ଼ିଶାରେ ଆଠଶହ କିଲୋମିଟର ରାସ୍ତା ଗାଡ଼ିରେ ଯିବାକୁ ହେଲେ ଅନ୍ୟୂନ ଦୁଇଦିନ ଦରକାର ହୋଇଥାଏ। ଆମ ମନର ସଂଶୟ ସମ୍ପର୍କରେ ଗାଡ଼ିର ଡ୍ରାଇଭର୍ ବୋଧହୁଏ କିଛି ସୁରାକ ପାଇଗଲେ। ସେ ଆମକୁ

ସାନ୍ତ୍ୱନା ଦେଇ କହିଲେ, "ଆପଣମାନେ ସହଯୋଗ କଲେ ଆମେ ସୁରୁଖୁରୁରେ ନିର୍ଦ୍ଧାରିତ ସମୟ ଆଗରୁ ପ୍ୟାରିସ୍‌ରେ ପହଞ୍ଚିଯାଇ ପାରିବା। ସେଥିପାଇଁ ଆପଣ ସକାଳେ ଜଳଖିଆ ସାମଗ୍ରୀ ସାଙ୍ଗରେ ନେଇଗଲେ ଭଲହେବ। ରାସ୍ତାରେ ଜଳଖିଆ ଖାଇବା ପାଇଁ ସବୁପ୍ରକାର ସୁବିଧା ରହିଛି। ମୁଁ ଆପଣମାନଙ୍କ ପାଇଁ ସବୁ ବନ୍ଦୋବସ୍ତ କରିଦେବି।"

ଆମ ଗାଡ଼ିର ଡ୍ରାଇଭର ଫରାସୀ ଯୁବକ। ଆମେ ପ୍ୟାରିସ୍ ଯାଉଥିବାରୁ ସେ ଭାରି ଖୁସି ଥିଲେ। ଆମେ ହୋଟେଲକୁ ଫେରିବା ପୂର୍ବରୁ ବାଟରେ ଆଉ କ'ଣ କ'ଣ ଦର୍ଶନୀୟ ସ୍ଥାନ ଦେଖିହେବ ବୋଲି ପଚାରିବାରୁ ସେ କହିଲେ, "ଆପଣମାନେ ଏତେ ଦୂରଦେଶରୁ ଆସିଛନ୍ତି। ଅଥଚ ଗୋଟାଏ ଗୋଟାଏ ସହରରେ ଦୁଇଦିନ ବି ରହୁନାହାନ୍ତି। ସେହି ସମୟ ଭିତରେ ବୁଲିବା ଅପେକ୍ଷା ଆପଣମାନଙ୍କର ମିଟିଂରେ ବେଶି ସମୟ ଚାଲିଯାଉଛି। ଏଥିରେ ଆପଣମାନେ କ'ଣ ଦେଖିପାରିବେ? ଯାହା ହେଉ, ଆପଣମାନଙ୍କ ହାତରେ ଯେତିକି ସମୟ ଅଛି ସେତିକିରେ ମୁଁ ଆପଣଙ୍କୁ କିଛି କିଛି ନୂଆ ଜାଗା ଦେଖାଇବାକୁ ଚେଷ୍ଟା କରିବି।"

କିଛିସମୟ ପରେ ଆମ ଗାଡ଼ିଟି ଆସି ଗୋଟିଏ ହ୍ରଦକୂଳରେ ରହିଲା। ହ୍ରଦ କୂଳର ଦୃଶ୍ୟ ଅତ୍ୟନ୍ତ ରମଣୀୟ। ଆମେ ସେଠାର ପହଞ୍ଚିଲା ବେଳକୁ ସନ୍ଧ୍ୟା ହେଉଥାଏ। ସମସ୍ତ ହ୍ରଦକୂଳଟି ବିଭିନ୍ନ ରଙ୍ଗବେରଙ୍ଗ ଆଲୋକମାଳାରେ ସୁସଜ୍ଜିତ ହୋଇଥାଏ। ହ୍ରଦକୂଳରେ ଥିବା ବଗିଚାରେ ବହୁ ଜାତିର ଫୁଲଗଛ ସାଙ୍ଗକୁ ଖୁବ୍ ସୁନ୍ଦର ଘାସପଡ଼ିଆ। ଖାଲିପାଦରେ ଚାଲିଲେ ପାଦକୁ ମୁଲାୟମ୍ ଲାଗୁଥାଏ। ହ୍ରଦର ପାଣି ଏତେ ସ୍ୱଚ୍ଛ ଯେ ଅନ୍ତତଃ ଚାରି ପାଞ୍ଚଫୁଟ ତଳେ ପାଣି ଭିତରେ ଥିବା ଗୋଡ଼ି ମଧ୍ୟ ପରିଷ୍କାର ଦେଖାଯାଉଥାଏ। ହ୍ରଦକୂଳରେ ପାଣିରେ ଜାତିଜାତିକା ହଂସସବୁ ମନଖୁସିରେ ପହଁରୁଥାନ୍ତି। ବାସ୍ତବରେ ସେ ଦୃଶ୍ୟ ଅତ୍ୟନ୍ତ ମନୋରମ ଥିଲା। ଜେନେଭା ହ୍ରଦର ଦୃଶ୍ୟ ଦେଖି ଚିଲିକା ହ୍ରଦର ଦୃଶ୍ୟ ଆପେ ଆପେ ଆଖିଆଗକୁ ଚାଲିଆସିଲା। କବିବର ରାଧାନାଥ ରାୟ ଯେଉଁ ଚିଲିକାକୁ –

'ଉତ୍କଳ କମଳା ବିଳାସ ଦୀର୍ଘିକା
ମରାଳମାଳିନୀ ନୀଳାମ୍ବୁ ଚିଲିକା,
ଉତ୍କଳର ତୁହି ଚାରୁ ଅଳଙ୍କାର
ଉତ୍କଳ ଭୁବନେ ଶୋଭାର ଭଣ୍ଡାର।'

ଭାବରେ ବର୍ଣ୍ଣନା କରିଥିଲେ, ତାହା କିପରି ଚିଙ୍ଗୁଡ଼ି ମାଫିଆମାନଙ୍କଦ୍ୱାରା କବଳିତ ହୋଇ ଅସାମାଜିକ ଯୁବକମାନଙ୍କର ଆଡ୍ଡାସ୍ଥଳୀରେ ପରିଣତ ହୋଇଛି, ସେକଥା ମନେପଡ଼ି ଦୁଃଖଲାଗିଲା। ସରକାରୀ ଅବହେଳାରୁ ଚିଲିକା କିପରି ଶ୍ରୀହୀନ ହୋଇଯାଇଛି, ଦିନକୁ ଦିନ ପର୍ଯ୍ୟଟକମାନେ କିଭଳି ଚିଲିକା ପ୍ରତି ବିମୁଖ ହୋଇଯାଉଛନ୍ତି, ଚିଲିକା ମୁହାଣ ନିକଟରେ ଥିବା ବିରଳ ପ୍ରଜାତିର ଡଲ୍‌ଫିନ୍ କିପରି ପାୱାରବୋଟ୍ ପଙ୍ଖାରେ ମଡ଼ଖାଇ

ମୃତ୍ୟୁମୁଖରେ ପଡୁଛନ୍ତି, ଗୋଷ୍ଠୀବିବାଦରେ କିଭଳି ଚିଲିକାର ଜଳରାଶି ରକ୍ତରଞ୍ଜିତ ହେଉଛି ସେକଥା ମନକୁ ଭାରାକ୍ରାନ୍ତ କରିଦେଇଥିଲା।

ଜେନେଭା ହ୍ରଦ କୂଳରୁ ଆସିବାକୁ ଇଚ୍ଛା ହେଉନଥିଲେ ବି କର୍ତ୍ତବ୍ୟ ତାଡ଼ନାରେ ଫେରିବାକୁ ବାଧ୍ୟ ହେଲୁ। ହୋଟେଲରେ ପହଞ୍ଚିଲାବେଳକୁ ସମୟ ଆଠଟା। ସିଧା ଡାଇନିଂ ହଲ୍‌କୁ ଯାଇ ରାତ୍ରିଭୋଜନ ଶେଷ କଲୁ। ଶୋଇବାକୁ ଯିବାପୂର୍ବରୁ ଭୋର୍ ପାଞ୍ଚଟାରେ ପ୍ୟାରିସ୍ ଯିବାପାଇଁ ପ୍ରସ୍ତୁତ ରହିବାକୁ ଆମେ ଯେପରି ଭୁଲିନଯାଉ ସେଥିପାଇଁ ଶ୍ରୀ ରାଓ ଆମକୁ ଆଉଥରେ ତାଗିଦ୍ କରିଦେଇଥିଲେ।

# ସୌନ୍ଦର୍ଯ୍ୟମୟୀ ପ୍ୟାରିସ୍

ପୃଥିବୀର ବିଭିନ୍ନ ନଗରୀ ମଧ୍ୟରେ ପ୍ୟାରିସ୍ ଏକ ମନୋରମ ନଗରୀ ଭାବରେ ପରିଚିତ। ବିଶ୍ୱର ନାନା ପ୍ରାନ୍ତରୁ ପର୍ଯ୍ୟଟକମାନେ ଏହି ସହରକୁ ଭ୍ରମଣରେ ଆସିଥାନ୍ତି। ସନ୍ଧ୍ୟାରେ ପ୍ୟାରିସ୍ ନଗରୀର ଆଲୋକସଜ୍ଜା ଅତ୍ୟନ୍ତ ଚିତ୍ତାକର୍ଷକ। ଯାହା କୁହାଯାଏ, 'ଇଭ୍‌ନିଂ ଇନ୍ ପ୍ୟାରିସ୍'ର ଦୃଶ୍ୟ ନଦେଖିଲେ ବୁଝି ହୁଏନାହିଁ। ସେକଥା ବାସ୍ତବ ସତ୍ୟ। ପ୍ୟାରିସ୍‌ରେ ପ୍ରସ୍ତୁତ ଏସେନ୍ସ ଓ ପରଫ୍ୟୁମ୍ ଜଗତ ବିଖ୍ୟାତ। ପ୍ୟାରିସ୍ ସହରର ଲୁଭ୍ରା ଆର୍ଟ ଗ୍ୟାଲେରୀରେ ଶୋଭା ପାଉଥିବା ମୋନାଲିସାର ସ୍ମିତହାସ୍ୟର ରହସ୍ୟ ଏବେବି ଅବୋଧ ହୋଇ ରହିଛି। ସେହିଭଳି ପ୍ୟାରିସ୍‌ର ଆଇଫେଲ୍ ଟାୱାର, ସାଇନ୍ ନଦୀ, ଆର୍କ ଦି ଟ୍ରମ୍ଫ୍ ଇତ୍ୟାଦିର ଦୃଶ୍ୟ ଅତୀବ ମନୋରମ।

## ଆଠଘଣ୍ଟାରେ ଆଠଶହ କିଲୋମିଟର

ପ୍ୟାରିସ୍ ସହର ଦେଖିବା ପାଇଁ ମନର ବ୍ୟାକୁଳତା ଯୋଗୁଁ ରାତିରେ ଭଲ ନିଦ ହୋଇ ନ ଥିଲା। ପୂର୍ବ ନିଷ୍ପତ୍ତି ଅନୁଯାୟୀ ସନ୍ଧ୍ୟାରେ ବଜାରରେ ବୁଲିବା ସମୟରେ ସକାଳ ଜଳଖିଆ ପାଇଁ ଯିଏ ଯାହାର ପସନ୍ଦ ମୁତାବକ ଫଳ ଇତ୍ୟାଦି କିଣି ଆଣିଥିଲେ। ସକାଳ ପାଞ୍ଚଟା ବେଳକୁ ସମସ୍ତେ ପ୍ରସ୍ତୁତ ହୋଇ ଗାଡ଼ି ପାଖକୁ ଆସିଗଲେ। ଜଳଖିଆ ଖାଇବାର ପର୍ବ ନଥିବାରୁ ଆମେ ବ୍ୟାଗେଜ୍ ଧରି ସିଧାଯାଇ ଗାଡ଼ିରେ ବସିଗଲୁ। ସାଢ଼େପାଞ୍ଚଟାରେ ଆମ ଗାଡ଼ି ଜେନେଭା ଛାଡ଼ି ପ୍ୟାରିସ୍ ଅଭିମୁଖେ ଯାତ୍ରା ଆରମ୍ଭ କଲା। ତଥାପି ଆମ ମନରେ ସଂଶୟ ଥିଲା। ସତରେ କ'ଣ ଆମେ ଦିନ ଦୁଇଟା ସୁଦ୍ଧା ପ୍ୟାରିସ୍‌ରେ ପହଞ୍ଚିପାରିବୁ ?

ମୁଁ ଡ୍ରାଇଭର୍ ପଛପାଖ ବାଡ଼ପଟ ସିଟ୍‌ରେ ବସିଥିଲି। ଗାଡ଼ିର ମାଇଲ୍ ମିଟର୍ ଉପରେ ଆଖି ପଡ଼ିଯିବାରୁ ମୁଁ ପ୍ରଥମେ ଚମକିପଡ଼ିଥିଲି। ଗାଡ଼ିର ଗତି ଘଣ୍ଟାକୁ ୧୨୦ରୁ ୧୪୦ କିଲୋମିଟର ମଧ୍ୟରେ ରହୁଥିଲା। କିନ୍ତୁ କ୍ଷିପ୍ରଗତିର ଚାପ ଆମେ କିଛି ଅନୁଭବ କରିପାରୁ ନଥିଲୁ। ପାଖାପାଖି ଆଠଟା ସମୟରେ ଆମ ଗାଡ଼ି ଯାଇ ଏକ ମୋଟେଲ୍ ସାମନାରେ ରହିଲା। ବିଦେଶୀ ପର୍ଯ୍ୟଟକମାନଙ୍କ ପାଇଁ ଯାହା ଯାହା ଆବଶ୍ୟକ ସେସବୁ ବ୍ୟବସ୍ଥା ସେଠାରେ ଥିଲା। ଗାଡ଼ି ପାର୍କିଂ ପାଇଁ ପ୍ରଶସ୍ତ ଜାଗା ସାଙ୍ଗକୁ ବିରାଟ ଘାସପଡ଼ିଆ (ଲନ୍)। ତା' ମଝିରେ ମଝିରେ ଛତା ପୋତାହୋଇଥିଲା। ଗୋଟିଏ ପାଖରେ ରେଷ୍ଟୁରାଣ୍ଟ୍, ଟଏଲେଟ୍ ଓ ଅନ୍ୟ ପାଖରେ ପେଟ୍ରୋଲ୍ ପମ୍ପ୍। ଆମଭଳି ଆଉ କେତେକ ବିଦେଶାଗତ ପର୍ଯ୍ୟଟକଙ୍କ ଗାଡ଼ି ସେଠାରେ ଲାଗିଥିଲା ଓ ପର୍ଯ୍ୟଟକମାନେ ମନ ଆନନ୍ଦରେ ସକାଳର ସୂର୍ଯ୍ୟକିରଣ ଉପଭୋଗ କରୁଥିଲେ। ୟୁରୋପୀୟ ରାଷ୍ଟ୍ରମାନଙ୍କରେ ସକାଳର ସୂର୍ଯ୍ୟକିରଣ ଅତ୍ୟନ୍ତ ଉପଭୋଗ୍ୟ ହୋଇଥାଏ; କାରଣ ସେସବୁ ରାଷ୍ଟ୍ରମାନଙ୍କରେ ପାଗ ଅନେକ ସମୟରେ ମେଘୁଆ ଥାଏ ଏବଂ ମଝିରେ ମଝିରେ ଝିପି ଝିପି ବର୍ଷା ମଧ୍ୟ ହେଉଥାଏ। ସୂର୍ଯ୍ୟକିରଣ ଯୋଗୁଁ ପାଗ ମୁଖ୍ୟତଃ ଶୁଖିଲା ଥିଲା ଏବଂ ସେଥିପାଇଁ ଆମର ଭ୍ରମଣ ସୁଖକର ହୋଇଥିଲା।

ଗାଡ଼ି ରହିଲା ପରେ ସେଠାରେ ମାତ୍ର ଅଧଘଣ୍ଟାଏ ବିଶ୍ରାମ ନେଇହେବ ବୋଲି ଡ୍ରାଇଭର୍ ଆମକୁ ସୂଚାଇଦେଲେ। ତା'ପରେ ଚାଲିଲା 'ଫ୍ରି ଫର୍ ଅଲ୍'। କିଏ 'ବାର୍' ମଧ୍ୟକୁ ଗଲେ ତ ଆଉ କିଏ ରେଷ୍ଟୁରାଣ୍ଟ୍‌କୁ। ମୁଁ କୌତୂହଳବଶତଃ ରେଷ୍ଟୁରାଣ୍ଟ୍‌କୁ ପଶିଲି। ରେଷ୍ଟୁରାଣ୍ଟ୍ ଭିତରେ ଜଣେ ମଧ୍ୟମବୟସ୍କା ମହିଳା କ'ଣ ଛାଣୁଥିଲେ। ତାଙ୍କୁ ଦେଖିବାକୁ ମନରେ ଆଗ୍ରହ ବଢ଼ିଲା। ବହୁଦିନ ପରେ ଛଣାତେଲର ବାସ୍ନା ନାକରେ ବାଜିଲା। ଯାଇ ଦେଖିଲି ସେ ଭଦ୍ରମହିଳା କାଠିରେ ତିଆରି ଏକପ୍ରକାର ଜାଲିଚଟୁରେ କଟାଆଳୁ ଛାଣୁଥିଲେ। ନିକଟରେ ପ୍ଲେଟ୍‌ସବୁ ସଜାହୋଇ ଥୁଆ ହୋଇଥିଲା ଏବଂ କାନ୍ଥରେ ବିଶୁଦ୍ଧ ପାଣିର ଯନ୍ତ୍ରଟିଏ ଲାଗିଗଲା। ଗ୍ରାହକମାନେ କାଉଣ୍ଟରରେ ଡଲାର ଦାଖଲ କରି କୁପନ ସଂଗ୍ରହ କରୁଥିଲେ ଏବଂ ସେହି କୁପନ ବଦଳରେ ସେମାନଙ୍କୁ ଖାଦ୍ୟପଦାର୍ଥ ମିଳୁଥିଲା। ସେସବୁ ଦେଶରେ ସବୁକାମ ନିଜେ କରିବାକୁ ପଡ଼ିଥାଏ। ଆମ ଦେଶଭଳି ଚଉକିରେ ବସି ନବାବୀ ଢଙ୍ଗରେ ଖାଦ୍ୟ ପଦାର୍ଥ ଅର୍ଡର୍ ଦେବା ବ୍ୟବସ୍ଥା ପାଶ୍ଚାତ୍ୟ ଦେଶରେ ଦେଖାଯାଏ ନାହିଁ।

ଆମ ସାଙ୍ଗରେ ଆମ ଡ୍ରାଇଭର୍ ମଧ୍ୟ ରେଷ୍ଟୁରାଣ୍ଟ୍‌କୁ ଯାଇଥିଲେ। ଆଳୁ ଛଣାହେଉଥିବାର ଦେଖି ସେ ଖୁସି ହୋଇ କହିଲେ, "ଓ! ପଟାଟୋ ଚିପ୍ସ୍? ଭେରି ଚିପ୍। ପ୍ଲେଟ୍ ଓନ୍‌ଲି ଟୁ ଡଲାର୍।" ମୁଁ ଦେଖିଲି ଗୋଟିଏ ପ୍ଲେଟ୍‌ରେ ପ୍ରାୟ ପନ୍ଦରରୁ କୋଡ଼ିଏଖଣ୍ଡ ଆଳୁ। ଅନ୍ୟମାନେ ନେଉଛନ୍ତି। ମୁଁ ଭାବିଲି ନନେଲେ ପଛରେ ପଡ଼ିଯିବି, ହୁଏତ ଆଉ ମିଳି ନପାରେ। ସେଥିପାଇଁ କାଳ ବିଳମ୍ବ ନକରି କାଉଣ୍ଟର୍‌ରେ ଦୁଇ ଡଲାର୍

ଦାଖଲ କରି ଗୋଟିଏ ପ୍ଲେଟ୍ ପଟାଟୋ ଚିପ୍ସ୍ ପାଇଁ କୁପନଟିଏ ଆଣିଲି। ସେତେବେଳକୁ ଚିପ୍ସ୍ ପାଇଁ ଲାଇନ୍ ଲାଗିଯାଇଥିଲା। ହଠାତ୍ ଏକସମୟରେ ପଚିଶିଜଣ ଗ୍ରାହକ ପହଞ୍ଚିଯିବେ ବୋଲି ବୋଧହୁଏ ରେଷ୍ଟୁରାଣ୍ଟ ମାଲିକ ଭାବିନଥିଲେ। ତଥାପି ପାରୁପର୍ଯ୍ୟନ୍ତ ଚେଷ୍ଟାକରି ସେମାନେ ଆମକୁ ପଟାଟୋ ଚିପ୍ସ୍ ଓ ଚା' ଯୋଗାଇ ଦେଲେ। ଆମେ ପ୍ରତ୍ୟେକ ପଟାଟୋ ଚିପ୍ସ୍ ଖାଇଲାବେଳେ ଅନୁଭବ କରୁଥିଲୁ ସତେଯେପରି ଆମେ ଆଳୁ ନଖାଇ କେବଳ ଟଙ୍କା ଖାଉଛୁ; କାରଣ ଖଣ୍ଡେ ଆଳୁର ଦାମ୍ ଏକଟଙ୍କାରୁ ଅଧିକ ଥିଲା।

ରେଷ୍ଟୁରାଣ୍ଟର ଅନ୍ୟପଟକୁ ଯାଇ ଦେଖିଲି କେତେକ ବନ୍ଧୁ 'ଟିନ୍ ବିଅର' ଧରି ବସିଯାଇଥିଲେ। ଯେଉଁମାନେ ସୁରାପାନରେ ଅଭ୍ୟସ୍ତ, ସେମାନଙ୍କ ପାଇଁ ସମୟର କିଛି ଅର୍ଥ ନଥାଏ। ସାମାନ୍ୟ ସୁବିଧା ସୁଯୋଗ ପାଇଲେ ସେମାନେ ତା'ର ସଦୁପଯୋଗ କରିବାକୁ ପଛାଉ ନଥିଲେ। ଆମ ଭିତରେ 'ଜନମୋର୍ଚ୍ଚା'ର ସମ୍ପାଦକ ସୀତଲା ସିଂ ଅପେକ୍ଷାକୃତ ବୟସ୍କ ଥିଲେ। ତାଙ୍କର ଖାଦ୍ୟ କିମ୍ବା ସୁରାପାନ ପ୍ରତି ବିଶେଷ ଆଗ୍ରହ ନଥିଲା। ଯାହା ହେଲେ ଚଳିଯାଉଥିଲା। କିନ୍ତୁ ତାଙ୍କର ଏକମାତ୍ର ଦୁର୍ବଳତା ଥିଲା ନିଜ ସହର ଫଇଜାବାଦରେ ଥିବା ପରିବାରଲୋକଙ୍କ ପାଖକୁ ଟେଲିଫୋନ୍ କରିବା। ସେ ସବୁବେଳେ ସାଙ୍ଗରେ ଡଲାର୍ ଓ ପେନି ରଖୁଥିଲେ ଏବଂ ଯେକୌଣସି ଆଇ.ଏସ୍.ଡି. ବୁଥ୍‌ରୁ ଫୋନ୍ କରୁଥିଲେ।

ସେତେବେଳକୁ ଆମ ଦେଶରେ ଏସ୍.ଟି.ଡି. କିମ୍ବା ଆଇ.ଏସ୍.ଡି. ଟେଲିଫୋନ୍ ବ୍ୟବସ୍ଥା ଚାଲୁ ହୋଇନଥିଲା। ଟେଲିଫୋନ୍‌ରୁ ଟ୍ରଙ୍କ୍ କଲ୍ ବୁକ୍ କରି କଥାବାର୍ତ୍ତା ହେବାକୁ ପଡୁଥିଲା। ଏପରିକି କଟକରୁ ଭୁବନେଶ୍ୱରର ଦୂରତା ମାତ୍ର ପଚିଶି କିଲୋମିଟର୍ ହେଲେ ମଧ୍ୟ ଆମକୁ ଘଣ୍ଟା ଘଣ୍ଟା ଅପେକ୍ଷା କରିବାକୁ ପଡୁଥିଲା। ଟ୍ରଙ୍କ୍ସ୍ ମନିଟର୍ ଓ ସୁପରଭାଇଜର୍‌ଙ୍କ ଦୟା ଉପରେ କଲ୍ ମିଳିବା ନିର୍ଭର କରୁଥିଲା। ଏ ସମ୍ପର୍କରେ ଘଟିଥିବା ଏକ କୌତୂହଳପୂର୍ଣ୍ଣ ଘଟଣା ମୁଁ ମନରୁ ପାସୋରି ନଥିଲି। ବହୁବର୍ଷ ତଳେ ହେମବତୀ ନନ୍ଦନ ବହୁଗୁଣା ଆମ ଦେଶର ଯୋଗାଯୋଗ (କମ୍ୟୁନିକେସନ୍) ବିଭାଗ ମନ୍ତ୍ରୀ ଥିଲେ। ସେ ଥରେ ଭୁବନେଶ୍ୱର ଗସ୍ତରେ ଆସି ଏକ ସାମ୍ବାଦିକ ସମ୍ମିଳନୀ ଡାକିଥିଲେ। ସେ ସମୟରେ ମୁଖ୍ୟ ଡାକପାଳ ଓ ଦୂରସଞ୍ଚାରର ମହାପ୍ରବନ୍ଧକ ପଦବୀ ଏକତ୍ର ଥିଲା। ଓଡ଼ିଶାରେ ଦୀନଦୟାଳ୍ ନାମରେ ଭାରତୀୟ ଡାକସେବା (ଇଣ୍ଡିଆନ୍ ପୋଷ୍ଟାଲ୍ ସର୍ଭିସ୍)ର ଜଣେ ଅଫିସର୍ ଉଭୟ ଦାୟିତ୍ୱରେ ରହିଥିଲେ। ଲୋକଙ୍କ ସୁବିଧା ଅସୁବିଧା ବୁଝିବା ପରିବର୍ତ୍ତେ ସେ କତିପୟ ରାଜନୈତିକ ବ୍ୟକ୍ତି ଓ ଉଚ୍ଚପଦସ୍ଥ ସରକାରୀ ଅଫିସରଙ୍କୁ ଖୁସି କରି ନିଜର ଆସ୍ଥାନକୁ ସୁଦୃଢ଼ କରିପାରିଥିଲେ।

ସାମ୍ବାଦିକ ସମ୍ମିଳନୀରେ ଓଡ଼ିଶାରେ ଡାକ ତାର ବିଭାଗର ଅବ୍ୟବସ୍ଥା ସମ୍ପର୍କରେ ମନ୍ତ୍ରୀ ମହୋଦୟଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା। ସେଠାରେ ଉପସ୍ଥିତ ଥିବା

ଶ୍ରୀ ଦୀନଦୟାଲ ସମସ୍ତ ଅଭିଯୋଗ ଖଣ୍ଡନ କରିବା ପାଇଁ ଉଦ୍ୟମ କରିଥିଲେ। ଏହି ଅବସ୍ଥାରେ କେତେକ ସାମ୍ବାଦିକଙ୍କ ସହିତ ତାଙ୍କର ଯୁକ୍ତିତର୍କ ହୋଇଥିଲା। ସମସ୍ତ ବିତର୍କର ଅବସାନ ଘଟାଇବା ଉଦ୍ଦେଶ୍ୟରେ କଥା ହେଲା ଯେ, ଭୁବନେଶ୍ୱରରୁ ପିପିଲିକୁ ଗୋଟିଏ ଟ୍ରଙ୍କ୍ କଲ୍ ବାହାର ଟେଲିଫୋନ୍‌ରୁ ବୁକ୍ କରାଯାଉ ଏବଂ ଜଣେ ଲୋକ ମଟରସାଇକେଲ୍‌ରେ ପିପିଲି ଯାଉ। ଆଗ ଟ୍ରଙ୍କ୍‌କଲ୍ ମିଳିବ କି ଆମ ଲୋକ ପିପିଲିରେ ପହଞ୍ଚିବ, ତା' ଉପରେ ବିଭାଗର କାର୍ଯ୍ୟଦକ୍ଷତା କଥା ଜଣାପଡ଼ିବ। ମନ୍ତ୍ରୀଙ୍କ ସାମନାରେ ହୋଇଥିବା କଥାବାର୍ତ୍ତା ସମ୍ପର୍କରେ ଡାକ ତାର ବିଭାଗର ଅଫିସରମାନଙ୍କୁ କିଛି ଜଣାଇ ଦିଆଯାଇ ନଥିଲା। ସ୍ୱାଭାବିକ ରୀତିରେ ଟ୍ରଙ୍କ୍‌କଲ୍‌ଟି ବୁକ୍ କରିଦେଇ ସେମାନେ ବସିରହିଲେ। ସେତେବେଳେ ଭୁବନେଶ୍ୱରରୁ ପିପିଲିକୁ ଟ୍ରଙ୍କ୍‌କଲ୍ ଜଟଣୀ ଏକ୍ସଚେଞ୍ଜ୍ ଜରିଆରେ ଯାଉଥିଲା। ସେଦିନ ଶ୍ରୀ ଦୀନଦୟାଲ୍‌ଙ୍କର ଦୁର୍ଭାଗ୍ୟର ଦିନ ଥିଲା। ଅଧଘଣ୍ଟା ମଧ୍ୟରେ ଟ୍ରଙ୍କ୍ କଲ୍ ମିଳିନଥିଲା ଅଥଚ ଅନ୍ୟପଟେ ମଟରସାଇକେଲ୍‌ରେ ଯାଇଥିବା ବ୍ୟକ୍ତି ପିପିଲି ଡାକଘରେ ସେ ସମୟ ମଧ୍ୟରେ ପହଞ୍ଚିବାର ସୂଚନା ଭୁବନେଶ୍ୱରକୁ ପଠାଇ ପାରିଥିଲେ। ଏହି ଘଟଣାରେ ଶ୍ରୀ ଦୀନଦୟାଲ୍‌ଙ୍କୁ ମନ୍ତ୍ରୀଙ୍କ ରୋଷର ଶିକାର ହେବାକୁ ପଡ଼ିଥିଲା ଏବଂ କିଛିମାସ ପରେ ତାଙ୍କୁ ଓଡ଼ିଶାରୁ ଅନ୍ୟତ୍ର ବଦଳି କରାଯାଇଥିଲା।

ମାତ୍ର ବିଦେଶ ରାଷ୍ଟ୍ରରେ ଟେଲିଫୋନ୍ ସେବାରେ ଯଥେଷ୍ଟ ଉନ୍ନତି ଘଟିଥିଲା ଏବଂ ଥରେମାତ୍ର ଡାଏଲ୍ କଲେ ପୃଥିବୀର ଯେକୌଣସି ସ୍ଥାନକୁ ଟେଲିଫୋନ୍ ସଂଯୋଗ କରାଯାଇ ପାରୁଥିଲା। ଯାହାହେଉ ସୀତଲା ସିଂଙ୍କ ମାଧ୍ୟମରେ ଆମେ ଭାରତବର୍ଷରେ ଘଟୁଥିବା ଘଟଣା ସମ୍ପର୍କରେ କିଛି କିଛି ସୂଚନା ପାଉଥିଲୁ।

ଡ୍ରାଇଭର ଗାଡ଼ି ଷ୍ଟାର୍ଟ କଲାପରେ ସମସ୍ତେ ସଚେତନ ହୋଇପଡ଼ିଲେ ଏବଂ ସାଙ୍ଗେ ସାଙ୍ଗେ ଉଠି ନିଜ ନିଜ ଆସନ ଦଖଲ କଲେ। ମନରେ ପୁଣି ସେଇ ଭାବନା – ଆମେ କ'ଣ ଯାଇ ମଧ୍ୟାହ୍ନ ସୁଦ୍ଧା ପ୍ୟାରିସ୍‌ରେ ପହଞ୍ଚି ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ ଯୋଗ ଦେଇ ପାରିବୁ? ମାତ୍ର ଆମ ସମସ୍ତଙ୍କର ଆଶଙ୍କାର ଅନ୍ତ ଘଟାଇ ଆମ ଗାଡ଼ିଟି ପ୍ୟାରିସ୍ ସହରରେ ଥିବା ୟୁନେସ୍କୋ ଦପ୍ତରରେ ଅପରାହ୍ନ ଗୋଟାଏ ପଇଁଚାଳିଶିରେ ପହଞ୍ଚି ଯାଇଥିଲା।

## ୟୁନେସ୍କୋ କର୍ମଶାଳାରେ ଯୋଗଦାନ

ପୂର୍ବରୁ କାର୍ଯ୍ୟକ୍ରମ ସ୍ଥିରୀକୃତ ହୋଇଥିବାରୁ ଆମକୁ ପାଛୋଟି ନେବାପାଇଁ ୟୁନେସ୍କୋ ଦପ୍ତରର କର୍ମଚାରୀମାନେ ଗେଟ୍ ପାଖରେ ଅପେକ୍ଷାକରି ରହିଥିଲେ। ଆମେ ଗାଡ଼ିରୁ ଓହ୍ଲାଇଲା ମାତ୍ରେ ଆମକୁ ଗୋଟିଏ କନ୍‌ଫରେନ୍ସ କକ୍ଷକୁ ନେଇଗଲେ। ସେ କକ୍ଷ

ଦେଖି ମୋ ଆଖି ଟେରା ହୋଇଗଲା; କାରଣ ଅତୀତରେ ଆଧୁନିକ ନିର୍ମାଣ କୌଶଳରେ ନିର୍ମିତ ଏପରି ଏକ ବିରାଟ କକ୍ଷ ଦେଖିବାର ସୁଯୋଗ ଆମକୁ କେବେ ମିଳିନଥିଲା। ଆମ ମାପକାଠିରେ କନ୍‌ଫରେନ୍ସ କକ୍ଷ କହିଲେ ଆମେ ସେକ୍ରେଟାରିଏଟ୍‌ର ଉପରମହଲାରେ ଥିବା କକ୍ଷକୁ ବୁଝିଥାଉ, ଯେଉଁଠି ଅଧେଦିନ ଠିକ୍ ଭାବରେ ଏ.ସି. ଚାଲେନାହିଁ। ଯା'ର ମାଇକ୍ରୋଫୋନ୍‌ରୁ କର୍କଶ ସ୍ୱର ଶୁଣାଯାଏ। ଏକାଠି ଶହେଲୋକ ବସିଗଲେ ଘର ଭର୍ତ୍ତି ହୋଇଯାଏ। ମାତ୍ର, ସେଠାରେ ଏକାସାଙ୍ଗରେ ଅନ୍ୟୂନ ପାଞ୍ଚଶହ ଲୋକ ଏକାଠି ବସି ଆଲୋଚନା କରିବାର ବ୍ୟବସ୍ଥା ଥିଲା। ଆମର ସଂଖ୍ୟା କମ୍ ଥିବାରୁ ୟୁନେସ୍କୋର ଜଣେ ଅଧିକାରୀ ଆମକୁ ଆଉ ଏକ ଅପେକ୍ଷାକୃତ ସାନ କକ୍ଷକୁ ନେଇଗଲେ। ହଲ୍ ଭିତରେ ସବୁକଥା ଶୃଙ୍ଖଳିତ। ଘୋ-ଘା ହୋ-ହାଲ୍ଲା ନଥିଲା। ଆମର ସେଠାରେ ଯେଉଁ କର୍ମଶାଳାର ବ୍ୟବସ୍ଥା ହୋଇଥିଲା, ତା'ର ବିଷୟ ଥିଲା 'ବିଶ୍ୱର ଶାନ୍ତି ପ୍ରକ୍ରିୟାରେ ଗଣମାଧ୍ୟମର ଭୂମିକା'। ଯଥା ସମୟରେ କାର୍ଯ୍ୟକ୍ରମ ଆରମ୍ଭ ହେଲା।

ସେତେବେଳକୁ ସମୟ ପାଖାପାଖି ଅଢ଼େଇଟା ବାଜିଯାଇଥିଲା। ଆମେସବୁ ବ୍ୟସ୍ତତା ଭିତରେ ଖାଇବା କଥା ଏକବାରେ ଭୁଲି ଯାଇଥିଲୁ। ଭୋକ ଲାଗୁଥିଲେ ହେଁ ଉପାୟ ନଥିଲା। ଆଲୋଚନାଚକ୍ରରେ ପ୍ୟାରିସ୍‌ରେ ଅବସ୍ଥାପିତ ଭାରତୀୟ ହାଇକମିସନର୍ ଏୟାର୍‌ମାର୍ଶାଲ୍ ଲତିଫ୍ ଯୋଗ ଦେଇଥିଲେ। ଆମର ସଭାପତି ବିକ୍ରମ ରାଓ ସେଠାରେ ଥିବା ଅଫିସରମାନଙ୍କୁ ଆମର ପରିଚୟ ପ୍ରଦାନ କରିବା ପରେ ଶ୍ରୀ ଲତିଫ୍ ଆମ ସହିତ ୟୁନେସ୍କୋ ଦସ୍ତରର ଅଫିସରମାନଙ୍କର ଚିହ୍ନା କରାଇଥିଲେ। କିଛି ସମୟ ଆଲୋଚନା ଚାଲିଲା ପରେ ଆମକୁ କୁହାଗଲା ଯେ, ଆଲୋଚନା ଚାଲୁରହିଥିବା ଅବସ୍ଥାରେ "ୱାର୍କିଂଲଞ୍ଚ୍" ଯୋଗାଇ ଦିଆଯିବ ଏବଂ ତା'ଫଳରେ ଉଭୟ କାମ ଏକା ସାଙ୍ଗରେ ଚାଲିବ। ୱାର୍କିଂଲଞ୍ଚ୍ ସମ୍ପର୍କରେ ଆମର କିଛି ଧାରଣା ନଥିଲା; କାରଣ ଆମ ଦେଶରେ ବିଶେଷ କରି ଆମରାଜ୍ୟରେ ଲଞ୍ଚ୍ କହିଲେ ପ୍ରାୟ ଅଢ଼େଇଘଣ୍ଟା କାମ ବନ୍ଦ୍। ଅଫିସରମାନେ ଲଞ୍ଚ୍ କରିବା ପାଇଁ ଦେଢ଼ଟାବେଳେ ଘରକୁ ଗଲେ ସାଧାରଣତଃ ଚାରିଟା ପୂର୍ବରୁ ଅଫିସ୍‌କୁ ଫେରନ୍ତି ନାହିଁ। ଏହା ଆଇନସଙ୍ଗତ ନହେଲେ ମଧ୍ୟ ଏହି ବ୍ୟବସ୍ଥା ସମସ୍ତଙ୍କର ଏକପ୍ରକାର ଦେହସୁହା ହୋଇଗଲାଣି। ଅଫିସରମାନଙ୍କ ଦେଖାଦେଖି ଅମଲାମାନଙ୍କର ମଧ୍ୟ ତଦ୍ରୂପ ଆଚରଣ। ଲଞ୍ଚ୍ ପାଇଁ ଅଧଘଣ୍ଟାଏ ସମୟ ନିର୍ଦ୍ଦିଷ୍ଟ ହୋଇଥିଲେ ହେଁ ସେମାନେ ଏହି ସମୟକୁ ଦେଢ଼ଘଣ୍ଟା ପର୍ଯ୍ୟନ୍ତ ଟାଣିନିଅନ୍ତି। ଲଞ୍ଚ୍ ଛୁଟିରେ ଆରମ୍ଭ ହୋଇଥାଏ ଗପର ଆସର। କ୍ରିକେଟ୍ ଖେଳଠାରୁ ଆରମ୍ଭ କରି ଚାନ୍ଦିପୁର କ୍ଷେପଣାସ୍ତ୍ରଘାଟୀ ପର୍ଯ୍ୟନ୍ତ, ଢେଙ୍କାନାଳରୁ ଝିଙ୍କିଶାଳ ପର୍ଯ୍ୟନ୍ତ ସବୁକଥା ପଡ଼େ।

ଆମର ଅଲୋଚନା ଚାଲିଥିଲାବେଳେ ସୁଦୃଶ୍ୟ ପ୍ୟାକେଟ୍‌ରେ ଆମକୁ ୱାର୍କିଂ ଲଞ୍ଚ୍ ଯୋଗାଇ ଦିଆଗଲା। ବିଦେଶରାଷ୍ଟ୍ରମାନଙ୍କରେ ଅନ୍ୟ ଲୋକଙ୍କ ଦ୍ୱାରା ଖାଦ୍ୟ ପରିବେଷଣରେ

ପ୍ରଥା ନଥିଲେ ମଧ୍ୟ ଆମ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା। ପ୍ୟାକେଟ୍‌ରେ ଥିଲା ସାଣ୍ଡୱିଚ୍‌ଚିକେନ୍ ତନ୍ଦୁରୀ ଓ ଆଳୁ ଚିପ୍‌ସ୍। ମୁଁ ଦେଖିଲି, ବନ୍ଧୁମାନେ ଆନନ୍ଦରେ ସେସବୁ ଗଳାଧଃକରଣ କରୁଥିଲେ। ଆମେ କେଇଜଣ ଶାକାହାରୀ ଥିବାରୁ ସାଣ୍ଡୱିଚ୍ ଓ ଆଳୁଚିପ୍‌ସ୍‌ରେ ସନ୍ତୁଷ୍ଟ ରହିବାକୁ ପଡ଼ିଲା।

ଆମର କର୍ମଶାଳା ସରିଲାବେଳକୁ ସମୟ ସାଢ଼େଚାରିଟା ହୋଇଯାଇଥିଲା। କନ୍‌ଫରେନ୍ସ ହଲ୍‌ରୁ ଆମେ ୟୁନେସ୍କୋ ପଦାଧିକାରୀମାନଙ୍କ ସହିତ କରମର୍ଦ୍ଦନ କରି ବାହାରକୁ ଆସିଲୁ। ସେମାନଙ୍କ ବ୍ୟବହାର ଏତେ ଭଦ୍ର ଯେ ଆମ ମୁଣ୍ଡ ସେମାନଙ୍କ ନିକଟରେ ଆପେ ଅପେ ନଇଁଗଲା। ସନ୍ଧ୍ୟା ହେବାକୁ ଅନେକ ସମୟ ବାକି ଥିଲା। ସନ୍ଧ୍ୟାରେ ଏୟାର୍ ମାର୍ଶାଲ୍‌ଙ୍କ ଘରେ 'କକ୍‌ଟେଲ' ପାର୍ଟିର ବନ୍ଦୋବସ୍ତ ହୋଇଥିଲା ଓ ସେଥିପାଇଁ ସେ ସମସ୍ତଙ୍କୁ ବ୍ୟକ୍ତିଗତ ଭାବରେ ଆମନ୍ତ୍ରଣ କରିଥିଲେ। ସେଠାରେ ଥିବା କିଛି ଅଫିସର ବୋଧହୁଏ ଆମର ମନୋଭାବକୁ ଠଉରାଇ ନମ୍ରତାର ସହିତ ପଚାରିଲେ, "ଆପଣମାନଙ୍କ ହାତରେ ସମୟ ଥିଲେ ଆମ ଦପ୍ତରର ଆଉ କିଛି ଅଂଶ ବୁଲି ଦେଖିପାରନ୍ତି।" ଆମେ ସେ ପ୍ରସ୍ତାବରେ ରାଜି ହୋଇଗଲୁ। ଯେଉଁ ୟୁନେସ୍କୋ ବିଷୟରେ ଆମେ ବହିରେ ପଢ଼ିଥିଲୁ, ସେଇ ଅଫିସ୍ ଭିତରେ ଯେ ଆମେ ବୁଲାବୁଲି କରୁଛୁ, ସେକଥା ପ୍ରଥମେ ବିଶ୍ୱାସ ହେଲା ନାହିଁ। ୟୁନେସ୍କୋ ଅଫିସ୍ ପରିସର ଏତେ ବ୍ୟାପକ ଯେ, ବୁଲୁବୁଲୁ କେତେବେଳେ ଦୁଇଘଣ୍ଟା ଅତିବାହିତ ହୋଇଯାଇଥିଲା ଆମେ ଜାଣିପାରି ନଥିଲୁ। ବିକ୍ରମ ରାଓଙ୍କ ତାଗିଦ୍‌ରେ ଆମେ ସଚେତନ ହୋଇ କୋଚ୍ ଆଡ଼କୁ ଅଗ୍ରସର ହେଲୁ।

## ଏୟାର୍ ମାର୍ଶାଲ୍‌ଙ୍କ ଘରେ କକ୍‌ଟେଲ୍ ପାର୍ଟି

ସନ୍ଧ୍ୟା ଠିକ୍ ସାତଟା ବେଳେ ଆମ କୋଚ୍ ଯାଇ ପହଞ୍ଚିଲା ଭାରତୀୟ ହାଇକମିଶନରଙ୍କ ବାସଭବନ ସାମନାରେ। ପୋର୍ଟିକୋରୁ ଏୟାର୍ ମାର୍ଶାଲ୍ ଲତିଫ୍ ଆମକୁ ପାଛୋଟି ନେଲେ। ଏତେବଡ଼ ଅଫିସର, ଏକଦା ଭାରତୀୟ ବାୟୁସେନାର ସର୍ବୋଚ୍ଚ ଅଧିକାରୀ ଥାଇ ସୁନାମ ଅର୍ଜନ କରିଥିଲେ। ତାଙ୍କର କାର୍ଯ୍ୟଦକ୍ଷତାର ପୁରସ୍କାର ସ୍ୱରୂପ ଭାରତ ସରକାର ତାଙ୍କୁ ପ୍ୟାରିସ୍‌ରେ ହାଇକମିଶନର୍ ପଦବୀରେ ଅବସ୍ଥାପିତ କରିଥିଲେ। ଆଉ କିଏ ହୋଇଥିଲେ ଗର୍ବ ଓ ଅହଙ୍କାରରେ ଫାଟି ପଡୁଥାନ୍ତା। କିନ୍ତୁ ଲତିଫ୍ ସାହେବ ଜଣେ ଭିନ୍ନ ଉପାଦାନର ମଣିଷ ଥିଲେ। ତାଙ୍କର ଚେହେରା, ପୋଷାକପତ୍ର, ଆଦବକାଇଦାରୁ ଆଭିଜାତ୍ୟର ଚିହ୍ନ ବାରି ହୋଇପଡୁଥିଲା। ସେ ନିଜ ପଦବୀକୁ ଭୁଲି ଆମ ସମସ୍ତଙ୍କ ସହିତ ବ୍ୟକ୍ତିଗତ ଭାବରେ କରମର୍ଦ୍ଦନ କରି ଡ୍ରଇଂରୁମ୍‌କୁ ଡାକିନେଲେ। ଡ୍ରଇଂରୁମ୍ ଭିତରର ସାଜସଜ୍ଜା, ଗାଲିଚା ଓ ଆସବାବପତ୍ର ଦେଖି ଆମେ କୁଆଡ଼େ ହଜିଗଲୁ।

ଗାଲିଚ ଉପରେ ଗୋଡ଼ ପକେଇଲେ ଗୋଡ଼ ଦବିଯାଉଥିଲା। ସୋଫାର ମୁଲାୟମ ଗଦି ଯେତିକି ଲୋଭନୀୟ ସେତିକି ଆରାମଦାୟକ। ଡ୍ରଇଂରୁମ୍‌ରେ ଏକ ସମୟରେ ପଚାଶ ଲୋକ ବସିବାର ବନ୍ଦୋବସ୍ତ ଥିଲା।

ପ୍ରାରମ୍ଭିକ ପରିଚୟ ପ୍ରଦାନ ପରେ ଆରମ୍ଭ ହେଲା କକ୍‌ଟେଲ୍‌ପାର୍ଟି। 'କକ୍‌ଟେଲ୍'ର ଭାଷାନ୍ତର କଲେ ଗଞ୍ଜା (ଅଣ୍ଡିରା କୁକୁଡ଼ା)ର ଲାଞ୍ଜକୁ ବୁଝାଏ। ଗଞ୍ଜାର ଲାଞ୍ଜରେ ଯେଭଳି ବିଭିନ୍ନ ରଙ୍ଗର ପର ଶୋଭା ପାଉଥାଏ, ସେହିଭଳି ବିଭିନ୍ନ ପ୍ରକାର ମଦର ସମ୍ମିଶ୍ରଣକୁ କକ୍‌ଟେଲ୍ କୁହାଯାଏ। କକ୍‌ଟେଲ୍ ସାଙ୍ଗକୁ ବିଭିନ୍ନ ସୁସ୍ୱାଦୁ ସ୍ନାକ୍ସ। ଆମେ ଯେଉଁମାନେ ମଦ୍ୟପାନ କରୁନଥିଲୁ, ଗୋଟିଏ ସ୍ଥାନରେ ଏକାଠି ବସି ସଫ୍ଟଡ୍ରିଙ୍କ୍ ମଗାଇଲୁ। ସଫ୍ଟଡ୍ରିଙ୍କ୍‌ରେ କ'ଣ ନଥିଲା କହିହେବନାହିଁ। ଜାତି ଜାତି ଫଳର ଜୁସ୍ ସାଙ୍ଗକୁ କୋକାକୋଲା, ଫାଣ୍ଟା ଇତ୍ୟାଦି ସବୁକିଛି।

ଆମ ଭିତରୁ କେଇଜଣ ମାଙ୍ଗୋଜୁସ୍ ମଗାଇଲେ। ଆଉ କିଏ ଆପେଲ୍ ଜୁସ୍ ମଧ୍ୟ ମଗାଇଥିଲେ। ଜୁସ୍ ସାଙ୍ଗକୁ କିସମ କିସମର ସ୍ନାକ୍ସ। ସବୁ ଗୋଟାଏ ରକମର ଦେଖାଯାଉଥିଲା। ମୁଁ ଏବଂ ଆଉ କେତେଜଣ ସେଥିରୁ କେତୋଟି ଟିକିଆ ନେଇ ଖାଇଲୁ। ଖୁବ୍ ସୁସ୍ୱାଦୁ ଥିଲା। ମୁଁ ଟିକିଆ ଖାଉଥିବାର ଦେଖି ମୋର ରୁମ୍‌ମେଟ୍ ଘନଶ୍ୟାମଭାଇ ଭାଓସାର କହିଲେ, "କ୍ୟା ଦାସ୍ ସାହେବ! ଆପ ସରାବ୍ କେ ନଶେ ମେ ଆଜ୍ ମଛଲି ଖା ଜାତେ ହେଁ!" ମୁଁ ତାଙ୍କ ମନ୍ତବ୍ୟକୁ ପ୍ରଥମେ ହାଲୁକା ଭାବରେ ନେଇଥିଲି। ମାତ୍ର ତାଙ୍କ ସହିତ ହାଇଦ୍ରାବାଦର ଅଞ୍ଜନେୟଲୁ ଯେତେବେଳେ ଯୋଗଦେଇ ସେଇ ଏକା କଥା କହିଲେ, ମୁଁ ସଚେତନ ହୋଇଗଲି। ମୁଁ କ'ଣ ତେବେ ସତରେ ମାଛ ଖାଉଛି? ଟିକିଆ ଦେଉଥିବା ୱେଟରକୁ ସନ୍ଦେହ ଦୂର କରିବାକୁ ଯାଇ ପଚାରିଲି, ଯେ ଟିକିଆ କିସ୍‌ସେ ବନେ ହୁଏ ହୈ? ସେ କାଳ ବିଳମ୍ବ ନକରି କହିଲା, "କେୟାଁ ସାହେବ୍, ଯେ କ୍ୟା ଅଚ୍ଛା ନହିଁ ଲଗ୍‌ତା? ହମାରେ ସାହେବ ଅପଲୋଗୋଁ କେ ଲିଏ ଯେ ମଛଲି ପହଲେ ସେ ମଙ୍ଗାକେ ରଖେ ଥେ। କ୍ୟୁଁକି ଯେ ମଛଲି ପ୍ୟାରିସ୍ ମେଁ ନହିଁ ମିଲ୍‌ତି।" ୱେଟର୍ କଥା ଶୁଣି ମୋ ପାଦତଳୁ ମାଟି ଖସିଗଲାଭଳି ଲାଗିଲା। ମୁଁ କିପରି ଏତେବଡ଼ ଭୁଲ୍ କଲି! ମାଛ ଟିକିଆ ହୋଇଥିଲେ ତ ବାସନା ହୋଇଥାନ୍ତା। କାହିଁ, ଟିକିଆରେ ତ ଟିକିଏହେଲେ ମାଛ ବାସନା ନଥିଲା? ମତେ କେମିତି ବାନ୍ତି ବାନ୍ତି ଲାଗିଲା। ମୁଁ କାହାକୁ କିଛି ନକହି ଟଏଲଟ୍‌କୁ ଯାଇ ବାନ୍ତି କଲି। ବାନ୍ତି ପରେ ମୁଣ୍ଡ ବୁଲାଇଲାଭଳି ବୋଧ କଲି। ଇଚ୍ଛା ହେଉଥିଲା, ଟିକିଏ ଶୋଇପଡ଼ିଲେ ହୁଏତ ଭଲ ଲାଗନ୍ତା। କିନ୍ତୁ ସେଠାରେ ଶୋଇବାର ସୁବିଧା କୋଉଠୁ ଆସିବ? ଅବଶେଷରେ ସେଠାରେ କେବଳ ନିରୋଳାରେ ଯାଇ ବସିରହିଲି।

କକ୍‌ଟେଲପାର୍ଟି ଶେଷ ହେଲାବେଳକୁ ସମୟ ରାତି ନଅଟା। ଭାବିଲି, ଯାହାହେଉ, ହୋଟେଲ ଫେରିଯାଇ ଆରାମ କରିହେବ। କିନ୍ତୁ ଯେତେବେଳେ ବିକ୍ରମ ରାଓ କହିଲେ, "ବର୍ତ୍ତମାନ ଇଭ୍‌ନିଂ-ଇନ୍-ପ୍ୟାରିସ୍ ଦେଖିବାକୁ ଯିବାକୁ ହେବ", ସେଥିରେ ମୋର ସପନ ଭାଙ୍ଗିଗଲା। ସେ କହିଚାଲିଲେ, ଜୀବନରେ ଖାଇପିଇ ଶୋଇବାକୁ ବହୁତ ସମୟ ମିଳିବ। ମାତ୍ର ଆଉଥରେ କ'ଣ ସନ୍ଧ୍ୟାରେ ପ୍ୟାରିସ୍‌ର ସୌନ୍ଦର୍ଯ୍ୟକୁ ଉପଭୋଗ କରିବାର ସୁଯୋଗ ମିଳିବ? ତା'ଛଡ଼ା ଆମେ ପ୍ରତିମୁହୂର୍ତ୍ତ ପାଇଁ ଟଙ୍କା ଖର୍ଚ୍ଚ କରୁଛେ, ତା'ର ସମ୍ପୂର୍ଣ୍ଣ ଫାଇଦା ଉଠାଇବା ଦରକାର।

ରାଓ ସାହେବଙ୍କ କଥା ଶୁଣି ମୋ ମନରେ ଦ୍ୱନ୍ଦ୍ୱ ଉପୁଜିଲା। ବିଚାରିଲି ଚୁପ୍‌ଚାପ୍ ହୋଟେଲ ଯାଇ ଶୋଇପଡ଼ିବି ନା ଅନ୍ୟ ବନ୍ଧୁମାନଙ୍କ ସହିତ ପ୍ୟାରିସ୍ ସହରରେ ବୁଲି ଆନନ୍ଦ ଅନୁଭବ କରିବି? ମୁଁ ଜାଣିନାହିଁ, ଘନଶ୍ୟାମଭାଇ ଯାଇ କେତେବେଳେ ବିକ୍ରମ ରାଓଙ୍କୁ ମୁଁ ମାଛ ଖଇଥିବା କଥା କହି ଦେଇଥିଲେ। ଯେତେବେଳେ ରାଓ ସାହେବ ଆସି ମତେ ପଚାରିଲେ, "ବସନ୍ତ, ତୁମ୍‌କୋ କ୍ୟା ହୋ ଗୟା? ଆଜ୍ ବଡ଼ା ଖାମୋସ୍ ଲଗତେ ହୋ? ଅନ୍‌ଜାନେ ମେ ଯୋ ଗଲ୍‌ତି ହୋ ଜାତା ହୈ, ଉସକୋ ଗଲତି ସମଝା ନହିଁ ଜାତା। ସିର୍ଫ ତୁମ୍ ନହିଁ, ଔର୍ କିତନା ଭେଜ୍ ଆଦମୀ ତୁହ୍ମାରେ ତର୍‌ହ ଆଜ୍ ୟହାଁ ମଛଲି କା ଟିକିଆ ଖା ଚୁକେ ହେଁ। ଉସ୍ ବାତ୍ ଭୁଲ୍ ଜାଓ, ଔର୍ ହମ୍‌ଲୋଗୋଁ କେ ସାଥ୍ ଚଲୋ। ବାହର୍ ମେ ଘୁମ୍‌ନେ ସେ ଥୋଡ଼ା ଅଚ୍ଛା ଲଗେଗା।"

ବିକ୍ରମବାବୁଙ୍କ କଥା ଶୁଣି ମନ କିଛି ପରିମାଣରେ ହାଲୁକା ହୋଇଗଲା ଓ ମୁଁ ଆଉ କିଛି ନଭାବି ଅନ୍ୟ ବନ୍ଧୁମାନଙ୍କ ସହିତ ଯାଇ କୋଚ୍‌ରେ ବସିଲି। ଆମ କୋଚ୍‌ର ଡ୍ରାଇଭର୍ ଥିଲେ ପ୍ୟାରିସ୍‌ର ଅଧିବାସୀ ଓ ବିନା ପାରିଶ୍ରମିକରେ ସେ ସନ୍ଧ୍ୟାରେ ପ୍ୟାରିସ୍ ସହର ବୁଲାଇବା ପାଇଁ ଆମକୁ ଆଗରୁ ପ୍ରସ୍ତାବ ଦେଇଥିଲେ। ଆମେ ସେଥିରେ ରାଜି ହେବାରୁ ସେ ପରମ ତୃପ୍ତି ଲାଭ କରିଥିଲାଭଳି ମନେହେଲା। ଭାଷାରେ ପ୍ରକାଶ ନକରିଥିଲେ ମଧ୍ୟ ବିଦେଶ ରାଷ୍ଟ୍ରର ପର୍ଯ୍ୟଟକମାନଙ୍କୁ ନିଜ ସହରର ସୌନ୍ଦର୍ଯ୍ୟ ବୁଲାଇ ଦେଖାଇବା ପାଇଁ ସେ ସକ୍ଷମ ହୋଇଥିବାରୁ ତାଙ୍କର ମନରେ ସୃଷ୍ଟି ହୋଇଥିବା ପରମ ସନ୍ତୋଷ ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇପଡୁଥିଲା।

ହାଇକମିଶନରଙ୍କ ବାସଭବନ ହତାରୁ ଆମେ ସିଧା ଚାଲିଲୁ ମୁଖ୍ୟବଜାର ଆଡ଼େ। ସହରଭିତରେ ଆଲୋକସଜ୍ଜା ଦେଖି ଆମ ଆଖି ଏକପ୍ରକାର ଟେରା ହୋଇଗଲା। ରଙ୍ଗବେରଙ୍ଗର ଟ୍ୟୁବ୍ ଲାଇଟ୍‌ରେ ସଜ୍ଜାହୋଇଥିଲା ସାଇନ୍‌ବୋର୍ଡସବୁ। ତା'ଛଡ଼ା, ସହର ଭିତରେ ଲାଗିଥିବା ବଡ଼ ବଡ଼ ହୋର୍ଡିଂ ମଧ୍ୟ ବିଭିନ୍ନପ୍ରକାର ଲାଇଟ୍‌ରେ ଭରପୂର ଥିଲା। ସନ୍ଧ୍ୟାରେ ପ୍ୟାରିସ୍ ସହରର ସେ ଦୃଶ୍ୟ ନଦେଖିଲେ ବିଶ୍ୱାସ କରିହେବ ନାହିଁ। ସହର ଭିତରେ ଆମ କୋଚ୍ ଗଲାବେଳେ ଡ୍ରାଇଭର ବିଭିନ୍ନ ସ୍ଥାନ ବିଷୟରେ ପ୍ରାଞ୍ଜଳ ଭାବରେ

ଇଂରାଜୀରେ ବର୍ଣ୍ଣନା କରି ଚାଲିଥିଲେ। ପ୍ରଥମେ ମୋ ମନରେ ଭ୍ରମ ସୃଷ୍ଟି ହୋଇଥିଲା; କାରଣ ଦୀର୍ଘଦିନ ଧରି ଯେଉଁ ଡ୍ରାଇଭର୍ କେବଳ କାମଚଳା ଇଂରାଜୀରେ ଆମ ସହିତ କଥାବାର୍ତ୍ତା ହେଉଥିଲା, ସେ ହଠାତ୍ ଅନର୍ଗଳ ଇଂରାଜୀ କିପରି କହୁଛି ? ପରେ ବୁଝିଲି, ବାହାର ଦେଶର ପର୍ଯ୍ୟଟକମାନଙ୍କ ପାଇଁ ବିଭିନ୍ନ ସ୍ଥାନର ବର୍ଣ୍ଣନା ସମ୍ପର୍କରେ ସବୁକଥା ଇଂରାଜୀ ଭାଷାରେ ଯେଉଁ ଟେପ୍ କରାଯାଇଛି ତାକୁହିଁ ଡ୍ରାଇଭର୍ ବଜାଇ ଶୁଣାଉଥିଲା। ବଜାରରେ ବୁଲିବା ସମୟରେ କେତେବେଳେ ରାତି ବାରଟା ହୋଇଯାଇଥିଲା ଆମେ ଜାଣିପାରି ନ ଥିଲୁ; କାରଣ ଆଲୋକସଜ୍ଜାରେ ଆମେ ଏକପ୍ରକାର ବିମୋହିତ ହୋଇଯାଇଥିଲୁ।

ସନ୍ଧ୍ୟାରେ କକ୍‌ଟେଲ୍ ସାଙ୍ଗରେ ସ୍ନାକ୍ସ ଆକାରରେ ଯାହା ଖିଆଯାଇଥିଲା ସେସବୁ ସେତେବେଳକୁ କୁଆଡ଼େ ହଜମ ହୋଇ ପାଣି ହୋଇଯାଇଥିଲା। ସହର ବୁଲା ନିଶାରେ ଭୋକ ଜଣା ଯାଉନଥିଲା। ମାତ୍ର ବୁଲାବୁଲି ସରିଆସିଲାରୁ ଭୋକର ପ୍ରକୋପ ଅନୁଭୂତ ହେଲା। ଆମ ଭିତରେ ଚର୍ଚ୍ଚା ପଡ଼ିଲା, କ'ଣ କରାଯିବ ? ବିଭିନ୍ନ ବନ୍ଧୁ ଭିନ୍ନ ଭିନ୍ନ ମତ ଦେଲେ। କିଏ କହିଲେ, ରାତି ବାରଟା ଟପିଗଲାଣି, ହୋଟେଲକୁ ଫେରିଯାଇ ଚୁପ୍‌ଚାପ୍ କେଇଘଣ୍ଟା ଶୋଇପଡ଼ିଲେ ସକାଳ ହୋଇଯିବ। ତା'ପରେ ଦେଖିବା। ଅନ୍ୟ ବନ୍ଧୁମାନେ କିନ୍ତୁ ସେପରି ପ୍ରସ୍ତାବରେ ଏକମତ ହୋଇନଥିଲେ। ସେମାନଙ୍କର ଯୁକ୍ତି ଥିଲା, ବିଦେଶରାଷ୍ଟ୍ରକୁ ବୁଲିବାକୁ ଆସିଛେ, ଉପାସରେ ଶୋଇବା, ସେକଥା ହୋଇପାରିବ ନାହିଁ। ଶେଷରେ କଥା ହେଲା, କୋଚ୍ ଡ୍ରାଇଭର୍ ସହିତ ପରାମର୍ଶ କରାଯିବ। ଯଦି ସିଏ ଏତେରାତିରେ କିଛି ଖାଇବାର ବନ୍ଦୋବସ୍ତ କରିଦେଇ ପାରିବ ତେବେ ଭଲକଥା। ନଚେତ୍ ଭାଗ୍ୟକୁ ଆଦରି ବିଛଣା ଧରିବା।

କୋଚ୍ ଡ୍ରାଇଭର୍ ଆମ ହାବଭାବରୁ କ'ଣ ଗୋଟାଏ ଅସୁବିଧା ହୋଇଛି ବୋଲି ବୁଝିପାରିଲେ। ଭଙ୍ଗା ଇଂରାଜୀରେ ଯାହା କହିଲେ ତା'ର ଅର୍ଥ ହେଲା, କିଛି ଚିନ୍ତା କରନ୍ତୁ ନାହିଁ। ମୁଁ ଫରାସୀ ଯୁବକ। ମୁଁ ଥାଉ ଥାଉ ଯଦି ଆପଣମାନେ ରାତିରେ ଉପବାସ ରହିବେ, ତେବେ ଆମ ଦେଶ ସମ୍ପର୍କରେ ଆପଣମାନଙ୍କର ଧାରଣା କ'ଣ ହେବ ? ଆପଣମାନେ କୋଚ୍‌ରେ ଆରାମରେ ବସନ୍ତୁ, ମୁଁ ଆପଣମାନଙ୍କୁ ରାତ୍ରିଭୋଜନ କରାଇ ହୋଟେଲରେ ଛାଡ଼ିବି ଓ ତା'ପରେ ଘରକୁ ଯିବି। କୋଚ୍ ଡ୍ରାଇଭର୍ କଥାରେ ଆମେ ବିମୋହିତ ହୋଇଗଲୁ। ସାମାନ୍ୟ ଜଣେ ଡ୍ରାଇଭର, କେତେ ସ୍ୱାଭିମାନୀ ! ଆମେ ଉପାସ ରହିଗଲେ ସେ ଦେଶ ସମ୍ପର୍କରେ ଆମର ଖରାପ ଧାରଣା ହେବବୋଲି ସେ କେତେ ସଚେତନ ! ଏଇ ସମୟରେ ମନେପଡ଼ିଗଲା ଆମ ରାଜ୍ୟର ଡ୍ରାଇଭର୍‌ମାନଙ୍କର ଆଚରଣ ସମ୍ପର୍କରେ। ଷ୍ଟିଅରିଂ ହୁଇଲ୍‌ରେ ହାତ ପଡ଼ିଗଲେ ସେମାନଙ୍କୁ ତ୍ରିଭୁବନ ଦିଶେ। ମଦ୍ୟପାନ କରି ଗାଡ଼ି ଚଳାଇବାକୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏକ ଗୌରବର ବିଷୟ ବୋଲି

ବିଚାରନ୍ତି। ସାଧାରଣ ପାସେଞ୍ଜରଙ୍କୁ ଖରାପ ବ୍ୟବହାର ନକଲେ ଯଦେଯେପରି ସେମାନଙ୍କର ଭାତ ହଜମ ହୁଏନି।

ଦଶମିନିଟ୍ ପରେ ଆମ କୋଚ୍ ଯାଇ ଗୋଟିଏ ରେଷ୍ଟୁରାଣ୍ଟ ସାମନାରେ ଛିଡ଼ାହେଲା। ରାତି ସାଢ଼େବାରଟାବେଳେ ମଧ୍ୟ ସେଠାରେ ଭିଡ଼ ଲାଗିଥିଲା। ଡ୍ରାଇଭର ଯାଇ ହୋଟେଲ ମାଲିକଙ୍କ ସହିତ କ'ଣ ସବୁ କଥାବାର୍ତ୍ତା ହେଲେ। ତା'ପରେ ରେଷ୍ଟୁରାଣ୍ଟର ଆମେ ମୁଖ୍ୟ ଆକର୍ଷଣ ହୋଇଗଲୁ। ରେଷ୍ଟୁରାଣ୍ଟର କର୍ମଚାରୀମାନେ ହଠାତ୍ କର୍ମଚଞ୍ଚଳ ହୋଇଉଠିଲେ। ଅଳ୍ପସମୟ ମଧ୍ୟରେ ରେଷ୍ଟୁରାଣ୍ଟରେ ଜାଗା ଠିକ୍ ହୋଇଗଲା। ଆମେ ବସିବାମାତ୍ରେ ୱେଟର୍ ଆସି ଡିନର୍ ପାଇଁ ଅର୍ଡର୍ ନେଇଗଲା। ଆମେ ଭାବିଥିଲୁ ପ୍ୟାରିସ୍‌ରେ ବୋଧେ ଆମ ରୁଚିର କିଛି ଖାଦ୍ୟ ମିଳିବ ନାହିଁ। ମାତ୍ର ଅଳ୍ପ ସମୟ ମଧ୍ୟରେ ଆମର ସେ ଧାରଣା ଦୂର ହୋଇଗଲା। ଭାରତୀୟ ଖାଦ୍ୟ ନହେଲେ ବି ସେ ରାତିର ଖାଦ୍ୟ ଅତ୍ୟନ୍ତ ସୁସ୍ୱାଦୁ ଓ ତୃପ୍ତିକର ହୋଇଥିଲା।

## ଭାସମାନ କ୍ୟାଣ୍ଟିନ୍‌ରେ ଜଳଯୋଗ

ହୋଟେଲକୁ ଫେରି ବିଛଣା ଧରିଲାବେଳକୁ ରାତି ପ୍ରାୟ ଦୁଇଟା। ସେଥିପାଇଁ ପରଦିନ ସକାଳୁ ଉଠିଲାବେଳକୁ ଆଠଟା ବାଜିଯାଇଥିଲା। ମୁଁ ମନେମନେ ଲଜ୍ଜିତ ହେଲି। ବିଦେଶ ରାଷ୍ଟ୍ରରେ ସମୟାନୁବର୍ତ୍ତିତା ସବୁଠାରୁ ବଡ଼କଥା। ସମୟ ସହିତ ତାଳ ନ ଦେଲେ ପଛେଇଯିବାକୁ ହେବ। ସମୟ କାହାକୁ ଅପେକ୍ଷା ନ କରି ତା' ବାଟରେ ଚାଲିଯିବ। ସେଥିପାଇଁ କାହାକୁ କିଛି ନକହି ଶୀଘ୍ର ବାଥ୍‌ରୁମ୍‌ରେ ପଶି ନିତ୍ୟକର୍ମ ସାରିଦେଲି। ରୁମ୍ ବାହାରକୁ ଆସି ଦେଖିଲାବେଳକୁ ଅନ୍ୟ ବନ୍ଧୁମାନେ ପ୍ରସ୍ତୁତ ହୋଇ ଆସୁଥିଲେ। ମନରେ ସାନ୍ତ୍ୱନା ଆସିଲା-ଯାହାହେଉ, କେବଳ ମୋ'ର ଡେରି ହୋଇନାହିଁ।

ଆମେ ସବୁ ବାହାରିବା ପୂର୍ବରୁ କୋଚ୍ ଡ୍ରାଇଭର୍ ଆସି ଗୋଟିଏ ପ୍ରସ୍ତାବ ଦେଇଥିଲେ। ହୋଟେଲ ରୁମ୍‌ରେ ବ୍ରେକ୍‌ଫାଷ୍ଟ୍ ନଖାଇ ସିନ୍ ନଈ ଭିତରେ ଭାସମାନ କ୍ୟାଣ୍ଟିନ୍‌ରେ ଖାଇଲେ ଅଧିକ ଉପଭୋଗ୍ୟ ହେବ ବୋଲି ସେ ଦେଇଥିବା ପରାମର୍ଶକୁ ଆମ ବନ୍ଧୁମାନେ କୌଣସି ତର୍କ ନକରି ଗ୍ରହଣ କରିନେଇଥିଲେ। ଆମେ ଆଉ ଡେରି ନକରି ଶୀଘ୍ର ବାହାରିପଡ଼ିଲୁ। ଡ୍ରାଇଭର୍ ପ୍ରସ୍ତାବ ପ୍ରଥମେ ମତେ କେମିତି ଅଡୁଆ ଅଡୁଆ ଲାଗୁଥିଲା। କ୍ୟାଣ୍ଟିନ୍ ପୁଣି ଭାସମାନ କ'ଣ? କିନ୍ତୁ ମନକଥା କାହା ଆଗରେ ପ୍ରକାଶ ନକରି ଚୁପ୍‌ଚାପ୍ ଯାଇ କୋଚ୍‌ରେ ବସିଲି।

କିଛି ସମୟ ଭିତରେ ଆମ କୋଚ୍ ଯାଇ ସିନ୍ ନଦୀରେ ଗୋଟିଏ ଘାଟ ନିକଟରେ ଲାଗିଲା। ଘାଟରେ ଅନେକ ସୁଦୃଶ୍ୟ ନୌକା। ନା, ନୌକା କହିଲେ ବୋଧେ ଠିକ୍ ହେବ ନାହିଁ; କାରଣ ନୌକା କହିଲେ ଆମେ ମହାନଦୀରେ ପଥର କିମ୍ବା କାଠବୋଝେଇ ହୋଇ ଯାଉଥିବା ଡଙ୍ଗାକୁ ବୁଝୁ। ସେଥିରେ ଚାରିଜଣ ନାଉରିଆ ଝାଳନାଳ ହୋଇ କାତମାରି

ଢଙ୍ଗଟିକୁ ବୋହୁଥାନ୍ତି। ଶ୍ରମ ଦୃଷ୍ଟିରୁ ଦେଖିଲେ ଭାରବାହୀ ପଶୁ ଓ ସେମାନଙ୍କ ମଧ୍ୟରେ କିଛି ଫରକ ନଥାଏ। ପେଟ ପୋଷିବା ପାଇଁ ଖରା-ଶୀତ-ବର୍ଷାକୁ ଖାତିର୍ ନକରି ସେମାନେ କାମ କରି ଚାଲିଥାନ୍ତି। କିନ୍ତୁ ସିନ୍ ନଦୀ ପାଖରେ ଯେଉଁ ନୌକାସବୁ ଲାଗିଥିଲା ସେସବୁ କେବଳ ସୁଦୃଶ୍ୟ ନଥିଲା, ଅତ୍ୟନ୍ତ ମନୋରମ ମଧ୍ୟ ଥିଲା। ନୌକାର ଲମ୍ବ ପଚାଶ ଫୁଟ ଓ ଚଉଡ଼ା ପ୍ରାୟ ତିରିଶ ଫୁଟ। ଏକାଥରରେ ଅନ୍ୟୂନ ତିରିଶଜଣଙ୍କ ବସିବା ପାଇଁ ଜାଗା। ଫାଇବର ଗ୍ଲାସ୍‌ରେ ତିଆରି ସେସବୁ ନୌକାର ବାଡ଼ କାଚରେ ତିଆରି। ଭିତରେ ନରମ ଗଦିଥିବା ଢଙ୍ଗକୁ ଆରାମଦାୟକ ଚଉକି। ଭିତରଟା ପୁଣି ଏୟାରକଣ୍ଡିସନ୍। ଗରମ ଦିନରେ ଥଣ୍ଡା ଓ ଶୀତ ଦିନେ ଗରମର ବ୍ୟବସ୍ଥା। ତା'ଛଡ଼ା ନୌକାର ବିଶେଷତ୍ୱ ଥିଲା ସେଥିରେ ଥିବା କ୍ୟାଣ୍ଟିନ୍; ଯେଉଁଠି ପସନ୍ଦମୁତାବକ ଖାଦ୍ୟ ମିଳୁଥିଲା। କ୍ୟାଣ୍ଟିନ୍‌ରେ ସୁନ୍ଦରୀ ଷୋଡ଼ଶୀ ଯୁବତୀମାନେ ପରିଚାରିକା ଭାବରେ କାର୍ଯ୍ୟ କରୁଥିଲେ। କ୍ୟାଣ୍ଟିନ୍‌ରେ ଥଣ୍ଡା ପାନୀୟଠାରୁ ଆରମ୍ଭ କରି ଉତ୍କୃଷ୍ଟ ଧରଣର ସୋମରସ ଉପଲବ୍ଧ ହେଉଥିଲା।

ଆମେ ସଂଖ୍ୟାରେ ପଚିଶିଜଣ ଥିବାରୁ ଆଉ କାହାକୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ। ଆମ କୋଚ୍ ଡ୍ରାଇଭର ଯାଇ ଗୋଟିଏ ଗ୍ରୁପ୍ ଟିକେଟ୍ କାଟି ଆଣିଲା। ତା'ପରେ ଆମ ନୌକା ଚାଲିବାକୁ ଆରମ୍ଭକଲା।

ସିନ୍ ନଦୀରେ ସାନବଡ଼ ହୋଇ ଅନେକ ନୌକା ଚାଲୁଥିଲା, ମାତ୍ର ସବୁ ଶୃଙ୍ଖଳିତ। ଆମ ସାଙ୍ଗରେ ଥିବା କୋଚ୍ ଡ୍ରାଇଭର୍ ବୋଧେ ଆମ ଜଳଖିଆ ଖାଇବା ସମ୍ପର୍କରେ ନୌକାରେ ଥିବା ଅଧିକାରୀଙ୍କୁ ତା ମାତୃଭାଷାରେ କେତେବେଳେ କହିଦେଇଥିଲେ। ସେଥିପାଇଁ ସେ ପଦାଧିକାରୀ ଆମ ପାଖକୁ ଆସି ବୁଝିଲାଭଳିଆ ଇଂରାଜୀରେ ଆମକୁ ସ୍ୱାଗତ କରିବା ସହିତ କ'ଣ ଦେଇ ସେ ଆମ୍ଭମାନଙ୍କୁ ସନ୍ତୁଷ୍ଟ କରିପାରିବେ ବୋଲି ଚାହିଁଥିଲେ। ଏଇ ସୁଯୋଗରେ ଆମଭିତରୁ ଜଣେ କିଏ "କିଛି ଭାରତୀୟ ଖାଦ୍ୟ ମିଳିପାରିବ କି" ବୋଲି ପଚାରିଲେ। ମାତ୍ର ଏତେ କମ୍ ସମୟ ଭିତରେ ହଠାତ୍ ଭାରତୀୟ ଖାଦ୍ୟ ଦେବା ସମ୍ଭବ ନୁହେଁ ଏବଂ ତା' ବଦଳରେ କିଛି କଣ୍ଟିନେଣ୍ଟାଲ୍ ବ୍ରେକ୍‌ଫାଷ୍ଟ ବରାଦ ଦେଲେ ଯୋଗାଇ ଦେଇହେବ ବୋଲି ସେ ନମ୍ରତାର ସହିତ ଜଣାଇଲେ। ଆମେ ସ୍ଥିର କଲୁ ଯେହେତୁ ଅଧିକ ଜାଗା ବୁଲିବାର କାର୍ଯ୍ୟକ୍ରମ ଥିଲା, ସେଥିପାଇଁ ବିଦେଶୀ କାଇଦାରେ ବ୍ରେକ୍‌ଫାଷ୍ଟ୍ ଆଉ ଲଞ୍ଚକୁ ମିଶାଇ 'ବ୍ରୋଞ୍ଚ୍' କରିଦେବୁ। ଅର୍ଥାତ୍, ଜଳଖିଆ ଆକାରରେ ଯାହା ଖାଇବୁ ସେଥିରେ ଖରାବେଳେ ଆଉ ଖାଇବାକୁ ପଡ଼ିବ ନାହିଁ। ପାଶ୍ଚାତ୍ୟ ରାଷ୍ଟ୍ରରେ ସେଇ ଆଦବ କାଇଦା। ଲୋକେ ସକାଳୁ ଭଲ ରକମର ଜଳଖିଆ ଖାଇ ଯାଆନ୍ତି ଏବଂ ଖରାବେଳେ କିଛି ସ୍ନାକ୍ସରେ ସେମାନଙ୍କ କାମ ଚଳିଯାଏ। ଆମଭଳି 'ଠା'ର ଆବଶ୍ୟକ ପଡ଼େନାହିଁ। ସେଥିପାଇଁ ସେମାନେ ଅଧିକ ପରିଶ୍ରମୀ। କିନ୍ତୁ ଆମର ଖରାବେଳେ ଭାତ, ଡାଲି, ତରକାରି ଓ ଭଜା ଇତ୍ୟାଦି ଖାଇ ଟିକିଏ ଗଡ଼ପଡ଼ ନହେଲେ ନଚଳେ। ବ୍ରୋଞ୍ଚ୍

ପ୍ରସ୍ତାବ ପ୍ରତି କେତେକଙ୍କର ସମର୍ଥନ ନଥିଲେ ମଧ୍ୟ ପରିସ୍ଥିତି ଚାପରେ ସେମାନେ ରାଜି ହୋଇଥିଲେ।

ନୌକା ଯେଉଁ ଯେଉଁ ବାଟ ଦେଇ ଯାଉଥିଲା ସେଠାକାର ସମସ୍ତ ତଥ୍ୟ ଉଭୟ ଫରାସୀ ଓ ଇଂରାଜୀ ଭାଷାରେ ଆମ୍ଭମାନଙ୍କୁ ବୁଝାଇଦିଆଯାଉଥିଲା। ସ୍ଥାନଗୁଡ଼ିକର ଐତିହ୍ୟ, ପରମ୍ପରା, ବିଶେଷତ୍ୱ ଏବଂ ପର୍ଯ୍ୟଟନ ଦୃଷ୍ଟିରୁ ସେସବୁର ଗୁରୁତ୍ୱ ବିଷୟ ଅତି ପ୍ରାଞ୍ଜଳଭାବରେ ବର୍ଣ୍ଣନା କରାଯାଉଥିଲା। ମଝିରେ ମଝିରେ ମନଖୁସି ପାଇଁ ଇଂରାଜୀ ସଙ୍ଗୀତର ମୂର୍ଚ୍ଛନା ମଧ୍ୟ ମାଇକ୍ରୋଫୋନ୍‌ରେ ଆସୁଥିଲା। ଆମେ ସେଥିରେ ମଜ୍ଜିଯାଇଥିଲାବେଳେ ପରିଚାରିକା ଆଣି ବ୍ରେକ୍‌ଫାଷ୍ଟ୍ ସବୁ ଟେବୁଲ୍ ମଝିରେ ରଖିଦେଇ ଯାଇଥିଲେ। ବ୍ରେକ୍‌ଫାଷ୍ଟରେ ଥିଲା ବ୍ରେଡ୍, ବଟର, ଓମ୍‌ଲେଟ୍, ବଏଲ୍‌ଡ୍‌ଏଗ୍, କର୍ଣ୍ଣଫ୍ଲେକ୍ସ, ମିଲ୍କ, ଚିଜ୍ ଟୋଷ୍ଟ୍ ଏବଂ ବିଭିନ୍ନ ରକମର ଫଳ। ତା'ସାଙ୍ଗରେ  ଆପେଲ୍, ଅରେଞ୍ଜ ଓ ଗ୍ରେପ୍ ଜୁସ୍। ପାଖରେ ପ୍ଲେଟ୍ ଓ ଚାମଚ୍ ଥୁଆହୋଇଥିଲା। ଯାହାର ଯାହା ଇଚ୍ଛା ହେଲା ସେସବୁ ନେଇ ଖାଇଲେ। ଯେଉଁମାନଙ୍କର ଚା' ଅଭ୍ୟାସ, ସେମାନେ କଣ୍ଟେନରରୁ ନେଇ ଆନନ୍ଦରେ ପାନ କଲେ। ଯା ଭିତରେ ଆମର ପ୍ରାୟ ତିନିଘଣ୍ଟା ସମୟ ବିତିଯାଇଥିଲା। କିନ୍ତୁ ଥଟ୍ଟାମଜା କଥାବାର୍ତ୍ତାରେ ସମୟ ଜଣା ପଡ଼ିନଥିଲା। ନୌକା ମଧ୍ୟ ଫେରିବାର ସମୟ ହୋଇଯାଇଥିଲା। ତେଣୁ ଆଉ ଅଧିକ ଅଗ୍ରସର ନହେବା ପାଇଁ ସ୍ଥିର କରି ଆମେ ପୂର୍ବ ସ୍ଥାନକୁ ଫେରିଲୁ।

## ଲୁଭ୍ ମିଉଜିଅମ୍‌ରେ କେଇଘଣ୍ଟା

ସେତେବେଳକୁ ଦିନ ବାରଟା। ଆମ ହାତରେ ଯଥେଷ୍ଟ ସମୟ ଥିଲା। ଏହାପରେ କୁଆଡ଼େ ଯିବାକୁ ହେବ ସେ ସମ୍ପର୍କରେ ଆଲୋଚନା ଚାଲିଲା। ଆମର କୌଣସି କାର୍ଯ୍ୟକ୍ରମ ସ୍ଥିର ହେବା ପୂର୍ବରୁ ବିଚାରବିମର୍ଶ ଚାଲି ଏକାଧିକ ମତ ପ୍ରକାଶ ପାଉଥିଲା ଏବଂ ଶେଷରେ ସମସ୍ତେ ଗୋଟିଏ ପ୍ରସ୍ତାବରେ ଏକମତ ହେଉଥିଲୁ। କିଛି ବନ୍ଧୁ କହିଲେ ପୃଥିବୀପ୍ରସିଦ୍ଧ ଆଇଫେଲ୍ ଟାୱାର ଦେଖିଯିବା ପାଇଁ। ଆଉ କେହି କେହି ମତ ଦେଲେ ଲୁଭ ଆର୍ଟ ମିଉଜିଅମ୍ ଦେଖିବା ପାଇଁ। ଆଲୋଚନାରେ ବିକ୍ରମ ରାଓ ହସ୍ତକ୍ଷେପ କରି କହିଲେ ଆଗ ଆର୍ଟ ଗ୍ୟାଲେରି ଯିବା ଏବଂ ସନ୍ଧ୍ୟାରେ ଆଇଫେଲ୍ ଟାୱାର ଉପରୁ ପ୍ୟାରିସ୍ ସହରର ଦୃଶ୍ୟକୁ ଉପଭୋଗ କରିବା। ସମସ୍ତେ ସେଥିରେ ଏକମତ ହେଲେ। ତ'ପରେ ଆମେ ନୌକାରୁ ଓହ୍ଲାଇ ସେଠାରେ ଅପେକ୍ଷା କରିଥିବା କୋଚ୍‌ରେ ଯାଇ ବସିଲୁ।

କିଛି ସମୟ ମଧ୍ୟରେ ଆମେ ଯାଇ ଲୁଭ୍ ମିଉଜିଅମ୍ ସାମନାରେ ପହଞ୍ଚିଲୁ। ଆରେ ବାପ୍‌ରେ ବାପ୍! କି ବିରାଟ କୋଠା! ଭିତରକୁ ଯିବାପାଇଁ ଲୋକଙ୍କର ଲମ୍ବା ଧାଡ଼ି। ବିଭିନ୍ନ ଦେଶରୁ ଆସିଥିବା ପର୍ଯ୍ୟଟକମାନଙ୍କର ଭିଡ଼, ହେଲେ ହୋ-ହାଲ୍ଲା କିମ୍ବା ଘୋ-ଘା କିଛି ଶୁଣା ଯାଉନଥିଲା। ସବୁକଥା ଶୃଙ୍ଖଳିତ। ଆମେ କୋଚ୍‌ରୁ ଓହ୍ଲାଇ ପ୍ରଥମେ

ମିଉଜିଅମ୍ ଅଫିସ୍‌କୁ ଯାଇ ଆମର ପରିଚୟ ପ୍ରଦାନ କଲୁ। କେଜାଣି କାହିଁକି ମିଉଜିଅମ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ଆମପ୍ରତି ସଦୟ ହୋଇ ଆମକୁ ତାଙ୍କ କୋଠରିକୁ ନେଇଗଲେ। ସେଠାରେ ଚା'ରେ ଆପ୍ୟାୟିତ କଲେ। ଆମେ କିଛି କହିବା ପୂର୍ବରୁ ସେ ଲୁଭ୍ ମିଉଜିଅମ୍‌ର ଇତିବୃତ୍ତ ସମ୍ପର୍କରେ ବର୍ଣ୍ଣନା କରିଚାଲିଲେ। ତାଙ୍କ କଥାରୁ ଆମେ ଏତିକି ବୁଝିଲୁ ଯେ, ଫ୍ରାନ୍ସର ରାଜପରିବାରଙ୍କ ଦାନ ଫଳରେ କ୍ରମେ ଏହି ମିଉଜିଅମ୍ ସମୃଦ୍ଧ ହୋଇଥିଲା। ରାଜାମାନେ ବିଭିନ୍ନ ଦେଶ ଜୟ କରି ଯେଉଁସବୁ ପଦାର୍ଥ ସାଙ୍ଗରେ ନେଇଆସୁଥିଲେ, ସେସବୁକୁ ଏହି ମିଉଜିଅମ୍‌ରେ ରଖୁଥିଲେ।

ଚା'ପର୍ବ ପରେ ସେ ମହାଶୟ ଆମ୍ଭମାନଙ୍କୁ ଅନ୍ୟଏକ ପ୍ରବେଶଦ୍ୱାର ବାଟେ ମିଉଜିଅମ୍ ଭିତରକୁ ନେଇଗଲେ। ନହେଲେ ସେଦିନ ସେ ଲମ୍ବାଲାଇନ୍ ଟପିଯିବାପାଇଁ ଆମକୁ ଅନ୍ତତଃପକ୍ଷେ ଦୁଇଘଣ୍ଟା ସମୟ ଲାଗିଥାନ୍ତା।

ମିଉଜିଅମ୍ ଭିତରେ ପଶି ଆମ ଆଖି ଖୋସି ହୋଇଗଲା। ମୁଁ ଭାବିଲି ଏ ମିଉଜିଅମ୍ ବୁଲି ଦେଖିବାକୁ ବୋଧହୁଏ ମାସେଖଣ୍ଡେ ସମୟ ଲାଗିବ; କାରଣ ଗୋଟିଏ ହଲ୍‌ରେ ଯେତିକି ଦର୍ଶନୀୟ ବସ୍ତୁ ରହିଥିଲା, ତାକୁ ଦେଖିବାପାଇଁ ଅତିକମ୍‌ରେ ଘଣ୍ଟାଏ ସମୟ ଦରକାର। ବୋଧହୁଏ ସେଠାରେ ଶତାଧିକ ହଲ୍ ଥିଲା। ଆମ ହାତରେ ସୀମିତ ସମୟ ଥିବାରୁ ତିନିଘଣ୍ଟା ଭିତରେ ସବୁଆଡ଼େ ବୁଲିଆସିବା ପାଇଁ ଆମେ ସ୍ଥିର କରିଥିଲୁ।

ମିଉଜିଅମ୍‌ରେ ବୁଲିଲାବେଳେ ଆମର ରାଜଧାନୀ ଭୁବନେଶ୍ୱର ସହରରେ ଥିବା ମିଉଜିଅମ୍‌ର ଦୃଶ୍ୟ ମନେପଡ଼ିଗଲା। ଅଜାଣତରେ ଏକ ତୁଳନାତ୍ମକ ବିଚାର ମନକୁ ଆସିଗଲା। ଯାହା କୁହାଯାଏ, 'କାହିଁ ହାତୀଦାନ୍ତ କାହିଁ ବାଉଁଶକଣି ?' ଆମ ମିଉଜିଅମ୍‌ରେ ସବୁ ଥାଇ କିଛି ନଥିଲାଭଳି ମନେ ହୁଏ। ବିଭିନ୍ନ ପଥର ମୂର୍ତ୍ତି ଉପରେ ଧୂଳିର ଆବରଣ। କାଚ କାସ୍‌କେଟ୍ ସବୁ ମଇଳା ହୋଇ ଭିତରେ ଥିବା ପୋଥି କିମ୍ବା ବହି କିଛି ଦେଖିହୁଏନାହିଁ। ଯେଉଁମାନେ ସେଠାରେ ଡିଉଟିରେ ଥାଆନ୍ତି, ତାଙ୍କର କିପରି ଏକ ଅନାସକ୍ତ ଭାବ। ସେମାନେ ଚାହାନ୍ତି, ଯଦି କେହି ନଆସନ୍ତେ, ତେବେ ତାହା ସେମାନଙ୍କ ପାଇଁ ଅଧିକ ଉପଭୋଗ୍ୟ ହୁଅନ୍ତା। କିନ୍ତୁ ଲୁଭ୍ ମିଉଜିଅମ୍‌ର ସ୍ଥିତି ଥିଲା ସମ୍ପୂର୍ଣ୍ଣ ଭିନ୍ନ। ହଲ୍ ଭିତରଟା ବାତାନୁକୂଳ ଓ ପରିଷ୍କାର ପରିଚ୍ଛନ୍ନ। ସବୁ ହଲ୍‌ରେ ରହିଥିବା ବିଷୟବସ୍ତୁ ସମ୍ପର୍କରେ ବୁଝାଇବା ପାଇଁ ତାଲିମ୍‌ପ୍ରାପ୍ତ ଗାଇଡ୍। ଅନ୍ୟମାନଙ୍କୁ ନିଜ ଦେଶ ବିଷୟରେ ବୁଝାଇ ସତେଯେପରି ସେମାନେ ପରମ ତୃପ୍ତି ଅନୁଭବ କରୁଥିଲେ।

ଆମେ ଭାରତୀୟ ସାମ୍ବାଦିକ ପ୍ରତିନିଧି ଜାଣିବା ପରେ ସେଠାରେ ଥିବା କର୍ମଚାରୀମାନେ ଆମ୍ଭମାନଙ୍କ ପ୍ରତି ଅଧିକ ଧ୍ୟାନଦେଲେ। ଆମେ ନ ପଚାରୁଣୁ ସବୁ ବିଷୟ ବୁଝାଉଥିଲେ। ସେ ମିଉଜିଅମ୍‌ଟି ପ୍ୟାରିସ୍ ସହରରେ ଅବସ୍ଥିତ ଥିଲେ ହେଁ ବାସ୍ତବରେ ତାହା ଏକ କ୍ଷୁଦ୍ର ପୃଥିବୀ ବୋଲି ଆମର ମନେହେଲା। ପୃଥିବୀର ପ୍ରାୟ ଅଧିକାଂଶ ରାଷ୍ଟ୍ରରୁ ଦୁଷ୍ପ୍ରାପ୍ୟ ପଦାର୍ଥସବୁ ସଂଗୃହୀତ ହୋଇ ସେଠାରେ ରଖାଯାଇଥିଲା। ଆମ ସାଙ୍ଗରେ ଥିବା

ଗାଇଡ୍ ଅନ୍ୟାନ୍ୟ କକ୍ଷ ଶୀଘ୍ର ଦେଖି ଆର୍ଟ ଗ୍ୟାଲେରୀକୁ ଯିବାକୁ ପରାମର୍ଶ ଦେଲେ; କାରଣ ଆର୍ଟ ଗ୍ୟାଲେରୀ ହିଁ ଥିଲା ଲୁଭ୍ ମିଉଜିଅମ୍‌ର ମୁଖ୍ୟ ଆକର୍ଷଣ।

## ଆର୍ଟ ଗ୍ୟାଲେରୀରେ ଦୁର୍ଲ୍ଲଭ ଛବି ମୋନାଲିସା

ଆମେ ତରବରରେ ଦୁଇଟି କକ୍ଷରେ ଥିବା ଦର୍ଶନୀୟ ପଦାର୍ଥମାନ ଦେଖି ଆର୍ଟ ଗ୍ୟାଲେରୀରେ ପ୍ରବେଶ କଲୁ। ଆର୍ଟ ଗ୍ୟାଲେରୀ ପ୍ରବେଶପଥରେ ଥିବା ଗାଇଡ୍ ହଲ୍ ଭିତରେ ଥିବା ଛବିଗୁଡ଼ିକର ଫଟୋ ଉଠାଇବା ପାଇଁ ବାରଣ କଲେ। ବିଶେଷକରି ଗ୍ୟାଲେରୀର ମଧ୍ୟଭାଗରେ ଥିବା ମୋନାଲିସା ଛବିର ଫଟୋ ନେବା ଉପରେ କଟକଣା ରହିଥିବା କଥା ସେ ଆମକୁ ସୂଚାଇ ଦେଇଥିଲେ। ଆର୍ଟ ଗ୍ୟାଲେରୀରେ କେଉଁ ଶିଳ୍ପୀଙ୍କର ଛବି ନଥିଲା ସେକଥା କହିହେବ ନାହିଁ। ଶିଓଟୋ, ଫ୍ରାବିଆନୋ, ଆଞ୍ଜେଲିଓ, ବୋଟିସେଲି, ଟାବଟିଆନ ର୍‍ୟାଫେନ୍, ପୁସିନ୍ ହେନେ, ଡେଲ୍କ୍ରୋରୟ ଇତ୍ୟାଦି ପ୍ରମୁଖ ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀମାନଙ୍କର ତୂଳୀର ଯାଦୁରେ ତିଆରି ଛବିମାନ ଭରପୂର ଥିଲା। ଆର୍ଟ ଗ୍ୟାଲେରୀରେ କିନ୍ତୁ ସେସବୁ ମଧ୍ୟରେ ବାରି ହୋଇପଡୁଥିଲା ଲିଓନାର୍ଡୋ ଦା' ଭିନିସ୍‌ଙ୍କ ଦ୍ୱାରା ଅଙ୍କିତ 'ମୋନାଲିସା' ଛବିଟି।

ଆମେ ପିଲାଦିନେ ମୋନାଲିସା ଛବି ସମ୍ପର୍କରେ ଅନେକ କଥା ଶୁଣିଥିଲୁ। କିନ୍ତୁ ଦିନେ ଯେ ସେ ଛବିକୁ ଆଖିରେ ଦେଖିହେବ ସେ ବିଶ୍ୱାସ ନଥିଲା। କିନ୍ତୁ ସେଦିନ ଅବିଶ୍ୱାସ ବିଶ୍ୱାସରେ ପରିଣତ ହେଲା। ଭିଡ଼ ଭିତରେ କେତେବେଳେ ଆମେ ଯାଇ ମୋନାଲିସା ଛବି ସାମ୍ନାରେ ପହଞ୍ଚିଯାଇଥିଲୁ ଜାଣିପାରି ନଥିଲୁ। ସେଠାରେ ଥିବା ଗାଇଡ୍‌ଙ୍କ କଥାରେ ଆମେ ପୁଣି ସଚେତନ ହୋଇଗଲୁ। ଆମେ କିଛି ପଚାରିବା ପୂର୍ବରୁ ସେ ପ୍ରାଞ୍ଜଳଭାବରେ କହିଚାଲିଥିଲେ ମୋନାଲିସାର ଗରିମାମୟ କାହାଣୀ।

ମୋନାଲିସା ଫ୍ଲୋରେନ୍ସ ଏକ ସାଧାରଣ ଚାଷୀ ପରିବାରର ରମଣୀ ଥିଲେ। ଏକମାତ୍ର ପୁତ୍ରର ଅକାଳ ମୃତ୍ୟୁରେ ସେ ମ୍ରିୟମାଣ ହୋଇ ପଡ଼ିଥିଲେ। ତାଙ୍କୁ କେହି କେବେ ସୌନ୍ଦର୍ଯ୍ୟମୟୀ ନାରୀଭାବରେ ବର୍ଣ୍ଣନା କରିନାହିଁ। ସେ ଥିଲେ ଜଣେ ସାଧାରଣ ନାରୀ। କିନ୍ତୁ ତାଙ୍କର ଦୁଇଟି ଓଠରୁ ବାହାରୁଥିବା ସ୍ମିତହାସ୍ୟ ଯୋଗୁଁ ସେ ଜଗତବିଖ୍ୟାତ ହୋଇଗଲେ। ଶୁଣାଯାଏ, ଚିତ୍ରଶିଳ୍ପୀ ଦା' ଭିନିସ୍‌ଙ୍କ ସହିତ ଏକ ଦୁର୍ବଳ ମୁହୂର୍ତ୍ତରେ ମୋନାଲିସାଙ୍କର ପରିଚୟ ହୋଇଥିଲା ଏବଂ ଘଟଣାକ୍ରମରେ ଏହି ପରିଚୟ ଅନ୍ତରଙ୍ଗତାରେ ରୂପାନ୍ତରିତ ହେଲା। ଦୀର୍ଘଦିନର ଅନ୍ତରଙ୍ଗ ସମ୍ପର୍କ ମଧ୍ୟରେ କୌଣସି ଏକ ଅସତର୍କ ମୁହୂର୍ତ୍ତରେ ମୋନାଲିସାଙ୍କ ମୁହଁରୁ ଏକ ମ୍ଳାନ ସ୍ମିତହାସ୍ୟ ଫୁଟିଥିଲା ଏବଂ ପରବର୍ତ୍ତୀ ସମୟରେ ସେହି ସ୍ମିତହାସ୍ୟକୁ ତୂଳୀ ଓ ରଙ୍ଗ ସାହାଯ୍ୟରେ ଦା' ଭିନିସ୍ ତାଙ୍କୁ ସୁନ୍ଦରଭାବରେ ଫୁଟାଇଥିଲେ

କାନ୍‌ଭାସ୍ ଉପରେ। ଏହି ଛବିଟି ସମ୍ପୂର୍ଣ୍ଣ କରିବାକୁ ତାଙ୍କୁ ଦୀର୍ଘ ଚାରିବର୍ଷ ସମୟ ଲାଗିଥିଲା ବୋଲି ଶୁଣାଯାଏ। ଏପରି ଏକ ଶୁଣାକଥାକୁ ଅନେକେ ସହଜରେ ଗ୍ରହଣ କରିପାରନ୍ତି ନାହିଁ। ସେମାନଙ୍କ ମତରେ ମୋନାଲିସାର କୌଣସି ସ୍ଥିତି ନଥିଲା। କବିମାନଙ୍କ ଭଳି ଦା'ଭିନିସ୍‌ଙ୍କର ଏହା ଥିଲା ଏକ ଖିଆଲୀ କଳ୍ପନା ଏବଂ ନିଜ କଳ୍ପନାକୁ ସେ ଛବିରେ ଫୁଟାଇଥିଲେ। ଆଉ କେହି କେହି କହନ୍ତି, ବାସ୍ତବରେ ବିମର୍ଷବଦନା ମୋନାଲିସାଙ୍କ ମୁହଁରେ ଏପରି ହସ କେବେ ପ୍ରକାଶ ପାଇନଥିଲା ଏବଂ ଲିଓନାର୍ଡୋ ନିଜର ଯାଦୁକରୀ ହାତରେ ମୋନାଲିସା ମୁହଁ ଉପରେ ସୃଷ୍ଟି କରିଥିଲେ ଏହି ଅପୂର୍ବ ସ୍ମିତହାସ୍ୟ, ଯାହାକି କୋଟି କୋଟି ଲୋକଙ୍କ ମନରେ ସୃଷ୍ଟି କରୁଥିଲା ଆନନ୍ଦର ପୁଲକ।

ମୋନାଲିସା ଛବି ଥିବା କକ୍ଷରେ ଦିନରାତି ପହରାର ବ୍ୟବସ୍ଥା କରାଯାଇଥିଲା। ଯେଉଁଭଳି ଫଟୋ କ୍ୟାମେରାରୁ ନିର୍ଗତ ଅଲୋକରଶ୍ମୀ ଏହି ଦୁର୍ଲ୍ଲଭ ଛବି ଉପରେ ପଡ଼ି ଏହାକୁ ବିକଳାଙ୍ଗ ନ କରେ, ସେଥିପାଇଁ ସରକାରଙ୍କ ପକ୍ଷରୁ ସତର୍କତାମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା। ଆମେ ଅତି ନିକଟରୁ ସେ ଛବିଟିକୁ ଦେଖି ଅତ୍ୟନ୍ତ ବିମୋହିତ ହୋଇପଡ଼ିଥିଲୁ। ସେଠାରେ ଅଧିକ ସମୟ ଛିଡ଼ାହୋଇ ଛବିଟିକୁ ଅଧିକ ଉପଭୋଗ କରିବା ନିମିତ୍ତ ମନରେ ଅଦମ୍ୟ ବାସନା ଥିଲେ ମଧ୍ୟ ସମୟର ସ୍ୱଳ୍ପତା ଦୃଷ୍ଟିରୁ ତାହା ସମ୍ଭବ ହୋଇନଥିଲା।

ମୁଁ ମାତ୍ର ପାଞ୍ଚଫୁଟ ଦୂରରୁ ମୋନାଲିସା ଛବିକୁ ନିରୀକ୍ଷଣ କରିବାର ସୁଯୋଗ ପାଇଥିଲି। ମୋ ପାଖରେ ଅନ୍ୟ ବନ୍ଧୁମାନେ ମଧ୍ୟ ଥିଲେ। ସମସ୍ତେ ଅନୁଭବ କରୁଥିଲେ ସତେ ଯେପରି ମୋନାଲିସା ଛବିଟି କାନ୍‌ଭାସ୍ ଭିତରୁ ସମସ୍ତଙ୍କୁ ଚାହିଁ ସ୍ମିତହାସ୍ୟ କରୁଛି। ବାସ୍ତବରେ ମୋନାଲିସା ଛବିଟି ଦେଖି ଲିଓନାର୍ଡୋଙ୍କ ପାଖରେ ସ୍ୱତଃ ମୁଣ୍ଡ ନଇଁଗଲା। ଧନ୍ୟ ସେ ଶିଳ୍ପୀ, ଯିଏ କୋଟି କୋଟି ଦର୍ଶକଙ୍କ ମନରେ ଭରିଦେଉଥିଲେ ଅଫୁରନ୍ତ ଆନନ୍ଦ। ଆର୍ଟ ଗ୍ୟାଲେରୀରେ ସ୍ୱଳ୍ପସମୟ ରହଣି ମଧ୍ୟରେ ଶୁଣିଲୁ ଅତୀତରେ ପୃଥିବୀପ୍ରସିଦ୍ଧ ଏହି ଦୁର୍ଲ୍ଲଭ ଛବିଟିକୁ ଚୋରାଇନେବାକୁ ଏକାଧିକବାର ଉଦ୍ୟମ ହୋଇଥିଲା; ମାତ୍ର ସେଠାରେ ଉପସ୍ଥିତ ପ୍ରହରୀମାନଙ୍କ ସତର୍କତା ଯୋଗୁଁ ତାହା ସମ୍ଭବ ହୋଇନଥିଲା। ଥରେ ଜଣେ କୁଖ୍ୟାତ ବ୍ୟବସାୟୀ ନିଜ ଅର୍ଥବଳରେ ଏହି ଚିତ୍ରଟିକୁ ଆର୍ଟ ଗ୍ୟାଲେରୀରୁ ଅପହରଣ କରିନେଇ ସେଠାରେ ଏକ ନକଲି ମୋନାଲିସା ଚିତ୍ର ରଖିଦେଇଥିଲେ। ଏହା ଜଣାପଡ଼ିବା ପରେ ସମଗ୍ର ପ୍ୟାରିସ୍‌ରେ ଚହଳ ପଡ଼ିଯାଇଥିଲା। ସୌଭାଗ୍ୟର କଥା ଯେ, ଆନ୍ତର୍ଜାତିକ ଗୁଇନ୍ଦା ସଂସ୍ଥା ମାତ୍ର କେଇସପ୍ତାହ ମଧ୍ୟରେ ଅସଲ ଚିତ୍ରଟିକୁ ଅକ୍ଷତ ଅବସ୍ଥାରେ ଉଦ୍ଧାର କରିପାରିଥିଲେ।

ମୋନାଲିସା ଚିତ୍ର ଦେଖିଲାବେଳେ କବିବର ରାଧାନାଥ ରାୟଙ୍କର "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ - ଯେତେ ଦେଖୁଥିଲେ ନୂଆ ଦିଶୁଥାଇ" ପଂକ୍ତିଟି ମନେପଡ଼ିଗଲା।

ବାସ୍ତବରେ କବି ଆଉ ଚିତ୍ରଶିଳ୍ପୀ ନଥିଲେ ମନଟା କେତେ ନିରସ ହୋଇଯାଆନ୍ତା। ମୋନାଲିସା ଚିତ୍ର ଦେଖି ଆମେ ଏତେ ଅଭିଭୂତ ହୋଇଯାଇଥିଲୁ ଯେ, ଆର୍ଟ ଗ୍ୟାଲେରୀରେ ଥିବା ଅନ୍ୟ ଛବି କଥା ଆମେ ଭୁଲିଯାଇଥିଲୁ ଏବଂ ଆମ ହାତରେ ଆଉ ସମୟ ନଥିବାରୁ ସେଗୁଡ଼ିକ ଦେଖିବା ଆମ ପକ୍ଷରେ ଆଉ ସମ୍ଭବ ହୋଇନଥିଲା।

## ଆଇଫେଲ୍ ଟାୱାରରୁ ପ୍ୟାରିସ୍‌ର ଦୃଶ୍ୟ

ଲୁଭ ମିଉଜିଅମ୍ ବୁଲିବା ପରେ ସେଦିନ ଆମର ଆଇଫେଲ୍ ଟାୱାରକୁ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେଥିପାଇଁ ଆମେ ତରବରରେ ଆର୍ଟ ଗ୍ୟାଲେରୀରୁ ବାହାରିଲୁ। ଦୂରରୁ ଆଇଫେଲ୍ ଟାୱାର ଯେପରି ଦେଖାଯାଉଥିଲା, ପାଖକୁ ଆସିଲାରୁ ତାକୁ ଆମେ ଭିନ୍ନ ଭାବରେ ଦେଖିଲୁ। ସାପ୍-ଦେ-ମାରସ୍ ଆଉ ସିନ୍ ନଦୀ ମଝିରେ ଦଣ୍ଡାୟମାନ ଏହି ଟାୱାରକୁ 'ପ୍ୟାରିସ୍‌ର ହୃତ୍‌ପିଣ୍ଡ' ବୋଲି କୁହାଯାଏ। ଆଇଫେଲ୍ ଟାୱାରକୁ ନିଜ ଆଖିରେ ନ ଦେଖିଲେ ତା'ର ବିଶେଷତ୍ୱ ସମ୍ପର୍କରେ ଲେଖାରୁ ବୁଝିହୁଏ ନାହିଁ।

ଆମର ଆଇଫେଲ୍ ଟାୱାର ବୁଲିଯିବା ସମ୍ପର୍କରେ ଭାରତୀୟ ଦୂତାବାସରୁ ସେଠାରେ ଥିବା ନିର୍ଦ୍ଦେଶକଙ୍କୁ ଜଣାଇ ଦିଆଯାଇଥିଲା। ସେଥିପାଇଁ ସେଠାକାର କର୍ମଚାରୀମାନେ ଆମକୁ ସ୍ୱାଗତ କରିବା ପାଇଁ ଅପେକ୍ଷା କରି ରହିଥିଲେ। ଆମେ ପହଞ୍ଚିଲାମାତ୍ରେ ଆମ୍ଭମାନଙ୍କ ସହିତ କରମର୍ଦ୍ଦନ କରି ଭିତରକୁ ନେଇଗଲେ। ଅଫିସ୍‌ରେ ଆମକୁ ଚା'ପର୍ବରେ ଚର୍ଚ୍ଚା କରାଗଲା। ଆମେ ଲିଫ୍ଟରେ ଉପରକୁ ଯିବା ପୂର୍ବରୁ ନିର୍ଦ୍ଦେଶକ ମହାଶୟ ଆଇଫେଲ୍ ଟାୱାରର ନିର୍ମାଣ କୌଶଳ ଓ ବିଶେଷତ୍ୱ ସମ୍ପର୍କରେ ବୁଝାଇଥିଲେ। କେଉଁ ପରିସ୍ଥିତିରେ କେତେ ଖର୍ଚ୍ଚରେ ଏବଂ କାହାଦ୍ୱାରା ବିଶ୍ୱର ଏହି ସୁଉଚ୍ଚ ଲୌହମିନାର ନିର୍ମାଣ କରାଯାଇଥିଲା, ସବୁ ବିଷୟ ସେ ଟିକିନିଖି ଭାବରେ କହିଥିଲେ। ତାଙ୍କ କଥାରୁ ଆମେ ଏତିକି ବୁଝିଲୁ ଯେ, ୧୮୮୯ ମସିହାରେ ଫରାସୀ ବିପ୍ଳବର ଶତବାର୍ଷିକୀ ପାଳନ କରିବା ଉଦ୍ଦେଶ୍ୟରେ ଗୋଟିଏ ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା। ତା' ପୂର୍ବରୁ ବିଶ୍ୱକୁ ଫ୍ରାନ୍ସରାଷ୍ଟ୍ର ପକ୍ଷରୁ କିଛି ଗୋଟାଏ ନୂଆ ଉପହାର ଦେବା ସମ୍ପର୍କରେ ଆଲୋଚନା ହୋଇ ନକ୍ସା ପ୍ରସ୍ତୁତ କରିବା ପାଇଁ ଦେଶର ବଛା ବଛା ଇଞ୍ଜିନିଅର ଓ ସ୍ଥପତିମାନଙ୍କୁ ଦାୟିତ୍ୱ ଦିଆଯାଇଥିଲା। ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପ୍ରାୟ ହଜାରେ ନକ୍ସା ମିଳିଥିଲା। ସେଥିମଧ୍ୟରେ ଥିଲା ମୋସିଓ ଆଇଫେଲ୍‌ଙ୍କ ଦ୍ୱାରା ପ୍ରସ୍ତୁତ ଆଇଫେଲ୍ ଟାୱାରର ନକ୍ସା। ସେ ନକ୍ସାଟି ଦେଖିବାମାତ୍ରେ ତା'ଉପରେ ପ୍ରବଳ ବାଦାନୁବାଦ ଆରମ୍ଭ ହୋଇଥିଲା। ଟାୱାରଟି ନିର୍ମାଣ ପାଇଁ ଯେଉଁ ଅର୍ଥର ଆବଶ୍ୟକତା ଥିଲା ତାକୁ ଭରଣା କରିବାକୁ ହେଲେ ଫ୍ରାନ୍ସ ସରକାର ଦେବାଳିଆ ହୋଇଯିବେ ବୋଲି ମତ ପ୍ରକାଶ

ଚାଇଲା। ଏତେବଡ଼ ମିନାରର ସ୍ଥାୟିତ୍ୱ ସମ୍ପର୍କରେ ମଧ୍ୟ ଲୋକଙ୍କ ମନରେ ସନ୍ଦେହ ସୃଷ୍ଟି ହୋଇଥିଲା। ଆଇଫେଲ୍ ଟାୱାରର ନକ୍ସା ଦାଖଲ ସମୟରେ ମୋସିଓ ଆଇଫେଲ୍‌ଙ୍କୁ ୫୩ବର୍ଷ ବୟସ ହୋଇଥିଲା। ସେତେବେଳେ ସେ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଡ୍ୟାମ୍, ଫ୍ୟାକ୍ଟରୀ, ରେଲଓ୍ୱେଷ୍ଟେସନ ଆଦି ନିର୍ମାଣ କରି ସୁନାମ ଅର୍ଜନ କରିଥିଲେ। ବିଶେଷକରି ପର୍ତ୍ତୁଗାଲରେ ଏକ ଭାସମାନ ପୋଲ (ହ୍ୟାଙ୍ଗିଙ୍ଗ୍ ବ୍ରିଜ୍) ନିର୍ମାଣ କରି ସେ ବିଶ୍ୱବିଖ୍ୟାତ ହୋଇ ସାରିଥିଲେ। ତାଙ୍କର ବ୍ୟକ୍ତିଗତ ପ୍ରତିଷ୍ଠା ଓ ଅଭିଜ୍ଞତାକୁ ବିଚାରକୁ ନେଇ ସରକାର ଆଇଫେଲ୍ ଟାୱାର ନିର୍ମାଣ ନକ୍ସାର ଅନୁମୋଦନ କରିଥିଲେ।

୧୮୮୭ ମସିହାରେ ଟାୱାର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା। ଟାୱାର ଯେତିକି ଯେତିକି ଉଚ୍ଚ ହେଉଥିଲା, ପ୍ୟାରିସ୍‌ବାସୀଙ୍କ ମନ ସେତିକି ପରିମାଣରେ ସନ୍ଦିହାନ ହୋଇପଡୁଥିଲା। ସତରେ କ'ଣ ଏପରି ଏକ ଲୌହମିନାର ନିର୍ମାଣ ସମ୍ଭବ? ଯେତେବେଳେ ଏହି ମିନାରର ଉଚ୍ଚତା ୨୭୫ ମିଟର ଉପରକୁ ଉଠିଲା, ଏହା ଭାଙ୍ଗିପଡ଼ିବାର ଆଶଙ୍କାରେ ପ୍ୟାରିସ୍‌ବାସୀ ଆତଙ୍କିତ ହୋଇପଡ଼ିଥିଲେ। ସେତେବେଳେ ଏପରି ମିନାର ନିର୍ମାଣକୁ ବିରୋଧକରି ଶତାଧିକ ବୁଦ୍ଧିଜୀବୀ ସରକାରଙ୍କ ପାଖକୁ ପତ୍ର ଲେଖିଥିଲେ। ସେମାନଙ୍କ ମଧ୍ୟରୁ କେତେକଙ୍କର ଯୁକ୍ତି ଥିଲା, ଏହି ବିରାଟକାୟ ସ୍ତମ୍ଭ ସୌନ୍ଦର୍ଯ୍ୟମୟୀ ପ୍ୟାରିସ୍ ସହର ଉପରେ ସବୁଦିନ ପାଇଁ ଏକ କଳଙ୍କ ହୋଇ ରହିଯିବ। ଆଉ କେହି କେହି କହିଥିଲେ, ଏହା ଏକ ଲୌହଦାନବ। ଏସବୁ ପତ୍ର ଯେ ଆଇଫେଲ୍‌ଙ୍କ କଳ୍ପନା ବିରୋଧରେ ଅଭିପ୍ରେତ ଥିଲା, ତାହା ନିଃସନ୍ଦେହ। ମାତ୍ର ସେ ଏସବୁ ପ୍ରତି କର୍ଣ୍ଣପାତ କରିନଥିଲେ। କିମ୍ବା ସାଧାରଣରେ ତା'ର ପ୍ରତିବାଦ ମଧ୍ୟ କରିନଥିଲେ।

ଦୀର୍ଘ ଦୁଇବର୍ଷର କଠିନ ପରିଶ୍ରମ ଓ ସାଧନାର ଫଳସ୍ୱରୂପ ଦଣ୍ଡାୟମାନ ହେଲା ଆଇଫେଲ୍ ଟାୱାର। ୧୮୮୯ ମସିହା ମାର୍ଚ୍ଚ ୩୦ ତାରିଖ ଦିନ ବିଶ୍ୱବିଖ୍ୟାତ ଟାୱାରର ନିର୍ମାଣ କରି ମୋସିଓ ଆଇଫେଲ୍ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲେ। ଯେଉଁମାନେ ଦିନେ ତାଙ୍କୁ ସମାଲୋଚନା କରିବାକୁ କୁଣ୍ଠାବୋଧ କରୁନଥିଲେ, ସେଇମାନେ ଆଇଫେଲ୍‌ଙ୍କ ପ୍ରଶଂସାରେ ଶତମୁଖ ହୋଇଉଠିଲେ। ଆଇଫେଲ୍ ଟାୱାରର ଶିଖରରେ ଯେତେବେଳେ ଫ୍ରାନ୍ସର ଜାତୀୟପତାକା ଉଡ଼ିଲା, ସେତେବେଳେ ସମଗ୍ର ଫ୍ରାନ୍ସବାସୀ ଆନନ୍ଦରେ ଆତ୍ମବିଭୋର ହୋଇଉଠିଲେ। ଉଲ୍ଲସିତ ଆଇଫେଲ୍ ମଧ୍ୟ ଘୋଷଣା କରିଥିଲେ, "ନିକଟ ଭବିଷ୍ୟତରେ ହଜାରଫୁଟ୍ ଉଚ୍ଚତାର ଏକ ମିନାର କରିବା ବୋଧହୁଏ ଆଉ ସମ୍ଭବ ହେବନାହିଁ।" ଆଇଫେଲ୍ ଟାୱାରର ଚାରୋଟି ସ୍ତମ୍ଭରେ ଚାରୋଟି ଲିଫ୍ଟ ବ୍ୟବସ୍ଥା ଥିଲା। ଆମେ ଭାଗ ଭାଗ ହୋଇ ଚାରୋଟି ଲିଫ୍ଟରେ ଟାୱାର ଉପରକୁ ଉଠିଲୁ। ଲିଫ୍ଟଗୁଡ଼ିକ ନିରନ୍ତର ଭାବରେ ଉପରକୁ ଯାଉଥିଲା ଓ ତଳକୁ ଖସୁଥିଲା। ଲିଫ୍ଟରେ ଉପରକୁ

ଉଠିଲାବେଳେ ପ୍ରଥମେ ଭୟ ଲାଗୁଥିଲା, କାରଣ ଲିଫ୍ଟରେ ଏତେ ଉଚ୍ଚକୁ ଉଠିବାର ଅଭିଜ୍ଞତା ଆଗରୁ ନ ଥିଲା। ଆମକୁ ଯେଉଁଠି ସୁଉଚ୍ଚ ଅଟ୍ଟାଳିକାକୁ ଯିବାର ସୁଯୋଗ ମିଳିଥିଲା, ସେସବୁ ରୁଦ୍ଧଦ୍ୱାର ଲିଫ୍ଟ ଭିତରେ। ସେଥିରେ ବାହାରର ଉଚ୍ଚତା ଜାଣିବାର ଉପାୟ ନଥିଲା। ଆମେ ଲିଫ୍ଟରେ ଉପରକୁ ଉଠୁଥିବା ସମୟରେ ଆମ ସାଙ୍ଗରେ ଥିବା ଗାଇଡ୍ ଟାୱାର ସମ୍ପର୍କରେ ସବିଶେଷ ବିବରଣୀ ଦେଇଚାଲିଥିଲେ।

ବିଭିନ୍ନ ଋତୁରେ ଜଳବାୟୁ ଓ ପରିବେଶ ପ୍ରଭାବରେ କିପରି ଟାୱାରର ଆକାରରେ ସାମାନ୍ୟ ପରିବର୍ତ୍ତନ ଘଟିଥାଏ, ଖରାଦିନେ ଏହି ଟାୱାର ୧୮ ସେଣ୍ଟିମିଟର୍ ବୃଦ୍ଧି ପାଉଥିବାବୋଲ ଜାନୁୟାରୀ ମାସ ଶୀତରେ କିପରି ଏହା ୧୫ ସେଣ୍ଟିମିଟର୍ ସଙ୍କୁଚିତ ହୋଇଥାଏ ଏବଂ ସେଥିରେ ରଙ୍ଗର ପ୍ରଲେପ ଲାଗିଲେ ଟାୱାରର ଓଜନ ପାଖାପାଖି ୪୫ ଟନ୍ ବଢ଼ିଯାଏ, ସେ ସମ୍ପର୍କରେ ଗାଇଡ୍ ଆମକୁ ବୁଝାଉଥିଲେ। ଲିଫ୍ଟ ବ୍ୟତୀତ ଟାୱାରର ଉପରକୁ ଉଠିବା ପାଇଁ ଏକହଜାର ସାତଶହ ପାହାଚର ବ୍ୟବସ୍ଥାଥିଲା। ପ୍ରଥମିକ ଅବସ୍ଥାରେ ଲିଫ୍ଟ୍ ନଥିବା ସମୟରେ ଗୁସ୍ତାଭ୍, ତାଙ୍କ ବନ୍ଧୁମାନଙ୍କୁ ନେଇ ଏଇ ପାହାଚବାଟେ ଉପରକୁ ଉଠୁଥିଲେ।

ଆଇଫେଲ୍ ଟାୱାର ଉପରୁ ପ୍ୟାରିସ୍ ସହରର ଦୃଶ୍ୟ ଅତ୍ୟନ୍ତ ମନୋମୁଗ୍ଧକର। ଉପରୁ ସହରର ବଡ଼ବଡ଼ କୋଠାଘର ସବୁ ଦିଆସିଲି ଖୋଳ ଭଳି ଦେଖାଯାଉଥିଲା। ପାଖରେ ବହିଯାଉଥିବା ସିନ୍ ନଦୀ ଏକ ସର୍ପର ଭ୍ରମ ସୃଷ୍ଟି କରୁଥିଲା। ସହର ମଧ୍ୟରେ ଥିବା ବଗିଚାସବୁ ଗୋଟିଏ ଗୋଟିଏ ସବୁଜ ଗାଲିଚାପରି ଦେଖାଯାଉଥିଲା। ସହରର ପ୍ରଶସ୍ତ ରାସ୍ତାସବୁ ସରୁ ଚଲାରାସ୍ତା ଭଳି ପ୍ରତୀୟମାନ ହେଉଥିଲା। ଅଳ୍ପସମୟ ମଧ୍ୟରେ ଆମେ ଟାୱାରର ଶେଷ ପର୍ଯ୍ୟାୟରେ ପହଞ୍ଚିଗଲୁ। ନିରାପତ୍ତା ଓ ସୁରକ୍ଷାର ସବୁ ବ୍ୟବସ୍ଥାସତ୍ତ୍ୱେ ସେଠାରେ ପହଞ୍ଚିବା ପରେ ମନରେ କେଜାଣି କାହିଁକି ଏକ ଅଜଣା ଆତଙ୍କ ସୃଷ୍ଟି ହେଲା। ଯଦି ଲିଫ୍ଟ ଫେଲ୍ ହୋଇଯାଏ, ତେବେ ପରିଣତି କ'ଣ ହେବ, ଏଇକଥା ଭାବିଲାବେଳେକୁ ମନ କିପରି ବିଷଣ୍ଣ ହୋଇଗଲା। ଆମ ସଙ୍ଗରେ ଥିବା ଗାଇଡ୍ ଆମ ମନରେ ସୃଷ୍ଟି ହୋଇଥିବା ଆଶଙ୍କାର ବୋଧହୁଏ କିଛି ଆଭାସ ପାଇଲେ। ଆମକୁ ସାନ୍ତ୍ୱନା ଦେବାକୁ ଯାଇ କହିଲେ, "କେବଳ ଆପଣମାନେ ନୁହନ୍ତି, ଦେଶବିଦେଶରୁ ଯେତେ ପର୍ଯ୍ୟଟକ ଆସନ୍ତି, ପ୍ରଥମେ ସେମାନଙ୍କ ମନରେ ଏକ ଅହେତୁକ ଆଶଙ୍କା ସୃଷ୍ଟି ହୋଇଥାଏ। ମାତ୍ର ସେ ଆଶଙ୍କା ଅମୂଳକ; କାରଣ ଆଇଫେଲ୍ ଟାୱାରରେ ସୁରକ୍ଷା ନିରାପତ୍ତା ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି। ତେଣୁ ଆପଣମାନେ ଚିନ୍ତାଗ୍ରସ୍ତ ନହୋଇ ପ୍ୟାରିସ୍ ସହରର ଦୃଶ୍ୟକୁ ଉପଭୋଗ କରନ୍ତୁ। ହୁଏତ ଜୀବନରେ ଏପରି ସୁଯୋଗ ଆଉ ନ ମିଳିପାରେ।" ଗାଇଡ୍‌ଙ୍କର ସେଦିନର କଥା ଆମ ମନରେ ଯଥେଷ୍ଟ ସାହସ ଓ ଶକ୍ତି ଆଣିଦେଇଥିଲା।

ଟାୱାର ଉପରେ କିଛିସମୟ ରହିଲା ପରେ ତଳକୁ ଖସିବା ପାଇଁ ଘଣ୍ଟି ବାଜିଲା ଓ ଆମେ ଆସି ନିଜ ନିଜ ଲିଫ୍ଟରେ ପଶିଲୁ। ତଳକୁ ଓହ୍ଲାଇ ଟାୱାରକୁ ଲାଗିଥିବା ବଗିଚାରେ ବୁଲାବୁଲିରେ କିଛି ସମୟ କଟିଗଲା। ସେଦିନ ହାତରେ ଯଥେଷ୍ଟ ସମୟ ଥିଲା। ମନ ମଧ୍ୟ ଖୁସିଥିଲା। ସେଥିପାଇଁ ପ୍ରତ୍ୟେକ ମୁହୂର୍ତ୍ତକୁ ଆମେ ଉପଭୋଗ କରିପାରୁଥିଲୁ। ବୁଲିଲାବେଳେ ଭାବିପାରୁନଥିଲି ଯେ ମୁଁ ସୌନ୍ଦର୍ଯ୍ୟ ନଗରୀରେ ବୁଲୁଛି ବୋଲି। ସବୁ ସ୍ୱପ୍ନ ଭଳି ଲାଗୁଥିଲା।ମନେପଡ଼ିଗଲା ସନ୍ଧ୍ୟା ନଇଁଲେ କଟକର ପଟ୍ଟାପୋଲ ଅଞ୍ଚଳର ଦୃଶ୍ୟ। ଦେଶୀ ମଦଭାଟିକୁ ଯିବାପାଇଁ ଲୋକଙ୍କର କି ଭିଡ଼! ସେ ଭିଡ଼ ଭିତରେ କିପରି ଲୁଚିଛପି ପଶିଯାଆନ୍ତି ବହୁ ସମ୍ଭ୍ରାନ୍ତ ଓ ପ୍ରତିଷ୍ଠିତ କଳାକାର, ସାହିତ୍ୟିକ ଓ ଅନ୍ୟମାନେ। ମାତ୍ର କେଇମିନିଟ୍ ଭିତରେ ସବୁକିଛି ଓଲଟ ପାଲଟ ହୋଇଯାଏ। କେଇଢୋକ ମଦରେ କେତେ ଭଲଲୋକ ସଇତାନ୍ ପାଲଟିଯାଆନ୍ତି। କିଏ ରାସ୍ତାକଡ଼ ଡ୍ରେନ୍‌ରେ ପଡ଼ି ଖଣ୍ଡିଆଖାବରା ହୁଏ ତ ଆଉ କେହି ମାତାଲ ହୋଇ ଆନ୍ୟମାନଙ୍କଠାରୁ ଉତ୍ତମ-ମଧ୍ୟମ ପାଇଥାନ୍ତି। ବୁନିଆଦି କଟକ ସହରର ଏହା ଏକ ନିତ୍ୟନୈମିତିକ ଦୃଶ୍ୟ। କିନ୍ତୁ ବିଦେଶରାଷ୍ଟ୍ରରେ ଲୋକେ ମଦ୍ୟପାନ କରନ୍ତି ଜୀବନକୁ ଉପଭୋଗ କରିବାକୁ, ଅନ୍ୟ ପାଇଁ ବାଧା ସୃଷ୍ଟି କରିବାକୁ ନୁହେଁ।

## ମେଟ୍ରୋ ଟ୍ରେନ୍‌ରେ ଯାତ୍ରା

ବଗିଚାରେ ବୁଲିଲାବେଳେ ସ୍ଥିର ହେଲା ସନ୍ଧ୍ୟାରେ ମେଟ୍ରୋ ଟ୍ରେନ୍‌ରେ ବୁଲି ମଜା ଉଠାଇବା। ଦେଶ ସ୍ୱାଧୀନ ହେବାର ଷାଠିଏବର୍ଷ ପରେ ଭାରତବର୍ଷର ଦିଲ୍ଲୀ ଓ କଲିକତା ଭଳି ସହର ବ୍ୟତୀତ ଅନ୍ୟତ୍ର ମେଟ୍ରୋ ଟ୍ରେନ୍ ଚଳାଚଳ ଆରମ୍ଭ ହୋଇନାହିଁ; କିନ୍ତୁ ପ୍ୟାରିସ୍ ସହରରେ କାହିଁ କେଉଁକାଳରୁ ଏ ବ୍ୟବସ୍ଥା ଆରମ୍ଭ ହୋଇଛି। ପ୍ୟାରିସ୍‌ରେ ସାଧାରଣ ଲୋକଙ୍କ ପାଇଁ ଏକ ମୁଖ୍ୟ ପରିବହନ ବ୍ୟବସ୍ଥା ମେଟ୍ରୋ ଟ୍ରେନ୍‌ର ଚଳାଚଳ ସକାଳ ସାଢ଼େ ପାଞ୍ଚଟାରୁ ଆରମ୍ଭ ହୋଇ ରାତି ସାଢ଼େବାରଟା ପର୍ଯ୍ୟନ୍ତ ଚାଲେ। ସବୁବେଳେ ଗହଳଚହଳ ଲାଗିଥିଲେ ମଧ୍ୟ ଘୋଘା କି ପାଟିତୁଣ୍ଡ କିଛି ନଥାଏ। ମେଟ୍ରୋଟ୍ରେନ୍ କେଉଁ ଷ୍ଟେସନରୁ କେଉଁ ଷ୍ଟେସନ୍‌କୁ ଚଳାଚଳ କରେ ସେ ସମ୍ପର୍କୀୟ ମ୍ୟାପ୍ ଷ୍ଟେସନ୍‌ମାନଙ୍କରେ ଉପଲବ୍ଧ ହୁଏ। ଯେଉଁମାନେ ସେ ମ୍ୟାପ୍ ଚାହାନ୍ତି ସେମାନଙ୍କୁ ମାଗଣାରେ ସେସବୁ ଯୋଗାଇ ଦିଆଯାଏ। ତା'ଛଡ଼ା, ଟ୍ରେନ୍‌ର ପ୍ରତ୍ୟେକ ଡବାରେ ମେଟ୍ରୋ ଟ୍ରେନ୍ ଷ୍ଟେସନ୍‌ର ନକ୍ସା ଥାଏ। ନକ୍ସା ଦେଖି ଲୋକେ କେଉଁଠାରୁ ଟ୍ରେନ୍ ଚଢ଼ିବେ ଏବଂ କେଉଁ ଷ୍ଟେସନ୍‌ରେ ଓହ୍ଲାଇବେ ସେକଥା ଜାଣିପାରନ୍ତି। ବିଶେଷକରି ଆଗନ୍ତୁକମାନଙ୍କ ପାଇଁ ଏପରି ବ୍ୟବସ୍ଥା ବିଶେଷ ସହାୟକ ହୋଇଥାଏ। କାହାକୁ କିଛି ପଚାରିବାର ଆବଶ୍ୟକତା ପଡ଼େନାହିଁ।

ଷ୍ଟେସନ ପ୍ଲାଟଫର୍ମରେ କମ୍ପ୍ୟୁଟର ପରଦାରେ ସବୁ ବିଷୟ ଲୋକଙ୍କୁ ଜଣାଇ ଦିଆଯାଏ।

ମେଟ୍ରୋ ଟ୍ରେନ୍‌ରେ ପ୍ରଥମ ଓ ଦ୍ୱିତୀୟଶ୍ରେଣୀ ଯାତ୍ରୀଙ୍କ ପାଇଁ ଅଲଗା ଅଲଗା ବ୍ୟବସ୍ଥା ରହିଛି। ଟିକେଟ୍ ଦାମ୍‌ରେ ମଧ୍ୟ ଫରକ୍ ଅଛି। ସକାଳ ୯ଟାରୁ ଅପରାହ୍ନ ୫ଟା ପର୍ଯ୍ୟନ୍ତ ଦୁଇଶ୍ରେଣୀ ମଧ୍ୟରେ ଯିଏ ଯେଉଁ ଶ୍ରେଣୀର ଟିକେଟ୍ କାଟିଥାନ୍ତି, କେବଳ ସେଇ ଶ୍ରେଣୀ ଡବାରେ ଯାତାୟାତ କରନ୍ତି। କିନ୍ତୁ ପାଞ୍ଚଟା ପରେ "ଫ୍ରି ଫର୍ ଅଲ୍", ଅର୍ଥାତ୍ ଯିଏ ଯେଉଁ ଡବାରେ ଚାହାନ୍ତି ଯାଇପାରନ୍ତି। ଟ୍ରେନ୍‌ରେ ଥିବା ପ୍ରଥମଶ୍ରେଣୀ ଓ ଦ୍ୱିତୀୟଶ୍ରେଣୀ ଡବାର ରଙ୍ଗ ମଧ୍ୟ ଅଲଗା ଅଲଗା। ଆମେ ପ୍ରଥମେ କୋଚ୍‌ରୁ ଓହ୍ଲାଇ ମେଟ୍ରୋ ଷ୍ଟେସନ୍‌କୁ ଚାଲିଲୁ। ମେଟ୍ରୋ ଟ୍ରେନ୍‌ସବୁ ଭୂମି ତଳେ ନିର୍ମିତ ରେଳଧାରଣାରେ ଚାଲେ ଏବଂ ଷ୍ଟେସନ୍‌ଗୁଡ଼ିକ ମଧ୍ୟ ଭୂମିତଳେ (ଅଣ୍ଡରଗ୍ରାଉଣ୍ଡ) ଅବସ୍ଥିତ। ଷ୍ଟେସନ୍ ଭିତରକୁ ପଶିବାକୁ ହେଲେ ଟିକେଟ୍ କିଣିବା ବାଧ୍ୟତାମୂଳକ। ସେଥିପାଇଁ ଷ୍ଟେସନ୍‌ର ପ୍ରବେଶଦ୍ୱାରରେ ଟିକେଟ୍ କିଣିବାର ବ୍ୟବସ୍ଥା ଥିଲା। ସେଠାରେ ଆମଭଳି ଘଣ୍ଟାଘଣ୍ଟା ଲାଇନ୍‌ରେ ଛିଡ଼ାହୋଇ କିମ୍ବା ଠେଲାପେଲାରେ ଟିକେଟ କିଣାଯାଉନଥିଲା। କମ୍ପ୍ୟୁଟର ମେସିନ୍‌ରେ କଏନ୍ ପୂରାଇ ନିଜର ଗନ୍ତବ୍ୟପଥ ଷ୍ଟେସନ୍‌ର ସୁଇଚ୍ ଦବାଇଲେ ଆପେ ଆପେ ଟିକେଟ୍ ବାହାରିଆସୁଥିଲା।

ଆମେ ରହୁଥିବା ହୋଟେଲ ପାଖରେ ମେଟ୍ରୋଷ୍ଟେସନ୍ ଥିବାରୁ କୋଚ୍ ଡ୍ରାଇଭରକୁ ଆମପାଇଁ ଅପେକ୍ଷା ନକରି ହୋଟେଲ ପାଖକୁ ଚାଲିଯିବା ପାଇଁ କହି ଆମେ ଷ୍ଟେସନ୍ ଭିତରେ ପଶିଲୁ। ପ୍ରବେଶଦ୍ୱାରରେ ଯେଉଁ ଗେଟ୍ ଲାଗିଥିଲା, ତାହା କମ୍ପ୍ୟୁଟର ଦ୍ୱାରା ପରିଚାଳିତ ହେଉଥିଲା। କମ୍ପ୍ୟୁଟର୍‌ରେ ଟିକେଟ୍‌ଟି ପଞ୍ଚ୍ କରିଦେଲେ ଗେଟ୍ ଆପେ ଆପେ ଖୋଲି ପୁଣି ବନ୍ଦ ହୋଇଯାଉଥିଲା। ଗେଟ୍‌ସବୁ ଏପରି ନିର୍ମାଣକୌଶଳରେ ତିଆରି ହୋଇଥିଲା ଯେ, ସେଥିରେ କେହି ବିନା ଟିକେଟ୍‌ବାଲା ଠକିଦେଇ ଚାଲିଯିବାର ସୁଯୋଗ ନଥିଲା। କମ୍ପ୍ୟୁଟର୍ ମେସିନ୍ ପୁଣି ଏତେ ସ୍ପର୍ଶକାତର ଥିଲା ଯେ, ସେଥିରେ ପୁରୁଣା ଟିକେଟ୍ ପୂରାଇଲେ ଗେଟ୍ ଖୋଲୁନଥିଲା। କିନ୍ତୁ ଏସବୁ ବ୍ୟବସ୍ଥାସତ୍ତ୍ୱେ କେତେକ ନିଗ୍ରୋ ଯୁବକ ଗେଟ୍ ଡେଇଁ ଭିତରକୁ ଯିବାର ଦୃଶ୍ୟ ଆମ ଆଖିଆଗରେ ପଡ଼ିଥିଲା।

ଷ୍ଟେସନ୍ ଭିତରକୁ ଯିବାପାଇଁ ଏସ୍କାଲେଟର୍‌ର ବ୍ୟବସ୍ଥା ଥିଲା। ଆମଭିତରୁ କେତେକ ସେଥିରେ ଯିବାରେ ଅଭ୍ୟସ୍ତ ନଥିଲେ। ଆମେ ସେମାନଙ୍କୁ ସାହାଯ୍ୟ କରି ଭିତରକୁ ନେଇଗଲୁ। ଆମର ଧାରଣା ଥିଲା, ବୋଧହୁଏ ଭୂମିତଳ ପ୍ଲାଟ୍‌ଫର୍ମ ଅପରିଷ୍କାର ଥିବ। ଗରମରେ ଗମ୍ ଗମ୍ ଝାଳ ବାହାରୁଥିବ। କିନ୍ତୁ ପ୍ଲାଟ୍‌ଫର୍ମରେ ପହଞ୍ଚିବା ପରେ ଆମର ଧାରଣା ସମ୍ପୂର୍ଣ୍ଣ ବଦଳିଗଲା। ଆମଦେଶର ଯେକୌଣସି ପ୍ଲାଟ୍‌ଫର୍ମଠାରୁ ସେଠାକାର ପ୍ଲାଟ୍‌ଫର୍ମ ଖୁବ୍ ପରିଷ୍କାର ପରିଚ୍ଛନ୍ନ ଥିଲା। ତା'ସହିତ ପ୍ଲାଟ୍‌ଫର୍ମକୁ ଆଲୋକ ଓ ପବନ ଆସିବାପାଇଁ ଅତ୍ୟାଧୁନିକ ବୈଜ୍ଞାନିକ କୌଶଳ ଅବଲମ୍ବନ କରାଯାଇଥିଲା। ଆମେ ପ୍ଲାଟ୍‌ଫର୍ମରେ ପହଞ୍ଚିବାର ମାତ୍ର କେଇମିନିଟ୍ ମଧ୍ୟରେ ଗୋଟିଏ ଟ୍ରେନ୍ ଆସିଲା। ଯେଉଁଠି ନେ

ସେଠାରେ ଓହ୍ଲାଇବା କଥା ଓହ୍ଲାଇଗଲେ ଓ ଅନ୍ୟ ଯେଉଁମାନେ ଟ୍ରେନ୍‌ରେ ଯିବାକଥା ସେମାନେ ଚଢ଼ିଗଲେ। ଆମେ ଭାବିଥିଲୁ ବୋଧେ ଟ୍ରେନ୍ ପାଞ୍ଚ କିମ୍ବା ଦଶମିନିଟ୍ ରହିବ ଏବଂ ଆରାମରେ ଟ୍ରେନ୍ ଚଢ଼ିବାକୁ ଆମକୁ ଯଥେଷ୍ଟ ସମୟ ମିଳିବ। କିନ୍ତୁ ଆମ ଭାବନାକୁ ଭୁଲ୍ ପ୍ରମାଣିତ କରି ଟ୍ରେନ୍‌ଟି ଦୁଇମିନିଟ୍ ମଧ୍ୟରେ ଛାଡ଼ିଦେଲା। ଆମେ ବାଧ୍ୟହୋଇ ପଛ ଟ୍ରେନ୍‌ରେ ଚଢ଼ିବାପାଇଁ ଅପେକ୍ଷା କରି ରହିଲୁ।

ଆମକୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ। ମାତ୍ର କେଇମିନିଟ୍ ବ୍ୟବଧାନରେ ଆଉ ଗୋଟିଏ ଟ୍ରେନ୍ ଆସି ପହଞ୍ଚିଗଲା ଏବଂ ଆଉଥରେ ବୋକା ହେବାପାଇଁ ନ ଚାହି ଆମେସବୁ ସାବଧାନତା ସହକାରେ ଟ୍ରେନ୍ ଭିତରେ ପଶିଲୁ। ଏକେ ତ ଆମମାନଙ୍କର ରଙ୍ଗ କଳା, ତା' ସାଙ୍ଗକୁ ଦଳ ଦଳ ହୋଇ ବୁଲିବା ଫଳରେ ଆମେ ଯେ ବାହାରୁ ଯାଇଥିଲୁ, ସେକଥା ସ୍ପଷ୍ଟ ବାରି ହୋଇପଡୁଥିଲା। ଟ୍ରେନ୍‌ରେ ବସିବାମାତ୍ରେ କମ୍ପ୍ୟୁଟର୍ ମାଧ୍ୟମରେ ଦ୍ୱାରସବୁ ଆପେ ଆପେ ବନ୍ଦ ହୋଇଗଲା। ଟ୍ରେନ୍ ଭିତର ବାତାନୁକୂଳ। ନରମ ଗଦି, ତଳେ ମୋଟା ଗାଲିଚା। ସବୁ ପରିଷ୍କାର। ଆମେ ବିଦେଶ- ରାଷ୍ଟ୍ରରୁ ଯାଇଥିବା ଜାଣି ସ୍ଥାନୀୟ ଲୋକେ ଆମ ପାଇଁ ସିଟ୍ ଛାଡ଼ିଦେଲେ। ଆମଦେଶରେ କିନ୍ତୁ ଓଲଟା କାରବାର। ଦିନବେଳା ଯେଉଁ ଟ୍ରେନ୍ ବିହାର ବାଟ ଦେଇ ଯାଏ ସେଇଟା ବିହାରୀଙ୍କର ହୋଇଯାଏ। ସେମାନଙ୍କର କିଛି ବାଛବିଚାର ନଥାଏ। "ଯୋର୍ ଯା'ର, ମୁଲକ ତା'ର" ନୀତିରେ ସେମାନେ ଜବରଦସ୍ତ ରିଜର୍ଭ ଡବାରେ ପଶନ୍ତି। ସେମାନଙ୍କ ଆଗରେ ରିଜର୍ଭେସନ୍‌ର ଅର୍ଥ କିଛି ନଥାଏ। ଦୂରରୁ ଆସୁଥିବା ପାସେଞ୍ଜରଙ୍କ ପ୍ରତି ସେମାନଙ୍କର ସହାନୁଭୂତି ପରିବର୍ତ୍ତେ ଆରମ୍ଭ ହୋଇଯାଏ ଅତ୍ୟାଚାର। ଆଙ୍ଗୁଠି ପଶୁ ପଶୁ ବାହା ପଶିଲାଭଳି ସେମାନେ ରିଜର୍ଭ ଟିକେଟଧାରୀ ପାସେଞ୍ଜରଙ୍କ ସ୍ଥାନରେ ବସି ଆଡ୍ଡା ଜମାନ୍ତି। ଆରମ୍ଭ ହୋଇଯାଏ ଖଇନିପର୍ବ। ଗାଡ଼ିର କଣ୍ଡକ୍ଟର ମଧ୍ୟ ସେମାନଙ୍କ ସହିତ ସାମିଲ୍ ହୋଇଯାନ୍ତି। କାହାରି କିଛି ପାଟି ଫିଟାଇବାର ଯୁ' ନଥାଏ। କଳାଲୋକଙ୍କ ପ୍ରତି ବିଦେଶରେ ଏକପ୍ରକାର ଘୃଣାଭାବ ଥାଏ ବୋଲି ଆଗରୁ ଆମର ଯାହା ଧାରଣା ଥିଲା, ମେଟ୍ରୋ ଟ୍ରେନରେ ଯାତ୍ରା କରିବା ସମୟରେ ତାହା କେତେ ପରିମାଣରେ ବଦଳିଗଲା।

ପନ୍ଦର ମିନିଟ୍ ପରେ ଆମ ଦଳପତି ପରବର୍ତ୍ତୀ ଷ୍ଟେସନ୍‌ରେ ଓହ୍ଲାଇବା ପାଇଁ ପ୍ରସ୍ତୁତ ହୋଇ ରହିବାକୁ ଆମକୁ ଇଙ୍ଗିତ ଦେବାସହିତ କେହି ଯେପରି ଟ୍ରେନ୍ ଭିତରେ ରହିନଯାନ୍ତି ସେଥିପ୍ରତି ସଜାଗ ରହିବାକୁ ପରାମର୍ଶ ଦେଲେ। ସେହି ଅନୁଯାୟୀ ଆମେ ଆମର ଗନ୍ତବ୍ୟ ଷ୍ଟେସନ୍‌ରେ ଓହ୍ଲାଇଗଲୁ।

# ବିଲାତ ଯାତ୍ରା

ପ୍ୟାରିସ୍ ଭ୍ରମଣ ପରେ ଆମର ଲଣ୍ଡନ ଯିବାର କାର୍ଯ୍ୟକ୍ରମ ଥିଲା। ଲଣ୍ଡନ ସହର ଦେଖିବାପାଇଁ ଦୀର୍ଘଦିନୁ ମନରେ ଏକ ଅହେତୁକ ନିଶା ଥିଲା। ଆଗେ ଲଣ୍ଡନ୍‌କୁ 'ବିଲାତ' ବୋଲି କୁହାଯାଉଥିଲା। ଯେଉଁମାନେ ଲଣ୍ଡନକୁ ପଢ଼ିବାକୁ ଯାଉଥିଲେ, ସେମାନଙ୍କୁ 'ବିଲାତଫେରନ୍ତା' ବୋଲି ଲୋକେ କହୁଥିଲେ। ଏ ଦୁଇଟି କଥା ପଛରେ କ'ଣ କାରଣ ରହିଥିଲା, ତାହା ଏବେ ବି ଅଜଣା ରହିଛି। କେବଳ ସେତିକି ନୁହେଁ, ଆମର ଗାଁ ଗହଳରେ ମୁଖ୍ୟପରିବା ଆଳୁ ଓ ଟମାଟୋକୁ ମଧ୍ୟ ଲୋକେ 'ବିଲାତିଆଳୁ' ଓ 'ବିଲାତିବାଇଗଣ' ବୋଲି କହନ୍ତି। ଭଲ କୁକୁରଟିଏ ଦେଖିଲେ ତାକୁ ବିଲାତି କୁକୁର ଭାବେ କହିଥାନ୍ତି। ଦେଶ ସ୍ୱାଧୀନ ହେବାର ଷାଠିଏ ବର୍ଷ ପରେ ବି ସେଇ ପୁରୁଣା କଥା ଏବେ ମଧ୍ୟ ଚାଲିଛି। ଆମେସବୁ ସ୍କୁଲ୍‌ରେ ପଢୁଥିଲାବେଳେ ଶୁଣିଥିଲୁ ଯେ, ଇଂରେଜ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଅନ୍ତିନାହିଁ। ସେ ବୟସରେ ଏପରି କଥାର ଅର୍ଥ ବୁଝିବା ଆମ୍ଭମାନଙ୍କ ପକ୍ଷରେ ସମ୍ଭବ ନଥିଲା। କିନ୍ତୁ ପରେ ହେତୁହେବାରୁ ବୁଝିଲୁ, ଏହି ସାମ୍ରାଜ୍ୟ ଏତେବଡ଼ ଥିଲା ଯେ ପୃଥିବୀର ଗୋଟିଏ ଅଂଶରେ ସୂର୍ଯ୍ୟ ଅସ୍ତ ହେବା ସମୟରେ ଅନ୍ୟ ଏକ ଅଂଶରେ ସୂର୍ଯ୍ୟ ଉଦୟ ହେଉଥିଲେ, ତେଣୁ ସେ ସାମ୍ରାଜ୍ୟରେ ସବୁବେଳେ ସୂର୍ଯ୍ୟ ଦେଖିବାକୁ ମିଳୁଥିଲା। ଇଂଲଣ୍ଡର ସରକାରୀ ନାମ ହେଉଛି "ୟୁନାଇଟେଡ୍ କିଙ୍ଗ୍‌ଡମ୍"। ଚାରୋଟି ରାଷ୍ଟ୍ର, ଇଂଲଣ୍ଡ, ସ୍କଟଲାଣ୍ଡ, ୱେଲସ୍, ଉତ୍ତର ଆୟର୍ଲାଣ୍ଡ୍‌କୁ ମିଶାଇ ଏହି ୟୁନାଇଟେଡ୍ କିଙ୍ଗ୍‌ଡମ୍ ଗଠିତ ହୋଇଛି। କର୍ପୂର ଉଡ଼ିଯାଇ ଖାଲି କନା ପଡ଼ିଲାଭଳି ଇଂଲଣ୍ଡର ପୂର୍ବ ଗରିମା କମିଥିଲେ ମଧ୍ୟ ପୃଥିବୀର ଅନ୍ୟତମ ସଭ୍ୟରାଷ୍ଟ୍ର ଭାବରେ ଇଂଲଣ୍ଡର ପ୍ରତିଷ୍ଠା ରହିଛି।

ଇଂରେଜ ଜାତି ଅଧିକ ବୁଦ୍ଧିଆ ଓ ପରିଶ୍ରମୀ ଭାବରେ ଜଣାଶୁଣା। ନିଜର କୌଶଳ ଖଟାଇ ସେମାନେ ପୃଥିବୀର ଅଧିକାଂଶ ଅଞ୍ଚଳକୁ କବ୍‌ଜା କରି ନେଇଥିଲେ। ଆମ ଦେଶ, ଭାରତବର୍ଷ ମଧ୍ୟ ସେମାନଙ୍କ କୌଶଳରୁ ବର୍ତ୍ତି ପାରିନଥିଲା। ପ୍ରଥମେ ସେମାନେ ଭାରତବର୍ଷକୁ ବଣିଜ କରିବାକୁ ଆସି କୌଶଳକ୍ରମେ ଆମ ଦେଶକୁ ଦଖଲ କରିନେଲେ ଏବଂ ଦୀର୍ଘ ତିନିଶହବର୍ଷରୁ ଅଧିକ କାଳ ଏ ଦେଶକୁ ଶାସନ କଲେ।

## ଜାହାଜରେ କାଲେରୁ ଡୋଭର୍

ପୂର୍ବଦିନ ପ୍ୟାରିସ୍ ସହରରେ ଯେତେ ସମୟ ବୁଲାବୁଲି ହୋଇଥିଲା, ଅନ୍ୟଦିନ ହୋଇଥିଲେ ସକାଳୁ ଉଠିବାରେ ନିଶ୍ଚିତଭାବରେ ବିଳମ୍ବ ହୋଇଥାନ୍ତା। କିନ୍ତୁ ଲଣ୍ଡନ ଯିବାର କାର୍ଯ୍ୟକ୍ରମ ଥିବାରୁ ସକାଳୁ ନିଦ ଭାଙ୍ଗିଗଲା। ଆମର କଥା ହୋଇଥିଲା ସାତଟା

ପୂର୍ବରୁ ନିତ୍ୟକର୍ମ ସାରି କୋଚ୍‌ରେ ବସିବା ପାଇଁ। ମାତ୍ର କୁକୁର ଲାଙ୍ଗୁଡ଼ ଯେତେ ସିଧା କଲେ ଯେଉଁ ବଙ୍କାକୁ ସେଇ ବଙ୍କା। ସକାଳୁ କାମ ସାରି ବ୍ରେକ୍‌ଫାଷ୍ଟ ଟେବୁଲ୍‌କୁ ଆସିଲାବେଳକୁ ପାଖାପାଖି ସାତଟା। କୋଚ୍ ଡ୍ରାଇଭରଙ୍କ ବାରମ୍ବାର ଘଣ୍ଟା ଦେଖା ଘଟଣା ଆମକୁ ଚଟକଣା ମାରିଲାଭଳି ଲାଗୁଥିଲା। ଯାହାହେଉ, କୌଣସିମତେ ପନ୍ଦର ମିନିଟ୍ ଭିତରେ ବ୍ରେକ୍‌ଫାଷ୍ଟ କାମ ସାରି ବ୍ୟାଗେଜ୍ ଧରି କୋଚ୍‌ରେ ବସିଲୁ। ଗାଡ଼ି ଛାଡ଼ିଲାବେଳକୁ ସାଢ଼େସାତଟା ବାଜିଯାଇଥିଲା।

ପ୍ୟାରିସ୍ ସହରରୁ ଆମ କୋଚ୍ ଚାଲିଲା କାଲେ ସହର ଅଭିମୁଖେ। କାଲେ ଗୋଟିଏ ଛୋଟିଆ ସହର ହେଲେ ବି କୋଳାହଳମୟ ଥିଲା; କାରଣ ଯେଉଁମାନେ ଜାହଜରେ ଇଂଲିଶ୍ ଚାନେଲ୍ ପାରିହୋଇ ଲଣ୍ଡନ ଯାଆନ୍ତି, ସେମାନଙ୍କୁ ଏଇ କାଲେ ସହର ବାଟେ ହିଁ ଯିବାକୁ ପଡ଼ିଥାଏ। କାଲେରୁ ଲଣ୍ଡନର ପ୍ରବେଶପଥ ଭାବରେ ଜଣାଶୁଣା। ଡୋଭର୍‌କୁ ଯିବାକୁ ହେଲେ ତିନୋଟି ମାଧ୍ୟମରେ ଯାଇହେଉଥିଲା। ପ୍ରଥମଟି ହେଉଛି 'ହୋଭରକ୍ରାଫ୍ଟ'। ଏହି ଯନ୍ତ୍ରଟି ପାଣି ଉପରେ ଅତି ଦ୍ରୁତଗତିରେ ଚାଲେ। ବ୍ରିଟିଶ ଚାନେଲ୍ ପାରିହେବାକୁ ହୋଭରକ୍ରାଫ୍ଟକୁ ମାତ୍ର ଘଣ୍ଟାଏ ସମୟ ଲାଗେ। ଦ୍ୱିତୀୟ ମାର୍ଗଟି ହେଉଛି ଦ୍ରୁତଗାମୀ ଜାହାଜ, ଯାହାକି ଚାରିଘଣ୍ଟା ମଧ୍ୟରେ ଦୀର୍ଘ ଚାନେଲ୍‌ଟିକୁ ପାର ହୋଇପାରେ। ଶେଷ ମାଧ୍ୟମଟି ହେଉଛି ଓଭରନାଇଟ୍ ସିପ୍ ଜର୍ଣ୍ଣି, ଅର୍ଥାତ୍ ରାତିରେ କାଲେ ସହରରେ ଜାହାଜ ଚଢ଼ିଲେ ଆଠଘଣ୍ଟାରେ ଡୋଭର୍ ଉପକଣ୍ଠରେ ପହଞ୍ଚି ହେଉଥିଲା। ଆମର ଚାରିଘଣ୍ଟିଆ ଜାହାଜରେ ଆଗରୁ ସିଟ୍ ରିଜର୍ଭେସନ୍ କରାଯାଇଥିଲା।

ପୂର୍ବ ଚୁକ୍ତି ମୁତାବକ କାଲେ ସହରରେ ପହଞ୍ଚିବା ପରେ ଦୀର୍ଘଦିନ ଧରି ଆମ ସହିତ ଥିବା କୋଚ୍ ଡ୍ରାଇଭର୍ ଟମ୍‌ଙ୍କ ଡିଉଟି ସରିଗଲା। 'ସୀତା ଟ୍ରାଭେଲ୍‌ସ' ପକ୍ଷରୁ ସେ ନିଯୁକ୍ତ ହୋଇଥିଲେ ହେଁ ଗତ କେତେଦିନର ଯାତ୍ରା ଭିତରେ ତା' ସହିତ ଆମର ଏକପ୍ରକାର ଆତ୍ମୀୟତା ଜମିଯାଇଥିଲା। ସେ ପ୍ୟାରିସ୍ ଅଧିବାସୀ ଆଉ ଆମେସବୁ ଭାରତବର୍ଷର ବିଭିନ୍ନ ରାଜ୍ୟର ବାସିନ୍ଦା; କିନ୍ତୁ କେଜାଣି କାହିଁକି ସେ ଆମ ଭିତରୁ ଜଣେ ବୋଲି ଆମେ ଧରିନେଇଥିଲୁ। ବିଶେଷ କରି ତା'ର ସମୟାନୁବର୍ତ୍ତିତା ଏବଂ ଭଦ୍ର ଓ ନମ୍ର ବ୍ୟବହାରରେ ସେ ଆମ ମନକୁ କିଣିନେଇଥିଲେ। କୋଚ୍‌ରୁ ବ୍ୟାଗେଜ୍‌ସବୁ କାଢ଼ି ବାହାରେ ରଖି ସେ ଯେତେବେଳେ ଆମ ପାଖରୁ ବିଦାୟ ନେବାପାଇଁ ଆସିଲେ, ଆମ ସମସ୍ତଙ୍କ ଆଖି ଛଳଛଳ ହୋଇଗଲା।

ମୋର ସେତିକିବେଳେ ଆମରାଜ୍ୟର ବସ୍ ଡ୍ରାଇଭର୍ ଓ କଣ୍ଡକ୍ଟର୍‌ମାନଙ୍କ ବ୍ୟବହାର ସମ୍ପର୍କରେ ମନେପଡ଼ିଥିଲା। ଯେତେ କହିଲେ ମଧ୍ୟ ଠିକ୍ ସମୟରେ ଯିବା ଆସିବା କରିବା ସେମାନଙ୍କର ଜାତକରେ ନଥାଏ। ଅଧଘଣ୍ଟା ଡେରିକୁ ସେମାନେ ଡେରି ବୋଲି ଭାବନ୍ତି ନାହିଁ। ସତେଯେପରି ସମୟର କିଛି ମୂଲ୍ୟ ନାହିଁ। ସରକାରୀ ହେଉ ବା ଘରୋଇ ହେଉ,

ଡ୍ରାଇଭର୍ ଓ କଣ୍ଡକ୍ଟର୍‌ମାନଙ୍କର କି ପ୍ରକାର ଅସଭ୍ୟ ଆଚରଣ; ଏ ସଂସାରରେ ସେମାନଙ୍କ ଗୋଷ୍ଠୀ ବ୍ୟତୀତ ଆଉ ଯେ ଏକ ଭଦ୍ରସମାଜ ରହିଛି, ସେ ସମ୍ପର୍କରେ ସେମାନେ ସମ୍ପୂର୍ଣ୍ଣ ଅଜ୍ଞ ଥିଲାଭଳି ମନେହୁଏ। କଟକରୁ ଭୁବନେଶ୍ୱର ମାତ୍ର ପଚିଶି କିଲୋମିଟର ଯିବା ଭିତରେ ସେମାନଙ୍କ ଦୌରାତ୍ମ୍ୟରେ ଅସ୍ଥିର ହେବାକୁ ପଡ଼ିଥାଏ। ଆଉ ଟ୍ୟାକ୍ସି ଡ୍ରାଇଭରଙ୍କ ସମ୍ପର୍କରେ ନ କହିବା ଭଲ; କାରଣ ଟଙ୍କା ଦେଇ ଚୋରାରେ 'ଲାଇସେନ୍ସ' ନାମକ ଏକ ସାର୍ଟିଫିକେଟ୍ ହାସଲ୍ କରିଦେଲେ ସେମାନେ ଧରାକୁ ସରା ମନେକରନ୍ତି। ସକାଳୁ ଆଠଟା ବେଳକୁ ଆସିବା ପାଇଁ ଗାଡ଼ି ବୁକ୍ କରିଥିଲେ ଆସି ପହଞ୍ଚନ୍ତି ପ୍ରାୟ ଘଣ୍ଟାଏ ବିଳମ୍ବରେ। ପଚାରିଲେ ନାନାପ୍ରକାର ଛଳନା ଓ ଯୁକ୍ତି। ଅଧିକାଂଶ ଡ୍ରାଇଭର୍ ସେମାନଙ୍କ ଓଦା ଲୁଙ୍ଗି, ଗାମୁଛା କାର୍‌ର ବନେଟ୍ ଉପରେ ପକାଇ ଆଗ ସିଟ୍ ଉପରେ ଗୋଡ଼ପକାଇ ଶୋଇପଡ଼ନ୍ତି। ଭଦ୍ର ବ୍ୟବହାର ସେମାନଙ୍କଠାରୁ ଆଶା କରିବା ବୃଥା। ସନ୍ଧ୍ୟା ପରେ ସେମାନଙ୍କ ଗାଡ଼ିରେ ଯିବା ଅନେକ ସମୟରେ ଆତଙ୍କର କାରଣ ହୋଇଥାଏ।

ଆମେ ଆଗରୁ ସ୍ଥିର କରିଥିଲୁ ଯାତ୍ରା ଶେଷରେ କୋଚ୍ ଡ୍ରାଇଭର୍‌କୁ କିଛି ଟିପ୍ସ୍ ଦେବାକୁ ଏବଂ ସେଥିପାଇଁ ପ୍ରତ୍ୟେକ ପାଞ୍ଚ ଡଲାର ଲେଖାଏଁ ଦାନ କରିଥିଲୁ। ସେ ଆମକୁ ଆସି ଗୁଡ୍‌ବାଏ କହିଲାବେଳେ ଆମେ ଧନ୍ୟବାଦ ଜଣାଇବା ସହ ବିକ୍ରମବାବୁ ତାଙ୍କୁ ଶହେ ଡଲାରର ପ୍ୟାକେଟ୍‌ଟିଏ ଧରାଇଦେଲେ। ସେ ପ୍ରଥମେ ତାକୁ ଗ୍ରହଣ କରିବାକୁ ରାଜି ହେଉନଥିଲେ। ତାଙ୍କ ଯୁକ୍ତି ଥିଲା, ଯଦି ଆମ ଭଳି ବିଦେଶାଗତ ପର୍ଯ୍ୟଟକଙ୍କୁ ସାମାନ୍ୟ ଖୁସି କରିବାରେ ସେ କିଛିଟା ସହାୟକ ହୋଇଛନ୍ତି, ତେବେ ସେଇଟା ହେଉଛି ତାଙ୍କ ପାଇଁ ଶ୍ରେଷ୍ଠ ପୁରସ୍କାର। ଏଇ କଥାରେ ତାଙ୍କ ମନରେ ଥିବା ସ୍ୱାଭିମାନକୁ ଆମେ ବେଶ୍ ବୁଝିପାରିଥିଲୁ। ଶେଷରେ ସେ ଆମ ଅନୁରୋଧକୁ ରକ୍ଷା କରି ପ୍ୟାକେଟ୍‌ଟିକୁ ଗ୍ରହଣ କଲେ ଏବଂ ସମସ୍ତଙ୍କୁ ଆଉଥରେ ଧନ୍ୟବାଦ ଜଣାଇ କୋଚ୍ ବୁଲାଇ ଆମ ପାଖରୁ ବିଦାୟ ନେଇ ଚାଲିଗଲେ।

ସେତେବେଳକୁ ସ୍ଥାନୀୟ ସମୟ ଏଗାରଟା ବାଜିଥିଲା। ବାରଟାବେଳକୁ ଜାହାଜ ଛାଡ଼ିବା କଥା। ହାତରେ ଘଣ୍ଟାଏ ସମୟ ଥିଲା। ତେଣୁ ଗୋଟିଏ ଜାଗାରେ ବ୍ୟାଗେଜ୍ ରଖିଦେଇ ଆମେ ସବୁ ବୁଲାବୁଲି କରିବାକୁ ଗଲୁ। ମୁଁ, ଆଉଜଣେ ବନ୍ଧୁ ସେଠାରେ ଥିବା କାଫେଟେରିଆର ଉପରମହଲାକୁ ଚାଲିଗଲୁ। ଉଦ୍ଦେଶ୍ୟ କିଛି ସ୍ନାକ୍ସ ଖାଇ ସମୟ କଟାଇବା। ଆମେ କାଉଣ୍ଟରରୁ ଦୁଇଟି ପଟାଟୋ ଚିପ୍ସ୍ ପ୍ଲେଟ୍ ନେଇ ପାଖ ଟେବୁଲ୍ ନିକଟକୁ ଗଲାବେଳେ ଯାହା ଦେଖିଲୁ ସେଥିରେ ଆଖି ତରାଟି ହୋଇଗଲା। ପାଖ ଟେବୁଲ୍‌ରେ ଜଣେ ଯୁବକ ଓ ଜଣେ ଯୁବତୀ କପୋତକପୋତୀଭଳି ଲଗାଲଗି ହୋଇ ବସିଥିଲେ। ସାମନାରେ ଥୁଆହୋଇଥିବା କଫିରୁ ବାମ୍ଫ ବାହାରିଯାଇ ଥଣ୍ଡା ହୋଇସାରିଥିଲେ ହେଁ ସେଥିପ୍ରତି ସେମାନଙ୍କର ନଜର ନଥିଲା। ପରସ୍ପରକୁ ଆଲିଙ୍ଗନ ଓ ଘନଘନ ଚୁମ୍ବନ

ୋ ଃ ସେମାନେ ବିଭୋର ଥିଲେ। ପାଖରେ କିଏ ଗଲା, ଆସିଲା ସେଥିପ୍ରତି ସେ ଙ୍କର ଝ ତିର୍ ନଥିଲା। ପରସ୍ପର ପ୍ରତି ଅଘୋର ପ୍ରୀତିରେ ସେମାନେ ନିମଗ୍ନ ଥିଲେ।

ବିଦେଶ ରାଷ୍ଟ୍ର ଭ୍ରମଣରେ ଯାଇଥିଲେ ମଧ୍ୟ ଏପରି ଦୃଶ୍ୟ କେମିତି ଅଡୁଆ ଅଡୁଆ ଲାଗିଲା; କାରଣ ଆମ ଦେଶ ଓ ରାଜ୍ୟର ଚଳଣି ଓ ରୀତିନୀତିସବୁ ଅଲଗା। ଘରେ ମୁରବିମାନେ ନ ଶୋଇଲେ ସ୍ୱାମୀ-ସ୍ତ୍ରୀ ଏକାଠି ହେବାର ବ୍ୟବସ୍ଥା ଆଗେ ଆମ୍ଭମାନଙ୍କ ପରିବାରରେ ଚଳୁନଥିଲା। ଏହାକୁ କେହି କେହି ମରହଟିଆ କହିଲେ ବି ସେସବୁ ଚଳଣିରେ ଆନନ୍ଦ ଥିଲା। ଜାହାଜରେ ଚଢ଼ିବା ସମୟ ହେବାରୁ ସାଇରନ୍ ଭଳି ଏକ ଶବ୍ଦ ହେଲା। ଆମେସବୁ ସଚେତନ ହୋଇ ନିଜନିଜ ବ୍ୟାଗେଜ୍ ଉଠାଇ ଜାହାଜ ଅଭିମୁଖେ ଚାଲିଲୁ। ମାତ୍ର ଏ କ'ଣ ? ଦୋମହଲା ଘରର ଉଚ୍ଚ ଉପରକୁ ଚଢ଼ିଲେ ଯାଇ ଜାହାଜରେ ବସିହେବ। ତା' ଉପରକୁ ଯେଉଁ ଶିଡ଼ି ଲମ୍ବିଥିଲା ସେଥିରେ ଥିଲା ଚାଳିଶିଟା ପାହାଚ। ହାତରେ ବ୍ୟାଗେଜ୍ ଧରି ଏତେଗୁଡ଼ାଏ ପାହାଚ ଚଢ଼ି ଆମେସବୁ ଧଇଁସଇଁ ହୋଇଗଲୁ।

ଠିକ୍ ବାରଟାବେଳେ ଆମ ଜାହାଜ କାଲେ ଉପକୂଳ ଛାଡ଼ିଲା। ଜାହାଜ ଛାଡ଼ିଲାବେଳେ ପ୍ରଥମେ ମୁଣ୍ଡବୁଲାଇଲା ଭଳି ଲାଗିଲା, ମାତ୍ର କିଛି ସମୟ ପରେ ସବୁ ଠିକ୍ ହୋଇଗଲା। ପ୍ରଥମେ ପରିଚାରିକା ଆମକୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଡ୍ରିଙ୍କ୍ସ୍ ଆଣି ଦେଲେ। ଆମଭିତରୁ ଯେଉଁମାନେ ସୁରାପାନ କରୁଥିଲେ, ସେମାନଙ୍କ ଖୁସି କାହିଁରେ କ'ଣ। ସତେଯେପରି ସ୍ୱର୍ଗ ଆଉ ଦି'ଆଙ୍ଗୁଳ। ଆମେ କେଇଜଣ ସଫ୍ଟଡ୍ରିଙ୍କ୍ ନେଇ ଆରାମରେ ବସି କିଛି ମାଗାଜିନ୍ ଉପରେ ଆଖି ପକାଇଲୁ। ମାଗାଜିନ୍ ପୃଷ୍ଠା ଓଲଟାଉ ଓଲଟାଉ ଇଂଲିଶ୍ ଚାନେଲ୍‌ର ଇତିବୃତ୍ତ ଲେଖାଥିବା ବିଷୟ ଉପରେ ଆଖି ଲାଖିଗଲା। ସେଥିରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଆନ୍ତର୍ଜାତିକ ସନ୍ତରଣକାରୀ ମିହିର ସେନ୍‌ଙ୍କ କଥା ଉଲ୍ଲେଖ ଥିଲା। ସେଇ ଲେଖାରେ ମିହିର ସେନ୍ କିଭଳି ବିପଦଶଙ୍କୁଳ ଇଂଲିଶ୍ ଚାନେଲ୍‌କୁ ସନ୍ତରଣ କରି ପାର ହୋଇ ଏକ ବିରଳ ରେକର୍ଡ ସ୍ଥାପନ କରିଥିଲେ ସେ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା ଥିଲା। ମୁଁ ସେ ଲେଖାଟି ପଢୁପଢୁ ଆତ୍ମବିଭୋର ହୋଇଯାଇଥିଲି; କାରଣ ମିହିର ସେନ୍ ଥିଲେ ମୁଁ ବାସ କରୁଥିବା କଟକ ସହରର ବାସିନ୍ଦା। ତାଙ୍କ ଘର କାଳୀଗଳିରେ। ପିଲାଦିନେ ସେ କଲେଜିଏଟ୍ ସ୍କୁଲ୍‌ରେ ପଢୁଥିଲେ। କଟକ ସହରର ପାଣିପବନରେ ତାଙ୍କ ପିଲାଦିନ କଟିଥିଲା। ବାଲ୍ୟାବସ୍ଥାରୁ ସନ୍ତରଣରେ ତାଙ୍କର ଆଗ୍ରହ ଥିଲା; ମାତ୍ର ଦିନେ ସେ ଯେ ମଗର, ସାଙ୍କୁଚ ପରିପୂର୍ଣ୍ଣ ଇଂଲିଶ ଚାନେଲ୍‌କୁ ପହଁରି ପାର ହୋଇଯିବେ, ତାହା କଳ୍ପନା ବାହାରେ ଥିଲା।

ମୋର ଅନ୍ୟମନସ୍କ ଭାବକୁ ଲକ୍ଷ୍ୟ କରି ଲକ୍ଷ୍ନୌର ବନ୍ଧୁ ବହୁଗୁଣା କହିଲେ, "କ୍ୟା ଦାସ୍ ସାହେବ ! ଆପ୍ କିସ୍ ସୋଚ୍ ମେ ପଡ଼୍‌ଗଏ ? ଆପ୍‌କୋ ୟେ ଚାନେଲ୍ କା ସିନେରୀ ଅଚ୍ଛା ନହିଁ ଲଗତା କ୍ୟା ?" ମୁଁ ତାଙ୍କୁ କହିଥିଲି, "ଏ ଯେଉଁ ଚାନେଲ୍ ବିଷୟ

ଆପଣ କହୁଛନ୍ତି, ତାଙ୍କୁ ଦିନେ ଆମ କଟକ ସହରର ଜଣେ ବୀରସନ୍ତାନ ସନ୍ତରଣ କରି ଏକ ବିରଳ ରେକର୍ଡ ପ୍ରତିଷ୍ଠା କରିଥିଲେ। ଏ ମ୍ୟାଗାଜିନ୍‌ରେ ତାଙ୍କରି କଥା ପ୍ରକାଶ ପାଇଛି।" ମୋ କଥାକୁ ସେ ପ୍ରଥମେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ। କିନ୍ତୁ ଯେତେବେଳେ ତାଙ୍କୁ ସେ ମ୍ୟାଗାଜିନ୍‌ଟି ଦେଖାଇଲି, ସେ ତଟସ୍ଥ ହୋଇଗଲେ। କଟକ ସହରର ଜଣେ ସାଧାରଣ ବ୍ୟକ୍ତି କିଭଳି କେଉଁ ପରିସ୍ଥିତିରେ ଇଂଲିଶ୍ ଚାନେଲ୍ ପାରିହେବା ପାଇଁ ନିଜକୁ ପ୍ରସ୍ତୁତ କଲେ ଓ ଶେଷରେ ସେଥିରେ ସଫଳତା ହାସଲ କଲେ, ତାହା କେବଳ ବହୁଗୁଣାଙ୍କୁ ନୁହେଁ, ଆମ ଟିମ୍‌ର ଅଧିକାଂଶ ସଦସ୍ୟଙ୍କୁ ସେଦିନ ଚକିତ କରିଥିଲା।

ଡୋଭର୍ ଯେତିକି ପାଖେଇଆସୁଥିଲା, ମନର ଉଦ୍‌ବେଗ ସେହି ପରିମାଣରେ ବୃଦ୍ଧି ପାଉଥିଲା। ବିଲାତ ମାଟିରେ ପାଦଦେବା କଥା ଭାବି ମନରେ ଏକ ଶିହରଣ ମଧ୍ୟ ସୃଷ୍ଟି ହେଉଥିଲା। ଏଇ ସମୟରେ ଜାହାଜରେ ଲାଗିଥିବା ମାଇକ୍ରୋଫୋନ୍‌ରୁ ଏକ ସୂଚନା ମିଳିଲା। ସେଥିରେ କୁହାଯାଇଥିଲା ଯେ, "ଆଉ ଅଳ୍ପସମୟ ମଧ୍ୟରେ ଆମ୍ଭମାନଙ୍କୁ ନେଇ ଯାଉଥିବା ଜାହାଜଟି ଡୋଭର୍ କୂଳରେ ଲଙ୍ଗର ପକାଇବ। ଯାତ୍ରୀମାନେ ଦୟାକରି ନିଜନିଜର ବ୍ୟାଗେଜ୍ ଧରି ସୁରୁଖୁରୁରେ ଓହ୍ଲାଇ ଗନ୍ତବ୍ୟ ପଥରେ ଯାଆନ୍ତୁ। ଆଶା କରାଯାଏ, ଯାତ୍ରୀମାନଙ୍କର ଏହି ଯାତ୍ରା ଉପଭୋଗ୍ୟ ହୋଇଥିବ।" ଏହି ସୂଚନା ପାଇବା ପରେ ଆମେସବୁ ଓହ୍ଲାଇବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ରହିଲୁ।

ପ୍ରଥମେ ଜାହାଜରେ ଚଢ଼ିଲାବେଳେ ମନ ଭିତରେ ଯେଉଁ ଦୁଶ୍ଚିନ୍ତା ଥିଲା, ତାହା ଆପେ ଆପେ ଉଭେଇ ଯାଇଥିଲା। ଚାରିଘଣ୍ଟା ସମୟ କେମିତି କଟିଗଲା ଜଣାପଡ଼ିଲା ନାହିଁ। ଜାହାଜଟି ସାଇରନ୍ ବଜାଇ ଯେତେବେଳେ ଡୋଭର୍ ଉପକୂଳରେ ଲଙ୍ଗର ପକାଇଲା, ଆମ୍ଭମାନଙ୍କର ଆନନ୍ଦର ସୀମା ରହିଲା ନାହିଁ। ମୁଁ ଭାବିଥିଲି ଜୀବନର ଏପରି ଏକ ମୁହୂର୍ତ୍ତରେ କେବଳ ମୋ ମନ ଆନନ୍ଦରେ ଭରିଯାଉଛି; କିନ୍ତୁ ଯାହା ଦେଖିଲି ଜଣା ଅଧିକେ ସମସ୍ତେ ଅନନ୍ଦରେ ବିଭୋର ହୋଇଯାଇଥିଲେ। ଖାଦ୍ୟପେୟ, ଭାଷାରେ ବିଭେଦତା ସତ୍ତ୍ୱେ ସବୁ ଭାରତୀୟଙ୍କର ଜୀବନଦର୍ଶନ ଯେ ପ୍ରାୟ ଏକପ୍ରକାରର, ସେଦିନ ମୁଁ ସେକଥା ବୁଝିପାରିଥିଲି।

ଜାହାଜର ଇଞ୍ଜିନ୍ ବନ୍ଦ୍ ହେବା ପରେ ସବୁ ଯାତ୍ରୀ ଚଳଚଞ୍ଚଳ ହୋଇଉଠିଲେ ଏବଂ ନିଜନିଜ ବ୍ୟାଗେଜ୍ ଧରି ଲାଇନ୍‌ରେ ବାହାରକୁ ଯିବା ଆରମ୍ଭ କଲେ। ଆମେ ମଧ୍ୟ ସେମାନଙ୍କୁ ଅନୁସରଣ କରି ଲାଇନ୍‌ରେ ଚାଲିଲୁ। ସେଥିପାଇଁ କେହି ଆମକୁ କହିବାକୁ ପଡ଼ିନଥିଲା। ତା'ଛଡ଼ା ନିଜ ବ୍ୟାଗେଜ୍ ଧରିବାରେ କାହାରି ମନରେ କିଛି କୁଣ୍ଠାବୋଧ ମଧ୍ୟ ନଥିଲା। ସେଥିପାଇଁ କେହି ନିଜକୁ ସାନବୋଲି ମନେକରୁନଥିଲେ। କିନ୍ତୁ ଆମ ଦେଶରେ, ବିଶେଷ କରି ଆମ ରାଜ୍ୟରେ ନକଲି ସାହେବମାନେ କିପରି ନିଜ ବ୍ୟାଗ୍ ଧରିବାକୁ ଆତ୍ମସମ୍ମାନ ପ୍ରତି ଆଞ୍ଚ ବୋଲି ବିଚାରିଥାନ୍ତି ସେକଥା ମୋର ମନେପଡ଼ିଗଲା।

ସଚିବାଳୟରେ କିପରି ଅଧିକାଂଶ ସଚିବ ମଧ୍ୟାହ୍ନଭୋଜନ ପାଇଁ ଘରକୁ ଚାଲିବେଧେ ଘଣ୍ଟି ବଜାଇ ଜମାଦାରକୁ ହାଲୁକା ଆଟାଚିଟିକୁ ଗାଡ଼ିରେ ରଖିବାପାଇଁ ଇଙ୍ଗିତ ଦେବାସହିତ ଚାଡ଼ି ଏପ୍ଟ ପାଖରେ ଲଗାଇବାକୁ ଡ୍ରାଇଭରକୁ କହିବା ପାଇଁ ହୁକୁମ୍ ଦିଅନ୍ତି, ସେ ଦୃଶ୍ୟସବୁ ଆଖିଆଗରେ ଭାସିଉଠିଲା । ଅଧିକାଂଶ ଅଫିସର୍ ବ୍ରିଫକେସ୍‌ଟିକୁ କାହିଁକି ଅଫିସ୍‌କୁ ଆଣନ୍ତି ସେକଥା ସହଜରେ ବୁଝି ହୁଏନାହିଁ । ବୋଧହୁଏ ହୀନମ୍ମନ୍ୟତାର ଶିକାର ହୋଇଥିବା ଅଫିସର୍‌ମାନେ ସେଥିରୁ ମୁକୁଳିବା ପାଇଁ ଅନ୍ୟ ଉପରେ ହାକିମପଣିଆ ଦେଖାଇବା ଢଙ୍ଗ ଏହା ଏକ ମାଧ୍ୟମ ହୋଇଥାଇପାରେ ।

ଡୋଭର୍‌ରେ ଜାହାଜ ଲାଗୁ ଲାଗୁ ଗୋରା ଯାତ୍ରୀମାନେ ଆଗ ଓହ୍ଲାଇପଡ଼ିଲେ, ପଛରେ ଆମେ ଓହ୍ଲାଇଲୁ । ସୀତା ଟ୍ରାଭେଲ୍‌ସ ପକ୍ଷରୁ ଆଗରୁ ଆମପାଇଁ ସବୁ ବନ୍ଦୋବସ୍ତ କରାଯାଇଥିଲା । କୋଚ୍ ସହିତ ଗାଇଡ୍ ଆମକୁ ଅପେକ୍ଷା କରି ରହିଥିଲେ । ଗାଇଡ୍ ଲୁସି ମଧ୍ୟବୟସ୍କା, ବେଶ୍ ଡଉଲଡାଉଲ ଚେହେରା । ଅନ୍ୟକୁ ଆକର୍ଷଣ କଲାଭଳି ସମସ୍ତ ବିଭବ ତାଙ୍କ ଚେହେରାରେ ଭରିରହିଥିଲା । ମୁଁ ସେତେବେଳେ ଭାବୁଥିଲି, ସତରେ କ'ଣ ବିଲାତରେ ପହଞ୍ଚିଯାଇଛୁ ? ତେବେ କ'ଣ ଜୀବନର ଏକ ସ୍ୱପ୍ନ ଆଜି ସତରେ ସାର୍ଥକ ହେଲା ? ପିଲାଦିନେ ବିଲାତ ବିଷୟରେ ବହୁ କଥା ଶୁଣିଥିଲି । କେତେକଙ୍କ ଦ୍ୱାରା ଲେଖାଯାଇଥିବା ଭ୍ରମଣକାହାଣୀ ମଧ୍ୟ ପଢ଼ିବାର ସୁଯୋଗ ମିଳିଥିଲା । ହେଲେ ନିଜେ ଯେ ଦିନେ ବିଲାତମାଟିରେ ପାଦ ଦେବି, ସେ ବିଶ୍ୱାସ ନଥିଲା ।

## ଲଣ୍ଡନ ସହରରେ ପ୍ରଥମ ଅଭିଜ୍ଞତା

ଆମେ ବ୍ୟାଗେଜ୍ ଧରି କୋଚ୍ ନିକଟରେ ପହଞ୍ଚିବା ପରେ ଲୁସି ଆମ ସହିତ ସ୍ମିତହାସ୍ୟରେ "ହାଓ ଡୁ ୟୁ ଡୁ" କହି ହାଣ୍ଡସେକ୍ କଲେ । କୋଚ୍‌ରେ ବସିବାମାତ୍ରେ ସେ ସଂକ୍ଷେପରେ ଆମର ଲଣ୍ଡନ ସହରର କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଲେ । ସେଥି ସହିତ ସେ ଖୁବ୍ ନମ୍ରତାର ସହିତ ଆମକୁ ଚେତେଇ ଦେଇଥିଲେ ଯେ, ଲଣ୍ଡନ୍ ସହରରେ ସମୟାନୁବର୍ତ୍ତିତା ଉପରେ ଖୁବ୍ ଗୁରୁତ୍ୱ ଦିଆଯାଏ । ସାମାନ୍ୟ ବିଳମ୍ବକୁ ସେ ଦେଶର ଲୋକେ ପସନ୍ଦ କରିନଥାନ୍ତି । ତା'ଛଡ଼ା ପ୍ରତ୍ୟେକ ମିନିଟ୍‌ର ମୂଲ୍ୟ ଅଛି, ତାହା ଯେପରି ବରବାଦ୍ ନହୁଏ ସେକଥା ମଧ୍ୟ ସେ ସୂଚାଇଥିଲେ ।

ଆଗରୁ ଅକ୍ସଫୋର୍ଡ ଷ୍ଟ୍ରୀଟ୍‌ରେ ଏକ ମର୍ଯ୍ୟାଦାପୂର୍ଣ୍ଣ ହୋଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଲୁସିଙ୍କ ଇଙ୍ଗିତରେ କୋଚ୍ ଡ୍ରାଇଭର୍ ଅଳ୍ପସମୟ ଭିତରେ ଆମକୁ ନେଇ ନିର୍ଦ୍ଦିଷ୍ଟ ହୋଟେଲ ସାମନାରେ ପହଞ୍ଚାଇଦେଲେ । ହୋଟେଲରେ କିଏ କେଉଁ ରୁମ୍‌ରେ ରହିବେ, ସେକଥା ଆଗରୁ ଠିକ୍ ହୋଇଥିବାରୁ କିଛି ଅସୁବିଧା ହେଲାନାହିଁ ।

କୋଚ୍‌ରୁ ଓହ୍ଲାଇଲାବେଳେ ଆମେ ଭାବିଥିଲୁ ସେଠାରେ ଥିବା ଗାର୍ଡ ଆମକୁ ସଲାମ୍ ଦେଇ ଆମ ଜିନିଷପତ୍ରକୁ ବୋହିନେଇ ରୁମ୍‌ରେ ରଖିଦେବ; କାରଣ ଆମର ଏଠି ସାମାନ୍ୟ କେଇଟା ଟଙ୍କା ପାଇଁ ଆଟାଚି ଉଠାଇବାକୁ ରୁମ୍‌ବୟ ଓ ସିକ୍ୟୁରିଟି ଗାର୍ଡମାନଙ୍କ ମଧ୍ୟରେ ଏକପ୍ରକାର ପ୍ରତିଯୋଗିତା ଆରମ୍ଭ ହୋଇଥାଏ। ମାତ୍ର ସେ ଦେଶର ଚାଲିଚଳଣ, ସଂସ୍କୃତିସବୁ ଅଲଗା। ସେଠାରେ କୌଣସି କାମକୁ କେହି ଘୃଣା କରନ୍ତି ନାହିଁ। ଧନୀ ହେଉ କି ଗରିବ ହେଉ, ସମସ୍ତେ ନିଜ କାମ ନିଜେ କରନ୍ତି, ଆଉ ଯେଉଁ କ୍ଷେତ୍ରରେ ଅନ୍ୟର ସାହାଯ୍ୟ ଆବଶ୍ୟକ ପଡ଼େ, ସେଥିପାଇଁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଥାଏ। ଆମର ଭାଗ୍ୟ ଭଲ, ଆମ ଗାଇଡ୍ ଆମକୁ ସେ ସମ୍ପର୍କରେ ଆଗରୁ ସବୁକଥା କହିଦେଇଥିଲେ।

ହୋଟେଲର ଅଭ୍ୟର୍ଥନା କକ୍ଷ ବେଶ୍ ପ୍ରଶସ୍ତ ଥିଲା। ଆମେ ସେଠାରେ ପହଞ୍ଚିବା ମାତ୍ରେ ଅଭ୍ୟର୍ଥନାକାରିଣୀ ହସି ହସି ଆମକୁ ସ୍ୱାଗତ କଲେ। ଆମକୁ ସେଠାରେ କିଛିସମୟ ବସିବାପାଇଁ ଅନୁରୋଧ କରି ଲୁସି  କିଛି ସମୟ ପାଇଁ ରିସେପ୍‌ସନ୍ କାଉଣ୍ଟର୍‌କୁ ଚାଲିଗଲେ। ସମ୍ମିଳନୀକକ୍ଷର ଗୋଟିଏ କୋଣରେ ଗୋଟିଏ ମେସିନ୍ ଲାଗିଥିଲା। ସେଥିରେ ଲାଗିଥିବା ସ୍ୱିଚ୍ ଦବାଇଲେ ପ୍ରଥମେ ଗୋଟିଏ ଗିଲାସ ଓ ପରେ ବିଭିନ୍ନ କିସମର ପାନୀୟ ବାହାରୁଥିଲା। ଆମ ଭିତରୁ ଅନେକେ ସେପରି ବ୍ୟବସ୍ଥା ସହିତ ପରିଚିତ ନ ଥିଲେ; କାରଣ ଆମ ହୋଟେଲମାନଙ୍କରେ ଘଣ୍ଟି ବଜାଇଲେ ସବୁକଥା ଆମ ପାଖରେ ପହଞ୍ଚିଯାଏ। ନିଜେ କାଉଣ୍ଟର୍‌ରୁ ଜିନିଷ ଆଣି ଖାଇବା କିମ୍ବା ପିଇବାରେ ଆମେ ଅଭ୍ୟସ୍ତ ନୋହୁ। କିନ୍ତୁ କ'ଣ କରାଯିବ ? ଯାହା କୁହାଯାଏ, "ଯେ ଦେଶ ଯାଇ, ସେ ଫଳ ଖାଇ"। ସେଇ ନୀତିରେ ଆମେ ଯାଇ ନିଜନିଜ ରୁଚିର ପାନୀୟ ଆଣି ଲନ୍‌ରେ ବସିଲୁ। ଲୁସି କିଛିସମୟ ପରେ ଗୋଟିଏ ଗ୍ଲାସ୍‌ରେ ବିଅର୍ ଧରି ଆମ ପାଖକୁ ଆସିଲେ। ଆମେ କିଛି ପଚାରିବା ପୂର୍ବରୁ ସେ କହିଲେ, "ଆଜ୍ଞା କ୍ଷମା କରିବେ; ଆମର ଥଣ୍ଡା ଦେଶ ହୋଇଥିବାରୁ ଲୋକେ ସାଧାରଣତଃ ମୃଦୁପାନୀୟ ନେଇନଥାନ୍ତି। ସେମାନଙ୍କ ପାଇଁ ମୃଦୁପାନୀୟ କହିଲେ କେବଳ ବିଅରକୁ ହିଁ ବୁଝାଇଥାଏ। ଅନ୍ୟ ପାନୀୟସବୁ ହାର୍ଡଡ୍ରିଙ୍କ୍‌ର ଅନ୍ତର୍ଭୁକ୍ତ। ଆପଣମାନଙ୍କ ସାଙ୍ଗରେ ଥିବାରୁ ମୁଁ ବିଅର ଧରିଛି। ଆଶାକରେ ଆପଣମାନେ କିଛି ମନେକରିବେ ନାହିଁ।"

ଲୁସି କଥା ଶୁଣି ମୋ ମନରେ ସନ୍ଦେହ ହେଲା। ଜଣେ ଇଂଲିଶ୍ ଝିଅ, ଆମ ମନସ୍ତତ୍ତ୍ୱ ବିଷୟରେ ଏତେକଥା କୁଆଡୁ ଜାଣିଲେ ? ଆମର କାର୍ଯ୍ୟସୂଚୀ ସମ୍ପର୍କରେ ସେହି କହିଲେ, "ଦେଖନ୍ତୁ ଆଜ୍ଞା; ଆପଣମାନେ ବହୁ ଅର୍ଥ ବ୍ୟୟକରି ଭାରତବର୍ଷରୁ ଲଣ୍ଡନ୍ ସହରକୁ ଆସିଛନ୍ତି। ଦୀର୍ଘ ଦୁଇମାସ ହେଲା ଆପଣମାନେ ବିଶ୍ୱର ବିଭିନ୍ନ ଦେଶ ଓ ସହର ବୁଲିସାରିଲେଣି। ଲଣ୍ଡନ ଭ୍ରମଣ ଆପଣମାନଙ୍କ ଗସ୍ତର ଅନ୍ତିମପର୍ଯ୍ୟାୟ ଅନ୍ତର୍ଭୁକ୍ତ। ଲଣ୍ଡନ

ସହରର ଐତିହ୍ୟ ଓ ଗରିମା ଖୁବ୍ ମହାନ୍। ଏ ସହରରେ ପ୍ରଚଳିତ ପ୍ରଥା ଓ ପରମ୍ପରାକୁ ଯଥେଷ୍ଟ ସମ୍ମାନ ଦିଆଯାଇଥାଏ। ଏ ସହରରେ ଯେତେ ବୁଲିବେ ସହର ଆପଣମାନଙ୍କୁ ସେତେ ନୂଆ ନୂଆ ଲାଗିବ। ଆପଣମାନଙ୍କର ସ୍ୱଳ୍ପଦିନର ରହଣିକାଳ ମଧ୍ୟରେ ମୁଁ ଆପଣମାନଙ୍କୁ ଯେତେଟା ସମ୍ଭବ ସହରର ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଖାଇବା ପାଇଁ ସାଧ୍ୟମତେ ଉଦ୍ୟମ କରିବି। କିନ୍ତୁ ମୋର ଗୋଟିଏମାତ୍ର ଅନୁରୋଧ, ଆପଣମାନେ ଦୟାକରି ମୋ ସହିତ ସହଯୋଗ କରି ଠିକ୍ ସମୟରେ ସବୁସ୍ଥାନକୁ ଯିବାକୁ ଚେଷ୍ଟା କରିବେ। ସମୟାନୁବର୍ତ୍ତିତା ଓ ଠିକ୍ ସମୟରେ ଯିବାକଥା ସେ ବାରମ୍ବାର କହୁଥିଲାବେଳେ ମୁଁ ଅନୁଭବ କରୁଥିଲି, ସତେଯେପରି ସେ କଥା କହୁନଥିଲେ, ଆମ ଗାଲରେ ଚଟକଣା ମାରୁଥିଲେ।

ଆମେ ସବୁ ଦୂର ପ୍ୟାରିସ୍‌ରୁ ଆସିଥିବାରୁ ସେଦିନ ସନ୍ଧ୍ୟାରେ ଆମର କୌଣସି କାର୍ଯ୍ୟକ୍ରମ ନଥିଲା। ତେଣୁ ଆମେ ସ୍ଥିରକଲୁ ନିଜନିଜ ରୁମ୍‌ରେ ବ୍ୟାଗେଜ୍ ରଖିଦେଇ ଛୋଟଛୋଟ ଗ୍ରୁପ୍‌ରେ ଯିଏ ଯୁଆଡ଼େ ଇଚ୍ଛା ବୁଲିଯିବେ ଏବଂ ରାତି ଦଶଟା ସୁଦ୍ଧା ହୋଟେଲକୁ ଫେରିଆସି ବିଶ୍ରାମ ନେବେ। ଲଣ୍ଡନ୍ ସହରରେ ସମସ୍ତେ ଇଂରାଜୀଭାଷା କହୁଥିବାରୁ ଓ ବୁଝୁଥିବାରୁ ଆମର କୌଣସି ଅସୁବିଧା ହେଉନଥିଲା। ମୃଦୁପାନୀୟ ଶେଷ ହେଲାବେଳକୁ ସମୟ ସ୍ଥାନୀୟ ଘଣ୍ଟାରେ ପାଞ୍ଚଟା ବାଜିନଥିଲା। ସୂର୍ଯ୍ୟାସ୍ତ ହେବାକୁ ଅନେକ ସମୟ ବାକି ଥିଲା। ପାଞ୍ଚଟାରୁ ରାତି ଦଶଟା ପର୍ଯ୍ୟନ୍ତ ପାଞ୍ଚଘଣ୍ଟାର ବ୍ୟବଧାନ, ଅନେକ ଜାଗା ବୁଲିହେବ। ସଂଗଠିତଭାବରେ ଯିବାର କାର୍ଯ୍ୟକ୍ରମ ନଥିବାରୁ ଆମେ ଛୋଟିଆ ଛୋଟିଆ ଦଳରେ ବିଭକ୍ତ ହୋଇ ହୋଟେଲରୁ ବାହାରିଲୁ।

## ହାଇଡ୍ ପାର୍କ: ବାକ୍ ସ୍ୱାଧୀନତାର ପ୍ରକୃଷ୍ଟ କ୍ଷେତ୍ର

କୌଣସି ଜାଗାକୁ ଯିବା ପୂର୍ବରୁ ଆମଭିତରେ ପ୍ରଥମେ ଆଲୋଚନା ହେଉଥିଲା। ଆଲୋଚନାରେ ବହୁମତରେ ଯାହା ସ୍ଥିର ହେଉଥିଲା, ତାକୁ ସମସ୍ତେ ମାନିନେଉଥିଲେ। ସେଦିନ ସନ୍ଧ୍ୟାରେ ମଧ୍ୟ ଆମେ ସେଇଆ କଲୁ। ଆଲୋଚନା ପରେ ସ୍ଥିରହେଲା ସନ୍ଧ୍ୟାରେ ହାଇଡ୍‌ପାର୍କକୁ ଯିବାପାଇଁ। ହାଇଡ୍‌ପାର୍କ ବିଷୟରେ ବହୁକଥା ଶୁଣାଯାଇଥିଲା। ଇଂଲଣ୍ଡ୍ ଏକ ରକ୍ଷଣଶୀଳ ଦେଶ ହୋଇଥିଲେ ବି ସେ ପାର୍କରେ କୁଆଡ଼େ ଯିଏ ଯାହା ଚାହାନ୍ତି କହିପାରନ୍ତି। ଏପରିକି ସେଠାରେ କୁଆଡ଼େ ଇଂଲଣ୍ଡର ମହାରାଣୀଙ୍କ ସମ୍ପର୍କରେ ମଧ୍ୟ ଖୋଲାଖୋଲି ମତାମତ ଦେଇହୁଏ। ଯାହା କୁହାଯାଏ, ହାଇଡ୍‌ପାର୍କ ହେଉଛି 'ଫ୍ରି ଫର୍ ଅଲ୍', ଇତ୍ୟାଦି ଇତ୍ୟାଦି କେତେ କଥା ଆମକୁ ଶୁଣିବାକୁ ମିଳିଥିଲା। ମୋ ଭଳି ଅନେକଙ୍କର ମଧ୍ୟ ସେଠାକୁ ଯିବାକୁ ଆଗ୍ରହ ଥିଲା। ସେଥିପାଇଁ ଆମେ ସବୁ ସେ ପ୍ରସ୍ତାବରେ ରାଜି ହୋଇଗଲୁ।

ଆମ ଗ୍ରୁପରେ ଆମେ ଆଠଜଣ ଥିଲୁ। ଅନ୍ୟ ଦୁଇଟି ଗ୍ରୁପ୍‌ରେ ଅନ୍ୟମାନେ ଥିଲେ। ସେମାନେ ଆମ ସାଙ୍ଗରେ ନଯାଇ ଅନ୍ୟ ସ୍ଥାନକୁ ଯିବାକୁ ସ୍ଥିର କଲେ। ହୋଟେଲରୁ ବାହାରି ଆମେ ରାସ୍ତାକୁ ଆସି ଦେଖିଲୁ ରୋଲ୍ସରୟସ୍, ମର୍ସିଡେଜ୍ ବେଞ୍ଜ୍, ଫୋର୍ଡ, ଡିସୋଟା, ଅଷ୍ଟିନ୍ କମ୍ପାନୀର ନାମୀଦାମୀ କାର୍‌ସବୁ ରାସ୍ତାକଡ଼ରେ ଛିଡ଼ା ହୋଇଥିଲା। ବୁଝିଲାରୁ ଜଣାପଡ଼ିଲା ସେସବୁ ଗାଡ଼ି ସେଠାରେ ଟ୍ୟାକ୍ସି ଭାବରେ ବ୍ୟବହୃତ ହୁଏ। ସେ ଗାଡ଼ି ଦେଖି ସେଥିରେ ଯିବାପାଇଁ ମନରେ ସଉକ୍ ହେଲା। କିନ୍ତୁ ବିଦେଶ ଜାଗା, ଦାମୀ ଗାଡ଼ି ଚଢ଼ିଲେ କେତେ ଡଲାର୍ ଦେବାକୁ ପଡ଼ିବ; ସେ ନେଇ ଆମେ ଦ୍ୱନ୍ଦ୍ୱରେ ପଡ଼ିଲୁ। ଆମ ଗାଁଗହଳରେ ଯେଉଁ କଥା କୁହାଯାଏ, "ଅଣ୍ଟାରେ ନାହିଁ ଧନ, ପୁଅ ବାହା ପାଇଁ ମନ"। ଆମର ସେଇ ଅବସ୍ଥା ହେଲା। ମୁଁ ମୋ ମନକଥା ଆମ ସଭାପତିଙ୍କୁ ଜଣାଇଥିଲି ଏବଂ ଏକଥା ମଧ୍ୟ କହିଲି ଯେ, ଲଣ୍ଡନରୁ ଫେରିଗଲେ ହୁଏତ ମୁଁ ଆଉ ରୋଲ୍ସରୟସ୍ ଗାଡ଼ି ଦେଖିବାର ସୁଯୋଗ ପାଇନପାରେ। ସେ ମୋ ମନର ଅବସ୍ଥା ବୁଝିଲେ। ଅନ୍ୟମାନଙ୍କ ସହିତ କଥାବାର୍ତ୍ତା ହେଲେ। ତାଙ୍କର ଆଗରୁ ଅଭିଜ୍ଞତା ଥିଲା। ସେ ଆମ ପୂର୍ବରୁ କେତେଥର ଲଣ୍ଡନ୍ ଯାଇଥିଲେ। ତାଙ୍କର ପରାମର୍ଶ ଥିଲା ଆମେ ଟ୍ୟାକ୍ସିରେ ଅଳ୍ପବାଟ ଯିବା ଓ ତା'ପରେ ବସ୍‌ରେ ଚଢ଼ି ହାଇଡ୍‌ପାର୍କକୁ ଯିବା। ସେଇଆ ହେଲା। ଆମେ ତିନୋଟି ଗାଡ଼ିରେ ଗଲୁ। ଦୁଇକିଲୋମିଟର ଯାଇ ଟ୍ୟାକ୍ସିକୁ ଛାଡ଼ିଦେଲୁ। ସେଥିରେ ଆମର ସଉକ୍ ମେଣ୍ଟିଲା ଏବଂ ପକେଟ୍‌କୁ ମଧ୍ୟ ବାଧିଲା ନାହିଁ। ଆମ ଦେଶର ରାଜାମହାରାଜାମାନେ ଯେଉଁ ଗାଡ଼ି ଚଢୁଥିଲେ, କିଛିକ୍ଷଣ ପାଇଁ ହେଲେ ମଧ୍ୟ ଆମେ ଯେ ସେ ଗାଡ଼ି ଚଢ଼ିବାର ସୁଯୋଗ ଲାଭ କଲୁ, ଏହା ଆମପାଇଁ କମ୍ ସୌଭାଗ୍ୟର କଥା ନଥିଲା।

ଆମ ଗ୍ରୁପ୍‌ରେ ଆନନ୍ଦବଜାର ପତ୍ରିକା ସଂସ୍ଥାର ସାପ୍ତାହିକ 'ରବିବାର'ର ପ୍ରତିନିଧି ରାଜୀବ ଶୁକ୍ଲା ଥିଲେ। ରାଜୀବ ସବୁକଥାରେ ଆଗୁଆ। ପୋଙ୍ଗ୍‌ୟାଙ୍ଗ୍‌ଠାରୁ ପ୍ୟାରିସ୍ ପର୍ଯ୍ୟନ୍ତ ସବୁ ଜାଗାର ଖବର ତାଙ୍କ ପାଖରେ ଥିଲା। ଆମ ହୋଟେଲ ପାଖରୁ ହାଇଡ୍‌ପାର୍କ କେତେବାଟ ସେ ଆଗରୁ ବୁଝିଥିଲେ। ରାଜୀବଙ୍କର ରାଜୀବ ଗାନ୍ଧୀଙ୍କ ପରିବାର ସହ ନିବିଡ଼ ସମ୍ପର୍କ ଥିଲା। ସେଇ ସମ୍ପର୍କକୁ ଆଧାର କରି ସେ ପରବର୍ତ୍ତୀ ସମୟରେ ରାଜ୍ୟସଭାକୁ ନିର୍ବାଚିତ ହେବା ସହିତ ଭାରତୀୟ କ୍ରିକେଟ୍ କଣ୍ଟ୍ରୋଲ୍ ବୋର୍ଡର ସଦସ୍ୟ ଓ ପରେ ଉପ-ସଭାପତି ହୋଇଥିଲେ। ଜଣେ ସାମ୍ବାଦିକ ଭାବରେ ନହେଲେ ମଧ୍ୟ ଜଣେ ରାଜନୈତିକ ବ୍ୟକ୍ତି ଭାବରେ ନିଜ ଉଦ୍ୟମରେ ସେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ।

ଆମେ ହୋଟେଲର ରିସେପ୍‌ସନ୍ କାଉଣ୍ଟରରୁ ଲଣ୍ଡନ୍ ସହରର ମ୍ୟାପ୍ ସମ୍ବଳିତ "ରାଉଣ୍ଡ୍ ଲଣ୍ଡନ୍ ସାଇଟ୍ ସିଙ୍ଗ୍ ଟୁର୍" ବ୍ରୋଚର୍‌ଟିଏ ଲେଖାଁ ସଂଗ୍ରହ କରିଥିଲୁ। ସେଥିରେ ଲଣ୍ଡନ ସହରର ସବୁ ଦର୍ଶନୀୟ ସ୍ଥାନ ବିଷୟରେ ସୂଚନା ଥିଲା। ସେଥିସହିତ କେଉଁ ସ୍ଥାନରୁ କେଉଁ ସ୍ଥାନକୁ କେତେନମ୍ବର ରୁଟ୍‌ବସ୍‌ରେ ଯାଇହେବ ଏବଂ ସେଥିପାଇଁ କେତେ

ଦେୟ ଦେବାକୁ ହେବ ସେ ସମ୍ପର୍କରେ ମଧ୍ୟ ଉଲ୍ଲେଖ ଥିଲା। ଏହା ଭିତରେ ରାଜୀବ ଓ ଆଉ କେଇଜଣ ହାଇଡ୍‌ପାର୍କ ବିଷୟରେ ପୁସ୍ତିକା ସଂଗ୍ରହ କରିସାରିଥିଲେ। ସେଥିରେ ହାଇଡ୍‌ପାର୍କର ଅତୀତ, ବର୍ତ୍ତମାନ ଓ ତାର ବିଶେଷତ୍ୱ ବିଷୟରେ ବିଶଦ୍ ଭାବରେ ବର୍ଣ୍ଣନା କରାଯାଇଥିଲା।

କିଛି ସମୟ ଭିତରେ ହାଇଡ୍‌ପାର୍କ ଯିବାପାଇଁ ଆମର ନିର୍ଦ୍ଦିଷ୍ଟ ବସ୍‌ଟି ଆସିଗଲା। ଆମେ କାଳବିଳମ୍ବ ନକରି ବସ୍ ରହୁ ରହୁ ସେଥିରେ ଚଢ଼ିଗଲୁ। ସେଠାକାର ପ୍ରଚଳିତ କାନୁନ୍ ଅନୁଯାୟୀ ଗାଡ଼ିରେ ଚଢ଼ିବାମାତ୍ରେ ଟିକେଟ୍ କରିବାକୁ ହୋଇଥାଏ। ଟିକେଟ୍ ନକରି ବସ୍‌ରେ ଯାତ୍ରାକଲେ ଦଣ୍ଡ ଭୋଗିବାକୁ ପଡ଼େ। ସେଠାରେ ନିୟମକୁ କଡ଼ାକଡ଼ି ଭାବରେ ପାଳନ କରାଯାଏ ଏବଂ ସେଥିପାଇଁ ସେ ଦେଶରେ ସମସ୍ତେ ସଚେତନ। ଆମ ଦେଶଭଳି ଚୋରାଲୁଚା କଥା ସେଠାରେ ଚାଲେନାହିଁ।

ଆମ ଲୋକେ ଟିକେଟ୍ ନକରି ବସ୍‌ରେ ଯାତ୍ରା କରିବା ଗୋଟାଏ ଗୌରବର କଥା ବୋଲି ବିଚାରନ୍ତି। ଭୁବନେଶ୍ୱରରୁ କଟକକୁ ବସ୍‌ଭଡ଼ା ଦଶଟଙ୍କା ଜାଗାରେ ଆଠଟଙ୍କା ଦେବାକୁ ଅନେକ ପାସେଞ୍ଜର୍ ପସନ୍ଦ କରନ୍ତି। ସେଥିପାଇଁ ଅଧିକାଂଶ ସମୟରେ କେତେକ ବସ୍‌ରେ କଣ୍ଡକ୍ଟର୍ ଓ ପାସେଞ୍ଜର୍‌ମାନଙ୍କ ମଧ୍ୟରେ କଥା କଟାକଟିଠାରୁ ପାଟିତୁଣ୍ଡ ପର୍ଯ୍ୟନ୍ତ ଚାଲେ। ସାମାନ୍ୟ ଦି'ଟା ଟଙ୍କା ପାଇଁ ଝକ୍‌ଝକ୍। କଣ୍ଡକ୍ଟର ନଛୋଡ଼ବନ୍ଧା। ସବୁ ବସ୍‌ରେ ପ୍ରାୟ ଦି'ତିନିଜଣ ଅସାମାଜିକ ଯୁବକ ମାଲିକମାନଙ୍କ ପକ୍ଷରୁ ଯାତାୟାତ କରନ୍ତି। ହାତରେ କଡ଼ା, ମୁଣ୍ଡରେ ସିନ୍ଦୂରକଲୀ ସାଙ୍ଗକୁ ପାଟିରେ ଜର୍ଦା ଗୁଟ୍‌ଖା। ପୋଷାକ ମଧ୍ୟ ତଦ୍ରୂପ। ସେମାନଙ୍କ କଥାବାର୍ତ୍ତା, ହାବଭାବ ଓ ଅନେକ ସମୟରେ ଅଶ୍ଳୀଳ ଇଙ୍ଗିତରେ ପାସେଞ୍ଜରମାନେ ଅତିଷ୍ଠ ହୋଇପଡୁଥିଲେ ହେଁ ପ୍ରତିବାଦ କରିବାର କାହାରି ଯୁ ନଥାଏ। ତା' ନହୋଇଥିଲେ କି କୋଣାର୍କରୁ ପୁରୀ ମଧ୍ୟରେ ଥିବା ଜନଗହଳିପୂର୍ଣ୍ଣ ମେରାଇନ୍‌ଡ୍ରାଇଭ୍ ରାସ୍ତାରେ ଚଳନ୍ତା ବସ୍‌ରୁ ଅସାମାଜିକ ଯୁବକମାନେ ଜଣେ ମହିଳାଙ୍କୁ ଟାଣିନେଇ ସାଧାରଣ ସ୍ଥାନରେ ଗଣଧର୍ଷଣ କରିବାର ଦୁଃସାହସ କରିଥାନ୍ତେ ?

କିନ୍ତୁ ବିଦେଶ ରାଷ୍ଟ୍ରରେ ସବୁ ଶୃଙ୍ଖଳିତ, ସବୁକଥା ମାର୍ଜିତ ଓ ନିୟନ୍ତ୍ରିତ। ବସ୍ ଛାଡ଼ିବାର କିଛି ସମୟ ପରେ ସୁଟ୍ ପରିହିତ କଣ୍ଡକ୍ଟର ଆମେସବୁ ଟିକେଟ୍ କାଟିଛୁ କି ନାହିଁ ବୋଲି ନମ୍ରତାର ସହିତ ପଚାରିଲେ। ଆମ ପୋଷାକ, ପରିଚ୍ଛଦ ଓ କଥାବାର୍ତ୍ତାରୁ ଆମେ ବାହାର ଦେଶରୁ ଆସିଥିବା ଜାଣି ଆମେ କାଳେ ସେ ଦେଶର ନିୟମକାନୁନ୍ ବିଷୟରେ ଅଜ୍ଞ ଥିବୁ, ସେଥିପାଇଁ ଆମ ପାଖକୁ ଆସି ଟିକେଟ୍ କଥା ପଚାରିଥିଲେ ବୋଲି ଆମେ ପରେ ଜାଣିବାକୁ ପାଇଲୁ। ସେ ଟିକେଟ୍ କଥା ପଚାରିଲାବେଳେ ରାଜୀବ ସମେତ ଅନ୍ୟ କେହି କେହି ତାଙ୍କ ସମ୍ପର୍କରେ କେତେକ ଲଘୁ ମନ୍ତବ୍ୟ ପ୍ରକାଶ କରିଥିଲେ। ଭାଗ୍ୟ ଭଲ, ସେ ଆମ କଥାରୁ କିଛି ଠଉରେଇ ପାରି ନ ଥିଲେ। ନଚେତ୍ ଏକ ଅପ୍ରୀତିକର ପରସ୍ଥିତି ସୃଷ୍ଟି ହୋଇଥାନ୍ତା।

ଅଳ୍ପ କେଇ ମିନିଟ୍ ପରେ ଆମେ ହାଇଡ୍‌ପାର୍କ ସାମନା ବସ୍‌ଷ୍ଟେପେଜ୍‌ରେ ଓହ୍ଲାଇଲେ। ପାର୍କ ଭିତରକୁ ଯିବାପାଇଁ କିଛି ଦେୟର ବ୍ୟବସ୍ଥା ନଥିଲା। ଆମଭଳି ବିଭିନ୍ନ ଦେଶରୁ ଆସିଥିବା ପର୍ଯ୍ୟଟକମାନଙ୍କର ସେଠି ବେଶ୍ ଭିଡ଼ ଲାଗିଥିଲା। ପାର୍କ ଭିତରକୁ ଯାଇ ମୁଁ ଅବାକ୍ ହୋଇଗଲି। ମୋର ଧାରଣା ଥିଲା, ବୋଧହୁଏ ହାଇଡ୍‌ପାର୍କଟି କଟକର ଗୋପବନ୍ଧୁ ପାର୍କ କିମ୍ବା ଗୌରୀଶଙ୍କରପାର୍କ ଭଳି ହୋଇଥିବ। ନଚେତ୍ ଭୁବନେଶ୍ୱରରେ ଥିବା ଇନ୍ଦିରାପାର୍କ ସଦୃଶ ହୋଇଥିବ, ଯେଉଁଠି ସକାଳେ ମଣିଷଙ୍କ ସାଙ୍ଗରେ କୁକୁର ବୁଲନ୍ତି। ସନ୍ଧ୍ୟାର କଦଳୀ ଚୋପା, ଚିନାବାଦାମ ଠୁଙ୍ଗା ଆଉ ଆଇସ୍‌କ୍ରିମ୍ ଖୋଳସବୁ ସକାଳର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ପଡ଼ିଆରେ ଶୋଭା ପାଉଥାଏ। ପାର୍କରେ ଜଗୁଆଳି ଭାବରେ ନିଯୁକ୍ତ ବାବୁମାନଙ୍କର ସକାଳ ସାତଟା ପର୍ଯ୍ୟନ୍ତ ଦେଖାମିଳେ ନାହିଁ। ସେମାନେ କୋଉ ବଡ଼ ସାହେବଙ୍କ କୋଠିରେ କାମକରି ହାଲିଆ ହୋଇଯାଇଥାନ୍ତି।

ଲଣ୍ଡନ୍ ସହର ଭିତରେ ଅନେକଗୁଡ଼ିଏ ପାର୍କ ରହିଛି। ସେଗୁଡ଼ିକ ମଧ୍ୟରେ କେନ୍‌ସିଂଟନ୍ ପାର୍କ, ଗ୍ରୀନ୍‌ପାର୍କ, ସେଣ୍ଟ୍ ଜେମସ୍‌ପାର୍କ ମୁଖ୍ୟ ହେଲେ ମଧ ହାଇଡ୍ ପାର୍କର ସ୍ୱାତନ୍ତ୍ର୍ୟ ରହିଛି। ପ୍ରାୟ ସାଢ଼େ ତିନିଶହ ଏକର ବିଶିଷ୍ଟ ଜମିରେ ଅବସ୍ଥିତ ଏହି ପାର୍କକୁ "ଲଣ୍ଡନର ଫୁସ୍‌ଫୁସ୍" ବୋଲି କୁହାଯାଇଥାଏ। ଏପରି ନାମକରଣର କାରଣ ହେଲା, ସେଠାରେ ଲଣ୍ଡନବାସୀ ଖୋଲାରେ ନିଶ୍ୱାସ ନିଅନ୍ତି। ସେମାନଙ୍କ ଉପରେ କିଛି କଟକଣା ନଥାଏ। ସମସ୍ତେ ସ୍ୱଚ୍ଛନ୍ଦରେ ବୁଲାବୁଲି କରିପାରନ୍ତି। କିନ୍ତୁ ଦିନେ ଏହି ପାର୍କ ଇଂଲଣ୍ଡର ରାଜାରାଜୁଡ଼ାଙ୍କ ବ୍ୟକ୍ତିଗତ ସମ୍ପତ୍ତିଭାବରେ ରହିଥିଲା। ସ୍ଥାନଟି ଜଙ୍ଗଲରେ ପରିପୂର୍ଣ୍ଣ ଥିଲା। ସେଠାରେ ରାଜାମାନେ ଶିକାର କରୁଥିଲେ। ଏକ ସମୟରେ ଇଂଲଣ୍ଡର ରାଜବଂଶ ଏହି ଅଞ୍ଚଳକୁ 'ହସ୍ତମୁଦି ମାହାଲ' ବୋଲି ବିଚାରୁଥିଲେ। ମାତ୍ର ସମୟ ବଦଳିବା ସହିତ ସବୁକଥା ବଦଳିଗଲା। ହାଇଡ୍‌ପାର୍କ ରାଜବଂଶରୁ ମୁକୁଳି ସର୍ବସାଧାରଣଙ୍କ ସମ୍ପତ୍ତି ହୋଇଗଲା। ହାଇଡ୍‌ପାର୍କର ବିସ୍ତୀର୍ଣ୍ଣ ଭୂମିରେ ଥିଲା ସର୍‌ପେଣ୍ଟାଇନ୍ ଲେକ୍। ସ୍ଥାନେସ୍ଥାନେ ବୁଦିବୁଦିକିଆ ଜଙ୍ଗଲ ମଧ୍ୟ ଦେଖିବାକୁ ମିଳେ। ପିଲାମାନଙ୍କଠାରୁ ବୁଢ଼ାଙ୍କ ପର୍ଯ୍ୟନ୍ତ ସବୁବୟସର ଲୋକଙ୍କ ଉପଭୋଗ ପାଇଁ ହାଇଡ୍‌ପାର୍କରେ ସୁଯୋଗ, ସୁବିଧା ଉପଲବ୍ଧ ହୋଇଥାଏ। ପିଲାମାନେ ପାର୍କ ଭିତରେ ମନଖୁସିରେ ଗୁଡ଼ି ଉଡ଼ାଉଥିଲା ବେଳେ ମଧ୍ୟ ବୟସ୍କମାନେ ବାନ୍ଧବୀମାନଙ୍କ ସହିତ ନୌକାବିହାରରେ ମସଗୁଲ୍ ରହନ୍ତି ନଚେତ୍ ହ୍ରଦର ବନିଶି ପକାଇ ମାଛଙ୍କୁ ଖେଳାନ୍ତି। ବିଭିନ୍ନ ବୟସର ବିଭିନ୍ନ ଲୋକଙ୍କର ଭିନ୍ନଭିନ୍ନ ରୁଚି ଓ ସଉକ ମେଣ୍ଟାଇବା ପାଇଁ ହାଇଡ୍‌ପାର୍କରେ ବିଭିନ୍ନ ଉପାଦାନ ମିଳିଥାଏ। ବୟସ୍କ ନାଗରିକମାନେ ପାର୍କରେ ଥିବା ବେଞ୍ଚ୍ ଉପରେ ବସି ନିଜନିଜ ଭିତରେ ଭାବର ଆଦାନପ୍ରଦାନରେ ମଜ୍ଜିଯାଆନ୍ତି। ଆଉ କେହିକେହି ବକ୍ତାମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରି ଅତିଷ୍ଠ କରିପକାନ୍ତି। ଏମାନଙ୍କୁ ସେଠାରେ 'ପ୍ରଫେସନାଲ୍ ଅର୍ଡିଏନ୍ସ' ବୋଲି କୁହାଯାଏ।

କାରଣ ସବୁ ବିଷୟରେ ସେମାନଙ୍କର ଜ୍ଞାନ ରହିଛି ଏବଂ ସେମାନେ ସବୁବେଳେ ତାଜା ଘଟଣା ସମ୍ପର୍କରେ ସଚେତନ ଥାଆନ୍ତି। ଏଇମାନଙ୍କ ଭିତରେ ଥାଆନ୍ତି ଅନେକ 'ହେକ୍‌ଲର୍'। ଅନ୍ୟକୁ ହେକଲ୍ କରିବାରେ ସେମାନେ ଆନନ୍ଦ ଅନୁଭବ କରିଥାନ୍ତି। ସେମାନଙ୍କ ମତରେ ଜଣେ ବକ୍ତାଙ୍କୁ ହେକ୍‌ଲିଙ୍ଗ୍ ନକଲେ ତାଙ୍କର ଜ୍ଞାନର ଗଭୀରତାକୁ ମାପି ହୁଏନା। ଏମାନଙ୍କ ମନ୍ତବ୍ୟ ଏପରି ଶାଣିତ ହୋଇଥାଏ ଯେ ଅନେକ ସମୟରେ ବକ୍ତାମାନେ ସେମାନଙ୍କ ମୌଳିକ ବିଷୟଟିକୁ ଭୁଲିଯାଆନ୍ତି। କିନ୍ତୁ ଯେଉଁମାନେ ବକ୍ତୃତା ଦେବାରେ ପୋଖତ୍, ସେମାନେ ହେକ୍‌ଲର୍‌ମାନଙ୍କ କମେଣ୍ଟରେ ଦବି ନ ଯାଇ ବକ୍ତବ୍ୟ ଚାଲୁ ରଖିଥାନ୍ତି। ମୁଁ ଲଣ୍ଡନ୍‌ରେ ଥିଲାବେଳେ ଶୁଣିଥିଲି, ଭାରତବର୍ଷର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ ଓ ଆମ ଦେଶର ପୂର୍ବତନ ବୈଦେଶିକମନ୍ତ୍ରୀ ଭି.କେ. କ୍ରିଷ୍ଣମେନନ୍ ଛାତ୍ରାବସ୍ଥାରେ ହାଇଡ୍‌ପାର୍କରୁ ବକ୍ତୃତା ଦେବାର କୌଶଳ ଶିକ୍ଷାଲାଭ କରିଥିଲେ।

ଆମ ସାଙ୍ଗମାନେ ପାର୍କ ଭିତରେ ପଶିଥିବାର ଦେଖି ମୁଁ ସେମାନଙ୍କୁ ଅନୁସରଣ କଲି। ପାର୍କର ଗେଟ୍‌ପାଖକୁ ଗୋଟାଏ କୋଣରେ ଅନେକ ପ୍ଲାଷ୍ଟିକ୍ ଟେବୁଲ୍ ଓ ଟୁଲ୍ ଗଦାହୋଇଥିବା ଦେଖି ପ୍ରଥମେ ମୁଁ କିଛି ବୁଝିପାରି ନ ଥିଲି। ପାର୍କରେ ଆରାମରେ ବସିବା ପାଇଁ ବେଞ୍ଚର ବନ୍ଦୋବସ୍ତ ଥିଲାବେଳେ ଅପରିଷ୍କାର ଭାବରେ ଏତେ ସଂଖ୍ୟାରେ ଟେବୁଲ୍ ଓ ଟୁଲ୍‌ସବୁ କାହିଁକି ପଡ଼ିଛି ? ମୋ'ଭଳି ଅନେକ ବନ୍ଧୁ ମଧ୍ୟ ସେହିଭଳି ସନ୍ଦେହରେ ପଡ଼ିଥିଲେ। ପାଖରୁ ଯାଇ ବୁଝିଲୁ ଯେ, ସେଗୁଡ଼ିକ ପାର୍କକୁ ଆସୁଥିବା ବକ୍ତାମାନଙ୍କ ପାଇଁ ଉଦ୍ଦିଷ୍ଟ। ସେଠାକାର ପ୍ରଚଳିତ ବ୍ୟବସ୍ଥା ଅନୁଯାୟୀ ଯେକୌଣସି ବ୍ୟକ୍ତି ଗୋଟିଏ ଟେବୁଲ୍ କିମ୍ବା ଟୁଲ୍ ଉପରେ ଛିଡ଼ା ହୋଇ ନିଜର ବକ୍ତବ୍ୟ ଉପସ୍ଥାପନ କରିଥାଆନ୍ତି। ଏକ ସମୟରେ ପାର୍କ ଭିତରେ ବହୁସଂଖ୍ୟକ ବକ୍ତା ସେମାନଙ୍କର ମତାମତ ଦେବାର ବ୍ୟବସ୍ଥା ସ୍ୱରୂପ ସେସବୁ ଟେବୁଲ୍ ଓ ଟୁଲ୍ ରହିଥିଲା।

ଆମେ ବିଦେଶ ଗସ୍ତରେ ଯାଇଥିବା ସମୟରେ ଆମ ଦେଶରେ ବିଶେଷକରି ପଞ୍ଜାବ ରାଜ୍ୟରେ ଉଗ୍ରପନ୍ଥୀମାନଙ୍କ କାର୍ଯ୍ୟକଳାପ ଚରମସୀମାରେ ପହଞ୍ଚିଥିଲା। ନିଜର ରାଜନୈତିକ ଉଦ୍ଦେଶ୍ୟ ସାଧନ ନିମନ୍ତେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ପ୍ରୋତ୍ସାହନରେ ଅକାଳୀ ଦଳର ଗୋଟିଏ ଗୋଷ୍ଠୀ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଉଗ୍ରପନ୍ଥୀ କାର୍ଯ୍ୟ ଆରମ୍ଭ କରିଥିଲେ। ଯେଉଁ ଉଗ୍ରପନ୍ଥୀମାନଙ୍କୁ କଂଗ୍ରେସଦଳ ପ୍ରାଥମିକ ଅବସ୍ଥାରେ ପରୋକ୍ଷ ସମର୍ଥନ ଜଣାଇଥିଲା, ପରବର୍ତ୍ତୀ ସମୟରେ ତାହା ବୁମେରାଂ ହୋଇ ଶେଷରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁର କାରଣ ହେଲା। ୧୯୮୪ ମସିହା ଅକ୍ଟୋବର ୩୧ ତାରିଖରେ ନିଜର ପଞ୍ଜାବୀ ଦେହରକ୍ଷୀଙ୍କ ଗୁଳିରେ ଶ୍ରୀମତୀ ଗାନ୍ଧୀଙ୍କର ଶୋଚନୀୟ ଭାବରେ ମୃତ୍ୟୁ ହୋଇଥିଲା। ଏପରି ଏକ ଘଟଣା କେବଳ ଆମ ଦେଶରେ ନୁହେଁ,

ସମଗ୍ର ବିଶ୍ୱରେ ଚହଳ ସୃଷ୍ଟି କରିଥିଲା । ଆମେ ଯେତେବେଳେ ଦେଖିଲୁ ହାଇଡ୍ ପାର୍କର ବିଭିନ୍ନ ସ୍ଥାନରେ ନାନାଦେଶର ଲୋକେ ବିଭିନ୍ନ ଘଟଣା ଉପରେ ଉଦ୍‌ବୋଧନ ଦେଉଥିଲେ, ଆମେ ମଧ୍ୟ ସ୍ଥିରକଲୁ ଆମଦେଶର ସାଂପ୍ରତିକ ରାଜନୈତିକ ସ୍ଥିତି ଉପରେ କିଛି ତଥ୍ୟ ପରିବେଷଣ କରିବାକୁ । ଆମ ଭିତରୁ ଜଣେ ଦି'ଜଣ କହିଛନ୍ତି କି ନାହିଁ, ପାଖରେ ବସିଥିବା "ହେକ୍‌ଲର ଗ୍ରୁପ୍" ଆମ ପାଖକୁ ମାଡ଼ି ଆସିଲେ । ଏକସମୟରେ ଏକାଧିକ ଲୋକ ପଚାରିବାକୁ ଲାଗିଲେ, ଭାରତବର୍ଷର ଏପରି ସ୍ଥିତି ପାଇଁ ଦାୟୀ କିଏ ? ପଞ୍ଜାବ ରାଜ୍ୟରେ ଅକାଳୀଙ୍କ ମଧ୍ୟରେ ଉଗ୍ରପନ୍ଥୀ ସୃଷ୍ଟି କରିବାରେ କାହାର ହାତ ଥିଲା ? ଭାରତ ଭଳି ଏକ ଶାନ୍ତିପ୍ରିୟ ଦେଶରେ ଏତେ ଅଶାନ୍ତି କାହିଁକି ହେଉଛି ? ସାଧାରଣ ଲୋକେ ଅନ୍ୟାୟର ଯେଭଳି ପ୍ରତିବାଦ କରିବା କଥା, ତାହା ସେମାନେ କରୁନାହାନ୍ତି କାହିଁକି ?

ଆମେ ଶୁଣିଥିଲୁ ଯେ ହେକ୍‌ଲର୍‌ମାନେ ବକ୍ତାମାନଙ୍କୁ ପ୍ରଶ୍ନ ପଚାରି ଅଥୟ କରିଦିଅନ୍ତି ବୋଲି । ମାତ୍ର ସେମାନଙ୍କ ବାଣ ଯେ ଆମଆଡ଼କୁ ମୁହାଁଇବ ସେକଥା ଆମ କଳ୍ପନା ବାହାରେ ଥିଲା । ସେମାନଙ୍କର ସବୁ ପ୍ରଶ୍ନର ଉତ୍ତର ଦେବାପାଇଁ ଆମେ ସାଧ୍ୟମତେ ଚେଷ୍ଟାକଲୁ । କେତେକ ସ୍ଥଳରେ ସେମାନେ ଆମ ଉତ୍ତରରେ ସନ୍ତୁଷ୍ଟ ନହୋଇ ସେମାନଙ୍କର ମତାମତ ଦେଇଥିଲେ । ଏସବୁ ସତ୍ତ୍ୱେ ଇନ୍ଦିରାଗାନ୍ଧୀ ଓ ରାଜୀବ ଗାନ୍ଧୀଙ୍କ ସମ୍ପର୍କରେ ଆମର ଖୋଲା ମତ ଦେବାପାଇଁ ସୁଯୋଗ ପାଇଥିବାରୁ ସେଦିନ ଆମେ ଆନନ୍ଦିତ ହୋଇଥିଲୁ । ଏସବୁ ସରିଲାବେଳକୁ ରାତି ନଅଟା ବାଜି ଯାଇଥିଲା । ସେତେବେଳ ପର୍ଯ୍ୟନ୍ତ ରାତି ଖାଇବା ବିଷୟ ମୁଣ୍ଡରେ ପଶିନଥିଲା । ରାତି ନଅଟା ହେଲେ ବି ହାଇଡ୍ ପାର୍କରୁ ଭିଡ଼ କମିନଥିଲା । ପାର୍କର ବିଭିନ୍ନ ସ୍ଥାନରେ ଦଳ ଦଳ ହୋଇ ଲୋକେ ବୁଲୁଥିଲେ । କୋଉଠି କୋଉଠି ବକ୍ତୃତାବାଜି ମଧ୍ୟ ଚାଲିଥିଲା, ହେଲେ ସେସବୁ ଶୁଣିବାକୁ ଆମର ଆଉ ଧୈର୍ଯ୍ୟ କିମ୍ବା ଆଗ୍ରହ ନଥିଲା ।

## ଟାଉନ ବସ୍‌ରେ ହିନ୍ଦୁସ୍ତାନୀ କଣ୍ଡକ୍ଟର୍

ଲଣ୍ଡନ ସହର; ରାସ୍ତାଘାଟ ଆମକୁ ଜଣା ନଥିଲା । ରାତିରେ କୋଉଠି ଖାଇବୁ, ହୋଟେଲକୁ କେମିତି ଫେରିବୁ; ସେଇ ଚିନ୍ତା ଘାରିଲା । କିନ୍ତୁ ଆଗଭଳି ରାଜୀବ ଆସି ଆମକୁ ସାହସ ଦେଲେ । "ଆପଲୋଗ୍ ବେଫିକର୍ ରହିୟେ । ଆପଲୋଗୋଁ କେ ଲିଏ ସାରେ ବନ୍ଦୋବସ୍ତ ହୋ ଯାଏଗା । ଲଣ୍ଡନ୍ ମେଁ ସବ୍‌କୁଛ୍ ମିଲ୍‌ତା ହୈ । ସିର୍ଫ କମର୍ ମେଁ ତାକତ୍ ହୋନା ଚାହିଏ ।" ରାଜୀବଙ୍କ କଥାରେ ମନ ଟିକିଏ ହାଲୁକା ହେଲା । ଆମେ ସବୁ ପାର୍କ ଭିତରୁ ବାହାରକୁ ଆସିଲୁ । କିଛି ସମୟ ଭିତରେ ସିଟି ବସ୍ ଆସିଗଲା ଏବଂ ରାଜୀବଙ୍କ ଇଙ୍ଗିତରେ ଆମେ ସେଥିରେ ଚଢ଼ିଗଲୁ । ବସ୍‌ରେ ଗୋଟିଏ ଜାଗାରେ କ୍ରାଉନ୍

ପକାଇଲେ ଆପେ ଆପେ ଟିକେଟ୍ ଆସିଯିବାର ବ୍ୟବସ୍ଥା ଥିଲା ଓ ଆମେ ତା'ର ସୁଯୋଗ ନେଇ ଟିକେଟ୍ ସଂଗ୍ରହ କଲୁ। ବସ୍‌ରେ ନରମ ଗାଲିଚା ବିଛା ହୋଇଥିଲା। ସିଟ୍‌ଗୁଡ଼ିକ ବଧ ବେଶ୍ ଆରାମଦାୟକ। ଆମେ ବସୁ ବସୁ କଣ୍ଡକ୍ଟର୍ ମହାଶୟ ଆମ ପାଖକୁ ଆସି ଆମେସବୁ ଟିକେଟ୍ କାଟିଛୁ କି ନାହିଁ, ସେକଥା ଅତି ନମ୍ରତାର ସହିତ ପଚାରିଲେ। ତାଙ୍କର ବୟସ ୩୦ ଖଣ୍ଡେ ହେବ। ଗୋରା ତାକ୍ ତକ୍ ଚେହେରା ସାଙ୍ଗକୁ କଳାରଙ୍ଗର ସୁଟ୍ ତାଙ୍କୁ ଖୁବ୍ ମାନୁଥିଲା। ତାଙ୍କୁ ଦେଖି ଆମ ଭିତରୁ ଜଣେ ଦି'ଜଣ କିଛି ଲଘୁ ମନ୍ତବ୍ୟ ଦେଇଥିଲେ। ସେତେବେଳେ କଣ୍ଡକ୍ଟର୍ କିଛି ନକହି ଖାଲି ଟିକେ ମୁରୁକିହସା ଦେଇ ନିଜ ଆସନକୁ ଫେରିଯାଇଥିଲେ। ତାଙ୍କ ମୁରୁକିହସା ଦେଖି ରାଜୀବ କମେଣ୍ଟ୍ ମାରି କହିଲେ, "ପହଲାଓ୍ୱାଲା କଣ୍ଡକ୍ଟର୍ କେ ବାରେ ମେଁ ହମ୍‌ଲୋଗ୍ ବହୁତ୍ କୁଛ ବୋଲେ, ଲେକିନ୍ ଓ୍ୱ ମୁସ୍‌କୁରାୟା ନହିଁ, ଔର୍ ୟେ ଓ୍ୱାଲା କୈସେ ମୁସ୍କୁରାତା ହୈ ସମଝ୍ ମେଁ ନହିଁ ଆତା।"

ରାଜୀବଙ୍କ କଥା ଶୁଣି କଣ୍ଡକ୍ଟର୍ ନିଜ ସିଟ୍‌ରୁ ଉଠି ପୁଣି ଆମ ପାଖକୁ ଆସିଲେ। ଆମେ କିଛି ବୁଝିପାରିଲୁ ନାହିଁ। ଥରେ ତ ଟିକେଟ୍ କଥା ବୁଝି ଗଲେ, ଆଉଥରେ ଆସିବାର କାରଣ କ'ଣ ହୋଇପାରେ? ସେ ଆମ ସାମନାରେ ଛିଡ଼ାହୋଇ କହିବାକୁ ଲାଗିଲେ, "ପହ୍‌ଲାଓ୍ୱାଲା କଣ୍ଡକ୍ଟର୍ ଇସିଲିୟେ ମୁସ୍କୁରାୟା ନହିଁ, କ୍ୟୋଁ କି ଓ୍ୱ ଆପ୍‌ଲୋଗୋଁ କି ବାତ୍ ସମଝାତା ନହିଁ ଥା ଔର୍ ୟେ କଣ୍ଡକ୍ଟର୍ ଇସିଲିୟେ ମୁସ୍କୁରାୟା କି ୟେ ଆପ୍‌କୀ ବାତ୍ କୋ ପୂରି ତର୍‌ହ ସେ ସମଝ୍‌ତା ହୈ।" ଲଣ୍ଡନ ସହର ଭିତରେ ରାତି ନଅଟାରେ ସାହେବ ପୋଷାକ ପରହିତ ଜଣେ କଣ୍ଡକ୍ଟରଙ୍କ ମୁହଁରୁ ଖାଣ୍ଟି ହିନ୍ଦୀରେ କଥା ଶୁଣି ଆମେ ଅବାକ୍ ହୋଇଗଲୁ। ତାଙ୍କ ସମ୍ପର୍କରେ କମେଣ୍ଟ୍ କରିଥିବାରୁ ଲଜ୍ଜିତ ହେବା ସହିତ ପ୍ରଭୁଙ୍କ ପାଖରେ କୃତଜ୍ଞତା ଜଣାଇଲୁ ଯେ ଆମେ ତାଙ୍କ ସମ୍ପର୍କରେ ବେଶି କିଛି ଟୀକା-ଟିପ୍ପଣୀ ଦେଇନଥିଲୁ। ଆମ ଆଚରଣ ପାଇଁ ଦୁଃଖପ୍ରକାଶ କରି ତାଙ୍କୁ ଆମ ପାଖରେ ବସିବାକୁ ଅନୁରୋଧ କଲୁ। ଲଣ୍ଡନ୍‌ବାସୀ ହୋଇ ସେ କିପରି ହିନ୍ଦୀରେ କଥାବାର୍ତ୍ତା କରିପାରୁଛନ୍ତି ସେ ବିଷୟରେ ଜାଣିବାପାଇଁ ଆମର ଆଗ୍ରହ ବଢ଼ିଲା। ସେ ନିଜର ପରିଚୟ ଦେବାକୁ ଯାଇ କହିଲେ, ସେମାନେ ହେଉଛନ୍ତି ଜାତିରେ କାଶ୍ମୀର ବ୍ରାହ୍ମଣ। ତାଙ୍କ ଜେଜେ କୌଣସି ଏକ ବ୍ୟାବସାୟିକ କାର୍ଯ୍ୟରେ ଲଣ୍ଡନ ଆସିଥିଲେ। ଲଣ୍ଡନ ସହରରେ ବ୍ୟବସାୟର ଉଜ୍ଜଳ ସମ୍ଭାବନା ଥିବାରୁ ସେ ଆଉ ଭାରତକୁ ନଫେରି ସେଠାରେ ରହି ନିଜର ବ୍ୟବସାୟ ଆରମ୍ଭ କଲେ। ପ୍ରାଥମିକ ଅବସ୍ଥାରେ ବହୁ ଅସୁବିଧାକୁ ସମ୍ମୁଖୀନ ହୋଇ ସେ ବ୍ୟବସାୟରେ ପ୍ରତିଷ୍ଠା ଅର୍ଜନ କଲେ। ଲଣ୍ଡନ ସହରରେ ଘର କିଣିଲେ। ଆସ୍ତେ ଆସ୍ତେ ତାଙ୍କର କୁଟୁମ୍ବ ବଢ଼ିଲେ। ତାଙ୍କର ଦୀର୍ଘଦିନୁ ଦେହାନ୍ତ ହୋଇଗଲାଣି, ଏବେ ପିଲାମାନେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି। ସେ ନିଜେ ଲଣ୍ଡନରେ ଜନ୍ମ ହୋଇଥିଲେ ବି ନିଜ ମାତୃଭାଷାକୁ ଭୁଲି

ଟାଇନାହାନ୍ତି। ଲଣ୍ଡନରେ ତିନିପୁରୁଷ ଧରି ବସବାସ କରୁଥିଲେ ମଧ୍ୟ ତାଙ୍କ ପରିବାରର ସଦସ୍ୟମାନେ ନିଜ ମଧ୍ୟରେ ହିନ୍ଦୀଭାଷାରେ କଥାବାର୍ତ୍ତା ହୁଅନ୍ତି।"

ରାତିରେ ଆମେ କୋଉଠି କ'ଣ ଖାଇବୁ ବୋଲି ପଚାରିଲାରୁ ସେ କହିଲେ "ବାଟରେ ଗୋଟିଏ ବାଙ୍ଗ୍‌ଲାଦେଶୀ ରେଷ୍ଟୁରାଣ୍ଟ୍ ପଡ଼ିବ ଏବଂ ସେଠାରେ ଉଣା ଅଧିକେ କିଛି ଭାରତୀୟ ଖାଦ୍ୟ ମିଳିଯିବ। ଆପଣମାନେ ଆଉ ସାତମିନିଟ୍ ପରେ ଯେଉଁ ଷ୍ଟେଜ୍ ପଡ଼ିବ ସେଇଠି ଓହ୍ଲେଇଯିବେ ଏବଂ ସେ ଷ୍ଟେଜ୍ ପାଖରୁ ରେଷ୍ଟୁରାଣ୍ଟ୍‌ଟି ବେଶିବାଟ ନୁହେଁ।"

ଲଣ୍ଡନ୍ ସହରରେ ରାତିରେ ବସ୍ ଭିତରେ ଏପରି ଅପ୍ରତ୍ୟାଶିତ ଭାବରେ ଜଣେ ଭାରତୀୟ ବଂଶୋଦ୍ଭବଙ୍କ ସାଙ୍ଗରେ ଦେଖା ହୋଇଯିବ, ସେକଥା କଳ୍ପନାରେ ମଧ୍ୟ ନଥିଲା। ତାଙ୍କ ସହିତ ଦେଖା ହେବାରେ ଆମେ ଯେତିକି ଖୁସି ହୋଇଥିଲୁ, ସେ ମଧ୍ୟ ଆମକୁ ଦେଖି କମ୍ ଖୁସି ନଥିଲେ। ତାଙ୍କ ସହିତ ସ୍ୱଳ୍ପ ସମୟର କଥାବାର୍ତ୍ତା ଭିତରେ ଲଣ୍ଡନ ସହର ସମ୍ପର୍କରେ ଆମର କିଞ୍ଚିତ୍ ଧାରଣା ସୃଷ୍ଟି ହୋଇଥିଲା।

## ବାଂଲାଦେଶୀ ହୋଟେଲରେ ଭାରତୀୟ ଖାଦ୍ୟ

ରେଷ୍ଟୁରାଣ୍ଟ୍ ପାଖ ହୋଇଯିବାରୁ ବସ୍ ଅଟକାଇ ସେ ଆମକୁ ଓହ୍ଲାଇବାରେ ସାହାଯ୍ୟ କଲେ। ସେତେବେଳକୁ ରାତି ପ୍ରାୟ ସାଢ଼େନଅଟା ହେବ। ମେ ମାସ ହୋଇଥିଲେ ବି ଥଣ୍ଡା ଥଣ୍ଡା ଲାଗୁଥିଲା। ରାସ୍ତାରେ ଗାଡ଼ି ମଟର ଭିଡ଼ କମି ନଥିଲା। ରାସ୍ତା ବେଶ୍ ଜନଗହଳି ଥିଲା। ଆମ ମନରେ ଆଶଙ୍କା ଥିଲା ରାତି ନଅଟା ପରେ ହେଲାଣି, ବୋଧହୁଏ ରେଷ୍ଟୁରାଣ୍ଟ୍‌ରେ ଆଉ ଖାଇବାକୁ ମିଳିବ ନାହିଁ। କିନ୍ତୁ ରେଷ୍ଟୁରାଣ୍ଟ୍‌ରେ ପହଞ୍ଚିବା ପରେ ସେ ଆଶଙ୍କା ଦୂର ହୋଇଗଲା। ରେଷ୍ଟୁରାଣ୍ଟ୍ ବଡ଼ ନ ହେଲେ ବି ମଧ୍ୟମ ଧରଣର ଥିଲା। ସେଠାରେ କୋଡ଼ିଏ ପଚିଶି ଜଣ ଏକାଥରେ ବସିବା ପାଇଁ ବ୍ୟବସ୍ଥା ଥିଲା। ରେଷ୍ଟୁରାଣ୍ଟ୍‌ଟି ଖୁବ୍ ପରିଷ୍କାର ପରିଚ୍ଛନ୍ନ। ଭିତରଟା ଏୟାର୍ କଣ୍ଡିସନ୍, ତଳେ ନରମ ଗାଲିଚା। ଥଣ୍ଡା ଦେଶମାନଙ୍କରେ ଚଳଣି ସବୁ ଏକା ରକମର। ଥଣ୍ଡାରୁ ରକ୍ଷା ପାଇବା ପାଇଁ ଏୟାର୍ କଣ୍ଡିସନ୍ କିମ୍ବା ରୁମ୍ ହିଟର୍ ଏବଂ ଗାଲିଚାର ବ୍ୟବସ୍ଥା ପ୍ରାୟ ସବୁ ଜାଗାରେ ଥାଏ। ଆମ ଭଳି ରାସ୍ତାକଡ଼ର ଝୁମ୍ପୁଡ଼ି ହୋଟେଲ ସେଠି ଦେଖିବାକୁ ସପନ। ଆମର ଡ୍ରେନ୍ ଉପରେ କିମ୍ବା ଡ୍ରେନ୍ କଡ଼ରେ ତଳେଇ ଘେରେଇ ଏକ ଅପରିଷ୍କାର ପରିବେଶ ଭିତରେ ଯେଉଳି ଭାବରେ ହୋଟେଲ ଓ ଜଳଖିଆ ଦୋକାନସବୁ ଚାଲିଛି, କୌଣସି ସଭ୍ୟ ରାଷ୍ଟ୍ରରେ ତା'ର କଳ୍ପନା କରାଯାଇ ନପାରେ।

ଆମେ ରେଷ୍ଟୁରାଣ୍ଟ୍ ଭିତରକୁ ପଶିବା ମାତ୍ରେ ମାଲିକ ଆମକୁ ବାହାରର ଲୋକ ବୋଲି ସାଙ୍ଗେ ସାଙ୍ଗେ ଠଉରେଇ ନେଲେ। ଯେତେ ସୁଟ୍ ଓ ଟାଇ ପିନ୍ଧିଲେ ମଧ୍ୟ

ଯେକୌଣସି ଭାରତୀୟ ଓ ଲଣ୍ଡନ୍‌ବାସୀଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଯେ ବାରିହୋଇ ପଡ଼େ, ସେଥିରେ କିଛି ସନ୍ଦେହ ନାହିଁ। ତା'ଛଡ଼ା ଆମେସବୁ ଗୋଟିଏ ଦଳରେ ଯାଇଥିଲୁ। ଯାହାହେଉ, ଆମେ ଭାରତରୁ ଯାଇଥିବା କଥା ଶୁଣି ସେ ଖୁସିହେଲେ। ଯେତେହେଲେ ସେ ପ୍ରଥମେ ଭାରତୀୟ ଓ ପରେ ବଙ୍ଗଳାଦେଶୀ। ବଙ୍ଗ ଭଙ୍ଗ ହେବା ପୂର୍ବରୁ ସେ ଅଞ୍ଚଳ ତ ବଙ୍ଗ ପ୍ରଦେଶର ଗୋଟିଏ ଅଂଶ ଥିଲା। ପ୍ରଥମେ ପୂର୍ବବଙ୍ଗ, ସ୍ୱାଧୀନତା ପରେ ପୂର୍ବ ପାକିସ୍ଥାନ ଏବଂ ଶେଷରେ ବଙ୍ଗଳାଦେଶ ହେଲା। ଦେଶର ନାଁ ବଦଳି ଯାଇଥିଲେ ମଧ୍ୟ ଚଳଣି, ଖାଦ୍ୟପେୟ, ସଂସ୍କୃତିରେ ଢେର୍ ମେଳ ରହିଛି। ସେମାନଙ୍କ ଭାଷା ଆମେ ସ୍ପଷ୍ଟଭାବରେ କହି ନପାରିଲେ ମଧ୍ୟ ବୁଝିବାରେ କିଛି ଅସୁବିଧା ହୁଏନାହିଁ।

ରେଷ୍ଟୁରାଣ୍ଟ୍‌ର ମାଲିକ ଆମପାଇଁ ବସିବାର ଜାଗା କରିଦେଇ କ'ଣ ଖାଇବୁ ବୋଲି ପଚାରିଲେ। ଆମେ ଦ୍ୱନ୍ଦ୍ୱରେ ପଡ଼ିଲୁ; କାରଣ ଆମ ଭିତରେ ଉଭୟ ଶାକାହାରୀ ଓ ଆମିଷାଶୀ ଥିଲେ। ସେଥିପାଇଁ ପ୍ରଥମେ ନିରାମିଷ ଭୋଜନର ବରାଦ ହେଲା ଓ ପରେ ଦରକାର ମୁତାବକ ଆମିଷ ଖାଦ୍ୟ ପାଇଁ ଅର୍ଡର୍ ଦେବାକୁ ଆମେ ସ୍ଥିର କଲୁ। ରେଷ୍ଟୁରାଣ୍ଟ୍ ମାଲିକ ପ୍ରଥମେ କିଛି ବୁଝିପାରିଲେ ନାହିଁ। ଲଣ୍ଡନ୍ ସହରକୁ ଭ୍ରମଣରେ ଆସିଥିବା ସାମ୍ବାଦିକମାନେ ରାତ୍ରିଭୋଜନ ପାଇଁ ସାକାହରୀ ଖାଦ୍ୟ ବରାଦ କରୁଛନ୍ତି! ବିଦେଶ ରାଷ୍ଟ୍ରରେ ଚଳଣିସବୁ ଅଲଗା। ସେଠାରେ ରେଷ୍ଟୁରାଣ୍ଟ୍ ଓ ହୋଟେଲମାନଙ୍କରେ ବିଫ୍, ପୋର୍କ, ଚିକେନ୍, ମଟନ୍ ହେଉଛି ମୁଖ୍ୟ ଖାଦ୍ୟ। ତା'ଛଡ଼ା ବିନା ପାନୀୟରେ ରାତ୍ରିଭୋଜନ ଗୋଟାଏ କ'ଣ? ତେବେ ଆମେ ତାଙ୍କୁ ବୁଝେଇବାକୁ ଚେଷ୍ଟା କରି କହିଲୁ ଯେ, ଭାରତବର୍ଷରେ ଆମଭଳି ଅନେକ ଲୋକ ଅଛନ୍ତି ଯେଉଁମାନେ ଆମିଷ ଭୋଜନ କରନ୍ତି ନାହିଁ। ଆମଦେଶରେ କିଛିଲୋକ ପିଆଜ, ରସୁଣ ଖାଆନ୍ତି ନାହିଁ ବୋଲି ଆମେ ଯେତେବେଳେ ତାଙ୍କୁ କହିଲୁ, ସେ ମୁହଁରେ କିଛି ପ୍ରତିକ୍ରିୟା ପ୍ରକାଶ ନକଲେ ବି ଆମକଥାକୁ ଯେ ସହଜରେ ଗ୍ରହଣ କରିପାରିଲେ ନାହିଁ ସେକଥା ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ଜଣାପଡ଼ିଯାଇଥିଲା।

ଯାହାହେଉ, କିଛିସମୟ ପରେ ଆମ ପାଇଁ ଖାଦ୍ୟ ଆସିଗଲା। ସେଥିରେ ଆମ ସାଦାବାଲାଙ୍କ ପାଇଁ ଥିଲା ନାନ୍, ଡାଲ୍‌ଫ୍ରାଇ, ଫୁଲକୋବି ମଟର ତରକାରି ଓ ଟମାଟୋ ସାଲାଡ୍ ଏବଂ ଆମିଷାହାରୀଙ୍କ ପାଇଁ ଚିକେନ୍ ରୋଷ୍ଟ୍। ଦିନଯାକର କ୍ଲାନ୍ତି ଭିତରେ ଖାଇବା ଖୁବ୍ ତୃପ୍ତିକର ହୋଇଥିଲା। ଆମେ ରେଷ୍ଟୁରାଣ୍ଟ୍‌ରୁ ଆସି ବସ୍‌ଷ୍ଟାଣ୍ଡ୍‌ରୁ ବସ୍ ଧରି ହୋଟେଲ ନିକଟରେ ଓହ୍ଲାଇଲା ବେଳକୁ ସ୍ଥାନୀୟ ସମୟ ରାତି ବାରଟା ବାଜି ତିରିଶ ମିନିଟ୍ ହୋଇଥିଲା।

ଗତ ରାତିରେ ଶୋଇବାରେ ବିଳମ୍ବ ଘଟିଥିବାରୁ ସକାଳୁ ଉଠିଲାବେଳକୁ ଟିକିଏ ଅଡୁଆ ଲାଗୁଥିଲା। କିନ୍ତୁ କ'ଣ କରାଯିବ ? ପୂର୍ବରୁ କାର୍ଯ୍ୟସୂଚୀସବୁ ସ୍ଥିର ହୋଇ ସମସ୍ତଙ୍କୁ ଜଣାଇ ଦିଆଯାଇଥିଲା। ଗାଧୁଆପାଧୁଆ ପରେ ଜଳଖିଆପର୍ବ ସାରି ସାତଟା ବେଳକୁ କୋଚ୍‌ରେ ବସିବା କଥା। ଲଣ୍ଡନ ସହରରେ ମାତ୍ର ତିନିଦିନର ରହଣି। ସେହି ସମୟ ମଧ୍ୟରେ ବ୍ରିଟିଶ୍ ପାର୍ଲାମେଣ୍ଟ, ଲଣ୍ଡନ୍ ଟାୱାର୍, ପିକାଡେଲି ସର୍କସ୍ ଓ ଆହୁରି କେତେ କ'ଣ ଦେଖିବାକୁ ରହିଥିଲା। ଅକ୍ସଫୋର୍ଡ ୟୁନିଭର୍ସିଟି ଓ ସେକ୍ସପିଅର୍‌ଙ୍କ ଜନ୍ମସ୍ଥାନ ଷ୍ଟ୍ରଟ୍‌ଫୋର୍ଡ-ଅନ୍-ଆଭନ ଦେଖିଯିବା ପାଇଁ ପୂରା ଗୋଟିଏ ଦିନ ଥିଲା।

ମୁଁ ତରବରରେ ଜଳଖିଆ ଖାଇ ଆସିଲାବେଳକୁ ଅଧିକାଂଶ ବନ୍ଧୁ କୋଚ୍‌କୁ ଆସି ଯାଇଥିଲେ। କଥା ହେଲା ପ୍ରଥମେ 'ଲଣ୍ଡନ୍ ଟାୱାର୍' ଦେଖିଯିବା ଓ ପରେ ବ୍ରିଟିଶ ପାର୍ଲାମେଣ୍ଟ୍‌ରେ କିଛି ସମୟ କଟାଇବା।

## ଲଣ୍ଡନ୍ ଟାୱାର୍‌ରେ କୋହିନୂର ହୀରା

କିଛି ସମୟପରେ ଆମ କୋଚ୍ ଯାଇ ପହଞ୍ଚିଲା ଲଣ୍ଡନ୍ ଟାୱାର୍ ସମ୍ମୁଖରେ। ଲଣ୍ଡନ ସହରର ପୂର୍ବପଟରେ ଟେମ୍‌ସ୍ ନଦୀକୂଳରେ ଏହା ହେଉଛି ଗୋଟିଏ ପ୍ରାଚୀନ ଦୁର୍ଗ। ପ୍ରବେଶପଥରେ ଥିଲା ଟିକେଟ୍ କାଉଣ୍ଟର୍। ଗାଇଡ୍ ଆମ ସମସ୍ତଙ୍କ ପାଇଁ ପ୍ରବେଶ ଟିକେଟ୍ ନେଇଆସିଲେ। ସେ ଟିକେଟ୍ କରିନଥିଲେ ଲମ୍ବା ଲାଇନ୍‌ରେ ଯାଇ ଟିକେଟ୍ ପାଇବା ପାଇଁ ଆମକୁ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ିଥାନ୍ତା। ପ୍ରବେଶପଥ ଅତିକ୍ରମ କରିବାମାତ୍ରେ ଗାଇଡ୍ ମେରୀ ତାଙ୍କର ଚିରାଚରିତ ଢଙ୍ଗରେ କହିବାକୁ ଆରମ୍ଭ କଲେ। ଲଣ୍ଡନ ଟାୱାର ସମ୍ପର୍କରେ ଅନେକ କଥା ମୁଁ ଆଗରୁ ଶୁଣିଥିଲି। କେତେ କିମ୍ବଦନ୍ତୀ, କେତେ କାହାଣୀ। ମାତ୍ର ଦିନେ ଯେ ଲଣ୍ଡନ୍ ଟାୱାର୍‌କୁ ସ୍ୱଚକ୍ଷୁରେ ଦେଖିହେବ ସେକଥା ସ୍ୱପ୍ନରେ ମଧ୍ୟ ନଥିଲା। ଏ ଦୁନିଆ ବଡ଼ ବିଚିତ୍ର। ଅନେକ ସମୟରେ ଚାହୁଁଥିବା ପଦାର୍ଥ ହାତରୁ ଖସିଯାଏ ଆଉ କେତେବେଳେ ଭାବିନଥିବା ଜିନିଷ ମଧ୍ୟ ହାତକୁ ଚାଲିଆସେ।

ଗାଇଡ୍ କହି ଚାଲିଥିଲେ, "ଲଣ୍ଡନ୍ ଟାୱାରର ନିର୍ମାଣ କେବେ ହେଲା ସେ ବିଷୟରେ ଠିକ୍‌ଭାବେ କହି ହେବନାହିଁ। ତେବେ ଦଶମ ଶତାବ୍ଦୀର ମଧ୍ୟଭାଗରେ ଏହା ନିର୍ମିତ ହୋଇଥିବାର ଅନୁମାନ କରାଯାଏ। ଗତ ହଜାରେ ବର୍ଷ ମଧ୍ୟରେ ଏହି ପ୍ରାସାଦଟି ବିଭିନ୍ନ ରାଜାଙ୍କ ଶାସନକାଳରେ ଭିନ୍ନ ଭିନ୍ନ କାମରେ ଓ ଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି। କେତେବେଳେ ଏହାକୁ ସେନାଛାଉଣିରେ ପରିଣତ କରାଯାଇଥିଲା ବେଳେ ଅନ୍ୟ ସମୟରେ ଏଠାରେ ଯୁଦ୍ଧବନ୍ଦୀମାନଙ୍କୁ ରଖାଯାଇଛି ଓ ଆଉ କୋଉ ସମୟରେ ଏଠାରେ ଅନେକଙ୍କୁ ଫାଶି ଦିଆଯାଇ ହତ୍ୟା କରାଯାଇଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ

ଏହି ଦୁର୍ଗକୁ ବନ୍ଦୀଶାଳା ଓ ଫାଶିକେନ୍ଦ୍ର ଭାବରେ ବ୍ୟବହାର କରାଯାଉଥିଲା। ଆଗେ ଏହି ପ୍ରାସାଦ ଭିତରକୁ କେବଳ ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତିମାନଙ୍କୁ ଯିବାପାଇଁ ଅନୁମତି ମିଳୁଥିଲା କିନ୍ତୁ ସମୟ ବଦଳିବା ସହିତ ପୂର୍ବର ସେ ରୀତିରିଆଜ ବଦଳିଯାଇଛି ଏବଂ ଏବେ ସାଧାରଣଲୋକେ ଟିକେଟ୍ କରି ଏହା ଭିତରକୁ ଯାଇପାରୁଛନ୍ତି। ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବର୍ଷକୁ ପ୍ରାୟ ୨୦ଲକ୍ଷରୁ ଅଧିକ ପର୍ଯ୍ୟଟକ ଏହି ଦୁର୍ଗ ଦେଖିବାକୁ ଆସୁଛନ୍ତି। ପର୍ଯ୍ୟଟକମାନଙ୍କ ପାଇଁ ଏବେ ଏହା ଏକ ମୁଖ୍ୟ ଆକର୍ଷଣୀୟ କେନ୍ଦ୍ର ହୋଇଛି।"

ମେରୀ କହିଚାଲିଥିଲେ ଆଉ ପୁରୀ ଶ୍ରୀମନ୍ଦିରରେ ପଣ୍ଡାଙ୍କ ପଛରେ ଯାତ୍ରୀ ଚାଲିଲାଭାଳି ଆମେ ତାଙ୍କ ପଛରେ ଚାଲୁଥିଲୁ। ମଝିରେ ମଝିରେ ସେ ଆମକୁ ତାଗିଦ୍ କରିଦଉଥିଲେ, "ଯେତେ ବୁଲିବେ, ସେତେ ଦେଖିବେ; ଆଉ ଯେତେ ଦେଖିବେ ସେତେ ଜାଣିବେ। ସେଥିପାଇଁ ଆପଣମାନଙ୍କୁ ସମୟାନୁବର୍ତ୍ତୀ ହେବାକୁ ପଡ଼ିବ।"

କିଛିବାଟ ଗଲାପରେ ଗୋଟାଏ ଜାଗାରେ ଲମ୍ବା ଲାଇନ୍ ଲାଗିଥିବାର ଆଖିରେ ପଡ଼ିଲା। ଆମେ ତା'ର କାରଣ ପଚାରିବା ପୂର୍ବରୁ ମେରୀ କହିଲେ, "ଏହି ଦୁର୍ଗ ଭିତରେ ଏକ ରୁଦ୍ଧ କୋଠରିରେ ଏକ ବିଶ୍ୱବିଖ୍ୟାତ ହୀରାକୁ ସୁରକ୍ଷିତ କରି ରଖାଯାଇଛି। ଏହି ଦୁର୍ଲଭ ହୀରା ଭାରତବର୍ଷରୁ ଏଠାକୁ ଆସିଥିବା କଥା ଶୁଣାଯାଏ। ଯଦି ଆପଣମାନେ ସେ ହୀରା ଦେଖିବାକୁ ଆଗ୍ରହୀ, ତେବେ ଲାଇନ୍‌ରେ ଛିଡ଼ା ହୋଇ ଭିତରକୁ ଯାଆନ୍ତୁ। ସେଥିପାଇଁ ପନ୍ଦର କୋଡ଼ିଏ ମିନିଟ୍ ସମୟ ଲାଗିବ।" ଆମେ ଆଉ କାଳ ବିଳମ୍ବ ନକରି ଲାଇନ୍‌ରେ ଯାଇ ଛିଡ଼ା ହେଲୁ। କିଛି ସମୟ ପରେ ଭିତରକୁ ଯିବାପାଇଁ ଆମ ପାଳି ପଡ଼ିଲା। ଆମେ ଭିତରକୁ ଯାଇ ଦେଖିଲୁ ଏକ ରୁଦ୍ଧ କୋଠରିରେ କାଚବାକ୍ସ ଭିତରେ ଏକ ହୀରା ଚକ୍‌ମକ୍ କରୁଥିଲା। ସେଠାରେ ଥିବା ସୁରକ୍ଷାକର୍ମୀମାନେ ଲୋକମାନଙ୍କୁ ଶୀଘ୍ର ଶୀଘ୍ର ଯିବା ପାଇଁ ଯେଉଁ ଅନୁରୋଧ କରୁଥିଲେ ତାହା ନିର୍ଦ୍ଦେଶ ଭଳି ବୋଧ ହେଉଥିଲା। ସେ ହୀରା ଦେଖିବାମାତ୍ରେ ଶରୀରରେ ରୋମାଞ୍ଚ ହେଲା। ଏଇ ଗୋରାସାହେବମାନେ ଷଡ଼ଯନ୍ତ୍ର କରି ଭାରତବର୍ଷକୁ ଅକ୍ତିଆର କଲେ। ଦୀର୍ଘଦିନ ଧରି ନିଜର ଶାସନ ଚଳାଇଲେ ଓ ଶେଷରେ ଯାହାସବୁ ଭଲ ଜିନିଷ ପାଇଲେ ନିଜ ଦେଶକୁ ନେଇଆସିଲେ। ସେଥିରୁ ଏ ହୀରା ବାଦ୍ ପଡ଼ିଲା ନାହିଁ। ଏମାନେ ପୁଣି ନ୍ୟାୟ, ସଙ୍କୋଚ କଥା କହନ୍ତି! ଆମ ଗ୍ରୁପ୍‌ରେ ଥିବା ଅଧିକାଂଶଙ୍କ ମନରେ ଏକାପ୍ରକାର ପ୍ରତିକ୍ରିୟା। ଏଇ ପ୍ରତିକ୍ରିୟା ଭିତରେ କେଇ ମିନିଟ୍ ବିଳମ୍ବ ହୋଇଗଲା। ପଛରୁ ଲୋକଙ୍କ ଭିଡ଼ ଲାଗିଲା। ଶୀଘ୍ର ଶୀଘ୍ର ଯିବାପାଇଁ ସୁରକ୍ଷାକର୍ମୀମାନେ ଗର୍ଜିଉଠିଲେ। ଏଥିରେ ଆମଭିତରେ ଥିବା କ୍ରୋଧ ବାହାରିଆସିଲା। କେହି କେହି ସମସ୍ୱରରେ ସେମାନଙ୍କୁ ଜବାବ ଦେଇ କହିଲେ, "ଆମ ସମ୍ରାଟଙ୍କ ମୁକୁଟରେ ଶୋଭା ପାଉଥିବା ମଣିକୁ ଆଣି ଏଠାରେ ଲୁଚେଇ ରଖିଛ, ଆଉ ଆମେ

ଦେଖିବାକୁ ଚାହିବାରୁ ପାଚିକରୁଛ ? ଏହା କ'ଣ ତମ ନିଜ ସମ୍ପତ୍ତି ?" ପରିସ୍ଥିତି ଭିନ୍ନ ଆଡ଼କୁ ଯାଉଥିବାର ଦେଖି ବିକ୍ରମ ରାଓ ଆମକୁ ଶାନ୍ତ ରହିବାକୁ ଇସାରା ଦେଲେ ଓ କିଛି ସମୟ ପରେ ଆମେସବୁ ସେଠାରୁ ବାହାରି ଆସିଲୁ।

ସକାଳ ଜଳଖିଆ ଠିକ୍‌ଭାବରେ ହୋଇନଥିବାରୁ କଥା ହେଲା ଲଣ୍ଡନ୍ ଟାୱାରରେ ଥିବା ରେଷ୍ଟୁରାଣ୍ଟ୍‌ରେ କିଛି ଖାଇନେବା, ଯାହାକି ଖରାବେଳେ ଖାଇବା କାମ ଚଳାଇ ଦେବ। ଗାଇଡ୍ ମେରୀ ମଧ୍ୟ ଆମ ପ୍ରସ୍ତାବକୁ ପସନ୍ଦ କଲେ। ଆମେ ରେଷ୍ଟୁରାଣ୍ଟ୍‌କୁ ଯାଇ ସାଣ୍ଡୱିଚ୍, ପଟାଟୋ ଚିପ୍ସ ଓ ଫ୍ରୁଟ୍ ଜୁସ୍ ନେଲୁ। ଆମ ଭିତରୁ କେଇଜଣ ବ୍ରେଡ୍, ବଟର, ଓମଲେଟ୍ ନେଲେ। ଅଳ୍ପ ସମୟରେ ଖାଇବା ପର୍ବ ଶେଷ ହୋଇଗଲା। ଟାୱାର୍ ଭିତରେ ଆଉ କ'ଣ କ'ଣ ଦେଖିବା ଜିନିଷ ଅଛି ଆମେ ମେରୀଙ୍କୁ ପଚାରିଲୁ। ମାତ୍ର ଆମେ ରେଷ୍ଟୁରାଣ୍ଟ୍ ଛାଡ଼ିବା ପୂର୍ବରୁ ଟାୱାର୍‌ରେ ଥିବା ହୀରା ସମ୍ପର୍କରେ କିଏ କ'ଣ ଜାଣିଛ ବୋଲି ବିକ୍ରମବାବୁ ପଚାରିଲେ। କେଜାଣି କାହିଁକି ପ୍ରଥମେ ତାଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା। ସେ କହିଲେ, "ତୁହ୍ମାରା ବି.ଏ. ମେଁ ହିଷ୍ଟ୍ରି ସବ୍‌ଜେକ୍ଟ ଥା ନା ? ତବ୍ ତୋ ତୁମ୍‌କୋ ଇସ୍ ବାରେ ମେଁ ମାଲୁମ୍ ହୁଆ ହୋଗା। ଇସ୍ କେ ସିୱା ତୁମ୍‌ନେ ତୋ ପଲିଟିକାଲ୍ ସାଇନ୍ସ ମେଁ ପି.ଜି. କିୟା ହୈ। ଅବ୍ ଇସ୍ କେ ବାରେ ମେଁ ସବ୍‌କୋ ବତାଓ।"

ମୁଁ ପ୍ରଥମେ ଟିକିଏ ହଡ଼ବଡ଼େଇ ଗଲି। କୋଉକାଳର ପାଠ, ଆଉ କ'ଣ ମନେ ଅଛି ? ତଥାପି ସାହସ ସଞ୍ଚୟ କରି କହିଲି, "ଆମେ ଯୋଉ ହୀରା ଦେଖିଲୁ ଏହା ନିଶ୍ଚିତଭାବରେ କୋହିନୂର ହୀରା ଓ ଏହାର ଇତିବୃତ୍ତ ଖୁବ୍ ପୁରୁଣା ଓ ବ୍ୟାପକ। ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ବାବର ପ୍ରଥମେ ଭାରତବର୍ଷରେ ମୋଗଲ ସାମ୍ରାଜ୍ୟର ମୂଳଦୁଆ ପକାଇଥିଲେ। ପାନିପଥ ଯୁଦ୍ଧରେ ପରାଭୂତ ସମ୍ରାଟ ଇବ୍ରାହିମ ଲୋଦିଙ୍କ ସହଯୋଗୀ ବିକ୍ରମ୍‌ଜିତ୍‌ଙ୍କଠାରୁ ବାବର ପ୍ରଥମେ ଏହି ହୀରାଟିକୁ ହାସଲ କରିଥିଲେ ଏବଂ ସେଇଦିନଠାରୁ ଏହା ଭାରତର ସମ୍ରାଟଙ୍କ ମୁକୁଟରେ ଶୋଭାପାଉଥିଲା। ଏହା ବେଶ୍ କିଛିଦିନ ଭାରତରେ ରହିଥିଲା। ଔରଙ୍ଗଜେବ୍‌ଙ୍କ ପରେ ଭାରତରେ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇଗଲା। ପରବର୍ତ୍ତୀ ରାଜାମାନେ ବିଶାଳ ଭାରତବର୍ଷର ରାଜଗାଦିକୁ ସୁରକ୍ଷିତ କରି ରଖିପାରିଲେ ନାହିଁ। ଘଟଣାକ୍ରମରେ ନାଦିର୍ ଶାହ ଭାରତ ଆକ୍ରମଣ କଲେ। ସେତେବେଳର ଶାସନଗାଦିରେ ଥିବା ଦୁର୍ବଳ ସମ୍ରାଟ୍ ନାଦିର୍ ଶାହଙ୍କୁ ପ୍ରତିରୋଧ କରିବା ପରିବର୍ତ୍ତେ ଲାଲ୍‌କିଲ୍ଲାକୁ ସୁସଜ୍ଜିତ କରି ତାଙ୍କୁ ଆମନ୍ତ୍ରଣ କଲେ। ଏହାର ଫଳସ୍ୱରୂପ ରାଜଧାନୀର ସମସ୍ତ ମୂଲ୍ୟବାନ ପଦାର୍ଥ ଲୁଟ୍ ହୋଇଗଲା। ମାତ୍ର ମୂଲ୍ୟବାନ୍ ରତ୍ନଟି ସମ୍ରାଟଙ୍କ ମୁକୁଟରେ ଥିବାରୁ ଲୁଟ୍ ହୋଇ ପାରିନଥିଲା। କୌଣସିମତେ ଏହି ଅମୂଲ୍ୟ ରତ୍ନ ସମ୍ପର୍କରେ ନାଦିର୍ ଶାହ ଖବର ପାଇଲେ ଏବଂ ତାକୁ ହାତ କରିବା ପାଇଁ କୌଶଳ କଲେ। ବନ୍ଧୁତାର ଛଳନା କରି ସେ ନିଜ ଭିତରେ ମୁକୁଟ ବଦଳାଇବା ପାଇଁ ଦିଲ୍ଲୀ ସମ୍ରାଟଙ୍କୁ ପ୍ରସ୍ତାବ

ଦେଲେ। ଏପରି ଏକ ପ୍ରସ୍ତାବକୁ ଗ୍ରହଣ କରିବା ଛଡ଼ା ସମ୍ରାଟଙ୍କ ପାଖରେ ଆଉ କିଛି ଚାରା ନଥିଲା। ସୌହାର୍ଦ୍ଦ୍ୟର ନିଦର୍ଶନ ସ୍ୱରୂପ ନାଦିର୍ ଶାହ ନିଜର ଶସ୍ତା ମୁକୁଟଟି ବଦଳରେ ରତ୍ନଖଚିତ ମୁକୁଟଟି ହାସଲ କରିନେଲେ। ସେତେବେଳେ ଏହି ରତ୍ନଟିର ନାମକରଣ ହୋଇନଥିଲା। ନାଦିର୍ ଶାହ ଏହାକୁ 'କୋହ-ଇ-ନୁର' ବା 'ଆଲୋକର ପାହାଡ଼' ନାମରେ ନାମିତ କଲେ ଏବଂ ସେଇଦିନଠାରୁ ଏହା କୋହିନୂର ହୀରା ନାମରେ ପରିଚିତ ହେଲା। ଦୀର୍ଘଦିନ ଧରି କୋହିନୂର ହୀରା ଏକାଧିକ ବ୍ୟକ୍ତିଙ୍କ ମାଧ୍ୟମରେ ହସ୍ତାନ୍ତର ହୋଇ ଶେଷରେ ଇଂରେଜ ଶାସକମାନଙ୍କ ହାତକୁ ଆସିଥିଲା। ଶେଷରେ ଲର୍ଡ ଡେଲ୍‌ହାଉସି ଏକ ବିଶେଷ ଅନୁଷ୍ଠାନର ଆୟୋଜନ କରି ଇଂଲଣ୍ଡର ରାଣୀ ଭିକ୍ଟୋରିଆଙ୍କୁ ଏହି ଅମୂଲ୍ୟ ରତ୍ନକୁ ଉପହାର ଦେଇଥିଲେ। ପରବର୍ତ୍ତୀ ସମୟରେ ତାହା ରାଣୀଙ୍କ ମୁକୁଟରେ ଶୋଭା ପାଇଲା।"

ମୁଁ କହିସାରିଲା ବେଳକୁ ବନ୍ଧୁମାନେ କରତାଳି ଦେଇ ମୋତେ ଧନ୍ୟବାଦ ଜ୍ଞାପନ କଲେ। ମୁଁ କିନ୍ତୁ ସେମାନଙ୍କୁ ସ୍ପଷ୍ଟଭାବରେ କହିଥିଲି ଯେ, ଏ ସମ୍ପର୍କରେ ମୁଁ ଯେତିକି ଜାଣିଥିଲି କହିଲି। ମାତ୍ର ମୋର ବକ୍ତବ୍ୟ ଯେ ସମ୍ପୂର୍ଣ୍ଣ ଐତିହାସିକ ତଥ୍ୟ ଉପରେ ପର୍ଯ୍ୟବସିତ, ସେକଥା ମୁଁ ଜୋର୍ କରି କହିପାରିବି ନାହିଁ। ମୁଁ ଇଂରାଜୀରେ କହିଥିବାରୁ ଆମ ଗାଇଡ୍ ମେରୀ ମଧ୍ୟ କୋହିନୂର ହୀରାର ଇତିବୃତ୍ତ ସମ୍ପର୍କରେ କେତେକ ତଥ୍ୟ ଜାଣିବାକୁ ପାଇଥିଲେ। ସେତେବେଳକୁ ଅଧଘଣ୍ଟାରୁ ଅଧିକ ସମୟ ଅତିବାହିତ ହୋଇଯାଇଥିଲା।

ମେରୀ ଆମକୁ ସୂଚାଇଦେଇ କହିଲେ, "ବର୍ତ୍ତମାନ ଟାୱାରର ଗାର୍ଡ ବଦଳ ହେବେ। ଆପଣମାନେ ଯଦି ସେ ଦୃଶ୍ୟ ଦେଖିବାକୁ ଚାହାନ୍ତି, ତେବେ ଶୀଘ୍ର ଆସନ୍ତୁ!" ଆମେସବୁ ମସ୍କୋର କ୍ରେମ୍‌ଲିନ୍‌ରେ ଗାର୍ଡ ବଦଳର ଦୃଶ୍ୟ ଉପଭୋଗ କରିଥିଲୁ। ଏଠାରେ ଏକ ଉନ୍ନତ ପାଶ୍ଚାତ୍ୟ ରାଷ୍ଟ୍ରରେ କେଉଁ ଢଙ୍ଗରେ ଗାର୍ଡ ବଦଳୁଛନ୍ତି ସେକଥା ଦେଖିବାକୁ ଆମର ଆଗ୍ରହ ହେଲା। ଆମେ ଦେଖୁଦେଖୁ ତିନିଜଣ ଗାର୍ଡ ପାରମ୍ପରିକ ଲାଲ୍ ପୋଷାକ ଓ ମୁଣ୍ଡରେ ଫର୍ କ୍ୟାପ୍ ପିନ୍ଧି ସାମରିକ କାଇଦାରେ ଆସି ଛିଡ଼ାହେଲେ ଏବଂ ଆଖି ପଲକ ପଡ଼ିବା ମାତ୍ରେ ସେମାନଙ୍କ ମଧ୍ୟରୁ ଦୁଇଜଣ ଗାର୍ଡଙ୍କ ସ୍ଥାନ ଦଖଲ କରିନେଲେ ଓ ପୂର୍ବରୁ ସେଠାରେ ଛିଡ଼ା ହୋଇଥିବା ଗାର୍ଡ ଦୁଇଜଣ ମାର୍ଚ୍ଚ କରି ସେଠାରୁ ଚାଲିଗଲେ। ମେରୀ ଆମକୁ କହିଲେ ଯେ, ପ୍ରତି ଦୁଇଘଣ୍ଟାରେ ଥରେ ସେଠାରେ ଗାର୍ଡ ବଦଳିଥାନ୍ତି।

ଟାୱାରରୁ ବାହାରକୁ ଆସିବା ବାଟରେ ଆଉ ଏକ ଦୃଶ୍ୟ ଆମକୁ ଆମୋଦିତ କରିଥିଲା। ଟାୱାରର ବିସ୍ତୀର୍ଣ୍ଣ ଲନ୍‌ରେ ଗୋଟିଏ କୋଣରେ ଥିବା ଲୁହା ବାଡ଼ ଉପରେ ଦୁଇଟି ଡାମରା କାଉ ବସିଥିଲେ। ସେମାନଙ୍କ ଗୋଡ଼ରେ ଗୋଟିଏ ଲେଖାଏଁ କଡ଼ା ଲାଗିଥିଲା ଓ ସେଥିରେ ନମ୍ବର ଦିଆଯାଇଥିଲା। ସେ କାଉମାନଙ୍କୁ ଦେଖିବା ପାଇଁ ସେଠାରେ ଲୋକ

ଜମିଥିଲେ। ଲୋକଗହଳିର କାରଣ ସମ୍ପର୍କରେ ଆମେ ମେରୀଙ୍କୁ ପଚାରିବାରୁ ସେ କହିଲେ, "ଏଇ କାଉମାନେ ହେଉଛନ୍ତି ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତୀକ। ଏମାନେ ଲୋପ ହୋଇଗଲେ ବ୍ରିଟିଶ ସାମ୍ରାଜ୍ୟ ଦୋହଲିଯିବ ଏବଂ ଇଂରେଜ ଜାତି ମଧ୍ୟ ଲୋପ ପାଇଯିବ ବୋଲି ଏକ ବିଶ୍ୱାସ ରହିଛି। ସେଥିପାଇଁ ଏହି ଟାୱାର ମଧ୍ୟରେ ବାରଟି କାଉଙ୍କ ଦେଖାଶୁଣା କରିବା ପାଇଁ ୩୬ଜଣ କର୍ମଚାରୀ ନିଯୁକ୍ତ ହୋଇଛନ୍ତି। ସେମାନେ ଆଠଘଣ୍ଟା କରି ଡିଉଟି କରନ୍ତି। ସେମାନଙ୍କ ତତ୍ତ୍ୱାବଧାନରେ ଏଇ କାଉମାନେ ସ୍ୱଚ୍ଛନ୍ଦରେ ଲଣ୍ଡନ୍ ଟାୱାର ମଧ୍ୟରେ ଅଛନ୍ତି। ସେମାନେ ଠିକ୍ ସମୟରେ ଖାଦ୍ୟ ଖାଇଲେ କି ନାହିଁ, କାହାର ସ୍ୱାସ୍ଥ୍ୟ କିପରି ଅଛି ସେକଥା ଏଇ କର୍ମଚାରୀମାନେ ଦେଖାଶୁଣା କରି ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାନ୍ତି। ଏମାନଙ୍କୁ ସବୁ ସମୟରେ ଦେଖିବାକୁ ମିଳେନାହିଁ। ଆପଣମାନେ ଭାଗ୍ୟବାନ, ଏକାଥରକେ ଦୁଇତିନୋଟି କାଉ ଦେଖିବାକୁ ପାଇଲେ।" ଶିକ୍ଷିତ ଓ ଅତ୍ୟାଧୁନିକ ଇଂରେଜବାସୀଙ୍କର ଯେ ଏପରି ଏକ ଅନ୍ଧବିଶ୍ୱାସ ରହିଛି, ସେକଥାକୁ ଆମେ ସେଦିନ ସହଜରେ ଗ୍ରହଣ କରିପାରି ନଥିଲୁ।

ଲଣ୍ଡନ ଟାୱାରର ପ୍ରସ୍ଥାନ ପଥର ବାଁ ପାଖରେ ଗୋଟିଏ ବିରାଟ କକ୍ଷ ଆଖିରେ ପଡ଼ିଲା। ସେଇ ହଲ୍‌ରେ ବହୁ ପୁରୁଣା ସାମଗ୍ରୀ ସାଇତା ହୋଇ ରହିଛି ବୋଲି ମେରୀ ଆମକୁ କହିବାରୁ ସେ କକ୍ଷକୁ ଯିବାପାଇଁ ଆମର ଆଗ୍ରହ ସୃଷ୍ଟି ହେଲା। ସେ କକ୍ଷକୁ ଯାଇ ଦେଖିଲୁ, ଇଂଲଣ୍ଡର ବହୁ ପୁରୁଣା ଅସ୍ତ୍ରଶସ୍ତ୍ରଠାରୁ ଆରମ୍ଭ କରି ଯୁଦ୍ଧବନ୍ଦୀମାନଙ୍କୁ ହତ୍ୟା କାରିବା ପାଇଁ ଯେଉଁସବୁ ଅସ୍ତ୍ର ବ୍ୟବହାର କରାଯାଉଥିଲା ସେସବୁ ସୁରକ୍ଷିତ ରଖାଯାଇଥିଲା। ବଡ଼ କକ୍ଷ ସାଙ୍ଗକୁ ଆଉ ଗୋଟିଏ କକ୍ଷରେ ଇଂଲଣ୍ଡର ରାଜାରାଣୀମାନଙ୍କର ରାଜକୀୟ ଆଭୂଷଣ ଓ ଅଳଙ୍କାରମାନ ଶୋଭା ପାଉଥିଲା। ଏପରିକି ରାଜାରାଣୀମାନଙ୍କର ସିଂହାସନ ଆରୋହଣ ଅବସରରେ ବିଭିନ୍ନ ଦେଶରୁ ଆସିଥିବା ଉପଢ଼ୌକନମାନ ସେଠାରେ ସୁସଜ୍ଜିତ ରହିଥିଲା। ସେଥିରେ ଆମଦେଶର କେତେକ ଉପଢ଼ୌକନ ମଧ୍ୟ ରହିଥିଲା। ଆମେ ଲଣ୍ଡନ୍ ଟାୱାର୍‌ରେ ଥିବା ସମୟରେ ଅନେକ ଭାରତୀୟ ପର୍ଯ୍ୟଟକଙ୍କ ସହିତ ସାକ୍ଷାତ ହୋଇଥିଲା। ମାତ୍ର ମୋର ଦୁର୍ଭାଗ୍ୟ ଯେ, ସେଦିନ ସେଠାରେ ଓଡ଼ିଶାର କୌଣସି ପର୍ଯ୍ୟଟକଙ୍କୁ ଦେଖିବାକୁ ମିଳି ନଥିଲା। ଆମର ଅପରାହ୍ନ ଦୁଇଟାବେଳେ ବ୍ରିଟିଶ ପାର୍ଲାମେଣ୍ଟ୍ ଦେଖିଯିବାର କାର୍ଯ୍ୟକ୍ରମ ଥିବାରୁ ଆମେ ଅନିଚ୍ଛାସତ୍ତ୍ୱେ ଲଣ୍ଡନ୍ ଟାୱାର୍ ଛାଡ଼ିଲୁ। ସେଠାରେ ଆହୁରି ଅନେକ ଦେଖିବାକୁ ବାକି ରହିଗଲା।

## ବ୍ରିଟିଶ ପାର୍ଲାମେଣ୍ଟ୍ ପରିଦର୍ଶନ

ବ୍ରିଟିଶ ପାର୍ଲାମେଣ୍ଟ୍‌କୁ ପୃଥିବୀରେ ପ୍ରଚଳିତ ଗଣତାନ୍ତ୍ରିକ ବ୍ୟବସ୍ଥାର ଜନନୀ ଆଖ୍ୟା ଦିଆଯାଏ। ଏପରି ଆଖ୍ୟାର ପ୍ରକୃତ ପୃଷ୍ଠଭୂମୀ କ'ଣ ତାର ପ୍ରାମାଣିକ ତଥ୍ୟ ମିଳେନାହିଁ।

ଇଂଲଣ୍ଡରେ ଲିଖିତ ସମ୍ବିଧାନ ନଥିଲେ ମଧ୍ୟ ପରମ୍ପରାକୁ ଭିତ୍ତିକରି ଆଜି ସେ ଦେଶରେ ଗଣତାନ୍ତ୍ରିକ ବ୍ୟବସ୍ଥା ଅତ୍ୟନ୍ତ ସୁଦୃଢ଼। ଆଗକାଳରେ ରାଜାମହାରାଜାଙ୍କ ଅମଳରେ ପାର୍ଲାମେଣ୍ଟ ଶାସନ ବ୍ୟବସ୍ଥା ନଥିଲା। ରାଜାମାନେ ସେମାନଙ୍କର ସଭାସଦ୍‌ବର୍ଗଙ୍କୁ ଡକାଇ ସେମାନଙ୍କ ପରାମର୍ଶକ୍ରମେ ଶାସନ ପରିଚାଳନା କରୁଥିଲେ। ବର୍ଷରେ ଏପରି ଚାରିଥର ବୈଠକ ଡକାଯାଉଥିଲା। ସେ ସମୟରେ ଏପରି ବୈଠକକୁ "ପାର୍ଲାମେଣ୍ଟ୍" ବୋଲି କୁହାଯାଉଥିଲା। ପାର୍ଲାମେଣ୍ଟ୍ ଶବ୍ଦଟି ଫରାସୀ ଭାଷାରୁ ଆସି ଇଂରାଜୀ ଭାଷାର ଅନ୍ତର୍ଭୁକ୍ତ ହୋଇଥିଲା। ଚତୁର୍ଦ୍ଦଶ ଶତାବ୍ଦୀରେ ଇଂଲଣ୍ଡର ରାଜା ପ୍ରଥମ ଏଡ୍‌ୱାର୍ଡ ଇଂଲଣ୍ଡର ଶାସନ ବ୍ୟବସ୍ଥାରେ ବ୍ୟାପକ ପରିବର୍ତ୍ତନ ଆଣି ପାର୍ଲାମେଣ୍ଟ୍ ବ୍ୟବସ୍ଥାର ପ୍ରବର୍ତ୍ତନ କରିଥିଲେ। ସେ ବ୍ରିଟିଶ୍ ପାର୍ଲାମେଣ୍ଟ୍‌କୁ ଏକ ଆଇନ ପ୍ରଣୟନ ସଂସ୍ଥା ସହିତ ରାଷ୍ଟ୍ରର ସର୍ବୋଚ୍ଚ ବିଚାର ବିଭାଗୀୟ ସଂସ୍ଥାର ମାନ୍ୟତା ପ୍ରଦାନ କରିଥିଲେ।

ବ୍ରିଟିଶ୍ ପାର୍ଲାମେଣ୍ଟ୍‌ର ଦୁଇଟି ଗୃହ ରହିଛି। ସେଥିମଧ୍ୟରୁ ଗୋଟିଏ ହେଉଛି "ହାଉସ୍ ଅଫ୍ ଲର୍ଡସ୍" ଏବଂ ଅନ୍ୟଟି "ହାଉସ୍ ଅଫ୍ କମନ୍ସ"। ଦେଶର ଜମିଦାର ଓ ଲର୍ଡ୍‌ସ ପରିବାର ସଦସ୍ୟଙ୍କୁ ନେଇ ହାଉସ୍ ଅଫ୍ ଲର୍ଡସ୍ ଗଠିତ ହୋଇଥିଲାବେଳେ ସାଧାରଣଲୋକଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଛି ହାଉସ୍ ଅଫ୍ କମନ୍ସ। ହାଉସ୍ ଅଫ୍ ଲର୍ଡ୍‌ସର ସଦସ୍ୟମାନେ ବଂଶାନୁକ୍ରମେ ଏହି ଗୃହର ସଦସ୍ୟ ପଦ ଲାଭ କରିଥାନ୍ତି ଏବଂ ସେମାନଙ୍କ ପାଇଁ ନିର୍ବାଚନର ଆବଶ୍ୟକତା ପଡ଼େନାହିଁ। ପ୍ରାଥମିକ ଅବସ୍ଥାରେ ଏ ଦୁଇଗୃହ ମଧ୍ୟରେ କ୍ଷମତା ପାଇଁ ଲଢ଼େଇ ଲାଗିଥିଲା। କିଏ ଅଧିକ ଶକ୍ତିଶାଳୀ, ସେଇ ପ୍ରଶ୍ନ ଉପରେ ଦୀର୍ଘଦିନ ବିତର୍କ ହେଲା। ଶେଷରେ ଲୋକ ପ୍ରତିନିଧିଙ୍କୁ ନେଇ ଗଠିତ ହାଉସ୍ ଅଫ୍ କମନ୍ସର ବିଜୟ ଘଟିଲା। ଏହି ହାଉସ୍ ଅଫ୍ କମନ୍ସର ସଦସ୍ୟମାନେ ମନ୍ତ୍ରିମଣ୍ଡଳରେ ସଦସ୍ୟ ହୋଇଥାନ୍ତି। ବାସ୍ତବ କ୍ଷେତ୍ରରେ ଇଂଲଣ୍ଡର ଶାସନ ଏଇମାନଙ୍କ ଦ୍ୱାରା ପରିଚାଳିତ ହୋଇଥାଏ। ରାଜା କିମ୍ବା ରାଣୀମାନେ ନାମକୁ ମାତ୍ର ରାଷ୍ଟ୍ରମୁଖ୍ୟ ଭାବରେ ଥାଆନ୍ତି। ହାଉସ୍ ଅଫ୍ କମନ୍ସର ସଦସ୍ୟ ନଥିବା ଅନ୍ୟ କେହି ସେଥିରେ ପ୍ରବେଶର ଅଧିକାର ପାଇନାହାନ୍ତି। ଏପରିକି ଇଂଲଣ୍ଡର ରାଜା ମଧ୍ୟ ସ୍ୱାଭାବିକ ଭାବରେ ହାଉସ୍ ଅଫ୍ କମନ୍ସରେ ପ୍ରବେଶ କରି ନଥାନ୍ତି। ଚାର୍ଲସ୍ ପ୍ରଥମ, ପ୍ରଚଳିତ ବ୍ୟବସ୍ଥାକୁ ବେଖାତିର କରି କମନ୍ସ ସଭାଗୃହରେ ପ୍ରବେଶ କରିଥିଲେ। ଏପରି ଅନ୍ୟାୟ କାର୍ଯ୍ୟର ବିଚାର କରି ହାଉସ ଅଫ୍ କମନ୍ସ ତାଙ୍କୁ ପ୍ରାଣ ଦଣ୍ଡାଦେଶ ଦେଇଥିଲେ ଏବଂ ୱେଷ୍ଟ-ମିନିଷ୍ଟର୍-ହଲ୍ କକ୍ଷରେ ତାଙ୍କୁ ୧୬୪୯ ମସିହା ଜାନୁଆରୀ ଆଠତାରିଖ ଦିନ ଫାଶୀ ଦିଆଯାଇଥିଲା। ତାଙ୍କୁ ଯେଉଁଠାରେ ଫାଶୀ ଦିଆଯାଇଥିଲା ତାକୁ ଏକ ସ୍ମୃତି ଭାବରେ ରଖାଯାଇଛି।

ଇଂଲଣ୍ଡରେ ପ୍ରଚଳିତ ପରମ୍ପରାକୁ ସର୍ବାଧିକ ଗୁରୁତ୍ୱ ଦିଆଯାଇଥାଏ। ଦୀର୍ଘ ଚାରିଶହବର୍ଷ ତଳେ ଗାଇଫକ୍ସ ନାମକ ଜଣେ ବ୍ୟକ୍ତିର ଅଭିଯୋଗକୁ ପାର୍ଲାମେଣ୍ଟ

ନଶୁଣିଲାରୁ ସେ ତା'ର ପ୍ରତିବାଦରେ ପାର୍ଲାମେଣ୍ଟର ଗୋଟିଏ କୋଣରେ ବୋମାଟିଏ ରଖି ଦେଇଥିଲା। ତା'ର ନିଜ ଦାଦା ପାର୍ଲାମେଣ୍ଟର ଜଣେ ସଦସ୍ୟ ଥିବାରୁ ସେଦିନ ବୈଠକରେ ଯୋଗ ନଦେବାକୁ ଗାଇଫକ୍ସ ଦାଦାଙ୍କୁ ଅନୁରୋଧ କରିଥିଲା। ଏପରି ଅନୁରୋଧରେ ଦାଦାଙ୍କର ସନ୍ଦେହ ଉପୁଜିବାରୁ ସେ ପୁଲିସ୍‌ର ସାହାଯ୍ୟ ନେଇଥିଲେ ଏବଂ ଖୋଜାଖୋଜି ପରେ ବୋମାଟିର ସନ୍ଧାନ ପାଇଥିଲେ। ସେଇକଥାକୁ ସ୍ମରଣ କରି ପାର୍ଲାମେଣ୍ଟ୍ ଅଧିବେଶନରେ ଯୋଗଦେବା ପାଇଁ ଶୋଭାଯାତ୍ରାରେ କକ୍ଷ ମଧ୍ୟକୁ ପ୍ରବେଶ କରିବା ସମୟରେ ସଦସ୍ୟମାନେ ହାତରେ ଗୋଟିଏ ଲେଖାଏଁ ଜଳନ୍ତା ମହମବତୀ ଧରି ଯାଇଥାନ୍ତି।

ଲଣ୍ଡନସ୍ଥ ପୁରୁଣା ପାର୍ଲାମେଣ୍ଟ୍ ହାଉସ୍ ୧୮୩୪ ମସିହା ଅକ୍ଟୋବର ୧୬ ତାରିଖ ଦିନ ଏକ ଭୟାବହ ଅଗ୍ନିକାଣ୍ଡ ଫଳରେ ଭସ୍ମୀଭୂତ ହୋଇଯାଇଥିଲା। ତିରିଶବର୍ଷ ମଧ୍ୟରେ ଏହାର ପୁନଃନିର୍ମାଣ କରାଗଲା। ପୁନର୍ବାର ଦ୍ୱିତୀୟ ମହାଯୁଦ୍ଧ ସମୟରେ ୧୯୪୧ ମସିହା ମେ ୧୦ ତାରିଖ ଦିନ ଶତ୍ରୁପକ୍ଷର ବୋମାମାଡ଼ରେ ହାଉସ୍ ଅଫ୍ କମନ୍ସଟି ଧ୍ୱଂସ ପାଇଯାଇଥିଲା। ପରେ ନୂତନ ଭବନର ନିର୍ମାଣ କରାଯାଇଥିଲା। ଏହି ଭବନରେ ଏଗାରଶହ ବଖରା ଘର, ୧୧ଟି ଅଗଣା ଓ ୧୧ଟି ଶିଡ଼ି ରହିଛି। ଏହାର ତିନୋଟି ଟାୱାର ରହିଛି। ସେଥିମଧ୍ୟରୁ 'ଭିକ୍ଟୋରିଆ ଟାୱାର'ଟି ସବୁଠାରୁ ଉଚ୍ଚା। ଏହାର ଉଚ୍ଚତା ୩୩୬ ଫୁଟ। ଏହି ଟାୱାର ଉପରେ ଲଣ୍ଡନ୍‌ର ଜାତୀୟପତାକା ଉଡୁଛି। 'କ୍ଲକ୍ ଟାୱାର' ନାମରେ ଜଣାଶୁଣା ୩୨୦ ଫୁଟ ଉଚ୍ଚତା ବିଶିଷ୍ଟ ଅନ୍ୟଏକ ଟାୱାରରେ ବିଶ୍ୱବିଖ୍ୟାତ 'ବିଗ୍‌ବେନ୍' ଘଣ୍ଟା ଖଞ୍ଜାଯାଇଛି। ଏହି ଘଣ୍ଟାର ଓଜନ ହେଉଛି ୧୩ ଟନ୍। ଘଣ୍ଟାର ଉଚ୍ଚତା ୨୩ଫୁଟ। ଘଣ୍ଟାରେ ଥିବା ସଂଖ୍ୟାଗୁଡ଼ିକ ମଧ୍ୟରେ ଦୂରତା ପ୍ରାୟ ଦୁଇଫୁଟ୍। ଘଣ୍ଟାକଣ୍ଟାର ଲମ୍ବା ୯ ଫୁଟ୍ ଓ ମିନିଟ୍ କଣ୍ଟାର ଲମ୍ବା ୨୩ ଫୁଟ୍। ୧୮୫୮ ମସିହାରେ ଆଠଲକ୍ଷ ପାଉଣ୍ଡ୍ ବିନିମୟରେ ଏହି ଘଣ୍ଟା ତିଆରି ହୋଇଥିଲା। ଏହି ଘଣ୍ଟାର ଶବ୍ଦ ଲଣ୍ଡନ୍ ସହରରୁ ବହୁ ଦୂରକୁ ଶୁଣାଯାଏ। ବିଶାଳତା ବ୍ୟତୀତ ଏହି ବିଗ୍‌ବେନ୍ ଘଣ୍ଟାର ବିଶେଷତ୍ୱ ହେଉଛି ଯେ, ଇଂଲଣ୍ଡର ସର୍ବତ୍ର ଏହି ଘଣ୍ଟାର ସମୟ ଅନୁସାରେ ଅନ୍ୟ ଘଣ୍ଟାସବୁ ଚାଲେ।

ପାର୍ଲାମେଣ୍ଟ୍‌ହାଉସ୍ ପାଖରେ ପହଞ୍ଚିଲାବେଳକୁ ସେଠାକାର ସମୟ ସାଢ଼େଗୋଟାଏ ହୋଇଥିଲା। ପରମ୍ପରା ଅନୁଯାୟୀ ଅପରାହ୍ନ ଦୁଇଟାରେ ବାଚସ୍ପତିଙ୍କର ଏକ ଶୋଭାଯାତ୍ରା ବାହାରି ହାଉସ୍ ଅଫ୍ କମନ୍ସକୁ ଯିବାର କଥା। ସେ ଶୋଭାଯାତ୍ରା ସମ୍ପର୍କରେ ଆଗରୁ ଶୁଣିଥିବାରୁ ତାକୁ ଦେଖିବାକୁ ସମସ୍ତଙ୍କର ଆଗ୍ରହ ଥିଲା। ସେଥିପାଇଁ ଆମେ ତରତରରେ କୋଚ୍‌ରୁ ଓହ୍ଲାଇ ପାର୍ଲାମେଣ୍ଟ୍ ପ୍ରବେଶଦ୍ୱାର ଆଡ଼କୁ ଚାଲିଲୁ। ଏହି ଶୋଭାଯାତ୍ରା ବାହାରିବା ପୂର୍ବରୁ ରାଜା କିମ୍ବା ରାଣୀମାନେ ପାରମ୍ପରିକ ରତ୍ନଖଚିତ ପୋଷାକ

ପିନ୍ଧି ବକିଙ୍ଗ୍‌ହାମ୍ ପାଲେସ୍‌ରୁ ଶୋଭାଯାତ୍ରାରେ ଆସି ହାଉସ୍ ଅଫ୍ ଲର୍ଡ୍‌ସକୁ ଯାଆନ୍ତି। ତା'ପରେ ହାଉସ୍ ଅଫ୍ କମନ୍ସ ସଦସ୍ୟମାନଙ୍କୁ ରାଜା କିମ୍ବା ରାଣୀଙ୍କ ପକ୍ଷରୁ ଆମନ୍ତ୍ରଣ କରାଯାଏ। ଜଣେ ରାଜକର୍ମଚାରୀ କମନ୍ସ ସଭାର ସଦସ୍ୟମାନଙ୍କୁ ଡାକିବାକୁ ଯାଆନ୍ତି। ମାତ୍ର କର୍ମଚାରୀ ପହଞ୍ଚିବା ମାତ୍ରେ ଦ୍ୱାର ମୁହଁ ବନ୍ଦ କରିଦିଆଯାଏ। ତା'ପରେ କର୍ମଚାରୀ ଏକ ରାଜଦଣ୍ଡରେ କବାଟରେ ତିନିଥର ଠକ୍‌ଠକ୍ କରିବା ପରେ ଦ୍ୱାର ଖୋଲିଦିଆଯାଏ ଏବଂ ବାଚସ୍ପତିଙ୍କ ସହିତ କମନ୍ସ ସଭାର ସଦସ୍ୟମାନେ ଶୋଭାଯାତ୍ରାରେ ପାର୍ଲାମେଣ୍ଟ ଅଧିବେଶନରେ ଯୋଗଦେବାକୁ ଯାଆନ୍ତି।

ଆମର ପାର୍ଲାମେଣ୍ଟ ଦେଖିଯିବାର କାର୍ଯ୍ୟକ୍ରମ ଆଗରୁ ସ୍ଥିର ହୋଇଥିବାରୁ ଏବଂ ଆମେସବୁ ବୃତ୍ତିରେ ସାମ୍ବାଦିକ ଥିବାରୁ ଭିତରେ ପ୍ରବେଶ ପାଇଁ ଆବଶ୍ୟକ ପାସ୍ ପାଇବାପାଇଁ କିଛି ଅସୁବିଧା ହେଲା ନାହିଁ। ଆଗରୁ ଆମପାଇଁ ସେଠାରେ ଆସି ଅପେକ୍ଷା କରିଥିଲେ ରଏଟର୍‌ର ପ୍ରତିନିଧି ବାଲକ୍ରିଷ୍ଣନ୍। ଦୀର୍ଘଦିନ ହେଲା ସେଠାରେ ଅବସ୍ଥାନ ଫଳରେ ସ୍ଥାନୀୟ ଅଫିସର, ବିଶେଷକରି ପାର୍ଲାମେଣ୍ଟ ଅଧିକାରୀମାନଙ୍କ ସହିତ ତାଙ୍କର ସଦ୍‌ଭାବ ଥିଲା। ଆମେ ଯିବାପୂର୍ବରୁ ସେ ଆମପାଇଁ ପାସ୍ ଯୋଗାଡ଼ କରିସାରିଥିଲେ।

ଆମେ ହତାଭିତରେ ପହଞ୍ଚିଲାବେଳକୁ ବାଚସ୍ପତିଙ୍କ ଶୋଭାଯାତ୍ରା ଦେଖିବା ପାଇଁ ଲୋକଙ୍କର ଭିଡ଼ ଜମିଯାଇଥିଲା। ସେ ଶୋଭାଯାତ୍ରାର ଦୃଶ୍ୟ ଅତ୍ୟନ୍ତ ରମଣୀୟ ଥିଲା। ମଙ୍ଗଳ ଗ୍ରହକୁ ଉପଗ୍ରହ ମାଧ୍ୟମରେ ଲୋକ ଯାଉଥିଲାବେଳେ ଲଣ୍ଡନ ସହରରେ ଯାଉଥିବା ଶୋଭାଯାତ୍ରାରେ ଘୋଡ଼ାଗାଡ଼ିର ବ୍ୟବହାର ବେଶ୍ ମନୋମୁଗ୍ଧକର ଥିଲା।

ସେଦିନ ଥିଲା ୧୯୮୫ ମସିହା ମେ ମାସର ୧୨ ତାରିଖ। ଇଂଲଣ୍ଡର ବୈଦେଶିକ ନୀତି ସମ୍ପର୍କରେ ଆଲୋଚନା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ଆମେସବୁ ଯାଇ ପ୍ରେସ୍ ଗ୍ୟାଲେରୀରେ ବସିଲୁ। ଆମ ସାଙ୍ଗରେ ଯେଉଁମାନେ ଥିଲେ, ସେମାନଙ୍କ ମଧ୍ୟରୁ କେତେକଙ୍କର ବିଧାନସଭା କିମ୍ବା ଲୋକସଭାର ବିବରଣୀ ସଂଗ୍ରହର ଅଭିଜ୍ଞତା କିମ୍ବା ଅନୁଭୂତି ନଥିଲା। ସେଥିପାଇଁ ପ୍ରେସ୍ ଗ୍ୟାଲେରୀରେ ଥିଲାବେଳେ ସର୍ବନିମ୍ନ ଶାଳୀନତା ବଜାୟ ରଖିବା ପାଇଁ ସେମାନଙ୍କୁ ପୂର୍ବରୁ ସୂଚନା ଦିଆଯାଇଥିଲା। ସମୟାନୁବର୍ତ୍ତିତାରେ ଇଂଲଣ୍ଡ ଲୋକେ ବିଶ୍ୱରେ ଅତୁଳନୀୟ। ଠିକ୍ ଦୁଇଟା ସମୟରେ ପାର୍ଲାମେଣ୍ଟ ବୈଠକ ଆରମ୍ଭ ହେଲା। ଅଲୋଚନା ଆସ୍ତେ ଆସ୍ତେ ଜମିବା ସାଙ୍ଗକୁ ଆମ ମନ ମଧ୍ୟ ଲାଗିଆସୁଥିଲା। କିନ୍ତୁ କ'ଣ କରାଯିବ? ସମୟର ସ୍ୱଳ୍ପତା ମଧ୍ୟରେ ଆହୁରି ଅନେକ ସ୍ଥାନ ଦେଖିବାକୁ ଥିବାରୁ ପ୍ରେସ୍ ଗ୍ୟାଲେରୀରେ ଅଳ୍ପସମୟ ବସି ଆମକୁ ଫେରିଆସିବାକୁ ପଡ଼ିଲା। ସେଇ ସ୍ୱଳ୍ପ ସମୟ ମଧ୍ୟରେ ଲଣ୍ଡନ୍‌ର କେତେକ ପ୍ରମୁଖ ସମ୍ବାଦପତ୍ରର ପ୍ରତିନିଧିମାନଙ୍କ ସହିତ ସୌଜନ୍ୟମୂଳକ ସାକ୍ଷାତ ହୋଇଥିଲା ଓ ସେମାନେ ଆମକୁ ଫ୍ଲିଟ୍ ଷ୍ଟ୍ରୀଟ୍‌ରେ ଥିବା ସାମ୍ବାଦପତ୍ର ଅଫିସ୍ ଓ ପ୍ରେସ୍‌କ୍ଲବ୍ ଯିବା ପାଇଁ ଅନୁରୋଧ କରିଥିଲେ।

ପ୍ରେସ୍ ଗ୍ୟାଲେରୀରେ ବସିଥିବା ସମୟରେ ସେଠାକାର ସାମ୍ବାଦିକମାନଙ୍କୁ ପାର୍ଲାମେଣ୍ଟ ପକ୍ଷରୁ କି କି ସୁବିଧା ସୁଯୋଗ ଦିଆଯାଉଥିଲା, ସେ ସମ୍ପର୍କରେ କେତେକ ଅନୁଭୂତି ହାସଲ କରିଥିଲୁ। ସେ ଦେଶରେ ପ୍ରତ୍ୟେକ ଦିନର ପାର୍ଲାମେଣ୍ଟ ବିବରଣୀ ସେଇଦିନ ଛପାଯାଇ ସଦସ୍ୟମାନଙ୍କୁ ଯୋଗାଇଦିଆଯାଉଥିବା କଥା ଶୁଣି ଆମେ ଆବାକ୍ ହୋଇଯାଇଥିଲୁ; କାରଣ ଆମ ରାଜ୍ୟରେ ବିଧାନସଭାର ବିବରଣୀ ମାସମାସ ଧରି ଛପା ନଯାଇ ପଡ଼ିରହିଥିବାର ଏକ ଖରାପ ପରମ୍ପରା ରହିଛି। ତା'ଛଡ଼ା ଆମର ଲୋକପ୍ରତିନିଧିମାନେ ମଧ୍ୟ ଅନେକ ସମୟରେ ସେମାନଙ୍କର ଭାଷଣର ସଂଶୋଧିତ କପି ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ବିଧାନସଭାକୁ ଫେରାଇ ନଥାନ୍ତି।

## ସମ୍ବାଦପତ୍ରର କର୍ମଶାଳା 'ଫ୍ଲିଟ୍ ଷ୍ଟ୍ରୀଟ୍'

ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ଲଣ୍ଡନ ସହରରୁ ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକ ଅପେକ୍ଷାକୃତ ସ୍ୱାଧୀନ ହେଲେ ହେଁ ପ୍ରତ୍ୟେକ ସମ୍ବାଦପତ୍ର ପଛରେ କେହି ନା କେହି ପୃଷ୍ଠପୋଷକ ରହିଛନ୍ତି। ଅନ୍ୟକଥାରେ କହିବାକୁ ଗଲେ, ପ୍ରତ୍ୟେକ ସମ୍ବାଦପତ୍ରର ନିଜସ୍ୱ ମତବାଦ ରହିଛି। ସେତେବେଳେ ଲଣ୍ଡନ ସହରରୁ ଯେଉଁସବୁ ପ୍ରମୁଖ ସମ୍ବାଦପତ୍ର ପ୍ରକାଶ ପାଉଥିଲା, ସେଥିମଧ୍ୟରେ 'ଟାଇମ୍ସ', 'ଡେଲି ଟେଲିଗ୍ରାଫ', 'ଗାର୍ଡିଆନ୍', 'ଡେଲି ଏକ୍ସପ୍ରେସ୍', 'ନିଉଜ୍ କ୍ରନିକ୍ଲ', 'ଡେଲି ମେଲ୍', 'ଡେଲି ହେରାଲ୍ଡ', 'ଡେଲି ୱାର୍କର୍', 'ଡେଲି ମିରର୍' ଓ 'ଡେଲି ସ୍କେଚ୍' ଇତ୍ୟାଦି ଅନ୍ତର୍ଭୁକ୍ତ। ଏହାବ୍ୟତୀତ ଲଣ୍ଡନ୍ ସହରରୁ 'ଇଭ୍‌ନିଂ ନିଉଜ୍', 'ଇଭ୍‌ନିଂ ଷ୍ଟାଣ୍ଡାର୍ଡ', 'ଷ୍ଟାର', 'ଫିନାନ୍ସିଆଲ୍ ଟାଇମ୍ସ' ଓ 'ସ୍ପୋର୍ଟିଂ ଲାଇଫ୍' ନାମରେ ଅନ୍ୟ ପାଞ୍ଚଟି ସମ୍ବାଦପତ୍ର ମଧ୍ୟ ପ୍ରକାଶ ପାଉଥିଲା। ଗତ ୨୪ବର୍ଷ ମଧ୍ୟରେ ସେଠାରୁ ଆଉ କୋଡଟି ନୂତନ ସମ୍ବାଦପତ୍ର ପ୍ରକାଶ ପାଇଲାଣି।

ଲଣ୍ଡନ୍ ସହରରୁ ପ୍ରକାଶ ପାଉଥିବା ସମ୍ବାଦପତ୍ରଗୁଡ଼ିକର ପ୍ରସାରଣ ସଂଖ୍ୟା କଳ୍ପନାତୀତ। ଏପରିକି 'ନିଉଜ୍ ଅଫ୍ ଦି ୱାର୍ଲ୍ଡ' ଭଳି ଏକ ସାପ୍ତାହିକୀର ପ୍ରସାରଣ ସଂଖ୍ୟା ଏକକୋଟିରୁ ଅଧିକ ବୋଲି ଜଣାଯାଏ। ଏହାର ଏକ ମୁଖ୍ୟ କାରଣ ହେଲା, ସେଠାକାର ବାସିନ୍ଦାମାନେ ଶିକ୍ଷିତ। ସେଥିସହିତ ସମ୍ବାଦପତ୍ରର ପ୍ରସାରଣ ପାଇଁ ଗମନାଗମନ ଓ ପରିବହନର ବ୍ୟାପକ ସୁବିଧା ରହିଛି। ଆମ ଦେଶଭଳି ସେଠାକାର ଲୋକେ ଅନ୍ୟଠାରୁ ଖବରକାଗଜ ମାଗିକରି ପଢ଼ନ୍ତି ନାହିଁ। ଯେଉଁମାନେ କଟକସହରରୁ ଘରୋଇ ବସ୍ ଯୋଗେ ରାଜଧାନୀ ଭୁବନେଶ୍ୱରକୁ ସନ୍ଧ୍ୟାରେ ଯାଇଥିବେ, ସେମାନଙ୍କ ଦୃଷ୍ଟିରେ ଗୋଟିଏ ଦୃଶ୍ୟ ନିଶ୍ଚିତଭାବରେ ପଡ଼ିଥିବ। ବାଦାମବାଡ଼ି ବସ୍‌ଷ୍ଟାଣ୍ଡରୁ ଜଣେ ବସ୍‌ଯାତ୍ରୀ ଖବରକାଗଜ ଖଣ୍ଡିଏ କିଣିଲେ ତାହା ଗୋଟିଏ ହାତରୁ ଅନ୍ୟହାତକୁ ଯାଇ ବସ୍ ଭିତରେ ବୁଲୁଥିବ।

ସେଇ ସମୟ ଭିତରେ ଅନ୍ୟ ଯାତ୍ରୀମାନେ ୩/୪ଖଣ୍ଡ ପାନ ଖାଇ ପିକ ଫୋପାଡ଼ି ସାରିଥିବେ; ଅଥଚ ଖବର କାଗଜଖଣ୍ଡେ କିଣିବାକୁ ଉଚିତ୍ ମନେକରିବେ ନାହିଁ। ଶେଷରେ ଯେଉଁ ଭଦ୍ରବ୍ୟକ୍ତି ଖବରକାଗଜ କିଣିଥିବେ, ବସରୁ ଓହ୍ଲାଇଲାବେଳେ ସେ କାଗଜଖଣ୍ଡିକ ତାଙ୍କ ପାଖକୁ ଆଉ ଫେରିଆସିବ ନାହିଁ। ପରିତାପର ବିଷୟ ଯେ, ଆମ ରାଜ୍ୟ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠିତ ହେବାର ୭୧ବର୍ଷ ପରେ ମଧ୍ୟ ଶତକଡ଼ା ଦଶଭାଗ ଲୋକଙ୍କ ପାଖରେ ଆମ ରାଜ୍ୟରୁ ପ୍ରକାଶ ପାଉଥିବା ସମ୍ବାଦପତ୍ର ଏପର୍ଯ୍ୟନ୍ତ ପହଞ୍ଚି ପାରିନାହିଁ।

ବ୍ରିଟିଶ୍ ପାର୍ଲାମେଣ୍ଟରେ ଯେଉଁ ସାମ୍ବାଦିକ ବନ୍ଧୁମାନଙ୍କ ସହିତ ସାକ୍ଷାତ ହୋଇଥିଲା, ସେମାନଙ୍କ ମଧ୍ୟରୁ 'ଡେଲି ଟେଲିଗ୍ରାଫ୍'ର ବ୍ୟୁରୋ ମୁଖ୍ୟ ଜନ୍ ଟମାସ୍ ସନ୍ଧ୍ୟାରେ ତାଙ୍କ ଅଫିସ୍‌କୁ ଯିବାପାଇଁ ଆମକୁ ଆମନ୍ତ୍ରଣ କରିଥିଲେ। ସେହି ଅନୁସାରେ ଆମେ ସନ୍ଧ୍ୟାରେ 'ଡେଲି ଟେଲିଗ୍ରାଫ' ଦପ୍ତରରେ ପହଞ୍ଚିଲୁ। ପ୍ରଥମେ ସେ ଦପ୍ତରର କୋଠାଟି ଦେଖି ମୁଁ ଅବାକ୍ ହୋଇଗଲି। ଭିତରକୁ ଯାଇ ଯାହା ଦେଖିଲି ସେଥିରେ ଆଶ୍ଚର୍ଯ୍ୟ ନହୋଇ ରହିପାରିଲି ନାହିଁ; କାରଣ ସେଠାରେ ସବୁକାମ ମେସିନ୍ ସାହାଯ୍ୟରେ ଆପେ ଆପେ ହୋଇଯାଉଥିଲା। ଆମ ରାଜ୍ୟରେ ସେତେବେଳେ ଅନେକ ସମ୍ବାଦପତ୍ର ହାଣ୍ଡ୍ କମ୍ପୋଜ୍ ମାଧ୍ୟମରେ ଫ୍ଲାଟ୍‌ବେଡ୍ ମେସିନ୍‌ରେ ଛପା ହେଉଥିଲା। ଅବଶ୍ୟ କେତେକ ସଂସ୍ଥାରେ ରୋଟାରୀ ଏବଂ ଅଫସେଟ୍ ମେସିନ୍ ସାହାଯ୍ୟରେ ସମ୍ବାଦପତ୍ର ଛପା ଆରମ୍ଭ ହୋଇଥିଲା। ମାତ୍ର ସେମାନଙ୍କ ସଂଖ୍ୟା ଥିଲା ହାତଗଣତି। ସକାଳୁ କମ୍ପୋଜିଟର୍‌ମାନେ ଆସି ସେମାନଙ୍କ ସାମନାରେ ଥିବା ଅକ୍ଷର ଖୋପରୁ ଗୋଟିଗୋଟି କରି ଅକ୍ଷର ଆଣି କମ୍ପୋଜ୍ କରନ୍ତି। ଅନ୍ୟୂନ ଦଶଜଣ କମ୍ପୋଜିଟର୍‌ଙ୍କ ଆଠଘଣ୍ଟା ପରିଶ୍ରମ ପରେ ଗୋଟିଏ ଚାରିପୃଷ୍ଠିଆ କାଗଜ ବାହାରୁଥିଲା। ମେସିନ୍ ପାଖରେ ପୁଣି ଦୁଇଜଣ। ଜଣେ ମେସିନ୍‌ମ୍ୟାନ୍ ଓ ଆଉଜଣେ ହେଲ୍ପର୍। ମେସିନ୍‌ମ୍ୟାନ୍ ଅନୁପସ୍ଥିତ ରହିଲେ ହେଲ୍‌ପର୍ କାମ ଚଳାଇ ଦେଉଥିଲା। ଓଡ଼ିଶାରେ ବୋଧହୁଏ ପ୍ରଥମେ ଡଃ ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର' ପାଇଁ ରୋଟାରୀ ମେସିନ୍ ଆଣିଥିଲେ। ଆଜି ଅବଶ୍ୟ ସମୟ ବଦଳିଯାଇଛି। ଓଡ଼ିଶାରେ ପାଖାପାଖି କୋଡ଼ିଏଟି ରଙ୍ଗିନ୍ ସମ୍ବାଦପତ୍ର (ଦୈନିକ ଓ ସାପ୍ତାହିକ) ପ୍ରକାଶ ପାଉଛି।

'ଡେଲି ଟେଲିଗ୍ରାଫ୍' ଅଫିସ୍‌ରେ ସ୍ୱଳ୍ପ ସମୟ ବସିବା ମଧ୍ୟରେ ମୋର କିପରି ଏକ ଧାରଣା ହେଲା, ବୋଧହୁଏ ଆମେ କୋଉ ଜଙ୍ଗଲରେ ଅଛୁ, ଯେଉଁଠି ଆଧୁନିକ ସଭ୍ୟତା ପହଞ୍ଚିବା ହୁଏତ ଆମ ଜୀବଦ୍ଦଶାରେ ସମ୍ଭବ ହୋଇନପାରେ। ସେଠାରେ ଆମକୁ ଚା'ପାନରେ ଆପ୍ୟାୟିତ କରାଗଲା। ଲଣ୍ଡନରେ ପ୍ରେସ୍ କ୍ଲବ୍‌କୁ ଯିବାପାଇଁ କେତେକ ସାମ୍ବାଦିକବନ୍ଧୁ ଆମକୁ ଅନୁରୋଧ କରିଥିବାରୁ ସନ୍ଧ୍ୟାବେଳେ ଆମେ ଲଣ୍ଡନ୍ ପ୍ରେସ୍‌କ୍ଲବ୍‌କୁ ଗଲୁ। ଆଗରୁ ପ୍ରେସ୍‌କ୍ଲବ୍ ସମ୍ପର୍କରେ ଯାହା ଧାରଣା ଥିଲା ଲଣ୍ଡନ୍ ପ୍ରେସ୍‌କ୍ଲବ୍ ଦେଖିଲା ପରେ ତାହା ସମ୍ପୂର୍ଣ୍ଣଭାବରେ ବଦଳିଗଲା। ପ୍ରେସ୍‌କ୍ଲବ୍‌ରେ ରହିଥିଲା ଏକ ସୁଦୃଶ୍ୟ ଲାଇବ୍ରେରୀ

ଏବଂ ତା'ସାଙ୍ଗକୁ ଗୋଟିଏ ଉନ୍ନତ ଧରଣର ରେଷ୍ଟୁରାଣ୍ଟ, ପାଖରେ ଗୋଟିଏ ବାର୍। ସନ୍ଧ୍ୟାରେ ସେଠାକୁ ବିଭିନ୍ନ ମତବାଦର ସାମ୍ବାଦିକମାନେ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଯାଆନ୍ତି। କାହାର ଲାଉଞ୍ଜରେ ବସି ତତକାଳୀନ ରାଜନୈତିକ ସ୍ଥିତି ସମ୍ପର୍କରେ ଆଲୋଚନା ପାଇଁ ଇଚ୍ଛା ଥିବାବେଳେ ଅନ୍ୟକେହି ଲାଇବ୍ରେରୀରେ ବସି ଅଧ୍ୟୟନ କରନ୍ତି। ଅନ୍ୟମାନେ 'ବାର୍'ରେ ବସି ମସଗୁଲ୍ ହୁଅନ୍ତି। ହେଲେ କେହି କାହାର କାର୍ଯ୍ୟରେ ହସ୍ତକ୍ଷେପ କିମ୍ବା ବାଧା ସୃଷ୍ଟି କରନ୍ତି ନାହିଁ। ମୋଟ୍ ଉପରେ ଯେଝା ବାଟରେ ସିଏ ଯାଆନ୍ତି।

ପ୍ରେସ୍‌କ୍ଲବର୍‌ର ବନ୍ଧୁମାନେ ଆମକୁ ଦେଖି ଖୁସି ହୋଇଗଲେ। ଆମମାନଙ୍କ ପାଇଁ ଲାଉଞ୍ଜରେ ବସିବାକୁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥିଲା। ବସିବା ମାତ୍ରେ ସଫ୍ଟ ଓ ହାର୍ଡ ଡ୍ରିଙ୍କ୍ ଆସିଗଲା। ଯେଉଁମାନେ ସନ୍ଧ୍ୟାରେ ମଦ୍ୟପାନ କରିବାରେ ଅଭ୍ୟସ୍ତ ସେମାନଙ୍କ ଖୁସି କହିଲେ ନସରେ। ଲଣ୍ଡନ୍ ସହରରେ ଥିବା ଶୀତତାପ ନିୟନ୍ତ୍ରିତ କକ୍ଷରେ ସ୍କଚ୍ ହ୍ୱିସ୍କି, ପୁଣି ତା ସାଙ୍ଗକୁ କିସମ କିସମର ସ୍ନାକ୍ସ। ଆଉ କ'ଣ ଦରକାର? ଆମେ ଯେଉଁମାନେ ମଦ୍ୟପାନ କରୁନଥିଲୁ, ସେମାନେ ସଫ୍ଟଡ୍ରିଙ୍କ୍ ନେଲୁ। ବସିବା ଭିତରେ ନାନା କଥା ମଧ୍ୟରେ ପ୍ରେସ୍ ସ୍ୱାଧୀନତା କଥା ଉଠିଲା। ସେମାନେ ଯାହା କହିଲେ ସେଥିରେ ଆମ ଆଖି ଖୋସି ହୋଇଗଲା। ବିଶେଷକରି ବି.ବି.ସି. (ବ୍ରିଟିଶ୍ ବ୍ରଡକାଷ୍ଟିଂ କର୍ପୋରେସନ୍)ର ପ୍ରତିନିଧି ଟମ୍ ହାରି ଯେତେବେଳେ ତାଙ୍କ କାର୍ଯ୍ୟଶୈଳୀ ସମ୍ପର୍କରେ ସୂଚନା ଦେଲେ, ଆମେ ବିଶ୍ୱାସ କରିପାରିଲୁ ନାହିଁ। ପୃଥିବୀର ବିଭିନ୍ନ ଦେଶରେ ଗୁରୁତ୍ୱପୂର୍ଣ୍ଣ ସହରମାନଙ୍କରେ ବିବିସିର ପ୍ରତିନିଧି ରହିଛନ୍ତି। ସେମାନଙ୍କୁ ସ୍ୱାଧୀନଭାବରେ କାର୍ଯ୍ୟ କରିବାପାଇଁ ସମସ୍ତ ପ୍ରକାର ସୁବିଧାସୁଯୋଗ ଯୋଗାଇ ଦିଆଯାଇଛି। ସେମାନଙ୍କ କାର୍ଯ୍ୟରେ କେହି ହସ୍ତକ୍ଷେପ କରନ୍ତି ନାହିଁ ଏବଂ ଅନ୍ୟପକ୍ଷରେ କର୍ତ୍ତବ୍ୟରତ ସାମ୍ବାଦିକମାନେ ମଧ୍ୟ ସେମାନଙ୍କ ଦାୟିତ୍ୱ ସମ୍ପର୍କରେ ସଚେତନ। ସେଥିପାଇଁ ବିବିସିର ନିରପେକ୍ଷତା ଓ କାର୍ଯ୍ୟଦକ୍ଷତା ସମଗ୍ର ପୃଥିବୀବାସୀଙ୍କୁ ଚକିତ କରିରଖିଛି।

କଥା ପ୍ରସଙ୍ଗରେ ଭାରତବର୍ଷରେ ପ୍ରେସ୍ ସ୍ୱାଧୀନତା ସମ୍ପର୍କରେ ପ୍ରଶ୍ନ ଉଠିଲା। ସେମାନେ ଜାଣିବାକୁ ଚାହଁଲେ ଭାରତବର୍ଷ ଭଳି ଏକ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରରେ 'ସ୍ୱାଧୀନ ପ୍ରେସ୍' କ'ଣ ସମ୍ଭବ ନୁହେଁ? ଏକ ସ୍ୱାଧୀନ ରାଷ୍ଟ୍ରର ଅଧିବାସୀମାନଙ୍କର କ'ଣ ସ୍ୱାଧୀନଭାବରେ ମତପୋଷଣ କରିବାର ଅଧିକାର ରହିବନାହିଁ? ସେମାନଙ୍କର ପ୍ରଶ୍ନ ଓ ମନୋଭାବରୁ ସ୍ପଷ୍ଟ ସୂଚନା ମିଳିଲା ଯେ, ଭାରତବର୍ଷର ପ୍ରେସ୍ ସ୍ୱାଧୀନତା ଓ ସ୍ୱାଧୀନଭାବରେ ମତପୋଷଣ କରିବାର ସ୍ଥିତି ସମ୍ପର୍କରେ ସେମାନଙ୍କ ପାଖରେ ଟିକିନିଖି ଖବର ଥିଲ। ଦେଶର ଜରୁରୀକାଳୀନ ପରିସ୍ଥିତିରେ ସମ୍ବାଦପତ୍ରଗୁଡ଼ିକର କଣ୍ଠରୋଧ ପାଇଁ କିଭଳି ହୀନ ଉଦ୍ୟମ କରାଯାଇଥିଲା, ଜରୁରୀକାଳିନ ପରସ୍ଥିତିକୁ ବିରୋଧ କରୁଥିବା ସାମ୍ବାଦିକମାନଙ୍କୁ କିଭଳି ଶାସକଗୋଷ୍ଠୀର ଆକ୍ରୋଶର ଶିକାର ହେବାକୁ ପଡ଼ିଥିଲା ଏବଂ

ପ୍ରେସ୍ ସେନ୍‌ସର୍ ନାମରେ କିପରି ସତ୍ୟ ସମ୍ବାଦକୁ ଚପାଇ ଦିଆଯାଉଥିଲା, ସେସବୁ ସମ୍ପର୍କରେ ସେମାନେ ସବୁ ଖବର ରଖିଥିଲେ। ସେ ଦୃଷ୍ଟିରୁ ଆମେ ସବୁକଥା କହିଦେବାକୁ ଉଚିତ ମନେକଲୁ। ଆମର ବକ୍ତବ୍ୟ ଥିଲା, ଭାରତବର୍ଷ ଏକ ବିଶାଳ ଦେଶ। ଆୟତନ ଓ ଲୋକସଂଖ୍ୟା ଦୃଷ୍ଟିରୁ ଏହା ଯେକୌଣସି ମହାଦେଶ ସହିତ ତୁଳନୀୟ। ପୁଣି ଆମ ଦେଶରେ ବହୁ ଜାତି, ବହୁ ଭାଷାଭାଷୀ, ବହୁ ମତବାଦର ଲୋକେ ଏକତ୍ର ବସବାସ କରନ୍ତି, ସେମାନଙ୍କର ଜୀବନଧାରଣର ଶୈଳୀ ଓ ଅର୍ଥନୈତିକ ସ୍ଥିତି ମଧ୍ୟ ଭିନ୍ନ ଭିନ୍ନ। ଯାହା କୁହାଯାଏ, 'ବିବିଧତା ମଧ୍ୟରେ ଏକତା' ହେଉଛି ଭାରତବର୍ଷର ମୂଳମନ୍ତ୍ର। ତା'ଛଡ଼ା, ଦେଶର ବିଭିନ୍ନ ରାଜନୈତିକ ବ୍ୟକ୍ତି ଓ ଗୋଷ୍ଠୀ ଏବଂ ଶିଳ୍ପପତିଙ୍କ ଦ୍ୱାରା ସମ୍ବାଦପତ୍ରଗୁଡ଼ିକ ନିୟନ୍ତ୍ରିତ। ନିଜର ସ୍ୱାର୍ଥରକ୍ଷା ହେଉଛି ମାଲିକମାନଙ୍କର ମୂଳ ଉଦ୍ଦେଶ୍ୟ। ଏପରି କ୍ଷେତ୍ରରେ ସର୍ବଜନାଦୃତ ନିରପେକ୍ଷତା କିପରି ବଜାୟ ରଖାଯାଇପାରିବ ?

ଆଲୋଚନା ମାଧ୍ୟମରେ କେତେବେଳେ ଦୁଇଘଣ୍ଟା ସମୟ ଅତିବାହିତ ହୋଇଯାଇଥିଲା ଜଣାପଡ଼ି ନଥିଲା। ମଦିରା ପାନ କରୁଥିବା ବନ୍ଧୁମାନଙ୍କୁ ସମୟ ମାଲୁମ୍ ହେଉନଥିଲା। ମଦିରାର ନିଶାରେ ସେମାନେ ଯେ ମସ୍‌ଗୁଲ୍ ହୋଇଯାଇଥିଲେ, ଶୀତତାପ ନିୟନ୍ତ୍ରିତ କକ୍ଷରେ ସେମାନଙ୍କ କପାଳରେ ଦେଖାଦେଉଥିବା ସ୍ୱେଦବିନ୍ଦୁରୁ ତା'ର ଆଭାସ ମିଳିଥିଲା। ସଫ୍ଟଡ୍ରିଙ୍କ୍ ଓ ସ୍ନାକ୍ସରେ ଆମ ପେଟ ମଧ୍ୟ ଭରିଯାଇଥିଲା। ପରଦିନ ସକାଳେ ଅନେକ ସ୍ଥାନ ବୁଲିଯିବାର ଥିବାରୁ ଅନିଚ୍ଛା ସତ୍ତ୍ୱେ ଆମକୁ ପ୍ରେସକ୍ଲବ୍‌ରୁ ବିଦାୟ ନେବାକୁ ପଡ଼ିଲା।

ହୋଟେଲରେ ପହଞ୍ଚି ଆମେ ସିଧା ଚାଲିଲୁ ଡାଇନିଂ ହଲ୍‌କୁ। ରାତ୍ରିଭୋଜନ ପାଇଁ ବିଶେଷ ଆଗ୍ରହ ନଥିଲେ ମଧ୍ୟ ଔପଚାରିକ ଦୃଷ୍ଟିରୁ କିଛି ଖାଇବାକୁ ପଡ଼ିଲା। ସେଇଠି ପରଦିନର କାର୍ଯ୍ୟକ୍ରମ ପାଇଁ ଆଲୋଚନା ହେଲା। ସେତେବେଳ ପର୍ଯ୍ୟନ୍ତ ଆମ ସାଙ୍ଗରେ ଗାଇଡ୍ ମେରୀ ଥିଲେ। ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଦେଖି ସେ ଆମକୁ ଜଣାଇଥିଲେ ଯେ, ପରଦିନ ପୂର୍ବାହ୍ନରେ ଆମର ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ଏବଂ ଅପରାହ୍ନରେ ସେକ୍ସପିଅର୍‌ଙ୍କ ଜନ୍ମସ୍ଥାନ ଦେଖିଯିବା ପାଇଁ ସ୍ଥିର ହୋଇଛି। ଆମେ ସମସ୍ତେ ତାଙ୍କୁ ଧନ୍ୟବାଦ ଜଣାଇଲୁ। ଯିବା ପୂର୍ବରୁ ସମୟ ସହିତ ତାଳଦେଇ ଚାଲିବା ପାଇଁ ମେରୀ ଆମକୁ ଆଉଥରେ ନମ୍ରତାର ସହିତ ଚେତାଇଦେଇଥିଲେ।

## ଅକ୍ସଫୋର୍ଡ ୟୁନିଭର୍ସିଟିରେ ବିରଳ ଅନୁଭୂତି

ପୃଥିବୀର ଅତ୍ୟାଧୁନିକ ୟୁନିଭର୍ସିଟି ମଧ୍ୟରେ ଅକ୍ସଫୋର୍ଡ ୟୁନିଭର୍ସିଟି ଅନ୍ୟତମ। ସେଠାକୁ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ଛାତ୍ରଛାତ୍ରୀ ଓ ଗବେଷକମାନେ ଅଧ୍ୟୟନ ପାଇଁ ଯାଇଥାନ୍ତି।

ଆମ ଦେଶରେ ଇଂରେଜ ଶାସନ ଚାଲୁଥିଲାବେଳେ ସର୍ବୋଚ୍ଚ ପଦବୀ ଆ.ସି.ଏସ୍. (ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍)ରେ ନିଯୁକ୍ତି ପାଇବାକୁ ହେଲେ ସେଠାରେ ଅଧ୍ୟୟନ କରିବାକୁ ପଡୁଥିଲା। ପରିବର୍ତ୍ତିତ ପରସ୍ଥିତିରେ ଏହି ୟୁନିଭର୍ସିଟିର ପ୍ରଭାବ କିଛି ପରିମାଣରେ ହ୍ରାସ ପାଇଥିଲେ ହେଁ ଏହାର ପୂର୍ବ ଗୌରବ ଓ ପରମ୍ପରା ଅକ୍ଷୁଣ୍ଣ ରହିଛି।

ଲଣ୍ଡନ ସହରରେ ରହଣିର ଶେଷଦିନରେ ଆମର ଯେଉଁ ଦୁଇଟି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଖିଯିବାର ଥିଲା, ସେଥିମଧ୍ୟରେ ଅକ୍ସଫୋର୍ଡ ୟୁନିଭର୍ସିଟି ଅନ୍ତର୍ଭୁକ୍ତ। ସେଥିପାଇଁ ସକାଳୁ ଶୀଘ୍ର ଜଳଖିଆ ପର୍ବ ଶେଷ କରି ଆମେ ହୋଟେଲରୁ ବାହାରିଗଲୁ। ଗାଇଡ୍ ମେରୀ କୋଚ୍ ଧରି ଆମେ ରହୁଥିବା ହୋଟେଲ ପାଖରେ ପହଞ୍ଚି ସାରିଥିଲେ। ଆମେ ପହଞ୍ଚିଲାମାନେ "ଗୁଡ୍‌ମର୍ଣ୍ଣିଂ" କହି ଏକ ସ୍ମିତହାସ୍ୟ ଦେଲେ। ଆମେ ଠିକ୍ ସମୟରେ ବାହାରିଥିବାରୁ କୃତଜ୍ଞତା ପ୍ରକାଶ କଲେ। ଏହା ହେଉଛି ସେ ଦେଶର ଆଦବ କାଇଦା। ପ୍ରତି କଥାରେ 'ଥାଙ୍କ୍ ୟୁ', 'ଦ୍ୟାଟ୍ ଇଜ୍ ମାଇଁ ପ୍ଲେଜର୍' ଇତ୍ୟାଦି କହିବା ସେମାନଙ୍କର ଏକ ଚିରାଚରିତ ଅଭ୍ୟାସ। ସାମାଜିକ ସମ୍ମାନବୋଧରେ ଇଂରେଜ ଜାତିର ତୁଳନା ନାହିଁ। ଆମ ହୋଟେଲ ପାଖରୁ ଅକ୍ସଫୋର୍ଡ ଯିବାକୁ ଘଣ୍ଟାକରୁ ଅଧିକ ସମୟ ଲାଗିଲା। ଅକ୍ସଫୋର୍ଡ ସହର ଭିତରକୁ ବସ୍ ସର୍ଭିସ୍‌ର ବ୍ୟବସ୍ଥା ଅଛି। ସେହିପରି ଗଟ୍‌ୱିକ୍ ଏବଂ ହିଥ୍ରୋ ବିମାନବନ୍ଦରରୁ ମଧ୍ୟ ବସ୍‌ସେବା ଉପଲବ୍ଧ ହୋଇଥାଏ। ତା'ଛଡ଼ା ଲଣ୍ଡନର ପାଡିଙ୍ଗଟନ୍ ଷ୍ଟେସନ୍‌ରୁ ବରାବର ଟ୍ରେନ୍ ଯାତାୟାତ କରିଥାଏ। ଟ୍ରେନ୍‌ରେ କିମ୍ବା ବସ୍‌ରେ ଗଲେ ଦେଢ଼ଘଣ୍ଟା ସମୟ ଲାଗେ।

ୟୁନିଭର୍ସିଟି ମଧ୍ୟରେ ଅନେକଗୁଡ଼ିଏ କଲେଜ୍ ରହିଛି। ସେଠାରେ ପୁଅଝିଅମାନେ ଏକତ୍ର ଅଧ୍ୟୟନ କରନ୍ତି। କାହାରି ମନରେ ସଙ୍କୋଚ ନାହିଁ। ପାଠପଢ଼ା ସହିତ ଯୁବକଯୁବତୀମାନେ ଖୋଲା ଆକାଶ ତଳେ ବୁଲିବାରେ ଆନନ୍ଦ ଅନୁଭବ କରିଥାନ୍ତି। ବିବାହ ନକରି ଯୁବକଯୁବତୀମାନେ ଏକତ୍ର ବସବାସ କରିବା ପାଇଁ ସେଦେଶରେ ସାମାଜିକ ସ୍ୱୀକୃତି ରହିଛି। ଏପରିକି ବିବାହ ନ କରି ମୁକ୍ତ ଯୌନଜୀବନ ଯାପନ କରିବା ଏବଂ ମାତୃତ୍ୱଲାଭ ମଧ୍ୟ ସେ ଦେଶର ଏକ ସାଧାରଣ ଚଳଣି। ଘଟଣାକ୍ରମରେ ସେ ଦେଶରେ 'ସିଙ୍ଗିଲ୍ ପ୍ୟାରେଣ୍ଟ୍' ବ୍ୟବସ୍ଥାକୁ ମଧ୍ୟ ସମାଜ ଗ୍ରହଣ କରିନେଲାଣି। ଅକ୍ସଫୋର୍ଡ ୟୁନିଭର୍ସିଟି ଅଧୀନରେ ୩୮ଟି ସ୍ୱୟଂଶାସିତ କଲେଜ୍ ରହିଛି। ସେଠାରେ ପ୍ରାୟ କୋଡ଼ିଏହଜାରରୁ ଅଧିକ ଛାତ୍ରଛାତ୍ରୀ ଅଧ୍ୟୟନ କରନ୍ତି। ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ନାତକ ଶ୍ରେଣୀର ଅନ୍ତର୍ଭୁକ୍ତ। ଅକ୍ସଫୋର୍ଡରେ ଅଧ୍ୟୟନ କରୁଥିବା ଶତକଡ଼ା ପ୍ରାୟ ୯୦ଭାଗ ଛାତ୍ରଛାତ୍ରୀଙ୍କୁ କର୍ମସଂସ୍ଥାନର ସୁବିଧା ମିଳିଯାଏ। ଏହି ୟୁନିଭର୍ସିଟିରେ ନାଁ ଲେଖାଇବା ପାଇଁ ଶିକ୍ଷାଗତ ଯୋଗ୍ୟତା ହେଉଛି ଏକମାତ୍ର ମାପକାଠି। ସେଥିପାଇଁ ଏହାର ଏକ

ଆନ୍ତର୍ଜାତିକ ଖ୍ୟାତି ରହିଛି। ଏକ ସମୀକ୍ଷାରୁ ଜଣାପଡ଼ିଛି ଯେ, ପୃଥିବୀର ପାଖାପାଖି ୧୩୮ ରାଷ୍ଟ୍ରରୁ ଛାତ୍ରଛାତ୍ରୀ ଆସି ଏହି ୟୁନିଭର୍ସିଟିରେ ଅଧ୍ୟୟନ କରିଥାନ୍ତି। ସେହିପରି ୮୦ଟି ରାଷ୍ଟ୍ରର ପ୍ରଫେସରମାନେ ସେଠାରେ ଅଧ୍ୟାପନାରତ ଅଛନ୍ତି। ଆମେ ପ୍ରାୟ ପାଖାପାଖି ସକାଳ ଦଶଟା ସୁଦ୍ଧା ଅକ୍ସଫୋର୍ଡ ୟୁନିଭର୍ସିଟିରେ ପହଞ୍ଚିଗଲୁ। ସେତେବେଳକୁ ପାଠପଢ଼ା ଆରମ୍ଭ ହୋଇଯାଇଥିଲା।

ଆଗରୁ ଖବର ପାଇଥିବାରୁ ଆମେ ପହଞ୍ଚିବା ମାତ୍ରେ ଆମକୁ ସେଠାରେ ୟୁନିଭର୍ସିଟି କର୍ତ୍ତୃପକ୍ଷ ସ୍ୱାଗତ କରିବା ସହିତ ଭାରତବର୍ଷରୁ ଏତେସଂଖ୍ୟାରେ ସାମ୍ବାଦିକମାନେ ଯାଇଥିବାରୁ ଆମପ୍ରତି କୃତଜ୍ଞତା ଜ୍ଞାପନ କଲେ। ସେମାନେ ଆମକୁ ପ୍ରଥମେ ହଷ୍ଟେଲ୍ ଓ ପରେ ଶ୍ରେଣୀ ଗୃହକୁ ନେଲେ। ସବୁଆଡ଼େ ଶୃଙ୍ଖଳା, ପାଟିତୁଣ୍ଡ କିମ୍ବା ଘୋ'ଘାର ଶବ୍ଦ କିଛି ନଥିଲା। ହଷ୍ଟେଲରେ ପିଲାମାନଙ୍କ ପାଇଁ ଯେଉଁସବୁ ସୁବିଧାସୁଯୋଗ ଯୋଗାଇ ଦିଆଯାଉଥିଲା, ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ସେସବୁ ଆମକୁ ପ୍ରାଞ୍ଜଳ ଭାବରେ ବୁଝାଇଥିଲେ। ନାନାଦେଶର ଛାତ୍ରଛାତ୍ରୀମାନେ ଏକତ୍ର ହଷ୍ଟେଲ୍‌ରେ ରହୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଥିବା ବନ୍ଧୁତା ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସମ୍ପର୍କରେ ସେ ଆମକୁ ସୂଚାଇଥିଲେ।

ଅକ୍ସଫୋର୍ଡ ୟୁନିଭର୍ସିଟିର ଲାଇବ୍ରେରୀ ବିଷୟରେ ଆଗରୁ ଶୁଣିଥିବାରୁ ଆମେ ସେଠାକୁ ଯିବାପାଇଁ ଆଗ୍ରହ ପ୍ରକାଶ କଲୁ। ସେମାନେ ମଧ୍ୟ ଖୁସି ହୋଇ ଆମକୁ ଲାଇବ୍ରେରୀକୁ ନେଲେ। ଆମଭଳି ସେଠାରେ ଗୋଟିଏ କୋଠାରେ ଲାଇବ୍ରେରୀ ନଥିଲା। ଅକ୍ସଫୋର୍ଡ ୟୁନିଭର୍ସିଟି ଅଧୀନରେ ସେତେବେଳେ ଶହେରୁ ଅଧିକ ଲାଇବ୍ରେରୀ ପରିଚାଳିତ ହେଉଥିଲା। ଆମସାଙ୍ଗରେ ୟୁନିଭର୍ସିଟିର ଫରେନ୍ ଟୁରିଷ୍ଟ୍ ବିଭାଗର ସୂଚନା ଅଧିକାରୀ ମିଃ ଜନ୍‌ସନ୍ ଥିଲେ। ସେଥିପାଇଁ କୌଣସି କଥା ବୁଝିବାରେ ଆମର ଅସୁବିଧା ହୋଇନଥିଲା। ସୂଚନା ଅଧିକାରୀଙ୍କର ପୃଥିବୀର ବିଭିନ୍ନ ଦେଶ ବିଷୟରେ ଯଥେଷ୍ଟ ଜ୍ଞାନ ଥିଲା ଓ ପ୍ରାୟ ପନ୍ଦରଟି ଦେଶର ଭାଷା ସେ କହିପାରୁଥିଲେ। ତାଙ୍କ କଥାରୁ ବୁଝିଲୁ ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ପ୍ରତିବର୍ଷ ପ୍ରାୟ ବାରଲକ୍ଷ ଲୋକ ୟୁନିଭର୍ସିଟିର ଲାଇବ୍ରେରୀ ଓ ମ୍ୟୁଜିଅମ୍‌କୁ ଆସିଥାନ୍ତି। ସେଠାରେ ଥିବା ନବାଡ୍‌ଲିଆନ୍ ଲାଇବ୍ରେରୀ ପ୍ରାୟ ଚାରିଶହବର୍ଷର ପୁରୁଣା ଏବଂ ପୃଥିବୀର ସବୁଠାରୁ ବଡ଼ ଲାଇବ୍ରେରୀ ଭାବରେ ସ୍ୱୀକୃତ।

ସେ ଆମକୁ କହିଲେ, ବିଶ୍ୱର ଅଧିକାଂଶ ରାଷ୍ଟ୍ରର ଏବଂ ବିଭିନ୍ନ ଭାଷାର ଅତି ଦୁଷ୍ପ୍ରାପ୍ୟ ପୁସ୍ତକ ଗବେଷକମାନଙ୍କ ପାଇଁ ଲାଇବ୍ରେରୀ ଓ ମ୍ୟୁଜିଅମ୍‌ରେ ଉପଲବ୍ଧ ହୋଇଥାଏ। ଭାରତବର୍ଷର ବିଭିନ୍ନ ଭାଷାର ସୁପ୍ରତିଷ୍ଠିତ କବିମାନଙ୍କର ପୁସ୍ତକ ଏକ ସ୍ୱତନ୍ତ୍ର ହଲ୍‌ରେ ରଖାଯାଇଥିବା ସମ୍ପର୍କରେ ସେ ଆମକୁ ସୂଚନା ଦେଇଥିଲେ। ତାଙ୍କ କଥା ଶୁଣି ସେସବୁ ପୁସ୍ତକ ଦେଖିବା ପାଇଁ ଆମ ମନରେ ଆଗ୍ରହ ସୃଷ୍ଟିହେଲା। ସୂଚନା ଅଧିକାରୀ ଆମ ମନର

ଅବେଗକୁ ସହଜରେ ବୁଝିପାରିଲେ ଏବଂ ଆମକୁ ସାଙ୍ଗେସାଙ୍ଗେ 'ଇଣ୍ଡିଆ ସେକ୍ସନ୍'କୁ ନେଇଗଲେ। ସେଠାରେ ଚାରୋଟି ବଡ଼ ହଲ୍‌ରେ କାଚବାକ୍ସ (କ୍ୟାସ୍‌କେଟ୍) ଭିତରେ ବିଭିନ୍ନ ଭାଷାର ଦୁର୍ଲଭ ପୁସ୍ତକମାନ ରହିଥିଲା। କାଚବାକ୍ସର ଉପରକାଚଟି ମାଗ୍ନିଫାଇଙ୍ଗ୍ ଗ୍ଲାସ୍ ହୋଇଥିବା ଯୋଗୁଁ ବହିର ସାନ ଅକ୍ଷର ସବୁ ବରକୋଳି ଫଳ ଭଳି ଦେଖାଯାଉଥିଲା। ତିନୋଟି ହଲ୍ ବୁଲିସାରିଲା ପରେ ମୋ ମନ ଫିକା ପଡ଼ିଯାଇଥିଲା। ଏଡ଼େବଡ଼ ଲାଇବ୍ରେରୀ; ଭାରତବର୍ଷର ସବୁ ରାଜ୍ୟର ବହି ରହିଛି, ଅଥଚ ଓଡ଼ିଆ ଅକ୍ଷରଟିଏ ଦେଖିବାକୁ ମିଳିଲାନାହିଁ! ମୁଁ ମୋର ମନର କଥା ସୂଚନା ଅଧିକାରୀଙ୍କୁ ଚୁପ୍ କରି ଜଣାଇଲି। ସେ ମୋତେ ସାନ୍ତ୍ୱନା ଦେଇ କହିଲେ, "ଆପଣଙ୍କର ବ୍ୟସ୍ତ ହେବାର କିଛି ନାହିଁ। ଆପଣ ମୋ ସହିତ ଆସନ୍ତୁ।" ଅନ୍ୟ ବନ୍ଧୁମାନେ ନିଜ ନିଜ ରାଜ୍ୟର ବହି ଦେଖି ଆନନ୍ଦରେ କୁରୁଳି ଉଠୁଥିଲାବେଳେ ମୁଁ ମନ ଦୁଃଖରେ ସୂଚନା ଅଧିକାରୀଙ୍କ ପଛେପଛେ ଚାଲୁଥିଲି। ଆମେ ଚତୁର୍ଥ ହଲ୍‌ରେ ପ୍ରବେଶ କରିବାମାତ୍ରେ ସେ ମତେ ଗୋଟିଏ ନିର୍ଦ୍ଦିଷ୍ଟ ବାକ୍ସ ପାଖକୁ ଯିବାକୁ ଇଙ୍ଗିତ କଲେ। ମୁଁ ଯାଇ ସେଠାରେ ଯାହା ଦେଖିଲି ନିଜକୁ ବିଶ୍ୱାସ କରିପାରିଲି ନାହିଁ। ଯାହା ଆମ ରାଜ୍ୟରେ କିମ୍ବା ଆମ ଦେଶରେ ଦେଖିବାକୁ ମିଳୁନଥିଲା, ସୁଦୂର ଲଣ୍ଡନ୍ ସହରର ଅକ୍ସଫୋର୍ଡ ୟୁନିଭର୍ସିଟିରେ ତାହା ସୁରକ୍ଷିତ ହୋଇ ରହିଥିଲା। ଗୋଟିଏ ଲମ୍ବା ଟେବୁଲ୍ ଉପରେ ତିନୋଟି କାଚବାକ୍ସ। ତା'ଭିତରେ ସୁସଜ୍ଜିତ ରଖାଯାଇଥିଲା ଅନେକ ପୁରୁଣା ଓଡ଼ିଆ ପୁସ୍ତକ। ଉପର କାଚର ପ୍ରଭାବରେ ବହିର ଅକ୍ଷରସବୁ ପରିଷ୍କାର ଦେଖାଯାଉଥିଲା। ମୋ ଆଖିରେ ହଠାତ୍ ପଡ଼ିଗଲା କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ରଚିତ 'ବୈଦେହୀଶ ବିଳାସ' ପୁସ୍ତକଟି। ମୋ ଅଜାଣତରେ ଆଖିରୁ କେଇଟୋପା ଲୁହ ଗଡ଼ିପଡ଼ିଲା। ଇଂରେଜ ଜାତିର ବଦାନ୍ୟତା ଆଗରେ ମୋ ମୁଣ୍ଡ ନଇଁଗଲା। ଆମରାଜ୍ୟରୁ ଏକମାତ୍ର ପ୍ରତିନିଧି ଥିବାରୁ ମୋ ମନର ଭାଷାକୁ ସେଦିନ ମୁଁ କାହା ଆଗରେ ପ୍ରକାଶ କରିପାରି ନ ଥିଲି। ମନ ହେଉଥିଲା ଘଣ୍ଟାଘଣ୍ଟା ଧରି ସେଠାରେ ରହି ସବୁଯାକ ଓଡ଼ିଆ ବହି ଦେଖନ୍ତି। ମୁଁ ଏକପ୍ରକାର ସେଠାରେ ହଜିଯାଇଥିଲି। ହଠାତ୍ ବନ୍ଧୁମାନଙ୍କ ଡାକରେ ସେ ହଲ୍‌ରୁ ଫେରି ଆସିବାକୁ ବାଧ୍ୟ ହେଲି। ସେଦିନର ସେ ଅନୁଭୂତି ଏବେ ବି ମୋ ମନରେ ଅଭୁଲା ହୋଇ ରହିଯାଇଛି।

ଆମେ ମ୍ୟୁଜିଅମ୍‌ରୁ ଫେରିଲା ବେଳକୁ ସ୍ଥାନୀୟ ସମୟ ଗୋଟାଏ ବାଜି ଯାଇଥିଲା। ସେଦିନ ଉପରଓଳି ଆମ୍ଭର ସେକ୍ସପିଅରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ ସହରକୁ ଯିବାର କାର୍ଯ୍ୟକ୍ରମ ଥିଲା। ସମୟର ସ୍ୱଳ୍ପତା ଦୃଷ୍ଟିରୁ ଆମର ମୂଳ କାର୍ଯ୍ୟକ୍ରମରେ ଷ୍ଟ୍ରାଟଫୋର୍ଡ ଭ୍ରମଣ ଅନ୍ତର୍ଭୁକ୍ତ ହୋଇନଥିଲା। କିନ୍ତୁ ଗାଇଡ୍ ମେରୀ ସେଠାକୁ ଯିବାପାଇଁ ଆମ ଉପରେ ଏକପ୍ରକାର ଚାପ ପକାଇଥିଲେ। ପ୍ରଥମେ ଆମେ ମେରୀଙ୍କ ଉଦ୍ଦେଶ୍ୟ ବୁଝିପାରିନଥିଲୁ।

କିନ୍ତୁ ତାଙ୍କ ସାଙ୍ଗରେ ଆଳାପରୁ ବୁଝିଲୁ ଯେ, ବିଦେଶୀ ପର୍ଯ୍ୟଟକମାନଙ୍କୁ ସେକ୍ସପିଅର୍‌ଙ୍କ ଜନ୍ମସ୍ଥାନ ବୁଲାଇବାରେ ଇଂରେଜମାନେ ଆନନ୍ଦ ଅନୁଭବ କରିଥାନ୍ତି। ସେଇଟା ସେମାନଙ୍କର ସ୍ୱାଭିମାନ। ଅନ୍ୟଭାଷାରେ ଷ୍ଟ୍ରାଟଫୋର୍ଡ ବୁଲି ନଦେଖିଲେ ଲଣ୍ଡନ୍ ଭ୍ରମଣ ସମ୍ପୂର୍ଣ୍ଣ ହୋଇନଥାଏ ବୋଲି କୁହାଯାଏ।

ଅକ୍ସଫୋର୍ଡରୁ ଷ୍ଟ୍ରାଟଫୋର୍ଡ-ଅନ୍-ଆଭନ ଯିବାପାଇଁ ଥିବାରୁ ଆମେ ସ୍ଥିରକଲୁ ୟୁନିଭର୍ସିଟି କ୍ୟାଣ୍ଟିନ୍‌ରେ ଯାହା ମିଳିବ ସେଇଥିରେ ମଧ୍ୟାହ୍ନଭୋଜନ କାମ ଚଳାଇଦେବୁ। ଆମ ଅନୁରୋଧକ୍ରମେ ମିଃ ଜନ୍‌ସନ୍ ଆମକୁ କ୍ୟାଣ୍ଟିନ୍‌କୁ ନେଇଗଲେ। କ୍ୟାଣ୍ଟିନ୍‌ର ପରିବେଶ ଆମ କଳ୍ପନା ବାହାରେ ଥିଲା; କାରଣ ଆମର କ୍ୟାଣ୍ଟିନ୍‌ଗୁଡ଼ିକ ରାସ୍ତାକଡ଼ର କ୍ୟାବିନ୍ ଦୋକାନଠାରୁ କୌଣସିଗୁଣରେ ଉତ୍କୃଷ୍ଟ ନୁହେଁ। ମାଛି ଭଣଭଣ, ମଇଳା ପ୍ୟାଣ୍ଟ୍, ଗଞ୍ଜି ଖଣ୍ଡେ ପିନ୍ଧି କାନ୍ଧରେ ମଇଳା ଗାମୁଛା ଖଣ୍ଡିଏ ପକାଇ ଟୋକା ଗୋଟାଏ ଦୁଇଟା ବୁଲୁଥାନ୍ତି। ତା'ଭିତରୁ ଜଣେ ଦାଗ ଲାଗିଥିବା ଗ୍ଲାସ୍‌ରେ ଆଙ୍ଗୁଠି ବୁଡ଼ାଇ ପାଣିଆଣି ଟେବୁଲ୍‌ରେ ରଖେ ଏବଂ ଡାଲାରେ ପଡ଼ିଥିବା ଥଣ୍ଡା ହୋଇଥିବା କିଛି ଖାଦ୍ୟ (ଅଖାଦ୍ୟ) ଆଣି ଦିଏ। କିନ୍ତୁ ସେଠି ସବୁ ବ୍ୟବସ୍ଥା ଭିନ୍ନ। ସବୁ ପରିଷ୍କାର, ପରିଚ୍ଛନ୍ନ। କେହି କାହାରିକୁ କିଛି ପଚାରିବା ଦରକାର ନଥିଲା। ମେସିନ୍‌ରେ ପଇସା ପକାଇ କୁପନ୍ ନେଇ ନିଜ ପସନ୍ଦର ଖାଦ୍ୟ ନିଜେ ନେଇ ଖାଇବାର ବ୍ୟବସ୍ଥା। ଖାଦ୍ୟ କହିଲେ ସାଣ୍ଡୱିଚ୍, ବ୍ରେଡ୍, ବଟର୍ ସାଙ୍ଗକୁ ଫ୍ରୁଟ୍ ଜୁସ୍, ଚା' କିମ୍ବା କଫି। ଅଧଘଣ୍ଟାଏ ଭିତରେ ଆମର ଭୋଜନ କାର୍ଯ୍ୟକ୍ରମ ଶେଷ ହୋଇଗଲା ଓ ଆମେ ଯାଇ କୋଚ୍‌ରେ ବସିଲୁ।

## ସେକ୍ସପିୟର୍‌ଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ-ଅନ୍-ଆଭନ୍

ଅକ୍ସଫୋର୍ଡରୁ ଷ୍ଟ୍ରାର୍ଟଫୋର୍ଡ ସଡ଼କପଥରେ ପ୍ରାୟ ଦୁଇଘଣ୍ଟାର ରାସ୍ତା। ରାସ୍ତାର ଦୂରତା ପ୍ରତି ଆମର ଖାତିର ନଥିଲା। ସେକ୍ସପିୟରଙ୍କ ଜନ୍ମସ୍ଥାନ ଦେଖିବା ପାଇଁ ମନରେ ଯେଉଁ ଉତ୍କଣ୍ଠା ସୃଷ୍ଟି ହୋଇଥିଲା ତା' ତୁଳନାରେ ଶରୀରର କଷ୍ଟ କୁଆଡ଼େ ଉଭେଇ ଯାଇଥିଲା। ଆଗେ ଷ୍ଟ୍ରାଟ୍‌ଫୋର୍ଡ ଏକ କ୍ଷୁଦ୍ର ଗ୍ରାମ ଥିଲା। ବିଶ୍ୱବିଖ୍ୟାତ କବି ସେକ୍ସପିୟର୍ ସେଠାରେ ବସବାସ କରିବା ଫଳରେ ସେ ଗ୍ରାମଟି କିପରି ସହରରେ ପରିଣତ ହୋଇପାରିଲା, ଆମ ଗାଇଡ୍ ସେ ବିଷୟରେ ବୁଝାଇ ଚାଲିଥିଲେ। ତାଙ୍କ ପାଟି କେତେବେଳେ ବନ୍ଦ୍ ହେଉନଥିଲା। ସେ ସେକ୍ସିପିୟର୍‌ଙ୍କ ଜୀବନର ମହନୀୟତା ବୁଝାଉଥିଲାବେଳେ ମୁଁ ତାଙ୍କ ମୁଖମଣ୍ଡଳକୁ ଲକ୍ଷ୍ୟ କରୁଥିଲି। ମହାନ୍ କବିଙ୍କର ଗରିମାମୟ ଜୀବନ ସମ୍ପର୍କରେ ଆମ୍ଭମାନଙ୍କୁ ବୁଝାଇ ସତେଯେପରି ସେ ଚରମ ତୃପ୍ତି ଲାଭ କରୁଥିଲେ, ସେକଥା ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ଜଣାପଡୁଥିଲା।

ଆମ କୋଚ୍ ଯେତିକି ଦ୍ରୁତ ଗତିରେ ଚାଲୁଥିଲା, ମେରୀ ତା'ସହିତ ତାଳ ଦେଇ ଅତ୍ୟନ୍ତ ଆନ୍ତରିକତାର ସହିତ ରାସ୍ତାକଡ଼ରେ ଥିବା ବିଭିନ୍ନ ସ୍ଥାନର ଗୁରୁତ୍ୱ ସମ୍ପର୍କରେ ଆମକୁ ବୁଝାଇ ଚାଲୁଥିଲେ। ଏଇ କେତେଦିନ ଭିତରେ ମେରୀ ଏକପ୍ରକାର ଆମ ପରିବାରଭୁକ୍ତ ହୋଇଯାଇଥିଲେ। ଦିନକୁ ପ୍ରାୟ ଅଠରଘଣ୍ଟା ସେ ଆମ ସହିତ ରହି ଆମକୁ ଖୁସି ରଖିବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ।

କଲେଜରେ ଅଧ୍ୟୟନ କରୁଥିବା ସମୟରେ ସେକ୍ସପିୟରଙ୍କ ରଚିତ 'ହାମ୍‌ଲେଟ୍', 'ଅଥେଲୋ' ଇତ୍ୟାଦି ପୁସ୍ତକ ପଢ଼ିବାର ସୁଯୋଗ ମିଳିଥିଲା। ପରବର୍ତ୍ତୀ ସମୟରେ କଟକ ସହରରେ ଥିବା ଶହୀଦଭବନରେ ୟୁନାଇଟେଡ୍ ଟକିଜ୍ ନାମକ ଅସ୍ଥାୟୀ ପ୍ରେକ୍ଷାଳୟରେ ତାଙ୍କ ରଚିତ ଗୋଟିଏ ଇଂରାଜୀ ସିନେମା ଦେଖିବାର ମଧ୍ୟ ସୌଭାଗ୍ୟ ହୋଇଥିଲା। କିନ୍ତୁ ଦିନେ ଯେ ସେହି ମହାନ ବ୍ୟକ୍ତିଙ୍କ ଜନ୍ମସ୍ଥାନ ଦେଖିବାର  ଏବଂ ତାଙ୍କ ସମ୍ପର୍କରେ ଅଧିକ ଜାଣିବାକୁ ମିଳିବ ସେକଥା କେବେ ବି ଭାବିନଥିଲି। କୋଚ୍‌ର ଦ୍ରୁତଗତି ସହିତ ମେରୀଙ୍କ ରନିଂ କମେଣ୍ଟ୍ରି ମଧ୍ୟରେ ଆମେ ଯାଇ ପହଞ୍ଚି ଯାଇଥିଲୁ ମହାନ କବିଙ୍କ ଜନ୍ମସ୍ଥାନ ହେନ୍‌ଲି ଷ୍ଟ୍ରୀଟ୍‌ରେ। କୋଚ୍‌ରୁ ଓହ୍ଲାଇଲାବେଳେ ଶରୀରରେ କିପରି ଏକ ଶିହରଣ ସୃଷ୍ଟି ହୋଇଥିଲା। ଆମର ଧାରଣା ଥିଲା ବୋଧହୁଏ କବିଙ୍କ ଜନ୍ମସ୍ଥାନ ଗୋଟିଏ ବଡ଼ ସହର ହୋଇଥିବ। ମାତ୍ର ସେଠାରେ ପହଞ୍ଚି ଦେଖିଲୁ ଷ୍ଟ୍ରାଟ୍‌ଫୋର୍ଡ ହେଉଛି ଗୋଟିଏ ଛୋଟ ସହର। ଆମର ଖୋର୍ଦ୍ଧା ସହର କିମ୍ବା ତା'ଠାରୁ ସାନ ସହରଟିଏ ଭଳି। ରାସ୍ତାଘାଟରେ ଉନ୍ନତି ଘଟିଥିଲେ ବି ଗ୍ରାମର ଛବି ପୂର୍ବଭଳି ଜୀବନ୍ତ ଥିଲା।

ଗାଇଡ୍ ମେରୀ ଆଗେ ଆଗେ ଓ ଆମେସବୁ ତାଙ୍କ ପଛରେ ଚାଲୁଥିଲୁ। ପାଖରେ ଗୋଟିଏ ପୁରୁଣା ଘରକୁ ଦେଖାଇ ମେରୀ କାହିଲେ, "ଯେଉଁ ଘରକୁ ଆସିବାପାଇଁ ଆପଣମାନେ ଉତ୍କଣ୍ଠିତ ଥିଲେ, ଏବେ ଆସି ସେଠାରେ ପହଞ୍ଚିଗଲେଣି।" ଘରଟି ନୁଆଁଣିଆ ଥିଲା। ଆମେ ଆସ୍ତେ ଆସ୍ତେ ସେ ଘର ଭିତରେ ପଶିଲୁ। ସେକ୍ସପିୟର ଯେଉଁ ଖଟରେ ଶୋଉଥିଲେ, ଯେଉଁ ଚଉକିରେ ବସୁଥିଲେ, ସେସବୁ ସୁରକ୍ଷିତ ଅବସ୍ଥାରେ ସେ ଘରେ ରହିଥିଲା। ପ୍ରତ୍ୟେକ ଉପକରଣ ସାମନାରେ 'ଡୁ ନଟ୍ ଟଚ୍' (ଛୁଅନ୍ତୁ ନାହିଁ) ବୋଲି ଲେଖାମାନ ଟଙ୍ଗା ଯାଇଥିଲା। ମେରୀ ବୁଝାଇ ଚାଲିଥିଲେ ଓ ଆମେ ଶାନ୍ତଶିଷ୍ଟ ପିଲାଭଳି ତାଙ୍କ ପଛରେ ଚାଲୁଥିଲୁ। ଗୋଟାଏ ଜାଗାରେ କେଜାଣି କାହିଁକି ସେ ଟିକିଏ ଅଟକିଗଲେ। ତାଙ୍କ ପଛରେ ମୁଁ ଥିଲି। ମୋ ପାଖରେ କ୍ୟାମେରାଟିଏ ଥିଲା। ଏକ ଦୁର୍ବଳ ମୁହୂର୍ତ୍ତରେ ମୁଁ ଆଉ ଲୋଭ ସମ୍ବରଣ କରିନପାରି ସେ ଗୃହ ଭିତରେ ମୋର ଗୋଟିଏ ଫଟୋ ଉଠାଇବାକୁ ମେରୀଙ୍କୁ ଅନୁରୋଧ କଲି। ବୋଧହୁଏ ବାଗ୍‌ଦେବୀ ସରସ୍ୱତୀ ତାଙ୍କ କଣ୍ଠରେ ବିଜେକଲେ। କୌଣସି ପାଟିତୁଣ୍ଡ ନକରି ଗୃହଭିତରେ ଥିବା ଗୋଟିଏ ଚୌକିରେ ଚୁପ୍‌ଚାପ୍ ବସିବାକୁ

ସେ ମୋତେ ଇସାରା ଦେଲେ। ତାଙ୍କର ଭୟ ଥିଲା ଯଦି ଅନ୍ୟମାନେ ଆସିଯିବେ, ତେବେ ସେ ଅପ୍ରସ୍ତୁତ ହୋଇଯିବେ। ଯେଉଁ ଉପକରଣକୁ ଛୁଇଁବା ପାଇଁ ବାରଣ କରାଯାଇଥିଲା, ସେଥିରେ ବସି ଫଟୋ ଉଠାଇବା ଯେ ନିଶ୍ଚିତ ଭାବରେ ଏକ ଅପରାଧ, ସେ ସମ୍ପର୍କରେ ମେରୀ ସଚେତନ ଥିଲେ। ତେବେ ଆମର ଭାଗ୍ୟ ଭଲ, ଆମର ଫଟ ଉଠାଇବା ଦୃଶ୍ୟକୁ ଅନ୍ୟ କେହି ଦେଖିପାରି ନ ଥିଲେ। ସେ ଦିନର ସେ ଦୁର୍ଲଭ ଫଟୋଟି ଆଜି ବି ମୋ ପାଖରେ ସଂରକ୍ଷିତ ଅଛି।

କବିଙ୍କ ବାସଭବନର କିଛି ଅଂଶ ଅବକ୍ଷୟର ଶିକାର ହୋଇଥିଲେ ହେଁ ସେସବୁର ମରାମତି କରାଯାଇ ନଥିଲା। ଏହାର କାରଣ ପଚାରିବାରୁ ମେରୀ କହିଲେ, ଆପଣମାନେ ଜାଣନ୍ତି, ଇଂରେଜ ଜାତି ଅତ୍ୟନ୍ତ ରକ୍ଷଣଶୀଳ ଓ ସେମାନେ ସବୁବେଳେ ପରମ୍ପରାକୁ ସମ୍ମାନ ଦେଇଥାନ୍ତି। ମୂଳ ଘରଟି ମରାମତି କରିଦେଲେ ତା'ର ମୌଳିକତା ନଷ୍ଟ ହୋଇଯିବ ଭାବି କୌଣସି ମରାମତି କରାଯାଉନାହିଁ। କେବଳ ଏତିକି ନୁହେଁ, ଏପରିକି ବ୍ରିଟିଶ୍ ପାର୍ଲାମେଣ୍ଟରେ ଥିବା ହାଉସ୍ ଅଫ୍ କମନ୍ସ ହଲରେ ମେଜିଆ ଏବଂ ଖମ୍ବସବୁ ଖଣ୍ଡିଆଖାବରା ହୋଇ ଯାଇଥିଲେ ହେଁ ସେ ସବୁର ମରାମତି କରା ନ ଯାଇ ପୂର୍ବବତ୍ ସଂରକ୍ଷିତ ରଖାଯାଇଛି। ମେରୀ କହିଚାଲିଥିଲେ ଷ୍ଟ୍ରାଟଫୋର୍ଡକୁ ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ଲକ୍ଷ ଲକ୍ଷ ଲୋକ ଆସୁଥିଲେ ହେଁ ସ୍ଥାନୀୟ ବାସିନ୍ଦାଙ୍କର ସେକ୍ସପିୟରଙ୍କ ସମ୍ପର୍କରେ ବିଶେଷ ଆଗ୍ରହ ନଥିଲା। ସେମାନେ କବିଙ୍କ ପାଇଁ ନିଜକୁ ଗୌରବାନ୍ୱିତ ମନେ କରୁନଥିଲେ। ସପ୍ତାହାନ୍ତରେ ବିଶେଷକରି ରବିବାର ଦିନ ଷ୍ଟ୍ରାଟଫୋର୍ଡର ଏଭନ୍ ନଦୀକୂଳ କିପରି ଲୋକାରଣ୍ୟ ହୋଇଉଠେ, ଚାରିଆଡ଼େ ଗାଡ଼ିମଟର କିପରି ଜମିଯାଏ, ମେରୀ ତା'ର ଏକ ବିସ୍ତୃତ ବିବରଣୀ ଆମକୁ ଶୁଣାଇଥିଲେ।

କିଛି ସମୟ ପରେ ସେକ୍ସପିୟର୍ ଯେଉଁ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ ତାକୁ ଦେଖିବାକୁ ଆମେ ବାହାରିଲୁ। ଦୀର୍ଘଦିନ ଅତିବାହିତ ହୋଇଥିଲେ ହେଁ ସେ ସ୍କୁଲ୍‌ର କ୍ଲାସ୍‌ରୁମ୍‌କୁ ସଂରକ୍ଷିତ କରି ରଖାଯାଇଥିବାର ଦେଖି ଆମେ ଅବାକ୍ ହୋଇଗଲୁ। କବି ପିଲାଦିନେ କ୍ଲାସ୍‌ରେ ଯେଉଁ ସ୍ଥାନରେ ବସୁଥିଲେ, ସେଠାରେ ଗୋଟିଏ ପିତଳ ପଟା ଝୁଲାଯାଇ ସେଦିନର ସ୍ମୃତିକୁ ଅକ୍ଷତ ରଖାଯାଇଥିଲା।

ଷ୍ଟ୍ରାଟଫୋର୍ଡରେ ବର୍ଷରେ ମୁଖ୍ୟତଃ ଦୁଇଟି ଉତ୍ସବ ପାଳିତ ହୁଏ। ଅପ୍ରେଲ୍ ଦୁଇ ତାରିଖରେ ସେକ୍ସପିୟର୍‌ଙ୍କ ଜନ୍ମଦିନ ଏବଂ ଜୁଲାଇରେ ଅନୁଷ୍ଠିତ ଷ୍ଟ୍ରାଟଫୋର୍ଡ ଉତ୍ସବ। ସେକ୍ସପିୟର୍‌ଙ୍କ ଜନ୍ମଦିବସ ଉପଲକ୍ଷେ ଆୟୋଜିତ ଉତ୍ସବରେ ଲଣ୍ଡନଠାରେ ଅବସ୍ଥାପିତ ରାଷ୍ଟ୍ରଦୂତମାନଙ୍କର ପ୍ରତିନିଧିମାନେ ଷ୍ଟ୍ରାଟଫୋର୍ଡ ଆସି ନିଜନିଜର ଜାତୀୟପତାକା ଉତ୍ତୋଳନ କରିଥାନ୍ତି। ହେଲନି ଷ୍ଟ୍ରୀଟ୍‌ରେ ଥିବା କବିଙ୍କ ଜନ୍ମସ୍ଥାନରୁ ଏକ ଶୋଭାଯାତ୍ରା ବାହରି ଟ୍ରିନିଟ୍ ଚର୍ଚ୍ଚରେ ଥିବା ତାଙ୍କ ସମାଧିପୀଠ ପର୍ଯ୍ୟନ୍ତ ଯାଇଥାଏ। ଟ୍ରିନିଟ ଚର୍ଚ୍ଚଟି ଆଭନ୍ ନଦୀକୂଳରେ ଅବସ୍ଥିତ।

ଇଂଲଣ୍ଡର ଶ୍ରେଷ୍ଠ ନାଟ୍ୟକାରଙ୍କ ସ୍ମୃତିକୁ ଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ଷ୍ଟ୍ରାଟ୍‌ଫୋର୍ଡରେ ଗଢ଼ିଉଠିଛି ଏକ ସ୍ମାରକ ରଙ୍ଗମଞ୍ଚ। ପ୍ରସିଦ୍ଧ ଅଭିନେତା ଗାରିକ୍ ପ୍ରଥମେ ଏଥିପାଇଁ ଯୋଜନା ଆରମ୍ଭ କରିଥିଲେ, ମାତ୍ର ତାହା କାର୍ଯ୍ୟକାରୀ ହେବାରେ ଅହେତୁକ ବିଳମ୍ବ ଘଟିଥିଲା। ଶେଷରେ ମିଃ ଚାର୍ଲସ ଫ୍ଲାୱାର ନାମକ ଷ୍ଟ୍ରାଟଫୋର୍ଡର ଜଣେ ଅଧିବାସୀ ଗାରିକ୍‌ଙ୍କ ଅଭିଳାଷକୁ ସାକାର କରିଥିଲେ। ଦୀର୍ଘଦିନର ପ୍ରତୀକ୍ଷା ପରେ ୧୮୬୯ରେ ସ୍ମାରକ ରଙ୍ଗମଞ୍ଚଟି ସମ୍ପୂର୍ଣ୍ଣ ହୋଇଥିଲା। ଦୁର୍ଭାଗ୍ୟକୁ ରଙ୍ଗମଞ୍ଚଟି ଅଗ୍ନିକାଣ୍ଡରେ ୧୯୨୬ରେ ଭସ୍ମୀଭୂତ ହୋଇଯାଇଥିଲା ଏବଂ ବର୍ତ୍ତମାନର ରଙ୍ଗମଞ୍ଚଟି ୧୯୩୨ ମସିହାରେ ପୁନଃନିର୍ମିତ ହୋଇଥିଲା। ଏହି ରଙ୍ଗମଞ୍ଚଟି ଆଧୁନିକ ବୈଜ୍ଞାନିକ ଜ୍ଞାନକୌଶଳରେ ନିର୍ମିତ ହୋଇଛି। ସେଥିରେ ବାରଶହ ଦର୍ଶକ ବସି ନାଟକ ଉପଭୋଗ କରିବାର ବ୍ୟବସ୍ଥା ରହିଛି। ଏହି ରଙ୍ଗମଞ୍ଚର ବିଶେଷତ୍ୱ ହେଲା, ଜଣେ ପ୍ରେକ୍ଷାଳୟର ଯେକୌଣସି ସ୍ଥାନରେ ବସିଲେ ମଧ୍ୟ ତାକୁ ସବୁକଥା ଶୁଣାଯାଏ। 'ବାର୍ଥପ୍ଲେସ୍ ଟ୍ରଷ୍ଟ୍' ନାମକ ଏକ ଅନୁଷ୍ଠାନ ମାଧ୍ୟମରେ ସେକ୍ସପିୟରଙ୍କ ସମସ୍ତ ସମ୍ପତ୍ତି ପରିଚାଳିତ ହେଉଥିବା କଥା ମେରୀ ଆମକୁ କହିଥିଲେ।

ସେକ୍ସପିୟର ସ୍ମାରକ ରଙ୍ଗମଞ୍ଚରେ ଅଭିନୀତ ନାଟକଟିଏ ଦେଖିବା ପାଇଁ ମନରେ ପ୍ରବଳ ବାସନା ରହିଥିଲେ ହେଁ ତାହା ସମ୍ଭବ ହୋଇନଥିଲା; କାରଣ ସେଠାରେ ନାଟକ ଦେଖିବାକୁ ହେଲେ ଅଗ୍ରିମ ଟିକେଟ୍ କରିବାକୁ ପଡ଼ିଥାଏ । ବର୍ଷର ପ୍ରାୟ ଛମାସ କାଳ ରଙ୍ଗମଞ୍ଚରେ ନାଟକ ଅଭିନୀତ ହୁଏ। ସନ୍ଧ୍ୟା ସାଢ଼େସାତଟାରେ ନାଟକ ଆରମ୍ଭ ହୋଇ ଅନ୍ୟୂନ ଚାରିଘଣ୍ଟା କାଳ ଚାଲେ। ଅଧିକାଂଶ ଦିନ ରଙ୍ଗମଞ୍ଚ ଭରପୂର ରହିଥାଏ। ଆମର ଅଗ୍ରିମ ଟିକେଟ୍ ନଥିବାରୁ ଆମେ ସେଥିରୁ ବଞ୍ଚିତ ହୋଇଥିଲୁ।

ଷ୍ଟ୍ରାଟଫୋର୍ଡ ସହରରେ ସେକ୍ସପିୟରଙ୍କର ଅନ୍ୟାନ୍ୟ ସ୍ମାରକୀସବୁ ଦେଖିସାରିଲା ବେଳକୁ ଛଅଟା ବାଜିସାରିଥିଲା। କର୍ତ୍ତବ୍ୟର ତାଡ଼ନାରେ ଆମକୁ ଲଣ୍ଡନ ସହରକୁ ଫେରିବାକୁ ପଡ଼ିଲା। ଫେରିଲାବେଳେ ଆମ ରାଜ୍ୟର କବିମାନଙ୍କ କଥା ମନେପଡ଼ିଗଲା। ଆମ ରାଜ୍ୟର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଗଣକବି ବୈଷ୍ଣବ ପାଣି, ଜାତୀୟକବି ବିରକିଶୋରଙ୍କ ସ୍ମୃତି କେତେ ଅବହେଳିତ ! କୁଲାଡ଼ଗଡ଼, କେନ୍ଦୁଲି, କୋଠପଦା, ପୁନଙ୍ଗ ଇତ୍ୟାଦି କଥା ପଚାରିଲେ ଆମର ଯୁବପିଢ଼ିଙ୍କ ଆଖି ଟେରା ହୋଇଯାଏ। ଏସବୁ ଯେ ଓଡ଼ିଶାର ପ୍ରଥିତଯଶା କବିମାନଙ୍କର ପବିତ୍ର ଜନ୍ମପୀଠ, ସେକଥା ଜାଣିବା ପାଇଁ ନା ସେମାନଙ୍କର ପ୍ରୟାସ ଅଛି ନା ସେମାନଙ୍କୁ ଜଣାଇବା ପାଇଁ ଆଉ କାହାର ଆଗ୍ରହ ଅଛି। କବି ଜୟଦେବଙ୍କୁ ନେଇ ଦୀର୍ଘଦିନ ହେଲା ଯେଉଁ ବିବାଦ ଚାଲିଛି ତା'ର ଏକ ସବୁଦିନିଆ ସମାଧାନ ପାଇଁ ଉଲ୍ଲେଖନୀୟ ପଦକ୍ଷେପ ନିଆଯାଇ ନାହିଁ। କବିଚନ୍ଦ୍ର କାଳିଚରଣଙ୍କର ଅନେକ ଦୁର୍ଲଭ ପାଣ୍ଡୁଲିପି ମ୍ୟୁଜିଅମ୍‌ର ଅଳିଆଗଦାରେ ପଡ଼ିରହିଛି। କାନ୍ତକବି ଲକ୍ଷ୍ମୀକାନ୍ତଙ୍କ

ରଚିତ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ରାଜ୍ୟ ସଙ୍ଗୀତର ମର୍ଯ୍ୟାଦା ଦେବାପାଇଁ ଉଦ୍ୟମ ସଫଳ ହୋଇନାହିଁ। ଏସବୁ ଚିନ୍ତାକରି ମନ ଭାରାକ୍ରାନ୍ତ ହୋଇଯାଇଥିଲା ଓ ମୁଁ ଶୀତତାପ ନିୟନ୍ତିତ କୋଚ୍‌ରେ ଘୁମେଇପଡ଼ିଥିଲି। ଏହାଭିତରେ ଆମ କୋଚ୍ ଆସି କେତେବେଳେ ଅକ୍ସଫୋର୍ଡ ଷ୍ଟ୍ରୀଟ୍‌ରେ ଥିବା ହୋଟେଲ ସାମନାରେ ପହଞ୍ଚିସାରିଥିଲା ମୁଁ ଜାଣିପାରି ନଥିଲି।।

## ବିଦେଶରେ ଦୋଷା, ଉପମା ଭୋଜନ

ଗତକାଲି ରାତିରେ ଲଣ୍ଡନରେ ଥିବା ରଏଟର ପ୍ରତିନିଧି ରାଧାକ୍ରିଷ୍ଣନ୍ ଆମକୁ ଦେଖା କରିବାକୁ ଆସିଥିଲେ। କଥାପ୍ରସଙ୍ଗରେ ଖାଇବା କଥା ଉଠିଲା। ଭଦ୍ରଲୋକ ଦକ୍ଷିଣଭାରତୀୟ। ନିରାମିଷାଶୀ। ପ୍ରସ୍ତାବ ଦେଲେ 'ଉଡ୍‌ଲାଣ୍ଡ୍' ହୋଟେଲକୁ ଯିବା। ଉଡ୍‌ଲାଣ୍ଡ୍ ଉଭୟ ଆମିଷ ଓ ନିରାମିଷ ଖାଦ୍ୟ ପରିବେଷଣ କରନ୍ତି। ରେଷ୍ଟୁରାଣ୍ଟ୍‌ରେ ବିଲାତି ପାନୀୟ ମଧ୍ୟ ମିଳେ। ଆମ ଭିତରୁ କେତେକ ବନ୍ଧୁ ନିଜ ଇଚ୍ଛାରେ ଆଗରୁ ସହର ବୁଲିବାକୁ ଚାଲିଯାଇଥିଲେ। ଆମେ ମାତ୍ର ପାଞ୍ଚଜଣ ରାଧାକ୍ରିଷ୍ଣନ୍‌ଙ୍କ ସାଙ୍ଗରେ ଗଲୁ। ପ୍ରଥମେ କଥା ପଡ଼ିଲା, କ'ଣ ଖାଇବା? କିଛି ସମୟ ପରେ ସ୍ଥିର ହେଲା, ଭାରତୀୟ ଖାଦ୍ୟ ଖାଇବା। ଖାଇବାପାଇଁ ବରାଦ ହେଲା 'ମହିଶୂର ଥାଳି'। ଥାଳୀରେ ସାଉଥ୍ ଇଣ୍ଡିଆନ୍ ଖାଦ୍ୟ। ମନତୃପ୍ତିରେ ଭୋଜନ ହେଲା। ବରା, ଇଡ୍‌ଲି, ଉପମା, ଦୋଷା ଦାମ୍ ୧୦ ଡଲାର। ଆମେ ସମସ୍ତେ ନିରାମିଷ ଭୋଜନ କଲୁ।

ସକାଳ ଏଗାରଟାରେ ଲଣ୍ଡନ ଛାଡ଼ି ଭାରତ ଅଭିମୁଖେ ଫେରିବା କଥା। ଇତିମଧ୍ୟରେ ବିଦେଶଗସ୍ତର ମୋହ ଭାଙ୍ଗିଯାଇଥିଲା। ସମସ୍ତେ ଘରମୁହାଁ ହୋଇଥିଲେ। ବିଦେଶରେ ରହିବା, ଖାଇବା, ବୁଲିବା ସଉକ୍ କରିବା ଯେତେ ଆରାମଦାୟକ ହେଲେ ବି ଜନ୍ମଭୂମିର ମାୟାମମତା ବେଶିଦିନ ଏଡ଼ାଇ ରହିବା ଭାରତୀୟଙ୍କ ପକ୍ଷରେ ବୋଧେ ସମ୍ଭବ ନୁହେଁ। ଅଧିକାଂଶଙ୍କର ସପିଂ କରିବା ପାଇଁ ପ୍ରବଳ ଆଗ୍ରହ। ଇଆଡ଼େ ସମୟ ହୋଇଯାଉଥିଲା। କିନ୍ତୁ ଦୋକାନ ତ ସାଢ଼େନଅଟା ପୂର୍ବରୁ ଖୋଲିବ ନାହିଁ। କୌଣସିମତେ ଦେଢ଼ଘଣ୍ଟା ଭିତରେ ସବୁକାମ ଶେଷ କରିବାକୁ ପଡ଼ିବ। ତରତରରେ ବଜାରକୁ ଦୌଡ଼ିଲୁ।

## ମଲ୍‌ରୁ ମାର୍କେଟିଂ

ଆମେ ଲଣ୍ଡନ ଯାଇଥିବା ସମୟରେ ଆମ ରାଜ୍ୟରେ ବିଗ୍‌ବଜାର କିମ୍ବା ମଲ୍‌ର ପରିକଳ୍ପନା ନଥିଲା। ଆମର ବଡ଼ ଦୋକାନ କହିଲେ ସେତେବେଳେ ରାଜଧାନୀ ଭୁବନେଶ୍ୱରରେ ଥିବା 'ବର୍ମା ଜେନେରାଲ୍ ଷ୍ଟୋର୍' (ବର୍ତ୍ତମାନର କଳାମନ୍ଦିର)କୁ

ବୁଝାଉଥିଲା। ଅକ୍ସଫୋର୍ଡ ଷ୍ଟ୍ରୀଟ୍‌ରେ ଥିବା 'ଦେବାନ୍‌ହାଁସ୍' ଷ୍ଟୋର୍ ଭିତରକୁ ପଶି ପ୍ରଥମେ ମୁଁ ବାଉଳା ହୋଇଗଲି। କୋଉ ପାଖରେ ଯିବି, କ'ଣ କରିବି, ଏଇକଥା ଭାବୁଭାବୁ ଜଣେ ସୁନ୍ଦରୀ ଯୁବତୀ ଆସି ମତେ ପଚାରିଲେ, "କ୍ୟାନ୍ ଆଇ ହେଲ୍ପ ୟୁ ?" ତାଙ୍କର ସେହି ଅପ୍ରତ୍ୟାଶିତ ସାହାଯ୍ୟ ଘୋଷଣାରେ ମୁଁ ଟିକିଏ ଅପ୍ରସ୍ତୁତ ହୋଇଯାଇଥିଲି। ମୋର ସେତେବେଳ ସୁଦ୍ଧା ଧାରଣା ନଥିଲା ଯେ, ସେପରି ସବୁ ଦୋକାନରୁ ନିଜେ ନିଜର ପସନ୍ଦ ମୁତାବକ ଜିନିଷ ବାଛି ଆଣିବାକୁ ହୁଏ। ପାଖରେ ଥିବା ଟ୍ରେ କିମ୍ବା ଟ୍ରଲିରେ ସେସବୁ ଜିନିଷ ଆଣି କାଉଣ୍ଟର୍‌ରେ ଉପଯୁକ୍ତ ପ୍ରାପ୍ୟ ଦେଇ ବାହାରକୁ ଆସିବାକୁ ହୁଏ।

ମୁଁ ସେ ଯୁବତୀଙ୍କୁ ଲକ୍ଷ୍ୟ କରି କହିଲି, "ଆମେସବୁ ବାହାରୁ ଆସିଛୁ। ଏ ଦୋକାନର ଆଦବ କାଇଦା ସମ୍ପର୍କରେ ଆମର ବିଶେଷ ଅଭିଜ୍ଞତା ନାହିଁ। ତା'ଛଡ଼ା ଆମ ହାତରେ ସମୟ ମଧ୍ୟ କମ୍। ଆମେ କେତୋଟି ନିର୍ଦ୍ଦିଷ୍ଟ ପଦାର୍ଥ ନେବାକୁ ଚାହୁଁଛୁ। ଆପଣ ଆମକୁ ସାହାଯ୍ୟ କଲେ ଆମେ ଉପକୃତ ହେବୁ।"। ଅନ୍ୟମାନେ ଆଉକିଛି କହିବା ଆଗରୁ ମୁଁ କହିଲି, "ମୋର ଗୋଟିଏ ଅଲିଭିଟ୍ ପୋର୍ଟେବ୍ଲ ଟାଇପ୍ ରାଇଟର୍ ଓ ଗୋଟିଏ ଆଟାଚି ଦରକାର, ମତେ ସେ ଦୁଇଟି ପଦାର୍ଥ ପାଇବାରେ ସହାୟକ ହେବେ କି ?" ଯୁବତୀଜଣକ କ'ଣ ଭାବିଲେ କେଜାଣି, ମତେ ମୋର ଆବଶ୍ୟକ ହେଉଥିବା ଟାଇପ୍‌ରାଇଟର୍ ଓ ଆଟାଚି ଥିବା ସ୍ଥାନକୁ ନେଇଗଲେ ଏବଂ ଦଶମିନିଟ୍ ମଧ୍ୟରେ ମୁଁ ସେ ଦୁଇଟିକୁ ସଂଗ୍ରହ କରିନେଲି। ପରେ ବୁଝିଲି, ସେସବୁ ଦୋକାନମାନଙ୍କରେ ଆମଭଳି ବିଦେଶାଗତ କଷ୍ଟମର୍‌ମାନଙ୍କୁ ସାହାଯ୍ୟ କରିବା ପାଇଁ ଏକାଧିକ ଯୁବତୀଙ୍କୁ ନିଯୁକ୍ତ କରାଯାଇଥିଲା। ଆଟାଚି ଓ ଟାଇପ୍‌ରାଇଟର୍ ନେଇ ବାହାରକୁ ଆସିବା ପୂର୍ବରୁ ମନେପଡ଼ିଥିଲା କିଛି କିଛି ପ୍ରେଜେଣ୍ଟେସନ୍ ଜିନିଷ ନେବା ନିହାତି ଦରକାର। ପୁଣି ଭାବିଲି କେତେଜଣଙ୍କ ପାଇଁ କ'ଣ ନେଇ ପାରିବି ? କୌଣସି ଜିନିଷ ତ ଶସ୍ତା ନୁହେଁ। ତଥାପି କାଣ୍ଟ୍‌ଛାଣ୍ଟ କରି ଗୋଟିଏ ପାର୍କର୍ ପେନ୍‌ସେଟ୍ ଆଉ କିଛି ବଲ୍‌ପେନ୍, ସେଭେନ୍ ଓ'କ୍ଲକ୍ ବ୍ଲେଡ୍ ପ୍ୟାକେଟ୍ ଓ କିଛି କସ୍‌ମେଟିକ୍ ସେଟ୍ କିଣିଲି। ପ୍ରତ୍ୟେକ ପଦାର୍ଥ ବାଛିଲାବେଳକୁ ମନିପର୍ସକୁ ହାତ ଚାଲିଯାଉଥିଲା; କାରଣ ସେତେବେଳକୁ ଡଲାରସବୁ ସରିସରି ଆସୁଥିଲା। ବାହାରକୁ ଆସି ଦେଖିଲି ବନ୍ଧୁମାନେ କୋଚ୍ ନିକଟକୁ ଆସିଯାଇଥିଲେ।

## ଲଣ୍ଡନରୁ ବ୍ରସେଲ୍ସ

ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ଆମେ ଲଣ୍ଡନରୁ ସିଧା ଆମଷ୍ଟରଡାମ୍ ଆସି ସେଠାରୁ ବିମାନ ଧରିବା କଥା। କିନ୍ତୁ ତାହା ମଝିରେ ବିକ୍ରମ ରାଓ କେତେବେଳେ ବ୍ରସେଲ୍ସ

ଯିବା ବ୍ୟବସ୍ଥା କରିସାରିଥିଲେ ସେକଥା ଆମକୁ ଜଣାନଥିଲା। ଲଣ୍ଡନରୁ ବ୍ରୁସେଲ୍ସ (ବେଲ୍‌ଜିଅମ୍) ଯିବାକୁ ହେଲେ ଫେରିରେ ଡୋଭରରୁ ଆଷ୍ଟେଣ୍ଡ୍ ଯିବାକୁ ପଡ଼େ। ଏଥିପାଇଁ ପ୍ରାୟ ସାଢ଼େତିନିଘଣ୍ଟା ସମୟ ଲାଗେ। ଶ୍ରୀ ରାଓ ଯେତେବେଳେ ଆମକୁ ପରିବର୍ତ୍ତିତ ସୂଚୀ ସମ୍ପର୍କରେ ଜଣାଇଲେ, ଆମେ ସମସ୍ତେ ଖୁସି ହୋଇଥିଲୁ; କାରଣ ଅଳ୍ପ ସମୟ ମଧ୍ୟରେ କମ୍ ଖର୍ଚ୍ଚରେ ଆଉ ଗୋଟିଏ ଦେଶ ଦେଖିହେବ। ଆମେ  ସାଙ୍ଗେ ସାଙ୍ଗେ ବ୍ୟାଗେଜ୍ କୋଚ୍‌ରେ ଲୋଡ୍ କରି ପ୍ରସ୍ତୁତ ହୋଇଗଲୁ। କୋଚ୍ ଡୋଭର୍ ଅଭିମୁଖେ ଚାଲିଲା। ସେଠାରେ ଜାହାଜ ଚଢ଼ିବା ପୂର୍ବରୁ ଆମେ ଗାଇଡ୍ ମେରୀଙ୍କୁ ବିଦାୟ ଦେଲୁ। ମେରୀ ଅଳ୍ପ କେଇଦିନ ଭିତରେ ଆମର ଅତି ଆପଣାର ହୋଇଯାଇଥିଲେ। ଆମେ ତାଙ୍କୁ କିଛି ଟିପ୍ସ୍ ଦେବାକୁ ଚାହିଁବାରୁ ସେ ନମ୍ରତାର ସହିତ ପ୍ରଥମେ ଅନିଚ୍ଛୁକ ହେଉଥିଲେ। କିନ୍ତୁ ଆଉଥରେ ଅନୁରୋଧ କରିବାରୁ ସେ ତାକୁ ଗ୍ରହଣ କଲେ। ଆମପାଖରୁ ବିଦାୟ ନେବାବେଳେ ତାଙ୍କ ଆଖି ଛଳଛଳ ହୋଇଯାଇଥିବାର ମୁଁ ଲକ୍ଷ୍ୟ କରିଥିଲି। ଫେରି ଛାଡ଼ିବାର ମାତ୍ର ପନ୍ଦର ମିନିଟ୍ ପୂର୍ବରୁ ଆମେ ଯାଇ ଡୋଭରରେ ପହଞ୍ଚିଗଲୁ। ଜିନିଷପତ୍ର ଲୋଡ୍ କରିସାରିଲା ବେଳକୁ ଜାହାଜ ଛାଡ଼ିଲା। ପ୍ରଥମେ ପ୍ରଥମେ ଜାହାଜରେ ବସିଲାବେଳେ ବ୍ୟସ୍ତ ଲାଗୁଥିଲା, ଜାହାଜରେ ସାଢ଼େତିନିଘଣ୍ଟା ସମୟ କେମିତି କଟିବ? ମାତ୍ର କଥାବାର୍ତ୍ତା, ହସଖୁସି, ତାସ୍‌ଖେଳରେ ସମୟ କୁଆଡ଼େ ଚାଲିଗଲା ଜାଣିହେଲା ନାହିଁ।

## ସର୍ଦ୍ଦାରଜୀଙ୍କ ଦୋକାନରେ ତନ୍ଦୁରୀ ରୁଟିର ସ୍ୱାଦ

ଆମେ କୂଳରେ ପହଞ୍ଚିଲାବେଳକୁ ଗୋଟିଏ ଏୟାର୍‌କଣ୍ଡିସନ୍ କୋଚ୍ ଆସି ଆମପାଇଁ ଅପେକ୍ଷା କରିଥିଲା। ଜାହାଜରୁ ଓହ୍ଲାଇ ଆମେ ସେ କୋଚ୍‌ରେ ବସି ବ୍ରୁସେଲ୍ସ ଅଭିମୁଖେ ଚାଲିଲୁ। ବସ୍‌ରେ ଘଣ୍ଟାକର ରାସ୍ତା, ହେଲେ ପଥଶ୍ରମ ଜଣାପଡ଼ିଲା ନାହିଁ। ବ୍ରୁସେଲ୍ସରେ ଏକ ପଞ୍ଚତାରକା ହୋଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା। କିନ୍ତୁ ଆମର ରାତିରେ ଖାଇବା କଥା ସେମାନଙ୍କୁ କୁହାଯାଇ ନଥିଲା। ସନ୍ଧ୍ୟାର ବିଳମ୍ବିତ ପ୍ରହରରେ ହୋଟେଲରେ ପହଞ୍ଚିବା ପରେ ଖାଇବାକଥା ମନେପଡ଼ିଲା। ଦିନଯାକ ବସ୍, ଜାହାଜରେ କଟିଥିଲା। ବିଶେଷ କିଛି ଖାଇବା ମଧ୍ୟ ହୋଇନଥିଲା। ଫୋନ୍‌ଯୋଗେ ସହର ଭିତରେ ଥିବା ଭାରତୀୟ ହୋଟେଲ ସମ୍ପର୍କରେ ବୁଝାଗଲା। ଖବର ମିଳିଲା ସହର ମଝିରେ 'କୋହିନୂର୍' ହୋଟେଲ ନାମରେ ଗୋଟିଏ ଭାରତୀୟ ହୋଟେଲ ଅଛି। ମାଲିକ ବିନା ଦାଢ଼ିବାଲା ପଞ୍ଜାବୀ। ଦୁଇଟି ଟ୍ୟାକ୍ସି କରି ଆମେ ଆଠଜଣ ସେଠାକୁ ଖାଇବାକୁ ଗଲୁ।

ଏତେଦିନ ୟୁରୋପୀୟ ରାଷ୍ଟ୍ରରେ ବୁଲି ଆମର ଧାରଣା ହୋଇଥିଲା ଯେ, ଭାରତୀୟ ମୁଦ୍ରାଠାରୁ ସବୁଦେଶର ମୂଲ୍ୟ ଅଧିକ। ମାତ୍ର ବେଲ୍‌ଜିଅମ୍‌ର ସ୍ଥିତି ଥିଲା ଅଲଗା। ସେଠାରେ

ଗୋଟିଏ ଡଲାର ବଦଳରେ ୬୦ ଫ୍ରାଙ୍କ୍ ମିଳୁଥିଲା, ଯାହାର ଅର୍ଥ ଆମର ଟଙ୍କାଏ ବଦଳରେ ୫ ଫ୍ରାଙ୍କ୍। ଟ୍ୟାକ୍ସିରେ ଯିବା ଓ ଖାଇବା ବାବଦରେ ଜଣକା ୬୦୦ ଫ୍ରାଙ୍କ୍ ଖର୍ଚ୍ଚ ହେଲା। ପଞ୍ଜାବୀ ଦୋକାନ ମାଲିକ ଜଣକ ଭଦ୍ରଲୋକ, ହେଲେ ଓସ୍ତାଦ ବ୍ୟବସାୟୀ। ରାତି ଏଗାରଟାରେ ଆମ ଚର୍ଚ୍ଚାରେ ଲାଗିଗଲେ। ଆମ ଭିତରେ ବିଭିନ୍ନ ରୁଚିର ଲୋକ ଥିଲେ। ଭିନ୍ନ ଭିନ୍ନ ଲୋକଙ୍କର ଅଲଗା ଅଲଗା ଖାଦ୍ୟ ବରାଦ ହେଲା। ଯାହାହେଉ, ଫ୍ରାଏଡ୍ ରାଇସ୍, ତନ୍ଦୁରୀ ରୁଟି, ଆଳୁ-ମଟର-କୋବି କଷା, ଡାଲ୍‌ଫ୍ରାଏ, ପାଳଙ୍ଗ-ପନିର ତରକାରି, ଦହି ରାଇତା ଓ ତା'ସାଙ୍ଗକୁ ଆମ୍ବ ଆଚାର ଖୁବ୍ ତୃପ୍ତିକର ହେଲା। ରାତିରେ କୁକୁଡ଼ା ଖାଇବାପାଇଁ କାହାର କାହାର ଆଗ୍ରହ ଥିଲେ ବି କାଳେ ଅତ୍ୟଧିକ ଦାମ୍ ପଡ଼ିବ, ସେ ଭୟରେ ସମସ୍ତେ ସାଦା ଖାଇବାକୁ ପସନ୍ଦ କରିଥିଲେ। କିଛି ସମୟ ପାଇଁ ପଞ୍ଜାବୀ ଭଦ୍ରଲୋକଙ୍କ ସହ ନାନା ବିଷୟରେ ଆଳାପ ହେଲା। ଶେଷରେ ଆମେ ଫେରିବା ପାଇଁ ସେ ଟ୍ୟାକ୍ସି ଡାକି ଆମ ହୋଟେଲକୁ ବାଟ ବତେଇଦେଲେ।

ରାତି ପ୍ରାୟ ୧୨ଟା ବେଳକୁ ଆମେ ହୋଟେଲ ଫେରିଲୁ। ସେତେବେଳକୁ ଆମ ହୋଟେଲ ସାମନାରେ ଥିବା 'ରୟାଲ୍ କ୍ଲବ୍'ରୁ କାବେରା ଦେଖି ଆମ ଗ୍ରୁପ୍‌ର କେତେକ ବନ୍ଧୁ ମନ ଆନନ୍ଦରେ ରୁମ୍‌କୁ ଫେରୁଥିଲେ। ରାତିରେ ଖାଦ୍ୟ ଅପେକ୍ଷା କାବେରା ପାଇଁ ସେମାନଙ୍କର ଅତ୍ୟଧିକ ଆଗ୍ରହ ଥିଲା। ବିଦେଶ ରାଷ୍ଟ୍ରରେ କାବେରା ଏବଂ ନାଇଟ୍‌କ୍ଲବ୍ ଅନ୍ୟ ଏକ ଆକର୍ଷଣ। ସେସବୁ ସେ ଦେଶମାନଙ୍କର ସଂସ୍କୃତିର ଅଙ୍ଗ ପାଲଟିଯାଇଛି। ନାଇଟ୍‌କ୍ଲବ୍‌କୁ ନଗଲେ ଜୀବନକୁ ଠିକ୍‌ଭାବେ ଉପଭୋଗ କରିହୁଏ ନାହିଁ ବୋଲି ସେଠାକାର ଲୋକେ, ବିଶେଷକରି ଯୁବକଯୁବତୀମାନେ ଯୁକ୍ତି ବାଢ଼ନ୍ତି। ଜଳବାୟୁ ଥଣ୍ଡା ହୋଇଥିବାରୁ ନାଇଟ୍‌କ୍ଲବ୍‌ରେ 'ଲାଇଭ୍ ସୋ' ଯୌନ ଆକାଂକ୍ଷା ଜାଗ୍ରତ କରାଇବାରେ ସହାୟକ ହୋଇଥାଏ ବୋଲି ସେମାନେ ଦର୍ଶାଇଥାନ୍ତି।

ଯାହାହେଉ ଦିନଯାକର ପରିଶ୍ରମ ପରେ ରାତିରେ ଉତ୍ତମ ଭୋଜନ ମିଳିବାରୁ ଭଲ ନିଦ ହୋଇଗଲା। ପରଦିନ ଭୋରରୁ ଉଠିବାକୁ ପଡ଼ିଲା; କାରଣ ବେଲଜିଅମ୍ ରାଜଧାନୀ ବ୍ରସେଲ୍ସରେ ବୁଲିବା ପାଇଁ ମାତ୍ର ଗୋଟିଏ ଓଳି ସମୟ। ବ୍ରସେଲ୍ସରୁ କୋଚ୍‌ରେ ଆମଷ୍ଟରଡାମ୍ ଏବଂ ସେଠାରୁ ପ୍ଲେନ୍‌ରେ ଦିଲ୍ଲୀଯାତ୍ରା। ସବୁ ଯେପରି କଳକବ୍ଜା ଭଳି ଆଗରୁ ନିର୍ଦ୍ଧାରିତ। ଜଣେ ଚାହିଲେ ମଧ ତାକୁ ବଦଳାଇବାର ସୁଯୋଗ ନଥିଲା। ବହୁ ଜାଗା ଦେଖିବାକୁ ମନ ଥିଲେ ବି ସମୟ କମ୍ ଥିବାରୁ ସେସବୁ ସମ୍ଭବ ହେଲା ନାହିଁ। ସବୁବେଳେ ବିକ୍ରମବାବୁ ତାଗିଦ୍ କରୁଥିଲେ, "ଯିଏ ଯୁଆଡ଼େ ବୁଲ, ଯିବା ସମୟ ପୂର୍ବରୁ ଆସି ପହଞ୍ଚିବା ଦରକାର।" ସେଥିପାଇଁ ସମସ୍ତେ ଏକତ୍ର ଦଳବଳରେ ନଯାଇ ଚାରି ପାଞ୍ଚଜଣିଆ ଗ୍ରୁପ୍ କରିନେଲୁ। ଆମଭିତରୁ କିଛି ବନ୍ଧୁ ରହିଗଲେ ହୋଟେଲ ଭିତରେ।



ପ୍ରାଗ୍‌ର ବିଶ୍ୱବିଖ୍ୟାତ ଅଷ୍ଟ୍ରୋନୋମୀ କ୍ଲକ୍



ପ୍ରାଗ୍‌ର ପୁରୁଣା ରାଜପ୍ରାସାଦ



କ୍ରାକୋ (ପୋଲାଣ୍ଡ)ସ୍ଥିତ ପୂର୍ବତନ ପୋପ୍ ଜନ୍ ପୋଲ୍-୨ଙ୍କ ଜନ୍ମସ୍ଥାନ



କ୍ରାକୋ ନଗରୀର ଏକ ପର୍ଯ୍ୟଟନସ୍ଥଳୀ




ବର୍ଲିନ୍ ସହରରେ ମହିଳା ଟ୍ୟାକ୍ସି ଡ୍ରାଇଭରଙ୍କ ସହିତ



ବର୍ଲିନ ସହରର ବ୍ରାଣ୍ଡେନ୍‌ବର୍ଗ ଗେଟ୍ ସମ୍ମୁଖରେ



ଐତିହାସିକ ବର୍ଲିନ୍‌ପ୍ରାଚୀର ସମ୍ମୁଖରେ



ବର୍ଲିନ୍‌ର ଫ୍ରି ୟୁନିଭର୍‌ସିଟି



ଜର୍ମାନୀର ଡୁସେଲଡର୍ଫ ମାର୍କେଟ୍‌ରେ ଜଣେ ସେଲସ୍‌ମ୍ୟାନ୍‌ଙ୍କ ସହିତ



ରୋପ୍ ୱେରେ ଡଃ ରାଜେନ୍ଦ୍ର ନାରାୟଣଙ୍କ ସହିତ ଯାତ୍ରା



ବର୍ଲିନ୍‌ସ୍ଥିତ ଜର୍ମାନୀର ଅଗ୍ରଣୀ ଗଣମାଧ୍ୟମ ସଂସ୍ଥା ଆଲେକ୍‌ସ୍ପିଙ୍ଗର୍‌ର ପ୍ରବେଶଦ୍ୱାରରେ



ବର୍ଲିନ୍ ସହରରେ ଡଃ ରାଜେନ୍ଦ୍ର ନାରାୟଣ ଦାସଙ୍କ ସହିତ ମାକ୍‌ଡୋନାଲ୍ଡ ରେଷ୍ଟୁରାଣ୍ଟ୍‌ରେ




ଜର୍ମାନୀର ଇସ୍‌ପାତନଗର (ଏସେନ୍)ରେ ଥିବା ଇସ୍ପାତସମ୍ରାଟ୍
ଫ୍ରେଡ୍‌ରିକ୍ ଆଲ୍‌ଫ୍ରେଡ୍‌ଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ



ଜର୍ମାନୀର ବିଶ୍ୱପ୍ରସିଦ୍ଧ ରାଇନ୍ ନଦୀକୂଳରେ


ନଏସ୍‌ରେ ଡଃ ରାଜେନ୍ଦ୍ର ନାରାୟଣ ଦାସଙ୍କ ବାସଭବନ ସାମ୍ନାରେ


ଡଃ ରାଜେନ୍ଦ୍ରନାରାୟଣ ଦାସ ଓ ତାଙ୍କ ପତ୍ନୀ ଶ୍ରୀମତୀ ଇତିଶ୍ରୀ ଦାସଙ୍କ ସହିତ ନୈଶଭୋଜନ

ଟ୍ୟାକ୍ସିରେ ପଇସା ଖର୍ଚ୍ଚ କରି ସହର ବୁଲିବା ଅପେକ୍ଷା ଶୀତତାପ ନିୟନ୍ତ୍ରିତ ହୋଟେଲରେ ବସି ବିଲାତି ସୁରାପାନ ସେମାନଙ୍କ ପାଇଁ ଅଧିକ ଆକର୍ଷଣ ଥିଲା।

## ବ୍ରସେଲ୍ସ ସହର ବୁଲା

ସମୟର ସ୍ୱଳ୍ପତା ଦୃଷ୍ଟିରୁ ଆମେ ଚାରିଜଣ ଗୋଟିଏ ଟ୍ୟାକ୍ସି ଧରିଲୁ। ଟ୍ୟାକ୍ସି ଡ୍ରାଇଭର୍ ଇଂରାଜୀ କହି ନପାରୁଥିଲେ ମଧ୍ୟ ଠାରଠୁରରେ ଆମ ଭାବ ବୁଝିବାରେ ତାଙ୍କର କିନ୍ତୁ ଅସୁବିଧା ନଥିଲା। ଆମେ କୌଣସିମତେ ତାଙ୍କୁ ବୁଝାଇଦେଲୁ ଯେ, ଆମର ସମୟ କମ୍ ଏବଂ ଆମକୁ ବ୍ରସେଲ୍ସର ଦର୍ଶନୀୟ ସ୍ଥାନ ଦେଖିବାକୁ ହେବ। ଏହା ବଦଳରେ ସେ ଯାହା ପ୍ରାପ୍ୟ ଚାହିବେ ଆମେ ଦେବାକୁ ପ୍ରସ୍ତୁତ। ଆମ ଭାଗ୍ୟକୁ ଟ୍ୟାକ୍ସି ଡ୍ରାଇଭର୍ ଜଣେ ଭଦ୍ର ପ୍ରକୃତିର ଲୋକ ଥିଲେ।।

କଲିକତା କିମ୍ବା ଦିଲ୍ଲୀ ସହରର ଡ୍ରାଇଭରଙ୍କ ଭଳି ନୁହେଁ। ସେଠାରେ ଟ୍ୟାକ୍ସି ଡ୍ରାଇଭର୍‌ମାନେ ଭାଷାଗତ ଉଚ୍ଚାରଣ ଟିକିଏ ପ୍ରଭେଦ ଦେଖିଲେ ଗଳା କାଟିବାକୁ ପଛାନ୍ତି ନାହିଁ। ସମୟ କମ୍ ଥିବାରୁ ଆମେ  କୌଣସି କଥା ନଭାବି ଏକପ୍ରକାର ସରେଣ୍ଡର୍ କଲାଭଳି ଗାଡ଼ିରେ ବସି ରହିଲୁ। ସହରବଜାର, ରାସ୍ତାଘାଟ ସବୁ ନୂଆ, ନୂଆ ଲୋକ, ନୂଆ ଭାଷା। ବିଦେଶରେ ପ୍ରାୟ ଦେଢ଼ମାସ ବୁଲିଲା ପରେ ବି ଆମ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇନଥିଲା। ମନ ଭିତରେ ବିଗତ ଦିନମାନଙ୍କର ସ୍ମୃତି ଓ ଅଭିଜ୍ଞତା ଉଙ୍କିମାରୁଥିଲା। ଅଳ୍ପଦିନ ହେଲେ ବି ପୃଥିବୀର ବଡ଼ବଡ଼ ସହରଗୁଡ଼ିକ ଦେଖିବାର ସୁଯୋଗ ମିଳିଥିବାରୁ ଖୁସି ଲାଗୁଥିଲା। ମନରେ କେତେ ଭାବନା ଆଉ ଚାରି ପାଞ୍ଚଦିନ ପରେ ପୁଣି ସେହି ଗତାନୁଗତିକ ଜୀବନ ଆରମ୍ଭ ହୋଇଯିବ। ତେଲଲୁଣର ସଂସାର; ସକାଳୁ ଉଠି ବଜାରକୁ ଯାଇ ପରିବା କିଣା, ସନ୍ଧ୍ୟାରେ ସାମ୍ବାଦିକ ସମ୍ମିଳନୀ ବା ସଭାସମିତି, ଦିନରେ ବିଭିନ୍ନ ଦପ୍ତରକୁ ଯାଇ ଖବର ସଂଗ୍ରହ ଇତ୍ୟାଦି ଇତ୍ୟାଦି।

ହଠାତ୍ ଟ୍ୟାକ୍ସିର ବ୍ରେକ୍‌ରେ ଭାବନାର ସୂତାଖିଅ ଅଡୁଆ ହୋଇଗଲା। ଡ୍ରାଇଭର ଅତି ନମ୍ରତାର ସହିତ କହିଲା, "ସାର୍! ଆପଣମାନେ ଯେଉଁଠାକୁ ଆସିଛନ୍ତି, ତାହା ହେଉଛି 'କମ୍ୟୁନିଟି ମ୍ୟୁଜିଅମ୍'। ଏଠାରେ ଆପଣ ବେଲଜିଅମ୍‌ର ଇତିହାସ, କଳା ଓ ସଂସ୍କୃତିର ପରିଚୟ ପାଇପାରିବେ। ଡ୍ରାଇଭରଙ୍କ କଥାରୁ ତାଙ୍କର ଦେଶପ୍ରୀତି ସମ୍ପର୍କରେ ସୂଚନା ମିଳୁଥିଲା। ଅନ୍ତତଃ ନିଜ ଦେଶର କଳା, ସଂସ୍କୃତି ସମ୍ପର୍କରେ ଅନ୍ୟକୁ ପରିଚିତ କରାଇବା ପାଇଁ ଡ୍ରାଇଭରଙ୍କର ଆଗ୍ରହକୁ ଧନ୍ୟବାଦ ନଦେଇ ରହିହେଲା ନାହିଁ। ଏହି ଅବସରରେ ଅତୀତର ଗୋଟିଏ ଅନୁଭୂତି ମୋର ମାନସପଟରେ ଉଭାସିତ ହେବାକୁ ଲାଗିଲା।

ବୋଧହୁଏ ୧୯୭୮ ମସିହା ଡିସେମ୍ବର ମାସର ଏକ ଘୁମନ୍ତ ଅପରାହ୍ନ। ଆମେ ଆଗ୍ରାରୁ ଦିଲ୍ଲୀ ଫେରୁଥିଲୁ। ବାଟରେ ଜଣେ ବନ୍ଧୁ ପ୍ରସ୍ତାବ ଦେଲେ, ଶ୍ରୀକୃଷ୍ଣଙ୍କ ଜନ୍ମସ୍ଥାନ 'ମଥୁରା' ଦେଇ ଯିବାକୁ। ଆଗ୍ରାରୁ ଦିଲ୍ଲୀ ଫେରିବା ବାଟରେ ମଥୁରା ପଡ଼େ। କିନ୍ତୁ କୃଷ୍ଣ ଜନ୍ମସ୍ଥାନକୁ ଯିବାକୁ ହେଲେ ପ୍ରଧାନ ରାସ୍ତାରୁ ଭାଙ୍ଗି ଅଳ୍ପବାଟ ଯିବା ଆବଶ୍ୟକ ହୁଏ। ଆମ ଟ୍ୟାକ୍ସି ଡ୍ରାଇଭର୍ ଦିଲ୍ଲୀ ବାସିନ୍ଦା। ଲୋକଙ୍କ ସେବା କରିବା ଅପେକ୍ଷା ସେମାନଙ୍କୁ ଶୋଷଣ କରିବା ବୋଧେ ସେମାନଙ୍କର ଏକ ଅଭ୍ୟାସଗତ କାର୍ଯ୍ୟ। ଆମ କଥା ଶୁଣି ଜବାବ ଦେଲା, "ଉଧର୍ କ୍ୟା ଦେଖ୍‌ନେ କୋ ହୈ? ସାରେ ଜାଗା ମସ୍‌ଜିଦ୍ ବନଗୟା, କ୍ୟା ଦେଖ୍‌ନେ ଯାଏଙ୍ଗେ? ହମ୍‌ଲୋଗୋଁ କୋ କାଫି ଦୂର୍ ଜାନା ହୈ।" ଆମ ସାଙ୍ଗରେ ଥିବା ଦିଲ୍ଲୀରେ ବସବାସ କରୁଥିବା ଜଣେ ବନ୍ଧୁଙ୍କ ପରାମର୍ଶ କ୍ରମେ ଡ୍ରାଇଭର୍‌କୁ କିଛି ହାତଗୁଞ୍ଜା ଦେବାରୁ ସେ ଆମ ପ୍ରସ୍ତାବରେ ରାଜି ହେଲା ଓ ଆମେସବୁ ମଥୁରା ଦେଖିଲୁ। ଏହା ଭିତରେ କେତେବେଳେ ଆସି ଆମେ ମ୍ୟୁଜିଅମ୍‌ରେ ପହଞ୍ଚିଯାଇଥିଲୁ ସେକଥା ଜାଣିହେଲାନି। ମୋର ରୁମ୍ ସାଥୀ ଘନଶ୍ୟାମ ଭାଇ ମତେ ହଲାଇଦେଇ "କ୍ୟା ଦାସ୍ ସାହବ, ଆପ୍ କ୍ୟା ସୋଚ୍ ରହେ ହୈଁ, କ୍ୟା ଆପ୍‌କୋ ଘର୍ କି ବାତ୍ ଯାଦ ଆତି ହୈ" ବୋଲି ପଚାରିବାରୁ ମୁଁ ଭାବନା ରାଜ୍ୟରୁ ଫେରିଆସିଲି। ମ୍ୟୁଜିଅମ୍‌ଟି ଅତ୍ୟନ୍ତ ସୁନ୍ଦର। ସେଠାରେ ବେଲ୍‌ଜିଅମର ଇତିହାସକୁ ସୁନ୍ଦର ଭାବରେ ରୂପାୟିତ କରାଯାଇ ସଂରକ୍ଷିତ କରାଯାଇଥିଲା।

ପରେ ପରେ ବ୍ରସେଲ୍‌ସର ବଟାନିକାଲ୍ ଗାର୍ଡେନ୍, ଷ୍ଟକ୍ ଏକ୍ସଚେଞ୍ଜ୍ ବିଲଡିଂ, ବେଲ୍‌ଜିଅମ୍ ରାଜପ୍ରାସାଦ, ରୟାଲ୍ ମ୍ୟୁଜିଅମ୍ ଅଫ୍ ଫାଇନ୍ ଆର୍ଟସ୍, ଗ୍ରାଣ୍ଡ୍ ପ୍ଲେସ୍ ଆଦି ବହୁ ଦର୍ଶନୀୟ ସ୍ଥାନ ଦେଖି ଶୀଘ୍ର ହୋଟେଲକୁ ଫେରିବାକୁ ପଡ଼ିଲା। ସେତେବେଳକୁ ଅଧିକାଂଶ ବନ୍ଧୁ ଫେରି ଆସିଥିଲେ। ହୋଟେଲ ରୁମ୍ ମଧ୍ୟରେ ଯେଉଁ ବନ୍ଧୁମାନେ ବିଦେଶୀ ମଦିରାରେ ମସ୍‌ଗୁଲ୍ ଥିଲେ, ସେମାନଙ୍କର ମନ ଖୁବ୍ ହାଲୁକା ଥିଲା। ଅନ୍ୟମାନଙ୍କ ଉଦ୍ଦେଶ୍ୟରେ ଲଘୁ ମନ୍ତବ୍ୟମାନ ଦେଇ ସେମାନେ ଖୁବ୍ ଉପଭୋଗ କରୁଥିଲେ। ଅନ୍ୟ କାହାରି କାହାରି ନିଶା ଟିକେ ବଢ଼ିଯାଇଥିବାରୁ ସେମାନେ ଗୁମ୍ ମାରି ବସିଥିଲେ ଏକ ଅନିଶ୍ଚିତ ଭବିଷ୍ୟତର ପ୍ରତୀକ୍ଷାରେ।

ଖିଆପିଆ ପର୍ବ ଶେଷ ହେଲାବେଳକୁ ଏୟାର୍‌କଣ୍ଡିସନ୍ କୋଚ୍‌ଟି ହୋଟେଲର ପୋର୍ଟିକୋରେ ଲାଗିସାରିଥିଲା। ନିଜନିଜର ଆଟାଚିଟିମାନ ଧରି ଆମେ ବାହାରିଆସିଲୁ କୋଚ୍‌କୁ, ପୂର୍ବଭଳି କେହି କାହାକୁ ଅନୁରୋଧ କରିବାକୁ ପଡ଼ିଲା ନାହିଁ। ସମସ୍ତଙ୍କ ମୁହଁରେ ଏକପ୍ରକାର ପରିତୃପ୍ତିର ଆଭାସ। ଘରବାହୁଡ଼ା ପାଇଁ ମନରେ ଅତ୍ୟଧିକ ଆଗ୍ରହ, ଅଥଚ କେହି ସେକଥା ପ୍ରକାଶ କରିବାକୁ ନାରାଜ। ଯାହାହେଉ, ହୋଟେଲ ବୟମାନଙ୍କୁ ଟିପ୍ସ୍ ଦେଇ ଆମେ କୋଚ୍‌ରେ ବସିଲୁ। ଏହା ବୋଧେ ଆମ ବିଦେଶଗସ୍ତର ଶେଷଯାତ୍ରା ଥିଲା।

ଗାଡ଼ିର ବେଗ ବଢ଼ିବା ସଙ୍ଗେସଙ୍ଗେ ମନରେ ଉତ୍କଣ୍ଠା କ୍ରମେ ବୃଦ୍ଧି ପାଉଥିଲା। ବାଟରେ ଆସିଲାବେଳେ ସଭାପତି ବସ୍‌ଭିତରେ ସମସ୍ତଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଚାହିଲେ; କାରଣ ଆମଭିତରେ ଛଅଜଣ ଚେକୋସ୍ଲୋଭାକିଆ ରାଜଧାନୀ 'ପ୍ରାଗ୍' ଇତ୍ୟାଦିକୁ ଯିବା କାର୍ଯ୍ୟକ୍ରମ ଥିଲା। ସେମାନଙ୍କ ସାଙ୍ଗେ ଆଉ ଦେଖା ହେବନାହିଁ। ସଭାପତି ପ୍ରଥମେ ପ୍ରସଙ୍ଗ ଆରମ୍ଭ କଲେ। ତାଙ୍କ କଣ୍ଠରେ ଭାବପ୍ରବଣତାର ପରିପ୍ରକାଶ। ବିଦେଶ ଗସ୍ତ କାଳରେ ଯଦିବା କାହାକୁ ରାଗିକରି କିଛି କହି ମନରେ ବ୍ୟଥା ଦେଇଥିବେ, ସେଥିପାଇଁ ସେ ସମସ୍ତଙ୍କଠାରୁ ପ୍ରକାରାନ୍ତରେ କ୍ଷମା ଚାହୁଁଥିଲେ, ଏଥିରେ ଅନ୍ୟମାନଙ୍କ ହୃଦୟର ଆବେଗ ଭାଷାରେ ଫୁଟିଲା। ଘଟଣାକ୍ରମେ ସମସ୍ତେ ନିଜ ନିଜର ଅନୁଭୂତି ଓ ମନର ଭାବନା ପ୍ରକାଶ କଲେ। ମନଖୋଲା କଥା। କାହାରି ପ୍ରତି କାହାରି ବିଦ୍ୱେଷ ବା ଭୁଲ୍ ବୁଝାମଣାର ପ୍ରଶ୍ନ ନଥିଲା। ସତେଯେପରି ଗୋଟିଏ ପରିବାରର ଲୋକେ ଖାଇବା ଜାଗାରେ ବସି ନିଜ ଭିତରେ କଥାବାର୍ତ୍ତା ହେଉଥିଲେ। ବାସ୍ତବରେ ବିକ୍ରମରାଓଙ୍କ ନେତୃତ୍ୱ ପ୍ରତି ମନରେ ଗର୍ବ ଆସିଲା। ତାଙ୍କରି ଯୋଗୁଁ ଆଜିର ଏ ସଫଳତା। ସେ କେବଳ ସବୁ ସାଫଲ୍ୟର ଅଧିକାରୀ।

## କୋଚ୍ ଭିତରେ ଆଞ୍ଚଳିକ ସଙ୍ଗୀତ

ଦୀର୍ଘ ଦେଢ଼ମାସ କାଳ ଦଶଟି ରାଜ୍ୟରୁ ଆସିଥିବା ଏକାଧିକ ଭାଷାଭାଷୀ ୨୪ଜଣ ସାମ୍ବାଦିକଙ୍କୁ ଏକାଠି କରି ଚଳାଇବା ଯେ କିଭଳି କଠିନ ବ୍ୟାପାର, ସେକଥା ସାଧାରଣ ଲୋକେ ସହଜେ ବୁଝି ପାରିବେ ନାହିଁ। ବେଙ୍ଗମାନଙ୍କର ଗୋଡ଼ ନବାନ୍ଧି ସେମାନଙ୍କୁ ଓଜନ କରିବାର ପ୍ରୟାସ କରିବା ଯାହା, କିଛି ସାମ୍ବାଦିକଙ୍କୁ ଏକାଠି କରି ଚଳାଇବା ଅନୁଭୂତି ମଧ୍ୟ ସେଇଆ। କୋଚ୍ ଭିତରେ ସମସ୍ତେ ଗମ୍ଭୀର ହୋଇ ବସିଥିଲେ। ମନକୁ ହାଲୁକା କରିବା ପାଇଁ ପରେ ସ୍ଥିର ହେଲା ଯେ, ସମସ୍ତେ ନିଜ ପସନ୍ଦ ମୁତାବକ ଗୋଟିଏ ଗୋଟିଏ ଗୀତ ଗାଇବେ। ଯିଏ ଯାହା ଜାଣିଛି। ପ୍ରଥମେ କିଏ ଆରମ୍ଭ କରିବେ ସେ ନେଇ କିଛି ସମୟ ବାଦ ବିବାଦ ଚାଲିଲା। ଶେଷରେ ନିଷ୍ପତ୍ତି ହେଲା, ନିଜନିଜ ରାଜ୍ୟର ପ୍ରଥମ ଅକ୍ଷର ଅନୁସାରେ କ୍ରମାନ୍ୱୟରେ ଗୀତ ଆରମ୍ଭ ହେବ। ଯାହାହେଉ ମୁଁ ଟିକିଏ ଆଶ୍ୱସ୍ତ ହେଲି ଯେ, ଇଂରାଜୀ ଅକ୍ଷର 'ଓ' ଆରମ୍ଭ ହେଲାବେଳକୁ ଅନ୍ତତଃ ପାଞ୍ଚ ଛଅଟି ରାଜ୍ୟର ପାଳି ପଡ଼ିସାରିଥିବ। ସେତେବେଳକୁ ଭାଷାଗତ ଅସୁବିଧା ଯୋଗୁଁ ଆଉ କାହାରି ସଙ୍ଗୀତ ଶୁଣିବାକୁ ଆଗ୍ରହ ନଥିବ। କିନ୍ତୁ ବାସ୍ତବ କ୍ଷେତ୍ରରେ ଫଳ ଓଲଟା ହେଲା। ଭାଷା ଦୁର୍ବୋଧ ହେଲେ ବି ରାଗ ଓ ତାଳ ଯୋଗୁଁ ଗୀତର ମୂଳ ମର୍ମକୁ ସମସ୍ତେ ଅନୁଭବ କରିପାରୁଥିଲେ। ମୋ ପାଳି ପଡ଼ିବା ପୂର୍ବରୁ ମନରେ ଏକ ଅହେତୁକ ଆଶଙ୍କା ଜାତ ହେଲା; କାରଣ ଗୀତର ମୁଁ ଧାର ଧାରେ ନାହିଁ। ତା'ପରେ ପୁଣି ବହୁ ଭାଷାଭାଷୀଙ୍କ ଆଗରେ ସ୍ୱରରେ ବୋଲିବାକୁ ହେବ। କ'ଣ ବା ବୋଲିବି, ଯାହାର ମର୍ମ ଅନ୍ତତଃ

ଅନ୍ୟମାନେ ଠଉରେଇ ନେଇପାରିବେ। ଭାବିଭାବି ସ୍ଥିରକଲି କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ରଚନାରୁ ପଦେ ବୋଲିଲେ ବୋଧେ ପ୍ରାସଙ୍ଗିକ ହେବ; କାରଣ ଗୀତ ସହିତ ତାର ମର୍ମାନୁବାଦ ମଧ୍ୟ ଇଂରାଜୀରେ କରିବାକୁ ସହଜ ହେବ। ଏପରି ଗୋଟିଏ ଅନୁବାଦ ହେବା ଆବଶ୍ୟକ ଯାହାକି ଅନ୍ୟମାନଙ୍କ ହୃଦୟକୁ ସ୍ପର୍ଶ କରିବ। ଶେଷରେ ମନକୁ ଆସିଲା ବୈଦେହୀଶ ବିଳାସରୁ ଗୋଟିଏ ଛାନ୍ଦ-

"ଯେତେଦୂରେ ପତ୍ର ପଡ଼ିଥିଲେ ରେ ନବୀନା,
ଚିହ୍ନି କି ହୁଅଇ ତାକୁ ବୃକ୍ଷ ନାମ ବିନା,
ସଖୀ ତେମନ୍ତେ ମୁଁ ତୋର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର...।
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ,
ପ୍ରୀତି ଅଭେଦ ତାଙ୍କର,
ଯେତେଦୂରେ ଥିଲେ ଯେ ଯାହାର ସେ ତାହାର...।"

ପିଲାଦିନେ କଟକରେ ଭଞ୍ଜ ଜୟନ୍ତୀ ଦେଖିବାକୁ ଗଲାବେଳେ ବୁଢ଼ାନ୍‌ନା (ଶ୍ରୀଯୁକ୍ତ ରଜତ କୁମାର କର) ଏହି ଛାନ୍ଦ ବୋଲି ତା'ର ବ୍ୟାଖ୍ୟା କଲାବେଳେ ଲୋକେ କିଭଳି ବିମୁଗ୍ଧ ହୋଇଯାଉଥିଲେ ସେକଥା ମନେପଡ଼ିଗଲା। ପୁଣି ଭାବିଲି, କାହିଁ ରଜତ କର ଓ କାହିଁ ମୁଁ। କାହିଁ ଅଯୋଧ୍ୟା ନରେଶ ରାମଚନ୍ଦ୍ର ଓ କାହିଁ ରାମା ଭଣ୍ଡାରୀ। କିନ୍ତୁ କ'ଣ କରାଯିବ, ଗୀତଟିଏ ତ ବୋଲିବାକୁ ହେବ। ଅନ୍ୟମାନେ ସେମାନଙ୍କର କର୍ତ୍ତବ୍ୟ ତୁଲାଇସାରିଲେଣି। ଶେଷକୁ ଆଉ କିଛି ନଭାବି ଏହି ଛାନ୍ଦକୁ ବୋଲିଲି। ମୋର ସ୍ପଷ୍ଟ ମନେ ଅଛି, ଏହି ଛାନ୍ଦଟି ବୋଲିଲାବେଳେ ଅନେକ ବନ୍ଧୁ ଭାବବିହ୍ୱଳ ହୋଇପଡ଼ିଲେ। ଛାନ୍ଦର ମର୍ମକୁ ଠିକ୍‌ଭାବରେ ଧରିପାରି ନଥିଲେ ବି ଏହାର ଇଂରାଜୀ ମର୍ମାନୁବାଦ ଅନ୍ୟ ବନ୍ଧୁମାନଙ୍କ ହୃଦୟକୁ ଛୁଇଁ କ୍ଷଣକ ପାଇଁ କୋଚ୍‌ରେ ସବୁ କୋଳାହଳ ବନ୍ଦ୍ ହୋଇ ଯାଇଥିଲା। ପ୍ରଣୟୀ ପ୍ରଣୟିନୀର ଭାବର ଆଦାନପ୍ରଦାନର ବ୍ୟାଖ୍ୟା ସମସ୍ତଙ୍କ ମନରେ ଶୃଙ୍ଗାର ରସର ଉଦ୍ରେକ କରିଥିଲା। ବାହାରେ ପ୍ରକାଶ ନକଲେ ମଧ୍ୟ ଅନେକ ବନ୍ଧୁ ଭାବବିହ୍ୱଳିତ ହୋଇପଡ଼ିଥିବାର ଦୃଶ୍ୟ ମୋର ଏବେ ବି ମନେ ପଡୁଛି। କ୍ରମାନ୍ୱୟରେ ୱେଷ୍ଟ୍‌ବେଙ୍ଗଲ୍‌ରୁ ତାମିଲ୍‌ନାଡୁ ପରେ ସଙ୍ଗୀତ ଗାନ ପର୍ବ ପ୍ରାୟ ଶେଷ ହୋଇଯାଥିଲା। ପରେ ବୁଝିଲି, ସଙ୍ଗୀତ ଗାନ କରି ଅନ୍ୟର ମନୋରଞ୍ଜନ କରିବା ଅପେକ୍ଷା ଏହା ମାଧ୍ୟମରେ ପରସ୍ପର ନିକଟରେ ନିଜର ଭାବ ନିବିଡ଼ ଭାବରେ ପ୍ରକାଶ କରିବା ଓ ନିଜ ମନରୁ ସଂକୋଚ ଦୂର କରିବା ଉଦ୍ଦେଶ୍ୟରେ ସଭାପତି ଶ୍ରୀଯୁକ୍ତ ରାଓ ଏହି ଆସରର ବରାଦ କରିଥିଲେ।

ରାଓ ସାହେବ ଜଣେ ସ୍ଥିତପ୍ରଜ୍ଞ ଲୋକ। ଆନନ୍ଦରେ ବିହ୍ୱଳ ହେବା କିମ୍ବା ଦୁଃଖରେ ଭାଙ୍ଗିପଡ଼ିବା ତାଙ୍କ ଜାତକରେ ନାହିଁ। ଯେକୌଣସି ପରିସ୍ଥିତିର ମୁକାବିଲା କରି ଆଗକୁ ବଢ଼ିବା ତାଙ୍କ ଚରିତ୍ରର ମୂଳଲକ୍ଷ୍ୟ। ଆମ କୋଚ୍‌ଟି ଆସି ଆମ୍‌ଷ୍ଟର୍‌ଡାମ ସହର ଆଖପାଖରେ ପହଞ୍ଚିଗଲା। ଆଉ ଅଳ୍ପ ସମୟ ପରେ ଆମେ ବିମାନବନ୍ଦରରେ ପହଞ୍ଚିଯିବୁ। ତା ପରେ ଆରମ୍ଭ ହୋଇଯିବ ଗତାନୁଗତିକ କାର୍ଯ୍ୟ। ବାରଘଣ୍ଟା ପରେ ଦିଲ୍ଲୀ ମାଟିରେ ଗୋଡ଼ ଦେଲାମାତ୍ରେ ଯେଉଁମାନଙ୍କୁ ଏତେ ନିକଟରେ ଦେଖୁଥିଲୁ, ଯେଉଁମାନଙ୍କୁ ନେଇ ଗତ ଦେଢ଼ମାସର ଜୀବନ ବିତେଇଥିଲୁ, ସେମାନେ ଦୂରେଇଯିବେ। ନିଜର ପରିବାର, ସାଙ୍ଗସାଥୀ, ନିଜ ଭାଷାଭାଷୀ ସ୍ୱାଭାବିକ ରୀତିରେ ପାଖେଇଆସିବେ। ଏହା ହିଁ ସୃଷ୍ଟିର ନିୟମ। ନିଜ ଘରକୁ ଫେରିବାର ସ୍ୱପ୍ନ ଅଧିକ ସୁଖପ୍ରଦ ହେଲେ ବି ଦୀର୍ଘ ଦେଢ଼ମାସର ବନ୍ଧୁମାନଙ୍କଠାରୁ ବିଦାୟ ନେବାର ଭାବନା କେଜାଣି କାହିଁକି ମନକୁ ବିଷଣ୍ଣ କରିଦେଲା। କିଏ କେଉଁଠୁ ଆସିଥିଲେ। କାହା ଘର କେଉଁଠି, କିଏ କେଉଁ ଜାତିର ଲୋକ, ଏକଥା କାହାରି ମନରେ ଉଠିନଥିଲା। ସମସ୍ତେ ଗୋଟିଏ ପରିବାରର ଲୋକ ଭଳି ପରସ୍ପରର ମନ ନେଇ ଚଳୁଥିଲେ । ଯେଉଁ ଲୋକ ପ୍ରଥମେ ପାଲାମ ବିମାନବନ୍ଦରରେ ନୂଆ ଓ ଅଚିହ୍ନା ଲାଗୁଥିଲେ ଘଟଣାକ୍ରମେ ସେ ଆପଣାର ହୋଇଗଲେ। ଆତ୍ମୀୟସ୍ୱଜନଙ୍କଠାରୁ ଦୂରେଇ ରହିବା ଯୋଗୁଁ ହେଉ କିମ୍ବା ବିଦେଶୀ ରାଷ୍ଟ୍ରରେ ଚଳିବା ଯୋଗୁଁ ହେଉ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ମଧ୍ୟରେ ଏତେଦୂର ଆତ୍ମୀୟତା ମୁଁ ଅନ୍ୟତ୍ର ଉପଲବ୍ଧି କରି ପାରିନଥିଲି। ଆମ କୋଚ୍‌ଟି ଆସି ଅମ୍‌ଷ୍ଟର୍‌ଡାମ୍ ବିମାନବନ୍ଦର ପୋର୍ଟିକୋରେ ବ୍ରେକ୍ ମାରିବାରେ ମୋର ଭାବନା ଛିନ୍ନ ହେଲା। କୋଚ୍‌ରୁ ଓହ୍ଲାଇ ଜିନିଷପତ୍ର କାଢ଼ିବା ପାଇଁ ମୁଁ ନିଜକୁ ପ୍ରସ୍ତୁତ କରିନେଲି।

# ପ୍ରଥମ ବିଦେଶ ଗସ୍ତର ଶେଷ ସୋପାନ

ମସ୍କୋରୁ ଆସି ଆମଷ୍ଟରଡାମ୍ ବିମାନବନ୍ଦରରେ ଓହ୍ଲାଇଥିଲାବେଳେ ବିମାନବନ୍ଦରର ଆଭ୍ୟନ୍ତରୀଣ ବ୍ୟବସ୍ଥା ଅନୁଧ୍ୟାନ କରିବା ପାଇଁ ଆମ ପାଖରେ ସମୟ ଓ ସୁଯୋଗ କମ୍ ଥିଲା। ତା'ଛଡ଼ା ମନ ମଧ୍ୟ ବ୍ୟଗ୍ର ଥିଲା – କିପରି କମ୍ ସମୟ ମଧ୍ୟରେ ଅଧିକ ସ୍ଥାନ ଦେଖିବା, ଅଧିକ କଥା ଜାଣିବା। କିନ୍ତୁ ଫେରିଲାବେଳକୁ ଆମ ହାତରେ ଚାରିଘଣ୍ଟା ସମୟ ଥିଲା। ପ୍ରଥମେ କୋଚ୍‌ରୁ ଜିନିଷପତ୍ର ବାହାର କଲାପରେ ତନଖି ଚାଲିଲା; କାରଣ କୋଚ୍‌ରେ ଲଗେଜ୍ ଚଢ଼ାଇଲାବେଳେ କିମ୍ବା ଓହ୍ଲାଇଲାବେଳେ ବାଛବିଚାର ନକରି ଯିଏ ଯାହା ପାଆନ୍ତି ଚଢ଼ାଇଦେଉଥିଲେ, ସେ ସେହିପରି ଓହ୍ଲାଉଥିଲେ। ମସ୍କୋରୁ ଯାଇ

ଆମଷ୍ଟରଡାମ୍‌ରେ ପ୍ରଥମେ ଓହ୍ଲାଇଲାବେଳେ ଆମ ପାଖରେ ଯେତିକି ଲଗେଜ୍ ଥିଲା, ଏଥର ଆସିଲାବେଳେକୁ ଉଣାଅଧିକେ ସମସ୍ତଙ୍କର କିଛି ନା କିଛି ବଢ଼ିଯାଇଥିଲା; ହେଲେ ବିମାନରେ ତ ପ୍ରତି ଟିକେଟ ପିଛା ମାତ୍ର କୋଡ଼ିଏ କେ.ଜି. ଲଗେଜ୍ ଛାଡ଼, ତା'ପରେ ଯାହା ଅଧିକ ହେବ ତା' ଉପରେ ଟିକେଟ୍ ପଡ଼ିବ। ଆମ ଭିତରୁ ଉତ୍ତରପ୍ରଦେଶ ଓ କର୍ଣ୍ଣାଟକର ବନ୍ଧୁମାନେ ଅଧିକ ପରିମାଣରେ ଲଗେଜ୍ ସବୁ କିଣାକିଣି କରିଥିଲେ। ସେମାନଙ୍କ ବ୍ୟକ୍ତିଗତ ଉଦ୍ୟମ ଛଡ଼ା ବିଦେଶ ଗସ୍ତ ପାଇଁ ଉଭୟ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ସେମାନଙ୍କର ଯାତ୍ରା ଖର୍ଚ୍ଚ ବାବଦ ଅର୍ଥ ସାହାଯ୍ୟ ଆକାରରେ ଦେଇଥିଲେ। ସେମାନଙ୍କର ଟଙ୍କାର ଅଭାବ ନଥିଲା। ଆମ ରାଜ୍ୟରେ ସେକଥା ସ୍ୱପ୍ନ। ବ୍ୟକ୍ତିଗତ ଟଙ୍କାରେ ଯାଇଥିବା ମୋ'ଭଳି ଅନେକ ଜିନିଷ କିଣିବା ଅପେକ୍ଷା କେବଳ ଦେଖିବା ସାର ହେଲା। ପ୍ରଥମେ ଲଗେଜ୍‌ସବୁ ଓଜନ ହେବା ପରେ ଦେଖାଗଲା ଯେ, ଆବଶ୍ୟକ ଓଜନଠାରୁ ଆମର ପ୍ରାୟ ୮୦ କେ.ଜି ଅଧିକ ଓଜନର ଲଗେଜ୍ ଥିଲା। ଆମ୍ଭମାନଙ୍କ ମଧ୍ୟରେ ଏକ ମୃଦୁ ଗୁଞ୍ଜରଣ ସୃଷ୍ଟି ହେଲା। ଯିଏ ଯାହା ଆଣିଛନ୍ତି କିପରି ସେମାନେ ତାକୁ ଛାଡ଼ିଦେବେ? ଅନେକ ଜାଗାରୁ ଅନେକ ଉପଢୌକନ ମିଳିଥିଲା। ଅନେକ ଜାଗାରୁ ନୂଆ ନୂଆ ପଦାର୍ଥମାନ ମଧ୍ୟ କିଣାଯାଇଥିଲା। ଶେଷରେ କ'ଣ ସେସବୁକୁ ଫୋପାଡ଼ିବାକୁ ପଡ଼ିବ?

ଭାଷା ନ ବୁଝିଲେ ମଧ୍ୟ ଆମର ହାବଭାବରୁ ଜନୈକ ବିମାନ ବନ୍ଦର ଅଫିସର ଆମ ଅସୁବିଧା ବୋଧେ ବୁଝିପାରିଲେ। ସାଙ୍ଗେସାଙ୍ଗେ ଅତି ନମ୍ରତାର ସହିତ ପଚାରିଲେ, "ଏକ୍ସକ୍ୟୁଜ୍ ମିଁ, ହାଓ କ୍ୟାନ୍ ଆଇ ହେଲ୍ପ ୟୁ?" ସବୁକଥା ଜାଣିଲା ପରେ କହିଲେ, "ଆପଣଙ୍କୁ ଆମେ ଅଧିକ ଚାଳିଶି କେ.ଜି. ଲଗେଜ୍ ଛାଡ଼ିଦେବୁ। ଅନ୍ୟ ଚାଳିଶି କେଜିର ବ୍ୟବସ୍ଥା ଆପଣ କରନ୍ତୁ।" ଭାଗ୍ୟକୁ ମୋର ଲଗେଜ୍ ଓଜନ ୨୧ କେ.ଜି. ଥିଲା, ନଚେତ୍ କିଛି ଗୋଟାଏ ଛାଡ଼ି ଆସିବାକୁ ପଡ଼ିଥାନ୍ତା। ଟିକେଟ୍ ପଡ଼ିବା ଭୟରେ ଅନେକ ବନ୍ଧୁ ବହୁ ମୂଲ୍ୟବାନ ବହି ବିମାନବନ୍ଦରରେ ଫୋପାଡ଼ିଦେଲେ। ଜଣେ-ଦି'ଜଣ ବନ୍ଧୁ ସେମାନଙ୍କର ପୁରୁଣା ଆଟାଚିକୁ ଫୋପାଡ଼ିଦେବାର ମଧ୍ୟ ମୁଁ ଦେଖିଛି। ସେ ଯାହାହେଉ, ଲଗେଜ୍ ବୁକ୍ କରିବାରେ ଆଉ କିଛି ଅସୁବିଧା ହେଲା ନାହିଁ। ଲଗେଜ୍ ଚେକିଂ ପରେ ଆମେ ବିମାନବନ୍ଦର ଭିତରେ ପଶିଲୁ।

## ଡିଉଟି ଫ୍ରି ସପ୍‌ରୁ ବିଦେଶୀ ମଦ କିଣା

ବିମାନବନ୍ଦର ଭିତର କାରବାର ଦେଖି ମୁଁ ପ୍ରଥମେ ଅବାକ୍ ହୋଇଗଲି। ଏଇଟା କ'ଣ ଏକ ଅତ୍ୟାଧୁନିକ ମାର୍କେଟ୍‌କମ୍ପ୍ଲେକ୍ସ ନା ବିମାନବନ୍ଦର! ଜଣେ ଆଧୁନିକ ନାଗରିକର ଜୀବନଯାପନ ପାଇଁ ଯାହା ଆବଶ୍ୟକ ସବୁ ପଦାର୍ଥ ପ୍ରାୟ ସେଠାରେ ଗଚ୍ଛିତ ଥିଲା।

ବିଭିନ୍ନ ବିଭାଗ ପାଇଁ ବିଭିନ୍ନ କୋଠରି। ସବୁ 'ଡ୍ୟୁଟି ଫ୍ରି'। ଯାହା ଆଣିଲେ ବି ଅବକାରୀ ଶୁଳ୍କ ଦେବାକୁ ପଡୁନଥିଲା।

ବନ୍ଧୁମାନେ ନିଜ ନିଜ ପସନ୍ଦମୁତାବକ କୋଠରିରେ ପଶିଗଲେ। କାହାର ବିଲାତି ସୁରାରେ ସଉକ ତ ଅନ୍ୟ କେହି ବିଲାତି କଲମ କିଣିବାରେ ବ୍ୟସ୍ତ। ଅନ୍ୟ କିଏ ଭି.ସି.ଆର. ଓ ଟୁ-ଇନ୍-ୱାନ୍ ଦେଖୁଥିଲେ। ନିଜ ପୁଞ୍ଜି ଅନୁଯାୟୀ ସଉଦା। ମୁଁ କ'ଣ କିଣିବି ନ କିଣିବି ଭାବିବା ପୂର୍ବରୁ ମନେପଡ଼ିଲା, ଗୋପାଳବାବୁ (ଅମୃତବଜାର ପତ୍ରିକାର ସ୍ୱତନ୍ତ୍ର ପ୍ରତିନିଧି)ଙ୍କ ତାଗିଦ୍, "ଆଉ କିଛି ଆଣ କି ନଆଣ, ସ୍କଚ୍ ବୋତଲଟାଏ ନିଶ୍ଚୟ ଆଣିବ।" କାଳ ବିଳମ୍ବ ନକରି ଫରେନ୍ ଲିକର୍ କାଉଣ୍ଟର୍‌ରେ ପଶିଲି। ହେଲେ 'ଅଜାତିକି ବଣିଜ ଅଡୁଆ'ଭଳି ସେଠାରେ ବାଉଳା ହେଲି, କୋଉଟା କିଣିବି ? ଏକୁ ଆରେକ ବଳିଆର। 'ଜନ୍‌ହେଗ୍', 'ବ୍ଲାକ୍‌ଡଗ୍', 'ଜନି ୱାକର୍', ହ୍ୱାଇଟ୍ ହର୍ସ, 'ରୟାଲ୍ ସାଲୁଟ୍', 'ଶିବାସ୍ ରିଗାଲ୍' ଥାକକୁ ଥାକ ଭରି ହୋଇଥିଲା। ଶେଷରେ ଉପାୟ ନପାଇ ଜଣେ ବନ୍ଧୁଙ୍କ ଶରଣାପନ୍ନ ହେଲି। ବନ୍ଧୁ ଜଣକ ଏ ଦିଗରେ ଖୁବ୍ ଓସ୍ତାଦ୍। ଦିଲ୍ଲୀ ଆନ୍ତର୍ଜାତିକ ବିମାନ ବନ୍ଦର ଛାଡ଼ିବା ପରଠାରୁ ଏପରି କୌଣସି ଦିନ ନାହିଁ, ଯେଉଁ ଦିନ ସେ ସୁରା ବୋତଲ କିଣି ନଥିଲେ। ବିମାନ, କୋଚ୍, ହୋଟେଲ ରୁମ୍ ସବୁ ତାଙ୍କ ପାଇଁ ସମାନ ଥିଲା। ଯେତେବେଳେ ସେ ବସିବାର ସୁଯୋଗ ପାଇଥିଲେ ତାକୁ ଉପଯୋଗ କରିଥିଲେ। ଏହି ପାନୀୟ ସେବନ ସପକ୍ଷରେ ତାଙ୍କର ବଳିଷ୍ଠ ଯୁକ୍ତି, "ଭାରତବର୍ଷରେ ପିଓର୍ ସ୍କଚ୍ କେଉଁଠି ମିଳିବ ? ଜନ୍ମ ହୋଇଛ ଦିନେ ନା ଦିନେ ମରିବ, ଜୀବନକୁ ଉପଭୋଗ କାହିଁ କରିବନି ?" ତାଙ୍କ ଜୀବନଦର୍ଶନରେ ସୁରା ପାନ ହିଁ ଜୀବନର ଶ୍ରେଷ୍ଠ ଉପଭୋଗ। ଯାହାହେଉ ବନ୍ଧୁଜଣଙ୍କ ମୋ ସାହାଯ୍ୟକୁ ଆସିଲେ। ମୋତେ ନେଇଗଲେ ଗୋଟିଏ କଣକୁ। ସମୟ ନଷ୍ଟ ନକରି ଉଠାଇଆଣିଲେ ଗୋଟିଏ ସୁଦୃଶ୍ୟ ପ୍ୟାକିଂ। ପ୍ରଥମେ ବୁଝିହେଲା ନାହିଁ କ'ଣ ସେ ଆଣିଲେ। ହେଲେ ପରେ ସେ ବୁଝାଇ କହିଲେ, "ଏଇଟା ହେଉଛି ବ୍ଲାକ୍ ଲେବଲ୍, ଜନ୍ ୱାକର୍। ଅସଲି ମାଲ୍, ଯାହାକୁ ଦେବ ପସନ୍ଦ କରିବେ।" ପ୍ୟାକିଂଟି ହାତକୁ ଆଣି ଦେଖିଲି ଜଗ୍ ସଦୃଶ ଏକ ଦୁଇଲିଟରିଆ ସଉକିନିଆ ବୋତଲଟିଏ। ବୋତଲଟି ଦେଖିଲେ ମନ ଲାଖିଯିବ।

କାଉଣ୍ଟର୍‌ରେ ଡଲାର ପେମେଣ୍ଟ୍ କଲାପରେ ମନେପଡ଼ିଲା, ମଦ ସାଙ୍ଗକୁ ସିଗାରେଟ୍ ତ ଦରକାର। କିନ୍ତୁ ପୁଣି ସେଇ ଦ୍ୱନ୍ଦ୍ୱ। କାହାକୁ ନେବି ? କେଉଁ ସିଗାରେଟ୍ ଅଧିକ ପସନ୍ଦ। ଆମର ଷ୍ଟେଟ୍ ଏକ୍ସପ୍ରେସ୍ ବା ୫୫୫ ସିଗାରେଟ୍ ସମ୍ଭ୍ରାନ୍ତର ପରିଚାୟକ ବୋଲି ବିଚାର କରାଯାଏ। କିନ୍ତୁ ଏଠି ତ ସମସ୍ତେ ସେ ସିଗାରେଟ୍ ପିଉଛନ୍ତି। ଟ୍ୟାକ୍ସି ଡ୍ରାଇଭର୍, ପୋର୍ଟର୍‌ଠାରୁ ଆରମ୍ଭ କରି ହୋଟେଲ ବୟ ପର୍ଯ୍ୟନ୍ତ ସମସ୍ତଙ୍କପାଖରେ ସେଇ ପ୍ୟାକେଟ୍। ସିଗାରେଟ୍ ଥାକକୁ ଆନାଇଲି, ଡନ୍‌ହିଲ୍, ରଥମେନ୍, ପ୍ଲେୟାରର୍ସ ଏକ୍ସପ୍ରେସ୍, ଷ୍ଟେଟ୍ ଏକ୍ସପ୍ରେସ୍

ମାଲକୁ ମାଳ। ଶେଷରେ ଡନ୍‌ହିଲ୍ କାର୍ଟୁନ୍‌ଟିଏ ଧରିଲି। ଏହା ଭିତରେ ପ୍ରାୟ ଦୁଇଘଣ୍ଟା ସମୟ ବିତିଯାଇଥିଲା। ତଥାପି କାହାରି କାହାରି କିଣାକିଣି ସରି ନଥିଲା। ଆଉ କେହି କେହି ବିଶ୍ରାମ କକ୍ଷକୁ ଫେରିଯାଇଥିଲେ। ଆଉ କେତେକ ବନ୍ଧୁ ଭି.ସି.ଆର, ରଙ୍ଗିନ୍ ଟେଲିଭିଜନ୍, ଟୁ-ଇନ୍-ୱାନ୍ କିଣିସାରି ତାକୁ କିପରି ସାଙ୍ଗରେ ନେବେ ସେଥିପାଇଁ ବ୍ୟସ୍ତ ଥିଲେ।

## ବିକ୍ରମ ରାଓଙ୍କୁ ଉପଢ୍ୢୌକନ ପ୍ରଦାନ

ହଠାତ୍ ଜଣେ କିଏ ଆସି ଖବର ଦେଲେ ବିକ୍ରମ ରାଓ ଡାକୁଛନ୍ତି। ବିମାନ ବନ୍ଦର ଛାଡ଼ିବା ପୂର୍ବରୁ କେତେକ ଶେଷ ପରାମର୍ଶ ପାଇଁ ତାଙ୍କ ପାଖକୁ ଯିବା ପୂର୍ବରୁ ଆମ କେତେକଙ୍କ ମନରେ ପଶିଲା ଯିଏ ଆମ ପାଇଁ ଏତେ କାମ କଲେ, ତାଙ୍କର କୌଣସି ସ୍ୱାର୍ଥ ନଥିଲେ ବି ଆମ ସାଙ୍ଗରେ ଦେଢ଼ମାସରୁ ଅଧିକ ସମୟ ରହିଲେ । ତାଙ୍କୁ କ'ଣ ଖାଲିହାତରେ ବିଦାୟ ଦେବା ? କିନ୍ତୁ କ'ଣ ତାଙ୍କୁ ଦିଆଯାଇପାରିବ ? କ'ଣ ତାଙ୍କର ନାହିଁ ? ସେ ଜଣେ ନୈଷ୍ଠିକ ନିରାମିଷାଶୀ ବ୍ୟକ୍ତି। ପାନ, ସିଗାରେଟ୍ ମଦଠାରୁ ସେ ବହୁ ଦୂରରେ। ଏପରି କ୍ଷେତ୍ରରେ ସେ ଖୁସି ହେଲାଭଳି ବିମାନବନ୍ଦରରୁ କ'ଣ କିଣାଯାଇପାରିବ ? କିନ୍ତୁ ଆମ ପ୍ରଶ୍ନକୁ ହାଲୁକା କରିଦେଲେ ଭଉଣୀ ସୁନିତା, "ରାଓ ସାହେବ କା କଲମ୍ ମେଁ ବହୁତ୍ ସଉକ୍ ହୈ, କ୍ୟୋଁ ନହିଁ ଏକ ପେନ୍‌ସେଟ୍ ଉନକୋ ପ୍ରେଜେଣ୍ଟ୍ କିୟା ଯାଏ ?" ଏତେବଡ଼ ଜଟିଳ ପ୍ରଶ୍ନଟି ଯେ ଏତେଶୀଘ୍ର ତୁଟିଯିବ ଏ ବିଶ୍ୱାସ ଆମର ନଥିଲା। ଆମେ ସାଙ୍ଗେ ସାଙ୍ଗେ ଦଉଡ଼ିଲୁ ଷ୍ଟେସନେରି କାଉଣ୍ଟରଆଡ଼େ। ସେଫରସ୍‌ର ଏକ ପେନ୍‌ସେଟ୍ କିଣାହେଲା ଓ ଆମ ସମସ୍ତଙ୍କ ପକ୍ଷରୁ ସୁନିତା ବିକ୍ରମ ରାଓଙ୍କୁ ତାହା ଅର୍ପଣ କଲେ। ଦିଆନିଆ ଶସ୍ତା ବନ୍ଧୁତ୍ୱର ପରିଚାୟକ ବୋଲି ଦର୍ଶାଇ ପ୍ରଥମେ ବିକ୍ରମଜୀ ତାକୁ ଗ୍ରହଣ କରୁନଥିଲେ। କିନ୍ତୁ ଯେତେବେଳେ ସେ ଜାଣିଲେ ଯେ ଏଇ ସାମାନ୍ୟ ପେନ୍ ସେଟ୍‌ଟି ସହିତ ରହିଛି ଭାରତର ଦଶଟି ରାଜ୍ୟରୁ ଆସିଥିବା ଚବିଶିଜଣ ବନ୍ଧୁଙ୍କର ଅଭୁଲା ସ୍ନେହ, ସେ ଆଉ ବାରଣ କରି ପାରିଲେ ନାହିଁ।

ଘଟଣାକ୍ରମରେ ଆମଷ୍ଟରଡାମ୍ ବିମାନବନ୍ଦରର ସେହି ବିଶ୍ରାମକକ୍ଷଟି କ୍ରମେ ଏକ ସଭାଗୃହରେ ପରିଣତ ହୋଇଗଲା। ତର୍କ ଛଳରେ ବହୁ ଆଲୋଚନା ଚାଲିଲା। କିନ୍ତୁ ଏଇ ଆଳରେ ଚତୁରତାର ସହିତ ବିକ୍ରମ ରାଓ ଗୋଟିଏ କାମ ହାସଲ କରିନେଲେ। ଯେଉଁ ବନ୍ଧୁମାନେ ଇଲେକ୍‌ଟ୍ରୋନିକ୍ ପଦାର୍ଥ ସବୁ କିଣିଥିଲେ, ସେ ସେମାନଙ୍କର ନାମ ତାଲିକା କରାଇନେଇ ଦିଲ୍ଲୀ ବିମାନବନ୍ଦରଠାରେ ସେମାନେ 'ରେଡ୍-ଚାନେଲ୍' ବାଟ ଦେଇ ଯିବା ସଙ୍ଗେ ସଙ୍ଗେ ଆବଶ୍ୟକ ଅବକାରୀ ଶୁଳ୍କ ଦେଇଦେବାକୁ ପରାମର୍ଶ ଦେଲେ। ତାଙ୍କର ସେତେବେଳେ ସେ ପରାମର୍ଶକୁ ଆମେ ଗୁରୁତ୍ୱ ଦେଇନଥିଲୁ। କିନ୍ତୁ ତା' ଯେ

ଆମ୍ଭମାନଙ୍କ ପାଇଁ କେତେ ମୂଲ୍ୟବାନ୍ ଥିଲା, ସେକଥା ଆମେ ପରବର୍ତ୍ତୀ ଅବସ୍ଥାରେ ବୁଝିଲୁ। ଯଦି ଶ୍ରୀ ରାଓଙ୍କ ପରାମର୍ଶ ଗ୍ରହଣ କରାଯାଇ ନଥାନ୍ତା ତେବେ ପାଲାମ ବିମାନବନ୍ଦରରେ ଆମକୁ ଘଣ୍ଟା ଘଣ୍ଟା ସମୟ ଅଯଥାରେ ଅପେକ୍ଷା କରିବାକୁ ପଡ଼ିଥାନ୍ତା ଏବଂ କଷ୍ଟମ୍ସ ଅଫିସରମାନଙ୍କ ଜାଲରେ ପଡ଼ି ଆମେ ଛଟପଟ ହୋଇଥାନ୍ତୁ।

## ଦିଲ୍ଲୀ ବିମାନବନ୍ଦରରେ କଷ୍ଟମ୍ସ କ୍ଲିଅରାନ୍ସ

ଦୀର୍ଘ ଆଠଘଣ୍ଟାର ବିମାନଯାତ୍ରା ପରେ କେ.ଏଲ୍.ଏମ୍ ବିମାନଟି ଦିଲ୍ଲୀର ପାଲାମ ବିମାନବନ୍ଦର ସ୍ପର୍ଶ କଲା। ସେତେବେଳକୁ ଭାରତୀୟ ସମୟ ଭୋର ଛଅଟା। ଦିଲ୍ଲୀ ବିମାନବନ୍ଦର ଛାଡ଼ିବାର ମାତ୍ର ୪୫ ଦିନର ବ୍ୟବଧାନ। ମନେହେଲା ସତେଯେପରି ୫ମାସ ସମୟ ବିତିଯାଇଥିଲା। ସମସ୍ତଙ୍କ ମନରେ ଆନନ୍ଦ ଓ ଉତ୍କଣ୍ଠା, କିପରି ନିଜନିଜର ଜିନିଷପତ୍ର ଧରି ଘରକୁ ଯିବେ। ଆତ୍ମୀୟସ୍ୱଜନଙ୍କୁ ସାକ୍ଷାତ କରିବେ। ଘଣ୍ଟାକ ପୂର୍ବରୁ ବିମାନଭିତରେ ମନ ଯେପରି ଭାବବିହ୍ୱଳ ଥିଲା, ତାହା କେତେକାଂଶରେ ଉଭେଇଯାଇଥିଲେ ବି ମନ ଭିତରେ ଥିବା ଆବେଗ କମିନଥିଲା। ବିମାନରୁ ଓହ୍ଲାଇ ଆମେ ସମସ୍ତେ ଗୋଟିଏ ଜାଗାରେ ଏକାଠି ହେଲୁ। ଯେଉଁମାନେ ସାଙ୍ଗରେ ଇଲେକ୍‌ଟ୍ରୋନିକ୍ ପଦାର୍ଥ ଆଣିଥିଲେ ସେମାନେ ରେଡ୍ ଚାନେଲ୍ ଆଡ଼େ ଚାଲିଲେ। ଆଉ ଆମମାନେ ଗ୍ରୀନ୍‌ଚାନେଲ୍‌କୁ ମୁହାଁଇଲୁ। ତଥାପି ମନରେ ଭୟ ଲାଗୁଥିଲା; କାରଣ ମୋ ପାଖରେ ଟାଇପରାଇଟର୍, କ୍ୟାମେରା, ଘଣ୍ଟା, ବିଲାତିମଦ, ସିଗାରେଟ୍ ଇତ୍ୟାଦି ସବୁ ଥିଲା। ବିମାନବନ୍ଦରରେ ଉପସ୍ଥିତ ଥିବା କେନ୍ଦ୍ରୀୟ ଅବକାରୀ ଶୁଳ୍କ ଅଫିସରମାନେ ଆମର ବିଦେଶରୁ ଫେରିବା ସମ୍ପର୍କରେ ପୂର୍ବରୁ ଅଭାସ ପାଇଥିଲେ ଓ ଆମପ୍ରତି କଠୋର ମନୋଭାବ ପୋଷଣ ନକରିବା ପାଇଁ ସେମାନଙ୍କୁ ସୂଚନା ଦିଆଯାଇଥିଲା।

ବିମାନବନ୍ଦରରେ ଥିବା ଟ୍ରଲିରେ ଲଗେଜ୍ ରଖି ଆସିଲାବେଳେ କଷ୍ଟମ୍ସ କ୍ଲିଅରାନ୍ସ ଆବଶ୍ୟକ ପଡ଼ିଲା। ଆମେ କେବେ ଭାରତରୁ ବିଦେଶ ଯାଇଥିଲୁ, କେଉଁ କେଉଁ ବିମାନରେ ଚଢ଼ିଲୁ, ସାଙ୍ଗରେ କ'ଣ କ'ଣ ଜିନିଷ ଆଣିଛୁ ତା'ର ଏକ ତାଲିକା ସମ୍ବଳିତ ଫର୍ମ ଆମକୁ ପୂରଣ କରିବାକୁ ପଡ଼ିଲା। ବିଦେଶରୁ ଫେରୁଥିବା ସମସ୍ତ ବିମାନଯାତ୍ରୀଙ୍କ ପାଇଁ ତାହା ବାଧ୍ୟତାମୂଳକ ବ୍ୟବସ୍ଥା ଥିଲା। ଆଗରୁ ମାନସିକ ସ୍ତରରେ ପ୍ରସ୍ତୁତ ଥିବାରୁ ବିମାନବନ୍ଦରରୁ ବାହାରକୁ ଆସିବାରେ ବିଶେଷ କିଛି ଅସୁବିଧା ହେଲାନାହିଁ। ପ୍ରାୟ ଅଧଘଣ୍ଟାକ ମଧ୍ୟରେ ସବୁ କାଗଜପତ୍ର ପରୀକ୍ଷାନିରୀକ୍ଷା ସରିଲା ଏବଂ ଆମେ ଗ୍ରୀନ୍ ଚାନେଲ୍ ବାଟେ ବାହାରକୁ ଆସି ନିଜର ଗନ୍ତବ୍ୟସ୍ଥଳ ପାଇଁ ଟ୍ୟାକ୍ସି ଧରିଲୁ। ଅନ୍ୟମାନଙ୍କର କିଛି ସମୟ ବିଳମ୍ବ ହୋଇଥିଲା। ପରେ ଶୁଣିଲି ଆମଭିତରୁ କାନପୁରର ଜଣେ ବନ୍ଧୁ ତାଙ୍କର ବ୍ୟାଗ୍ ହଜାଇଦେଲେ। ମୁଁ ଦିଲ୍ଲୀରେ ଦି'ଦିନ ରହି ଭୁବନେଶ୍ୱର ଫେରିଲି।

# ଘର ବାହୁଡ଼ା

ବିଦେଶଯାତ୍ରା ଯେତେ ସୁଖକର ଓ ଆମୋଦଦାୟକ ହେଲେ ବି ନିଜ ଘରଠାରୁ ଅନ୍ୟତ୍ର ଅଧିକ ସୁଖ ମିଳେନାହିଁ। ମୁଁ ପ୍ରଥମେ ଭାବିଥିଲି ବୋଧହୁଏ କେବଳ ଓଡ଼ିଆମାନେ ହେଉଛନ୍ତି 'ହୋମ୍ ସିକ୍'। କିନ୍ତୁ ଦେଶର ବିଭିନ୍ନ ପ୍ରାନ୍ତରୁ ବିଦେଶ ଯାଇଥିବା ବନ୍ଧୁମାନଙ୍କ ସହିତ ଦୀର୍ଘ ଦୁଇମାସ କାଳ ଏକାଠି କଟାଇବା ପରେ ବୁଝିଲି ସମସ୍ତଙ୍କର ମନସ୍ତତ୍ତ୍ୱ ପ୍ରାୟ ଏକା ରକମର। କେବଳ ପ୍ରଭେଦ ଏତିକି ଯେ, କାହାରି କାହାରି ଆଚରଣରେ ସେମାନଙ୍କର ମନର ଭାବ ପ୍ରକାଶ ପାଇଥାଏ, ଆଉ କିଏ ନିଜର ମନୋଭାବକୁ ଚାପି ରଖିପାରନ୍ତି। କିନ୍ତୁ ଊଣା ଅଧିକେ ସବୁ ଭାରତୀୟଙ୍କ ମନୋଭାବ ପ୍ରାୟ ସମାନ।

## ନୂଆଦିଲ୍ଲୀରେ ବିଶ୍ରାମ

ବିମାନବନ୍ଦରରୁ ଲଗେଜ ଧରି ବାହାରକୁ ଆସିଲାବେଳେ ଦେଖିଲି ଡକ୍ଟର ଜୟଚନ୍ଦ୍ର ଦାସ ଆଉଜଣେ ବନ୍ଧୁଙ୍କ ସହିତ ଗାଡ଼ିଧରି ସେଠାରେ ଉପସ୍ଥିତ। ଆମେ କେଉଁଦିନ କେଉଁ ଫ୍ଲାଇଟ୍‌ରେ ଦିଲ୍ଲୀ ଫେରିବୁ ସେକଥା ସେ ଆଗରୁ ଜାଣିଥିଲେ ଏବଂ ମତେ ବିମାନବନ୍ଦରରୁ ଆସି ନେଇଯିବେ ବୋଲି କହିଥିଲେ। ମୁଁ କିନ୍ତୁ ନଆସିବା ପାଇଁ ତାଙ୍କୁ ବାରମ୍ବାର ଅନୁରୋଧ କରିଥିଲି; କାରଣ ଏକାଧିକ ଥର ଯିବାଆସିବା କରିବା ଦ୍ୱାରା ଦିଲ୍ଲୀର ରାସ୍ତାଘାଟ ମୋର ବିଶେଷ ଅପରିଚିତ ନଥିଲା। ତା'ଛଡ଼ା, ଦିଲ୍ଲୀ ବିମାନବନ୍ଦରରୁ ସହରକୁ ଯିବା ପାଇଁ ପ୍ରିପେଡ୍ ଟ୍ୟାକ୍ସିର ବ୍ୟବସ୍ଥା ମଧ୍ୟ ଥିଲା। କେଉଁ ଟ୍ୟାକ୍ସି କାହାକୁ ନେଇ କେଉଁ ସ୍ଥାନକୁ ଯାଏ ସେସବୁ ସେଠାରେ ପୁଲିସ ଲିପିବଦ୍ଧ କରିଥାନ୍ତି।

ଯାହାହେଉ, ଡାକ୍ତରବାବୁଙ୍କ ସାଙ୍ଗରେ ଗାଡ଼ିରେ ତାଙ୍କ ଘରକୁ ଗଲୁ। ମୁଁ ଭାବିଥିଲି, ଯେଉଁଦିନ ବିଦେଶଗସ୍ତରୁ ଆସି ଦିଲ୍ଲୀରେ ପହଞ୍ଚିବି, ସେହିଦିନ ଅପରାହ୍ନ ବିମାନରେ ଦିଲ୍ଲୀରୁ ଭୁବନେଶ୍ୱର ଚାଲିଆସିବି। ସେହି ଅନୁସାରେ ଅଗ୍ରିମ ବିମାନ ଟିକେଟ କରିବା ପାଇଁ ମୁଁ ଡକ୍ଟର ଦାସଙ୍କୁ ଅନୁରୋଧ କରିଥିଲି। ସେ କିନ୍ତୁ ତାଙ୍କ ଘରେ ଦୁଇଦିନ ରହିବା ପାଇଁ ବ୍ୟବସ୍ଥା କରି ସେହି ଅନୁସାରେ ଟିକେଟ କାଟିଥିଲେ।

ଦିଲ୍ଲୀର ମୌଲାନା ଆଜାଦ୍ ମେଡିକାଲ୍ କଲେଜ୍ ହତାରେ ଥିବା 'ଓଲ୍ଡ ଡକ୍ଟର୍ସ ମେସ୍'ର ଏକ କ୍ୱାଟର୍‌ରେ ଡକ୍ଟର ଦାସ ପରିବାର ସହ ରହୁଥିଲେ। ପରିବାର କହିଲେ ପତ୍ନୀ ମୀନୁ (କଞ୍ଚନା ଦାସ) ଓ ଏକମାତ୍ର ଝିଅ ପଲୁ (ପଲ୍ଲବୀ)। କିନ୍ତୁ ସେ ଘରଟି ଛୋଟକାଟର 'ଓଡ଼ିଶାଭବନ' ଥିଲା। ଓଡ଼ିଶାରୁ ବନ୍ଧୁବାନ୍ଧବ, ସାଙ୍ଗସାଥୀ ଯାହାର ଯାହା କାମ ପଡ଼େ ସେଇଠି ଡେରା ପକାନ୍ତି। ବିଶେଷକରି ଅଧିକାଂଶ ମେଡିକାଲ୍ କାମରେ ଯାଉଥିବା

ଲୋକଙ୍କର ସେଠାରେ ଭିଡ଼ ଲାଗିଥାଏ। ସ୍ୱାମୀ ସ୍ତ୍ରୀ ଉଭୟେ ଲୋକଙ୍କୁ ଦେଖିଲେ କୋଟିନିଧି ପାଇଲା ପରି ହୁଅନ୍ତି। ଅତିଥିମାନଙ୍କୁ ରୋଷେଇ କରି ଖାଇବାକୁ ଦେବାଠାରୁ ଆରମ୍ଭ କରି ସେମାନଙ୍କର ମାର୍କେଟିଂ ପର୍ଯ୍ୟନ୍ତ ସବୁକାମ କରିବାରେ ମୀନୁର ଆନନ୍ଦ। ଅନ୍ୟପକ୍ଷରେ ଡାକ୍ତରୀ ପରୀକ୍ଷାଠାରୁ ରୋଗ ସମ୍ପର୍କରେ ଡାକ୍ତରଙ୍କ ପରାମର୍ଶ କରାଇବାରେ ଡକ୍ଟର ଦାସ ତିଳେହେଲେ କୁଣ୍ଠାବୋଧ କରନ୍ତି ନାହିଁ।

ତାଙ୍କ କ୍ୱାର୍ଟରରେ ଦୁଇଟି ରୁମ୍। ଗୋଟିଏ ତାଙ୍କର ଶୋଇବା ଘର, ଅନ୍ୟଟି ଡ୍ରଇଂ, ଡାଇନିଂ ଓ ଅତିଥିମାନଙ୍କର ରହିବା କାମରେ ଲାଗେ। ସେ ସମୟରେ ଦିଲ୍ଲୀରୁ ଓଡ଼ିଶା ଅସିବାକୁ ସକାଳଓଳି ଏକମାତ୍ର ଟ୍ରେନ୍ ଥିଲା ନୀଳାଚଳ ଏକ୍ସପ୍ରେସ୍, ସେ ପୁଣି ସପ୍ତାହରେ ତିନିଥର। ସକାଳ ଛଅଟା ପଇଁତାଳିଶିରେ ନୂଆଦିଲ୍ଲୀ ଷ୍ଟେସନ୍ ଛାଡ଼େ। ସେ ଟ୍ରେନ୍ ଧରିବାକୁ ହେଲେ ରାତି ଚାରିଟାରୁ ଉଠି ନିତ୍ୟକର୍ମ ସାରି ସାଢ଼େ ପାଞ୍ଚଟା ଭିତରେ ଷ୍ଟେସନ୍‌ରେ ପହଞ୍ଚିବାକୁ ପଡ଼େ। ସେତେବେଳେ ଆଜିକାଲି ଭଳି ଟ୍ରେନ୍‌ରେ ଏ.ସି. କୋଚ୍‌ର ବ୍ୟବସ୍ଥା ନଥିଲା। ସବୁ ସ୍ଲିପିଂ କ୍ଲାସ। ଯିଏ ଆଗ ଆସିବ ସେ ନିଜ ଲଗେଜ୍‌ସବୁ ସିଟ୍ ତଳେ ଭର୍ତ୍ତି କରିଦେବ। ଅନେକ ସମୟରେ କଟକ, ଭୁବନେଶ୍ୱରର ବେପାରୀମାନେ ବିକିବା ପାଇଁ ବହୁ ଲଗେଜ୍ ସାଙ୍ଗରେ ଆଣି ଡବାରେ ପୂରାଇଦିଅନ୍ତି।

କ୍ୱାର୍ଟର୍‌ରେ ଗୋଟିଏ ବାଥରୁମ୍ ଥିବାରୁ ବାଧହୋଇ ସେମାନଙ୍କୁ ରାତି ଚାରିଟାରୁ ଉଠିବାକୁ ପଡ଼େ। ସେଥିରେ କିନ୍ତୁ ସେମାନଙ୍କର କିଛି ଅବଶୋଷ ନଥାଏ। ସକାଳୁ ତ ଟ୍ୟାକ୍ସି ମିଳେନାହିଁ। ସେଥିପାଇଁ ଅନେକ ସମୟରେ ରିକ୍ସାରେ ନୂଆଦିଲ୍ଲୀ ଷ୍ଟେସନ୍‌କୁ ଯିବାକୁ ପଡ଼ିଥାଏ। ଜିନିଷପତ୍ର ବାନ୍ଧିବାଠାରୁ ରିକ୍ସା ଡାକିବା ପର୍ଯ୍ୟନ୍ତ ସବୁ କାମ ଡକ୍ଟର ଦାସ ଆନନ୍ଦରେ ବର୍ଷ ବର୍ଷ ଧରି କରିଥିଲାବେଳେ ସକାଳେ ଜଳଖିଆ ପ୍ରସ୍ତୁତ କରି ସାଙ୍ଗରେ ଦେବା ପର୍ଯ୍ୟନ୍ତ ମୀନୁ ମେସିନ୍ ଭଳି ସବୁକାମ କରି ଚାଲିଥାଏ। ଧନ୍ୟ ସେମାନଙ୍କର ଧୈର୍ଯ୍ୟ, ଧନ୍ୟ ତାଙ୍କର ଅତିଥି ସେବା ମନୋଭାବ। ଈଶ୍ୱର ସେମାନଙ୍କ ମନ ଜାଣି ଫଳ ମଧ ଦେଇଛନ୍ତି।

ବିମାନବନ୍ଦରରୁ ଡକ୍ଟର ଦାସଙ୍କ ଘରେ ପହଞ୍ଚିବାକୁ ଆମକୁ ପ୍ରାୟ ଘଣ୍ଟାଏ ସମୟ ଲାଗିଲା। ମେ ମାସରେ ଗରମ ସାଙ୍ଗକୁ ଫୁଲ୍ ସ୍ୱେଟର୍ ପିନ୍ଧା ବଡ଼ ଅସ୍ୱସ୍ତି ବୋଧ ହେଉଥିଲା। ଘରେ ପହଞ୍ଚି ପହଞ୍ଚି ସାଙ୍ଗେ ସାଙ୍ଗେ ବାଥ୍‌ରୁମ୍‌ରେ ପଶିଲି। ଦୀର୍ଘଦିନ ହେଲା ବିଦେଶ ରାଷ୍ଟ୍ରରେ ଥଣ୍ଡା ଯୋଗୁଁ ମନଶାନ୍ତିରେ ଗାଧୁଆ ହୋଇନଥିଲା।

ଗାଧୁଆପାଧୁଆ ସାରି ଆସିଲାବେଳକୁ ନଅଟା ବାଜିଯାଇଥିଲା। ଡକ୍ଟର୍ ଦାସଙ୍କ ହସ୍‌ପିଟାଲ୍ ଯିବା ସମୟ। ସେ ସେତେବେଳେ ମୌଲାନା ଆଜାଦ ମେଡିକାଲ୍ କଲେଜ୍‌ର 'ଗୁରୁନାନକ ଆଇ ସେଣ୍ଟର୍'ରେ ଆସିଷ୍ଟାଣ୍ଟ ପ୍ରଫେସର୍ ଥିଲେ। ଜଣେ ଆଖି ଡାକ୍ତର ଭାବରେ ତାଙ୍କର ଯଥେଷ୍ଟ ସୁନାମ ଥିଲା। ତା'ଛଡ଼ା ରୋଗୀ ଚିକିତ୍ସା ପ୍ରତି ତାଙ୍କର ଅଙ୍ଗୀକାରବଦ୍ଧତା ତାଙ୍କୁ ଦିନେ ଚାକିରିର ଶିଖର ସୋପାନରେ ପହଞ୍ଚାଇଥିଲା। ପରବର୍ତ୍ତୀ

କାଳରେ ସେ ଡାଇରେକ୍ଟର୍ ଓ ପ୍ରଫେସର ପଦବୀକୁ ଉନ୍ନୀତ ହେବା ସହିତ ଦିଲ୍ଲୀ ସରକାରଙ୍କ ଦ୍ୱାରା ଶ୍ରେଷ୍ଠ ଡାକ୍ତର ଭାବରେ ମୁଖ୍ୟମନ୍ତ୍ରୀ ଶିଳା ଦୀକ୍ଷିତଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ।

ଜଳଖିଆ ଖାଇଲାବେଳେ ଦୁଇଦିନ ପରେ ମୋର ଫେରନ୍ତା ବିମାନ ଟିକେଟ୍ ହୋଇଛି ବୋଲି ମୁଁ ଡାକ୍ତର ଦାସଙ୍କଠାରୁ ଶୁଣିଲି। ସେ ଯେ ତାଙ୍କ ଘରେ ଦୁଇଦିନ ରହିବା ପାଇଁ ଏପରି ବ୍ୟବସ୍ଥା କରିଥିଲେ ସେକଥା ବୁଝିବାକୁ ଆଉ ବାକି ରହିଲାନାହିଁ। ଦିଲ୍ଲୀରେ ମୋର କିଛି ବ୍ୟକ୍ତିଗତ ବନ୍ଧୁ ଥିଲେ। ମୁଁ ସେମାନଙ୍କ ପାଇଁ ସାମାନ୍ୟ କିଛି ବିଦେଶ ସାମଗ୍ରୀ ସାଙ୍ଗରେ ଆଣିଥିଲି। ଭାବିଥିଲି ସେସବୁ ବାଣ୍ଟିବା ଦାୟିତ୍ୱ ଡକ୍ଟର ଦାସଙ୍କ ଉପରେ ନ୍ୟସ୍ତ କରି ଶୀଘ୍ର ଭୁବନେଶ୍ୱର ଫେରିଯିବି। କିନ୍ତୁ ଫେରିବା ସମୟ ଯେତେବେଳେ ବଦଳିଲା ମୁଁ ନିଜେ ଯାଇ ସେସବୁ ଦେବାକୁ ସ୍ଥିର କଲି।

ଆମ ଭଳି ସାମୟିକ ଦିଲ୍ଲୀ ଯାଉଥିବା ଲୋକଙ୍କ ପାଇଁ ସ୍କୁଟର ବା ଅଟୋରିକ୍ସା ଏକମାତ୍ର ଭରସା; କାରଣ ବସ୍‌ର ରୁଟ୍ ଜାଣିନଥିଲେ କିମ୍ବା ଅଭ୍ୟାସ ନଥିଲେ ବସ୍‌ରେ ଯିବାଆସିବା ସମ୍ଭବ ନୁହେଁ ଏବଂ ଅନ୍ୟପକ୍ଷରେ ଦିଲ୍ଲୀର ଟ୍ୟାକ୍ସିଭଡ଼ା ଅତ୍ୟଧିକ ଥିବାରୁ ଟ୍ୟାକ୍ସିରେ ଯିବା ସମ୍ଭବ ନଥିଲା। ଅଟୋଟିଏ ଧରି ଦିଲ୍ଲୀର ତିନି ଚାରି ଜାଗାକୁ ଯିବାକୁ ପଡ଼ିଲା। ଯୁଆଡ଼େ ଗଲେ ଗୋଟିଏ ପ୍ରଶ୍ନ, "ବିଦେଶ ଯାତ୍ରା କିପରି ହେଲା ? ନିରାମିଷାଶୀ ଲୋକ ବିଦେଶରେ କ'ଣ ଖାଇଲ ? ଥଣ୍ଡାରୁ ରକ୍ଷା ପାଇବା ପାଇଁ ମଦ ପିଇଲ କି ନାହିଁ ?" ଇତ୍ୟାଦି ଇତ୍ୟାଦି। ଏସବୁ ପଚାରିବା ମଧ୍ୟ ସ୍ୱାଭାବିକ; କାରଣ ସାଧାରଣ ଭାବରେ ସେତେବେଳେ ବିଦେଶ ରାଷ୍ଟ୍ର ବୁଲିଯିବା ଲୋକଙ୍କ ସଂଖ୍ୟା ସେତେ ବେଶି ନଥିଲା।

କ୍ୱାର୍ଟର୍‌କୁ ଫେରିଲାବେଳକୁ ସମୟ ଅପରାହ୍ନ ତିନିଟା। ଡକ୍ଟର ଦାସ ହସ୍‌ପିଟାଲରୁ ଫେରି ନଖାଇ ମତେ ଅପେକ୍ଷା କରିଥିଲେ। ମୁଁ ମନେ ମନେ ବଡ଼ ଲଜ୍ଜିତ ହେଲି। ଆଉ ସମୟ ନଷ୍ଟ ନକରି ଖାଇବା ଟେବୁଲ୍‌ରେ ବସିଲୁ। ଆଳୁଦମ୍ ପ୍ରତି ମୋର ଟିକେ ଦୁର୍ବଳତା। ସେକଥା ମୀନୁକୁ ଖୁବ୍ ଜଣାଥିଲା। ସେଥିପାଇଁ ସେ ଅନ୍ୟାନ୍ୟ ସୁସ୍ୱାଦୁ ଖାଦ୍ୟ ସହିତ ଆଳୁଦମ୍ କରିବାକୁ ଭୁଲିନଥିଲା।

ସେଦିନ ସନ୍ଧ୍ୟାରେ ଆମେ ସମସ୍ତେ ବୁଲିବାକୁ ଯାଇଥିଲୁ ଓ ଆମର ରାତ୍ରିଭୋଜନ ବାହାରେ ହୋଇଥିଲା। ଦିଲ୍ଲୀରେ ଦୁଇଦିନ କେମିତି କଟିଲା ଜାଣିହେଲା ନାହିଁ। ଘରକୁ ଫେରିବା ପାଇଁ ମନର ବ୍ୟଗ୍ରତା ବଢୁଥିଲା। ମୁଁ ଫେରିଲା ସମୟରେ ଡକ୍ଟର ଦାସଙ୍କୁ ଆଉ ହଇରାଣ ନକରି ଗୋଟିଏ ଟ୍ୟାକ୍ସି ଧରି ସିଧା ଇନ୍ଦିରାଗାନ୍ଧୀ ବିମାନବନ୍ଦରର ଡୋମେଷ୍ଟିକ୍ ଡିପାର୍ଚର୍ କାଉଣ୍ଟରରେ ପହଞ୍ଚିଗଲି।

## ପ୍ରଥମ ବିଦେଶ ଭ୍ରମଣର ଶେଷ ବିମାନଯାତ୍ରା

ଦିଲ୍ଲୀ ବିମାନବନ୍ଦରରେ ଲଗେଜ୍ ବୁକିଂ, ବୋର୍ଡିଂକାର୍ଡ ସଂଗ୍ରହ କାମ ସବୁ ସୁରୁଖୁରୁରେ ହୋଇଗଲା। ଆଉ କିଛିସମୟ ପରେ ସିକ୍ୟୁରିଟି ଚେକିଂ ଶେଷରେ ବିମାନ ଗନ୍ତବ୍ୟପଥରେ ଛାଡ଼ିବା କଥା। ମାତ୍ର ହଠାତ୍ ମାଇକ୍ରୋଫୋନ୍‌ରୁ ଶୁଣାଗଲା, "ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଦିଲ୍ଲୀରୁ ଭୁବନେଶ୍ୱର ଯାଉଥିବା ଇଣ୍ଡିଆନ୍ ଏୟାରଲାଇନ୍‌ସ୍‌ର ବିମାନ ଛାଡ଼ିବାରେ କିଛିସମୟ ବିଳମ୍ବ ଘଟିବ। ବିମାନଯାତ୍ରୀମାନଙ୍କର ଅସୁବିଧା ପାଇଁ ଆମେ ଦୁଃଖିତ।"

ମୁଁ ଭାବିଥିଲି, ବୋଧହୁଏ ଅଧଘଣ୍ଟା ଭିତରେ ବିମାନ ଠିକ୍ ହୋଇ ଭୁବନେଶ୍ୱର ଯିବ। ସେତେବେଳେ ଦିଲ୍ଲୀରୁ ଭୁବନେଶ୍ୱର ବିମାନ ସକାଳ ସାଢ଼େଦଶଟାରେ ଛାଡୁଥିବାରୁ ଜଳଖିଆ ଖାଇ ଆସିବାକୁ ପଡୁଥିଲା। ଅନେକ ସମୟରେ ବିମାନ ଭିତରେ ମଧ୍ୟାହ୍ନ ଭୋଜନ ଦିଆଯାଉଥିଲା। ମାତ୍ର ଆମର ଦୁର୍ଯୋଗ ଯେ ସେଦିନ ବିମାନ ଛାଡ଼ିବାରେ ପ୍ରାୟ ତିନିଘଣ୍ଟା ବିଳମ୍ବ ହୋଇଥିଲା; ଯାହାଫଳରେ ଆମକୁ ଲଞ୍ଚ କଥା ଭୁଲିଯିବାକୁ ପଡ଼ିଥିଲା। ବିଶ୍ୱରେ ଯେତେ ପ୍ରକାର ବିମାନସେବା ପ୍ରଚଳିତ, ସେଥିମଧ୍ୟରୁ ଇଣ୍ଡିଆନ୍ ଏୟାର୍‌ଲାଇନ୍‌ର ସେବା ସବୁଠାରୁ ନିକୃଷ୍ଟ ବୋଲି ଆଗରୁ ଯେଉଁ ଧାରଣା ଥିଲା ତାହା ସେଦିନ ଦୃଢ଼ୀଭୂତ ହୋଇଗଲା। ସେ ସମୟରେ ଭୁବନେଶ୍ୱର ବିମାନବନ୍ଦର ଆକାରରେ ଖୁବ୍ ଛୋଟ ଥିଲା। ନିରାପତ୍ତା ବ୍ୟବସ୍ଥା ମଧ୍ୟ କୋହଳ ଥିଲା। ଦିଲ୍ଲୀ ଓ କଲିକତା ବ୍ୟତୀତ ଅନ୍ୟ କେଉଁଠୁ ଏଠାକୁ ବିମାନସେବା ନ ଥିଲା। ଦେଶ ବିଦେଶରୁ କେହି ଭି.ଆଇ.ପି. ଆସିଲେ ଅନେକ ସମୟରେ ଆମକୁ ରନ୍‌ୱେ ପର୍ଯ୍ୟନ୍ତ ଯିବାପାଇଁ ସୁଯୋଗ ମିଳୁଥିଲା।

ଯାହାହେଉ ସବୁ ମାନସିକ ଯନ୍ତ୍ରଣାର ଅବସାନ ଘଟାଇ ବିମାନଟି ପାଲାମ ବିମାନବନ୍ଦର ଛାଡ଼ି ଭୁବନେଶ୍ୱର ବିମାନବନ୍ଦରରେ ଅପରାହ୍ନ ପାଞ୍ଚଟା ସମୟରେ ଅବତରଣ କଲା।

## ନିଜ୍ ମାଟିରେ ସ୍ୱାଗତ ସମ୍ବର୍ଦ୍ଧନା

ଦିଲ୍ଲୀରୁ ବିମାନରେ ଭୁବନେଶ୍ୱର ଆସିବାକୁ ଯେତିକି ସମୟ ଲାଗେ, ତ'ର ପ୍ରାୟ ଅଧାଧିକ ସମୟ ଲାଗିଯାଏ ବିମାନବନ୍ଦରରୁ ଲଗେଜ୍ ସଂଗ୍ରହ କରି ଗାଡ଼ିରେ ବସିବା ପାଇଁ। ବର୍ତ୍ତମାନ ଅବଶ୍ୟ ସେ ପରିସ୍ଥିତି କିଛି ପରିମାଣରେ ସୁଧୁରିଛି। ତଥାପି ଦେଶର ଅନ୍ୟାନ୍ୟ ବିମାନବନ୍ଦର ତୁଳନାରେ ଯେ ବହୁ ପଛରେ ପଡ଼ିଛି ସେଥିରେ କିଛି ସନ୍ଦେହ ନାହିଁ।

ବିମାନରୁ ଓହ୍ଲାଇ ଶିଡ଼ିରେ ଆସିଲା ବେଳେ କିଛି ଲୋକ ହାତ ହଲାଉଥିବାର ଦେଖିବାକୁ ମିଳିଥିଲା। ମୋର ଧାରଣା ଥିଲା ବୋଧହୁଏ ଦିଲ୍ଲୀରୁ କିଏ ରାଜନେତା ସେ ବିମାନରେ ଆସିଥିଲେ ଓ ତାଙ୍କୁ ପାଛୋଟି ନେବାପାଇଁ କର୍ମୀମାନେ ହାତ ହଲାଉଥିଲେ। କିନ୍ତୁ ମୁଁ ରନୱେ ଟପି ଯେତେବେଳେ ଲାଉଞ୍ଜ୍ ଭିତରକୁ ପଶିଲି, ମୋର ବିସ୍ମୟର ସୀମା ରହିଲା ନାହିଁ। ଆମ ପରିବାର ସଦସ୍ୟଙ୍କ ସହିତ କେତେକ ଶୁଭେଚ୍ଛୁ ଗାଡ଼ିକରି କଟକରୁ ମୋତେ ସ୍ୱାଗତ କରିବା ପାଇଁ ଭୁବନେଶ୍ୱର ଆସିଥିଲେ। ମୋର ମନେଅଛି, ସେଇ ଶୁଭଚିନ୍ତକମାନଙ୍କ ମଧ୍ୟରେ ଥିଲେ ବିଶିଷ୍ଟ ଫଟୋସାମ୍ବାଦିକ ହୃଦୟନାଥ ଦାସ, ଶ୍ରଦ୍ଧେୟ ଶୁଭେନ୍ଦ୍ର ବର୍ମା, ସାନଭାଇ ଅମୀୟ, ପତ୍ନୀ ପ୍ରମଦା, ପୁଅ ଚନ୍ଦନ ଓ କଟକ ଜିଲ୍ଲା ଲୋକସମ୍ପର୍କ ଅଫିସର ବିଶ୍ୱେଶ୍ୱର ଦେ। ସାଙ୍ଗରେ ଫୁଲତୋଡ଼ା ଆଣିବାକୁ ସେମାନେ ଭୁଲିନଥିଲେ। ଏସବୁ ଦେଖି ମତେ କେମିତି ଅଡୁଆ ଅଡୁଆ ଲାଗୁଥିଲେ ବି ମୋର କିଛି ଉପାୟ ନଥିଲା। ଇଚ୍ଛା ନଥିଲେ ବି ଫୁଲତୋଡ଼ାସବୁ ଗ୍ରହଣ କରି ସେମାନଙ୍କ ସହିତ ଲାଉଞ୍ଜ୍ ବାହାରକୁ ଆସିଲି।

ଭୁବନେଶ୍ୱରରୁ କଟକର ଦୂରତା ମାତ୍ର ପଚିଶି କିଲୋମିଟର। କିନ୍ତୁ ସେତେବେଳେ ଗାଡ଼ିରେ ଏତିକି ରାସ୍ତା ଅତିକ୍ରମ କରିବାକୁ ସମୟ ଲାଗୁଥିଲା ଘଣ୍ଟାକରୁ ଅଧିକ। ଆଜିକାଲି ଭଳି ସେତେବେଳେ ଫୋରଲେନ୍ ରାସ୍ତା ନଥିଲା। ଯୋଉ ରାସ୍ତାରେ ଗାଡ଼ି ଯାଉଥିଲା, ସେଇ ରାସ୍ତାରେ ଗାଡ଼ି ଫେରୁଥିଲା। ଫଳରେ ସାମନାସାମନି ଧକ୍କା ହେବାର ଅଧିକ ଆଶଙ୍କା ରହୁଥିଲା। ଆମେ ପାହାଳରୁ କିଛି ମିଠା କିଣି କଟକ ଫେରିଲୁ। ବିଦେଶରୁ ଫେରିଥିଲେ ବି ପାହାଳ ମିଠାର ଆକର୍ଷଣକୁ ମୁଁ ଭୁଲିପାରିନଥିଲି।

କଟକରେ ନିଜ କ୍ୱାଟରରେ ପହଞ୍ଚିଲା ପରେ ମନରେ ଯେଉଁ ତୃପ୍ତି ଆସିଥିଲା ତାହା ବିଦେଶ ଭ୍ରମଣର ଆନନ୍ଦକୁ ଟପିଯାଇଥିଲା। ଘରେ ପହଞ୍ଚୁ ପହଞ୍ଚୁ ଆରମ୍ଭ ହୋଇଗଲା ଟେଲିଫୋନ୍। ଆତ୍ମୀୟସ୍ୱଜନଙ୍କଠାରୁ ଆରମ୍ଭ କରି ରାଜନେତା ଓ ସରକାରୀ କର୍ମଚାରୀ, ସମସ୍ତଙ୍କଠାରୁ ଟେଲିଫୋନ୍‌ରେ ଶୁଭେଚ୍ଛାବାର୍ତ୍ତାମାନ ପାଇ ସେଦିନ ମୁଁ ଖୁବ୍ ଆନନ୍ଦିତ ହୋଇଥିଲି। ହେଲେ ଆମ ପେସାରେ ଥିବା ବନ୍ଧୁମାନଙ୍କ ନିକଟରୁ ଆଶାନୁରୂପ ଶୁଭେଚ୍ଛା ପାଇନଥିଲି। ମୋ ବିଦେଶଯାତ୍ରାରେ କେତେକ ବନ୍ଧୁ ବୋଧହୁଏ ବିଶେଷ ଖୁସି ନ ଥିଲାଭଳି ମୋର ମନେହୋଇଥିଲା।

ପରେ କଟକ ସହରର କେତେକ ସଙ୍ଗଠନ ପକ୍ଷରୁ ମୋତେ ସମ୍ବର୍ଦ୍ଧନା ଜଣାଇବା ପାଇଁ ଗୋଟିଏ ସାନ୍ଧ୍ୟମିଳନର ବ୍ୟବସ୍ଥା କରାଯାଇଥିଲା। ମୁଁ କୋରିଆରେ ପ୍ରଚଳିତ 'ସ୍ନେକ୍‌ହୁସ୍କି' ବିଷୟରେ କହିଲାବେଳେ ମଦ୍ୟପାନ କରୁଥିବା ବନ୍ଧୁମାନଙ୍କ ଆଖି ଟେରା ହୋଇଯାଇଥିଲା। ସେଦିନ ସନ୍ଧ୍ୟାରେ ବହୁ ବିଶିଷ୍ଟବ୍ୟକ୍ତି ମୋ ସମ୍ପର୍କରେ ଯେଉଁସବୁ ବକ୍ତବ୍ୟ ରଖିଥିଲେ ସେଥିରେ ମୁଁ ଅଭିଭୂତ ହୋଇଯାଇଥିଲି।

# ଦ୍ୱିତୀୟ ପର୍ଯ୍ୟାୟ

## ଚେକ୍ ରିପବ୍ଲିକ୍‌ରେ ଦୁଇ ସପ୍ତାହ

୧୯୯୩ ମସିହା ଜାନୁୟାରୀ ପହିଲାରେ ଚେକ୍ ରିପବ୍ଲିକ୍ ଜନ୍ମଲାଭ କରିବା ପୂର୍ବରୁ ଦୀର୍ଘ ୮୮ ବର୍ଷକାଳ ଏହି ଦେଶ ସ୍ଲୋଭାକିଆ ସହିତ ଏକତ୍ର ଗୋଟିଏ ପତାକା ତଳେ ଚେକୋସ୍ଲୋଭାକିଆ ନାମରେ ଜଣାଶୁଣା ଥିଲା। ଚେକ୍‌ଗଣତନ୍ତ୍ର ସ୍ୱାଧୀନ ହେବା ପୂର୍ବରୁ ଏହା ବହୁଦେଶ ଅଧୀନରେ ରହିଥିଲା। ଏହି ଗଣତନ୍ତ୍ରର ଅଧିବାସୀମାନେ ଏକାଧିକ ଯୁଦ୍ଧରେ ସମ୍ପୃକ୍ତ ରହିବା ଫଳରେ ଏହାର ଅର୍ଥନୈତିକ ଅବସ୍ଥା ବିପର୍ଯ୍ୟସ୍ତ ହୋଇଯାଇଥିଲା। ଦେଶ ସ୍ୱାଧୀନ ହେବାପରେ ପ୍ରାଗ୍‌ରେ ଏହାର ରାଜଧାନୀ ସ୍ଥାପିତ ହେଲା। ଗତ କିଛିବର୍ଷ ମଧ୍ୟରେ ଶିଳ୍ପର ପ୍ରସାର ଘଟି ଏହାର ଅର୍ଥନୀତିରେ ଉନ୍ନତି ଘଟିଛି। ସୋଭିଏତ୍ ଋଷ୍‌ର ନିୟନ୍ତ୍ରଣରୁ ମୁକ୍ତ ହୋଇ ସ୍ୱାଧୀନ ଦେଶ ହେବା ପରେ ଚେକ୍ ଗଣତନ୍ତ୍ର ଉପରେ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଭାବ କିଛି ପରିମାଣରେ ବୃଦ୍ଧି ପାଇଛି।

ଚେକ୍ ଗଣତନ୍ତ୍ରର ଲୋକସଂଖ୍ୟା ଏକକୋଟିରୁ ସାମାନ୍ୟ ଅଧିକ (୧୦.୨ ମିଲିଅନ୍)। ସେମାନଙ୍କ ମଧ୍ୟରୁ ପ୍ରାୟ ଶତକଡ଼ା ଦଶଭାଗ ଲୋକ ରାଜଧାନୀ ପ୍ରାଗ୍‌ରେ ବସବାସ କରନ୍ତି। ସେ ଦେଶର ପୁରୁଷଙ୍କ ହାରାହାରି ବୟସ ୭୨ବର୍ଷ ହୋଇଥିଲାବେଳେ ମହିଳାମାନଙ୍କ କ୍ଷେତ୍ରରେ ଏହା ୬୮.୫ବର୍ଷ । ସହରମାନଙ୍କରେ ଯୁବକଯୁବତୀମାନେ ବାହାହେବା ପର୍ଯ୍ୟନ୍ତ ବାପମା'ମାନଙ୍କ ସହିତ ଏକା ଫ୍ଲାଟ୍‌ରେ ରହିଥାନ୍ତି। ପ୍ରତି ପରିବାରରେ ଯାତାୟାତ ପାଇଁ ଅନ୍ତତଃ ଗୋଟିଏ କାର୍ ଥିବାର ଦେଖାଯାଏ। ଗାଁ ଗହଳରେ ଲୋକେ ସାଧାରଣତଃ ସାଇକେଲ୍ ଉପରେ ନିର୍ଭର କରିଥାନ୍ତି।

ଚେକ୍ ରାଷ୍ଟ୍ର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର। ସେଠାରେ ଲୋକେ ସପ୍ତାହରେ ପାଞ୍ଚଦିନ କାମ କରି ଶନିବାର ଓ ରବିବାର ଛୁଟି ଉପଭୋଗ କରନ୍ତି। ସକାଳ ସାତଟାରୁ ଆରମ୍ଭ ହେଉଥିବା ଦପ୍ତର ଅପରାହ୍ନ ସାଢ଼େ ଚାରିଟାରେ ବନ୍ଦ ହୋଇଥାଏ। ଛୁଟିଦିନମାନଙ୍କରେ ଲୋକମାନେ ବିଭିନ୍ନ ସ୍ଥାନକୁ ଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରିଥାନ୍ତି। ଏହି ଦେଶରେ ବହୁ ଦର୍ଶନୀୟ ସ୍ଥାନ ରହିଛି। ସେସବୁ ସ୍ଥାନମାନଙ୍କୁ ଯିବାପାଇଁ ସୁନ୍ଦର ରାସ୍ତାସବୁ ତିଆରି ହୋଇଛି। ଉତ୍ତମ ସଡ଼କ ଓ ଅଧିକ ବେଗଗାମୀ ଗାଡ଼ି ଥିବାରୁ ଦୂରସ୍ଥାନକୁ ଗଲେ ପଥଶ୍ରମ ଜଣାପଡ଼େନାହିଁ। ୟୁରୋପ ମାହାଦେଶର ଅନ୍ୟାନ୍ୟ ରାଷ୍ଟ୍ର ଭଳି ଏ ଦେଶରେ ମଧ୍ୟ କାର୍ ସବୁ ଘଣ୍ଟାକୁ ହାରାହାରି ଏକଶହ କିଲୋମିଟର୍ ବେଗରେ ଚଳାଚଳ କରିଥାଏ। ଦେଶର ପ୍ରଚଳିତ ଆଇନ୍‌କୁ ସମସ୍ତେ ସମ୍ମାନ କରୁଥିବାରୁ ଏବଂ ଲୋକମାନଙ୍କର ଶୃଙ୍ଖଳାଜ୍ଞାନ ଅଧିକ ଥିବାରୁ ରାସ୍ତାଘାଟରେ ଦୁର୍ଘଟଣା ପ୍ରାୟ ଦେଖାଯାଇ ନଥାଏ।

## ପିଲାଙ୍କ ଅନୁରୋଧକୁ ଏଡ଼ାଇ ହେଲାନି

ଆମର ଏକମାତ୍ର ପୁତ୍ର ଚନ୍ଦନ, ବିଶ୍ୱର ଲୌହସମ୍ରାଟ ଲକ୍ଷ୍ମୀ ମିତ୍ତଲଙ୍କ କମ୍ପାନୀରେ ମାର୍କେଟିଂ ମ୍ୟାନେଜର୍ ଭାବରେ ନିଯୁକ୍ତି ପାଇ ଚେକ୍ ରିପବ୍ଲିକ୍ ଅଷ୍ଟ୍ରୋଭା ସହରରେ ବୋହୂ ସାଲୋନୀ ଓ ନାତୁଣୀ ଏଲିନା ସହିତ ବାସକରେ। ସେମାନଙ୍କ ପାଖକୁ ଯିବାପାଇଁ ସେମାନେ ବାରମ୍ବାର ଅନୁରୋଧ କରିଥିଲେ ହେଁ କୌଣସି ନା କୌଣସି ବାହାନା ଦେଖାଇ ମୁଁ ତାକୁ ଏଡ଼ାଇ ଚାଲିଥିଲି। ତା'ର ଅନ୍ୟ ଏକ କାରଣ ମଧ୍ୟ ଥିଲା। ସେମାନେ ବର୍ଷରେ ମାସେ ଆସି ଆମ ସାଙ୍ଗରେ ରହୁଥିଲେ ଏବଂ ଫେରିଗଲା ପରେ ସପ୍ତାହରେ ଅନ୍ତତଃ ଦୁଇଥର ଟେଲିଫୋନ୍ କରୁଥିଲେ। କିନ୍ତୁ ୨୦୦୭ ମସିହା ଜୁନ୍ ୧୨ ତାରିଖ ରଜ ପୂର୍ବଦିନ ବୋହୂ ଯେତେବେଳେ ଫୋନ୍ କରି କହିଲା, "ବାବା ! ଏତେଥର କହିଲାପରେ ଆପଣମାନେ କେହି ଆସୁନାହାନ୍ତି। ଏଠାରେ ସମସ୍ତେ ଆମକୁ ପଚାରୁଛନ୍ତି, ତମର କ'ଣ କେହି ଆତ୍ମୀୟସ୍ୱଜନ ନାହାନ୍ତି ? ସମସ୍ତଙ୍କର କେହି ନା କେହି ଆସୁଛନ୍ତି, ଆଉ ତମର କାହିଁ କେହି ଆସୁନାହାନ୍ତି ?"

ସାଲୋନୀର ଏଇ କଥା ମନରେ ଗଭୀର ରେଖାପାତ କଲା। ଫୋନ୍‌ରେ ତା' କଥାରୁ ପିଲାମାନଙ୍କ ମନର ଆବେଗ ଓ ମନସ୍ତାତ୍ତ୍ୱିକ ସ୍ଥିତିର ସ୍ପଷ୍ଟ ଆଭାସ ମିଳିଥିଲା। ମୁଁ ସ୍ଥିରକଲି ନା, ଆଉ ପିଲାଙ୍କୁ ଠକିହେବ ନାହିଁ। ଏଥର ଯିବାକୁ ପଡ଼ିବ। ଫୋନ୍ କଥା ପତ୍ନୀ ପ୍ରମଦାଙ୍କୁ ଜଣାଇଲି। ତାଙ୍କର ପ୍ରତିକ୍ରିୟା ଥିଲା, "ଯାଉନା ? ପିଲାମାନେ କେତେଥର ଫୋନ୍ କଲେଣି।" ମୁଁ କହିଲି, "କ'ଣ ମୋର ଏକା ଯିବାକଥା ପଡ଼ିଛି ? ଆମେ ଦି'ଜଣ

ଯିବାପାଇଁ ପରା ପିଲାଏ ଚାହୁଁଛନ୍ତି ?" "ମୋର ଗୋଡ଼ ଖରାପ, ମୁଁ କୁଆଡ଼େ ଯିବି ? ମୁଁ ପିଲାଙ୍କୁ ବୁଝେଇଦେବି, ତମେ ଏକା ଯାଇ ବୁଲିଆସ।" ଏପରି ଏକ ସ୍ୱାଭାବିକ ଉତ୍ତର ପାଇବି ବୋଲି ମୁଁ ଆଶା କରିଥିଲି; କାରଣ ପ୍ରମଦାଙ୍କ ଆର୍ଥ୍ରାଇଟିସ୍ ଯୋଗୁଁ ଚାଲିବାରେ କଷ୍ଟ ହୁଏ। ସେଥିପାଇଁ କୁଆଡ଼େ ଯିବାପାଇଁ ସେ ପ୍ରାୟ ଇଚ୍ଛା କରିନଥାନ୍ତି। ମୁଁ ତାଙ୍କୁ ବୁଝାଇ କହିଲି, "ପ୍ଲେନ୍‌କୁ ଯିବାପାଇଁ ଏବଂ ଓହ୍ଲାଇଲା ପରେ ହ୍ୱିଲ୍ ଚେୟାର୍‌ର ବ୍ୟବସ୍ଥା ରହିଛି। ଚାଲିବାକୁ ପଡ଼ିବ ନାହିଁ। ପୁରୀ ଯିବା ଅପେକ୍ଷା ବିଦେଶ ଯିବା ଅଧିକ ସୁବିଧା। ଚାଲ ଦି'ଜଣ କିଛିଦିନ ବୁଲିଆସିବା।" ସେ କହିଲେ, "ହଉ ଦେଖିବା, ସେ ସମୟ ଆସୁ।"

## ଭିସା ପାଇବାରେ ଝମେଲା

ସେଦିନର କଥାବାର୍ତ୍ତା ପରେ ଆମେ ପିଲାଙ୍କ ପାଖକୁ ଯିବାପାଇଁ ଏକପ୍ରକାର ସ୍ଥିର ହୋଇଗଲା। ମୁଁ ଆମର ନିଷ୍ପତ୍ତି ଫୋନ୍‌ଯୋଗେ ଚନ୍ଦନକୁ ଜଣାଇଦେଲି। ତା'ପରେ ଆରମ୍ଭ ହେଲା ଟିକେଟ୍ କିଣା, 'ଭିସା' ପାଇଁ ଦରଖାସ୍ତ ଇତ୍ୟାଦି ଇତ୍ୟାଦି। ଦିଲ୍ଲୀରୁ ଅଷ୍ଟ୍ରୋଭାକୁ ସିଧାସଳଖ ବିମାନସେବା ନଥିବା ଯୋଗୁଁ ସେଠାକୁ ଯିବାକୁ ହେଲେ ଦିଲ୍ଲୀରୁ ଭିଏନା କିମ୍ବା ଫ୍ରାଙ୍କ୍‌ଫର୍ଟ ବିମାନରେ ଯାଇ ସେଠାରୁ କାର୍‌ଯୋଗେ ଯିବାକୁ ପଡ଼େ। ଭୁବନେଶ୍ୱରରେ ଥିବା ସୀତା ଟ୍ରାଭେଲ୍‌ସ୍‌ର ଅଧିକାରୀ ଦୀପ୍ତିଙ୍କ ସହିତ ପରାମର୍ଶ ପରେ ଆମର ଦିଲ୍ଲୀରୁ ଭିଏନାକୁ ଟିକେଟ୍ କଟାଗଲା। ୟୁରୋପିୟାନ୍ କମ୍ୟୁନିଟିରେ ଯେଉଁସବୁ ରାଷ୍ଟ୍ର ସଦସ୍ୟଭୁକ୍ତ ଥିଲେ, ସେଗୁଡ଼ିକ ମଧ୍ୟରେ ଚେକ୍ ରିପବ୍ଲିକ୍ ଅନ୍ତର୍ଭୁକ୍ତ ନଥିଲା। ଦୀର୍ଘଦିନ ଧରି ସୋଭିଏଟ୍ ଋଷଦ୍ୱାରା କବଳିତ ହୋଇ ରହିଥିବା ରାଷ୍ଟ୍ରଗୁଡ଼ିକ ପରବର୍ତ୍ତୀ ଅବସ୍ଥାରେ ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇଥିଲେ ହେଁ ୟୁରୋପୀୟ କମ୍ୟୁନିଟିର ସଦସ୍ୟ ହୋଇନଥିଲେ। ଆଉ ୟୁରୋପୀୟ କମ୍ୟୁନିଟି ସଦସ୍ୟଭୁକ୍ତ ୧୬ଟି ରାଷ୍ଟ୍ର ପାଇଁ 'ସାଙ୍ଗେନ ଭିସା' ନାମରେ ଗୋଟିଏ ଭିସାର ଆବଶ୍ୟକତା ପଡୁଥିଲା। ସେଥିପାଇଁ ଆମର ଗୋଟିଏ ଭିସା ଚେକ୍-ରିପବ୍ଲିକ୍ ପାଇଁ ଓ ଆଉଗୋଟିଏ ସାଙ୍ଗେନ୍ ଭିସାର ଆବଶ୍ୟକତା ପଡ଼ିଲା।

ଦିଲ୍ଲୀରେ ଥିବା ଅସୀମ ଟ୍ରାଭେଲ୍‌ସ୍ ସହିତ ଆମର ଭଲ ସମ୍ପର୍କ ଥିଲା। ସେ ଟ୍ରାଭେଲ୍‌ସ୍‌ର ଅଧିକାରୀ ହରି ସିଂଙ୍କ ସହିତ ମୁଁ ଫୋନ୍‌ଯୋଗେ ଭିସା ସମ୍ପର୍କରେ କଥା ହେଲି। ସେଦିନ ସନ୍ଧ୍ୟାରେ ସେ କହିଲେ, "ଭିସା ପାଇଁ ଦରଖାସ୍ତ କରିବାକୁ ଦିଲ୍ଲୀ ଆସିବାକୁ ପଡ଼ିବ। ଆଜିକାଲି ଭିସା ଦେବା ଉପରେ ବହୁପ୍ରକାର କଟକଣା ଜାରି କରାଯାଇଛି।" ତାଙ୍କ କଥା ଆମକୁ ଅନେକ ପରିମାଣରେ ନିରାଶ କଲା; କାରଣ ଭିସା ପାଇଁ ଥରେ ଦିଲ୍ଲୀ ଯିବା ଓ ବିଦେଶଯାତ୍ରା ପାଇଁ ଆଉଥରେ ଯିବା କେବଳ ବ୍ୟୟସାପେକ୍ଷ

ନଥିଲା, କଷ୍ଟଦାୟକ ମଧ ଥିଲା। ବୋଧେ ପିଲାଙ୍କ ପାଖକୁ ଯାଇହେବ ନାହିଁ ବୋଲି ମନରେ ଏକ ଧାରଣା ଜନ୍ମିଥିଲା। କିନ୍ତୁ ଚନ୍ଦନ ଉଦ୍ୟମରେ ଭିସା ପାଇଁ ବ୍ୟକ୍ତିଗତ ସାକ୍ଷାତକାର ବ୍ୟବସ୍ଥା ଆମପାଇଁ ବାଧତାମୂଳକ ହେଲାନାହିଁ। ଆମେ ସେକଥା ଅସୀମ ଟ୍ରାଭେଲ୍‌ସ୍‌କୁ ଜଣାଇବା ପରେ ଭିସା ମିଳିବା ସୁଗମ ହେଲା। ସେପ୍ଟେମ୍ବର ଛଅ ତାରିଖରେ ଆମର ଦିଲ୍ଲୀରୁ ଭିଏନା ଯିବାପାଇଁ ପ୍ଲେନ୍ ଟିକେଟ୍ ହୋଇଥିଲା। ସେଥିପାଇଁ ଆମେ ଚାରି ତାରିଖରେ ଭୁବନେଶ୍ୱରରୁ ଦିଲ୍ଲୀ ଯିବା ପାଇଁ ସ୍ଥିରକଲୁ।

ପିଲାମାନେ ଯେଉଁଠି ରହୁଥିଲେ ସେଠାରେ ଜୀବନ ଧାରଣର ମାନ ଉତ୍କୃଷ୍ଟ ହେଲେ ହେଁ ଭାରତୀୟ ଖାଦ୍ୟ ସାତସପନ। ଅଷ୍ଟ୍ରୋଭାରୁ ଚାରିଶହ କିଲୋମିଟର ଦୂରରେ ଭିଏନାରେ ଜଣେ କେରଳୀ ବ୍ୟବସାୟୀ ତାଙ୍କ ଦୋକାନରେ ଭାରତୀୟ ପଦାର୍ଥସବୁ ରଖିଥାନ୍ତି ଏବଂ ଅନ୍ୟୂନ ଚାରି ପାଞ୍ଚଟି ରାଷ୍ଟ୍ରରେ ବସବାସ କରୁଥିବା ଭାରତୀୟମାନେ ସେଠାରୁ ପସନ୍ଦ ମୁତାବକ ପଦାର୍ଥ କିଣନ୍ତି। ସେଥିପାଇଁ ଆମେ ଭାବିଲୁ ପିଲାଙ୍କ ପାଇଁ କିଛି ଖାଇବା ଜିନିଷ ନେଇଯିବା। ତେଣୁ ଯେଉଁ ଚିଠା ତିଆରି ହୋଇଥିଲା କ୍ରମେ କ୍ରମେ ତାହା ବଢ଼ିବଢ଼ି ଚାଲିଲା। ଚିଲିକା ଚିଙ୍ଗୁଡ଼ି ସାଙ୍ଗକୁ ବାରିପଦା ମୁଢ଼ି ଓ କେନ୍ଦୁଝର ବଡ଼ି, କଟକ ବାରମଜା, ପୁରୀର ଲଡ୍ଡୁ, ସାଲେପୁର ରସଗୋଲା ଏବଂ ଘରତିଆରି ଆଚାରସବୁ ସେ ଚିଠାରେ ପଶିଲା। ତା' ସାଙ୍ଗକୁ ସିଆଡ୍ଡୁ ବରାଦ ଆସିଥିଲା ସାଙ୍ଗରେ ପୋଟଳ, ଧନିଆପତ୍ର, ଭୃସଙ୍ଗପତ୍ର ନେବାପାଇଁ। ଏସବୁ ଯୋଗାଡ଼ କରିବାକୁ ସାତଦିନରୁ ଅଧିକ ସମୟ ଲାଗିଲା। ସବୁତକ ସଂଗ୍ରହ ହୋଇଗଲା, ହେଲେ ତାକୁ ନେବୁ କେମିତି ? ଆମ ଲଗେଜ୍ ଷାଠିଏ କେଜିରୁ ଅଧିକା ହୋଇଥିଲେ ହେଁ ଭୁବନେଶ୍ୱର ବିମାନବନ୍ଦରରେ ବ୍ୟକ୍ତିଗତ ପରିଆରା ଯୋଗୁଁ କିଛି ଅସୁବିଧା ହେଲାନାହିଁ। କିନ୍ତୁ ଆନ୍ତର୍ଜାତିକ ବିମାନସେବାରେ ଜଣପିଛା କୋଡ଼ିଏ କେଜି ମାଗଣାରେ ନେବା ପାଇଁ ଅନୁମତି ଥିବାରୁ ଆମ ପାଇଁ ଯେଉଁ ସମସ୍ୟା ସୃଷ୍ଟି ହୋଇଥିଲା ଆମେ ଦିଲ୍ଲୀରୁ ଗୋଟିଏ ହାଣ୍ଡବ୍ୟାଗ୍ କିଣି ପନ୍ଦର କିଲୋ ପଦାର୍ଥ ସେଥିରେ ରଖିଦେବାରୁ ସମସ୍ୟା ହାଲୁକା ହୋଇଗଲା।

## ଦିଲ୍ଲୀରୁ ବିମାନରେ ଭିଏନା ଯାତ୍ରା

ଦିଲ୍ଲୀରୁ ଭିଏନା ଆନ୍ତର୍ଜାତିକ ବିମାନ ରାତି ସାଢ଼େଦଶଟାରେ ଛାଡ଼େ। ବିମାନ ଛାଡ଼ିବାର ଦୁଇଘଣ୍ଟା ପୂର୍ବରୁ ବିମାନବନ୍ଦରରେ ପହଞ୍ଚିବାର ଆବଶ୍ୟକତା ଥିବାରୁ ଆମେ ଶୀଘ୍ର ରାତ୍ରିଭୋଜନ ଶେଷ କରି ସନ୍ଧ୍ୟା ସାଢ଼େସାତଟା ବେଳେ ଘର ଛାଡ଼ିଲୁ। ଆମର ସମସ୍ତ ପ୍ରକାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଡକ୍ଟର ଜୟଚନ୍ଦ୍ର ଦାସ, ତାଙ୍କ ପତ୍ନୀ କାଞ୍ଚନା ଓ କନ୍ୟା ପଲ୍ଲବୀ ଆମକୁ ବିଦାୟ ଦେବା ପାଇଁ ବିମାନବନ୍ଦରକୁ ଯାଇଥିଲେ।

ମୋର ଧର୍ମପତ୍ନୀଙ୍କର ଆଣ୍ଠୁରେ ସମସ୍ୟା ଥିବାରୁ ବିମାନବନ୍ଦରରେ ହୁଇଲ୍‌ଚେୟାର ଯୋଗାଇଦେବା ପାଇଁ ଆଗରୁ ଅନୁରୋଧ କରାଯାଇଥିଲା । ସେହି ଅନୁଯାୟୀ ଇନ୍ଦିରାଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରର ଜଣେ କର୍ମଚାରୀ ହୁଇଲ୍ ଚେୟାରଟିଏ ନେଇ ଆମ ପାଇଁ ଅପେକ୍ଷା କରିଥିଲେ ଏବଂ ଆମେ ପହଞ୍ଚିବା ମାତ୍ରେ ପ୍ରମଦାଙ୍କୁ ସେଥିରେ ବସାଇ ଆମକୁ ଏକ ସ୍ୱତନ୍ତ୍ର ଚାନେଲ୍ ବାଟେ ବିମାନରେ ଛାଡ଼ିଦେଇ ଆସିଲେ । ବିମାନ ଭିତରେ ଦୀର୍ଘ ସାତଘଣ୍ଟା ସମୟ କିପରି କଟିବ ସେଥିପାଇଁ ମନରେ ଅନେକ ଆଶଙ୍କା ଥିଲା । ମାତ୍ର ବିମାନ ଉଡ଼ିବା ଆରମ୍ଭ ହେବା ପରେ ସେ ଆଶଙ୍କା ଧୀରେ ଧୀରେ ଉଭେଇଗଲା । ନିର୍ଦ୍ଧାରିତ ସ୍ଥାନୀୟ ସମୟ ସକାଳ ସାଢ଼େ ଆଠଟାରେ ବିମାନ ଭିଏନା ବିମାନବନ୍ଦରରେ ଅବତରଣ କଲା । ଆମେ ବିମାନରୁ ବାହାରିଲା ବେଳକୁ ମୋ ପତ୍ନୀଙ୍କ ପାଇଁ ହୁଇଲ୍ ଚେୟାର୍ ସହିତ ସହାୟକ ଅପେକ୍ଷା କରି ରହିଥିଲେ । ଶାରୀରିକ ଭିନ୍ନକ୍ଷମମାନଙ୍କୁ ବିଦେଶ ରାଷ୍ଟ୍ରରେ ଲୋକେ ଯଥେଷ୍ଟ ସମ୍ମାନ ଦିଅନ୍ତି । ବିମାନବନ୍ଦରଠାରୁ ଆରମ୍ଭ କରି ସହର ବଜାର ଏବଂ ଗାଡ଼ି ପାର୍କିଂ ପାଇଁ ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦିଆଯାଏ । ବିମାନବନ୍ଦରରେ ଇମିଗ୍ରେସନ୍ ଚେକ୍, ପାସପୋର୍ଟ ଚେକ୍ ଇତ୍ୟାଦି ପାଇଁ ସ୍ୱତନ୍ତ୍ର କାଉଣ୍ଟର୍ । ଆମେ ଯାଇ ତଳେ ପହଞ୍ଚିଲା ବେଳକୁ କନ୍‌ଭେୟର୍ ବେଲ୍ଟରେ ଆମ ବ୍ୟାଗେଜ୍ ଆସିଯାଇଥିଲା । ଆମ ମନରେ ଯେଉଁ ଆଶଙ୍କା ଥିଲା, ଯଦି ଆମ ବ୍ୟାଗ୍ ଖୋଲିବାକୁ କହିବେ, ତେବେ ଏତେ କଷ୍ଟରେ ପିଲାଙ୍କ ପାଇଁ ନେଇଥିବା ଖାଇବା ଜିନିଷସବୁ ନିଶ୍ଚିତଭାବରେ ସେମାନେ ଫୋପାଡ଼ିଦେବେ । ମାତ୍ର ଏକ ଅଦୃଶ୍ୟ ଶକ୍ତି ଆମ ଆଶଙ୍କାକୁ ଦୂର କରିଦେଇଥିଲା ।

## ତିନିଘଣ୍ଟାରେ ଚାରିଶହ କିଲୋମିଟର

ଲାଉଞ୍ଜ୍ ବାହାରେ ପୁଅ ଚନ୍ଦନ ଅପେକ୍ଷା କରିଥିଲା । ଆମେ ବାହାରକୁ ଆସି ପ୍ରଥମେ ଦାନ୍ତ ଘଷିଲୁ । ବୋହୂ ଘରୁ ପୁରି, ଆଳୁଭଜା, ମିଠାସବୁ ପ୍ୟାକ୍ କରି ପଠାଇଥିଲା । ଗାଡ଼ିରେ ବସୁ ବସୁ ମୁଁ ପ୍ୟାକେଟ୍ ଖୋଲିବା ଆରମ୍ଭ କରିଦେଲି । ସେତେବେଳକୁ ସେଠାକାର ସମୟ ସାଢ଼େନଅଟା ହୋଇଥିଲା । ଭିଏନାରୁ ଅଷ୍ଟ୍ରୋଭାର ଦୂରତ୍ୱ ଚାରିଶହ କିଲୋମିଟରରୁ ଅଧିକ । ମୁଁ ଭାବିଥିଲି ବୋଧହୁଏ ଘରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ସାତଟା ହୋଇଯିବ; କାରଣ ଆମ ମାପରେ ଚାରିଶହ କିଲୋମିଟର ରାସ୍ତା କାରରେ ଗଲେ ହାରାହାରି ଆଠ ନଅଘଣ୍ଟା ସମୟ ଆବଶ୍ୟକ ପଡ଼େ । ମାତ୍ର ସେଠାକାର ରାସ୍ତା ଖୁବ୍ ଭଲ, ତା' ସାଙ୍ଗକୁ ସ୍କୋଡ଼ା କମ୍ପାନୀର ଅକ୍ଟାଭିଆ ଗାଡ଼ି । ଶହେକୋଡ଼ିଏ କିଲୋମିଟରରୁ ଅଧିକ ବେଗରେ ଯାଉଥିଲେ ବି ଜଣାପଡୁନଥିଲା । ତଥାପି କୌତୂହଳବଶତଃ ଚନ୍ଦନକୁ ପଚାରିଲି, “ଆମେ କେତେବେଳେ ପହଞ୍ଚିବା ?” ସେ କହିଲା, “ବାଟରେ ଇମିଗ୍ରେସନ୍ ଚେକ୍‌ଅପ୍ ପାଇଁ ଦଶପନ୍ଦର ମିନିଟ୍

ସମୟ ଲାଗିପାରେ। ତେବେ ଯାହହେଲେ ବି ସାଢ଼େ ଗୋଟାଏରୁ ଦୁଇଟା ଭିତରେ ଆମେ ପହଞ୍ଚିଯିବା।"

ଅଷ୍ଟ୍ରିଆ ଓ ଚେକ୍‌ରିପବ୍ଲିକ୍ ସୀମାରେ ଦୁଇ ଦେଶର ଚେକ୍‌ଗେଟ୍ ଥିଲା। ଗୋଟିଏ ଦେଶରୁ ଆର ଦେଶକୁ ପ୍ରବେଶ କରିବାକୁ ହେଲେ ଭିସା ସହିତ ଇମିଗ୍ରେସନ୍ ଚେକ୍‌ର ଆବଶ୍ୟକତା ପଡୁଥିଲା। ପ୍ରତିଦିନ ଶହଶହ ଗାଡ଼ି ଯାତାୟାତ; କିନ୍ତୁ ସବୁ କାମ ଶୃଙ୍ଖଳିତ ଭାବରେ ହେଉଥିବାରୁ ସେଠାରେ କାହାର କିଛି ଅସୁବିଧା ହେଉ ନଥିଲା। ଆମ ଦେଶ ଭଳି ସବୁକାମ କରିବା ପାଇଁ ହାତଗୁଞ୍ଜା ଦେବାକୁ ପଡୁନଥିଲା। ଆମର କାଗଜପତ୍ର ସବୁ ଠିକ୍ ଥିବାରୁ କେବଳ ପାସପୋର୍ଟରେ ମୋହରଟିଏ ମାରିଦେଇ ଚେକ୍‌ପୋଷ୍ଟ୍‌ର ଅଧିକାରୀ ଆମକୁ ଚେକ୍ ରିପବ୍ଲିକ୍ ସୀମାଭିତରେ ପ୍ରବେଶ ପାଇଁ ଅନୁମତି ଦେଇଦେଲେ। ବାଟରେ ଗୋଟିଏ ପେଟ୍ରୋଲ୍ ପମ୍ପ୍‌ରେ ଆମେ କିଛି ସମୟ ପାଇଁ ଅଟକିଲୁ। ଗାଡ଼ି ଡ୍ରାଇଭର୍ ଖୁବ୍ ଭୋର୍‌ରୁ ଭିଏନା ଯାଇଥିବାରୁ କଫି ପିଇବା ପାଇଁ ଗାଡ଼ି ଅଟକାଇଥିଲେ। ପେଟ୍ରୋଲ୍‌ପମ୍ପ୍‌ଟି କେବଳ ପେଟ୍ରୋଲ୍ ବିକ୍ରି ପାଇଁ ଉଦ୍ଦିଷ୍ଟ ନଥିଲା। ସେଠାରେ ଥିବା କାଫେଟେରିଆରେ ସବୁପ୍ରକାର ଡ୍ରିଙ୍କ୍ ସହିତ ନାନା ପ୍ରକାର ସ୍ନାକ୍ସ ସବୁ ଗଚ୍ଛିତ ଥିଲା। ପାଖରେ ଉଭୟ ପୁରୁଷ ଓ ମହିଳାଙ୍କ ପାଇଁ ଟଏଲେଟ୍ ରୁମ୍। ପାଶ୍ଚାତ୍ୟ ରାଷ୍ଟ୍ରର ସାଧାରଣ ନିୟମ ଅନୁଯାୟୀ ଜଣେ ଡ୍ରାଇଭର ଦୁଇଶହ କିଲୋମିଟର ଗାଡ଼ି ଚଳାଇବା ପରେ ବିଶ୍ରାମ ନେବା କଥା। ଇଚ୍ଛା ନଥିଲେ ବି ଚନ୍ଦନ ଅନୁରୋଧରେ ମୁଁ ଆଉ ପ୍ରମଦା ଦୁଇଟି ଥଣ୍ଡା କୋକାକୋଲା ପିଇଲୁ।

ରାସ୍ତାରେ ଗଲାବେଳେ ମାଇଲ୍ ମାଇଲ୍ ଧରି ଅଙ୍ଗୁର କ୍ଷେତ ଦେଖିବାକୁ ମିଳିଲା। ଚେକ୍ ରିପବ୍ଲିକ୍ ଅଙ୍ଗୁର ରପ୍ତାନୀକାରୀ ରାଷ୍ଟ୍ରଭାବରେ ସୁପରିଚିତ ହୋଇ ନଥିଲାବେଳେ ଏତେ ପରିମାଣରେ ଅଙ୍ଗୁର ଫଳାଇ କ'ଣ କରୁଛନ୍ତି ? ଚନ୍ଦନ ମୋ ମନର ସନ୍ଦେହକୁ ଅନୁମାନ କରି କହିଲା, "ଏସବୁ ଅଙ୍ଗୁରରୁ ମଦ ପ୍ରସ୍ତୁତ କରାଯାଏ। ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ମଦ ଏକ ସାଧାରଣ ପାନୀୟ ଭାବରେ ସ୍ୱୀକୃତ। ଖାଦ୍ୟ ସାଙ୍ଗରେ ଲୋକେ ପାଣି ନପିଇ ମଦ ପିଇଥାଆନ୍ତି।" ବାଟରେ ଗୋଟାଏ ଦୁଇଟା ସ୍ଥାନରେ ଗଦା ଗଦା କଖାରୁ ଥିବାର ଦେଖିଲି। କଥାବାର୍ତ୍ତାରୁ ବୁଝିଲି ସେ ଦେଶର ଚାଷୀମାନେ କଠିନ ପରିଶ୍ରମୀ। ସେମାନେ ଶୀତଋତୁ ବ୍ୟତୀତ ଅନ୍ୟ ସମୟରେ ଜମିକୁ ଶସ୍ୟଶ୍ୟାମଳା କରିଥାଆନ୍ତି। ଶୀତଦିନେ ତୁଷାରପାତ ହେଉଥବାରୁ ଅକ୍ଟୋବରରୁ ମାର୍ଚ୍ଚ ମାସ ପର୍ଯ୍ୟନ୍ତ କିଛି ଫସଲ ଉତ୍ପାଦନ ହୋଇପାରେ ନାହିଁ।

ସତକୁ ସତ ଅପରାହ୍ନ ଦୁଇଟା ପୂର୍ବରୁ ଆମେ ଅଷ୍ଟ୍ରୋଭାରେ ପହଞ୍ଚିଗଲୁ। ଏକ ତିନିମହଲା ଘର ସାମନାରେ ଆମ ଗାଡ଼ି ଯାଇ ରହିଲା। ଗେଟ୍ ପାଖରେ ଗାଡ଼ି ପହଞ୍ଚିଲା ମାତ୍ରେ ଗେଟ୍‌ଟି ମନକୁ ମନ ଖୋଲିଯାଇ ଗାଡ଼ି ଭିତରେ ପଶିଲା ପରେ ପୁଣି ବନ୍ଦ ହୋଇଗଲା। ମୁଁ ତା'ର ରହସ୍ୟ ପ୍ରଥମେ ବୁଝି ପାରିନଥିଲି। କିନ୍ତୁ ପରେ ବୁଝିଲି, ଗେଟ୍‌ରେ

ଥିବା ତମାମ ଚଢ଼ିଭିତରୁ ରିମୋଟ୍ ମାଧ୍ୟମରେ ନିୟନ୍ତ୍ରଣ କରାଯାଉଥିବାରୁ ଗେଟ୍ ଆପେ ଆପେ ଖୋଲେ ଓ ବନ୍ଦ ହୁଏ। ମାନବଶକ୍ତିର ଅଭାବ ଯୋଗୁଁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଇଲେକ୍‌ଟ୍ରୋନିକ୍ ଡିଭାଇସ୍ ଜରିଆରେ ସୁବକଥାକୁ ନିୟନ୍ତ୍ରଣ କରାଯାଏ। ଆମ ଦେଶରେ କୋଉଠି କୋଉଠି ଅବଶ୍ୟ ଏପରି ଆଧୁନିକ ଜ୍ଞାନକୌଶଳ ପ୍ରୟୋଗ କରାଚାଲାଣି। ତଥାପି ସାଧାରଣ ନାଗରିକମାନଙ୍କ ପାଇଁ ଏହା ଏବେବି ସପନ ହୋଇ ରହିଛି।

ତିନିମହଲା କୋଠାରେ ଛଅଟି କ୍ୱାର୍ଟର୍। ମିତ୍ତଲ କମ୍ପାନୀ ପକ୍ଷରୁ କମ୍ପାନୀର ଛଅଜଣ ଭାରତୀୟ ଅଫିସରଙ୍କୁ ସେଠାରେ ରଖାଯାଇଥିଲା। ଆମେ ଆଟାଚିଟିଏ ଲେଖାଏ ଧରି ଶିଡ଼ିରେ ଉପରକୁ ଉଠିଲୁ। ଚନ୍ଦନ କ୍ୱାର୍ଟର୍‌ଟି ଉପର ମହଲାରେ ଥିଲା। ଘର ଭିତରେ ଚାରିଆଡ଼େ ନରମ ଗାଲିଚା। ଏପରିକି ବାଥରୁମ୍ ମଧ୍ୟ ସେଥିରୁ ବାଦ୍ ଯାଇନଥିଲା। ଅନ୍ୟାନ୍ୟ ବିଦେଶରାଷ୍ଟ୍ର ଭଳି ସେଠାରେ ସେଇ ଏକା ପଦ୍ଧତି। ଝାଡ଼ା ଯାଇ ପାଣି ବଦଳରେ କାଗଜରେ ମଳଦ୍ୱାର ପରିଷ୍କାର କରିବାକୁ ପଡ଼ିଲା। ବାଥ୍‌ରୁମ୍‌ରେ ତିନିଫୁଟ୍‌ରେ ତିନିଫୁଟ୍ ମାପର କାଚ କ୍ୟାପ୍‌କେଟ୍। ତା'ରି ଭିତରେ ଥିଲା ଥଣ୍ଡା ଗରମ ଜଳ ବ୍ୟବସ୍ଥା ଥିବା ଟ୍ୟାପ୍। ବାଁ ପଟକୁ ମୋଡ଼ିଲେ ଥଣ୍ଡାପାଣି ଆଉ ଡାହାଣପଟକୁ ଗରମ ପାଣିର ବ୍ୟବସ୍ଥା ଥିଲା। ପ୍ରଥମେ ଟିକେ ଟିକେ ଅଡୁଆ ଅଡୁଆ ଲାଗିଲା। ମାତ୍ର କିଛିସମୟ ପରେ ସବୁକିଛି ଠିକ୍ ହୋଇଚାଲା। ଅନୁଭୂତି ଓ ଅଭିଜ୍ଞତାରୁ ଶିକ୍ଷାଲାଭ ହୁଏ ବୋଲି ଯାହା ଶୁଣିଥିଲି ତା' ସେଠାରେ ଅନୁଭବ କଲି।

ବାଥ୍‌ରୁମ୍‌ରୁ ବାହାରିଲା ବେଳକୁ ଡାଇନିଂ ଟେବୁଲ୍ ଉପରେ ଖାଇବା ବଢ଼ା ହୋଇଥିଲା। ସକାଳେ ହେଭି ବ୍ରେକ୍‌ଫାଷ୍ଟ୍ ହୋଇଥିବାରୁ ମଧ୍ୟାହ୍ନଭୋଜନ ପାଇଁ ବିଶେଷ ଆଗ୍ରହ ନଥିଲା। କିନ୍ତୁ ଟେବୁଲ୍ ଉପରେ ଫ୍ରାଏଡ୍ ରାଇସ୍, ଆଳୁକୋବି କଷା, ଦହି-ବାଇଗଣ, ଭେଣ୍ଡିଭଜା ଦେଖି ମୁଁ ଖାଇବାକୁ ବସିଗଲି। "ଆମର ମିଳୁଥିବା ପରିବା ବିଦେଶ ରାଷ୍ଟ୍ରରେ କୁଆଡୁ ଆସିଲା" ପଚାରିଲାରୁ ବୋହୂ କହିଲା, "ଆପଣମାନେ ଆସିବେ ବୋଲି ଆମେ ଭିଏନା ଯାଇ ଏସବୁ ଆଣିଥିଲୁ। ଅଷ୍ଟ୍ରୋଭାରେ ଏ ପରିବା ସାତସପନ। ଆମକୁ ଆଳୁ, ପିଆଜ, ଫୁଲକୋବି ଖାଇ ଖାଇ ଅଡୁଆ ଲାଗିଲାଣି। ଆମେ ଚିକେନ୍ ମଟନ୍ ଖାଉଛୁ ବୋଲି ଚଳିଯାଉଛି।।

ଖାଇସାରି ମୁଁ ଘଣ୍ଟାଏ ଆରାମରେ ଶୋଇଗଲି। ନିଦ ଭାଙ୍ଗିଲାବେଳକୁ ସେଠାକାର ଘଣ୍ଟାରେ ଛଅଟା ବାଜିଥିଲା। ଯା ଭିତରେ କେତେବେଳେ ଅସରାଏ ବର୍ଷା ହୋଇଯାଇଥିଲା ମୁଁ ଜାଣିପାରି ନଥିଲି। ସାଧାରଣତଃ ଜୁଲାଇ ମାସରେ ଏଠାରେ ପାଗ ଅନୁକୂଳ ଥାଏ। ମାତ୍ର ବର୍ଷା ହେବାରୁ ପାଗ ବିଗିଡ଼ି ଗଲା। ମର୍କ୍ୟୁରୀ ନଅ ଡିଗ୍ରୀକୁ ଖସିଆସିଲା। ମୁଁ କିଛି ବୁଝିପାରି ନଥିଲି। ସକାଳେ ଆସିଲାବେଳେ ପାଗ ଖୁବ୍ ଭଲ ଥିଲା, ଖରା ହେବାରୁ ମୁଲାୟମ ଲାଗୁଥିଲା; କିନ୍ତୁ ଅସରାଏ ବର୍ଷା ପରେ ଥଣ୍ଡା ମାଡ଼ିଆସିଲା। ଆମର ଡିନେଟ

ଶେଷ କିମ୍ବା ଜାନୁୟାରୀ ଆରମ୍ଭରେ ଉତ୍ତାପ ନଅ ଡିଗ୍ରୀକୁ ଖସିଯାଏ। ବେଳେବେଳେ ହାଫ୍ ସୁଏଟରରେ କାମ ଚଳିଯାଏ। ହେଲେ ସେଠାରେ ଥଣ୍ଡା କେମିତି ଅସହ୍ୟ ମନେହେଲା। ଆମେ ଯେଉଁ ଗରମ ପୋଷାକ ସାଙ୍ଗରେ ନେଇଥିଲୁ ସେଠାକାର ଶୀତ ତୁଳନାରେ ସେସବୁ ଯଥେଷ୍ଟ ନଥିଲା। କଥା ହେଲା ସେ ଶୀତ ସମ୍ଭାଳିଲା ଭଳି କିଛି ଗରମ ପୋଷାକ କିଣିବାକୁ ହେବ।

ମାର୍କେଟ ଯିବା ପୂର୍ବରୁ ମୁଁ ଚେକ୍ ରିପବ୍ଲିକ୍ ସମ୍ପର୍କରେ ପ୍ରଥମେ କିଛି ତଥ୍ୟ ସଂଗ୍ରହ କରିବାକୁ ଚାହିଲି; କାରଣ ବିଦେଶ ରାଷ୍ଟ୍ରକୁ ଗଲେ ସେ ଦେଶର ଇତିହାସ, ଲୋକଙ୍କ ହାବଭାବ, ରୀତିନୀତି, ଚାଲିଚଳଣ ବିଷୟରେ କିଛି ଜ୍ଞାନ ଅର୍ଜନ କରିବା ବୁଦ୍ଧିମାନର କାର୍ଯ୍ୟ ହେବ ବୋଲି ମୁଁ ଅନେକ ଲୋକଙ୍କଠାରୁ ଶୁଣିଥିଲି। ସେଥିପାଇଁ ବହିଟିଏ ମଗାଇ ପଢ଼ିଲି।

## ଅଷ୍ଟ୍ରୋଭା ସେଣ୍ଟର୍‌ରେ ମାର୍କେଟିଂ

ଆମେ ଶୁକ୍ରବାରଦିନ ଅଷ୍ଟ୍ରୋଭାରେ ପହଞ୍ଚିଥିଲୁ। ପରଦିନ ଚନ୍ଦନର ଅଫିସ୍ ବନ୍ଦ ଥିବାରୁ ସକାଳେ ଜଳପାନ ପର୍ବ ଶେଷ କରି ଅଷ୍ଟ୍ରୋଭାର ମାର୍କେଟ ସେଣ୍ଟର୍‌କୁ ଯିବା ପାଇଁ ସ୍ଥିର ହୋଇଥିଲା। ସକାଳୁ ନିତ୍ୟକର୍ମ ସରିଲାବେଳକୁ ସମୟ ଏଗାରଟା ଟପି ଯାଇଥିଲା। କଥା ହେଲା, ଖରାବେଳେ ଘରକୁ ନଫେରି ସେଣ୍ଟର୍ ଭିତରେ ସ୍ନାକ୍ସରେ ମଧ୍ୟାହ୍ନ ଭୋଜନ ସାରିଦେବା। ସେଦିନ ଶନିବାର ହୋଇଥିବାରୁ ଚିରାଚରିତ ଭାବରେ ମୋର କୌଣସି ସମସ୍ୟା ନଥିଲା। ଖରାବେଳେ କିଛି ଫଳ କିମ୍ବା ଜୁସ୍ ମୋ ପାଇଁ ଯଥେଷ୍ଟ ଥିଲା।

ଦୀର୍ଘ ପଚିଶିବର୍ଷରୁ ଅଧିକ କାଳ ହେଲା ମୁଁ ମଧ୍ୟାହ୍ନଭୋଜନ ତ୍ୟାଗ କରିଛି। ତା'ବଦଳରେ ଯେଉଁସ୍ଥାନରେ ଯେଉଁ ଫଳ ମିଳେ ସେଥିରୁ କିଛି ଖାଇଦେଲେ ଚଳିଯାଏ । ଭାରତବର୍ଷର ସର୍ବତ୍ର ସବୁ ଋତୁରେ କିଛି ନା କିଛି ମିଳୁଥିବାରୁ ବାହାରକୁ ଗଲେ ମଧ କିଛି ଅସୁବିଧା ହୁଏ ନାହିଁ।

ଚନ୍ଦନକୁ କମ୍ପାନୀ ପକ୍ଷରୁ ମିଳିଥିଲା ଅକ୍ଟାଭିଆ ଗାଡ଼ି। ଅକ୍ଟାଭିଆ, ସ୍କୋଡ଼ା କମ୍ପାନୀ ଦ୍ୱାରା ନିର୍ମିତ ଏବଂ ସେ କମ୍ପାନୀର ମୁଖ୍ୟ କାରଖାନା ଓ କାର୍ଯ୍ୟାଳୟ ଚେକ୍ ରିପବ୍ଲିକ୍‌ରେ ଥିବାରୁ ସେଠାକାର ବିତ୍ତଶାଳୀ ବ୍ୟକ୍ତିମାନେ ମୁଖ୍ୟତଃ ସେ ଗାଡ଼ି ବ୍ୟବହାର କରିଥାନ୍ତି। ସେ ଦେଶର କାନୁନ୍ ଅନୁଯାୟୀ ଛୋଟ ପିଲାଙ୍କ ପାଇଁ ସ୍ୱତନ୍ତ୍ର ବେବିସିଟ୍‌ର ବ୍ୟବସ୍ଥା ଥାଏ। ଗାଡ଼ିର ପଛ ସିଟରେ ସେ ବେବିସିଟ୍‌କୁ ଫିଟ୍ କରିଦିଆଯାଏ ଏବଂ ସେଥିରେ ପିଲାଙ୍କୁ ବସାଇ ବେଲ୍ଟ ଭିଡ଼ିଦିଆଯାଏ। ସୁରକ୍ଷା ଦୃଷ୍ଟିରୁ ଏପରି ବ୍ୟବସ୍ଥାକୁ ବାଧ୍ୟତାମୁଳକ

କରାଯାଇଛି । ଆମ ଦେଶରେ ଆଇନରେ ସବୁ ବ୍ୟବସ୍ଥା ଥିଲେ ବି କାର୍ଯ୍ୟକ୍ଷେତ୍ରରେ ସବୁ ଢିଲା । ଗାଡ଼ିରେ ବସିଲେ ଡ୍ରାଇଭର ସମେତ ଅନ୍ୟ ଆରୋହୀମାନେ ସିଟ୍‌ବେଲ୍ଟ ବାନ୍ଧିବା ବାଧ୍ୟତାମୂଳକ ବୋଲି ଆଇନ୍‌ରେ ଅଛି, ହେଲେ ଶତକଡ଼ା କେତେଭାଗ ଡ୍ରାଇଭର କିମ୍ବା ପାସେଞ୍ଜର ସେକଥାକୁ ମାନୁଛନ୍ତି ? କିଛିବର୍ଷ ତଳେ ଦିଲ୍ଲୀର ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରରୁ ମୁଁ ସହର ଭିତରକୁ ଯିବା ପାଇଁ ବିମାନବନ୍ଦର ପାର୍କିଂରୁ ଆମ୍ବାସାଡର ଟ୍ୟାକ୍ସିଟିଏ ଭଡ଼ାରେ ନେଇଥିଲି । ଅଳ୍ପବାଟ ଗଲାପରେ ଟ୍ୟାକ୍ସିର ଡ୍ରାଇଭର ଗୋଟିଏ ରବର ଫିତା ମୋ କାନ୍ଧରେ ପକାଇଦେଲା; କାରଣ ପଚାରିଲାରୁ କହିଲା, "ସାହବ୍, ଦିଲ୍ଲୀ କେ ପୁଲିସ୍ ଲୋଗ୍ ବହୁତ ତଙ୍ଗ୍ କରତେ ହେଁ । ଉନ୍‌ସେ ବଚ୍‌ନେ କେ ଲିଏ ହମ୍ ଇସ୍‌କୋ ଇସ୍ତେମାଲ୍ କରତେ ହେଁ ।" ମୁଁ ଦେଖିଲାବେଳକୁ ସେ ମଧ୍ୟ ବେଲ୍ଟ ନାମଧାରୀ ଖଣ୍ଡେ ଫିତା କାନ୍ଧରେ ପକାଇଛି । ମୁଁ ତାକୁ କହିଲି, ଦୁର୍ଘଟଣାବେଳେ ଜୀବନ ବଞ୍ଚାଇବା ପାଇଁ ଗାଡ଼ିରେ ସିଟ୍‌ବେଲ୍ଟ ବାନ୍ଧିବା କଥା । ଏପରି ରବର ଫିତା କ'ଣ ସେ କାମ କରିପାରିବ ? ସେ ଦୁଃଖିତ ହୋଇ କହିଲା, "ଯେ ପୁରାନି ଆମ୍ବାସାଡାର୍ ଗାଡ଼ି ମେଁ ଔର ନୟିବାଲି ବେଲ୍ଟ କହାଁସେ ଆଏଗା ? ମେ ମଜବୁର୍ ହୁଁ । ରୋଜୀ ରୋଟି କେ ଲିୟେ ୟହ ଗାଡ଼ି ଚଲାନା ପଡ଼ତା ହେ । ଆପ୍ ବଡ଼ା ଆଦମୀ ହେ, ହମାରା କସୁର କେ ଲିୟେ ମାଫ୍ କରଦେନା ।" ଡ୍ରାଇଭର କଥାରେ ମୋର କିଛି ଜବାବ୍ ନଥିଲା । ମୁଁ ଭାବିଲି ଭାରତବର୍ଷରେ ସବୁ ସମ୍ଭବ । ଏ ଦେଶକୁ କେବଳ ଭଗବାନ ହିଁ ବଞ୍ଚାଇବେ ।

ଚନ୍ଦନର ଘରଠାରୁ ଅକ୍ଷ୍ଲୋଭା ସେଣ୍ଟରର ଦୂରତ୍ୱ ପ୍ରାୟ କୋଡ଼ିଏ କିଲୋମିଟର ହେବ । ଆମେ ପନ୍ଦର ମିନିଟ୍‌ରେ ସେଠାରେ ପହଞ୍ଚିଗଲୁ । ବିଦେଶ ରାଷ୍ଟ୍ରମାନଙ୍କର ରାସ୍ତାରେ ଗାଡ଼ି ପାର୍କିଂ ପାଇଁ ଅନେକ ସମୟରେ ସମସ୍ୟା ଦେଖାଦେଇଥାଏ; କାରଣ ସବୁ ଗାଡ଼ି ପାର୍କିଂ ପାଇଁ ଥିବା ନିର୍ଦ୍ଦିଷ୍ଟ ସ୍ଥାନରେ ରଖିବାକୁ ପଡ଼େ । ସମସ୍ତେ ପ୍ରଚଳିତ ଆଇନ୍‌କୁ ସମ୍ମାନ ଦେଉଥିବାରୁ ଖାଲି ପାର୍କିଂ ଜାଗା ଖୋଜି ଗାଡ଼ି ରଖନ୍ତି । ସେସବୁ ଦେଶରେ ଶାରୀରିକ ଅକ୍ଷମ ଲୋକଙ୍କ ପାଇଁ ବିଶେଷ ସୁବିଧା ଉପଲବ୍ଧ ହୁଏ । ପାର୍କିଂ ସ୍ଥାନରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ଥାଏ । ସେଠାରେ ଅନ୍ୟ କେହି ଗାଡ଼ି ରଖିଲେ ଆଇନ୍ ଅନୁଯାୟୀ ଦଣ୍ଡିତ ହୁଅନ୍ତି । ଆମେ ନିର୍ଦ୍ଦିଷ୍ଟ ସ୍ଥାନରେ ଗାଡ଼ି ରଖି ମାର୍କେଟ୍ ସେଣ୍ଟର ଭିତରକୁ ପଶିଲୁ ।

ଅକ୍ଷ୍ଲୋଭା ସେଣ୍ଟ୍ରାଲ୍ ମାର୍କେଟ୍‌ର ପରିକଳ୍ପନା ଅତ୍ୟନ୍ତ ମନୋମୁଗ୍ଧକର ଥିଲା । ଚାରିଆଡ଼େ ବହୁତଳ ପ୍ରାସାଦ, ମଝିରେ ଖୋଲା ଜାଗା । ବେଶ୍ ପରିଷ୍କାର ପରିଚ୍ଛନ୍ନ । ପର୍ଯ୍ୟଟକମାନଙ୍କ ବସିବା ପାଇଁ ଦୁଇ ଲାଇନ୍‌ର ସିମେଣ୍ଟ୍ ବେଞ୍ଚ । ମଝିରେ ପାଣି ଫୁଆରା । ଫୁଆରାଗୁଡ଼ିକରୁ କୋଡ଼ିଏ ଫୁଟ ଉଚ୍ଚରେ ପାଣି ବାହାରୁଥିଲେ ବି ସାଙ୍ଗେ ସାଙ୍ଗେ ପାଣି କୁଆଡ଼େ ଚାଲିଯାଉଥିଲା ଜଣା ପଡୁ ନ ଥିଲା । ସାନ ସାନ ପିଲାମାନେ ସେଠାରେ ଖେଳି

ଟଙ୍କା କରୁଥିଲେ। ପାଖରେ ପାରାଭଳି କେତେ ଜାତିର ପକ୍ଷୀ ବୁଲୁଥିଲେ। ସେମାନଙ୍କୁ ଖାଇବାକୁ ଦେବା ପାଇଁ ପାଖରେ ଲୋଫ୍ (ସାନ ପାଉଁରୁଟି) ବିକ୍ରି ହେଉଥିଲା। ଅନେକ ପର୍ଯ୍ୟଟକ ସେସବୁ କିଣି ଚଢ଼େଇମାନଙ୍କୁ ଖୁଆଇ ଆନନ୍ଦ ଅନୁଭବ କରୁଥିଲେ।

ଗାଡ଼ିରୁ ଓହ୍ଲାଇ ଆମେ ଗୋଟିଏ ଦୋକାନ ଭିତରେ ପଶିଲୁ। ଦୋକାନଟି ଆମର ବିଗ୍‌ବଜାର ଭଳି ହେବ। ସବୁ କିସମର ଗ୍ରାହକଙ୍କ ମନକୁ ପସନ୍ଦ ହେଲାଭଳି ପଦାର୍ଥମାନ ସେଠାରେ ରହିଥିଲା। ଆମେ ସାଙ୍ଗରେ ନେଇଥିବା ଗରମପୋଷାକ ସେଠାକାର ଶୀତ ପାଇଁ ଯଥେଷ୍ଟ ନୁହେଁ ବୋଲି ଦର୍ଶାଇ ଚନ୍ଦନ ମୋ ପାଇଁ ଗୋଟିଏ ଜ୍ୟାକେଟ୍ କିଣିବାକୁ ପ୍ରସ୍ତାବ ଦେଲା। ମୁଁ ପ୍ରଥମେ ଅରାଜି ହେଉଥିଲି; କିନ୍ତୁ ପରିସ୍ଥିତିର ଗମ୍ଭୀରତାକୁ ଉପଲବ୍ଧି କରି ସମ୍ମତି ଜଣାଇଲି। ଯୋଉ ଜ୍ୟାକେଟ୍ ଆମ ରାଜ୍ୟରେ ଶୀତଦିନେ ପିନ୍ଧିହେବ, ସେପରି ଗୋଟିଏ ପତଳା ଜ୍ୟାକେଟ୍ ବାଛିଲି। ଦାମ୍ ଥିଲା ପଚିଶି ୟୁରୋ। ତା'ର ଅର୍ଥ ଭାରତୀୟ ମୁଦ୍ରାରେ ଦେଢ଼ହଜାର ଟଙ୍କାରୁ ଅଧିକ।

ଦୋକାନରେ ବୁଲାବୁଲି କରିବାରେ କିଛି ସମୟ କଟିଯାଇଥିଲା। ଖରାବେଳେ ଖାଇବା ସମୟ ହୋଇଯାଇଥିବାରୁ ଆମେ ସେ ଦୋକାନରୁ ବାହାରି ପାଖରେ ଥିବା ଗୋଟିଏ ରେଷ୍ଟୁରାଣ୍ଟ୍‌କୁ ଗଲୁ। ରେଷ୍ଟୁରାଣ୍ଟ୍‌ଟି ବେଶ୍ ଆଧୁନିକ। ଆମ ଭଳି ଘୋଘା, ହୋହା ନ ଥିଲା। ବହୁ ଲୋକଙ୍କ ସମାଗମ ହୋଇଥିଲେ ବି ସବୁକାମ ଶୃଙ୍ଖଳିତ ଭାବେ ଚାଲୁଥିଲା। ସେଠାକାର ପଦ୍ଧତି ଅନୁଯାୟୀ ଆମକୁ ପ୍ରଥମେ ଗୋଟିଏ ଜାଗାରୁ କିଛି ଅର୍ଥ ଦେଇ କୁପନ ସଂଗ୍ରହ କରିବାକୁ ପଡ଼ିଲା ଏବଂ ପରେ ସେ କୁପନ ଜରିଆରେ କାଉଣ୍ଟରରୁ ଖାଦ୍ୟପଦାର୍ଥ ସଂଗ୍ରହ କରାଗଲା। ଉଭୟ କାଉଣ୍ଟରରେ ମହିଳାମାନେ ଥିଲେ। ଭାଷା ବୁଝିପାରୁ ନଥିଲେ ମଧ୍ୟ ବିଶେଷକିଛି ଅସୁବିଧା ହେଲାନାହିଁ। ସେଠାକାର ସଂସ୍କୃତି ହେଉଛି, ଗୋଟିଏ ଟେବୁଲ୍‌ରେ ଖାଦ୍ୟ ରଖି ଗୋଟିଏ ଚୌକିରେ ଜଣେ ବସି ଖାଉଥିଲେ ମଧ୍ୟ ସାଧାରଣତଃ ଖାଲିଥିବା ଅନ୍ୟ ଚୌକିରେ ବାହାର ଲୋକ ବସିଯାଆନ୍ତି ନାହିଁ କିମ୍ବା କାହାରିକୁ ଅସୁବିଧାରେ ପକାଇବାକୁ ଚାହାନ୍ତି ନାହିଁ। ତା'ଛଡ଼ା, ଖାଇସାରି ସମସ୍ତେ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ଲେଟ୍ ଓ ବଳକା ଖାଦ୍ୟ ରଖି ଦେଇଯାଆନ୍ତି। କାହାରିକୁ କିଛି ଅନୁରୋଧ କରିବାକୁ ପଡ଼େନାହିଁ।

ମୁଁ ଗୋଟିଏ ମାଙ୍ଗୋ ଜୁସ୍ ଧରିଲି, ଅନ୍ୟମାନେ ସାଣ୍ଡୱିଚ୍, ଆଲୁଚିପ୍ସ ଇତ୍ୟାଦି ଧରିଲେ। ରେଷ୍ଟୁରାଣ୍ଟ୍ ବାହାରେ ଟେବୁଲ୍ ଚଉକି ପଡ଼ିଥିଲା। ସେଠାରେ କିଛି ଲୋକ ବସି ଖାଉଥିଲେ। ଆମେ ଯାଇ ଗୋଟିଏ ଟେବୁଲ୍ ଦଖଲ କଲୁ। ବାହାରର ନରମ ଖରା ଦେହକୁ ମୁଲାୟମ ଲାଗୁଥିଲା। ରାସ୍ତାକଡ଼ ହେଲେ ବି ଧୂଳି କିମ୍ବା କୌଣସି ପ୍ରକାର ଅପରିଷ୍କାର ପଦାର୍ଥ ଦେଖିବାକୁ ମିଳିନଥିଲା। ଆମେ ସେଠାରେ ଖାଇବା ସହିତ କିଛି ସମୟ ବସି ବିଶ୍ରାମ ନେଲୁ।

ଦିନ ଯେତିକି ଗଡୁଥିଲା, ଲୋକଙ୍କ ଭିଡ଼ ସେତିକି ବଢୁଥିଲା। ସ୍ଥାନୀୟ ଲୋକଙ୍କ ସହିତ କିଛି ବିଦେଶୀ ପର୍ଯ୍ୟଟକ ମଧ୍ୟ ଥିଲେ। ଆମେ ଫେରିବା ବାଟରେ ଗୋଟିଏ ଦୋକାନ ପାଖରେ ଅଟକିଲୁ। ବୋହୂ ସାଲୋନୀ କହିଲା, "ଏଇଟା ହେଉଛି ଗୋଟାଏ ପ୍ରେଜେଣ୍ଟେସନ୍ ସପ୍। ଆପଣ ଯଦି କାହାକୁ କିଛି ପ୍ରେଜେଣ୍ଟ୍ ଦେବାକୁ ଚାହୁଁଛନ୍ତି, ତେବେ ଏଠାରୁ ନେଇପାରନ୍ତି।" ଏତିକି କହି ସେ ଆଗେ ଆଗେ ଚାଲିଲା ଓ ଆମେ ତା' ପଛରେ ଚାଲିଲୁ। ଦୋକାନଟି ବାହାରୁ ଯେଭଳି ଦେଖାଯାଉଥିଲା, ଭିତରେ ତା'ର ପରିବେଶ ଭିନ୍ନ ଥିଲା। ବହୁ ରକମର ସୌଖୀନ ପଦାର୍ଥରେ ଦୋକାନଟି ବେଶ୍ ଆକର୍ଷଣୀୟ ହୋଇଥିଲା। ଚନ୍ଦନ ଚାହୁଁଥିଲା ଆମର ଯାହା ଦରକାର ସବୁ ଆଣିବାକୁ। ମୁଁ କିନ୍ତୁ ର୍ୟାକ୍‌ରେ ଝୁଲା ହୋଇଥିବା ମୂଲ୍ୟ ତାଲିକାକୁ ବାରମ୍ବାର ଚାହୁଁଥିଲି ଓ ଭାରତୀୟ ମୁଦ୍ରାରେ ତା'ର ମୂଲ୍ୟ କେତେ ହେବ ସେକଥା ମନେମନେ ହିସାବ କରୁଥିଲି। ଚନ୍ଦନ ବୋଧହୁଏ ମୋ ମନକଥା ବୁଝିପାରିଲା ଏବଂ କହିଲା, "ବିଦେଶରେ ଭାରତୀୟ ମୁଦ୍ରାର ମୂଲ୍ୟ ସମ୍ପର୍କରେ ଭାବିଲେ ନା କିଛି ଖାଇହେବ ନା କିଛି କିଣିହେବ। ଏଠି ବାଇଗଣ କିଲୋ ତିନିଶହ ଟଙ୍କା ବୋଲି ଜାଣିଲେ ଭାରତରୁ ଆସିଥିବା କେହି କ'ଣ ବାଇଗଣ ଖାଇବାକୁ ଇଚ୍ଛା କରିବ ? ସେଥିପାଇଁ ମୂଲ୍ୟସୂଚୀକୁ ନଦେଖି କ'ଣ ପସନ୍ଦ ହେଉଛି ତାକୁ ଦେଖିବା କଥା।" ମୁଁ ତା' କଥାକୁ ଅନୁଭବ କରି କେତୋଟି ଜିନିଷ ପସନ୍ଦ କଲି। ସେ କାଉଣ୍ଟରକୁ ଯାଇ କ୍ରେଡିଟ୍‌କାର୍ଡରେ ସେସବୁ ମୂଲ୍ୟ ଦେଇଦେଲା। ଆମେ ବଜାର ବୁଲି ଫେରିଲାବେଳକୁ ସ୍ଥାନୀୟ ସମୟ ଛଅଟା ବାଜିଯାଇଥିଲା।

ଘରେ ପହଞ୍ଚି ନାନାପ୍ରକାର ଗପ ଚାଲିଲା। ବାହାରେ ଶୀତ ଅନୁଭୂତ ହେଉଥିଲେ ହେଁ ସେଠାକାର ଲୋକମାନଙ୍କ ପାଇଁ ତାହା ବେଶ୍ ଉପଭୋଗ୍ୟ ହୋଇଥିଲା। ତା' ଆରଦିନ ରବିବାର ଥିବାରୁ ଆମେ ଚେକ୍ ରିପବ୍ଲିକ୍ ରାଜଧାନୀ ପ୍ରାଗ୍ ସହରକୁ ବୁଲିଯିବା ପାଇଁ ସ୍ଥିର କଲୁ।

# ପର୍ଯ୍ୟଟନସ୍ଥଳୀ ପ୍ରାଗ୍

ନିଦ ଭାଙ୍ଗିଲାବେଳକୁ ରାତି ତିନିଟା ହୋଇଥିଲା। ଏତେ ଶୀଘ୍ର କାହିଁକି ନିଦ ଭାଙ୍ଗିଲା ? ଏଇକଥା ଭାବିଲା ବେଳକୁ ମନେପଡ଼ିଗଲା ସ୍ଥାନୀୟ ସମୟ ଭାରତୀୟ ସମୟଠାରୁ ଚାରିଘଣ୍ଟା ପଛରେ। ଅର୍ଥାତ୍ ସେତେବେଳକୁ ଆମ ସମୟ ଅନୁସାରେ ସାତଟା ବାଜିଥିଲା। ପିଲାମାନେ କେହି ଉଠିନଥିଲେ। ମୁଁ ପୁଣିଥରେ ଘୋଡ଼େଇହୋଇ ଶୋଇପଡ଼ିଲି। ହଠାତ୍ ନାତୁଣୀ ପାଟିରେ ନିଦ ଭାଙ୍ଗିଗଲା। ଉଠି ଦେଖିଲାବେଳକୁ ଅନ୍ୟମାନେ ପ୍ରସ୍ତୁତ ହୋଇସାରିଥିଲେ। ଆମର ସ୍ଥିର ହୋଇଥିଲା, ଆମେ ସକାଳେ

ଜଳଖିଆ ଖାଇ ବାହାରିବୁ ଏବଂ ମଧ୍ୟାହ୍ନଭୋଜନ ପାଇଁ ସାଙ୍ଗରେ କିଛି ଖାଦ୍ୟ ନେଇଯିବୁ। ରାତିରେ ପ୍ରାଗ୍‌ରେ ଗୋଟିଏ ଗେଷ୍ଟହାଉସ୍‌ରେ ରହିବୁ ଏବଂ ସେଠାରେ ଯାହା ଖାଦ୍ୟ ମିଳିବ ତାକୁ ଖାଇବୁ। କିନ୍ତୁ ପରେ ସ୍ଥିରକଲୁ ଘରେ ଜଳଖିଆ ତିଆରି କରି ସାଙ୍ଗରେ ନେବୁ ଏବଂ ବାଟରେ କୋଉଠି ସୁବିଧା ଦେଖି ଜଳଖିଆ ପର୍ବ ସାରିବୁ।

## ଅଷ୍ଟ୍ରୋଭାରୁ ପ୍ରାଗ୍ ଯାତ୍ରା

ଅଷ୍ଟ୍ରୋଭାରୁ ପ୍ରାଗ୍ ସହରର ଦୂରତା ଚାରିଶହ କିଲୋମିଟରରୁ ଅଧିକ। ଆମ ହିସାବରେ ହାରାହାରି ଦଶଘଣ୍ଟାର ଯାତ୍ରା। ମୁଁ ଭାବିଲି, ଯଦି ଆମେ ସକାଳ ଆଠଟାବେଳେ ବାହାରିବୁ, ତେବେ ପ୍ରାଗ୍‌ରେ ପହଞ୍ଚିଲାବେଳକୁ ତ ସନ୍ଧ୍ୟା ଛଅଟା ବାଜିଯାଇଥିବ ଆଉ ମଧ୍ୟାହ୍ନଭୋଜନ କୋଉଠି କେତେବେଳେ ଖାଇବୁ ? ଆମର ଭୁବନେଶ୍ୱରରୁ ରାୟଗଡ଼ାର ଦୂରତା ଚାରିଶହ କିଲୋମିଟର। ଆମେ ସକାଳେ ଭୁବନେଶ୍ୱରରୁ ଜଳଖିଆ ଖାଇ ବାହାରିଲେ ମୋହନାରେ ଅଟକି ମଧ୍ୟାହ୍ନଭୋଜନ କରିବାକୁ ପଡ଼େ। ରାୟଗଡ଼ାରେ ପହଞ୍ଚିବା ପୂର୍ବରୁ ଅଡ଼ବା କିମ୍ବା ଅନ୍ୟ କେଉଁଠି ଚା' ପିଇବା ଦରକାର ହୁଏ। ଶେଷରେ ରାୟଗଡ଼ାରେ ପହଞ୍ଚିଲାବେଳକୁ ପ୍ରାୟ ସନ୍ଧ୍ୟା। ସେଦିନ ଆଉ କୌଣସି କାମ ହୋଇପାରେ ନାହିଁ। ଆଜିକାଲି ଅବଶ୍ୟ ରାୟଗଡ଼ା ଭଳି ଦୂର ଜାଗାକୁ ଯିବାପାଇଁ ଟ୍ରେନ୍ ସର୍ଭିସ୍ ହେଲାଣି। ତଥାପି ବେଶ୍ ସମୟ ଲାଗୁଛି। ଠିକ୍ ଆଠଟାବେଳେ ଆମ ଗାଡ଼ି ଷ୍ଟାର୍ଟ ହେଲା, ମୁଁ ଭାବିଥିଲି ଏତେବାଟ ଯିବା ପାଇଁ ନିଶ୍ଚୟ ଡ୍ରାଇଭର ଆସିଥିବ। କିନ୍ତୁ ଚନ୍ଦନ ଯେତେବେଳେ ଗାଡ଼ି ଷ୍ଟାର୍ଟ କଲା, ମୁଁ ପଚାରିଲି ଚାରିଶହ କିଲୋମିଟର ବାଟ ଗାଡ଼ି କିଏ ଚଲାଇବ ? ଚନ୍ଦନ କହିଲା ଏଇଟା ତ ମୋର ସବୁଦିନିଆ ବାଟ। ମୁଁ ସବୁଦିନେ ଚାରିଶହ କିଲୋମିଟର ଡ୍ରାଇଭ୍ କରୁଛି।

ଦୁଇଘଣ୍ଟା ଯାତ୍ରା ପରେ ରାସ୍ତାକଡ଼ରେ ଥିବା ଗୋଟିଏ ପେଟ୍ରୋଲ୍ ପମ୍ପରେ ଚନ୍ଦନ ଗାଡ଼ି ରଖିଲା। ମୁଁ କିଛି ପଚାରିଲା ପୂର୍ବରୁ କହିଲା, "ଆମେ ଆଉ ଦୁଇଘଣ୍ଟାରେ ପ୍ରାଗ୍‌ରେ ପହଞ୍ଚିଯିବା। ଏଇଟା ଅଧାବାଟ।" ଏହା କହି ସେ ପେଟ୍ରୋଲ୍‌ପମ୍ପରୁ ଗାଡ଼ିରେ ତେଲ ଭରିଲା। ନିଜେ କାରର ସାମନା କାଚରେ ପାଣିମାରି ପୋଛିଲା। ସବୁକାମ ଦଶମିନିଟରେ ସରିଗଲା। ସେ ପ୍ରସ୍ତାବ ଦେଲା, "ନିକଟରେ ଗୋଟିଏ ପାର୍କ ଅଛି, ସେଠାରେ ବସି ଆମେ ଖୁସିରେ ପ୍ରାତଃଭୋଜନ କରିପାରିବା।" ମୁଁ ତା'କଥାରେ ରାଜି ହୋଇଗଲି। ତା'ପରେ ସେ ଗାଡ଼ି ଷ୍ଟାର୍ଟ କଲା ଏବଂ ପାଞ୍ଚ ମିନିଟ୍ ଭିତରେ ଆମେ ସେ ପାର୍କରେ ପହଞ୍ଚିଗଲୁ। ପାର୍କର ଗୋଟିଏ କୋଣରେ ଗୋଟିଏ ଛୋଟିଆ ରେଷ୍ଟୁରାଣ୍ଟ୍ ଥିଲା ଏବଂ ରେଷ୍ଟୁରାଣ୍ଟ୍ ଚାରିପାଖେ କେବଳ ପଟାରେ ତିଆରି ଟେବୁଲ୍ ବେଞ୍ଚ୍ ପଡ଼ିଥିଲା। ବିଦେଶୀ

ପର୍ଯ୍ୟଟକମାନେ ଅର୍ଦ୍ଧନଗ୍ନ ବସ୍ତ୍ର ପିନ୍ଧି ସେଠାରେ ସକାଳର ଖରାକୁ ଉପଭୋଗ କରୁଥିଲେ। ଆମେ ଯାଇ ଗୋଟିଏ ପାଖରେ ବସି ହଟ୍‌କେସ୍ ଫିଟାଇ ଜଳଖିଆପର୍ବ ଆରମ୍ଭ କଲୁ। ଆଳୁପରଟା ସାଙ୍ଗକୁ କୋବିକଷା। ମନେହେଲା ସତେ ଯେପରି ଆମ ଭୁବନେଶ୍ୱରର କୌଣସି ଏକ ସ୍ଥାନରେ ବସି ଏକାଠି ଖାଉଛୁ। ଜଳଖିଆ ଶେଷରେ ଅନ୍ୟମାନେ ଥର୍ମୋଫ୍ଲାସ୍କରୁ କଫି ଢାଳି ପିଇଲେ। ମୁଁ ଗୋଟିଏ ମାଙ୍ଗୋ ଜୁସ୍ ମଗାଇଲି। ଅଧଘଣ୍ଟା ଭିତରେ ଜଳଖିଆପର୍ବ ଓ ଟଏଲେଟ୍ କାମ ସାରି ଆମେ ପୁଣି ଆଗେଇଲୁ।

ପ୍ରାଗ୍ ସହରର ପ୍ରବେଶପଥରେ ଆମେ ଟିକିଏ ବାଉଳା ହୋଇ ଅନ୍ୟ ରାସ୍ତାରେ ଚାଲିଗଲାବେଳେ ଗାଡ଼ିରେ ଲାଗିଥିବା ଜି.ପି.ଏସ୍ ଠିକ୍ ବାଟ ସୂଚାଇଦେଲା। ମୁଁ ଭାବୁଥିଲି ବିଜ୍ଞାନ ଆସି କୋଉଠି ପହଞ୍ଚିଲାଣି ଆଉ ଆମେ କୋଉଠି ଅଛୁ! ଭୁବନେଶ୍ୱରରୁ ବାଙ୍କି ଗଲେ ଆମକୁ ବାଟ ପଚାରିବାକୁ ପଡୁଛି।

ପ୍ରାଗ୍‌ରେ ସବୁଠାରୁ ସମସ୍ୟା ଥିଲା ପାର୍କିଂପ୍ଲେସ୍। ସହରର ବିଭିନ୍ନ ଗଳିକନ୍ଦିରେ ଅନ୍ତତଃ ପକ୍ଷେ ଦୁଇହଜାର କାର୍ ରଖିବା ପାଇଁ ବ୍ୟବସ୍ଥା ଥିଲେ ହେଁ ଅନେକ ସମୟରେ ଗାଡ଼ି ସଂଖ୍ୟା ବଢ଼ିଗଲେ ସମସ୍ୟା ସୃଷ୍ଟି ହେଉଥିଲା। ଆମର ଦୁର୍ଭାଗ୍ୟ, ସେଦିନ ପର୍ଯ୍ୟଟକଙ୍କ ସଂଖ୍ୟା ଅଧିକ ଥିବାରୁ ଗାଡ଼ିସଂଖ୍ୟା ବଢ଼ିଯାଇ ପାର୍କିଂପ୍ଲେସ୍ ମିଳିବାରେ ପ୍ରଥମେ ଅସୁବିଧା ହେଲା। ଯେଉଁଠି ଖାଲିଜାଗା ଥିଲା, ସେସବୁ 'ରିଜର୍ଭ ପାର୍କିଂ' ପାଇଁ ନଚେତ୍ ଭିନ୍ନକ୍ଷମ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା। ପ୍ରାୟ ପନ୍ଦରମିନିଟ୍ କାଳ ବିଭିନ୍ନ ଗଳିକନ୍ଦି ବୁଲିଲାପରେ ଆମେ ସ୍ଥିର କଲୁ ନିକଟବର୍ତ୍ତୀ ପୁଲିସ୍ ଷ୍ଟେସନ୍ ନିକଟରେ ଗାଡ଼ି ପାର୍କିଂ କରି ଚାଲିଯିବୁ। ସେଥିରେ ଦୁଇଟି ସୁବିଧା ଥିଲା। ପ୍ରଥମତଃ ପୁଲିସ୍ ଷ୍ଟେସନ୍ ନିକଟରୁ ଗାଡ଼ି ଚୋରି ହେବନାହିଁ ଏବଂ ଦ୍ୱିତୀୟତଃ ନୋ ପାର୍କିଂ ସ୍ଥାନରେ ଗାଡ଼ି ରଖିବା ଅପରାଧରେ ଯଦି ପୁଲିସ୍ ଗାଡ଼ିକୁ ସିଲ୍ କରିଦେବ ତେବେ ତାକୁ ମୁକୁଳାଇବା ପାଇଁ ଆମକୁ ଅଧିକ ବାଟ ଚାଲିବାକୁ ପଡ଼ିବ ନାହିଁ। ଶେଷରେ ସେଇଆ ହେଲା, ଆମେ କାହାକୁ କିଛି ନକହି ନିକଟରେ ଥିବା ପୁଲିସ୍‌ଷ୍ଟେସନ୍ ସାମନାରେ ଗାଡ଼ି ରଖିଦେଇ ଚୁପ୍‌ଚାପ୍ ଚାଲିଆସିଲୁ।

## ରେଳଗାଡ଼ିରେ ପ୍ୟାଲେସ୍ ପରିଦର୍ଶନ

କଥାହେଲା ଆମେ ପ୍ରଥମେ ପ୍ରାଗ୍‌ର ପ୍ୟାଲେସ୍ ବୁଲି ଦେଖିବା ଏବଂ ସେଠାରୁ ଫେରିଆସି ସହରର କେନ୍ଦ୍ରସ୍ଥଳୀ ଓଲ୍ଡଟାଉନ୍ ସ୍କୋୟାରରେ ବସି ମଧ୍ୟାହ୍ନଭୋଜନ କରିବା। ଖବର ନେବାରୁ ଜଣାଗଲା ଗୋଟିଏ ଟଏଟ୍ରେନ୍ ଯୋଗେ ପ୍ୟାଲେସ୍‌କୁ ଯିବାକୁ ପଡ଼େ। ଅନ୍ୟାନ୍ୟ ସ୍ଥାନଗୁଡ଼ିକ ପାଇଁ ମୁଖ୍ୟତଃ ତିନୋଟି ମାଧ୍ୟମ ଥିଲା। ଗୋଟିଏ ସାଇକେଲ୍ ରିକ୍ସା, ପୁରୁଣା ରୋଲସ୍ ରୟେସ୍ ଭିଣ୍ଟେଜ୍ କାର ଏବଂ ଶେଷଟି ସୁଦୃଶ୍ୟ ଘୋଡ଼ାଗାଡ଼ି।

ଚୟଟ୍ରେନ୍ ବା ଖେଳନା ରେଳଗାଡ଼ିରେ ପ୍ୟାଲେସ୍ ଦେଖିବାକୁ ଚଳେ ଘଣ୍ଟାଏ ସମୟ ଲାଗୁଥିଲା। ଟ୍ରେନ୍‌ଟି ଫେରିଆସେ ଅଧଘଣ୍ଟାଏ ବିଶ୍ରାମ ପରେ ପର୍ଯ୍ୟଟକମାନଙ୍କୁ ନେଇ ପୁନର୍ବାର ଗନ୍ତବ୍ୟ ପଥରେ ଚାଲେ। ଟ୍ରେନ୍‌ରେ ଜଣପିଛା ୨୫୦ କ୍ରାଉନ୍ ଅର୍ଥାତ୍ ଭାରତୀୟ ମୁଦ୍ରାରେ ପାଞ୍ଚଶହ ଟଙ୍କା ଦେବାକୁ ପଡ଼େ। ଟ୍ରେନ୍‌ର ନାମ ଚୟଟ୍ରେନ୍ ରଖାଯାଇଥିଲେ ବି ବାସ୍ତବରେ ତାହା ଏକ ବସ୍ ସଦୃଶ ଥିଲା। ସେଥିରେ ଯିବାପାଇଁ ପର୍ଯ୍ୟଟକମାନେ ଆଗତୁରା ଟିକେଟ୍ କିଣି ଅପେକ୍ଷା କରିଥାନ୍ତି। ଗାଡ଼ି ଷ୍ଟାର୍ଟର ସମୟ ହେଲେ ଡ୍ରାଇଭର ଟିକେଟ୍‌ଧାରୀମାନଙ୍କୁ ଟ୍ରେନ୍‌ରେ ବସିବାକୁ ଗୋଟିଏ ସିଗ୍‌ନାଲ୍ ଦିଅନ୍ତି ଏବଂ ସେ ସିଗ୍‌ନାଲ୍ ଶୁଣି ସମସ୍ତେ ଗାଡ଼ିରେ ବସନ୍ତି। ଟ୍ରେନ୍‌ଟି ଯେଉଁ ବାଟ ଦେଇ ଯାଏ, ସେସବୁ ସ୍ଥାନରେ ଥିବା ଐତିହାସିକ କୀର୍ତ୍ତିର ବିଶେଷତ୍ୱ ସମ୍ପର୍କରେ ଆଗରୁ ରେକର୍ଡ କରାଯାଇ ରଖାଯାଇଥାଏ ଏବଂ ଟେପ୍‌ଟିକୁ ଟ୍ରେନ୍ ଚାଲିଲାମାତ୍ରେ ଚଲାଇଦିଆଯାଏ।

ପ୍ରାଗ୍‌ର ରାଜପ୍ରାସାଦଟି ବିଶ୍ୱର ସବୁଠାରୁ ବଡ଼ ଓ ପୁରାତନ ପ୍ରାସାଦ ବୋଲି ଗିନିଜ୍ ବୁକ୍ ଅଫ୍ ଓ୍ୱାର୍ଲ୍ଡ ରେକର୍ଡରେ ଉଲ୍ଲେଖ ରହିଛି। ସାତଗୋଟି ଫୁଟ୍‌ବଲ ପଡ଼ିଆର କ୍ଷେତ୍ରଫଳ ଯେତିକି ହେବ, ଏହି ରାଜପ୍ରାସାଦର କ୍ଷେତ୍ରଫଳ ତା'ଠାରୁ ଅଧିକ। ନବମ ଶତାବ୍ଦୀରେ ନିର୍ମିତ ଏହି ରାଜପ୍ରାସାଦଟିର ଚାରିଥର ପୁନର୍ଗଠନ କରାଯାଇଛି। ଦୀର୍ଘଦିନ ଧରି ଏହି ପ୍ରାସାଦଟି ଚେକ୍ ଶାସକବର୍ଗଙ୍କର ଶାସନଗାଦି ଥିଲା।

ଆମେ ବସିଥିବା ରେଳଗାଡ଼ିଟି ଉଠାଣିଆ ରାସ୍ତାରେ ଆସ୍ତେ ଆସ୍ତେ ଉପରକୁ ଉଠିଲାବେଳେ ପ୍ରାଗ୍ ସହରର ଦୃଶ୍ୟ ଅତ୍ୟନ୍ତ ମନୋରମ ଦେଖାଯାଉଥିଲା। ସହର ଭିତରେ ଥିବା ନଦୀରେ ଲଞ୍ଚ୍ ସାହାଯ୍ୟରେ ପର୍ଯ୍ୟଟକମାନେ ନୌକାବିହାର କରୁଥିଲେ। ହଜାର ହଜାର ସଂଖ୍ୟାରେ ପୁରୁଣା କୋଠାର ଗମ୍ବୁଜସବୁ ଚିକ୍‌ଚିକ୍ କରୁଥିଲା। ରାସ୍ତାର ଦୁଇପାଖରେ ଥିବା ଫୁଲବଗିଚା କ୍ରମେ ଅସ୍ପଷ୍ଟ ହୋଇଯାଉଥିଲା। କିଛିବାଟ ଯିବାପରେ ଟ୍ରେନ୍‌ଟି ଅଳ୍ପସମୟ ପାଇଁ ରାଜପ୍ରାସାଦ ସାମନାରେ ଛିଡ଼ାହେଲା। ଗାଡ଼ିର ଡ୍ରାଇଭର ଦଶମିନିଟ୍ ମଧ୍ୟରେ ପ୍ରାସାଦ ଦେଖିସାରି ଫେରିଆସିବା ପାଇଁ ଆମକୁ ନମ୍ରତାର ସହିତ ଅନୁରୋଧ କଲେ। ବାରଶହ ବର୍ଷର ପୁରୁଣା ପ୍ରାସାଦଟିର ରକ୍ଷଣାବେକ୍ଷଣ ଶୈଳୀରେ ଆମେ ମୁଗ୍ଧ ହୋଇଯାଇଥିଲୁ। ହଠାତ୍ ସେ ସ୍ଥାନ ଛାଡ଼ିଆସିବାକୁ ଇଚ୍ଛା ନଥିଲେ ବି ସମୟର ସ୍ୱଳ୍ପତା ଦୃଷ୍ଟିରୁ ଆମକୁ ଫେରିଆସିବାକୁ ପଡ଼ିଲା। ରାଜପ୍ରାସାଦରୁ ଫେରିଲାବେଳକୁ ସମୟ ପାଖାପାଖି ଗୋଟାଏ ବାଜିଯାଇଥିଲା। ଆମେ ଯୋଉ ଜାଗାରୁ ଟ୍ରେନ୍‌ରେ ଯାଇଥିଲୁ, ବିଭିନ୍ନ ରାସ୍ତା ବୁଲିବୁଲି ଟ୍ରେନ୍‌ଟି ଆସି ସେହିଠାରେ ରହିଲା।

## ଓଲ୍ଡଟାଉନ୍ ସ୍କୋୟାର୍‌ରେ ମଧ୍ୟାହ୍ନଭୋଜନ

ପୁଅ ଚନ୍ଦନ ପ୍ରସ୍ତାବ କଲା ଓଲ୍ଡ ଟାଉନ୍ ସ୍କୋୟାର୍ ବେଞ୍ଚରେ ବସି ମଧ୍ୟାହ୍ନ ସୂର୍ଯ୍ୟକୁ ଉପଭୋଗ କରିବା ସହିତ କିଛି ସ୍ନାକ୍ସ ନେବାକୁ। ଆମେ ସବୁ ସେଥିରେ ରାଜି

ଆମଲୁ। ପାଖରେ ଥିବା ମାକଡୋନାଲ୍ଡ ରେଷ୍ଟୁରାଣ୍ଟ୍‌ରୁ କିଛି ସ୍ନାକ୍ସ ସଂଗ୍ରହ କରାଗଲା। ମୁଁ ଗୋଟିଏ ପଟାଟୋ ଚିପ୍ସ ପ୍ୟାକେଟ୍ ଓ ଅରେଞ୍ଜ୍ ଜୁସ୍ ଧରିଲି। ଅନ୍ୟମାନେ ସାଣ୍ଡଓ୍ୱିଚ୍ ନେଲେ। ଓଲ୍ଡଟାଉନ୍ ସ୍କୋୟାରଟି ପ୍ରଶସ୍ତ କ୍ଷେତ୍ର। ଚାରିପାଖରେ ବିରାଟ ବିରାଟ ସୌଧ ଓ ମଝିରେ ବସିବା ପାଇଁ ଖୋଲାଜାଗାରେ ସିମେଣ୍ଟ ବେଞ୍ଚସବୁ ରହିଥିଲା। ସେଠାରେ ଅଳ୍ପ ସମୟ ବସିବା ଭିତରେ ଭାରତବର୍ଷ ସମେତ ବହୁ ଦେଶର ପର୍ଯ୍ୟଟକମାନଙ୍କୁ ଦେଖିବାକୁ ମିଳିଲା। ପର୍ଯ୍ୟଟକମାନଙ୍କୁ ବୁଲାଇବା ପାଇଁ ସଜା ହୋଇଥିବା ଛୋଟ ରିକ୍ସାସବୁ ରହିଥିଲା। ସହର ଭିତରେ ଦୁଇଜଣଙ୍କୁ ଘଣ୍ଟାଏ ସମୟ ବୁଲାଇବା ପାଇଁ ଶହେ କ୍ରାଉନ୍ ଦେବାକୁ ପଡୁଥିଲା। ବିଲୁପ୍ତ ପ୍ରାୟ 'ରୋଲ୍‌ସ-ରୟେସ୍' କାର୍ ଭାରତୀୟ ପର୍ଯ୍ୟଟକମାନଙ୍କ ପାଇଁ ଥିଲା ଅନ୍ୟ ଏକ ଆକର୍ଷଣ। ସେଥିରେ ଡ୍ରାଇଭର ସମେତ ଚାରିଜଣ ବସିବା ପାଇଁ ବ୍ୟବସ୍ଥା ଥିଲା। ସବୁଠାରୁ ଲୋଭନୀୟ ଓ ଆକର୍ଷଣୀୟ ଥିଲା ଘୋଡ଼ାଗାଡ଼ି। ପ୍ରତି ଗାଡ଼ିରେ ଦୁଇଟି ହୃଷ୍ଟପୁଷ୍ଟ ଘୋଡ଼ା ଲାଗିଥିଲେ। ଚିକ୍କଣରେ ଘୋଡାମାନଙ୍କ ଦେହରେ ମାଛି ବସିଲେ ବି ଖସିପଡୁଥିଲେ। ମହିଳାମାନେ ସୁଟ୍ ଟାଇ ପିନ୍ଧି ସେସବୁ ଘୋଡ଼ାଗାଡ଼ି ଚଳାଉଥିଲେ। ଘୋଡ଼ାମାନଙ୍କ ମଳ ରାସ୍ତାରେ ନପଡ଼ିବା ପାଇଁ ସେମାନଙ୍କ ପଛରେ ଗୋଟିଏ ଲେଖାଏଁ ମୁଣି ଲାଗିଥିଲା ଓ ମଳତ୍ୟାଗ କଲେ ତାହା ରାସ୍ତାରେ ନପଡ଼ି ସେ ମୁଣି ଭିତରେ ରହିଯାଉଥିଲା। ସେ ଘୋଡ଼ାଗାଡ଼ିରେ ଚଢ଼ି ଘେରାଏ ବୁଲି ଆସିବାକୁ ମନରେ ଆଗ୍ରହ ସୃଷ୍ଟି ହୋଇଥିଲେ ହେଁ ସମୟର ସ୍ୱଳ୍ପତା ଦୃଷ୍ଟିରୁ ତାହା ସମ୍ଭବ ହେଲା ନାହିଁ।

## ପ୍ରାଗ୍‌ର ପ୍ରମୁଖ ଦର୍ଶନୀୟ ସ୍ଥାନ ଭ୍ରମଣ

ଆମେ ଖାଇସାରି ଦେଖିଲାବେଳକୁ ଗୋଟିଏ ସ୍ଥାନରେ ଜନଗହଳି ଲାଗିଥିଲା। କାରଣ ପଚାରିବାରୁ ଜଣାଗଲା ଯେ, ଓଲ୍ଡ ଟାଉନ୍ ସ୍କୋୟାର୍‌ରେ ଥିବା ଓଲ୍ଡ ଟାଉନ୍ ହଲ୍ ଟାଓ୍ୱାରରେ ଯେଉଁ ବିରାଟ ଘଣ୍ଟା ଲାଗିଥିଲା, ଦିନ ଗୋଟାଏ ବେଳେ ସେଥିରେ କେତେକ ଦୃଶ୍ୟ ଦେଖିବାକୁ ମିଳିବ। ତାକୁ ଦେଖିବାକୁ ନାନା ଦେଶରୁ ଆସିଥିବା ପର୍ଯ୍ୟଟକମାନେ ସେଠାରେ ଜମିଥିଲେ। ସେ ଘଣ୍ଟାଟିକୁ 'ଆଷ୍ଟ୍ରୋନମି କ୍ଲକ୍' ବୋଲି କୁହାଯାଏ। ସେଥିରେ ତିଥି ନକ୍ଷତ୍ର ସମ୍ପର୍କରେ ନାନା ରକମର ସୂଚନା ଦିଆଯାଇଥିଲା।

ସ୍ଥାନୀୟ ସମୟ ଠିକ୍ ଗୋଟାଏବେଳେ ଗୋଟାଏ ଶବ୍ଦ ହେଲା ଏବଂ ଘଣ୍ଟା ଭିତରୁ ମଣିଷ ଆକୃତିର କେତୋଟି ମୂର୍ତ୍ତି ବାହାରିଆସିଲେ। ସେମାନଙ୍କ ମଧ୍ୟରୁ ଜଣକ ହାତରେ ଗୋଟିଏ ଖଣ୍ଡାଥିଲା। ଆଉ ଦୁଇଟି ମୂର୍ତ୍ତି ଅନ୍ୟକିଛି ପଦାର୍ଥ ଧରିଥିଲେ। ଖଣ୍ଡା ଧରିଥିବା ମୂର୍ତ୍ତିଟି ଗୋଟିଏ ସ୍ଥାନକୁ ଛୁଇଁଦେବା ମାତ୍ରେ ସେଥିରୁ କେତେକ ଶବ୍ଦ

ବାହାରିଥିଲା କିନ୍ତୁ ପ୍ରବଳ ଜନଗହଳି ମଧ୍ୟରେ ଆମେ ସେ ଶବ୍ଦକୁ ଶୁଣିପାରିନଥିଲୁ। ସେ ଘଣ୍ଟାରେ ଯେଉଁ ଘଣ୍ଟା କଣ୍ଟା, ମିନିଟ୍ କଣ୍ଟା ଓ ସେକେଣ୍ଡ୍ କଣ୍ଟା ଲାଗିଥିଲା ସେସବୁ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟାନ୍ୟ ଗ୍ରହର ସ୍ଥିତିକୁ ସୂଚାଉଥିଲା। ଏହି ଘଣ୍ଟାଟି ବହୁ ପୁରୁଣା ହେଲେ ବି ଅକ୍ଷତ ଅବସ୍ଥାରେ ଥିଲା।

ଆମେ ଗାଡ଼ିରେ ବସି ଚାର୍ଲସ୍ ବ୍ରିଜ୍ ଦେଖିବାକୁ ବାହାରିଲୁ। ଏହି ବ୍ରିଜ୍‌ଟି ୧୪ଶହ ମସିହାରେ ତିଆରି ହୋଇଥିଲା। ମଝିରେ ମଝିରେ ବନ୍ୟା ଦ୍ୱାରା ସାମାନ୍ୟ କ୍ଷତିଗ୍ରସ୍ତ ହେବା ବ୍ୟତୀତ ଦୀର୍ଘ ଛଅଶହ ବର୍ଷ ଧରି ଏହି ବ୍ରିଜ୍ ଉପରେ ହଜାର ହଜାର ଯାନବାହନ ଚଳାଚଳ କରୁଥିଲା। ୨୦୦୨ ମସିହାର ବନ୍ୟା ସମୟରେ ଏହି ବ୍ରିଜ୍ ଉପରୁ ଏକ ବିରାଟ କ୍ରେନ୍ ନଦୀରେ ଭାସିଆସୁଥିବା ଗଛପତ୍ରକୁ କାଢ଼ି ସଫା କରୁଥିଲା, ଯାହାଫଳରେ ବ୍ରିଜ୍‌ର ଖୁଣ୍ଟଗୁଡ଼ିକର କୌଣସି କ୍ଷତି ଘଟିନଥିଲା। ପରବର୍ତ୍ତୀ ସମୟରେ ବ୍ରିଜ୍‌ର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ବ୍ରିଜ୍‌ର ଖମ୍ବ ଉପରେ ବିଭିନ୍ନ ମୂର୍ତ୍ତିମାନ ରଖାଯାଇଥିଲା। ବାସ୍ତବରେ ଚାର୍ଲସ୍ ବ୍ରିଜ୍ ଏକ ଆକର୍ଷଣୀୟ ସ୍ଥାନ। ଯିଏ ଯେଉଁଠୁ ଆସନ୍ତୁ ନା କାହିଁକି, ଏହି ବ୍ରିଜ୍ ଉପରେ ଥରେ ନ ବୁଲିଲେ ପ୍ରାଗ୍ ଭ୍ରମଣ ଅଧୁରା ରହିଯାଏ। ନିରାପତ୍ତା ଦୃଷ୍ଟିରୁ ବ୍ରିଜ୍ ଉପରେ ଯାନବାହନ ଚଳାଚଳକୁ ନିଷିଦ୍ଧ କରାଯାଇଥିଲା। ସେଥିପାଇଁ ସହର ମଧ୍ୟରେ ଆଉ ଗୋଟିଏ ବ୍ରିଜ୍ ନିର୍ମାଣ କରାଯାଇ ସେଥିରେ ଗାଡ଼ିମଟର ଯାତାୟାତ କରୁଥିଲା। ଚାର୍ଲସ୍ ବ୍ରିଜ୍ ଏକ ପ୍ରାଚୀନ କୀର୍ତ୍ତିର ମର୍ଯ୍ୟାଦା ଲାଭ କରିଛି। ବ୍ରିଜ୍‌ର ଉଭୟ ପ୍ରବେଶପଥରେ ଦୁଇଟି ଟାୱାର ରହିଛି। ତା ଉପରକୁ ଯିବାପାଇଁ ସ୍ୱତନ୍ତ୍ର ଟିକେଟର ବ୍ୟବସ୍ଥା ଅଛି। ଟାୱାର ଉପରକୁ ଗଲେ ନଦୀର ଦୃଶ୍ୟ ଅତ୍ୟନ୍ତ ମନୋରମ ଦେଖାଯାଏ।

ଆମେ ଚାର୍ଲସ ବ୍ରିଜ୍ ଉପରେ ବୁଲାବୁଲି କରୁଥିଲାବେଳେ ପଶ୍ଚିମ ଆକାଶରେ ସୂର୍ଯ୍ୟକିରଣର ପ୍ରଖରତା କ୍ରମେ କମି କମି ଆସୁଥିଲା। ଈଷତ୍ ଲୋହିତରଙ୍ଗର କିରଣ ନଦୀଜଳରେ ପ୍ରତିଫଳିତ ହୋଇ ଏକ ମନୋରମ ଦୃଶ୍ୟ ସୃଷ୍ଟି କରୁଥିଲା। ଆମଭଳି ଅନେକ ପର୍ଯ୍ୟଟକ ମନଭରି ସେ ଦୃଶ୍ୟ ଉପଭୋଗ କରୁଥିଲେ। ଆମେ ସେଦିନ ପ୍ରାଗ୍‌ର ନ୍ୟାସନାଲ ମ୍ୟୁଜିୟମ, ଚର୍ଚ୍ଚ ଓ ଆଉ କେତେକ ସ୍ଥାନ ବୁଲି ଦେଖିଥିଲୁ।

## ଅଷ୍ଟ୍ରୋଭା ପ୍ରତ୍ୟାବର୍ତ୍ତନ

ଆମର ସେଦିନ ପ୍ରାଗ୍ ସହରରେ ରାତ୍ରିଯାପନ କରିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେହି ଅନୁସାରେ ଆଗରୁ ଗୋଟିଏ ଗେଷ୍ଟହାଉସ୍‌ରେ ରହିବା ଓ ଖାଇବା ପାଇଁ ବନ୍ଦୋବସ୍ତ କରାଯାଇଥିଲା। କିନ୍ତୁ ଚାର୍ଲସ୍ ବ୍ରିଜ୍ ଉପରେ ବୁଲିଲାବେଳେ ଚନ୍ଦନ କହିଲା, "ଆମର ପ୍ରାଗ୍ ସହର ତ ବୁଲା ହୋଇଗଲା। ଅଷ୍ଟ୍ରୋଭା ଫେରିଗଲେ କେମିତି

ହୁଅନ୍ତା ?" ମୁଁ ପ୍ରଥମେ କିଛି ବୁଝିପାରିଲି ନାହିଁ। ଘଣ୍ଟା ଦେଖିଲାବେଳକୁ ଛଅଟା ବାଜି ସାରିଥିଲା। ମୁଁ ପଚାରିଲି, "ତୁ ସକାଳେ ଚାରିଶହ କିଲୋମିଟର ରାସ୍ତା ଡ୍ରାଇଭିଂ କରି ଆସିଛୁ, ଫେରିବାକୁ ଆହୁରି ଚାରିଶହ କିଲୋମିଟର। ଡ୍ରାଇଭର ନାହିଁ, ଛଅଟା ବାଜିଲାଣି; ତୁ ଫେରିବା କଥା କେମିତି କହୁଛୁ?" ଚନ୍ଦନ ସ୍ମିତହାସ୍ୟ ଦେଇ କହିଲା, "ଡ୍ରାଇଭିଂ କଥା ଚିନ୍ତା କରନାହିଁ। ଏଇଟା ଆମର ସବୁଦିନିଆ ରାସ୍ତା। କମ୍ପାନୀ କାମରେ ମୁଁ ଅଧିକାଂଶ ଦିନ ଅଷ୍ଟ୍ରୋଭାରୁ ସକାଳେ ପ୍ରାଗ୍ ଆସି ସନ୍ଧ୍ୟାରେ ପୁଣି ଫେରିଯାଏ। ମୋ କଥା ଚିନ୍ତା ନକରି ଫେରିଗଲେ ତମର କିଛି ଅସୁବିଧା ହେବକି, ସେକଥା କୁହ। ରାତିରେ ଏଠାରେ ରହିଲେ ସକାଳୁ ଉଠି ନିତ୍ୟକର୍ମ ସାରି ବାହାରିଲାବେଳକୁ ଅନ୍ତତଃ ନଅଟା ହୋଇଯିବ ଏବଂ ପ୍ରାୟ ଗୋଟାଏବେଳେ ଅଷ୍ଟ୍ରୋଭାରେ ପହଞ୍ଚିବା। କିନ୍ତୁ ବର୍ତ୍ତମାନ ଚାଲିଗଲେ ରାତି ଦଶଟା ଭିତରେ ପହଞ୍ଚିଯାଇ ଆରାମରେ ଘରେ ବିଶ୍ରାମ ନେଇହେବ।" ମୁଁ ଦେଖିଲି ଚନ୍ଦନ କଥାରେ ଯଥାର୍ଥ ଯୁକ୍ତି ରହିଥିଲା। ତେବେ ସେ ନିଜେ ଗାଡ଼ି ଚଲାଇ ଗଲେ କାଳେ ଥକିଯିବ, ସେଥିପାଇଁ ସନ୍ଧ୍ୟାରେ ଫେରିବା ପାଇଁ ନାହିଁ କରୁଥିଲି।

ପ୍ରାଗ୍ ସହର ଓଲ୍ଡ-ଟାଉନ୍-ସ୍କୋୟାର୍‌ରେ କିଛି ସମୟ ବିଶ୍ରାମ ପରେ ଆମେ ଗାଡ଼ି ପାଖକୁ ଚାଲିଲୁ। ମନରେ ନାନାପ୍ରକାର ଆଶଙ୍କା ସୃଷ୍ଟି ହେଉଥିଲା। ବୋଧହୁଏ ପୁଲିସ୍, ଭୁଲ ଜାଗାରେ ଗାଡ଼ି ରଖିଥିବା ଯୋଗୁଁ ଜରିମାନା କରି ଚାଲାଣ କାଗଜ ଲଗାଇ ଦେଇଥିବ ନଚେତ୍ ଆମ ଗାଡ଼ି ପଛରେ ଅନ୍ୟ ଗାଡ଼ିସବୁ ରହି ରାସ୍ତା ଜାମ୍ ହୋଇଯାଇଥିବ। କିନ୍ତୁ ଆମ ଭାଗ୍ୟ ଭଲ। ସେପରି କିଛି ଘଟିନଥିଲା। ସୁରୁଖୁରୁରେ ଆମ ଗାଡ଼ି ବାହାରିଥିଲା।

ପ୍ରାଗ୍ ସହର ଛାଡ଼ିଲାବେଳକୁ ସନ୍ଧ୍ୟା ହୋଇନଥିଲା। ୟୁରୋପୀୟ ରାଷ୍ଟ୍ରମାନଙ୍କରେ ସାଧାରଣତଃ ବିଳମ୍ବରେ ସନ୍ଧ୍ୟା ହୁଏ। ରାତି ବଡ଼ ହୋଇ ଦିନ ଛୋଟ ହୋଇଥାଏ। ଗାଡ଼ିରେ ଆଗପଟ ବାଁ ପାଖ ସିଟ୍‌ରେ ବସି ଚନ୍ଦନ ଗାଡ଼ି ଚଳାଉ ଥିଲା। ସେ ଦେଶମାନଙ୍କରେ ଗାଡ଼ିଗୁଡ଼ିକ ମୁଖ୍ୟତଃ 'ଲେଫ୍‌ଟହାଣ୍ଡ୍ ଡ୍ରାଇଭ', ଅର୍ଥାତ୍ ବାଁ ପାଖରେ ଷ୍ଟିଅରିଂ ଏବଂ ପଛରେ ଥିବା ଗାଡ଼ିସବୁ ବାଁ ପଟରେ ଓଭରଟେକ୍ କରନ୍ତି। ଆମଦେଶରେ ଗାଡ଼ି ରାଇଟ୍ ହାଣ୍ଡ୍ ଡ୍ରାଇଭ୍ ହୋଇଥିବାରୁ ପ୍ରଥମେ ପ୍ରଥମେ ଗାଡ଼ିରେ ବସିବାକୁ କେମିତି ଟିକିଏ ଅଡୁଆ ଲାଗୁଥିଲା। ମାତ୍ର ପରେ ଠିକ୍ ହୋଇଗଲା।

ରାସ୍ତା ବେଶ୍ ପ୍ରଶସ୍ତ। ଯେତେ ବେଗରେ ଗାଡ଼ି ଗଲେ ମଧ ଜଣା ପଡୁନଥିଲା। ରାସ୍ତାରେ ଯାଉଥିବା ଅଠରଚକିଆ ଟ୍ରଲରକୁ ଯେତେବେଳେ ଆମ ଗାଡ଼ି ଓଭରଟେକ୍ କରୁଥିଲା, ମୋ ଛାତି ଭିତରଟା ଦାଉଁ କରି ହୋଇଯାଉଥିଲା। ଆମର ଏଠି କଟକ-ଭୁବନେଶ୍ୱର ରାସ୍ତାରେ ଷାଠିଏ କିଲୋମିଟର ବେଗରେ ଗାଡ଼ି ଯାଉଥିବାବେଳେ ଓଭରଟେକ୍ କରିବାକୁ ଡରଲାଗେ। କାଳେ କ'ଣ ହୋଇଯିବ। କିନ୍ତୁ ସେ ଦେଶମାନଙ୍କରେ ସମସ୍ତେ ସଚେତନ। ନିଜ ଅପେକ୍ଷା ଅନ୍ୟ ଡ୍ରାଇଭରଙ୍କ ସୁବିଧାକୁ ସେମାନେ ଅଗ୍ରାଧିକାର

ଦିଅନ୍ତି । ସେଥିପାଇଁ ପ୍ରାୟତଃ ଦୁର୍ଘଟଣା ଘଟି ନଥାଏ । ରାସ୍ତାରେ ଗାଡ଼ି ଚାଲୁଥିଲାବେଳେ ଚନ୍ଦନ କହିଲା, "ବାବା ଦେଖିଲ, ଗାଡ଼ି କେତେ ସ୍ପିଡ୍‌ରେ ଯାଉଛି ?" ମୁଁ ମାଇଲ୍ ମିଟରକୁ ଦେଖିଲାବେଳକୁ ମିଟରକଣ୍ଟା ୧୪୦ କିଲୋମିଟର ଉପରେ ଥିଲା । ମୁଁ ନିଜକୁ ନିଜେ ବିଶ୍ୱାସ କରିପାରିଲି ନାହିଁ । କିନ୍ତୁ ଯାହା ନିଜ ଆଖିରେ ଦେଖିବା, ତାକୁ ତ ବିଶ୍ୱାସ କରିବାକୁ ହେବ ।

ରାସ୍ତାର ଦୁଇକଡ଼ରେ ଥିବା ଆପେଲ୍ ଗଛର ପାଚିଲା ଆପେଲ୍ ସବୁ ଆଲୁଅରେ ଚକ୍‌ଚକ୍ ଦେଖାଯାଉଥିଲା । ମନେହେଉଥିଲା ଗାଡ଼ିରୁ ଓହ୍ଲାଇ ମନଇଚ୍ଛା ଆପେଲ୍ ତୋଳିଆଣିବାକୁ । ମନର ଲୋଭ ସମ୍ବରଣ କରିନପାରି ଚନ୍ଦନକୁ ମନର କଥା ଜଣାଇଲି । ସେ ଯାହା ସୂଚନା ଦେଲା, ସେଥିରେ ମୋ ମନ ବୋଧ ହୋଇଗଲା । ସେ କହିଲା, "ଆପେଲ୍ ତୋଳିବା ତ ଦୂରର କଥା, ରାସ୍ତା କଡ଼ରେ ଗାଡ଼ି ରଖିବା ଆଇନ୍‌ବିରୁଦ୍ଧ କାମ । ଆମକୁ ଡ୍ରାଇଭିଂ ଲାଇସେନ୍ସ ଦେବା ସମୟରେ ଏ ଦିଗପ୍ରତି ସାବଧାନ ରହିବା ପାଇଁ ସଚେତନ କରି ଦିଆଯାଇଥିଲା । ନାସ୍‌ନାଲ୍ ହାଇୱେରେ ଗାଡ଼ି ଚଳାଇଲାବେଳେ ଆଗରେ ଏବଂ ପଛରେ ଯାଉଥିବା ଗାଡ଼ି ଡ୍ରାଇଭରମାନଙ୍କର ଯେଭଳି ସାମାନ୍ୟତମ ଅସୁବିଧା ନହୁଏ, ସେକଥା ସବୁବେଳେ ମନେରଖିବା ପାଇଁ ତାଗିଦ୍ କରିଦିଆଯାଇଥିଲା । ଏ ଦେଶରେ ଆଇନ୍‌ର ବ୍ୟବସ୍ଥାକୁ ସମ୍ମାନ ଦେବା ହେଉଛି ସବୁଠାରୁ ବଡ଼ କଥା । ତା'ଛଡ଼ା ଆମ ଘରେ ତ ଫ୍ରିଜ୍‌ରେ ଆପେଲ ଭର୍ତ୍ତି ହୋଇ ରହିଛି, ତାକୁ ଖାଇବାକୁ କେହି ନାହାନ୍ତି, ଆଉ ଆମେ ରାସ୍ତାକଡ଼ରେ ଥିବା ଗଛରୁ କାହିଁ ଆପେଲ୍ ଚୋରି କରିବା ?" ଚନ୍ଦନ କଥାରେ ମୁଁ ଲଜ୍ଜିତ ହୋଇଥିଲେ ବି ବାହାରକୁ କିଛି ପ୍ରତିକ୍ରିୟା ପ୍ରକାଶ ନକରି ଚୁପ୍ ହୋଇ ବସିରହିଲି । ବସିବା ଭିତରେ ମନରେ ଭାସିଆସିଲା ରାଜଧାନୀ ଭୁବନେଶ୍ୱର ସହରର କେନ୍ଦ୍ରସ୍ଥଳରେ ଥିବା ଇନ୍ଦିରାପାର୍କର ଏକ ଦୃଶ୍ୟ । ସେଠାରେ କର୍ତ୍ତବ୍ୟରତ ସିକ୍ୟୁରିଟି କର୍ମଚାରୀଙ୍କ ବାରଣ ସତ୍ତ୍ୱେ କିଭଳି ସମ୍ଭ୍ରାନ୍ତ ପରିବାରର ମହିଳାମାନେ ଜବରଦସ୍ତି ଫୁଲ ତୋଳନ୍ତି । ଯୁବକମାନେ ମଧ୍ୟ ସେଥିରୁ ବାଦ୍ ଯାଆନ୍ତି ନାହିଁ । ସେମାନଙ୍କୁ ବାଧାଦେଲେ ସୃଷ୍ଟିହୁଏ ଝଗଡ଼ା । ଫୁଲ ଚୋରିକରୁଥିବା ଯୁବକମାନେ ଯୁକ୍ତି କରନ୍ତି, "ଏଇଟା କ'ଣ ତୋ ବୋପା ପାର୍କ ? ଗଛରେ ଫୁଲ ଫୁଟିଛି, ନେଲେ କ'ଣ ହୋଇଗଲା ? ଅଲବତ୍ ଫୁଲ ନେବୁ ।" ମୁଁ ଭାବିଲି ଧନ୍ୟ ଆମ ଦେଶ ଆଉ ଏ ପାଶ୍ଚାତ୍ୟ ରାଷ୍ଟ୍ର !

କଥାବାର୍ତ୍ତା ଭିତରେ କେତେବେଳେ ଦୁଇଘଣ୍ଟା ବିତିଯାଇଥିଲା ଜାଣି ହୋଇନଥିଲା । ରାସ୍ତାକଡ଼ରେ ଥିବା ପେଟ୍ରୋଲ୍ ଫିଲିଂ ଷ୍ଟେସନ୍‌ରେ ଗାଡ଼ି ରହିଲା ପରେ ମୁଁ ବୁଝିପାରିଲି ଯେ ଆମେ ଇତିମଧ୍ୟରେ ଦୁଇଶହ କିଲୋମିଟର ରାସ୍ତା ଟପିଯାଇଥିଲୁ । ଫିଲିଂ ଷ୍ଟେସନ୍‌ରେ କିଛି ସମୟ ଅଟକି କୋଲ୍ଡଡ୍ରିଙ୍କ୍ ଓ ଅଳ୍ପ ସ୍ନାକ୍ସ ନେଲୁ । ଚନ୍ଦନ ସାମନା କାଚ ପୋଛି ପୁଣି ବାହାରିବା ପାଇଁ ତିଆରି ହୋଇଯାଇଥିଲା । ଆମେ ପ୍ରାଗ୍ ସହର ଛାଡ଼ିବାବେଳେ ପଥଶ୍ରମ ସମ୍ପର୍କରେ ଯେଉଁ ଆଶଙ୍କା ମନରେ ସୃଷ୍ଟି ହୋଇଥିଲା, ସେତେବେଳକୁ ତାହା ଭୁଲ୍

ବୋଲି ପ୍ରମାଣିତ ହୋଇସାରିଥିଲା। ଘଣ୍ଟାକୁ ୧୪୦ କିଲୋମିଟର ବେଗରେ ଚାଲୁଥିଲେ ମଧ୍ୟ ଗାଡ଼ି ଟିକିଏ ହଲୁନଥିଲା। ରାସ୍ତାରେ ଛକଜାଗା ପହଞ୍ଚିଲେ ଜି.ପି.ଏସ୍ ଠିକ୍ ଠିକ୍ ସୂଚନା ଦେଇ ବାଟ କଢ଼େଇ ନେଉଥିଲା। ଗାଡ଼ିରେ ଲାଗିଥିବା ସିଡିରୁ ବାଜୁଥିବ ହିନ୍ଦୀ ଭଜନ ସଡ଼କ ଯାତ୍ରାକୁ ଅଧିକ ଉପଭୋଗ୍ୟ କରିଥିଲା।

ସତକୁ ସତ ରାତି ଦଶଟା ବାଜିବା ପୂର୍ବରୁ ଆମେ ଯାଇ ଅଷ୍ଟ୍ରୋଭା ସହର ଉପକଣ୍ଠରେ ପହଞ୍ଚିଗଲୁ। ଅଷ୍ଟ୍ରୋଭା ସହର ଭିତରେ ନିଉନ୍ କମ୍ପାନୀର ଗୋଟିଏ ଗେଷ୍ଟହାଉସ୍ ଥିଲା। ସେଠାରେ 'ନାନା'ବୋଲି ଜଣେ ବାଙ୍ଗଲାଦେଶୀ ରୋଷେୟା ଥିଲେ। ଆମ ଅଜାଣତରେ ଚନ୍ଦନ କେତେବେଳେ ନାନାକୁ ଆମପାଇଁ ରାତ୍ରିଭୋଜନ ପ୍ରସ୍ତୁତ କରିବା ପାଇଁ କହିସାରିଥିଲା ଆମେ ଜାଣିପାରି ନଥିଲୁ। ଗାଡ଼ି ଯେତେବେଳେ ମେନ୍‌ରୋଡ୍ ଛାଡ଼ି ଆଉଗୋଟିଏ ରାସ୍ତାରେ ଚାଲିଲା, ସେତେବେଳେ ଚନ୍ଦନ ତା'ର ଅଭିପ୍ରାୟ ଜଣାଇଥିଲା। ଅଳ୍ପ ସମୟ ମଧ୍ୟରେ ଆମେ ଗେଷ୍ଟ୍‌ହାଉସ୍‌ରୁ ଆଲୁପରଟା, ଡାଲ୍‌ଫ୍ରାଏ, କୋବିମଟର କଷା ଧରି ଘରକୁ ଫେରିଲୁ। ଘରେ ପହଞ୍ଚି ମୁଁ ଦିନଯାକର ଅନୁଭୂତିକୁ ଅନୁଧ୍ୟାନ କରୁଥିଲାବେଳେ ସେସବୁ ମୋତେ ସ୍ୱପ୍ନଭଳି ଲାଗୁଥିଲା। ଗୋଟିଏ ଦିନରେ ଆଠଶହ କିଲୋମିଟର ଯାତ୍ରା ଆମ ପାଇଁ ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା। କିନ୍ତୁ ଆମେ ସେ ପଥ ଅତିକ୍ରମ କରିଥିଲେ ହେଁ ଟିକିଏ ହେଲେ କ୍ଳାନ୍ତି ଅନୁଭବ କରିନଥିଲୁ।

ନିଜ ଭିତରେ କିଛିସମୟ ଆଳାପ ପରେ ଆମେ ରାତ୍ରିଭୋଜନ କଲୁ। ପରଦିନ ମୋର ଚେକ୍‌ରିପବ୍ଲିକ୍ ରାଷ୍ଟ୍ରରୁ ବାହାରକୁ ଯିବାର କାର୍ଯ୍ୟକ୍ରମ ଥିବାରୁ ଶୀଘ୍ର ବିଶ୍ରାମ ନେଲି।

# ଡୁସେଲ୍‌ଡର୍ଫ ପରିଭ୍ରମଣ

ବିଦେଶ ଗସ୍ତ ପାଇଁ ମୁଁ ଓଡ଼ିଶା ଛାଡ଼ିବା ପୂର୍ବରୁ ଜର୍ମାନୀର ଡୁସେଲ୍‌ଡର୍ଫ ସହରରେ ଦୀର୍ଘଦିନ ହେବ ବାସକରୁଥିବା ବିଶିଷ୍ଟ ଓଡ଼ିଆ ଇଞ୍ଜିନିୟର୍ ମୋର ଅଗ୍ରଜ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ ତା'ର ସୂଚନା ପାଇଥିଲେ ଏବଂ ମୋର ବିଦେଶ ଗସ୍ତ ଯେଭଳି କେବଳ ଚେକ୍ ରିପବ୍ଲିକ୍ ରାଷ୍ଟ୍ର ମଧ୍ୟରେ ସୀମିତ ନ ରହେ, ସେଥିପାଇଁ ଆଉ କେତେକ ରାଷ୍ଟ୍ର ଗସ୍ତରେ ଯିବା ପାଇଁ କାର୍ଯ୍ୟକ୍ରମ ସ୍ଥିରକରିଥିଲେ। ଏପରି କି ମୁଁ ଅଷ୍ଟ୍ରୋଭାରେ ପହଞ୍ଚିଲାବେଳକୁ ତାଙ୍କ ବାସସ୍ଥାନ ଡୁସେଲଡର୍ଫ ଓ ବର୍ଲିନ୍ ଆଦି ସହର ପରିଦର୍ଶନରେ ଯିବା ପାଇଁ ଚନ୍ଦନ ସହିତ ଆଲୋଚନା କରି ସବୁକଥା ସ୍ଥିର କରିସାରିଥିଲେ। ତାଙ୍କ ପରାମର୍ଶକ୍ରମେ ଚନ୍ଦନ ଅଗ୍ରିମ ବିମାନ ଟିକେଟ୍ କିଣି ରଖିଥିଲା।

ମୁଁ ପୂର୍ବରୁ ଏକାଧିକ ବାର ବିଦେଶ ଗସ୍ତରେ ଯାଇଥିଲେ ବି ଏକାକୀ କେବେ ଯାଇ ନଥିଲି। ପ୍ରଥମଥର ବିଦେଶ ଯିବା ସମୟରେ ମୁଁ ଏକ ଭାରତୀୟ ସାମ୍ବାଦିକଦଳରେ ସାମିଲ୍ ଥିଲି। ଦ୍ୱିତୀୟଥର ଗସ୍ତର ପ୍ରଥମ ସୋପାନରେ ଦିଲ୍ଲୀରୁ ଭିଏନା ବିମାନଯାତ୍ରା ସମୟରେ ସାଙ୍ଗରେ ଧର୍ମପତ୍ନୀ ପ୍ରମଦା ଥିଲେ। କିଛି ନହେଲେ ନିଜଭିତରେ କଥାବାର୍ତ୍ତା ମାଧ୍ୟମରେ ସମୟ କଟିଯାଇଥିଲା। ମାତ୍ର ଏଥର ଜର୍ମାନ ରାଷ୍ଟ୍ର ଏକାକୀ ଯିବାର କାର୍ଯ୍ୟକ୍ରମ ଥିବାରୁ ମନରେ କାହିଁକି କେଜାଣି ଏକପ୍ରକାର ଆଶଙ୍କା ଜନ୍ମିଥିଲା। ଅଷ୍ଟ୍ରୋଭାରୁ ଡୁସେଲଡର୍ଫ ଯିବାକୁ ହେଲେ ପ୍ରଥମେ ଅଷ୍ଟ୍ରୋଭାରୁ ପ୍ରାଗ୍ ଯାଇ ସେଠାରୁ ବିମାନ ବଦଳାଇବାକୁ ପଡ଼ିଥିଲା। ସେଥିପାଇଁ ଦୁଇଟି ପୃଥକ୍ ଟିକେଟ୍‌ର ଆବଶ୍ୟକତା ଥିଲାବେଳେ ଲଗେଜ୍ ଏକାଥରେ ବୁକିଂ ହୋଇଥିଲା।

## ଅଷ୍ଟ୍ରୋଭାରୁ ବିମାନଯାତ୍ରା

ମଧ୍ୟାହ୍ନ ଭୋଜନ ପରେ ଚନ୍ଦନ କାର୍‌ରେ ନେଇ ମତେ ଅଷ୍ଟ୍ରୋଭା ବିମାନବନ୍ଦରରେ ଛାଡ଼ିଦେଇ ଆସିଲା। ତା'ଘରଠାରୁ ବିମାନବନ୍ଦରର ଦୂରତା ଅନ୍ୟୁନ ତିରିଶି କିଲୋମିଟର ହେଲେ ବି ସେମାନେ ତାକୁ ପାଖବାଟ ବୋଲି ବିଚାରୁଥିଲେ; କାରଣ ସେତିକି ବାଟ ଯିବାକୁ ସେମାନଙ୍କୁ ପନ୍ଦରମିନିଟ୍‌ରୁ ଅଧିକ ସମୟ ଲାଗୁନଥିଲା। ସ୍ଥାନୀୟ ସମୟ ଅଢ଼େଇଟାବେଳେ ବିମାନ ଅଷ୍ଟ୍ରୋଭା ଛାଡ଼ିଲା। ବିମାନଟି ଅପେକ୍ଷାକୃତ ସାନ। ଶହେରୁ କମ୍ ଆସନବିଶିଷ୍ଟ। ସେଥିରେ ପଛଆଡ଼କୁ କେତୋଟି ଆସନ ଖାଲି ପଡ଼ିଥିଲା। ବିମାନଟି ଆକଶମାର୍ଗକୁ ଉଠିଲା ପରେ ପରିଚାରିକା ଆଣି କେତୋଟି ଚକୋଲେଟ୍ ଦେଇଗଲେ। ମୁଁ ଭାବିଥିଲି ବୋଧେ ତା'ପରେ କିଛି ସ୍ନାକ୍ସ ଦେବେ। କିନ୍ତୁ ପଚାଶ ମିନିଟ୍ ଯାତ୍ରା ହୋଇଥିବାରୁ ସ୍ନାକ୍ସ ବ୍ୟବସ୍ଥା ନଥିଲା। ସାଢ଼େ ତିନିଟା ବେଳେ ମୁଁ ପ୍ରାଗ୍ ବିମାନବନ୍ଦରରେ ଓହ୍ଲାଇଲି। ଅଭ୍ୟର୍ଥନାକକ୍ଷକୁ ଯାଇ ବୁଝିବାରୁ ଜଣାଗଲା ଡୁସେଲ୍‌ଡର୍ଫ ପାଇଁ ବିମାନ ପାଞ୍ଚଟାରେ ଛାଡ଼ିବ। ପ୍ରାଗ୍ ବିମାନବନ୍ଦରର ବିଶେଷ କିଛି ଆକର୍ଷଣ ନଥିଲା। ବାଧ୍ୟ ହୋଇ ଲାଉଞ୍ଜ୍‌ରେ ଯାଇ ବସିଲି। ମୋ ସହିତ ଆଉ କେତେକ ବିମାନଯାତ୍ରୀ ମଧ୍ୟ ଥିଲେ। କିନ୍ତୁ ସେମାନେ ସମସ୍ତେ ବିଦେଶୀ ନାଗରିକ। ତେଣୁ ସେମାନଙ୍କ ସହିତ ମନଖୋଲା କଥାବାର୍ତ୍ତା ସମ୍ଭବ ନଥିଲା। ବିମାନବନ୍ଦର ଭିତରେ ଘଣ୍ଟାକର ଅପେକ୍ଷା ଗୋଟାଏ ଦିନଭଳି ଲାଗୁଥିଲା। ପାଖରେ ପଡ଼ିଥିବା ଗୋଟିଏ ଇଂରାଜୀ ଖବରକାଗଜକୁ ଏ ମୁଣ୍ଡରୁ ସେମୁଣ୍ଡ ଯାଏ ପଢ଼ିଲି। ଲାଉଞ୍ଜ ଭିତରେ ଥିବା ଗୋଟିଏ କାଫେଟେରିଆରୁ କୋଲ୍ଡଡ୍ରିଙ୍କ୍‌ଟିଏ ଆଣି ପିଇଲି। ତଥାପି ସମୟ ସରୁନଥାଏ। ଶେଷରେ ଆମ୍ଭମାନଙ୍କ ନିମନ୍ତେ ଘୋଷଣା ହେଲା, "ଯେଉଁମାନେ ଡୁସେଲଡର୍ଫ ଯିବାକୁ ଅପେକ୍ଷା କରିଛନ୍ତି ସେମାନେ ଦୟାପୂର୍ବକ ବାହାରେ ଅପେକ୍ଷା କରିଥିବା ଟ୍ରାଂଜିଟ୍ ବସ୍‌ରେ ବସନ୍ତୁ। ଏ ଘୋଷଣା ଶୁଣି ମନ ଟିକିଏ ହାଲୁକା ଲାଗିଲା।

ବସ୍‌ରେ ଅନ୍ୟଏକ ଟର୍‌ମିନାଲ୍‌କୁ ଯାଇ ଅପେକ୍ଷାରତ ଡୁସେଲଡର୍ଫ ବିମାନରେ ଚଢ଼ିଲି। ସେ ବିମାନଟି ମଧ୍ୟ ବିଶେଷ ବଡ଼ ନଥିଲା।

## ବିମାନବନ୍ଦରରେ ଯାଞ୍ଚ

ମୁଁ ଅଷ୍ଟ୍ରୋଭାରେ ଘର ଛାଡ଼ିବା ପୂର୍ବରୁ ରାଜେନ୍ଦ୍ରଭାଇ (ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ) ଫୋନ୍ କରି ବିମାନ ସମୟ ବିଷୟରେ ବୁଝି ଡୁସେଲ୍‌ଡର୍ଫ ବିମାନରେ ମତେ ନେବା ପାଇଁ ଅପେକ୍ଷା କରିଥିବେ ବୋଲି ଆଶ୍ୱାସନା ଦେଇଥିଲେ। ସେଥିପାଇଁ ମୁଁ ନିଶ୍ଚିନ୍ତ ଥିଲି।

ବିମାନରୁ ଅବତରଣ କରି କଷ୍ଟମ୍‌ସ କ୍ଲିଅରାନ୍ସ ପାଇଁ କାଉଣ୍ଟର୍‌କୁ ଗଲାବେଳକୁ ସେଠାରେ ଲମ୍ବାଲାଇନ୍ ଲାଗିଯାଇଥିଲା। ଯେଉଁମାନେ ଲାଇନ୍‌ରେ ଛିଡ଼ା ହୋଇଥିଲେ ସେମାନଙ୍କ ଭିତରେ ବୋଧହୁଏ ମୁଁ ଏକୁଟିଆ ଭାରତୀୟ ଯାତ୍ରୀ ଥିଲି। ସେଥିପାଇଁ ସେଠାରେ ଥିବା ଅଫିସର୍ ଜଣକ ମୋ ପାସ୍‌ପୋର୍ଟ ଓ ଭିସାକୁ ଟିକିନିଖିକରି ଦେଖିବାକୁ ଲାଗିଲେ। ମୁଁ କାହିଁକି ଡୁସେଲ୍‌ଡର୍ଫ ଆସିଛି, କେଉଁଠିକି ଯିବି, କାହାପାଖରେ ରହିବି, ମୋ ଖର୍ଚ୍ଚ କିଏ ବହନ କରିବେ, ତାଙ୍କର ମୋ ପାଖରେ କ'ଣ ସ୍ୱାର୍ଥ ନିହିତ ଅଛି ଇତ୍ୟାଦି ବହୁ ପ୍ରଶ୍ନ ପଚାରି ମତେ ଏକପ୍ରକାର ବିବ୍ରତ କରିପକାଇଲେ। ମୁଁ ଧୀରସ୍ଥିର ଭାବରେ ସେସବୁ ପ୍ରଶ୍ନର ଉତ୍ତର ଦେଲି। ଏଇ ପ୍ରକ୍ରିୟାରେ ପ୍ରାୟ ଦଶମିନିଟ୍ ସମୟ ଅତିବାହିତ ହୋଇଯାଇଥିଲା।

ଡୁସେଲ୍‌ଡର୍ଫ ବିମାନବନ୍ଦରଟି ଜର୍ମାନୀର ଏକ ପ୍ରମୁଖ ଆନ୍ତର୍ଜାତିକ ବିମାନବନ୍ଦର ଭାବରେ ଖ୍ୟାତ। ବିମାନବନ୍ଦରର ଆକାର ଓ କୋଳାହଳ ଦେଖି ମୁଁ ଏକପ୍ରକାର ହଜିଯାଇଥିଲି। ଲଗେଜ୍ କୋଉଠୁ ସଂଗ୍ରହ କରବି ପ୍ରଥମେ ସେ ବିଷୟରେ ବୁଝିପାରିଲି ନାହିଁ। ପଚାରି ପଚାରି ଲଗେଜ୍ ସଂଗ୍ରହ ସ୍ଥାନରେ ପହଞ୍ଚିଲାବେଳକୁ କନଭେୟର୍ ବେଲ୍ଟ ବନ୍ଦ୍ ହୋଇଯାଇଥିଲା ଓ ମୋ ଲଗେଜ୍‌ଟି ଅଫସି୍‌ରେ ଜମା ହୋଇସାରିଥିଲା। ରାଜେନ୍ଦ୍ରଭାଇ ଲଗେଜ୍ ସଂଗ୍ରହସ୍ଥାନରେ ମତେ ନପାଇ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ। ମୋ ବିଷୟ ଜାଣିବା ପାଇଁ ଅଷ୍ଟ୍ରୋଭାକୁ ଫୋନ୍ କରି ବିମାନରେ ମୁଁ ଆସିଥିବା କଥା ଜାଣିଲା ପରେ ତାଙ୍କ ବ୍ୟସ୍ତତା ବଢ଼ିଯାଇଥିଲା। ତାଙ୍କର ସନ୍ଦେହ ହୋଇଥିଲା ବୋଧହୁଏ ଅସାବଧାନତା ବଶତଃ ମୁଁ ପ୍ରାଗ୍‌ରୁ ଡୁସେଲ୍‌ଡର୍ଫ ବିମାନବନ୍ଦରରେ ଚଢ଼ିପାରି ନଥିବି। ତାଙ୍କର ବ୍ୟସ୍ତତା ଭିତରେ ମୁଁ ଯେତେବେଳେ ଯାଇ ତାଙ୍କୁ ପ୍ରଣାମ କଲି, ତାଙ୍କ ପାଟିରୁ ବାହାରିପଡ଼ିଲା, "ଥ୍ୟାଙ୍କ୍ ଗଡ୍, ୟୁ ହାଭ୍ ଆରାଇଭ୍‌ଡ୍।" ଡୁସେଲ୍‌ଡର୍ଫ ବିମାନବନ୍ଦର ସହିତ ସେ ଘନିଷ୍ଠଭାବରେ ପରିଚିତ। ଦୀର୍ଘ ଚାଳିଶିବର୍ଷରୁ ଅଧିକ ସମୟ ହେଲା ସେ

ସେଠାରୁ ମାସରେ ପ୍ରାୟ ପନ୍ଦରଦିନ ଯାତାୟାତ କରିଆସୁଛନ୍ତି । ମୁଁ ଯେତେବେଳେ ଲଗେଜ୍ କଥା ତାଙ୍କୁ କହିଲି, ସେ କହିଲେ, "ବ୍ୟସ୍ତ ହୁଅନାହିଁ, ମୁଁ ଯାଇ ଅଫିସ୍‌ରୁ ନେଇ ଆସିବି ।" ପାଞ୍ଚମିନିଟ୍‌ରେ ଆମ ଲଗେଜ୍ ମିଳିଗଲା ଓ ଆମେ କାର୍ ପାର୍କିଂକୁ ଆସିଲୁ ।

## ସନ୍ଧ୍ୟାରେ ଡୁସେଲ୍‌ଡର୍ଫର ମନୋରମ ଦୃଶ୍ୟ

ଡୁସେଲ୍‌ଡର୍ଫ ବିମାନବନ୍ଦରରୁ ନଏସରେ ଥିବା ରାଜେନ୍ଦ୍ରଭାଇଙ୍କ ଘରର ଦୂରତା ପ୍ରାୟ ପଚାଶ କିଲୋମିଟର ହେବ । ଆମେ ଗାଡ଼ି ପାଖରେ ପହଞ୍ଚିବା ପରେ ଭାଇ ନିଜେ ମୋ ବ୍ୟାଗ୍ ନେଇ ପଛପାଖରେ ରଖିଲେ ଓ ମତେ ଆଗରେ ଡାହାଣ ପାଖରେ ବସିବାକୁ କହିଲେ । ମୁଁ ଭାବିଥିଲି ଭାଇ ଏତେବଡ଼ ଇଞ୍ଜିନିୟର୍, ଜର୍ମାନୀରେ ଏତେବର୍ଷ ହେଲା ରହିଲେଣି, ନିଶ୍ଚୟ ଡ୍ରାଇଭର୍ ରଖିଥିବେ । କିନ୍ତୁ ସେ ଯେତେବେଳେ ନିଜେ ଗାଡ଼ି ଷ୍ଟାର୍ଟ କଲେ ମୋ ଭ୍ରମ ଦୂର ହେଲା । ସେ ମୋ ମନର ଭାବନାକୁ ବୁଝିପାରି ପଚାରିଲେ, "କ'ଣ ଭାବୁଛ ? ଏ ଦେଶରେ ନିଜ ଗାଡ଼ି ନିଜେ ଚଲାଇବାକୁ ପଡ଼େ । ଏଠାରେ ଡ୍ରାଇଭର ରଖିବାର ବ୍ୟବସ୍ଥା ପ୍ରାୟ ନାହିଁ । ଏ ଦେଶର ଲୋକେ ଆମଭଳି ହୀନମ୍ମନ୍ୟତାର ଶିକାର ହୋଇନାହାନ୍ତି । ସେଥିପାଇଁ ଏ ଦେଶରେ ପ୍ରତ୍ୟେକ ଶ୍ରମର ଉପଯୁକ୍ତ ମୂଲ୍ୟାୟନ କରାଯାଏ । କୌଣସି କାମକୁ କେହି ଛୋଟବୋଲି ବିଚାରନ୍ତି ନାହିଁ ।"

ରାଜେନ୍ଦ୍ରଭାଇଙ୍କର ବି.ଏମ୍.ଡବ୍ଲ୍ୟୁ ଗାଡ଼ି । ଭାରତୀୟ ମୁଦ୍ରାରେ ପ୍ରାୟ ୪୦ଲକ୍ଷ ଟଙ୍କା ହେବ । ଗାଡ଼ିରେ ବସିଲେ ବିମାନରେ ବସିଲାଭଳି ମନେହେଲା । କୁଆଡ଼େ ଟିକିଏ ଖୁଡ଼୍‌ଖାଡ଼୍ ନଥିଲା । ଆମେ ବସିବାମାତ୍ରେ ଗାଡ଼ିର ସ୍ପିଡ୍ ବଢ଼ି ଶହେକୋଡିଏ କିଲୋମିଟର ଛୁଇଁଲା । ଆଗରୁ ଚନ୍ଦନ ଗାଡ଼ିରେ ବସିଥିବାରୁ ହାଇସ୍ପିଡ୍ ଡ୍ରାଇଭ୍‌ରେ ମୋର କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇନଥିଲା । ଅଳ୍ପବାଟ ଯିବା ପରେ ବାଟରେ ଟି.ଭି. ଟାୱାର ପଡ଼ିଲା । ସେତେବେଳକୁ ସନ୍ଧ୍ୟା ହୋଇଆସୁଥିଲା । ରାଜେନ୍ଦ୍ରଭାଇ କହିଲେ, "ଟି.ଭି ଟାୱାର ଉପରୁ ଡୁସେଲଡର୍ଫ ସହରର ଦୃଶ୍ୟ ଖୁବ୍ ସୁନ୍ଦର ଦେଖାଯାଏ । ବିଶେଷକରି ସନ୍ଧ୍ୟାରେ ଏହି ଦୃଶ୍ୟ ଅତ୍ୟନ୍ତ ମନୋରମ ଜଣାପଡ଼େ । ଆମେ ଘରକୁ ଯିବାପୂର୍ବରୁ ଟାୱାର ଉପରକୁ ଗଲେ କେମିତି ହୁଅନ୍ତା ?" ମୁଁ ତାଙ୍କ କଥାରେ ହଁ ଭରିଲି । ଗାଡ଼ି ପାର୍କିଂରେ ରଖି ଆମେ ଲିଫ୍‌ଟରେ ଚଢ଼ିଲୁ । ଟାୱାରର ଉପରମହଲାରେ ପହଞ୍ଚିଲାବେଳକୁ ଆମଭଳି ଅନେକ ଲୋକ ସେଠାରେ ରୁଣ୍ଡ ହୋଇ ରାଇନ୍ ନଦୀରେ ଭାସମାନ ପୋତ ଓ ସହରର ଆଲୋକମାଳାକୁ ଉପଭୋଗ କରୁଥିଲେ । ଟାୱାରରେ ବୁଲେଟ୍‌ପ୍ରୁଫ କାଚର ବାଡ଼ ଲାଗିଥିଲା । କାଳେ ଉପରୁ ଡେଇଁ କିଏ ଆତ୍ମହତ୍ୟା କରିବ, ସେଥିପାଇଁ ନିରାପତ୍ତା ଦୃଷ୍ଟିରୁ ସେପରି ବ୍ୟବସ୍ଥା ହୋଇଥିଲା । ଆମେ ସେଠାରେ କିଛି ସମୟ ବିତେଇ ସହରର ଦୃଶ୍ୟକୁ ଉପଭୋଗ କଲୁ । ସେଦିନ

ସନ୍ଧ୍ୟାରେ ଟି.ଭି. ଟାୱାର ଉପରକୁ ନଯାଇଥିଲେ ହୁଏତ ସେପରି ଦୃଶ୍ୟ ଦେଖିବାପାଇଁ ଜୀବନରେ ଆଉ କେବେ ସୁଯୋଗ ମିଳିନଥାନ୍ତା।

## ନଏସ୍‌ରେ ଓଡ଼ିଆ ସଂସ୍କୃତି

କାର୍‌ରେ ଗଲାବେଳେ ରାଜେନ୍ଦ୍ରଭାଇ ଅନେକ ଘଟଣାର ଅବତାରଣା କରୁଥିଲେ। ମୁଁ ସେସବୁ ନିରବରେ ଶୁଣି ମଝିରେ ମଝିରେ ଖାଲି ହଁ ନାହିଁ କରୁଥିଲି। ମତେ ସବୁକଥା ସ୍ୱପ୍ନଭଳି ଲାଗୁଥିଲା। ଦିନେ ମୋ ମନରେ ସ୍ୱପ୍ନ ଥିଲା, ମୁଁ କିପରି ରାଜେନ୍ଦ୍ରଭାଇଙ୍କୁ ଭେଟନ୍ତି, ତାଙ୍କ ସାନ୍ନିଧ ଲାଭ କରନ୍ତି। ତାଙ୍କ ସାହାଯ୍ୟରେ ବିଦେଶ ଭ୍ରମଣରେ ଯାଆନ୍ତି। ବିଜୁ ପଟ୍ଟନାୟକ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିବା ସମୟରେ ରାଜେନ୍ଦ୍ରଭାଇ ଡାକିଆଣିଥିଲେ ଭାରତୀୟ ବଂଶୋଦ୍ଭବ ଶିଳ୍ପୋଦ୍ୟୋଗୀ ଲର୍ଡ ସ୍ୱରାଜ ପଲ୍‌ଙ୍କୁ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ। ତାଙ୍କରି ଉଦ୍ୟମରେ ଡକ୍ଟର୍ ପଲ୍ ନିଜ ସନ୍ତାନ ଅଙ୍ଗଦ ଓ ଆକାଶଙ୍କୁ ସାଙ୍ଗରେ ଆଣି ଏକାଧିକବାର ଭୁବନେଶ୍ୱର ଆସିଥିଲେ। ସେତେବେଳେ ଓଡ଼ିଶାରେ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା। ଦିନ ଓ ସମୟ ନିର୍ଘଣ୍ଟ ହୋଇ ଯାଜପୁର ଅଞ୍ଚଳର ଡୁବୁରୀଠାରେ ଯଥାରୀତି ଭୂମିପୂଜା ମଧ୍ୟ ସମ୍ପନ୍ନ ହୋଇଥିଲା। କିନ୍ତୁ କାହିଁକି କେଜାଣି ଏକ ଅଜଣା କାରଣରୁ ଡକ୍ଟର୍ ପଲ୍ ସେ ଯୋଜନାରୁ ମନ ଫେରାଇ ନେଇଥିଲେ। ଜର୍ମାନୀରେ ଦୀର୍ଘ ଚାଳିଶିବର୍ଷରୁ ଅଧିକ ଦିନ ରହି, ନିଖୁଣଭାବରେ ଜର୍ମାନ ଭାଷା କହିବୋଲି ପାରୁଥିବା ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ କିନ୍ତୁ ଜଣେ ଖାଣ୍ଟି ଓଡ଼ିଆ, ଓଡ଼ିଆ ସଂସ୍କୃତିର ଜଣେ ପୂଜାରୀ। ଓଡ଼ିଶା ଆସିଲେ ଟ୍ରାଉଜର୍ ପଞ୍ଜାବୀ ସାଙ୍ଗକୁ ଗୋଡ଼ରେ ହଳେ ଚପଲ। ମୁହଁରେ ସ୍ପଷ୍ଟ ଓଡ଼ିଆ ଉଚ୍ଚାରଣ। ବକ୍ତୃତା ଦେଲାବେଳେ ଗୋଟିଏ ହେଲେ ଇଂରାଜୀ ଶବ୍ଦ ପାଟିରୁ ବାହାରେ ନାହିଁ। ସେ ବୋଧହୁଏ ଏକମାତ୍ର ପ୍ରବାସୀ ଓଡ଼ିଆ, ଯିଏକି ଅନ୍ତତଃ ବର୍ଷକୁ ଅନ୍ୟୂନ ଦୁଇଥର ଓଡ଼ିଶା ଆସନ୍ତି। ବନ୍ଧୁବାନ୍ଧବ, ସାଙ୍ଗସାଥୀଙ୍କୁ ସନ୍ଧୋଳନ୍ତି। ସେମାନଙ୍କ ଭଲମନ୍ଦ ବୁଝନ୍ତି, ଆବଶ୍ୟକ ସ୍ଥଳେ ସାହାଯ୍ୟ ମଧ୍ୟ କରନ୍ତି। ଓଡ଼ିଶାରେ ଯେକୌଣସି ନୂଆ ବହି ପ୍ରକାଶିତ ହେଲେ ପ୍ରଥମ ଦଶଜଣ ଖରିଦ୍‌ଦାରଙ୍କ ମଧ୍ୟରେ ଥା'ନ୍ତି ଡକ୍ଟର ଦାସ। ସେ ଗୋଟିଏ ବହି କିଣନ୍ତି ନାହିଁ। ଅନ୍ୟୂନ ଦଶଖଣ୍ଡ ବହି କିଣି ନଅଜଣଙ୍କ ପାଖକୁ ପଠାନ୍ତି। କୌଣସି ଓଡ଼ିଆ ସମ୍ବାଦପତ୍ରରେ ଭଲ ଲେଖାଟିଏ ପ୍ରକାଶ ପାଇଲେ ସାତଦିନ ଭିତରେ ତା'ର ଫଟୋକପି ଆସି ପହଞ୍ଚିଯାଏ ସୁଦୂର ଜର୍ମାନୀରେ।

ଅଧଘଣ୍ଟା ଡ୍ରାଇଭ୍ ପରେ ଗୋଟିଏ ଘର ସାମନାରେ ବି.ଏମ୍.ଡବ୍ଲ୍ୟୁ କାର ଛିଡ଼ାହେଲା। ମୁଁ ଗାଡ଼ିରୁ ଓହ୍ଲାଇବାକୁ ଯାଉଥିଲି, ରାଜେନ୍ଦ୍ରଭାଇ କହିଲେ, "ଅପେକ୍ଷା

କର।" ଦେଖୁଦେଖୁ ଗ୍ୟାରେଜ୍‌ର ସାମ୍‌ନା ଦରଜାଟି ଆପେ ଆପେ ଖୋଲିଯାଇ ସମାନ୍ତରାଳ ଭାବେ ଛାତରେ ଲାଗିଗଲା ଓ ଗାଡ଼ିଟି ତା ଭିତରକୁ ପଶିଗଲା। ଆମେ ଗ୍ୟାରେଜ୍‌ରୁ ବାହାରିବା ମାତ୍ରେ ରାସ୍ତାର ଆଲୁଅ ଆପେଆପେ ଜଳିଉଠିଲା ଏବଂ ଆମେ ଯିବା ପରେ ପୁଣି ଲିଭିଗଲା। ମୁଁ କିଛି ବୁଝିପାରିଲି ନାହିଁ। କିଛି ପଚାରିବା ପୂର୍ବରୁ ରାଜେନ୍ଦ୍ରଭାଇ କହିଲେ, "ଏସବୁ ଦେଶରେ କାମକରିବାକୁ ଲୋକ ମିଳନ୍ତି ନାହିଁ। ସେଥିପାଇଁ ଇଲେକ୍‌ଟ୍ରିଠାରୁ ପାଣି ପର୍ଯ୍ୟନ୍ତ ସବୁକଥାର ପ୍ରୋଗ୍ରାମିଂ କରାଯାଇଛି। ସବୁକଥା ମନକୁ ମନ ହୁଏ।

ରାଜେନ୍ଦ୍ରଭାଇଙ୍କ ଘର ଆଗରେ ସୁଦୃଶ୍ୟ ବଗିଚା ଲନ୍‌ର ଘାସ ଚକ୍‌ଚକ୍ କରୁଥିଲା। ବଗିଚାରେ ଥିଲା ଦେଶୀ ବିଦେଶୀ ନାନାଜାତିର ଫୁଲ। ଏସବୁ ସାଙ୍ଗକୁ ସବୁଠାରୁ ଉଲ୍ଲେଖନୀୟ ଥିଲା ବଗିଚାର ଗୋଟିଏ କୋଣରେ ଥିବା ପଥର ନିର୍ମିତ କୋଣାର୍କଚକ୍ର। ଓଡ଼ିଶାରେ ଲୋକେ ନିଜନିଜ ଡ୍ରଇଂରୁମ୍‌ରେ ଛୋଟିଆ କୋଣାର୍କ ଚକ୍ରଟିଏ ରଖିବା ପାଇଁ କୁଣ୍ଠିତ ହେଉଥିବା ବେଳେ ସୁଦୂର ଜର୍ମାନରେ ଏପରି ଏକ ଉତ୍କଳୀୟ ଭାସ୍କର୍ଯ୍ୟର ସ୍ଥାପନା ନିଶ୍ଚିତ ଭାବରେ ଓଡ଼ିଆ ପ୍ରୀତିର ପରିଚୟ ପ୍ରଦାନ କରେ।

## ଆଦର୍ଶ ଓଡ଼ିଆ ଦମ୍ପତିଙ୍କ ଘରେ ଅତିଥି

କାନ୍ଥରେ ଥିବା ଗୋଟିଏ ସ୍ଥାନରେ ରାଜେନ୍ଦ୍ରଭାଇ ହାତମାରିବାରୁ ଘର ଭିତର ଲାଇଟ୍ ଜଳିଉଠିଲା ଓ ଭିତରୁ ଜଣେ ମହିଳା କବାଟ ଖୋଲିଲେ। ଘର ଭିତରେ ମୁଁ ପାଦ ଦେଇଛି କି ନାହିଁ, ରାଜେନ୍ଦ୍ରଭାଇ କହିଲେ, "ଇଏ ଇତି, ତମ ଭାଉଜ।" ମତେ ଚିହ୍ନା କରିବା ପୂର୍ବରୁ ଇତିଭାଉଜ କହିଲେ, "ବସନ୍ତବାବୁଙ୍କୁ ଚିହ୍ନା କରିବା ଦରକାର ନାହିଁ। ମୁଁ ତାଙ୍କ ବିଷୟରେ ପୂର୍ବରୁ ସବୁ ଶୁଣିଛି।" ଇତିଭାଉଜ ଉଚ୍ଚଶିକ୍ଷିତା ଓ ଆଧୁନିକା। ଜର୍ମାନରେ ଚାରିଦଶନ୍ଧିରୁ ଅଧିକ କାଳ ରହିଥିଲେ ମଧ୍ୟ ତାଙ୍କ ପାଖରେ ଓଡ଼ିଆତ୍ୱ ଭରିରହିଛି। ସେ କଟକ ସହରର ପ୍ରତିଷ୍ଠିତ ଓ ସମ୍ଭ୍ରାନ୍ତ ପରିବାର ଚନ୍ଦ୍ର କିଶୋର ଦାସ (ବେଙ୍ଗବାବୁ)ଙ୍କ ଝିଅ ଓ ବିଶିଷ୍ଟ ଜମିଦାର ରାଜକିଶୋର ଦାସଙ୍କ ନାତୁଣୀ। ସେ ପରିବାର କଟକ ସହରରେ କିଶୋର ଟ୍ରାନ୍ସପୋର୍ଟ ପରିବାର ନାମରେ ପରିଚିତ। ଯେତେବେଳେ କଟକ ସହରରେ ବିଶେଷ ବସ୍ ଚଳାଚଳ କରୁନଥିଲା, ସେତେବେଳେ କିଶୋର ଟ୍ରାନ୍ସପୋର୍ଟ ବସ୍ ଶୈଳବାଳା ମହିଳା କଲେଜ୍ ଛାତ୍ରୀଙ୍କୁ କଲେଜକୁ ନେବାଆଣିବା କରୁଥିଲା। ଭାଉଜଙ୍କ ବାଲ୍ୟଶିକ୍ଷା କଟକରେ। ବଡ଼ଲୋକ ଘରର ଝିଅ ଓ ବଡ଼ଲୋକ ଘରର ବୋହୂ ହେଲେ ବି ଗର୍ବ କିମ୍ବା ଅହଂକାର ତାଙ୍କୁ ସ୍ପର୍ଶ କରିନାହିଁ। ତାଙ୍କର ପରିବାର କହିଲେ ଦୁଇଟି ପିଲା। ପୁଅ ରାଜଦୀପ (ଟିଟୋ) ବଡ଼ ଏବଂ ଝିଅ ଅନୁସ୍କା ସାନ। ଦୁଇଜଣଯାକ ଜର୍ମାନ ବାହାରେ

ରହନ୍ତି। ବିଦେଶ ରାଷ୍ଟ୍ରରେ ଜନ୍ମ ହୋଇ ସେଇ ପାଣିପବନରେ ବଢ଼ିଥିଲେ ମଧ୍ୟ ସେମାନେ ପରିଷ୍କାର ଓଡ଼ିଆ କହନ୍ତି ଓ କଥାହେବା ପୂର୍ବରୁ ନମସ୍କାର କରିବାକୁ ଭୁଲନ୍ତି ନାହିଁ। ଏହା ପାରିବାରିକ ସଂସ୍କୃତିର ପ୍ରତିଫଳନ ଛଡ଼ା ଅନ୍ୟ କିଛି ନୁହେଁ। ଘରେ ଭାଇ ଭାଉଜଙ୍କର ଅତି ଗେହ୍ଲା କୁକୁର ଲାଇକା। କୋଳରେ ବସେ, ସୋଫାରେ ଶୁଏ। ପିଲାଙ୍କଠାରୁ ଅଧିକ ଆଦରପାଏ। ରାଜେନ୍ଦ୍ରଭାଇଙ୍କ ଘରଟି ଏକପ୍ରକାର ଓଡ଼ିଶାର ଦୂତାବାସ ଭଳି କାମ କରେ। ଓଡ଼ିଶାରୁ ଯିଏ ଜର୍ମାନ ଯାଇଛନ୍ତି, ସିଏ ରାଜନେତା ହୁଅନ୍ତୁ କି ପ୍ରଶାସକ ହୁଅନ୍ତୁ, ସମସ୍ତେ ତାଙ୍କ ଆତିଥେୟତା ଗ୍ରହଣ କରିଛନ୍ତି। ଅତିଥି ସତ୍କାରରେ ଡଃ ଦାସ ଓ ଶ୍ରୀମତୀ ଦାସଙ୍କର ତୁଳନା ନାହିଁ!

ରାଜେନ୍ଦ୍ର ଭାଇ ମୋ ଆଟାଚିଟି ନିଜେ ଉଠାଇ ଉପରମହଲାରେ ଥିବା ଗେଷ୍ଟରୁମ୍‌ରେ ରଖିଦେଇ ଆସିଲେ। ପାଖରେ ଥିବା ବାଥରୁମ୍ ମତେ ଦେଖାଇଦେଲେ। ଶୀଘ୍ର ରିଫ୍ରେସ୍ ହୋଇ ତଳକୁ ଆସିବାକୁ କହି ନିଜେ ବାଥରୁମ୍‌କୁ ଗଲେ। ମୁଁ ଲୁଗାପଟା ବଦଳାଇ ବାଥରୁମ୍‌କୁ ଯିବା ପରେ ଦି'ଥର ଚିନ୍ତାକଲି। ଯେତେ ସାବଧାନତା ସହକାରେ ବ୍ୟବହାର କଲେ ବି ରୁମ୍‌ଟି ନିଶ୍ଚିତଭାବେ ଯେ ଅପରିଷ୍କାର ହୋଇଯିବ ସେ ବିଷୟରେ ମୁଁ ନିଃସନ୍ଦେହ ଥିଲି; କାରଣ ସେ ବାଥରୁମ୍‌ରେ ଲାଗିଥିବା ମିରର୍, କାଚ ଓ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଆସବାବପତ୍ର ସବୁ ଚିକ୍‌ଚିକ୍ କରୁଥିଲା। ତା'ଛଡ଼ା ଚଟାଣରେ ଲାଗିଥିବା ଟାଇଲରେ ମୁହଁ ଦେଖାଯାଉଥିଲା। ମୁଁ ଅତି ସନ୍ତର୍ପଣରେ ବାଥରୁମ୍‌କୁ ପଶିଲି ଓ ଯେତିକି ଦରକାର ସେତିକି ବ୍ୟବହାର କରି ଶୀଘ୍ର [illegible] ଫେରିଲି।

ତଳେ ଡାଇନିଂ ଟେବୁଲ୍ [illegible] ସଜାଇ ରାଜେନ୍ଦ୍ରଭାଇ ଓ ଇତିଭାଉଜ ଅପେକ୍ଷା କରି ବସିଥିଲେ। ମୁଁ ପହଞ୍ଚିବା ମାତ୍ରେ ଖାଦ୍ୟ ବଢ଼ାବଢ଼ି ହେଲା। ମୋ ପାଇଁ ଭାଉଜ ଫ୍ରାଏଡ୍‌ରାଇସ୍, ଡାଲି, ସାଦା ତରକାରି, କୋବିଭଜା, ସାଲାଡ୍, ଆଚାର, ପାମ୍ପଡ୍ ସବୁ ପ୍ରସ୍ତୁତ କରି ରଖିଥିଲେ। ଭାଉଜଙ୍କ ହାତରନ୍ଧା ଭାରି ସୁଆଦିଆ। ଖାଇଲାବେଳେ ମନେହେଲା ସତେଯେପରି ମୁଁ ଆମ ଘରେ ଡାଇନିଂ ଟେବୁଲ୍‌ରେ ଖାଉଛି। ଖାଇସାରିବା ପରେ କିଛିସମୟ ଗପ୍‌ସପ୍ ଚାଲିଲା। କେତେଆଡୁ କେତେ କଥା। ଅଳ୍ପସମୟ କଥାବାର୍ତ୍ତା ଭିତରେ ମୁଁ ଭାଉଜଙ୍କ ଭିତରେ ଥିବା ଆତ୍ମୀୟତାର ପରିଚୟ ପାଇଥିଲି। ରାତି ବେଶି ହୋଇନଥିଲା। ଭାଉଜ ଘରେ ଥିବା ଦୁଇଟି ଆକ୍ୱାରିୟମ୍ ଦେଖାଇଲେ। ଗୋଟିଏ ଘରଭିତରେ ଓ ଅନ୍ୟଟି ବାହାରେ। ବାହାର କୁଣ୍ଡରେ ମାଛ ଖେଳିବା ପାଇଁ ଗୋଟିଏ କୃତ୍ରିମ ଝରଣା ସୃଷ୍ଟି କରାଯାଇଥିଲା ଏବଂ କୁଣ୍ଡ ଉପରେ ନାଇଲନ୍ ଜାଲ ବିଛା ହୋଇଥିଲା। ମଟର ଜରିଆରେ କୁଣ୍ଡରେ ଥିବା ପାଣିର ଉତ୍ତାପକୁ ନିୟନ୍ତ୍ରଣ କରାଯାଉଥିଲା। ସେଥିରେ ଥିବା ମାଛମାନଙ୍କୁ ଭାଉଜ ପିଲାଭଳି ପାଳିଥିଲେ। ଶୀତ ଚାରିମାସ ପାଣି ବରଫ ହୋଇଗଲେ ତା'ତଳେ ରହୁଥିବା ମାଛ କିପରି ଅକ୍ସିଜେନ୍ ପାଇବେ, ସେମାନଙ୍କ ପାଇଁ

ଖାଦ୍ୟ କିପରି ସାଇତା ହୋଇ ରଖାଯିବ ସେସବୁ ବିଷୟ ଭାଉଜ ଟିକିନିଖି ଭାବରେ ବୁଝୁଥିଲେ।

ଜର୍ମାନୀରେ ବୁଲାବୁଲି କରିବା ପାଇଁ ଆମର ଦୁଇଟି ବିକଳ୍ପ ପ୍ରସ୍ତାବ ଥିଲା। ପ୍ରଥମଟି ଡୁସେଲଡର୍ଫ ଓ ଏହାର ଆଖପାଖ ବୁଲିଲା ପରେ ବର୍ଲିନ୍ ଯିବା ଏବଂ ଦ୍ୱିତୀୟଟି ପ୍ରଥମେ ବର୍ଲିନ୍ ଓ ଅନ୍ୟାନ୍ୟ ସହର ବୁଲିଆସିଲା ପରେ ଡୁସେଲ୍‌ଡର୍ଫ ସହରରେ ବୁଲିବା। ଆଲୋଚନା ପରେ ସ୍ଥିର ହେଲା ଭାଇଙ୍କ ଘରେ ଗୋଟିଏ ଦିନ ରହି ନିକଟରେ ଥିବା ଦର୍ଶନୀୟ ସ୍ଥାନସବୁ ଦେଖିବା ପରେ ବର୍ଲିନ ଯିବା।

## ଡୁସେଲ୍‌ଡର୍ଫର ପୁରୁଣା ବଜାରର ଅଭୁଲା ଅନୁଭୂତି

ମୋ ନାତୁଣୀ ଏଲିନାର ଜନ୍ମଦିନ ନିକଟରେ ପଡୁଥିବାରୁ ତା'ପାଇଁ କ'ଣ ଗୋଟାଏ ଖେଳନା କଣିବା ପାଇଁ ମୁଁ ରାଜେନ୍ଦ୍ରଭାଇଙ୍କୁ କହିଲି। ସେ ମତେ ତାଙ୍କ ଘରପାଖରୁ କୋଡ଼ିଏ କିଲୋମିଟର ଦୂର ପୁରୁଣାବଜାରକୁ ନେଇଗଲେ। ସେଠାରେ ଆମେ ଗୋଟିଏ 'ମଲ୍'କୁ ଗଲୁ। ମଲ୍‌ଟି ଚାରିମହଲା ବିଶିଷ୍ଟ। ପ୍ରତ୍ୟେକ ମହଲାରେ ଅଲଗା ଅଲଗା ପଦାର୍ଥସବୁ ରହିଥିଲା। ସବୁ ମହଲାକୁ ଯିବାପାଇଁ ଏକାଧିକ ଏସ୍କାଲେଟର୍ ଲାଗିଥିଲା। ଖେଳନା ସେକ୍ସନ୍ ଯେଉଁଠି ଥିଲା ଆମେ ସେଠାକୁ ଗଲୁ। ସେଠାରେ ଯାହା ଦେଖିଲି ସେଥିରେ ଅବାକ୍ ହୋଇଗଲି। ଜଣେ ବିରାଟକାୟ ବ୍ୟକ୍ତି ସେଠାରେ ସେଲ୍ସମ୍ୟାନ୍ ଭାବରେ କାମ କରୁଥିଲେ। ସେ ଯେତିକି ଉଚ୍ଚା ସେତିକି ମୋଟା। ଉଚ୍ଚା ପ୍ରାୟ ସାତଫୁଟ ଏବଂ ଓଜନ ୧୪୦ କେ.ଜି। ଏସବୁ ସତ୍ତ୍ୱେ ସେ ଖୁବ୍ କର୍ମଚଞ୍ଚଳ ଥିଲେ। ଚଳାଚଳରେ ତାଙ୍କର କିଛି ଅସୁବିଧା ହେଉନଥିଲା। ମଲ୍‌ରେ ଚତୁର୍ଥ ମହଲାରେ ଥିବା ସ୍ପୋର୍ଟ୍‌ସ୍ ସେକ୍ସନର ଗୋଟିଏ ପାଖରୁ ଅନ୍ୟପାଖକୁ ସେ ଅନାୟାସରେ ବିଚରଣ କରି ପାରୁଥିଲେ। ମୁଁ ଗୋଟିଏ ସ୍ଥାନରେ ଛିଡ଼ାହୋଇ ତାଙ୍କୁ ଅନେଇ ରହିଥିଲାବେଳେ ସେ ଏକ ସ୍ମିତହାସ୍ୟ ଦେଇ ଚାଲିଗଲେ। ରାଜେନ୍ଦ୍ରଭାଇ ଦୂରରେ ରହି ଏସବୁ ଲକ୍ଷ୍ୟ କରୁଥିଲେ। ମୁଁ ତାଙ୍କ ପାଖକୁ ଯାଇ କହିଲି, "ଏ ବିରାଟ ବ୍ୟକ୍ତିଙ୍କ ସହିତ ଫଟୋଟିଏ ଉଠାଇଲେ ହୁଅନ୍ତା ନାହିଁ? ଆଉ ଏପରି ଜଣେ ଲୋକଙ୍କୁ ଦେଖିବାକୁ ମିଳିବ କି ନାହିଁ ସେକଥା କିଏ କହିବ?" ରାଜେନ୍ଦ୍ରଭାଇ ସେ ଭଦ୍ରଲୋକଙ୍କ ପାଖକୁ ଯାଇ ମୋର ଅଭିଳାଷ ସମ୍ପର୍କରେ ତାଙ୍କୁ ଜର୍ମାନ ଭାଷାରେ କହି ମୋ ସହିତ ଫଟୋ ଉଠାଇବାରେ କିଛି ଅସୁବିଧା ଅଛିକି ବୋଲି ପଚାରିଥିଲେ। ତାଙ୍କର ସେଥିରେ କିଛି ଆପତ୍ତି ନାହିଁ ବୋଲି ଜଣାଇ ସେ ମହାଶୟ ଆସି ମୋ ପାଖରେ ଛିଡ଼ା ହୋଇଗଲେ। ତାଙ୍କ ତୁଳନାରେ ମୁଁ ଗୋଟିଏ ବାମନଭଳି ଦେଖାଯାଉଥିଲି। ରାଜେନ୍ଦ୍ରଭାଇ ଆମର ଫଟୋ ଉଠାଇ ଫଟୋପାଇଁ ପୋଜ୍ ଦେଇଥିବାରୁ

ସେ ଭଦ୍ରବ୍ୟକ୍ତିଙ୍କୁ ଧନ୍ୟବାଦ ଜଣାଇଲେ। ଭଦ୍ରତା ହେଉଛି ପାଶ୍ଚାତ୍ୟରାଷ୍ଟ୍ର ଜୀବନଶୈଳୀର ଏକ ଅଙ୍ଗ। ସେଠାକାର ଲୋକେ କାହାଠାରୁ ସାମାନ୍ୟ ସାହାଯ୍ୟ କିମ୍ବା ଉପକାର ପାଇଥିଲେ ଧନ୍ୟବାଦ ଜଣାଇବାକୁ ନିଜର କର୍ତ୍ତବ୍ୟ ବୋଲି ମନେକରନ୍ତି।

ଫଟୋ ଉଠାଇବା ପରେ ଆମେ ଗୋଟିଏ ଖେଳନା କଣ୍ଢେଇ କିଣିବା ପାଇଁ ଆଗ୍ରହୀ ବୋଲି ଜାଣିଲା ପରେ ସେ ବିରାଟକାୟ ବ୍ୟକ୍ତି ଆମକୁ ଗୋଟିଏ କର୍ଣ୍ଣରକୁ ନେଇଗଲେ ଓ ଯେଉଁ ପିଲା ପାଇଁ ଖେଳନା ଦରକାର ତା'ର ବୟସ କେତେ ବୋଲି ପଚାରିଲେ। ମୁଁ ରାଜେନ୍ଦ୍ରଭାଇଙ୍କୁ କହିଲି, "କଣ୍ଢେଇ କିଣିବା ସହିତ ପିଲାର ବୟସର ସମ୍ପର୍କ କ'ଣ ଅଛି ?" ରାଜେନ୍ଦ୍ରଭାଇ ଏହାର କାରଣ ବିଷୟରେ ଜାଣିବାକୁ ଚାହିବାରୁ ସେ ଭଦ୍ରବ୍ୟକ୍ତି କହିଲେ, "କେଉଁ ବୟସର ପିଲା କେଉଁ ଧରଣର ଖେଳନା ଧରିବା ଉଚିତ୍ ସେ ସମ୍ପର୍କରେ ମନସ୍ତତ୍ତ୍ୱବିତ୍‌ମାନେ ଗବେଷଣା କରି ସ୍ଥିର କରିଛନ୍ତି। ସେଥିରେ ବ୍ୟତିକ୍ରମ ହେଲେ ପିଲା ଉପରେ ଖରାପ ପ୍ରଭାବ ପଡ଼ିପାରେ।" ଆମର ତ ସେ ବାଛବିଚାର ନାହିଁ, ଆମେ କାହିଁକି ସେ କଥା ବୁଝିବୁ ? ପିଲାର ବୟସ ଚାରିବର୍ଷ ଜାଣି ସେ ଆମକୁ ଗୋଟିଏ ରିମୋଟ୍‌କଣ୍ଟ୍ରୋଲ୍ ଖେଳନା କାର୍ ଦେଲେ। ଆମେ ଖେଳନାଟି ସଂଗ୍ରହ କରି କାଉଣ୍ଟର୍‌ରେ ମୂଲ୍ୟ ପଇଠ କରି ବାହାରକୁ ଆସିଲୁ। ଆସିଲାବେଳେ ସେଇ ବିରାଟକାୟ ବ୍ୟକ୍ତିଙ୍କ ଛବି ଦୀର୍ଘସମୟ ପାଇଁ ମନରୁ ଯାଇନଥିଲା।

ମଲ୍‌ରୁ ଓହ୍ଲାଇ ଆମେ ଚାଲିଚାଲି ମାର୍କେଟ୍‌ଆଡ଼େ ଗଲୁ। ମାର୍କେଟ୍‌ରେ ବିଭିନ୍ନ କିସମର ଦୋକାନ ଥିଲା। ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଦୋକାନ ଚୀନ ଲୋକଙ୍କର। ମୁଁ ବିଶ୍ୱାସ କରି ପାରିଲି ନାହିଁ ଯେ, ସୁଦୂର ଚୀନରୁ ଲୋକେ ଆସି ଜର୍ମାନୀ ବଜାରରେ କିପରି ସେମାନଙ୍କର ଆଧିପତ୍ୟ ବିସ୍ତାର କରିପାରିଥିଲେ। ସେଠାକାର ବଜାରରେ ଲୁଗାପଟା, ଖେଳନା ଓ ଅନ୍ୟାନ୍ୟ କେତେକ ଉପକରଣରେ ସେମାନଙ୍କର ଏକପ୍ରକାର ଏକଚାଟିଆ ବେପାର ଥିଲା। ସେମାନେ ଡୁସେଲ୍‌ଡର୍ଫର ପାଣିପବନ ସହତ ନିଜକୁ ଖାପଖୁଆଇ ନେଇଥିଲେ ବି ନିଜର ଖାଦ୍ୟପେୟ ଓ ସଂସ୍କୃତିକୁ ବଜାୟ ରଖିଥିଲେ।

ବଜାରବୁଲା ସରିଲାବେଳକୁ ସ୍ଥାନୀୟ ସମୟ ଗୋଟାଏ ବାଜିଯାଇଥଲା। ରାଜେନ୍ଦ୍ରଭାଇ ପ୍ରସ୍ତାବ ଦେଲେ ଘରକୁ ଫେରିଯାଇ ମଧ୍ୟାହ୍ନଭୋଜନ କରି କିଛି ସମୟ ବିଶ୍ରାମ କରିବାକୁ। ମୁଁ କିନ୍ତୁ ସେଥିରେ ରାଜି ହେଲିନାହିଁ। ମୁଁ ତାଙ୍କୁ କହିଲି, 'ଯେ ଦେଶ ଯାଇ, ସେ ଫଳ ଖାଇ' ନୀତିରେ ବିଦେଶ ରାଷ୍ଟ୍ରରେ ଖରାବେଳେ ଖାଇସାରି ଶୋଇବା ଅପେକ୍ଷା କିଛି ସ୍ନାକ୍ସ ନେଇ ଅଧିକ ଜାଗା ବୁଲିଲେ ବରଂ ଭଲ ହେବ।" ଆମେ ପାଖ ରେଷ୍ଟୁରାଣ୍ଟ୍‌କୁ ଯାଇ ଗୋଟିଏ ଗୋଟିଏ ପଟାଟୋ ଚିପ୍ସ ଓ ତା'ସାଙ୍ଗରେ କିଛି ଜୁସ୍ ଆଣିଲୁ। ସେତିକିରେ କାମ ଚଳିଗଲା।

# ଇସ୍ପାତନଗରୀ ଡୁଇସ୍‌ବର୍ଗ

ଆମ ହାତରେ ଯଥେଷ୍ଟ ସମୟ ଥିଲା। ମୁଁ ରାଜେନ୍ଦ୍ରଭାଇଙ୍କୁ କହିଲି, "ପାଖରେ ଆଉ କ'ଣ ଦର୍ଶନୀୟ ସ୍ଥାନ ଅଛି? ଦେଖି ଆସିଲେ ହୁଅନ୍ତା ନାହିଁ?" ଆମର ଆଖପାଖ କହିଲେ ପାଞ୍ଚ ସାତ କିଲୋମିଟର ଦୂରକୁ ବୁଝାଏ। ମାତ୍ର ସେଠାରେ ପଚାଶ କିଲୋମିଟର ଦୂରତାକୁ ପାଖ ବୋଲି ଧରାଯାଏ। ଭାଇ କହିଲେ, "ହଉ ଠିକ୍ ଅଛି। ଏସେନ୍‌ରେ ଥିବା ଇସ୍ପାତ ସମ୍ରାଟ୍ ଫ୍ରେଡେରିକ୍ ଆଲ୍‌ଫ୍ରେଡ୍ କ୍ରୁପଙ୍କ ସାମ୍ରାଜ୍ୟ(ବାସଭବନ) ଦେଖିଆସିବା।" ମୁଁ ପ୍ରଥମେ ଭାବିଲି, ଜଣେ ଲୋକର ଘରକୁ ଦେଖିବା ପାଇଁ ଭାଇ କ'ଣ ପ୍ରସ୍ତାବ ଦେଉଛନ୍ତି? ତେବେ ମନକଥା ମନରେ ରଖି ଯାଇ ଗାଡ଼ିରେ ବସିଲି। ପଚିଶି ମିନିଟ୍ ଡ୍ରାଇଭ୍ ପରେ ଆମେ ଯାଇ ଗୋଟିଏ ବିରାଟ ଫାଟକ ପାଖରେ ପହଞ୍ଚିଲୁ। ଭାଇ ଜର୍ମାନ ଭାଷାରେ ସେଠାରେ ଥିବା ସିକ୍ୟୁରିଟି ଅଫିସର୍‌କୁ କ'ଣ କହିଲେ। ସାଙ୍ଗେସାଙ୍ଗେ ସେ ଆମ ପାଇଁ ଗେଟ୍ ଖୋଲିବାକୁ ଅର୍ଡର ଦେଲେ। ଗେଟ୍ ଖୋଲିବା ପରେ ଗାଡ଼ି ଭିତରେ ପଶିଲା ଓ କିଛିବାଟ ଯିବା ପରେ ଗୋଟିଏ ବହୁତଳ ପ୍ରାସାଦ ସାମ୍ନାରେ ଆମେ ଅଟକିଲୁ। ପ୍ରାକୃତିକ ପରିବେଶ ମଧ୍ୟରେ ଧଳାରଙ୍ଗର ସେ ସୌଧଟି ଦଣ୍ଡାୟମାନ ଥିଲା। ଚାରିପାଖରେ ପ୍ରଶସ୍ତ ଘାସପଡ଼ିଆ ଓ ମଝିରେ ମଝିରେ ସୁଦୃଶ୍ୟ ଫୁଲବଗିଚା। ଗୋଟିଏ ପାଖକୁ ଗାଡ଼ି ପାର୍କିଂ କରିବା ପାଇଁ ଜାଗା। ମଝିରେ କ୍ରୁପ୍ ସାମ୍ରାଜ୍ୟର ଶେଷ ବଂଶଧର, 'ଜର୍ମାନର ଲୌହମାନବ' ନାମରେ ଜଣାଶୁଣା ଫ୍ରେଡେରିକ୍ ଆଲ୍‌ଫ୍ରେଡ୍ କ୍ରୁପ୍‌ଙ୍କର ବିରାଟ ପ୍ରତିମୂର୍ତ୍ତି ବିରାଜମାନ ଥିଲା।

## ଏସେନ୍‌ରେ କ୍ରୁପ୍ ପରିବାରର ସାମ୍ରାଜ୍ୟ

ଆମେ ଗାଡ଼ି ରଖି ଆସିବା ପରେ ରାଜେନ୍ଦ୍ର ଭାଇ କହିଲେ, "ଏଇ ବିରାଟମାନବଙ୍କ ପ୍ରତିମୂର୍ତ୍ତି ନିକଟରେ ଗୋଟିଏ ଫଟୋ ଉଠାଅ; ଏଠିକି ଆସିଥିଲ ବୋଲି ମନେରହିବ।" କେବଳ ତାଙ୍କ ଆଦେଶ ପାଳନ କରିବା ବ୍ୟତୀତ ମୋର ଅନ୍ୟ କୌଣସି ଉତ୍ତର ନଥିଲା। ଆଲ୍‌ଫ୍ରେଡ୍ କ୍ରୁପ୍ ମାତ୍ର ୪୮ବର୍ଷ ଜୀବିତ ଥିଲେ। ଏସେନ୍‌ରେ କ୍ରୁପ୍ ପରିବାରର ବାସଭବନଟି 'ଭିଲା ହୁଗେଲ୍' ନାମରେ ପରିଚିତ। ଏହି ବାସଭବନକୁ ଅତୀତରେ ବହୁ ସମ୍ରାଟ୍, ରାଜା, ରାଜନୀତିଜ୍ଞ ଏବଂ ବହୁ ରାଷ୍ଟ୍ରମୁଖ୍ୟ ଆସିଛନ୍ତି। ବାସ୍ତବରେ ନିଜ ଆଖିରେ ନଦେଖିଲେ ଏହି ଭାସଭବନର ପରିବେଶ ଓ ଭାସ୍କର୍ଯ୍ୟକୁ କଳ୍ପନା କରାଯାଇ ପାରିବ ନାହିଁ। ସେଠାରେ ଥିବା ଅଭ୍ୟର୍ଥନାକକ୍ଷରୁ ଜଣାପଡ଼ିଲା ଯେ ୧୮୭୦ ମସିହା ଅପ୍ରେଲ୍ ମାସରେ ଏହି ସୌଧର ଶିଳାନ୍ୟାସ କରାଯାଇଥିଲା ଏବଂ ୧୮୭୩ ଜାନୁଆରୀ ମାସରେ କ୍ରୁପ୍ ପରିବାର ଏହି ନୂତନ ଗୃହକୁ ଆସିଥିଲେ। ଏହି ସୌଧର ନିର୍ମାଣକୌଶଳ ଏପରି ଥିଲା, ଯାହାଫଳରେ ପ୍ରତ୍ୟେକ କୋଠରିର ଉତ୍ତାପକୁ ପୃଥକ ଭାବରେ ନିୟନ୍ତ୍ରଣ କରାଯାଇପାରୁଥିଲା। ୧୮୭୩ ମସିହାରୁ ୧୯୪୫ ମସିହା ମଧ୍ୟରେ ତିନିପୁରୁଷ ଧରି

କ୍ରୁପ୍ ପରିବାର ସେହି ସୌଧରେ ବସବାସ କରୁଥିଲେ। ହେଲେ ମଝିରେ ମଝିରେ ଆବଶ୍ୟକତାକୁ ଚାହି ଏହାର ନାମକରଣ କରାଯାଇ ଏଥିରେ ୨୬୯ଟି କୋଠରି ନିର୍ମାଣ କରାଯାଇଥିଲା। ଉପଯୁକ୍ତ ରକ୍ଷଣାବେକ୍ଷଣ ଫଳରେ ପ୍ରାସାଦଟି ଅକ୍ଷତ ଅବସ୍ଥାରେ ରହିଥିଲା। ସେ ସୌଧର ବିଶେଷତ୍ୱ ହେଉଛି, ସେଇଟି ସମ୍ପୂର୍ଣ୍ଣଭାବରେ କାଠରେ ନିର୍ମିତ ହୋଇଥିଲା। ଘରର ଚଟାଣଠାରୁ ଶିଡ଼ି ଏବଂ ଛାତସବୁ କାଠରେ ତିଆରି। କାଠ ଉପରେ ନରମ ଗାଲିଚା ବିଛାଯାଇଥିଲା। ୧୯୬୭ ମସିହାରୁ ଏହି ସୌଧ ଓ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଗୋଟିଏ 'ଫାଉଣ୍ଡେସନ' ଦ୍ୱାରା ପରିଚାଳିତ ହେଉଛି ଏବଂ ଏହାକୁ ଦେଖିବା ପାଇଁ ସର୍ବସାଧାରଣଙ୍କୁ ଅନୁମତି ମିଳୁଛି।

'ଭିଲା ହୁଗେଲ୍' ବୁଲି ଦେଖିବା ପାଇଁ ଆମକୁ ଦୁଇଘଣ୍ଟାରୁ ଅଧିକ ସମୟ ଲାଗିଲା। ସେଥିରେ କ୍ରୁପ୍ ପରିବାରର ବହୁ ରୋମାଞ୍ଚକର ଇତିହାସର ବସ୍ତୁକୁ ଅତ୍ୟନ୍ତ ଯତ୍ନର ସହିତ ସାଇତା ଯାଇଥିଲା। ୧୮୧୧ ମସିହା ନଭେମ୍ବର ୨୦ ତାରିଖରେ କ୍ରୁପ୍ ସାମ୍ରାଜ୍ୟର ପ୍ରତିଷ୍ଠାତା ଯେଉଁ ମେସିନ୍‌ରୁ କାଷ୍ଟ୍ ଷ୍ଟିଲ୍ ପ୍ରସ୍ତୁତ କରିଥିଲେ, ତା'ର ଏକ ପ୍ରତିଛବି କାଚବାକ୍ସ ଭିତରେ ଶୋଭା ପାଉଥିଲା। 'ଭିଲା ହୁଗେଲ' ହତା ମଧ୍ୟରେ ପ୍ରାୟ ୩୦ ହେକ୍ଟର ଜମି ଉପରେ ଲୋଭନୀୟ ବଗିଚା ଦର୍ଶକମାନଙ୍କୁ ଆକୃଷ୍ଟ କରୁଥିଲା। ନିକଟରେ ଏକ ବିରାଟ ହ୍ରଦ ଖୋଳାଯାଇ ଦର୍ଶକମାନଙ୍କ ପାଇଁ ନୌବିହାରର ସୁବିଧା ଯୋଗାଇ ଦିଆଯାଇଥିଲା। ଭିଲା ହୁଗେଲ୍ ହତା ମଧ୍ୟରେ କାରରେ ଯିବା ସମୟରେ ଘଞ୍ଚଜଙ୍ଗଲରେ ଯିବାର ଭ୍ରମ ସୃଷ୍ଟି ହେଉଥିଲା। ହ୍ରଦରେ ନୌବିହାର ପାଇଁ ମନରେ ଆଗ୍ରହ ସୃଷ୍ଟି ହୋଇଥିଲେ ହେଁ ପରିବେଶ ଓ ପରିସ୍ଥିତି ଅନୁକୂଳ ନଥିବାରୁ ଆମକୁ ବାଧହୋଇ ଫେରିବାକୁ ପଡ଼ିଲା। ପ୍ରାକୃତିକ ପରିବେଶ ଆମର ଯାତ୍ରାକୁ ବେଶ୍ ଆକର୍ଷଣୀୟ କରିଥିଲା।

ଏସେନ୍‌ରୁ ଘରକୁ ଫେରିବାବେଳକୁ ସାତଟା ବାଜିଯାଇଥିଲା। ଇତି ଭାଉଜ ପ୍ରସ୍ତାବ କଲେ ସେଦିନ ରାତିରେ ଘରେ ରାତ୍ରିଭୋଜନ ନକରି ନିକଟରେ ଥିବା ଚାଇନିଜ୍ ରେଷ୍ଟୁରାଣ୍ଟ୍‌କୁ ଯିବାକୁ। ମୁଁ ପ୍ରଥମେ ଭାବିଲି ସୁଦୂର ଡୁସେଲଡର୍ଫରେ ମୋ'ଭଳି ଶାକାହାରୀ ଲୋକ ପାଇଁ ଚାଇନିଜ୍ ରେଷ୍ଟୁରାଣ୍ଟ୍‌ରେ କ'ଣ ବା ଖାଇବାକୁ ମିଳିପାରିବ ? କିନ୍ତୁ ସେଠାକୁ ଯିବାପରେ ମୋର ଧାରଣା ବଦଳିଗଲା। ଚାଉମିନ୍, ଚାଉଚାଉ, ଚିଲିପନୀର ସବୁପ୍ରକାର ଚାଇନିଜ୍ ଖାଦ୍ୟ ସେଠାରେ ମିଳୁଥିଲା। ସେମାନେ ବତକରୁ ପ୍ରସ୍ତୁତ ଗୋଟିଏ ଡିସ୍ ନେଲେ। ସେ ସନ୍ଧ୍ୟାର ଭୋଜନ ଅତିଶୟ ତୃପ୍ତିକର ହୋଇଥିଲା। ଘରକୁ ଫେରି ତା'ପରଦିନ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା ଚାଲିଲା। ମୁଁ ଯେତେ ଜାଗାକୁ ଯାଉଥିଲି ସବୁକଥା ନୂଆ ନୂଆ ଲାଗୁଥିଲା। ସେଥିପାଇଁ ପାଖରେ ଥିବା ଅନ୍ୟ ସହରକୁ ଯିବାପାଇଁ ମୁଁ ପ୍ରସ୍ତାବ ଦେଲି।

## ଆଧୁନିକ ଇସ୍ପାତନଗରୀ ଡୁଇସ୍‌ବର୍ଗ

ପ୍ରାତଃଭୋଜନ ସାରି ଆମେ ଇସ୍ପାତନଗରୀ ଡୁଇସ୍‌ବର୍ଗ ସହର ଅଭିମୁଖେ ବାହାରିଲା ବେଳକୁ ଏଗାରଟା ବାଜିଯାଇଥିଲା। ରାଜେନ୍ଦ୍ରଭାଇଙ୍କ ଘରୁ ଡୁଇସବର୍ଗ ସହରର ଦୂରତା ୭୦ କିଲୋମିଟରରୁ ଅଧିକ। ତା'ର ଅର୍ଥ ଯିବା ଆସିବା ପ୍ରାୟ ଦେଢ଼ଶହ କିଲୋମିଟର। ମୋ ପାଇଁ ରାଜେନ୍ଦ୍ରଭାଇ ଏତେବାଟ କଷ୍ଟକରି ଯିବେ ଓ ଆସିବେ ସେଇଟା ମୁଁ ଚାହୁଁନଥିଲି। କିନ୍ତୁ ସେ କହିଲେ, "ତମେ ସେଠାକୁ ନଗଲେ ଆଉ କ'ଣ ସେ ଜାଗାକୁ ଦେଖିପାରିବ? ଆମର ତ ଦେଢ଼ଶହ କିଲୋମିଟର ଡ୍ରାଇଭ୍ କିଛି ନୁହେଁ। ଆମେ ସବୁଦିନ ପ୍ରାୟ ୧୮୦ କିଲୋମିଟର ଡ୍ରାଇଭିଂ କରୁଛୁ, ସେଥିପାଇଁ କାହିଁକି ଚିନ୍ତା କରୁଛ?"

ଗାଡ଼ିରେ ବସିଲାବେଳେ ସିଟ୍‌ବେଲ୍ଟ ବାନ୍ଧିବାକୁ ମୁଁ ଭୁଲି ଯାଇଥିଲି। ରାଜେନ୍ଦ୍ରଭାଇ ମତେ ଚେତେଇ ଦେଇ କହିଲେ, "ସେ ଭୁଲ୍ କରନାହିଁ। ଏ ଦେଶର କାନୁନ୍ ଯେତିକି କଠିନ, ତାକୁ ଯେଉଁମାନେ କାର୍ଯ୍ୟକାରୀ କରନ୍ତି ସେମାନେ ତତୋଧିକ ନିର୍ଦ୍ଦୟ। କର୍ତ୍ତବ୍ୟ ପାଳନ ବେଳେ ସେମାନେ କାହାରି ମୁହଁକୁ ଅନାନ୍ତି ନାହିଁ। କାହାକୁ ଅଯଥାରେ ହଇରାଣ କରିବା କିମ୍ବା ଅପରାଧୀକୁ ବିନା ଦଣ୍ଡରେ ଛାଡ଼ିଦେବାକୁ ସେମାନେ ପସନ୍ଦ କରନ୍ତି ନାହିଁ।" ଏଇ କଥାବାର୍ତ୍ତା ଭିତରେ ଦେଖିଲୁ ଗୋଟିଏ କାର୍‌କୁ ପୁଲିସ୍ ଅଟକାଇ ଯାଞ୍ଚ କରୁଥିଲେ। ଥରେ ପୁଲିସ୍ ହାତରେ ପଡ଼ିଲେ ଖସିବା ସହଜ ନୁହେଁ। ଆମେ ପୁଲିସ୍ ପାଖରେ ପହଞ୍ଚିବା ପୂର୍ବରୁ ମୁଁ ସିଟ୍‌ବେଲ୍ଟ ବାନ୍ଧିସାରିଥିଲି, ନହେଲେ ଆମେ ତାଙ୍କ ହାବୁଡ଼ରେ ପଡ଼ି ହଇରାଣ ହୋଇଥାଆନ୍ତୁ। ସେଠାକାର ପୁଲିସ ରାସ୍ତାର ବିଭିନ୍ନ ସ୍ଥାନରେ କ୍ଲୋଜ୍‌ସର୍କିଟ୍ କ୍ୟାମେରା ଲଗାଇ ବସିଥାନ୍ତି। ରାସ୍ତାରେ ଯାଉଥିବା ଗାଡ଼ିର ନମ୍ବର ସହିତ ଗାଡ଼ିର ଚାଳକ ଓ ଆଗରେ ବସିଥିବା ବ୍ୟକ୍ତି ସିଟ୍‌ବେଲ୍ଟ ବାନ୍ଧିଛନ୍ତି କି ନାହିଁ, ସବୁ ବିଷୟ ଆପେଆପେ ରେକର୍ଡ ହୋଇଯାଏ। ଯେଉଁମାନେ ଗାଡ଼ି ଚାଳନାର ନିୟମ ଉଲ୍ଲଂଘନ କରନ୍ତି, ସେମାନଙ୍କୁ ଅପରାଧ ଅନୁଯାୟୀ ଦଣ୍ଡବିଧାନ କରାଯାଏ। ଗାଡ଼ିର ରେଜିଷ୍ଟ୍ରେସନ୍ ନମ୍ବରରୁ ମାଲିକଙ୍କ ନାମ ଓ ଠିକଣା ମିଳିଯାଏ ଏବଂ ପୁଲିସ୍ ପକ୍ଷରୁ ସେଇ ଠିକଣାରେ ମାଲିକଙ୍କ ପାଖକୁ ଚାଲାଣ (ଜରିମାନା ରସିଦ୍) ପଠାଇଦିଆଯାଏ। ଗାଡ଼ିର ମାଲିକ ଠିକଣା ସ୍ଥାନରେ ଓ ଠିକଣା ସମୟରେ ଜରିମାନା ଦାଖଲ କରନ୍ତି। ନିର୍ଦ୍ଦିଷ୍ଟ ସମୟରେ ଜରିମାନା ପଇଠ ନକଲେ ଗାଡ଼ିର ମାଲିକଙ୍କ ନାମରେ ଫୌଜଦାରୀ ମକଦ୍ଦମା ଆଗତ ହୁଏ।

କେତେବେଳେ ଆମେ ଯାଇ ଡୁଇସବର୍ଗରେ ପହଞ୍ଚିଯାଇଥିଲୁ ମୁଁ ଜାଣି ପାରିନଥିଲି। ଡୁଇସ୍‌ବର୍ଗରେ ଅନ୍ୟୂନ ଦଶଟି ଇସ୍ପାତ କାରଖାନା ଅଛି। ମାତ୍ର କାରଖାନା ବାହାରୁ ସେସବୁ କାରଖାନା ସମ୍ପର୍କରେ କୌଣସି ସୂଚନା ମଧ୍ୟ ମିଳୁନଥିଲା। ଏତେଗୁଡ଼ିଏ କାରଖାନା ଚାଲୁଥିଲେ ବି କୌଣସି କାରଖାନାର ଚିମିଣିରୁ କଳାଧୂଆଁ ଦେଖିବାକୁ ମିଳିନଥିଲା।

ପରେ ବୁଝିଲି କାରଖାନାରୁ ନିର୍ଗତ କଳାଧୂଆଁକୁ ନିୟନ୍ତ୍ରଣ କରାଯାଇ ବାହାରକୁ ଛଡ଼ାଯାଏ ଏବଂ ତା'ଫଳରେ ବାୟୁମଣ୍ଡଳ ଦୂଷିତ ହୋଇନଥାଏ। ଆମେ ଗାଡ଼ିରୁ ଓହ୍ଲାଇବା ମାତ୍ରେ ରାଜେନ୍ଦ୍ରଭାଇ ପାଖରେ ଥିବା ଗୋଟିଏ ଇସ୍ପାତ କାରଖାନା ଆଡ଼କୁ ହାତ ଦେଖାଇ କହିଲେ, "ଆଜିକୁ ୪୭ବର୍ଷ ପୂର୍ବେ ମୁଁ ଯେତେବେଳେ ଜଣେ ଶିକ୍ଷାନବିଶ ଭାବରେ ଜର୍ମାନ ଆସିଥିଲି, ଏଇ କାରଖାନାରେ ମୋର ପ୍ରାକ୍ଟିକାଲ୍ ଟ୍ରେନିଂ ପଡ଼ିଥିଲା। ସାମାନ୍ୟ ପାରିଶ୍ରମିକ ବଦଳରେ କାରଖାନା କର୍ତ୍ତୃପକ୍ଷ ଆମକୁ ଶ୍ରମିକ ଭଳି ଖଟାଇଥିଲେ। ଆମ କାନ୍ଧରେ ବି ଲୁହା ବୁହାଇଥିଲେ। ପରବର୍ତ୍ତୀ କାଳରେ ସମାଜରେ ମୁଁ ପ୍ରତିଷ୍ଠିତ ହୋଇଥିଲେ ବି ଅତୀତର ସେଇ ସ୍ମୃତିକୁ ଭୁଲିପାରି ନାହିଁ। ସେଦିନର ସେଇ ଟ୍ରେନିଂ ଅନୁଭୂତି ମତେ ଭବିଷ୍ୟତ ଜୀବନ ଗଢ଼ିବା ପାଇଁ ପ୍ରେରଣା ଯୋଗାଇଥିଲା। ଆଜି ସେକଥା କହିଲେ ହୁଏତ ଲୋକେ ବିଶ୍ୱାସ କରି ନପାରନ୍ତି।"

ଯେଉଁ ଫ୍ରେଡ୍‌ରିକ୍ ଆଲ୍‌ଫ୍ରେଡ୍ କ୍ରୁପ୍‌ଙ୍କ ବାସଭବନ ଗତକାଲି ଦେଖିଥିଲୁ, ସେଇ କ୍ରୁପ୍‌ଙ୍କ ଇସ୍ପାତ ଶିଳ୍ପ ସାମ୍ରାଜ୍ୟ ଦେଖିବାର ସୁଯୋଗ ମିଳିଲା। ସେ କାରଖାନା ସାମନାରେ ଛିଡ଼ା ହୋଇ ମୁଁ ଗୋଟିଏ ଫଟୋ ଉଠାଇଲି। କାରଖାନା ଭିତରକୁ ଯିବା ପାଇଁ ଇଚ୍ଛା ଥିଲେ ବି ସମୟର ସ୍ୱଳ୍ପତା ଦୃଷ୍ଟିରୁ ତାହା ସମ୍ଭବ ହେଲା ନାହିଁ। କାର୍‌ରେ ଯାଉଥିବାବେଳେ ଇସ୍ପାତନଗରୀର ପରିଷ୍କାର ପରିଚ୍ଛନ୍ନତା ଦେଖି ଅତୀତର ଗୋଟିଏ ଘଟଣା ମୋର ମନେପଡ଼ିଗଲା। କିଛିବର୍ଷ ତଳେ ଆମେ କେତେଜଣ ବନ୍ଧୁ ସମ୍ବଲପୁରରୁ କାର୍‌ଯୋଗେ ରାଉରକେଲା ଯାଉଥିଲୁ। ବାଟରେ ରାଜଗାଙ୍ଗ୍‌ପୁରଠାରେ ଥିବା ସିମେଣ୍ଟ୍ କାରଖାନା ଗେଷ୍ଟହାଉସ୍‌ରେ ଆମର ମଧ୍ୟାହ୍ନଭୋଜନର ବ୍ୟବସ୍ଥା ହୋଇଥିଲା। ଆମେ ଗୋଟିଏ ଜାଗାରେ ଅଟକିଯିବା ଫଳରେ କିଛି ସମୟ ଡେରି ହୋଇଯାଇଥିଲା। କୌତୂହଳବଶତଃ ମୁଁ ଡ୍ରାଇଭରକୁ ପଚାରିଲି "ରାଜଗାଙ୍ଗପୁର ଆଉ କେତେବାଟ ରହିଲା, ଆମେ କେତେବେଳେ ପହଞ୍ଚିବୁ?" ଡ୍ରାଇଭ ରଜଣକ ହିନ୍ଦୀଭାଷୀ ହେଲେ ବି ଓଡ଼ିଆ ବୁଝୁଥିଲା। ସେ ଉତ୍ତରରେ କହିଲା, "ସାହବ୍, ରାସ୍ତେ କେ ବାରେ ମେଁ ଆପ୍‌କୋ ଖୁଦ୍ ପତା ଚଲାଯାଏଗା, କିସିକୋ ପୁଛନେ କୀ ଜରୁରତ୍ ନହିଁ ପଡ଼େଗା।" ତା' ଉତ୍ତର 'ଦାନ୍ତୁରୀ ହସିଲା କାନ୍ଦିଲା' ଭଳି ମନେହେଲା। ଜଣେ ବନ୍ଧୁ ବୁଝାଇଦେଲେ, "ରାଜଗାଙ୍ଗପୁର ଚାରି ପାଞ୍ଚ କିଲୋମିଟର ଥିବ, ଗଛପତ୍ର ସବୁ ସିମେଣ୍ଟ୍‌ଗୁଣ୍ଡରେ ଧଳା ଦେଖାଯିବ। ସେଇଥିରୁ ରାସ୍ତା ଜଣାପଡ଼ିଯିବ।" ସତକୁ ସତ ରାଜଗାଙ୍ଗପୁରର ଢେର୍ ପୂର୍ବରୁ ସହରର ଅବସ୍ଥିତି ସମ୍ପର୍କରେ ଆମକୁ ସୂଚନା ମିଳିଯାଇଥିଲା।

ମଧ୍ୟାହ୍ନଭୋଜନ ସମୟ ହୋଇଯାଇଥିଲା। ଆମେ ଚାଲିଚାଲି ପୁରୁଣାବଜାର ଆଡ଼େ ଗଲୁ। ସେଠାରେ ଗୋଟିଏ ରେଷ୍ଟୁରାଣ୍ଟ୍‌ରେ ପଶିଲାବେଳକୁ ଦୁଇଜଣ ବୁଢ଼ାବୁଢ଼ୀ ପାଖାପାଖି

ହୋଇ ବସିଥିବାର ଆଖିରେ ପଡ଼ିଲା । ମୁଁ କିଛି ସମୟ ସେମାନଙ୍କୁ ନିରୀକ୍ଷଣ କଲି । ଯେତିକି ପାଖରୁ ଦେଖିଲି, ସେତିକି କୌତୂହଳ ଜାତ ହେଲା । ଏତେ ପାଖାପାଖି ବସିଛନ୍ତି, ଅଥଚ କେହି କାହା ସାଥିରେ କଥାବାର୍ତ୍ତା କରୁନାହାନ୍ତି କାହିଁକି ? ପାଖକୁ ଯାଇ ହାତମାରିବାକୁ ଗଲାବେଳେ ରାଜେନ୍ଦ୍ରଭାଇ କହିଲେ, "ସେମାନେ ପ୍ରକୃତ ମଣିଷ ନୁହଁନ୍ତି । ପ୍ଲାଷ୍ଟର୍ ପ୍ୟାରିସ୍‌ରେ ତିଆରି ଦୁଇଟି ମୂର୍ତ୍ତି । ଗ୍ରାହକମାନଙ୍କୁ ଆକୃଷ୍ଟ କରିବା ପାଇଁ ସେପରି ରଖାଯାଇଛି ।"

## ରୋପ୍‌ୱେରୁ ରାଇନ୍ ନଦୀର ଅପୂର୍ବ ଦୃଶ୍ୟ

ଆମେ ରେଷ୍ଟୁରାଣ୍ଟ୍ କାଉଣ୍ଟରରୁ ସାଣ୍ଡୱିଚ୍, ପଟାଟୋ ଚିପ୍‌ସ ଓ ଜୁସ୍ ନେଇ ଗୋଟିଏ ଟେବୁଲ୍ ଦଖଲ କଲୁ । ପାଖ ଟେବୁଲ୍‌ରେ ଚାରିଜଣ ପୁରୁଷ ଓ ମହିଳା ବସି ମଦିରା ପାନ କରୁଥିଲେ । ସେମାନେ ବୋଧହୁଏ ଆମରି ଭଳି ବାହାରଦେଶରୁ ଆସିଥିଲେ । ଆମକୁ ଦେଖି ଆମେ ଯେ ବିଦେଶୀ, ସେକଥା ସେମାନେ ସହଜରେ ଜାଣିପାରିଲେ । ଆମକୁ ସେମାନେ ଡ୍ରିଙ୍କ୍ ଯାଚିଲେ, ମାତ୍ର ଆମେ ମଦ୍ୟପାନ କରୁନାହୁଁ ବୋଲି ସେମାନଙ୍କୁ ନମ୍ରତାର ସହିତ ଜଣାଇଲୁ । ମୁଁ ଲକ୍ଷ୍ୟକଲି କାଠରେ ତିଆରି ଚାରୋଟି ଢାବଲ ଚଉକିର କାମ ଚଳାଉଥିଲା ଆଉ ଗୋଟିଏ ଢାବଲ ଟେବୁଲ୍ ପରି ବ୍ୟବହୃତ ହେଉଥିଲା । ଆମେ ସ୍ନାକ୍ସ ଖାଇ ରାଇନ୍ ନଦୀ କୂଳକୁ ଗଲୁ । ସେଠାରେ ପର୍ଯ୍ୟଟକମାନେ ଟିକେଟ୍ କରି ଛୋଟ ଜାହାଜରେ ରାଇନ୍ ନଦୀ ବିହାର ପାଇଁ ଅପେକ୍ଷା କରିଥିଲେ । ସେତେବେଳକୁ ସମୟ ତିନିଟା ବାଜିଯାଇଥିଲା । ମୋର ଟିକିଏ ନଈରେ ବୁଲିବା ପାଇଁ ଇଚ୍ଛା ଥିଲା; ମାତ୍ର ବୁଝିଲି ଗୋଟିଏ ଟ୍ରିପ୍ ପ୍ରାୟ ଘଣ୍ଟାଏ ସମୟ ଲାଗିଯିବ । ଆମର ରୋପ୍‌ୱେରେ ଯିବାର କାର୍ଯ୍ୟକ୍ରମ ଥିଲା । ରାଜେନ୍ଦ୍ର ଭାଇ ପଚାରିଲେ, "ବସନ୍ତ ! ତମେ କାହାକୁ ଆଗ୍ରାଧିକାର ଦେବ - ନଈରେ ବୁଲିବା ନା ରୋପ୍‌ୱେରେ ଯିବା ? ପିଲାଦିନେ ତ ଅନେକଥର ଡଙ୍ଗାରେ ବୁଲିଛ, କେତେଥର ରୋପ୍‌ୱେର ମଜ୍ଜା ନେଇଛ ? ରୋପୱେ ଉପରୁ ରାଇନ୍ ନଦୀ ଓ ସହରର ଦୃଶ୍ୟ ଅତ୍ୟନ୍ତ ମନୋରମ । ଥରେ ଛାଡ଼ିଦେଲେ ହୁଏତ ସେ ସୁଯୋଗ ଜୀବନରେ ଜୁଟିନପାରେ । ସମୟ ଅଭାବ ଯୋଗୁଁ ଆମେ ଦି'ଟାର ସୁଯୋଗ ନେବା ସମ୍ଭବ ନୁହେଁ ।" ମୁଁ ମନେମନେ ତାଙ୍କ କଥାକୁ ତଉଲିଲି । ପିଲାଦିନେ କେତେଥର ଆମେ କଟକର ଚହଟାଘାଟରୁ ଧବଳେଶ୍ୱର ପଠାକୁ ନଯାଇଥିବୁ ? ଗାଁରେ ବିଲୁଆଖାଇ ନଈରେ ସାଙ୍ଗମାନଙ୍କ ସହିତ କେତେ ଡଙ୍ଗାଖେଳ ନହୋଇଛି ? କିନ୍ତୁ ରୋପ୍‌ରେ ଯିବା ମଜା ଥରେ ଏଠୁ ଛାଡ଼ିଦେଲେ ଆଉ କୋଉଠୁ ପାଇବି ? ଆଉ ଯଦିବା ପାଇବି, ସେଠି ରାଇନ୍ ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ କୋଉଠୁ ମିଳିବ ?

ମୁଁ ଆଉ ବାକ୍ୟ ବିନିମୟ ନ କରି ଗାଡ଼ିରେ ଯାଇ ବସିଲି। ଆମେ ଯାଇ ପହଞ୍ଚିଲାବେଳକୁ ରୋପ୍‌ୱେରେ ଯିବାର ସମୟ ପ୍ରାୟ ଶେଷ ହୋଇଆସୁଥିଲା। ଆଠଟି କେବିନ୍ ମଧ୍ୟରେ ମାତ୍ର ଟେଟିଏ କେବିନ୍ ଯିବାକୁ ବାକି ଥିଲା। ସେମାନେ ଖୁବ୍ ସମୟାନୁବର୍ତ୍ତୀ। ରାଜନ୍ଦ୍ରେଭାଇ ଗାଡ଼ି ପାର୍କିଂ କରି ଦଉଡ଼ି ଦଉଡ଼ି ଯାଇ ଦୁଇଟି ଟିକେଟ୍ କରିଦେଲେ। ସେଠାରେ ଥିବା ପଦାଧିକାରୀ ଜର୍ମାନୀ ଭାଷାରେ ରାଜେନ୍ଦ୍ର ଭାଇଙ୍କୁ କହିଲେ, "ଆପଣମାନେ ଭାଗ୍ୟବାନ। ଆଉ ଦୁଇମିନିଟ୍ ବିଳମ୍ୱ ହୋଇଥିଲେ ଆଜି ଆଉ ଆପଣମାନେ ରୋପୱେରେ ଯିବାର ସୁଯୋଗ ପାଇପାରି ନଥାନ୍ତେ।" ମୋର ଅଜାଣତରେ ପାଟିରୁ ବାହାରିପଡ଼ିଲା, "ଯାହାହେଉ, ଈଶ୍ୱର ବଡ଼ଲୋକ, ଆମକୁ ସୁଯୋଗରୁ ବଞ୍ଚିତ କଲେନାହିଁ।"

ସେଠାରେ ଥିବା ଆଠଟି ରୋପୱେରେ ଷୋଳଟି କେବିନ୍ ଖଞ୍ଜାଯାଇଥିଲା। ପନ୍ଦରମିନିଟ୍ ବ୍ୟବଧାନରେ ଏକ ସମୟରେ ଗୋଟିଏ କେବିନ୍ ଯାଉଥିଲା ଏବଂ ଅନ୍ୟପଟୁ ଗୋଟିଏ କେବିନ୍ ଫେରୁଥିଲା। ଗୋଟିଏ କେବିନ୍‌ରେ ଚାରିଜଣ ବସିଲାଭଳି ବ୍ୟବସ୍ଥା ଥିଲା। ଆମେ ଯେଉଁ କେବିନ୍‌ରୁ ଯାଉଥିଲୁ, ସେଥିରେ ଆଉ ଦୁଇଜଣ ଯାତ୍ରୀ ଥିଲେ। ବୋଧହୁଏ ସ୍ୱାମୀ ସ୍ତ୍ରୀ ହେବେ। ପ୍ରଥମେ ରୋପ୍‌ୱେରେ କେବିନ୍ ଉପରକୁ ଉଠିଲାବେଳେ ଦେହଭିତରେ କେମିତି ଏକ ଶିହରଣ ହୋଇଥିଲା। ମନରେ ଭୟ ବି ସୃଷ୍ଟି ହୋଇଥିଲା ମୁଁ ବସିବସି ଭାବୁଥିଲି ଯଦି ରୋପ ୱେ ଛିଡ଼ିଯିବ କିମ୍ବା କେବିନ୍ ଖସିପଡ଼ିବ ତେବେ ଆମ ଅବସ୍ଥା କ'ଣ ହେବ? ଭୟ ଜାତ ହେବା ପଛରେ କାରଣ ମଧ୍ୟ ଥିଲା। ଥରେ ଆମେ ନୈନିତାଲରୁ ଶୀତଦିନେ ତୁଷାରପାତ ଦେଖିବାକୁ ରୋପୱେରେ ଯିବା ସମୟରେ ସେଥିରେ ଯୋଡ଼ାଯାଇଥିବା କେବିନ୍ ବିଦ୍ୟୁତ୍ ସରବରାହ ବନ୍ଦ୍ ହୋଇଯିବାରୁ ଅଧବାଟରେ ଅଟକି ଯାଇଥିଲା। ସେଥିରେ ଆମ ସହିତ ନବବିବାହିତ ପତିପତ୍ନୀ ଦୁଇଜଣ ଥିଲେ। ସେମାନେ ହନିମୁନ୍ କରିବାକୁ ନୈନିତାଲ ଯାଇଥିଲେ। ବିଦ୍ୟୁତ୍ ସରବରାହ ବନ୍ଦ୍ ହୋଇଯିବାରୁ ସେମାନଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ଖେଳିଯାଇଥିଲା। ଆମେ ମଧ୍ୟ ଆତଙ୍କିତ ହୋଇଯାଇଥିଲୁ। କିନ୍ତୁ ଭାଗ୍ୟ ଭଲ, ଅଳ୍ପସମୟ ମଧ୍ୟରେ ଜେନେରେଟର୍ ଚଳାଇ ଆମକୁ ପାହାଡ଼ ଶିଖରରେ ପହଞ୍ଚାଇ ଦିଆଯାଇଥିଲା।

ମୋର ଅନ୍ୟମନସ୍କ ଭାବ ଦେଖି ରାଜେନ୍ଦ୍ରଭାଇ ପଚାରିଲେ, କ'ଣ ଭୟକରୁଛ କି? ମୁଁ ମୋର ଅତୀତର ଅଭିଜ୍ଞତା ସମ୍ପର୍କରେ ସୂଚନା ଦେବାରୁ ସେ କହିଲେ, "ଗୋଟିଏ କଥା ମନେ ରଖିଥିବ, ଦୁର୍ଘଟଣା ତ ଦୂରର କଥା, ଏ ଦେଶରେ ଆମ ଦେଶ ଭଳି ବିଦ୍ୟୁତ୍ ସରବରାହ କେବେ ବ୍ୟାହତ ହୁଏନାହିଁ। ଥରେ ବିଦ୍ୟୁତ୍ ଯୋଗାଣରେ ବାଧା ଉପୁଜିଲେ ଯେକୌଣସି ନାଗରିକ କର୍ତ୍ତୃପକ୍ଷଙ୍କ ବିରୋଧରେ ଆଇନ୍ ଅଦାଲତରେ ଆପତ୍ତି କରି କ୍ଷତିପୂରଣ ଦାବି କରିପାରିବ ଏବଂ ସେ କ୍ଷତିପୂରଣର ପରିମାଣ ହୁଏତ କଳ୍ପନା କରାଯାଇ ନପାରେ। ସେଥିପାଇଁ ମନରେ କୌଣସିପ୍ରକାର ଭୟ ନକରି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କର।"

ମୁଁ ତଳକୁ ଅନାଇ ଦେଖିଲି ରାଇନ୍ ନଦୀର ଇଷତ୍ ନୀଳବର୍ଣ୍ଣର ଜଳରାଶି ଉପରେ ସୂର୍ଯ୍ୟକିରଣ ପଡ଼ି ଚିକ୍‌ଚିକ୍ ଦେଖାଯାଉଥିଲା। ନଦୀଜଳରେ ବିରାଟ ବିରାଟ ପୋତମାନ ଯାତାୟାତ କରି ଶୋଭାବର୍ଦ୍ଧନ କରୁଥିଲା। ମୋର କବିବର ରାଧାନାଥ ରାୟଙ୍କ ଚିଲିକା କାବ୍ୟରୁ ଗୋଟିଏ ପଦ ମନେପଡ଼ିଗଲା - 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ।' ସତରେ କେତେ ନିବିଡ଼ ଅନୁଭୂତି ପରେ କବି ଏହି ପଦକ ତାଙ୍କ କାବ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ! କେଇମିନିଟ୍ ଭିତରେ ଆମ କେବିନ୍ ରାଇନ୍ ନଦୀ ପାର ହୋଇ ଆରପଟକୁ ଚାଲିଯାଇଥିଲା ଏବଂ ପାଞ୍ଚମିନିଟ୍ ବ୍ୟବଧାନରେ ଫେରିବା ପାଇଁ ଆମକୁ ସଙ୍କେତ ଦିଆଗଲା। ସେଦିନର ସେ ଦୃଶ୍ୟରେ ମୁଁ ବିଭୋର ହୋଇଯାଇଥିଲି ଏବଂ ମନେମନେ ରାଜେନ୍ଦ୍ରଭାଇଙ୍କ ପାଖରେ କୃତଜ୍ଞତା ଜ୍ଞାପନ କଲି। ମୋ ପ୍ରତି ତାଙ୍କର ଅନାବିଳ ସ୍ନେହ, ଅନ୍ୟକୁ ଆନନ୍ଦ ଦେବାରେ ତାଙ୍କର ଅକୁଣ୍ଠିତ ଆଗ୍ରହ ଯୋଗୁଁ ହିଁ ମୋ ବିଦେଶ ଗସ୍ତ ଯେ ସଫଳ ହୋଇଥିଲା ସେଥିରେ କିଛି ସନ୍ଦେହ ନଥିଲା।

## କୋଲନ୍ ସହରର ଐତିହାସିକ ଚର୍ଚ୍ଚ

ଫେରିବା ବାଟରେ କୋଲନ୍‌ର ଚର୍ଚ୍ଚଟିକୁ ଦେଖିବା ପାଇଁ ରାଜେନ୍ଦ୍ରଭାଇ ପ୍ରସ୍ତାବ ଦେଲେ। ମୁଁ କହିଲି, ଯୋଉ ଜାଗାକୁ ଗଲେ ସବୁ ମତେ ନୂଆ ଲାଗୁଛି। ସବୁ ଦେଖିବାକୁ ମନ ହେଉଛି, ଆହୁରି ନୂଆ ଜାଗାକୁ ଯିବାକୁ ମନ ହେଉଛି। ରାଜେନ୍ଦ୍ରଭାଇଙ୍କୁ ଖୁସି କରିବା ପାଇଁ ଏତକ କହିଦେଲି ସିନା, ମନରେ ଭାବିଲି ଗୋଟିଏ ଚର୍ଚ୍ଚ ଦେଖିବାକୁ ଭାଇ କାହିଁକି ପ୍ରସ୍ତାବ ଦେଲେ? ଏପରି ଭାବନା ଭିତରେ ଆମ ଗାଡ଼ି ଯାଇ ପହଞ୍ଚିଯାଇଥିଲା କୋଲନ ସହରର ଐତିହାସିକ ଚର୍ଚ୍ଚ ସମ୍ମୁଖରେ। ମୁଁ ଭାବିଥିଲି ସେଠାରେ ଥିବା ଚର୍ଚ୍ଚଟି ବୋଧହୁଏ ଆମର କଟକ କିମ୍ବା ଭୁବନେଶ୍ୱରରେ ଥିବା ଚର୍ଚ୍ଚ ପରି ହେଇଥିବ। ମାତ୍ର ସେଠାରେ ପହଞ୍ଚିବା ପରେ କୋଲନର ଚର୍ଚ୍ଚକୁ ଦେଖି ସେଠାରେ ପ୍ରାୟ ହଜିଯାଇଥିଲି। ଚର୍ଚ୍ଚଟିର ଆକାର ଯେପରି ବୃହତ୍ ଥିଲା, ତା'ର ଭାସ୍କର୍ଯ୍ୟ ସେହିପରି ମନୋମୁଗ୍ଧକର ଥିଲା।

ଆମେ ଗାଡ଼ି ପାର୍କିଂ କରି ଚର୍ଚ୍ଚ ଭିତରକୁ ଗଲୁ। ଏକ ଧାର୍ମିକ ପୀଠ ଭାବରେ ଏହା ଧାର୍ମିକ ବ୍ୟକ୍ତିମାନଙ୍କୁ ଆକୃଷ୍ଟ କରିବା ସହିତ ପର୍ଯ୍ୟଟକମାନଙ୍କ ପାଇଁ ଏକ ଆକର୍ଷଣୀୟ କେନ୍ଦ୍ର ଥିଲା। ସେ ଚର୍ଚ୍ଚଟି ଡୁସେଲଡର୍ଫର ସବୁଠାରୁ ବଡ଼ ଚର୍ଚ୍ଚ ବୋଲି ଶୁଣିବାକୁ ପାଇଲୁ। ହଜାର ହଜାର ଖ୍ରୀଷ୍ଟଧର୍ମପ୍ରେମୀଙ୍କ ସହିତ ଆମଭଳି ଅନେକ ପର୍ଯ୍ୟଟକଙ୍କର ସେଠାରେ ସମାବେଶ ହୋଇଥିଲେ ହେଁ ଟିକିଏ ହେଲେ କୋଳାହଳ ନଥିଲା। ସମସ୍ତେ ଗୋଟିଏ ପଟରେ ଶୃଙ୍ଖଳିତ ଭାବରେ ଲାଇନ୍‌ରେ ଚର୍ଚ୍ଚ ଭିତରକୁ ଯାଉଥିଲେ ଓ ଅନ୍ୟବାଟ ଦେଇ

ବାହାରକୁ ଫେରୁଥିଲେ। ଚର୍ଚ୍ଚ ଭିତରେ ଗୋଟିଏ ସ୍ଥାନରେ ମହମବତୀର ଦୀପସବୁ ଥୁଆ ହୋଇଥିଲା ଓ ଯେଉଁମାନେ ଚାହୁଁଥିଲେ ସେମାନେ ଗୋଟିଏ ଲେଖାଏଁ ଦୀପ ଜଳାଇ ନିଜ ଭକ୍ତିଅର୍ଘ୍ୟ ଅର୍ପଣ କରୁଥିଲେ। କିଛି ନବୁଝି ମୁଁ ମଧ୍ୟ ଗୋଟିଏ ଦୀପ ଜଳାଇଥିଲି। ଚର୍ଚ୍ଚର କାନ୍ଥ ଓ ଛାତରେ ଲାଗିଥିବା ରଙ୍ଗିନ କାଚସବୁ ଆଲୋକରେ ଝଲମଲ ହୋଇ ଅପୂର୍ବ ଆଭା ଧାରଣ କରୁଥିଲେ। ଚର୍ଚ୍ଚକୁ ବୁଲି ଦେଖିବା ପାଇଁ ଆମକୁ ଘଣ୍ଟାକରୁ ଅଧିକ ସମୟ ଲାଗିଥିଲା। ଚର୍ଚ୍ଚର ଭିତର ଓ ବାହାର ପରିସରକୁ ପରିଷ୍କାର ରଖିବା ନିମନ୍ତେ ଶତାଧିକ କର୍ମୀ ନିୟୋଜିତ ଥିଲେ ଓ ସେମାନଙ୍କ ନିଷ୍ଠା ଓ କର୍ତ୍ତବ୍ୟପରାୟଣତା ଫଳରେ ଚର୍ଚ୍ଚଟି ଅନ୍ୟମାନଙ୍କ ପାଇଁ ଅତ୍ୟନ୍ତ ଆକର୍ଷଣୀୟ ଥିଲା। ରାଜେନ୍ଦ୍ରଭାଇ ଘର ଅଭିମୁଖେ ଯିବାପାଇଁ ଗାଡ଼ି ବୁଲାଇଲେ। ଦିନଯାକର ବୁଲାବୁଲିରେ ମୁଁ ଥକିଯାଇଥିଲି, ହେଲେ ପ୍ରାୟ ତିନିଶହ କିଲୋମିଟର ଗାଡ଼ି ଚଳାଇବା ପରେ ମଧ୍ୟ ରାଜେନ୍ଦ୍ରଭାଇ ପୂର୍ବଭଳି ସତେଜ ଥିଲେ। ପରଦିନ ସକାଳେ ବର୍ଲିନ୍ ଯିବାର କାର୍ଯ୍ୟକ୍ରମ ଥିବାରୁ ଆମେ ଶୀଘ୍ର ରାତ୍ରିଭୋଜନ କରି ବିଶ୍ରାମ ନେଇଥିଲୁ।

# ବର୍ଲିନ୍ ସହରରେ ତିନିଦିନ

ଡୁସେଲ୍‌ଡର୍ଫ ବିମାନବନ୍ଦରରୁ ବର୍ଲିନ୍ ଯିବାପାଇଁ ସକାଳ ସାତଟାରେ ବିମାନସେବା ଥିଲା। ସେଥିପାଇଁ ଆମେ ସକାଳ ପାଞ୍ଚଟାରୁ ଉଠି ନିତ୍ୟକର୍ମ ସାରି ଛଅଟାବେଳକୁ ବାହାରିପଡ଼ିଲୁ। ଡୁସେଲଡର୍ଫ ବିମାନବନ୍ଦରରେ ଗାଡ଼ିପାର୍କିଂ କରିବା ଏକ ବଡ ସମସ୍ୟା ଥିଲା। ପ୍ରତ୍ୟହ ହଜାର ହଜାର କାର୍ ଚଳାଚଳ। ତାକୁ ଆଖିରେ ରଖି ଗାଡ଼ି ପାର୍କିଂ ପାଇଁ ବିମାନବନ୍ଦର ହତାଭିତରେ ବାଇଶିମହଲା କୋଠା ନିର୍ମାଣ କରାଯାଇଥିଲା। ଗାଡ଼ି ପାର୍କିଂ ପାଇଁ ବାଇଶି ମହଲା କୋଠା କଥା କହିଲେ ହୁଏତ କିଛି ଲୋକ ବିଶ୍ୱାସ ନକରି ପାରନ୍ତି। ମାତ୍ର ତାହା ବାସ୍ତବ ସତ୍ୟ। ପାର୍କିଂ କୋଠାକୁ ଯିବାପାଇଁ ଗୋଟିଏ ରାସ୍ତା ଓ ସେଠାରୁ ଗାଡ଼ି ଆଣି ଫେରିବାପାଇଁ ଆଉଗୋଟିଏ ରାସ୍ତା। ଫଳରେ ଦୁର୍ଘଟଣା ଘଟିବାର କୌଣସି ଆଶଙ୍କା ନଥିଲା। କେଉଁ ମହଲାରେ ପାର୍କିଂ ପାଇଁ କେତୋଟି ସ୍ଥାନ ଖାଲି ଥିଲା ସେସବୁ କମ୍ପ୍ୟୁଟର ସ୍କ୍ରିନ୍ ମାଧ୍ୟମରେ ଜଣାଇ ଦିଆଯାଉଥିଲା। ଯେଉଁ ମହଲାରେ ପାର୍କିଂସ୍ଥାନ ଖାଲିଥାଏ ସେଠାକୁ ଯିବାକୁ ହେଲେ ଗେଟ୍‌ରେ ଲାଗିଥିବା କମ୍ପ୍ୟୁଟର କ୍ୟାମେରାରେ ହାତ ମାରିଦେଲେ ଗୋଟିଏ କୁପନ୍ ବାହାରି ଆସୁଥିଲା ଓ କୁପନ୍‌ଟି ସାଙ୍ଗରେ ନେଇଗଲେ ପାର୍କିଂ ସ୍ଥାନର ଫାଟକ ଆପେ ଆପେ ଖୋଲିଯାଉଥିଲା। ସେହିପରି ଫେରିବା ସମୟରେ ଫାଟକରେ ପୂର୍ବ କୁପନ୍‌ଟି ପଞ୍ଚ୍ କଲେ ଆଉ ଗୋଟିଏ ଟିକେଟ୍ ବାହାରି ଆସୁଥିଲା ଏବଂ ସେ ଟିକେଟ୍‌ରେ ପାର୍କିଂର ଦେୟ ପରିମାଣ ଉଲ୍ଲେଖ ରହୁଥିଲା। ସେଇ ପରିମାଣର ଅର୍ଥ କ୍ରେଡିଟ୍‌କାର୍ଡ ମାଧ୍ୟମରେ

ଜମା କରିଦେଲେ ଗେଟ୍ ଆପେ ଆପେ ଖୋଲିଯାଉଥିଲା। କିନ୍ତୁ ସବୁ ଶୃଙ୍ଖଳିତ ବ୍ୟବସ୍ଥା ମଧ୍ୟରେ ଚାଲୁଥିବା । କିନ୍ତୁ ମହଲା ଓ ପାର୍କିଂ ଜୋନ୍‌ର ନମ୍ବର ଟିପି ନ ରଖିଥିଲେ ପାର୍କିଂ ସ୍ଥାନକୁ ଯିବା ଅନେକ ସମୟରେ କଷ୍ଟକର ବ୍ୟାପାର ହେଉଥିଲା। ଯେଉଁମାନେ ଏପରି ବ୍ୟବସ୍ଥା ସହିତ ଅଭ୍ୟସ୍ତ ସେମାନଙ୍କ ପାଇଁ କିଛି ଅସୁବିଧା ହୁଏ ନାହିଁ। ସେଠାରେ ଗାଡ଼ି ପାର୍କିଂ କଲେ ଦିନକୁ ହାରାହାରି ଭାରତୀୟ ମୁଦ୍ରାରେ ଏକ ହଜାର ଟଙ୍କା ଦେବାକୁ ପଡୁଥିଲା।

ଏସବୁ ଅତ୍ୟାଧୁନିକ ବ୍ୟବସ୍ଥା ମତେ ସ୍ୱପ୍ନଭଳି ଲାଗୁଥିଲା; କାରଣ ଆମଦେଶର କୌଣସି ବିମାନବନ୍ଦରରେ ଏପରି ଅତ୍ୟାଧୁନିକ ପାର୍କିଂ ବ୍ୟବସ୍ଥା ଏପର୍ଯ୍ୟନ୍ତ ପ୍ରବର୍ତ୍ତିତ ହୋଇପାରି ନାହିଁ। ଆମ ସାଙ୍ଗରେ ବିଶେଷ କିଛି ଲଗେଜ୍ ନଥିଲା। କେବଳ ଗୋଟିଏ ଲେଖାଏଁ ହାଣ୍ଡ୍‌ବ୍ୟାଗେଜ୍। ସେଥିପାଇଁ ଲଗେଜ୍ ଚେକିଂରେ ଆମର କିଛି ଅସୁବିଧା ହୋଇନଥିଲା। ରାଜେନ୍ଦ୍ରଭାଇ ଜର୍ମାନୀ ଭାଷା ଜାଣିଥିବାରୁ ସବୁ କାର୍ଯ୍ୟ ସୁଗମ ହୋଇଯାଇଥିଲା।

•

## ଐତିହାସିକ ନଗରୀରେ ପଦାର୍ପଣ

ଯଥାସମୟରେ ଆମ ବିମାନଟି ଆକାଶକୁ ଉଠିଲା। ସାଙ୍ଗେ ସାଙ୍ଗେ ଲାଲ୍ ରଙ୍ଗର ସ୍କଟ୍‌ପିନ୍ଧା ସୁନ୍ଦରୀ ଏୟାରହୋଷ୍ଟେସ୍‌ମାନେ ଯାତ୍ରୀମାନଙ୍କ ସେବାରେ ଲାଗିପଡ଼ିଲେ। ଘଣ୍ଟାକର ଉଡ଼ାଣ ପରେ ଆମ ବିମାନଟି ବର୍ଲିନ୍ ବିମାନବନ୍ଦରରେ ଅବତରଣ କଲା। ସେଥିରେ ସବୁ ଯାତ୍ରୀ ବର୍ଲିନ୍ ଯାଉଥିଲେ। ବର୍ଲିନ୍ ବିମାନବନ୍ଦରଟି ଆନ୍ତର୍ଜାତିକ ମାନର ନଥିଲା। ଅନ୍ୟ ବିମାନନ୍ଦରଠାରୁ ଅପେକ୍ଷାକୃତ ସାନ ଥିଲା। ଆମେ ଓହ୍ଲାଇଲାବେଳେ ପାଗ ମେଘୁଆ ହୋଇ ଝିପିଝିପି ବର୍ଷା ଆରମ୍ଭ ହୋଇଯାଇଥିଲା। ବିମାନବନ୍ଦରରୁ ବର୍ଲିନ୍ ସହରର ଦୂରତା ପ୍ରାୟ ୪୦ କିଲୋମିଟର। ସେଠାରୁ ଟ୍ରେନ୍‌ଯୋଗେ ସହର ଭିତରକୁ ଯିବାକୁ ହୁଏ। ବିମାନବନ୍ଦରର ପ୍ରସ୍ଥାନଦ୍ୱାରରୁ ନିକଟସ୍ଥ ରେଳଷ୍ଟେସନ୍‌ର ଅବସ୍ଥିତି ବେଶି ଦୂର ନୁହେଁ। ଚାଲିବା ରାସ୍ତା। ଆମେ ଗୋଟିଏ ଟ୍ରଲିରେ ଦୁଇଟି ବ୍ୟାଗ୍ ରଖି ଷ୍ଟେସନ୍ ଅଭିମୁଖେ ଚାଲିଲୁ। ମୋର ଧାରଣା ଥିଲା, ଆମେ ଯାଇ କାଉଣ୍ଟର୍‌ରୁ ଟିକେଟ୍ କିଣି ଟ୍ରେନ୍ ଧରିବୁ; କିନ୍ତୁ ସେଠାରେ ଯାଇ ଦେଖିଲି ବ୍ୟବସ୍ଥା ସମ୍ପୂର୍ଣ୍ଣ ଅନ୍ୟପ୍ରକାରର। କାଉଣ୍ଟରରେ କେହି ଲୋକ ନଥିଲେ। କେବଳ ଦୁଇଟି କମ୍ପ୍ୟୁଟର ଥିଲା। କେଉଁ ଟ୍ରେନ୍‌ରେ କେଉଁ ଷ୍ଟେସନ୍‌ରୁ କେଉଁ ଷ୍ଟେସନ୍‌କୁ ଯିବାକୁ ହେବ, ସେସବୁ ବଟମ୍ ଦବାଇଲେ କେତେ ମାର୍କର ଟିକେଟ୍ ଲାଗିବ ତାହ କମ୍ପ୍ୟୁଟର୍ ପର୍ଦ୍ଦାରେ ଦେଖାଯାଉଥିଲା। ମୁଁ ସେପରି ବ୍ୟବସ୍ଥା ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିବାରୁ ଅନ୍ୟମାନଙ୍କ ସାହାଯ୍ୟରେ ଟିକେଟ୍ କିଣିବାକୁ ପଡ଼ିଲା।

ଟିକେଟ୍ ନେଇ ପ୍ଲାଟଫର୍ମକୁ ଯିବାର ଦଶମିନିଟ୍ ମଧ୍ୟରେ ଟ୍ରେନ୍ ଆସିଗଲା। ଟ୍ରେନ୍‌ରେ ସର୍ବମୋଟ୍ ଆଠୋଟି ଡବା। ସବୁଗୁଡ଼ିକ ଶୀତତାପ ନିୟନ୍ତ୍ରିତ। ଯେଉଁମାନେ ଟିକେଟ୍ କିଣିବାରେ ସାହାଯ୍ୟ କରିଥିଲେ, ସେମାନେ ଟ୍ରେନ୍‌ଭିତରେ ପଶିବା ପୂର୍ବରୁ ପ୍ଲାଟଫର୍ମରେ ଥିବା ଗୋଟିଏ ମେସିନ୍‌ରେ ଟିକେଟ୍‌ଗୁଡ଼ିକୁ ପଞ୍ଚ୍ କରିବା ପାଇଁ ଆମକୁ ପରାମର୍ଶ ଦେଲେ। ତା' ନକରି ଟ୍ରେନ୍‌ରେ ଚଢ଼ିବା ଏକପ୍ରକାର ଅପରାଧ ବୋଲି ମଧ୍ୟ ସେମାନେ ଚେତେଇ ଦେଇଥିଲେ। ସେମାନଙ୍କ ପରାମର୍ଶ ଅନୁସାରେ ଟିକେଟ୍ ପଞ୍ଚ୍ କରି ଆମେ ଟ୍ରେନ୍‌ରେ ଚଢ଼ିଲୁ। ଦୋତାଲା ଟ୍ରେନ୍‌ର ଉପରମହଲାରେ ବସିବାକୁ ମୁଁ ପସନ୍ଦ କଲି; କାରଣ ଉପରେ ବସି ରାସ୍ତାକଡ଼ର ଦୃଶ୍ୟସବୁ ଉପଭୋଗ କରିହେବ। ପନ୍ଦର କୋଡ଼ିଏ ମିନିଟ୍ ଭିତରେ ଆମେ ଯାଇ ଗନ୍ତବ୍ୟସ୍ଥଳରେ ପହଞ୍ଚିଗଲୁ।

ଟ୍ରେନ୍‌ରୁ ଓହ୍ଲାଇ ପ୍ଲାଟ୍‌ଫର୍ମ ବାହାରକୁ ଆସିବାମାତ୍ରେ ରାସ୍ତାରେ ଅନେକଗୁଡ଼ିଏ କାର୍ ଥୁଆ ହୋଇଥିଲା। ସେଥିମଧ୍ୟରୁ ଅଧିକାଂଶ ଥିଲା ମର୍ସିଡେଜ୍ ବେଞ୍ଜ୍ କାର୍। ଗୋଟିଏ ମର୍ସିଡେଜ୍ ସାମନାରେ ଜଣେ ପୁରୁଷ ଓ ଜଣେ ମହିଳା ଛିଡ଼ା ହୋଇଥିଲେ। ରାଜେନ୍ଦ୍ରଭାଇ ସେମାନଙ୍କୁ ଜର୍ମାନ୍ ଭାଷାରେ କ'ଣ କହିଲେ ସେକଥା ମୋର ବୁଝିବାର ଉପାୟ ନ ଥିଲା। ତା'ପରେ ସେ ପୁରୁଷଜଣକ ଆମର ଦୁଇଟି ବ୍ୟାଗନେଇ ଗାଡ଼ି ଡିକିରେ ରଖି ଆମକୁ ଗାଡ଼ିରେ ବସିବା ପାଇଁ ଅନୁରୋଧ କଲେ। ଆମେ ଦି'ଜଣ ଗାଡିର ପଛ ସିଟ୍‌ରେ ବସିଲୁ। ସେଠାରେ ଛିଡ଼ା ହୋଇଥିବା ମହିଳା ଡ୍ରାଇଭର ସିଟ୍‌ରେ ବସି ସିଟ୍‌ବେଲ୍ଟ ବାନ୍ଧିଲେ ଓ ଗାଡ଼ି ଷ୍ଟାର୍ଟ କଲେ। ମତେ ଟିକିଏ କେମିତି କେମିତି ଲାଗୁଥିଲା। ମର୍ସିଡେଜ୍ ବେଞ୍ଜ୍ କାର, ମହିଳା ଡ୍ରାଇଭର; ଏସବୁରେ ମୁଁ ଅଭ୍ୟସ୍ତ ନଥିଲି; କାରଣ ଭୁବନେଶ୍ୱର ରାଜଧାନୀ ସହର ହେଲେ ବି ହାତଗଣତିରେ କେଇଖଣ୍ଡ ମର୍ସିଡେଜ୍ ଗାଡ଼ି ସେଠାରେ ଚାଲେ। ଗାଡ଼ି ଦେଖି ଲୋକେ କଥାବାର୍ତ୍ତା ହୁଅନ୍ତି, ଅମୁକ ଲୋକର ଗାଡ଼ି ଗଲା। ରାଜେନ୍ଦ୍ର ଭାଇ ବୋଧେ ମୋ ମନର ଭାବକୁ ବୁଝିପାରିଲେ। ମତେ ବୁଝାଇ କହିଲେ, "ବର୍ଲିନ୍‌ର ନିଜସ୍ୱ କାର୍ ହେଉଛି ମର୍ସିଡେଜ୍। ଏଠି ଅଧିକାଂଶ ଲୋକ ସେ ଗାଡ଼ି ଚଢ଼ନ୍ତି ଏବଂ ବାହାରୁ ଆସୁଥିବା ଲୋକଙ୍କ ପାଇଁ ମଧ୍ୟ ତାହା ଟ୍ୟାକ୍ସି ଭାବରେ ମିଳେ।" ମତେ ସବୁକଥା ନୂଆ ନୂଆ ଲାଗୁଥିଲା। ବର୍ଲିନ୍ ଦେଖିବାର ଯେ ସୁଯୋଗ କେବେ ମିଳିବ ସେ ବିଶ୍ୱାସ ମଧ୍ୟ ମନରେ ନଥିଲା।

ହୋଟେଲ 'କମେଟ୍'ରେ ଆମର ରହିବା ପାଇଁ ରିଜର୍‌ଭେସନ୍ ହୋଇଥିଲା। ହୋଟେଲଟି ପଞ୍ଚତାରକା ବିଶିଷ୍ଟ ଅନ୍ତର୍ଜାତୀୟ ସ୍ତରର। ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ଲୋକେ ଆସି ସେଠାରେ ରହୁଥିଲେ। ଅଳ୍ପ ସମୟ ମଧ୍ୟରେ ଆମେ ଯାଇ ହୋଟେଲ ସମ୍ନାରେ ପହଞ୍ଚିଗଲୁ। ଆମ ଦେଶଭଳି ସେଠାରେ ଗେଟ୍ ଖୋଲିବାକୁ ଦରୱାନ୍ କିମ୍ବା ବ୍ୟାଗ୍ ନେବା ପାଇଁ କେହି 'ବୟ' ନଥିଲେ। ଗାଡ଼ିରୁ ଓହ୍ଲାଇଲାବେଳେ କମ୍ପ୍ୟୁଟର ବ୍ୟବସ୍ଥାରେ

ଆମେ କେଉଁଠୁ କେତେବେଳେ ଗାଡ଼ିରେ ବସିଥିଲୁ, କେଉଁଠିକି ଆସିଲୁ ଏବଂ ସେଥିପାଇଁ କେତେ ପ୍ରାପ୍ୟ ଦେବାକୁ ହେବ ସେସବୁ କଥା ଥାଇ ଚିଠାଟିଏ ବାହାରି ଆସିଲା । ସେତକ ଦେୟ ଦେଇ ଆମେ ହୋଟେଲ ଭିତରେ ପଶିଲୁ । ଗାଡ଼ି ଛାଡ଼ିବା ପୂର୍ବରୁ ମହିଳା ଡ୍ରାଇଭରଙ୍କ ସହିତ ଫଟୋଟିଏ ଉଠାଇବାକୁ ମୁଁ ଭୁଲି ନଥିଲି । ଆମେ ଗେଟ୍ ପାଖକୁ ଯିବାମାତ୍ରେ ମୁଖ୍ୟଦ୍ୱାରଟି ଆପେଆପେ ଖୋଲିଗଲା । ଭିତରେ ଦୁଇଟି ଲିଫ୍ଟର ବ୍ୟବସ୍ଥା ଥିଲା । ଗୋଟିଏ ଲିଫ୍ଟରେ ଆମେ ଚତୁର୍ଥମହଲାକୁ ଗଲୁ ଏବଂ ସେଠାରେ ଥିବା ଅଭ୍ୟର୍ଥନାକକ୍ଷରେ ଆମର ପରିଚୟପତ୍ର ଦେଖାଇ ରୁମ୍‌ର ଚାବି ସଂଗ୍ରହ କଲୁ । ସେ ଚାବି ଆମ ଚାବିଭଳି ନଥିଲା । ଗୋଟିଏ ଇଲେକ୍ଟ୍ରୋନିକ୍ କାର୍ଡ । କବାଟରେ ପୁସ୍ କଲେ କବାଟ ଖୋଲେ ଓ ଆସିଲାବେଳେ କବାଟ ବନ୍ଦ କରିଦେଲେ ମନକୁ ମନ ତାଲା ପଡ଼ିଯାଏ ।

## ଟୁରିଷ୍ଟ୍ ବସ୍‌ରେ ସହର ବୁଲା

ରୁମ୍‌ରେ ପହଞ୍ଚିଲାବେଳକୁ ସମୟ ପୂର୍ବାହ୍ନ ଏଗାରଟା ହୋଇଥିଲା । ରୁମ୍ ଭିତରେ ଉଷୁମ ଲାଗୁଥିଲେ ବି ବାହାରେ ଥଣ୍ଡା ଥଣ୍ଡା ଲାଗୁଥିଲା । ସକାଳେ ଘର ଛାଡ଼ିଲାବେଳେ ଯେଉଁ ମୁସୋଲି କ୍ଷୀର ଖିଆଯାଇଥିଲା ସେଥିରେ ମଧ୍ୟାହ୍ନଭୋଜନ ଖାଇବାପାଇଁ ଆଗ୍ରହ ନଥିଲା । ଆମେ ସ୍ଥିରକଲୁ ରୁମ୍‌ରେ ଶୋଇବା ଅପେକ୍ଷା ସହରଆଡ଼େ ବୁଲିଆସିବା ଭଲ । ତଳକୁ ଆସି କିଛିବାଟ ଗଲାପରେ ଟୁରିଷ୍ଟ କାଉଣ୍ଟରଟିଏ ପଡ଼ିଲା । ସହର ମଧ୍ୟରେ ପର୍ଯ୍ୟଟକ ଓ ସାଧାରଣ ଲୋକଙ୍କୁ ବୁଲାଇବା ପାଇଁ ଯେଉଁସବୁ ବସ୍ ଚଳାଚଳ କରୁଥିଲା ସେସବୁ ସେ କାଉଣ୍ଟର୍ ନିକଟରେ ରହି ପାସେଞ୍ଜରଙ୍କୁ ଉଠାଉଥିଲା । ବସ୍‌ଗୁଡ଼ିକ ତିନିମହଲା । ମୁଁ ଆଗରୁ କେବେ ଦେଖିନଥିଲି । ବମ୍ବେ, ଦିଲ୍ଲୀରେ 'ଡବଲଡେକର୍' ବସ୍‌ରେ ଯିବାର ଅନୁଭୂତି ଥିଲା । କିନ୍ତୁ ତିନିମହଲା ବିଶିଷ୍ଟ ବସ୍ ଦେଖିବାର ସୁଯୋଗ ଜୁଟିନଥିଲା । ଟୁରିଷ୍ଟ୍ ବସ୍‌ରେ ଗୋଟିଏ ଟିକେଟ୍ କାଟିଲେ ସହର ଭିତରେ ଥିବା ଷୋଳଟି ମୁଖ୍ୟ ଦର୍ଶନୀୟ ସ୍ଥାନ ଦେଖିବାର ସୁବିଧା ମିଳୁଥିଲା । ସେଥିରେ ଆଉଗୋଟିଏ ସୁବିଧା ମଧ୍ୟ ମିଳୁଥିଲା । ଯେକୌଣସି ସ୍ଥାନରେ ଗୋଟିଏ ବସ୍‌ରୁ ଓହ୍ଲାଇ ପୁରୁଣା ଟିକେଟ୍ ଦେଖାଇ ଆଉଗୋଟିଏ ବସ୍‌ରେ ଯାଇହେଉଥିଲା ।

ଉପରେ ଦୁଇମହଲାରେ ଥଣ୍ଡା ଲାଗୁଥିବାରୁ ମୁଁ ତଳମହଲାରେ ବସିବାକୁ ପସନ୍ଦ କଲି । ବସ୍‌ଟି କାଉଣ୍ଟର୍ ଛାଡ଼ିଲାପରେ ବସ୍‌ରେ ଥିବା ଗାଇଡ୍ ମାଇକ୍ରୋଫୋନ୍ ଯୋଗେ ବିଭିନ୍ନ ସ୍ଥାନ ସମ୍ପର୍କରେ ଧାରାବିବରଣୀ ଦେବା ଆରମ୍ଭ କରିଦେଲେ । ରାଜେନ୍ଦ୍ରଭାଇ ବର୍ଲିନ୍‌ର ଗୋଡ଼ିମାଟି ସହିତ ପରିଚିତ ଥିଲେ; କିନ୍ତୁ ମୋର ସବୁ ନୂଆ ଅନୁଭୂତି ହେଉଥିଲା । ସହର ଭିତରେ ଥିବା ବିଭିନ୍ନ ଐତିହାସିକ କୀର୍ତ୍ତି ସମ୍ପର୍କରେ ବର୍ଣ୍ଣନା କଲାବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସୋଭିଏତ୍ ଋଷର ଆକ୍ରମଣରେ ସେଗୁଡ଼ିକ କିଭଳି ଭାଙ୍ଗିରୁଜି ଯାଇଥିଲା ସେକଥା କହିବାକୁ ଗାଇଡ୍ ଭୁଲୁନଥିଲେ । ଆମ ବସ୍‌ଟି ପ୍ୟାରିସ୍‌ର ପ୍ଲାଜ୍ ପାଖଦେଇ

ଗଲାବେଳେ ଗାଇଡ୍‌ଜଣକ ଏହାର ଐତିହ୍ୟ ବିଷୟରେ ବୁଝାଇଥିଲେ। ବର୍ଲିନ୍ ସହର ବିଭ ଜିତ ହେବାପରେ ଏହି ଅଞ୍ଚଳଟିକୁ ସୋଭିଏଟ୍ ଋଷ ଦଖଲ କରିନେଇଥିଲା। ସେଇଦିନୁ ଏହ ଜୀର୍ଣ୍ଣଶୀର୍ଣ୍ଣ ହୋଇ ପଡ଼ିରହିଥିଲା। ଏ ଅଞ୍ଚଳକୁ କେହି ଲୋକ ଯାତାୟାତ କରୁନଥିଲେ ଓ ସମଗ୍ର ଅଞ୍ଚଳଟି ଏକ ମରଣଯନ୍ତା ଭାବରେ ରହିଥିଲା। ମାତ୍ର ବର୍ଲିନ୍ ପ୍ରାଚୀରର ପତନ ପରେ ଏହାର ପୁନର୍ଗଠନ କରାଯାଇ ଏହାକୁ ସହରର ଏକ ମୁଖ୍ୟକେନ୍ଦ୍ରରେ ପରିଣତ କରାଯାଇଥିଲା। ଏହାପରେ ଆମ ବସ୍‌ଟି ହୋଟେଲ ଆଡ଼ଲନ ପାଖରେ ଅଟକିଲା। ବିଶ୍ୱଯୁଦ୍ଧ ସମାପ୍ତି ଘଟିବା ପରେ ଏକ ଗୁରୁତର ଅଗ୍ନିକାଣ୍ଡ ଫଳରେ ହୋଟେଲର ଅଧିକାଂଶ ଅଂଶ ପୋଡ଼ି ପାଉଁଶ ହୋଇଯାଇଥିଲା। ପରବର୍ତ୍ତୀ ସମୟରେ ଏହି ହୋଟେଲଟି ପୁନର୍ନିର୍ମିତ ହୋଇ ସହରର ଶୋଭାବର୍ଦ୍ଧନ କରୁଛି। ଏହି ହୋଟେଲରେ ଆମେରିକା ରାଷ୍ଟ୍ରପତି ଜର୍ଜ ଡବ୍ଲ୍ୟୁ ବୁସ୍ ଓ ଇଂଲଣ୍ଡର ରାଣୀ ଏଲିଜାବେଥ୍-୨ ଅବସ୍ଥାନ କରିଥିଲେ।

ବାଟରେ ଗଲାବେଳେ ଯୁକ୍ତରାଷ୍ଟ୍ର ଆମେରିକା ଓ ବ୍ରିଟିଶ ଏମ୍ବାସି ଦେଖିବାର ସୁଯୋଗ ମିଳିଲା। ହେଲେ ସମୟର ସ୍ୱଳ୍ପତା ଦୃଷ୍ଟିରୁ ଆମେ ସେଠାରେ ବସ୍‌ରୁ ଓହ୍ଲାଇପାରିଲୁ ନାହିଁ। ଆଉକିଛି ବାଟ ଯିବାପରେ ବ୍ରାଣ୍ଡେନ୍‌ବର୍ଗ ଗେଟ୍ ସାମ୍ନାରେ ଆମ ବସ୍‌ଟି ଅଟକିଲା। ଅନେକ ଲୋକ ସେଠାରେ ଓହ୍ଲେଇଲେ। ଆମେ ମଧ୍ୟ ବସରୁ ଓହ୍ଲାଇପଡ଼ିଲୁ। ସେ ଗେଟ୍‌ଟି ବର୍ଲିନ୍‌ର ଏକ ସ୍ମାରକୀସ୍ତମ୍ଭ ଭାବରେ ବିଦ୍ୟମାନ ଥିଲା। ବର୍ଲିନ୍ ନଗରୀର ଶେଷପ୍ରାନ୍ତରେ ପ୍ରତିଷ୍ଠିତ ଏହି ଗେଟ୍‌ଟି ସହର ମଧ୍ୟକୁ ପ୍ରବେଶ କରୁଥିବା କିମ୍ବା ସହରରୁ ବାହାରକୁ ଯାଉଥିବା ବ୍ୟକ୍ତିଙ୍କ ନିକଟରୁ ଟିକସ ଆଦାୟ ପାଇଁ ଏକ ଟୋଲ୍ ଗେଟ୍ ଭାବରେ କାର୍ଯ୍ୟ କରୁଥିଲା। ଏହି ସ୍ମାରକୀସ୍ତମ୍ଭ ଉପରେ ଶାନ୍ତିର ଦେବୀ 'ଇରେନ୍'ଙ୍କର ଏକ ପ୍ରତିମୂର୍ତ୍ତି ଶୋଭାପାଉଥିଲା। ୧୮୦୬ ମସିହାରେ ବର୍ଲିନ୍ ଫରାସୀମାନଙ୍କଦ୍ୱାରା ଅଧିକୃତ ହେବାପରେ ନେପୋଲିୟନ୍‌ଙ୍କ ଆଦେଶରେ ଏହାକୁ ଏକ 'ଯୁଦ୍ଧଲବ୍ଧ ଧନ' ଭାବରେ ପ୍ୟାରିସ୍‌କୁ ଉଠାଇ ନିଆଯାଇଥିଲା। ପରବର୍ତ୍ତୀ କାଳରେ ଫ୍ରାନ୍ସର ପରାଜୟ ପରେ ଏହାକୁ ପୁଣି ବର୍ଲିନ୍‌କୁ ଫେରାଇ ଦିଆଯାଇଥିଲା। ଶାନ୍ତିର ଦେବୀଙ୍କୁ ବିଜୟର ଦେବୀଭାବରେ 'ଭିକ୍ଟୋରିଆ' ନାମରେ ନାମିତ କରାଯାଇଥିଲା। ବର୍ଲିନ୍‌ର ବିଭାଜନ ପରେ ଏହି ଗେଟ୍‌ଟି ଅବହେଳିତ ଅବସ୍ଥାରେ ରହିଥିଲା ଏବଂ ୧୯୯୦ ମସିହାରେ ବର୍ଲିନ୍‌ର ପୁନଃମିଳନ ପରେ ଏହାର ନବୀକରଣ କରାଯାଇ ଅକ୍ଟୋବର ୩ ତାରିଖରୁ ସର୍ବସାଧାରଣଙ୍କ ପ୍ରବେଶ ପାଇଁ ଖୋଲାଯାଇଥିଲା।

ଗେଟ୍ ଭିତରେ ବୁଲିଲାବେଳେ କିଛିକ୍ଷଣ ପାଇଁ ମୁଁ ସଂଶୟରେ ପଡ଼ିଯାଇଥିଲି। ଗେଟ୍‌ଭିତର ରାସ୍ତାକଡ଼ରେ ଜଣେ ବ୍ୟକ୍ତି ନିଜକୁ ଜୋକର୍‌ଭାବରେ ସଜାଇ ଷ୍ଟାଚ୍ୟୁଭଳି ଛିଡ଼ା ହୋଇଥିଲେ। ସେ ଏତେ ନିଖୁଣ ଭାବରେ ନିଜକୁ ସଜାଇଥିଲେ ଯେ ସେଥିରେ ସେ ବାସ୍ତବରେ ଗୋଟିଏ ଷ୍ଟାଚ୍ୟୁ ବୋଲି ମୋର ଧାରଣା ହୋଇଥିଲା। ନିଜର ବର୍ଲିନ ଭ୍ରମଣକୁ ମନେରଖିବା ପାଇଁ ଅନେକ ଲୋକ ତାଙ୍କ ସାଙ୍ଗରେ ଫଟୋ ଉଠାଉଥିଲେ

ଏବଂ ଫଟୋ ପାଇଁ ପୋଜ୍ ଦେଇ ସେ ବେଶ୍ କିଛି ରୋଜଗାର ମଧ୍ୟ କରୁଥିଲେ। ମୁଁ ଲୋଭ ସମ୍ବରଣ କରିନପାରି ଅନ୍ୟମାନଙ୍କ ଭଳି ଷ୍ଟାଚ୍ୟୁଭଳି ସେଇ ବ୍ୟକ୍ତିଙ୍କ ସାଙ୍ଗରେ ଫଟୋଟିଏ ଉଠାଇଲି। ସେତେବେଳକୁ ଆମେ ଯାଇଥିବା ବସ୍‌ଟି ଛାଡ଼ିଦେଇଥିଲା। ବିଶେଷ ବୁଲାବୁଲି କରିନଥିଲେ ମଧ୍ୟ ମୁଁ ଏକପ୍ରକାର ଥକି ଯାଇଥିଲି। କିନ୍ତୁ ରାଜେନ୍ଦ୍ରଭାଇ କ'ଣ ଛାଡ଼ିବା ବ୍ୟକ୍ତି ? କହିଲେ, "ଚାଲ ଆଉଗୋଟିଏ ବସ୍‌ରେ ବସି ଅନ୍ୟସବୁ ଦର୍ଶନୀୟ ସ୍ଥାନ ଦେଖିବା। ଆମ ହାତରେ ସମୟ କମ୍। ଆମେ ତାର ଯେତେ ସଦ୍‌ବିନିଯୋଗ କରିପାରିବା ସେତେ ଭଲ।" ତା'ପରେ ଆମେ ଆଉଗୋଟିଏ ବସ୍‌ରେ ବସି ରୟାଲ୍ ଅପେରାହାଉସ୍, ବର୍ଲିନ୍ ବିଶ୍ୱବିଦ୍ୟାଳୟ, ଓଲ୍ଡ ରୟାଲ୍ ଲାଇବ୍ରେରୀ, ବର୍ଲିନ୍ ମ୍ୟୁଜିଅମ୍, ରେଡ୍ ଟାଉନ୍ ହଲ୍ ଇତ୍ୟାଦି ଦେଖିଲୁ। ଆମର ବୁଲା ସରିଲା ବେଳକୁ ସମୟ ଚାରିଟା ବାଜିଯାଇଥିଲା। ନିର୍ଦ୍ଦିଷ୍ଟ ସ୍ଥାନରେ ବସ୍‌ରୁ ରେଷ୍ଟୁରାଣ୍ଟ୍ ରାସ୍ତାରେ ଥିବା ଏକ ରେଷ୍ଟୁରାଣ୍ଟ୍‌ରୁ କିଛି ସ୍ନାକ୍ସ ଖାଇ ଆମେ ହୋଟେଲକୁ ଫେରିଲୁ।

## ବିଦେଶରେ ଓଡ଼ିଆ ଖାଦ୍ୟର ସ୍ୱାଦ

ହୋଟେଲ ରୁମ୍‌ରେ କିଛି ସମୟ ବିଶ୍ରାମ ଭିତରେ କେତେକଥା ପଡ଼ିଲା। ରାଜେନ୍ଦ୍ରଭାଇଙ୍କ ସହିତ ଗପକରି ସମୟ କଟାଇବାର ନୂତନ ଅନୁଭୂତି। କଥାବାର୍ତ୍ତା ଭିତରେ ମୁଁ ତାଙ୍କୁ କହିଲି, "ଯାହା ଦେଖାଯାଉଛି, ବ୍ରେକ୍‌ଫାଷ୍ଟ ବ୍ୟତୀତ ଶାକାହାରୀମାନଙ୍କ ପାଇଁ ଏ ସହରରେ ବୋଧହୁଏ କିଛି ଖାଦ୍ୟ ମିଳିବ ନାହିଁ। କେବଳ ସାଣ୍ଡୱିଚ୍, ପଟାଟୋ ଚିପ୍ସ ଖାଇ ଏବଂ ଜୁସ୍ ପିଇ ରହିବାକୁ ପଡ଼ିବ।" ଉତ୍ତରରେ ସେ କହିଲେ, "ତମେ ଶାକାହାରୀ ବୋଲି କ'ଣ ମୁଁ ଜାଣିନାହିଁ ? ତମର ପ୍ରତ୍ୟେକ ଅଭ୍ୟାସ ସମ୍ପର୍କରେ ମୁଁ ସଚେତନ ଏବଂ ସେହି ଅନୁଯାୟୀ ସବୁ ବ୍ୟବସ୍ଥା କରାଯାଇଛି। ଆମେ ରାତିରେ ଏମିତି ଗୋଟିଏ ଜାଗାକୁ ଯିବା ଯେଉଁଠି ତମେ ଘରଭଳି ଯାହା ଚାହିଁବ ଇଚ୍ଛା ଅନୁଯାୟୀ ଖାଇପାରିବ।" ମୁଁ ଭାବିଲି ଭାଇ ବୋଧେ ମୋତେ ଖୁସି କରିବା ପାଇଁ ସେକଥା କହୁଥିଲେ। କିନ୍ତୁ ପରେ ତାଙ୍କ କଥାର ଯଥାର୍ଥତା ଉପଲବ୍ଧି କରିଥିଲି।

ବର୍ଲିନ୍‌ରେ ଡେରିରେ ସନ୍ଧ୍ୟାହୁଏ। କଥାବାର୍ତ୍ତା ଭିତରେ ଆମେ ହୋଟେଲ ରୁମ୍‌ରେ କିଛିସମୟ ପାଇଁ ଶୋଇଯାଇଥିଲୁ। ପାଖାପାଖି ଆଠଟା ବେଳକୁ ନିଦ ଭାଙ୍ଗିଲା। ତଥାପି ରାତି ହୋଇନଥିଲା। ଆମେ ଲୁଗାପଟା ପିନ୍ଧି ବାହାରିଲୁ। ରାସ୍ତାରେ କିଛିବାଟ ଗଲାପରେ ଗୋଟିଏ ରେଷ୍ଟୁରାଣ୍ଟ୍ ସାମନାରେ ଆମେ ଅଟକିଲୁ। ରେଷ୍ଟୁରାଣ୍ଟ୍‌ରେ ଲାଗିଥିବା ସାଇନ୍‌ବୋର୍ଡକୁ ଅନେଇ ଦେଖିଲି ସେଥିରେ ଲେଖାଯାଇଥିଲା 'ରେଷ୍ଟୁରାଣ୍ଟ୍ କାଲକାଟା'। ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ସୁଦୂର ବର୍ଲିନ୍ ସହରରେ ଭାରତୀୟ ନାଁରେ

ରେଷ୍ଟୁରାଣ୍ଟ୍ କୁଆଡୁ ଆସିଲା ? ଆମେ ରେଷ୍ଟୁରାଣ୍ଟ୍ ଭିତରେ ପଶିଲୁ। ରେଷ୍ଟୁରାଣ୍ଟ୍‌ରେ ଭିଡ଼ ହୋଇନଥିଲା। ଆମେ ଗୋଟିଏ କଣରେ ଥିବା ସୋଫାରେ ବସିଲୁ। କିଛିସମୟ ପରେ ଜଣେ ବୟସ୍କ ବ୍ୟକ୍ତି ଆସି ଆମେ କ'ଣ ଖାଇବୁ ବୋଲି ଇଂରାଜୀରେ ପଚାରିଲେ। ବର୍ଲିନ୍‌ରେ ସମାଜର ଉଚ୍ଚବର୍ଗର ଖୁବ୍ କମ୍ ଲୋକ ଇଂରାଜୀରେ କଥାବାର୍ତ୍ତା କରନ୍ତି। ସେ ଦୃଷ୍ଟିରୁ ଗୋଟିଏ ଛୋଟିଆ ରେଷ୍ଟୁରାଣ୍ଟ୍‌ରେ ଆମସହିତ ଜଣେ ବ୍ୟକ୍ତି ଇଂରାଜୀରେ କଥାବାର୍ତ୍ତା ହେଉଥିବାର ଦେଖି ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇଯାଇଥିଲି। ରାଜେନ୍ଦ୍ରଭାଇ ବୁଝାଇଦେଲେ, "ସେ ହେଉଛନ୍ତି ଜଣେ ଭାରତୀୟ ଏବଂ ରେଷ୍ଟୁରାଣ୍ଟ୍‌ର ମାଲିକ। ତମେ ତାଙ୍କ ସାଙ୍ଗରେ ହିନ୍ଦୀରେ ବି କଥାବାର୍ତ୍ତା କରିପାର।" ମୁଁ ତାଙ୍କୁ ପଚାରିଲି, "ଆପ୍ କ୍ୟା ଖାନା ଦେ ସକ୍‌ତେ ହୋ ?" ସେ କହିଲେ, "ଯୋ ମର୍ଜି ଲିଜିଏ। ଚାୱଲ୍, ରୋଟି, ଡାଲ୍, ସବ୍‌ଜୀ, ପନୀର୍, ଗୋଭି, ଦହି ସାରେ ହମାରେ ପାସ୍ ମହଜୁଦ୍ ହୈ। ଆପ୍ ହୁକୁମ୍ ଦିଜିଏ।" ମୁଁ ନିଜକୁ ବିଶ୍ୱାସ କରିପାରିଲି ନାହିଁ ଯେ ମୁଁ ବର୍ଲିନ୍‌ରେ ଥିଲି ନା ଭୁବନେଶ୍ୱରର କେଉଁ ରେଷ୍ଟୁରାଣ୍ଟ୍‌ରେ ବସିଥିଲି। ମୁଁ ତାଙ୍କୁ କହିଲି, "ହମେ ଚାୱଲ୍, ତନ୍ଦୁରୀ ରୋଟି, ଡାଲ୍‌ଫ୍ରାଏ, ବେଗନଭର୍ତ୍ତା, ଭିଣ୍ଡି ଭାଜି କେ ସାଥ ପାପଡ଼ ଔର୍ ଦହି ଚାହିୟେ। ସାରେ ଚିଜ୍ ଆପ୍ କୋ ମିଲ୍ ଯାଏଗା, ସିର୍ଫ ପନ୍ଦ୍ରା ମିନିଟ୍ ଟାଇମ୍ ଚାହିୟେ" ବୋଲି କହି ଭଦ୍ରଲୋକ କିଚେନ୍ ଭିତରକୁ ପଶିଲେ। ଠିକ୍ ପନ୍ଦରମିନିଟ୍ ପରେ ସବୁ ଖାଦ୍ୟ ଧରି ସେ ନିଜେ ହାଜର ହୋଇଗଲେ। ଦିନରେ କିଛି ଖାଇବା ହୋଇନଥିଲା। ୟୁରୋପ କିମ୍ବା ଅନ୍ୟାନ୍ୟ ଦେଶରେ ରହୁଥିବା ଲୋକେ ଖରାବେଳେ ଖାଇବାରେ ଅଭ୍ୟସ୍ତ ନୁହନ୍ତି। କିନ୍ତୁ ଆମର ତ ଖରାବେଳ ଖାଇବା ହିଁ ମୁଖ୍ୟ ଖାଇବା। ସାମନାରେ ମନ ମୁତାବକ ଖାଦ୍ୟପଦାର୍ଥ ଦେଖି ଲୋଭ ସମ୍ବରଣ କରିହେଲା ନାହିଁ। ସାଙ୍ଗେ ସାଙ୍ଗେ ଭୋଜନ ଆରମ୍ଭ କରିଦେଲୁ।

କ୍ରମେ ରେଷ୍ଟୁରାଣ୍ଟରେ ଭିଡ଼ ଜମିଆସୁଥିଲା। ସେଇ ଭିଡ଼ ଭିତରେ ଆମର ଖାଦ୍ୟ କିପରି ଥିଲା ବୋଲି ରେଷ୍ଟୁରାଣ୍ଟ୍ ମାଲିକ ବୁଝିବାକୁ ଭୁଲିନଥିଲେ। ଭୋଜନ ପରେ ଆମେ ରେଷ୍ଟୁରାଣ୍ଟ୍‌ର ପ୍ରବେଶଦ୍ୱାର ପାଖରେ ଥିବା ସୋଫାରେ ବିଶ୍ରାମ ନେଲୁ। କିଛି ସମୟ ପରେ ରେଷ୍ଟୁରାଣ୍ଟ୍ ମାଲିକ ମଧ୍ୟ ଆସି ଆମ ପାଖରେ ବସିଲେ। ଚିରାଚରିତ ଭାବରେ ମୁଁ ତାଙ୍କ ସହିତ ଗପ ଆରମ୍ଭ କରିଦେଲି। କାଥାବାର୍ତ୍ତା ମଧ୍ୟରେ ଆମର ଆତ୍ମୀୟତା ବଢ଼ିଲା। ସେଥିରୁ ବୁଝିଲି ତାଙ୍କ ନାଁ ଅଶୋକ କାଚ୍ରୁ ଏବଂ ତାଙ୍କ ଜନ୍ମସ୍ଥାନ କାଶ୍ମୀରର ଶ୍ରୀନଗର। ଦୀର୍ଘ ୩୭ବର୍ଷ ତଳେ ଇଞ୍ଜିନିୟରିଂ ପାସ୍ କରି କର୍ମସଂସ୍ଥାନ ଉଦ୍ଦେଶ୍ୟରେ ସେ ଜର୍ମାନୀ ଆସିଥିଲେ ଓ ନିଜ ଉଦ୍ୟମରେ ବର୍ଲିନ୍ ସହରରେ ଜଣେ ଇଞ୍ଜିନିୟର୍ ଭାବରେ ନିଜକୁ ପ୍ରତିଷ୍ଠିତ ମଧ୍ୟ କରିପାରିଥିଲେ। ପରେ ଜର୍ମାନୀର ନାଗରିକତ୍ୱ ଗ୍ରହଣ କରି ଜଣେ ଜର୍ମାନ ମହିଳାଙ୍କୁ ବିବାହ କଲେ। ଚାକିରି କରି ଅନେକ ଅର୍ଥ ମଧ୍ୟ ଆୟ କରିଥିଲେ। କିନ୍ତୁ ହଠାତ୍ ତାଙ୍କ ମୁଣ୍ଡରେ ଏକ ଖିଆଲ ଫୁଟିଲା। ମେସିନ୍ ସହିତ ନଚଳି ମାନବସେବାରେ

ନିଜକୁ ନିୟୋଜିତ କରିବାପାଇଁ ସ୍ଥିରକରି ସେ ଚାକିରି ଛାଡ଼ିଦେଲେ । କିଛିବର୍ଷ ମଧ୍ୟରେ ନିଜ ଚେଷ୍ଟାରେ ସେ 'ରେଷ୍ଟୁରାଣ୍ଟ କାଲ୍‌କାଟା'ର ମାଲିକ ହୋଇପାରିଲେ । ନିଜର କର୍ତ୍ତବ୍ୟ ଓ ଅଭିଜ୍ଞତା ସମ୍ପର୍କରେ ଶ୍ରୀ କାଟୁ କହିଲେ, "ମୁଁ ବର୍ତ୍ତମାନ ଯେଉଁ କାମ କରୁଛି ସେଥିରେ ମତେ ଉଭୟ ଅର୍ଥ ଓ ମାନସିକ ଶାନ୍ତି ମିଳୁଛି । ମୁଁ ଯେତେବେଳେ ଗ୍ରାହକମାନଙ୍କୁ ଖାଦ୍ୟ ପରିବେଷଣ କରୁଛି ଏବଂ ସେମାନଙ୍କ ବାସନ ଉଠାଉଛି, ମତେ ପରମ ଆନନ୍ଦ ମିଳୁଛି; କାରଣ ମୁଁ ସଦସର୍ବଦା ଗ୍ରାହକମାନଙ୍କୁ ଆମ ଘରର ଅତିଥି ବୋଲି ବିଚାରିଥାଏ ଏବଂ ସେମାନେ ଏଠାରୁ ଶାନ୍ତିରେ ଖାଇ ଗଲେ ମୋ ମନ ତୃପ୍ତିରେ ଭରିଯାଏ ।"

ରେଷ୍ଟୁରାଣ୍ଟଟି କିପରି ଚାଲିଛି ଏବଂ ସେଥିରୁ କେତେ ରୋଜଗାର ହେଉଛି ବୋଲି ପଚାରିବାରୁ ସେ କହିଲେ, "ଜୀବନରେ ଅର୍ଥ ରୋଜଗାର ସବୁକିଛି ନୁହେଁ । ଆନନ୍ଦ ଅନୁଭବ କରିବା ହେଉଛି ସବୁଠାରୁ ବଡ଼କଥା । ଅର୍ଥ ସହିତ ମୁଁ ସେ ଆନନ୍ଦ ଅନୁଭବ କରୁଛି । ତେବେ ଖର୍ଚ୍ଚ ଯାଇ ବର୍ଷକୁ ହାରାହାରି ୨୫,୦୦୦ ୟୁରୋ ମିଳିଯାଉଛି । ତା'ଛଡ଼ା ଭାରତବର୍ଷରୁ ଯେଉଁ ରାଷ୍ଟ୍ରନୀତିଜ୍ଞ, ପ୍ରଶାସକ ଏବଂ ପର୍ଯ୍ୟଟକମାନେ ବର୍ଲିନ୍ ଆସୁଛନ୍ତି, ସେମାନଙ୍କୁ ଖୁଆଇବାର ସୁଯୋଗ ମିଳୁଥିବାରୁ ମୁଁ ଅତ୍ୟନ୍ତ ପ୍ରୀତ । ମୁଁ ନିଜ ହାତରେ ଭାରତବର୍ଷର ଚାରିଜଣ ପ୍ରଧାନମନ୍ତ୍ରୀ, ଦୁଇଜଣ ରାଷ୍ଟ୍ରପତି ଓ ବହୁ ସାଂସଦଙ୍କୁ ଖାଦ୍ୟ ପରିବେଷଣର ସୁଯୋଗ ପାଇଛି । ସେସବୁ ମୋ ପାଇଁ ବଡ଼କଥା ।" ଶ୍ରୀ କାଟୁଙ୍କ ସାଙ୍ଗରେ ଗପ କରୁକରୁ ରାତି ଦଶଟା ବାଜିଯାଇଥିଲା । ଆମେ ହୋଟେଲକୁ ଫେରି ବିଶ୍ରାମ ନେଲୁ ।

## 'ଫ୍ରି ୟୁନିଭରସିଟି'ରେ ଅତୀତର ରୋମନ୍ଥନ

ବର୍ଲିନ୍‌ରେ ତିନିଦିନ ରହଣି ସମୟ ମଧ୍ୟରେ କେତେ ଜାଗା ବୁଲିହେବ, କେତେ ଅନୁଷ୍ଠାନକୁ ଯାଇହେବ, ରାଜେନ୍ଦ୍ରଭାଇ ତା'ର ଏକ ଲମ୍ବା ତାଲିକା ଆଗରୁ ପ୍ରସ୍ତୁତ କରି ରଖିଥିଲେ । ସେଇ ତାଲିକା ଭିତରେ ଥିଲା 'ଫ୍ରି ୟୁନିଭରସିଟି' ପରିଦର୍ଶନ । ମୁଁ ପଚାରିଲି, ସେ ୟୁନିଭରସିଟିରେ ଏପରି କ'ଣ ଅଛି ଯେ ଆମେ ଅର୍ଥବ୍ୟୟ କରି ସେଠାକୁ ଯିବା ? ତାଙ୍କର ଉତ୍ତର ଥିଲା, "ତମେ ପରା ଶ୍ରୀରାମବାବୁ (ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ)ଙ୍କ ଛାତ୍ର ଏ ୟୁନିଭରସିଟି ସହିତ ଆମର କ'ଣ ସମ୍ପର୍କ ସେକଥା ଜାଣିନାହଁ? ଇଏ ହେଉଛି ସେଇ ୟୁନିଭରସିଟି, ଯେଉଁଠାରୁ ଡଃ ଦାଶ ତାଙ୍କର ଡି.ଲିଟ୍ ଉପାଧି ପାଇଥିଲେ ।"

ଆମେ ସକାଳେ ଶୀଘ୍ର ଉଠି ନିତ୍ୟକର୍ମ ସାରି ଡାଇନିଂ ହଲ୍‌କୁ ବ୍ରେକ୍‌ଫାଷ୍ଟ ପାଇଁ ଗଲୁ । ସୌଭାଗ୍ୟକୁ ସେଠାରେ ସବୁରକମର ଖାଦ୍ୟପଦାର୍ଥ ଥିଲା । ବ୍ରେଡ୍, ବଟର୍, ଆମ୍‌ଲେଟ୍‌ଠାରୁ ଆରମ୍ଭ କରି କର୍ଣ୍ଣଫ୍ଲେକ୍ସ, ମିଲ୍କ, ଫ୍ରୁଟ୍ ଜୁସ୍, ଚା', କଫି ସାଙ୍ଗକୁ ବିଫ୍ ଓ ପୋର୍କ ପର୍ଯ୍ୟନ୍ତ ସବୁ ମିଳୁଥିଲା । ଯିଏ ଯାହା ଖାଇବାକୁ ଇଚ୍ଛା କରୁଥିଲେ ନିଜ ହାତରେ

ଆଣି ଖାଉଥିଲେ। କିଛି କଟକଣା ନଥିଲା। ସୁବିଧା ଦୃଷ୍ଟିରୁ ମୁଁ କର୍ଣ୍ଣଫ୍ଲେକ୍ସ ଓ କ୍ଷୀର ଆଣିଲି। ପରେ କିଛି ଫ୍ରୁଟ୍‌ଜୁସ ନେଲି। ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ବ୍ରେକ୍‌ଫାଷ୍ଟ୍‌କୁ ଏକପ୍ରକାର ଦିନର ମୁଖ୍ୟ ଖାଦ୍ୟ ବୋଲି ବିଚାର କରାଯାଇଥାଏ। ସେ ଦେଶର ଲୋକଙ୍କ ପାଖରେ ମଧ୍ୟାହ୍ନ ଭୋଜନ ପାଇଁ ସମୟ ବା ସୁଯୋଗ ନଥାଏ। ଆମେ ଆରାମରେ ବ୍ରେକଫାଷ୍ଟ୍ କରି ବାହାରକୁ ଆସିଲୁ।

ହୋଟେଲ ସାମ୍‌ନାରେ ଟ୍ୟାକ୍ସିଷ୍ଟାଣ୍ଡ୍‌ଟିଏ ଥିଲା। ଆମେ ସେଥିରୁ ଗୋଟିଏ ମର୍ସିଡେଜ୍‌ବେଞ୍ଜ ଟ ଡ଼ି ଧରିଲୁ। ସେ ଗାଡ଼ିର ଡ୍ରାଇଭର୍ ଖୁରମ୍ ଅଲ୍ଲି ପାକିସ୍ତାନର ଅଧିବାସୀ। ବି.ଏ. ପାସ୍ କରି କର୍ମସଂସ୍ଥାନ ପାଇଁ ଗତ ସାତବର୍ଷ ତଳେ ବର୍ଲିନ୍ ଆସିଥିଲେ। ଡ୍ରାଇଭର୍ ଚାକିରିଟିଏ ମିଳିଯିବାରୁ ରହିଗଲେ ଏବଂ ଭଡ଼ାରେ ଗାଡ଼ି ଆଣି ଚଳାଇଲେ । ସେଥିରୁ ଯାହା ଆୟ ହେଉଥିବା ତାହା ମାଲିକ ଓ ତାଙ୍କ ଭିତରେ ଅଧା ଅଧା ବଣ୍ଟା ହେଉଥିଲା। ସେଥିରେ ସେ ମାସକୁ ୧୫୦ରୁ ୨୦୦ ୟୁରୋ ପର୍ଯ୍ୟନ୍ତ ରୋଜଗାର କରୁଥିଲେ। ଆମେ ଭାରତରୁ ଯାଇଥିବା ଶୁଣି ଶ୍ରୀ ଅଲ୍ଲି ଖୁସି ହୋଇଗଲେ ଏବଂ ଆମ ସାଙ୍ଗରେ ହିନ୍ଦୀରେ କଥାବାର୍ତ୍ତା କଲେ। ସାତବର୍ଷ ଭିତରେ ବର୍ଲିନ ସହରର ରାସ୍ତାଘାଟ ସମ୍ପର୍କରେ ତାଙ୍କର ଦଖଲ ଆସିଯାଇଥିଲା। ଆମେ ଫ୍ରି ୟୁନିଭର୍‌ସିଟି ଯିବାକୁ କହିଲାରୁ ସେ ସିଧା ନେଇ ସେଠାରେ ପହଞ୍ଚାଇଦେଲେ। ସେଠାରେ ପହଞ୍ଚି ଆମର ଆଉ କୋଉଠି ଯିବାର କାର୍ଯ୍ୟକ୍ରମ ଅଛିକି ନାହିଁ ସେକଥା ପଚାରିବୁଝିଲେ ଓ ଆମ ସାଙ୍ଗରେ ରହିଲେ ଖୁସି ହେବେ ବୋଲି କହିଲେ। ଆମ ପାଇଁ ମଧ୍ୟ ସେପରି ପରିସ୍ଥିତି ବିଶେଷ ଅନୁକୂଳ ଥିଲା। ଶ୍ରୀ ଅଲ୍ଲିଙ୍କୁ ଅପେକ୍ଷା କରିବାକୁ କହି ଆମେ ବିଶ୍ୱବିଦ୍ୟାଳୟର ୫୪ ନମ୍ବର ବ୍ଲକ୍ ଭିତରେ ପଶିଲୁ।

ବିଶ୍ୱବିଦ୍ୟାଳୟ ଯେଉଁ କୋଠରିରେ ଡଃ ଦାଶ ଦୀର୍ଘ ୫୩ବର୍ଷ ପୂର୍ବେ ଗବେଷଣା କରୁଥିଲେ, ସେଠାରେ ପ୍ରବେଶ କରିବାମାତ୍ରେ ଶରୀର ରୋମାଞ୍ଚିତ ହେଲା। ଅବିଭକ୍ତ କଟକ ଜିଲ୍ଲା ଅନ୍ତର୍ଗତ ବାଲିକୁଦା ଥାନା ଅଞ୍ଚଳର ଅଖ୍ୟାତ ପଲ୍ଲୀ ବୀରନରସିଂହପୁରରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମଲାଭ କରିଥିବା ଜଣେ ଯୁବକ କିପରି ଏବଂ କେଉଁ ପରିସ୍ଥିତିରେ ଆସି ବର୍ଲିନ୍‌ରେ ଗବେଷଣା କରି ଡି.ଲିଟ୍ ଡିଗ୍ରୀ ଲାଭ କରିଥିଲେ, ସେକଥା ଭାବିଲାବେଳେ ତାଙ୍କ ସ୍ମୃତିପ୍ରତି ମୁଣ୍ଡ ଆପେ ଆପେ ନଇଁଗଲା। ସେତେବେଳେ ଉଡ଼ାଜାହଜରେ ଯିବାପାଇଁ ତାଙ୍କ ପାଖରେ ଅର୍ଥ ନଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା ପରେ ପୂର୍ବ ବର୍ଲିନର ଅର୍ଥନୈତିକ ସ୍ଥିତି ଶୋଚନୀୟ ହୋଇପଡ଼ିଥିଲା। ରାସ୍ତାଘାଟର ସୁବିଧା ନଥିଲା ଏବଂ ସର୍ବୋପରି ଡଃ ଦାଶ ଜର୍ମାନୀ ଭାଷା ଜାଣିନଥିଲେ ଏବଂ ଅପରପକ୍ଷରେ ବର୍ଲିନ୍‌ରେ ସାଧାରଣ ଲୋକେ ଇଂରାଜୀ ଭାଷାରେ କହିବୋଲି ପାରୁନଥିଲେ। ବରଂ ଇଂରାଜୀ କହୁଥିବା ଲୋକଙ୍କୁ ଘୃଣା କରୁଥିଲେ। ହେଲେ ସେପରି ପ୍ରତିକୂଳ ପରିସ୍ଥିତିକୁ ସାମନା କରି ସେ ନିଜର ଲକ୍ଷ୍ୟ ହାସଲ କରିପାରିଥିଲେ।

ନିଜ ଅନୁଭୂତିକୁ ଲିପିବଦ୍ଧ କରି ଡଃ ଦାଶ ତାଙ୍କ ଆତ୍ମଜୀବନୀ 'ମୋ ଅକୁହା କଥା'ରେ ଲେଖିଯାଇଛନ୍ତି, "ମୁଁ ସେଠାରେ ନିଜେ ରାନ୍ଧି ଖାଉଥିଲି। ମୋ ରାନ୍ଧୁଥିବା କୁକରଟିକୁ ମୁଁ ଫେରିବାବେଳେ କଟକ ଆଣିଥିଲି। ତାହା ମୋ ପାଖରେ ଅଛି। ବଜାରରୁ ଚାଉଳ, ପରିବା ଓ ଶାଗ କିଣିଆଣେ। ସେଠାରେ ସବୁପ୍ରକାର ଶାଗ ମିଳେ। ରୋଷେଇ କରିବାକୁ ପ୍ରାୟ ଅଧଘଣ୍ଟାଏ ସମୟ ଲାଗୁଥିଲା, ଘରୁ ପାର୍ଶଲ ହୋଇ ମସଲା ଯାଉଥାଏ। ମସଲା ଡବାଟି ସର୍ବଦା ମୋ ବ୍ୟାଗ୍‌ରେ ଥାଏ। ଯେଉଁଦିନ ବିଶ୍ୱବିଦ୍ୟାଳୟରେ ସକାଳେ କ୍ଲାସ୍ ଥାଏ, ସେଦିନ ରୋଷେଇ କରିବାକୁ ବେଳ ହୁଏନାହିଁ। ମେନ୍‌ସା ବୋଲି କୁହାଯାଉଥିବା ବିଶ୍ୱବିଦ୍ୟାଳୟ ଭୋଜନାଳୟରେ ଖାଇବାକୁ ପଡ଼େ। ମୁଁ ନିରାମିଷାଶୀ। ମାଛ, ମାଂସ, ଅଣ୍ଡା ଆଦି ଖାଏ ନାହିଁ। ଭୋଜନାଳୟର ଗୋଟିଏ ଝିଅ ମୁଁ ନିରାମିଷାଶୀ ଓ ଖାଇସାରିବା ପରେ ପାଣି ପିଏ ବୋଲି ମୁଁ ପହଞ୍ଚିବା ମାତ୍ରକେ ମୋ ଖାଇବା କଥା ସେ ଆଗ ବୁଝେ। କେତେକ ପରିବା ଚର୍ବି ଦିଆହୋଇ ସିଝା ହୋଇଥାଏ। ସେଭଳି ପରିବା ସିଝା ମତେ ଯେପରି ଦିଆନଯାଏ ସେଥିପ୍ରତି ସେ ଦୃଷ୍ଟି ରଖୁଥିଲା। ଜର୍ମାନୀରେ ସମସ୍ତେ ବିଅର ପିଅନ୍ତି। ମୁଁ ଖାଇସାରିବା ପରେ ସେ ଝିଅଟି ମୋ ପାଇଁ ପାଣି ଗିଲାସେ ଆଣି ଥୋଇଦିଏ। ସେ ଅନ୍ୟମାନଙ୍କ ସହିତ ମୋତେ ପରିଚିତ କରାଇଦେବାବେଳେ କହେ, ମୁଁ ଜଣେ ପାଣି ପିଉଥିବା ଓ ମାଛ, ମାଂସ, ଅଣ୍ଡା ଖାଉନଥିବା ଭାରତୀୟ। ଏହି ପରିଚୟ ଶୁଣି ଜର୍ମାନ ଛାତ୍ରମାନେ ହସନ୍ତି।

"ଜର୍ମାନ୍‌ମାନେ ବଡ଼ ଧର୍ମପ୍ରାଣ। ରବିବାର ଦିନ ସେମାନେ ନିଶ୍ଚୟ ଗୀର୍ଜାକୁ ଯିବେ। ସେଦିନ କେହି କିଛି କାମ କରନ୍ତି ନାହିଁ। ଏ ଧାରଣା ମୋର ନଥିଲା। ୧୯୫୩ ମସିହା ଖ୍ରୀଷ୍ଟମାସ ବା ଡିସେମ୍ବର ୨୫ ତାରିଖ ଦିନ ସମଗ୍ର ବର୍ଲିନ୍ ସହର ବନ୍ଦ ଥିଲା। ଗୋଟିଏ ହେଲେ ଦୋକାନ ଖୋଲା ନଥିଲା। ଏପରିକି ରସ୍ତାକଡ଼ର ରୁଟି ଓ ଚା ଦୋକାନ ମଧ୍ୟ ବନ୍ଦ ଥିଲା। ଚବିଶି ତାରିଖ ମଧ୍ୟରାତ୍ରରୁ ସମସ୍ତେ ଗୀର୍ଜାରେ ପ୍ରର୍ଥନା କରୁଛନ୍ତି କିମ୍ବା ବଡ଼ଦିନ ଉତ୍ସବ ପାଳନ କରୁଛନ୍ତି। ମୁଁ ସେତେବେଳକୁ ରୋଷେଇ ଆରମ୍ଭ କରିନଥାଏ। ସବୁଦିନେ ବିଶ୍ୱବିଦ୍ୟାଳୟକୁ ଯାଉଥିବାରୁ ଭୋଜନାଳୟରେ ଖାଇ ନେଉଥାଏ। ବଡ଼ଦିନରେ ରୁଟି ମିଳିଲା ନାହିଁ, ବିଶ୍ୱବିଦ୍ୟାଳୟ ବି ଖୋଲା ନଥିଲା। ମାସିକିଆ ଟିକେଟ୍। ବିଶ୍ୱବିଦ୍ୟାଳୟ ଖୋଲାଥିଲେ ମୁଁ ସେଠାକୁ ଯାଇ ଖାଇଆସିଥାନ୍ତି। ବର୍ଲିନ୍‌ବାସୀ ସିନା ଉତ୍ସବ ପାଳନ କରୁଥିଲେ, ମୋର ନିର୍ଜଳା ଉପବାସ। ମୁଁ ମନଦୁଃଖରେ ଛାତ୍ରାବାସକୁ ଫେରି ଆସିବାବେଳେ ପରେ ମିଶରର ବୈଦେଶିକ ମନ୍ତ୍ରୀ ହୋଇଥିବା ତୌଫିକ ନାମକ ଜଣେ ଛାତ୍ରଙ୍କ ସହିତ ମୋର ଭେଟ ହେଲା ଓ ମୁଁ କାହିଁକି ମୁହଁ ଶୁଖାଇଛି ବୋଲି ସେ ପଚାରିଲେ। ମୁଁ ତାଙ୍କୁ ମୋ ଉପବାସ କଥା କହିବାରୁ ସେ ନିଜ କୋଠରିକୁ ଡାକିନେଇ ରୁଟି ଓ ଚା' ଖାଇବାକୁ ଦେଲେ। ସେ ସହାନୁଭୂତି ଦେଖାଇନଥିଲେ ମୁଁ ସେଦିନ ଖାଡ଼ା ଉପବାସ ରହିଥାନ୍ତି।"

ଆମେ ଆମର ପରିଚୟ ଦେଇ ଡଃ ଦାଶଙ୍କ ଗବେଷଣା ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରିବାକୁ ଚାହିବାରୁ ସେଠାରେ ଥିବା ଅଧିକାରୀ ନମ୍ରତାର ସହିତ ଆମକୁ କହିଲେ, "କ୍ଷମା କରିବେ, ପଚାଶବର୍ଷ ପୂରିଗଲେ ସବୁ ଡକୁମେଣ୍ଟ୍ ଆର୍କାଇବ୍‌କୁ ଚାଲିଯାଏ। ସେଥିପାଇଁ ମୁଁ ଆପଣଙ୍କୁ ଡଃ ଦାଶଙ୍କ ଥିସିସ୍‌ର କପି ଯୋଗାଇବା ପାଇଁ ଅକ୍ଷମ। ତେବେ ସେ କିଛି ପୁରୁଣା ରେକର୍ଡ ଘଣ୍ଟାଘଣ୍ଟି କରି ଡଃ ଦାଶଙ୍କର ସନ୍ଦର୍ଭର ବିଷୟ 'ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ ଓ ପଶ୍ଚିମ ଜର୍ମାନୀ ସମ୍ବିଧାନ ପରିପ୍ରେକ୍ଷୀରେ ଭାରତୀୟ ସମ୍ବିଧାନର ତୁଳନାତ୍ମକ ଅଧ୍ୟୟନ' ଥିଲା ବୋଲି ଆମକୁ ଜଣାଇଲେ। ଆମେ ତାଙ୍କୁ କୃତଜ୍ଞତା ଜଣାଇ ବାହାରକୁ ଆସିଲୁ। ସେଦିନର ସେ ସ୍ମୃତିକୁ ମନେରଖିବା ପାଇଁ ସେ ବ୍ଲକ୍ ସାମ୍‌ନାରେ ଛିଡ଼ାହୋଇ ଫଟୋଟିଏ ଉଠାଇଥିଲି।

## ପ୍ରିଣ୍ଟ୍ ମିଡିଆର ଅଗ୍ରଦୂତ ଆକ୍ସେଲ୍ ସ୍ପ୍ରିଙ୍ଗର୍ ଅନୁଷ୍ଠାନ

ଫ୍ରି ୟୁନିଭର୍‌ସିଟିରୁ ଫେରି ଆମେ ଆକ୍ସେଲ୍ ସ୍ପ୍ରିଙ୍ଗର୍‌ଙ୍କ ପ୍ରିଣ୍ଟ୍ ମିଡିଆ ଅନୁଷ୍ଠାନ ଦେଖିବାକୁ ଚାଲିଲୁ। ଆକ୍ସେଲ ସ୍ପ୍ରିଙ୍ଗର୍‌ଙ୍କୁ ସେ ଦେଶର ପ୍ରିଣ୍ଟମିଡିଆର ଅଗ୍ରଦୂତ ବୋଲି କୁହାଯାଉଥିଲା। ରାଜେନ୍ଦ୍ରଭାଇ କେତେବେଳେ ସେ ଅନୁଷ୍ଠାନ ଦେଖିବାକୁ ଯିବା ପାଇଁ ଆମର କାର୍ଯ୍ୟକ୍ରମ ସ୍ଥିରକରି ସେମାନଙ୍କୁ ଜଣାଇ ଦେଇଥିଲେ ମୁଁ ଜାଣିପାରି ନଥିଲି। ଆମେ ସେଠାରେ ପହଞ୍ଚିବା ମାତ୍ରେ ଆମକୁ ଭିତରକୁ ନେବା ପାଇଁ ଜଣେ ଅଧିକାରୀ ଅପେକ୍ଷା କରି ରହିଥିଲେ। ଆମର ପରିଚୟ ପାଇଲା ପରେ ଅନୁଷ୍ଠାନ ଭିତରକୁ ନେଲେ। ସେ ଆମକୁ ଅନୁଷ୍ଠାନର ପ୍ରଚଳିତ ନିୟମ ଅନୁଯାୟୀ ଆମର ବ୍ୟାଗ୍‌କୁ ଅଭ୍ୟର୍ଥନାକକ୍ଷରେ ରଖିବାକୁ ହେଲା ଏବଂ ପରିଦର୍ଶକ ଖାତାରେ ଦସ୍ତଖତ କରି ଆମେ ଭିତରେ ପଶିଲୁ।

ସେଠାରେ ଅଧ୍ୟାପନା କରୁଥିବା ଯୁବ ଅଧ୍ୟାପକ ଫ୍ରାନ୍‌ସିସ୍ ଭଲ ଭାବରେ ଇଂରାଜୀ ଜାଣିଥିଲେ। ଆମେ ଯିବା ଖବର ପାଇ ସେ ଅପେକ୍ଷା କରିଥିଲେ। ସେଠାରେ ଅଧ୍ୟାପକ ଭାବରେ ଯୋଗଦେବା ପୂର୍ବରୁ ସେ ଯେତେବେଳେ ଭାରତ ଆସିଥିଲେ, ଓଡ଼ିଶା ଆସିବାକୁ ତାଙ୍କୁ ସୁଯୋଗ ମିଳିଥିଲା। ଓଡ଼ିଶାର ପ୍ରାକୃତିକ ବିଭବ, ପର୍ଯ୍ୟଟନସ୍ଥଳୀ ତାଙ୍କୁ ବେଶ୍ ଆକୃଷ୍ଟ କରିଥିଲା। ଆମେ ଓଡ଼ିଶାରୁ ଯାଇଥିବା ଜାଣି ମିଷ୍ଟର୍ ଫ୍ରାନ୍‌ସିସ୍ ବିଶେଷ ଆନନ୍ଦିତ ହୋଇଥିଲେ। ମୁଁ ଜଣେ ସାମ୍ବାଦିକ ହୋଇଥିବାରୁ ଓ ସାମ୍ବାଦିକତା ବୃତ୍ତିରେ ଚବିଶିବର୍ଷରୁ ଅଧିକ ସମୟ ଅତିବାହିତ କରିଥିବାରୁ ସେ ଆମପ୍ରତି ଅଧିକ ଆଗ୍ରହ ପ୍ରକାଶ କରିଥିଲେ।

ଆମେ ଆକ୍ସେଲ୍ ସ୍ପ୍ରିଙ୍ଗର୍ ଅନୁଷ୍ଠାନରେ ପହଞ୍ଚିଲାବେଳକୁ ଗୋଟାଏ ବାଜିଥିଲା। ଛାତ୍ର, ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀମାନେ ମଧ୍ୟାହ୍ନଭୋଜନ ପାଇଁ ଚାଲିଯାଇଥିଲେ। ସେଥିପାଇଁ ଆମକୁ କିଛିସମୟ ଅପେକ୍ଷା କରିବାକୁ ପଡ଼ିଲା। ଆକ୍ସେଲ୍ ସ୍ପ୍ରିଙ୍ଗର ଅନୁଷ୍ଠାନର ଆଦର୍ଶ ଓ ଲକ୍ଷ୍ୟ କ'ଣ ଏବଂ ସେଠାରେ ଅଧ୍ୟାପନା କିମ୍ବା ଗବେଷଣା କ୍ଷେତ୍ରରେ କାହା ଉପରେ ଅଧିକ ଧ୍ୟାନ ଦିଆଯାଉଥିଲା, ସେ ବିଷୟ ଜାଣିବାକୁ ଚାହିବାରୁ ମିଷ୍ଟର୍ ଫ୍ରାନ୍‌ସିସ୍

କହିଲେ, "୧୯୪୬ ମସିହାରେ ଅକ୍ସେଲ୍ ସ୍ପ୍ରିଙ୍ଗର୍‌ଙ୍କ ଦ୍ୱାରା ଏହି ସଂସ୍ଥା ଗତ ଛଅଦଶନ୍ଧି ମଧ୍ୟରେ ଜର୍ମାନୀର ସର୍ବବୃହତ୍ ସମ୍ବାଦପତ୍ର ପ୍ରକାଶକ ଏବଂ ଦେଶର ତୃତୀୟ ମାଗାଜିନ୍ ପ୍ରକାଶକ ଭାବରେ ସ୍ୱୀକୃତ। ଏହି ସଂସ୍ଥା ଦ୍ୱାରା ପ୍ରକାଶିତ ୧୭୦ଟି ସମ୍ବାଦପତ୍ର ଓ ମାଗାଜିନ୍ ବିଶ୍ୱର ୩୩ଟି ରାଷ୍ଟ୍ରରେ ଉପଲବ୍ଧ ହୋଇଥାଏ। ଏହି କାର୍ଯ୍ୟ ସମ୍ପାଦନ ପାଇଁ ୯,୭୩୩ଜଣ କର୍ମଚାରୀଙ୍କୁ ନିଯୁକ୍ତି ଦିଆଯାଇଛି। ଏହି ଅନୁଷ୍ଠାନ ଗୋଟିଏ ଅନ୍ତର୍ଜାତୀୟ ଅଗ୍ରଣୀ ଗଣମାଧ୍ୟମ ଭାବରେ ସୁନାମ ଅର୍ଜନ କରିଛି। ତା'ଛଡ଼ା ଗଣମାଧ୍ୟମ ସମ୍ପର୍କରେ ଗବେଷଣା କରିବା ପାଇଁ ଏଠାରେ ସମସ୍ତ ପ୍ରକାର ସୁବିଧା ଓ ସୁଯୋଗ ଯୋଗାଇ ଦିଆଯାଇଥାଏ।

ମିଃ ଫ୍ରାନ୍‌ସିସ୍ କହିଚାଲିଥିଲେ ଓ ଆମେ ତାଙ୍କ ପଛେପଛେ ଚାଲିଥିଲୁ। "ଆକ୍ସେଲ୍ ସ୍ପ୍ରିଙ୍ଗର୍ ଅନୁଷ୍ଠାନରେ ଆଧୁନିକ ସାମ୍ବାଦିକତା ସମ୍ପର୍କରେ ଶିକ୍ଷାଦାନ ଓ ଗବେଷଣା ଉପରେ ଯେତିକି ଗୁରୁତ୍ୱ ଆରୋପ କରାଯାଇଥାଏ, ତାହା ଅନ୍ୟତ୍ର ବିରଳ। ବର୍ତ୍ତମାନ ଆପଣମାନେ ଯେଉଁ ଆକ୍ସେଲ୍ ସ୍ପ୍ରିଙ୍ଗର୍ ୟୁନିଭରସିଟି ଦେଖୁଛନ୍ତି, ତାହା ଆକ୍ସେଲ୍ ସ୍ପ୍ରିଙ୍ଗର୍‌ଙ୍କର ନିରବଚ୍ଛିନ୍ନ ସାଧନା ଓ ତ୍ୟାଗ ଯୋଗୁଁ ସମ୍ଭବ ହୋଇଛି।" ଫ୍ରାନ୍‌ସିସ୍ ଏହି କଥା କହୁଥିଲାବେଳେ ଗର୍ବରେ ତାଙ୍କ ଛାତି ଫୁଲିଉଠୁଥିଲା। ସେ ଆମକୁ ଗୋଟିଏ କକ୍ଷକୁ ନେଇଗଲେ। ସେ କକ୍ଷରେ ଅନ୍ୟୂନ କୋଡ଼ିଏ ଜଣ ଛାତ୍ରଛାତ୍ରୀ ବିଭିନ୍ନ ବିଷୟ ଉପରେ ଗବେଷଣାରତ ଥିଲେ। ସେଠାରେ ଟିକିଏହେଲେ କଥାବାର୍ତ୍ତା କିମ୍ବା ପାଟିତୁଣ୍ଡ ନଥିଲା। ଆମେ ସେଠାରେ ପହଞ୍ଚିଲା ପରେ ସେମାନେ ଆମକୁ ସ୍ୱାଗତ କଲେ। ଭାଷାଗତ ବିଭେଦ ଥିଲେ ବି ସେମାନଙ୍କର ଆମପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନକୁ ବୁଝିବାରେ ଆମର ଅସୁବିଧା ହୋଇନଥିଲା। କିଛିବାଟ ଯିବାପରେ ଗୋଟିଏ ସ୍ଥାନରେ ଆକ୍ସେଲ ସ୍ପ୍ରିଙ୍ଗର୍‌ଙ୍କ ପ୍ରତିମୂର୍ତ୍ତିଟିଏ ଆମ ଦୃଷ୍ଟିରେ ପଡ଼ିଲା। ଆମର ସେ ଅନୁଷ୍ଠାନକୁ ଯାଇଥିବାର ସ୍ମାରକୀ ସ୍ୱରୂପ ଆମେ ସେହି ମହାନବ୍ୟକ୍ତିଙ୍କ ମୂର୍ତ୍ତିସାଙ୍ଗରେ ଫଟୋ ଉଠାଇଥିଲୁ।

ସେ ଅନୁଷ୍ଠାନ ଭିତରେ ବୁଲୁଥିଲାବେଳେ ମୁଁ ଭାବୁଥିଲି ଆଜିପର୍ଯ୍ୟନ୍ତ ଓଡ଼ିଶାରେ ଏପରି ଏକ ସଂସ୍ଥା କାହିଁକି ଗଢ଼ିଉଠି ପାରି ନାହିଁ। ଓଡ଼ିଶାରେ ଯେଉଁମାନେ ଗଣମାଧ୍ୟମର ମାଲିକ ହୋଇଛନ୍ତି, ସେମାନଙ୍କ ପାଖରେ ଧନ, ଜନ, ମାନମର୍ଯ୍ୟଦା ସବୁ ରହିଥିଲାବେଳେ ଏପରି ଶିକ୍ଷାଦାନ ଓ ଗବେଷଣା ଉପରେ କାହିଁକି ସେମାନେ ଧ୍ୟାନ ଦେଉନାହାନ୍ତି ! ଗଣମାଧ୍ୟମ ସଂସ୍ଥାକୁ ଛାଡ଼ି ଅନ୍ୟ ଯେଉଁ ବ୍ୟକ୍ତିମାନେ ଶିକ୍ଷାଦାନ ନାଁରେ ଅନୁଷ୍ଠାନମାନ ଖୋଲିଛନ୍ତି ସେମାନେ କେବଳ ନିଜନିଜର ତହବିଲ ବଢ଼ାଇବା ବ୍ୟତୀତ କିଛି କରୁନାହାନ୍ତି। ତାହାହେଲେ ଓଡ଼ିଶା କ'ଣ ସବୁଦିନେ ଏକ ଅବହେଳିତ ଓ ପଛୁଆ ରାଜ୍ୟଭାବେ ରହିଥିବ ? ଆମ ରାଜ୍ୟରେ କାହିଁକି ଏପରି ଏକ ଅନୁଷ୍ଠାନ ହୋଇପାରି ନାହିଁ ? ରାଜେନ୍ଦ୍ରଭାଇ କହିଲେ,

"ଏଥିରେ ନିରାଶ ହେବାର କିଛି ନାହିଁ। ଦିନ ଆସିବ ଓଡ଼ିଶାରେ ମଧ୍ୟ ଏପରି ଅନୁଷ୍ଠାନ ଖୋଲିବ। ଛାତ୍ରଛାତ୍ରୀମାନେ ଶିକ୍ଷାଦାନ ଓ ଗବେଷଣାର ସୁଯୋଗ ପାଇପାରିବେ। ସେଦିନ ଆଉ ବେଶି ଡେରି ନାହିଁ।"

## ବର୍ଲିନ୍‌ୱାଲ୍‌ର ଭଗ୍ନସ୍ତୂପ ପରିଦର୍ଶନ

ଆମର ସେଦିନର ଶେଷ କାର୍ଯ୍ୟକ୍ରମ ଥିଲା ବର୍ଲିନ୍ ୱାଲ୍‌ର ଧ୍ୱଂସାବଶେଷ ଦେଖିବା। ଆମେ ଟୁରିଷ୍ଟ୍‌ବସ୍‌ରେ ସହର ବୁଲିବା ସମୟରେ ସେ ବାଟଦେଇ ଯାଇଥିଲେ ବି ବର୍ଲିନ୍‌ୱାଲ୍‌କୁ ପାଖରୁ ଦେଖିବାର ସୁଯୋଗ ପାଇନଥିଲୁ। ବିଶ୍ୱଯୁଦ୍ଧ ପରେ କିଭଳି ବର୍ଲିନ୍‌ସହର ବିଭାଜିତ ହୋଇ ସହର ଭିତରେ ପ୍ରାଚୀର ନିର୍ମିତ ହେଲା ସେସବୁ ବିଷୟରେ ପୁସ୍ତକରୁ ପଢ଼ିବାକୁ ମିଳିଥିଲା। କିଛିକ୍ଷଣ ପରେ ସେ ପ୍ରାଚୀରକୁ ସ୍ୱଚକ୍ଷୁରେ ଦେଖିହେବ, ଏଇକଥା ଭାବିଲାବେଳକୁ ମନ ଭିତରେ ଏକ ଆବେଗ ସୃଷ୍ଟି ହେଉଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜର୍ମାନୀର ମହାନ୍ ଯୋଦ୍ଧା ଆଡ୍‌ଲଫ୍ ହିଟ୍‌ଲର୍‌ଙ୍କୁ ପରାସ୍ତ କରିବା ପାଇଁ ଚତୁର୍ମହାଶକ୍ତି ଭାବରେ ଜଣାଶୁଣା ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ୍, ଫ୍ରାନ୍ସ ଓ ସୋଭିଏଟ୍‌ରଷ ହାତ ମିଳାଇଥିଲେ। ଶେଷରେ ୧୯୪୫ ମସିହା ମଇମାସ ଆଠତାରିଖ ଦିନ ଜର୍ମାନୀ ଏହି ଚାରି ଶକ୍ତି ନିକଟରେ ଆତ୍ମସମର୍ପଣ କରିଥିଲା। ତା'ପରେ ବର୍ଲିନ୍ ସହରଟି ଚାରିଭାଗରେ ବିଭକ୍ତ ହୋଇଗଲା। କିଛିଦିନ ପରେ ଚତୁର୍ଶକ୍ତି ମଧ୍ୟରେ ବୁଝାମଣା ଅଭାବରୁ ନୂତନ ବିବାଦର ସୂତ୍ରପାତ ହେବା ଫଳରେ ପୂର୍ବ ବର୍ଲିନ୍ କୁହାଯାଉଥିବା ଅଞ୍ଚଳଟି ସୋଭିଏଟ୍‌ରଷ ଭାଗରେ ପଡ଼ିଲା। ସହରର ଅନ୍ୟ ଅଞ୍ଚଳକୁ ପଶ୍ଚିମବର୍ଲିନ୍ ବୋଲି କୁହାଗଲା। ଘଟଣାକ୍ରମରେ ପୂର୍ବବର୍ଲିନ୍‌ର ଗୁରୁତ୍ୱ କମିବାରେ ଲାଗିଲା ଏବଂ ଏହାର ଅର୍ଥନୈତିକ ସ୍ଥିତି ମଧ୍ୟ ଦୁର୍ବଳ ହୋଇଗଲା। ଫଳରେ ପୂର୍ବବର୍ଲିନ୍‌ର ଅଧିବାସୀମାନେ ପଶ୍ଚିମ ବର୍ଲିନ୍‌କୁ ପଳାଇବାକୁ ଉଦ୍ୟମ କଲେ। ଏପରି ପଳାୟନକୁ ରୋକିବା ପାଇଁ ପୂର୍ବଜର୍ମାନୀ ସରକାର ଦୁଇ ଜର୍ମାନୀ ମଧ୍ୟରେ ୧୯୬୧ ମସିହା ଅଗଷ୍ଟ ମାସରେ ଏକ କଂକ୍ରିଟ୍ ପ୍ରାଚୀର ନର୍ମାଣ କରାଇଦେଲେ। ଏହି ପ୍ରାଚୀର 'ବର୍ଲିନ୍‌ୱାଲ୍' ନାମରେ ଖ୍ୟାତ। ଏହି ପ୍ରାଚୀର ନିର୍ମିତ ହେବାପରେ ଗୋଟିଏ ସହରର ଅଧିବାସୀମାନେ ଦୁଇଭାଗରେ ବିଭକ୍ତ ହୋଇ ପରସ୍ପରଠାରୁ ପୃଥକ୍ ହୋଇଗଲେ। ପ୍ରାଚୀର ଟପି ଆରପଟକୁ ଯିବା ପାଇଁ ଉଦ୍ୟମ କରୁଥିବା ଲୋକମାନଙ୍କୁ ବାଧା ଦିଆଗଲା। ସ୍ଥଳ ବିଶେଷରେ ସେମାନଙ୍କୁ ଗୁଳି କରିଦିଆଗଲା। ଗୋଟିଏ ପଟେ ପଶ୍ଚିମ ଜର୍ମାନୀର ଅଧିବାସୀମାନେ ସୁଖ ସମୃଦ୍ଧିରେ ବାସ

କରୁଥିବା ବେଳେ ଅନ୍ୟପକ୍ଷରେ ପୂର୍ବଜର୍ମାନୀରେ ଦାରିଦ୍ର୍ୟ ବୃଦ୍ଧି ପାଇବାରେ ଲାଗିଲା। ଲୋକେ ଏଥିରେ ଅତିଷ୍ଠ ହୋଇଉଠିଲେ। ଦୁଇ ବର୍ଲିନ୍‌କୁ ଏକାଠି କରିବା ପାଇଁ ସେମାନେ ତତ୍ପର ହେଲେ।। ଶେଷରେ ୧୯୮୯ ମସିହା ନଭେମ୍ବର ୯ ତାରିଖରେ ଲୋକେ ବର୍ଲିନ୍‌ୱାଲ୍‌କୁ ଭାଙ୍ଗି ଦୁଇ ସହରକୁ ଏକାଠି କରିଦେଲେ। ଲୋକଙ୍କ ମନୋବଳ ଆଗରେ ସରକାରଙ୍କ ଲାଠି, ବନ୍ଧୁକ କିଛି କାମ ଦେଲାନାହିଁ। ବର୍ଲିନ୍ ସହର ପୂର୍ବଭଳି ଜର୍ମାନୀର ରାଜଧାନୀ ମର୍ଯ୍ୟାଦା ପାଇଲା।

ଅତୀତର ଇତିହାସକୁ ଭାବୁଭାବୁ ଆମେ ଯାଇ ବର୍ଲିନ୍ ୱାଲ୍ ନିକଟରେ ପହଞ୍ଚିଯାଇଥିଲୁ। ଗାଡ଼ି ଅଟକାଇ ଡ୍ରାଇଭର୍ ଅଲ୍ଲି ଆମକୁ କହିଲେ, "ସାବ୍ ଓ ଏହି ଦିବାର ହୈ, ଯିସ୍ କେ ଲିୟେ ହଜାରୋଁ ଆଦ୍‌ମିଓଁ ଜାନ୍ କୁର୍ବାନ୍ ହୁଆ ଥା।" ମୁଁ ଗାଡ଼ିରୁ ଓହ୍ଲାଇଲାବେଳେ ଭାବୁଥିଲି ମୁଁ କ'ଣ ସ୍ୱପ୍ନ ଦେଖୁଛି ନା ବାସ୍ତବ ଦୁନିଆରେ ରହିଛି ? ସମଗ୍ର ସହରକୁ ଭାଗଭାଗ କରୁଥିବା କଂକ୍ରିଟ୍ ନିର୍ମିତ ପ୍ରାଚୀରକୁ ଲୋକେ କିପରି ଭାଙ୍ଗି ଛିନ୍ନଛତର କରିଦେଲେ ସେକଥା ଭାବିପାରି ନ ଥିଲି; କାରଣ ପ୍ରାଚୀରଟି ମୋଟା ଲୁହା ଥିବା ସିମେଣ୍ଟ କଂକ୍ରିଟ୍‌ରେ ନିର୍ମାଣ କରାଯାଇଥିଲା ଏବଂ ତାକୁ ଭାଙ୍ଗିବା ସହଜସାଧ୍ୟ ବ୍ୟାପାର ନଥିଲା। ତେବେ ଜନଶକ୍ତି ଆଗରେ କଂକ୍ରିଟ୍ କାନ୍ଥ ଫେଲ୍ ମାରିଲା। ଏବେ ସହରର ଗୋଟିଏ ପ୍ରାନ୍ତରେ ମାତ୍ର ପାଞ୍ଚ ଦଶ ମିଟର ଲମ୍ବର ଐତିହାସିକ ବର୍ଲିନ୍‌ୱାଲ୍‌ର ଧ୍ୱଂଶାବଶେଷ ଦେଖିବାକୁ ମିଳିଥିଲା। ନାନା ଦେଶରୁ ଆସିଥିବା ଶହଶହ ଲୋକ ତାକୁ ଦେଖିବା ପାଇଁ ସେଠାରେ ରୁଣ୍ଡ ହୋଇଥିଲେ। କୌତୂହଳବଶତଃ ସେଇ ଜୀର୍ଣ୍ଣ ପ୍ରାଚୀର ପାଖକୁ ଯାଇ ସେଠାରେ ପଡ଼ିଥିବା ଭଙ୍ଗା କଂକ୍ରିଟ୍‌ର ଗୋଟିଏ ଟୁକୁଡ଼ା ସଂଗ୍ରହ କଲି। ସେଠାକୁ ଯାଇଥିବା ସ୍ମୃତିକୁ ମନେରଖିବା ଉଦ୍ଦେଶ୍ୟରେ ସେଠାରେ ଛିଡ଼ା ହୋଇ ଗୋଟିଏ ଫଟୋ ଉଠାଇବା ପାଇଁ ରାଜେନ୍ଦ୍ରଭାଇଙ୍କୁ ଅନୁରୋଧ କଲି। ପାଖରେ ଗାଡ଼ି ପାର୍କିଂ ପାଇଁ ସ୍ଥାନ ନଥିବାରୁ ଡ୍ରାଇଭର ଅଲ୍ଲିଙ୍କ ଅନୁରୋଧ କ୍ରମେ ଆମକୁ ସେ ସ୍ଥାନ ଛାଡ଼ିବାକୁ ପଡ଼ିଲା।

ଫେରିଲାବେଳେ ବାଟରେ ଛୋଟିଆ ଘଟଣାଟିଏ ଘଟିଲା। କିଛିବାଟ ଆସିଲା ପରେ ଗୋଟିଏ ବଡ଼ 'ମଲ୍' ସାମନାରେ ଗାଡ଼ି ରଖିବାପାଇଁ ରାଜେନ୍ଦ୍ରଭାଇ ଡ୍ରାଇଭରକୁ କହିଲେ ଓ ଗାଡ଼ିରୁ ଓହ୍ଲାଇପଡ଼ି ତାଙ୍କ ସାଙ୍ଗରେ ଯିବାପାଇଁ ମତେ ଇଙ୍ଗିତ କଲେ। ଆମେ ଏକ୍ସକାଲେଟର୍‌ରେ ମଲ୍‌ର ତିନିମହଲାକୁ ଗଲୁ। ସେ ମହଲାଟିରେ କେବଳ ରେଡିମେଡ୍ ଗାରମେଣ୍ଟ୍ ଥିଲା। ରାଜେନ୍ଦ୍ରଭାଇ ଗୋଟିଏ ଥାକରୁ ବ୍ଲେଜର୍‌ଟିଏ ଆଣି ମତେ ଦେଖାଇ କହିଲେ, "ଏଇଟା ପିନ୍ଧି ଟ୍ରାଏଲ୍ କର ଫିଟ୍ ହେଉଛି କି ନାହିଁ ?" ମୁଁ କିଛି କହିବା ପୂର୍ବରୁ ସେ ବ୍ଲେଜର୍‌ଟି ମତେ ପିନ୍ଧାଇ ସାରିଥିଲେ। ମୋର ବ୍ଲେଜର୍‌ର ଆବଶ୍ୟକତା ନାହିଁ କହି ପ୍ରତିବାଦ କରିଥିଲି, ହେଲେ ସେ କିଛି ଶୁଣିବା ଅବସ୍ଥାରେ ନଥିଲେ। ବ୍ଲେଜର୍‌ଟା ମତେ

ଫିଟ୍ ହେଉଥିବାର ଦେଖି ସେ ଖୁବ୍ ଖୁସି ହୋଇଗଲେ ଏବଂ ସାଙ୍ଗେସାଙ୍ଗେ କାଉଣ୍ଟରକୁ ଯାଇ କ୍ରେଡିଟ୍ କାର୍ଡରେ ପେମେଣ୍ଟ୍ କରିଦେଲେ। ମୁଁ ବ୍ଲେଜର୍ ପିନ୍ଧିଥିବା ଦେଖି ସେ ଏତେ ବିଭୋର ହୋଇଯାଇଥିଲେ ଯେ କାଉଣ୍ଟରରୁ କ୍ରେଡିଟ୍ କାର୍ଡଟି ଫେରାଇ ନେବାକୁ ଭୁଲିଯାଇଥିଲେ। ଆମେ ହୋଟେଲରେ ପହଞ୍ଚିବା ପରେ କାର୍ଡଟି ମଲ୍‌ରେ ଛାଡ଼ିଦେଇ ଥିବା କଥା ତାଙ୍କର ମନେ ପଡ଼ିଥିଲା। ଆମେ ତୁରନ୍ତ ସେ ମଲକୁ ଯାଇଥିଲୁ। କିନ୍ତୁ ସେତେବେଳକୁ ମଲ୍‌ଟି ବନ୍ଦ୍ ହୋଇଯାଇଥିଲା।

ପରଦିନ ସକାଳେ ଆମେ ତରତରରେ ନିତ୍ୟକର୍ମ ଓ ପ୍ରାତଃଭୋଜନ ସାରି ମଲ୍ ଖୋଲିବା ସମୟକୁ ଅପେକ୍ଷା କରି ରହିଲୁ। ସେଠାରେ ସକାଳ ଦଶଟା ଆଗରୁ ଦୋକାନବଜାର ଖୋଲେନାହିଁ। ସେଇ ଅପେକ୍ଷା ସମୟରେ ରାଜେନ୍ଦ୍ର ଭାଇଙ୍କର ମନର ଉତ୍ତେଜନା ବୃଦ୍ଧି ପାଉଥିବାର ମୁଁ ଲକ୍ଷ୍ୟ କରିଥିଲି। ହୋଟେଲ 'କମେଟ୍' ପାଖରୁ ମଲ୍‌ର ଦୂରତା ବେଶି ନଥିଲା। ଆମେ ଚାଲିଚାଲି ଗଲୁ। ଯେଉଁ କାଉଣ୍ଟର୍‌ରେ ପୂର୍ବଦିନ କ୍ରେଡିଟ୍ କାର୍ଡରେ ପେମେଣ୍ଟ୍ ହୋଇଥିଲା, ସେଠାକୁ ଯାଇ କ୍ରେଡିଟ୍‌କାର୍ଡ ବିଷୟରେ ଅନୁସନ୍ଧାନ କଲୁ। ସେଠାରେ ଥିବା ଯୁବତୀଜଣକ ଆମକୁ କହିଲେ, "କ୍ଷମା କରିବେ, ଗତକାଲି ମୁଁ ଏ କାଉଣ୍ଟର୍‌ରେ ନଥିଲି। ସେଥିପାଇଁ ଆପଣଙ୍କ କାର୍ଡ ସମ୍ପର୍କରେ ମୋ ପାଖରେ କିଛି ଖବର ନାହିଁ। ତେବେ ଆପଣ କାଉଣ୍ଟର୍ ନମ୍ବର ୧-(ବି)କୁ ଯାଆନ୍ତୁ। ସେଠାରୁ ଆପଣ ନିଶ୍ଚିତ ଭାବରେ କାର୍ଡ ବିଷୟରେ ନିର୍ଦ୍ଦିଷ୍ଟ ଖବର ପାଇପାରିବେ।" ଯୁବତୀଙ୍କ କଥା ଅନୁସାରେ ଆମେ କାଉଣ୍ଟର୍ ୧-(ବି)କୁ ଗଲୁ। ରାଜେନ୍ଦ୍ରଭାଇ ନିଜର ପରିଚୟ ପ୍ରଦାନ କରି କାର୍ଡ ବିଷୟରେ ପଚାରିଲେ। ସେଠାରେ ଜଣେ ମଧ୍ୟ ବୟସ୍କ ମହିଳା ଥିଲେ। ସେ ସ୍ମିତହାସ୍ୟ ଦେଇ କହିଲେ, "ଆପଣଙ୍କର ବ୍ୟସ୍ତ ହେବାର କିଛି ନାହିଁ। ଆପଣଙ୍କ କାର୍ଡ ସୁରକ୍ଷିତ ଅଛି। ଆପଣଙ୍କର ସ୍ଥାନୀୟ ଟେଲିଫୋନ୍ ନମ୍ବର ଜଣାଥିଲେ ଆମେ ଗତକାଲି ଆପଣଙ୍କୁ ଖବର ଦେଇଥାନ୍ତୁ।"

କ୍ରେଡିଟ୍‌କାର୍ଡଟି ମିଳିଲା ପରେ ରାଜେନ୍ଦ୍ରଭାଇଙ୍କ ମୁହଁରେ ଆଶ୍ୱସ୍ତିର ଚିହ୍ନ ସ୍ପଷ୍ଟ ବାରିହୋଇ ପଡୁଥିଲା; କାରଣ ତାଙ୍କର ଆଶଙ୍କା ଥିଲା, ଜଣେ ଚାହିଁଥିଲେ ତାଙ୍କ କାର୍ଡ ମାଧ୍ୟମରେ ସେ ମଲରୁ ଯେତେ ପରିମାଣର ପଦାର୍ଥ କିଣି ନେଇଯାଇ ପାରିଥାନ୍ତା ଏବଂ ସେସବୁ ଅର୍ଥ ତାଙ୍କ ବ୍ୟାଙ୍କ୍ ଆକାଉଣ୍ଟ୍‌ରୁ କଟିଯାଇଥାନ୍ତା। ତାଙ୍କ ଅଜାଣତରେ ମୁହଁରୁ ବାହାରିପଡ଼ିଲା, "ଥ୍ୟାଙ୍କ୍ ଗଡ୍, ସେପରି କିଛି ବଦମାସି ହୋଇନାହିଁ।" ବିଦେଶ ରାଷ୍ଟ୍ରରେ ପାସ୍‌ପୋର୍ଟ, ଭିସା, କ୍ରେଡିଟ୍‌କାର୍ଡ, ଏଟିଏମ୍ କାର୍ଡ ଇତ୍ୟାଦି ହେଉଛି ମୂଳ ସମ୍ପତ୍ତି। ସେସବୁ ଶରୀରରୁ ଅଲଗା ହୋଇଗଲେ ପରିଣତି ଯେ କେତେ ଭୟଙ୍କର ହୋଇପାରେ ସେକଥା କେବଳ ଅଙ୍ଗେ ନିଭେଇଥିବା ବ୍ୟକ୍ତି ହିଁ କହିପାରିବେ।

## ଜାହାଜରୁ ବର୍ଲିନ୍ ସହରର ଦୃଶ୍ୟ

ଆମର ସେଦିନ ବର୍ଲିନରୁ ଡୁସେଲ୍‌ଡର୍ଫ ଫେରିଆସିବାର ଥିଲା। ବିମାନ ସମୟ ଅପରାହ୍ନ ପାଞ୍ଚଟାରେ। ହାତରେ ଢେର ସମୟ ଥିଲା। ସକାଳେ ଯାହା ଜଳଖିଆ ଖିଆ ହୋଇଥିଲା, ସେଥିରେ ଅପରାହ୍ନ ପର୍ଯ୍ୟନ୍ତ ଭୋକ ହେବାର ସମ୍ଭାବନା ନଥିଲା। ଏଇ ପାଞ୍ଚ ଛଅଘଣ୍ଟା କିପରି କଟିବ ଭାବୁଭାବୁ ରାଜେନ୍ଦ୍ରଭାଇ କହିଲେ, "ବର୍ଲିନ୍‌ରେ ଟ୍ୟାକ୍ସି, ବସ୍, ଟ୍ରେନ୍, ପ୍ଲେନ୍ ସବୁ ଚଢ଼ାହେଲା, ଆଉ ଛୋଟ ଜାହାଜରେ ବୁଲିବାଟା କାହିଁକି ବାକି ରହିବ ? ଜାହାଜରେ ବର୍ଲିନ୍ ସହରର ସୌନ୍ଦର୍ଯ୍ୟ ଉପଭୋଗ କରିବାର ମଜା ଅଛି। ଚାଲଯିବା।" ମୋର ହଁ କି ନା କରିବାର କିଛି ନଥିଲା। ମୁଁ କେବଳ ତାଙ୍କୁ ଅନୁସରଣ କରୁଥିଲି।

ଆମେ ସ୍ଥିରକଲୁ, ହୋଟେଲକୁ ଫେରିଯାଇ ବ୍ୟାଗ୍‌ପତ୍ର ନେଇ ଆସି ଚେକ୍‌ଆଉଟ୍ କରିଦେବୁ, ଯାହାଫଳରେ ଆମକୁ ଆଉଥରେ ବ୍ୟାଗ୍ ଆଣିବାପାଇଁ ହୋଟେଲକୁ ଫେରିବାକୁ ପଡ଼ିବନାହିଁ। ସେହି ଅନୁସାରେ ଆମେ ହୋଟେଲରୁ ବ୍ୟାଗ୍‌ନେଇ ରେଷ୍ଟୁରାଣ୍ଟ୍ କାଲକାଟାରେ ରଖି ଜାହାଜ ଚଢ଼ିବାପାଇଁ ବାହାରିଲୁ। ସେଠାରେ ପହଞ୍ଚିଲାବେଳକୁ ଜାହାଜ ଛାଡ଼ିବା ସମୟ ହୋଇଯାଇଥିଲା। ତରବରରେ ଦୁଇଟି ଟିକେଟ୍ କିଣି ଆମେ ତା ଭିତରେ ପଶିଲୁ। 'ବ୍ରୁକୋ ଉଇଙ୍କ୍‌ଲର୍' ଜାହାଜ କମ୍ପାନୀ ପକ୍ଷରୁ ପର୍ଯ୍ୟଟକମାନଙ୍କ ପାଇଁ ତିନିଘଣ୍ଟିଆ କାର୍ଯ୍ୟକ୍ରମ କରାଯାଇଥିଲା। ଆମେ ଯେଉଁ ଦି'ମହଲା ବିଶିଷ୍ଟ ଜାହାଜରେ ଯାଉଥିଲୁ, ତା' ନାଁ ଥିଲା 'ୱିଙ୍କ୍ଲରଡି'। ଯାହାର ଇଚ୍ଛା ସେ ତଳେ ବସୁଥିଲେ, ଆଉ କେତେକ ଡେକ୍ ଉପରେ ଖରା ଉପଭୋଗ କରୁଥିଲେ। ଜାହାଜରେ ଗୋଟିଏ ଚଳନ୍ତା କ୍ୟାଣ୍ଟିନ୍ ଥିଲା। ସ୍ନାକ୍‌ସଠାରୁ ଆରମ୍ଭ କରି ସବୁପ୍ରକାର ପାନୀୟ ସେଠାରେ ଉପଲବ୍ଧ ହେଉଥିଲା। ଅଧିକାଂଶ ଯାତ୍ରୀ ହାର୍ଡଡ୍ରିଙ୍କ୍‌ସ ନେଇ ମନକୁ ହାଲୁକା କରୁଥିଲେ। କେବଳ ଆମ ଦି'ଜଣଙ୍କ ହାତରେ ଥିଲା ମାଙ୍ଗୋଜୁସ୍ ଗ୍ଲାସ୍।

ଜାହାଜ ଛାଡ଼ିବାମାତ୍ରେ ମାଇକ୍ରୋଫୋନ୍‌ରୁ ଭାସିଉଠିଲା, "ଶ୍ରଦ୍ଧେୟ ଯାତ୍ରୀଗଣ, "ବ୍ରୁକୋ ଜାହାଜ କମ୍ପାନୀ ପକ୍ଷରୁ ଆପଣମାନଙ୍କୁ ସ୍ୱାଗତ କରାଯାଉଛି। ଆପଣମାନେ ଏହି ଯାତ୍ରାକୁ ଉପଭୋଗ କରିବେ ବୋଲି ଆମେ ଆଶାକରୁଛୁ। ଆମର ଜାହାଜଟି ଗଲାବେଳେ ଷୋଳଟି ପୋଲ ତଳ ଦେଇ ଯାତ୍ରା କରିବ। ସେଥିମଧ୍ୟରୁ କେତେକ ପୋଲର ଉଚ୍ଚତା ଖୁବ୍ କମ୍। ସେଥିପାଇଁ ଯାତ୍ରାସମୟରେ ଡେକ୍ ଉପରେ ଛିଡ଼ା ହୋଇ ଯିବା ଉଚିତ ନୁହେଁ।" ନଦୀରେ ଜାହାଜ ଯେଉଁ ଯେଉଁ ସ୍ଥାନ ଦେଇ ଗତି କରୁଥିଲା, ତା'ର ଉଭୟ ପାର୍ଶ୍ୱରେ ଥିବା କୋଠାବାଡ଼ିର ଐତିହାସିକ ଗୁରୁତ୍ୱ, ସେସବୁରେ ଅବସ୍ଥିତ ବିଭିନ୍ନ କାର୍ଯ୍ୟାଳୟ ସମ୍ପର୍କରେ ଯାତ୍ରୀମାନଙ୍କୁ ଉଭୟ ଜର୍ମାନୀ ଓ ଇଂରାଜୀ ଭାଷାରେ



ଡୁସେଲ୍‌ଡର୍ଫ ବିମାନବନ୍ଦରରୁ ବିଦାୟ



ଲଗେଜ୍ ଚେକିଂ ପାଇଁ ଡୁସେଲ୍‌ଡର୍ଫ ବିମାନବନ୍ଦରରେ ଅପେକ୍ଷା



ପୋଲାଣ୍ଡ୍ ରାଜପ୍ରାସାଦ



ଭିଏନା ସହରର ଓଲ୍ଡ ଟାଉନ୍ ସ୍କୋୟାର୍



ଟରଣ୍ଟୋରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ସହିତ




'ଓଶା' ଅଧିବେଶନରେ ଉଦ୍‌ବୋଧନ ଦେବା ଅବସରରେ



କାନାଡ଼ାର ବିଶ୍ୱ-ବିଖ୍ୟାତ ନାଏଗ୍ରା ଜଳପ୍ରପାତ ନିକଟରେ




ଡଃ ଆଶୁତୋଷ ଦତ୍ତଙ୍କ ପରିବାର ସହିତ ଓଣ୍ଟାରିଓ ସହରରେ



ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ



ଷ୍ଟାଚ୍ୟୁ ଅଫ୍ ଲିବର୍ଟି ସମ୍ମୁଖରେ



ଧ୍ୱଂସ ହେବା ପୂର୍ବରୁ ବିଶ୍ୱ ବାଣିଜ୍ୟକେନ୍ଦ୍ର



ଡେଲ୍‌ୱାର୍ ୱାଟରକ୍ୟାମ୍ପ୍ ଟୁରିଷ୍ଟସେଣ୍ଟରରେ ପ୍ରଫେସର ବୀରେନ୍ଦ୍ର ପଟ୍ଟନାୟକଙ୍କ ସହିତ



ଡେଲ୍‌ୱାର୍ ୱାଟରକ୍ୟାମ୍ପ୍ ଟୁରିଷ୍ଟସେଣ୍ଟରରେ ଦୁଇଜଣ ବିଦେଶୀ ପର୍ଯ୍ୟଟକ ଓ ଲେଖକ



ଜର୍ଜ ୱାଶିଂଟନଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ



ଗ୍ରୀନ୍ ପାର୍କର ପ୍ରସିଦ୍ଧ 'ବୁଲ୍'



ବିଶିଷ୍ଟ ବୈଜ୍ଞାନିକ ଡଃ ଗୌରୀ ଦାସଙ୍କ ସହିତ



ସାନ୍‌ଜୋସେରେ ଥିବା ଡଃ ଗୌରୀ ଦାସଙ୍କ ଆପେଲ୍ ବଗିଚା

ବୁଝାଇ ଦିଆଯାଉଥିଲା। ସେସବୁ ଦୃଶ୍ୟ ଦେଖିବାରେ ଯେତିକି ଆନନ୍ଦ ମିଳୁଥିଲା, ଇଂରାଜୀରେ ସେସବୁର ବ୍ୟାଖ୍ୟା ମନକୁ ସେତିକି ରୋମାଞ୍ଚିତ କରୁଥିଲା। ଅନେକ ସମୟରେ ମୁଁ ଅନ୍ୟମନସ୍କ ହୋଇଯାଉଥିଲି। ବର୍ଲିନ୍ ସହରର ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାପତ୍ୟକୁ କାର୍ କିମ୍ବା ବସ୍‌ଯୋଗେ ଦେଖିବାର ସୁଯୋଗ ଜୁଟିନଥିଲା, ସେସବୁ ଆମେ ଜାହାଜରୁ ଦେଖିପାରିଥିଲୁ। ସେସବୁ ଦୃଶ୍ୟ ଦେଖି ମୁଁ ଏତେ ବିଭୋର ହୋଇଯାଇଥିଲି ଯେ କେତେବେଳେ ଆମ ଜାହାଜଟି ପୂର୍ବସ୍ଥାନକୁ ଫେରିଆସିଥିଲା ସେକଥା ଜାଣିପାରିନଥିଲି। ଯାତ୍ରା ଶେଷ ହେବାର ସିଗ୍‌ନାଲ୍ ବାଜିବାରୁ ଅନ୍ୟମାନଙ୍କ ସହିତ ଆମେ ଜାହାଜରୁ ଓହ୍ଲାଇଲୁ।

## ବର୍ଲିନ୍‌ରୁ ପ୍ରତ୍ୟାବର୍ତ୍ତନ

ରେଷ୍ଟୁରାଣ୍ଟ୍ କାଲକାଟାରେ ଆମର ବ୍ୟାଗ୍ ରଖିଥିବାରୁ ଆମେ ସିଧାସଳଖ ସେଠାରେ ଯାଇ ପହଞ୍ଚିଲୁ। ସେତେବେଳକୁ ଅପରାହ୍ନ ତିନିଟା ବାଜିଥିଲା। ରେଷ୍ଟୁରାଣ୍ଟ୍‌ରୁ ଗ୍ରାହକମାନଙ୍କ ସଂଖ୍ୟା କମିଯାଇଥିଲା। ହୋଟେଲର ମାଲିକ ଶ୍ରୀ କାଟ୍ଟୁ ସୋଫା ଉପରେ ବସି ଗୋଟିଏ ଜର୍ମାନୀ ସମ୍ବାଦପତ୍ର ଉପରେ ଆଖି ବୁଲାଉଥିଲେ। ଆମକୁ ଦେଖି ସେ ଖୁସି ହୋଇଗଲେ। ଆମେ ମଧ୍ୟାହ୍ନଭୋଜନ କରିଚୁ କି ନାହିଁ, ସେକଥା ଆଗ ପଚାରିଥିଲେ। ସକାଳେ ପେଟପୂରା ଜଳଖିଆ ହୋଇଥିବାରୁ ଆମର ମଧ୍ୟାହ୍ନଭୋଜନର ଆବଶ୍ୟକତା ପଡ଼ିଲା ନାହିଁ ବୋଲି ଆମେ କହିଲୁ। ସେ ବ୍ୟସ୍ତ ହୋଇ ଆମେ କେତେବେଳେ କୁଆଡ଼େ ଯିବୁ ବୋଲି ପଚାରିଲେ। ଆମର ଡୁସେଲଡର୍ଫ ଫେରିଯିବା କଥା ଶୁଣି ସେ କହିଲେ, "ଟ୍ରେନ୍ ସବୁବେଳେ ଚାଲିଛି। ଏଠାରୁ ଅଳ୍ପ ବାଟ ଗଲେ ଷ୍ଟେସନ୍ ପଡ଼ିବ ଏବଂ ସେଠାରୁ ବିମାନବନ୍ଦର ପାଖ ଷ୍ଟେସନ୍ ଯିବାପାଇଁ ମାତ୍ର ଅଧଘଣ୍ଟାଏ ସମୟ ଲାଗିବ। ଡୁସେଲ୍‌ଡର୍ଫ ବିମାନବନ୍ଦରରେ ଓହ୍ଲାଇ ଘରେ ପହଞ୍ଚିଲାବେଳକୁ ସନ୍ଧ୍ୟା ସାତଟା ବାଜିଯିବ। ଆପଣ କ'ଣ ଏତେ ସମୟ ନ ଖାଇ ରହିବେ ? ଆପଣମାନଙ୍କ ସହିତ ପରିଚୟ ନ ହୋଇଥିଲେ ନାହିଁ, କିନ୍ତୁ ଆମେ ପରସ୍ପରକୁ ଜାଣିଲା ପରେ ମୁଁ ଆପଣଙ୍କୁ ନ ଖୁଆଇ ଛାଡ଼ିବି ନାହିଁ।"

ବିଦେଶ ମାଟିରେ ଜଣେ ଅଣଓଡ଼ିଆଙ୍କ ଅନାବିଳ ସ୍ନେହରେ ମୁଁ ବିହ୍ୱଳ ହୋଇଯାଇଥିଲି। ଭାରତବର୍ଷର ବିଶେଷତ୍ୱ 'ଭିନ୍ନତା ମଧ୍ୟରେ ଏକତା' ବୋଲି ଯାହା କୁହାଯାଏ, ସେକଥାର ମର୍ମ ମୁଁ ସେଦିନ ଅନୁଭବ କରିଥିଲି। ଶ୍ରୀ କାଟ୍ଟୁ ଆମ ଉତ୍ତରକୁ ଅପେକ୍ଷା ନକରି ଭିତରକୁ ଚାଲିଗଲେ। ସେ ଫେରିଆସିବାର ଅଳ୍ପ ସମୟ ମଧ୍ୟରେ ତାଙ୍କ ଜର୍ମାନୀପତ୍ନୀ ହାତରେ ଦୁଇଟି ପ୍ଲେଟ୍ ଧରି ଆସି ଡାଇନିଂ ଟେବୁଲ୍ ପାଖରେ

ହାଜର ହେବାର ଆମେ ଦେଖିଲୁ। ଆମକୁ ସଙ୍କୋଚ ଲାଗୁଥିଲା। ଯେଉଁ ସମୟରେ ସେମାନଙ୍କ ବିଶ୍ରାମ ନେବାକଥା, ସେହିସମୟରେ ସେ ଆମ ପାଇଁ ଖାଦ୍ୟ ପ୍ରସ୍ତୁତ କରିଆଣିଲେ ! ଶ୍ରୀ କାଟ୍ଜ ଆମକୁ ଏକପ୍ରକାର ବାଧ୍ୟକରି ଖାଇବା ଟେବୁଲ୍ ପାଖକୁ ନେଇଗଲେ। ଟେବୁଲ୍ ଉପରେ ଥିବା କୋବି ମଟର କଷାରୁ ବାମ୍ଫ ବାହାରୁଥିଲା। ପାଖରେ ଗରମ ଚପାତି, ସାଲାଡ୍ ଓ ଦହି। ଆମପାଇଁ ସେ ଖାଦ୍ୟ ଯଥେଷ୍ଟ ଥିଲା, କିନ୍ତୁ କାଟ୍ଜ ଦମ୍ପତି ସେଥିରେ ସନ୍ତୁଷ୍ଟ ନ ହୋଇ କହିଲେ, "କ୍ଷମାକରିବେ, ଏତେ କମ୍ ସମୟ ଭିତରେ ଆମେ ଆପଣମାନଙ୍କୁ ଆଉ ଅଧିକା କିଛି ଖାଦ୍ୟ ଦେଇପାରୁ ନାହୁଁ। ଦୟାକରି ଏହାକୁ ଭୋଜନ କରନ୍ତୁ।" ଆମର ଖାଇବା ବ୍ୟତୀତ ଅନ୍ୟକିଛି ଗତି ନଥିଲା। ସୁସ୍ୱାଦୁ ଭୋଜନ ସାଙ୍ଗକୁ କାଟ୍ଜ ଦମ୍ପତିଙ୍କ ଆଦରରେ ଆମ ପେଟ ପୂରିଯାଇଥିଲା। ଭୋଜନ ପରେ ଆମେ ଯେତେବେଳେ ବିଲ୍ ମାଗିଲୁ, ସେମାନେ ତାହା ଦେବାକୁ ପ୍ରସ୍ତୁତ ନଥିଲେ। ଶ୍ରୀ କାଟ୍ଜ କହିଲେ, "ଏଇ ତିନିଦିନ ଭିତରେ ଆପଣମାନଙ୍କ ସହିତ ସାକ୍ଷାତ ଓ ଆଳାପ ଆମକୁ ଯଥେଷ୍ଟ ଆନନ୍ଦ ଦେଇଛି। ଏଇ ସମୟ ଭିତରେ ଆମ ଘରକୁ କେହି ଅତିଥି ଆସିଥିଲାଭଳି ଆମେ ଅନୁଭବ କରୁଥିଲୁ। ଅତିଥିଙ୍କୁ ଚର୍ଚ୍ଚା କରିବା କ'ଣ ଆମର କର୍ତ୍ତବ୍ୟ ନୁହେଁ? କିଏ ଜାଣେ, ହୁଏତ ଆପଣମାନଙ୍କ ସହିତ ଆଉ ସାକ୍ଷାତ ନ ହୋଇପାରେ। ଆମେସବୁ ଗୋଟିଏ ଦେଶର ଅଧିବାସୀ। ଘଟଣାକ୍ରମରେ କିଏ ଆସି କେଉଁଠି ରହିଛନ୍ତି। ପରସ୍ପର ସହିତ ଦେଖାହେଲେ ମନରେ ଯେଉଁ ଆନନ୍ଦ ସୃଷ୍ଟିହେଉଛି ତାକୁ କ'ଣ ସାମାନ୍ୟ କେତେଟା ୟୁରୋ ସହିତ ତୁଳନା କରାଯାଇ ପାରିବ?" ଶ୍ରୀ କାଟ୍ଜଙ୍କ କଥା ଶୁଣି ମୋ ଆଖି ଛଳଛଳ ହୋଇଗଲା। ଆଖି କୋଣରେ ଲୁହ ଢକେଇଆସିଲା। ମୁଁ ଭାବିଲି, ବିଚିତ୍ର ଏ ଦୁନିଆଁ ! ଏ ଦୁନିଆଁରେ ମା'ପେଟର ଭାଇ ଭଗାରି ସାଜୁଥିଲା ବେଳେ କୌଣସି ରକ୍ତସମ୍ପର୍କ ନଥିବା ବ୍ୟକ୍ତିଙ୍କଠାରୁ ଏପରି ଆତ୍ମୀୟତା ମଧ୍ୟ ମିଳିପାରିଲା ?

ଶ୍ରୀ କାଟ୍ଜ ଆମକୁ ଷ୍ଟେସନ୍‌ର ରାସ୍ତା ବତେଇଦେଇ ଆମେ ଟ୍ୟାକ୍ସି ନନେଇ ଚାଲିଚାଲି ଯିବା ପାଇଁ ପରାମର୍ଶ ଦେଲେ। ବାସ୍ତବରେ ଆମେ ଅନୁଭବ କଲୁ ରାସ୍ତା ବେଶି ନୁହେଁ। ପାଦଚଲା ବାଟ। ଷ୍ଟେସନ୍‌ରେ ପହଞ୍ଚି ଟିକେଟ୍ କରିସାରିଲା ବେଳକୁ ଟ୍ରେନ୍ ଆସିଗଲା ଓ ଆମେ ସେଥିରେ ଯାଇ ବସିଲୁ। ପ୍ରାୟ ଚାଳିଶି ମିନିଟ୍ ମଧ୍ୟରେ ଟ୍ରେନ୍ ବର୍ଲିନ୍ ବିମାନବନ୍ଦର ନିକଟବର୍ତ୍ତୀ ଷ୍ଟେସନ୍‌ରେ ଅଟକିଲା ଓ ଆମେ ସେଠାରେ ଓହ୍ଲାଇ ବିମାନବନ୍ଦରକୁ ଚାଲିଲୁ। ଆମର ଲଗେଜ୍ କିଛି ନଥିଲା। ଯଥା ସମୟରେ ବିମାନ ଉପରକୁ ଉଠିଲା ଓ ଛଅଟା ପୂର୍ବରୁ ଆମେ ଡୁସେଲ୍‌ଡର୍ଫ ବିମାନବନ୍ଦରରେ ପହଞ୍ଚିଗଲୁ। ଡୁସେଲଡର୍ଫ କାର୍ ପାର୍କିଂରେ ପହଞ୍ଚି କାର୍ ବାହାର କରିବାକୁ ଅଧଘଣ୍ଟାରୁ

ଅଧିକ ସମୟ ଲାଗିଯାଇଥିଲା। ଯାହାହେଉ, ସେଠାରୁ ବାହାରି ଆମେ ଏସେନ୍ ଅଭିମୁଖେ ଚାଲିଲୁ। କାର୍‌ରେ ବସିଲାବେଳେ ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଥିଲି, ରାଜେନ୍ଦ୍ରଭାଇଙ୍କ ଭଳି ଭାଇ ସମସ୍ତଙ୍କୁ ମିଳୁ। ବିନା ସ୍ୱାର୍ଥରେ ସେ ମୋ'ପାଇଁ ଯେତିକି ସମୟ ଦେଲେ, ଯେତେ ଅର୍ଥ ବ୍ୟୟ କଲେ, ତାହା ଏ ଦୁନିଆରେ ଖୁବ୍ କମ୍ ଲୋକଙ୍କ ପାଖରୁ ଆଶା କରାଯାଇ ପାରେ।

## ଡୁସେଲ୍‌ଡର୍ଫରୁ ଅଶ୍ରୁଳ ବିଦାୟ

ପାଞ୍ଚଦିନର ରହଣି ଭିତରେ ରାଜେନ୍ଦ୍ରଭାଇଙ୍କ ସହିତ ଆତ୍ମୀୟତା ଏତେ ବଢ଼ିଯାଇଥିଲା, ମୋର ମନେହେଉଥିଲା ଆମର ସମ୍ପର୍କ ଯେମିତି କାହିଁ କେଉଁ ଯୁଗର। ସତେଯେପରି ଦୁଇଜଣ ଘନିଷ୍ଠ ବନ୍ଧୁ ଦୀର୍ଘଦିନ ହେଲା ଏକାଠି ରହୁଥିଲେ। କିନ୍ତୁ ବାସ୍ତବରେ ଗୁଣରେ, ମାନରେ ଏବଂ ପ୍ରତିଷ୍ଠାରେ ସେ ଅଯୋଧ୍ୟା ନରେଶ ରାମଚନ୍ଦ୍ର ହେଲେ ମୁଁ ଅଖ୍ୟାତ ପଲ୍ଲୀର ରାମାଭଣ୍ଡାରୀ।

ଡୁସେଲ୍‌ଡର୍ଫରୁ ପ୍ରାଗ୍ ଯିବାପାଇଁ ବିମାନ ସକାଳ ଆଠଟାରେ ଛାଡ଼ିବାର ଥିଲା। ଅନ୍ତର୍ଜାତୀୟ ବିମାନ ଚଳାଚଳ ନିୟମ ଅନୁସାରେ ବିମାନ ଛାଡ଼ିବାର ଅନ୍ୟୁନ ଦୁଇଘଣ୍ଟା ପୂର୍ବରୁ ଚେକିଂ ହେବାକଥା। ତା'ର ଅର୍ଥ ସକାଳ ଛଅଟା ପୂର୍ବରୁ ବିମାନବନ୍ଦରରେ ନ ପହଞ୍ଚିଲେ ଅସୁବିଧା ହୋଇପାରେ ବୋଲି ରାଜେନ୍ଦ୍ରଭାଇ ମତେ ରାତିରେ ଶୋଇବା ପୂର୍ବରୁ ଚେତେଇ ଦେଇଥିଲେ। ମୁଁ ଭୋର ଚାରିଟାରୁ ଉଠି ନିତ୍ୟକର୍ମ ସାରି ତଳକୁ ଆସିଲାବେଳକୁ ସେ ପ୍ରସ୍ତୁତ ହୋଇସାରିଥିଲେ, ମୁଁ ଆସିଲାମାତ୍ରେ ମୋ ହାତକୁ ଗୋଟିଏ ଜଳଖିଆ ତାଟିଆ ବଢ଼ାଇଦେଇ କହିଲେ, ଏଇଟା ହେଉଛି ମୁସୋଲି। ଏଥିରେ ଯଥେଷ୍ଟ ଭିଟାମିନ୍ ଓ ପ୍ରୋଟିନ୍ ରହିଛି। ପାଶ୍ଚତ୍ୟ ରାଷ୍ଟ୍ରମାନଙ୍କରେ ଅଧିକାଂଶ ଲୋକ ସକାଳେ କ୍ଷୀରରେ ମୁସୋଲି ପକାଇ ଖାଆନ୍ତି। ଏତେ ସକାଳୁ ମୋର ଖାଇବାକୁ ଇଚ୍ଛା ନଥିଲା; କିନ୍ତୁ ମୁଁ ରାଜେନ୍ଦ୍ରଭାଇଙ୍କ ଅନୁରୋଧକୁ ଭାଙ୍ଗିପାରି ନଥିଲି। ମୁସୋଲି କେବଳ ଶରୀର ପାଇଁ ଉପଯୋଗୀ ନଥିଲା, ଅତ୍ୟନ୍ତ ସୁସ୍ୱାଦୁ ମଧ୍ୟ ଥିଲା।

ଜଳଖିଆପର୍ବ ପରେ ଆରମ୍ଭ ହେଲା ଫଟୋ ଉଠା ପର୍ବ। ଫଟୋ ଉଠାଇବା ପୂର୍ବରୁ ରାଜେନ୍ଦ୍ରଭାଇ ଉପରକୁ ଯାଇ ବ୍ଲେଜର୍ ସହିତ ମ୍ୟାଚ୍ କଲାଭଳି ଟାଇଟିଏ ଆଣି ନିଜ ହାତରେ ମତେ ପିନ୍ଧେଇଦେଇ କହିଲେ, "ବସନ୍ତ, ୟୁ ଆର୍ ରିଅଲି ସ୍ମାର୍ଟ।" ଯା ଭିତରେ ଇତିଭାଉଜ ଗୋଟିଏ ଜରିମୁଣିରେ କିଛି ଆପେଲ୍, କାସ୍ୟୁନଟ୍ ପ୍ୟାକ୍ କରି ରଖିସାରିଥିଲେ। ସେଇଟି ମୋ ହାତରେ ଧରାଇଦେଇ କହିଲେ, "ବାଟରେ ପ୍ରାଗ୍‌ରେ ଅଟକିବାକୁ ପଡ଼ିବ। ଏଇଟା ପାଖରେ ଥିଲେ କାମରେ ଲାଗିବ।" ଇତିଭାଉଜଙ୍କ ଦେହରେ

ମାତ୍ର ତିନି-ଚାରିଦିନର ଦେଖା । ପାଶ୍ଚାତ୍ୟ ଚଳଣି ଓ ସଭ୍ୟତାରେ ତାଙ୍କ ଜୀବନ କଟିଛି । ହମ୍ବାକରେ ଉଚ୍ଚବର୍ଗଙ୍କ ସହିତ ତାଙ୍କର ମିଳାମିଶା । ତଥାପି ସେ ଓଡ଼ିଆ ଘରର ଦଣ୍ଡଣାକୁ ଭୁଲିନାହାନ୍ତି ।

ମୁଁ ବ୍ୟାଗ ଆଣି କାର୍‌ରେ ରଖିଲି ଓ ଇତି ଭାଉଜଙ୍କୁ ପ୍ରଣାମ କରି ରାଜେନ୍ଦ୍ରଭାଇଙ୍କ ସହିତ ସେଥିରେ ବସିଲି । କାର୍ ୧୨୦ କିଲୋମିଟର ବେଗରେ ଚାଲୁଥିଲା । ଅଧଘଣ୍ଟାକରେ ଆମେ ବିମାନବନ୍ଦରରେ ପହଞ୍ଚିଲୁ । ସେତେବେଳକୁ କାର୍ ପାର୍କିଂ ପାଇଁ ବିଶେଷ ଅସୁବିଧା ନଥିଲା । ରାଜେନ୍ଦ୍ରଭାଇ ପାର୍କିଂରେ ଗାଡ଼ି ରଖି ମୋର ଚେକିଂ କରିଦେଲେ । ତାଙ୍କଠାରୁ ବିଦାୟ ନେଲାବେଳେ ଆଖିରେ ଲୁହକୁ ରୋକି ପାରିନଥିଲି ମୁଁ । ଯେତେ ଲୁଚେଇବାକୁ ଚେଷ୍ଟା କରିଥିଲେ ବି କେଇଟୋପା ଲୁହ ଆଖିରୁ ଗଡ଼ିପଡ଼ିଥିଲା । ରାଜେନ୍ଦ୍ରଭାଇ ଦୂରରେ ଛିଡ଼ାହୋଇ ହାତ ହଲେଇ ମତେ ବିଦାୟ ଜଣାଇଥିଲେ । ସେ ଦୃଶ୍ୟ ମୋ ପାଇଁ ଅଭୁଲା ହୋଇ ରହିଗଲା ।

ମୋର ବିମାନ ଟିକେଟ୍ ଡୁସେଲ୍‌ଡର୍ଫରୁ ଅଷ୍ଟ୍ରୋଭା ପର୍ଯ୍ୟନ୍ତ ହୋଇଥିଲା । ବାଟରେ ପ୍ରାଗ୍‌ଠାରେ ଯାହା ବିମାନ ବଦଳାଇବାକୁ ପଡ଼ିଲା । ପୂର୍ବାହ୍ନ ୧୧ଟାରେ ମୁଁ ଅଷ୍ଟ୍ରୋଭାରେ ପହଞ୍ଚିଗଲି । ଚନ୍ଦନ କାର୍ ଆଣି ବାହାରେ ଅପେକ୍ଷା କରିଥିଲା । ଆମେ ଦୁହେଁ କାର୍‌ରେ ଘରକୁ ଫେରିଲୁ । ବାଟରେ ଗତ ପାଞ୍ଚଦିନର ଅନୁଭୂତି ବିଷୟରେ ଚନ୍ଦନକୁ କହୁକହୁ ଆମ କାର୍ ଘରପାଖରେ ପହଞ୍ଚିଯାଇଥିଲା ।

# ଖ୍ରୀଷ୍ଟଧର୍ମର ମୂଳପୀଠ ପୋଲାଣ୍ଡ

ବିଶ୍ୱର ଅନ୍ୟତମ କମ୍ୟୁନିଷ୍ଟ୍ ରାଷ୍ଟ୍ର ଭାବରେ ଜଣାଶୁଣା ପୋଲାଣ୍ଡ୍‌ର ଇତିହାସ ବହୁ ପୁରୁଣା । ଗତ ୧୯୮୯ ମସିହାରେ କମ୍ୟୁନିଷ୍ଟ୍ କବଳରୁ ମୁକ୍ତ ହୋଇ ଏକ ସଂସଦୀୟ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେବାପୂର୍ବରୁ ଏହି ଦେଶକୁ ବହୁ କଣ୍ଟକିତ ପଥ ଅତିକ୍ରମ କରିବାକୁ ପଡ଼ିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେଏହି ରାଷ୍ଟ୍ର ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିଲା । ଦେଶର ସମସ୍ତ ଇହୁଦୀଙ୍କ ସମେତ ଲକ୍ଷ ଲକ୍ଷ ଲୋକଙ୍କୁ ହତ୍ୟା କରାଯାଇଥିଲା । । ଶତ୍ରୁପକ୍ଷର ଆକ୍ରମଣରେ ସମଗ୍ର ଦେଶ ଛାରଖାର ହୋଇଯାଇଥିଲା । ବିଶ୍ୱଯୁଦ୍ଧ ପରେ ମଧ୍ୟ ପୋଲାଣ୍ଡ୍‌ର ଭାଗ୍ୟ ପରିବର୍ତ୍ତନ ହୋଇନଥିଲା । ସୋଭିଏତ୍‌ଋଷର ଏକ ଅଧସ୍ତନରାଷ୍ଟ୍ର ଭାବରେ ରହିବା ଫଳରେ ଏହାର ଅର୍ଥନୀତି ବିପର୍ଯ୍ୟସ୍ତ ହୋଇଯାଇଥିଲା । ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ୍ ଓ ସୋଭିଏତ୍‌ଋଷ ଏକାଠି ହୋଇ ପୋଲାଣ୍ଡ୍‌ର ସୀମାକୁ ସଙ୍କୁଚିତ କରିଦେଇଥିଲେ । ୧୯୪୭ ମସିହାରେ ନିର୍ବାଚନରେ

ଜାଲିଆତି କରି ଋଷ, ପୋଲାଣ୍ଡ୍ ଉପରେ ନିଜର ସମ୍ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରିଥିଲା। କମ୍ୟୁନିଷ୍ଟ୍ କବଳରୁ ମୁକ୍ତ ହେବାପାଇଁ ପୋଲାଣ୍ଡ୍‌ରେ ୧୯୮୦ ମସିହାରୁ ନିର୍ବାଚନ ମାଧ୍ୟମରେ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା, ୧୯୮୯ ମସିହାରେ ତାହା ସମ୍ପୂର୍ଣ୍ଣ ହେଲା ଏବଂ ଏକ ଗଣତାନ୍ତ୍ରିକରାଷ୍ଟ୍ର ଭାବରେ ପୋଲାଣ୍ଡ୍ ଜନ୍ମଲାଭ କଲା। ଏହାର ଦଶବର୍ଷ ପରେ ୧୯୯୯ ମସିହାରେ ପୋଲାଣ୍ଡ୍ 'ନାଟୋ'ର ସଦସ୍ୟଭୁକ୍ତ ହେଲା ଏବଂ ୨୦୦୪ ମସିହାରେ ୟୁରୋପିଆନ୍ ୟୁନିୟନ୍‌ରେ ଯୋଗଦେଲା।

ଦୀର୍ଘ ୨୨ବର୍ଷ ପୂର୍ବେ ମସ୍କୋରୁ ଆମଷ୍ଟରଡ଼ାମ୍ ଯିବାବେଳେ ଇନ୍ଧନ ସଂଗ୍ରହ ପାଇଁ ଆମର କେ.ଏଲ୍.ଏମ୍. ବିମାନଟି ୱାର୍ସ ବିମାନଘାଟିରେ ଅବତରଣ କରିଥିଲେ ହେଁ ଆମକୁ ସେ ଦେଶ ମାଟିରେ ପାଦ ଥାପିବାକୁ ଅନୁମତି ଦିଆଯାଇନଥିଲା। ସେଠାରେ ସେତେବେଳେ ଏକଛତ୍ରବାଦ ଶାସନ ଚାଲିଥିବାରୁ ବିଦେଶୀ ରାଷ୍ଟ୍ରର ଅଧିବାସୀଙ୍କ ଯାତାୟାତ ଉପରେ କଟକଣା ଜାରି କରାଯାଇଥିଲା। ପୋଲାଣ୍ଡ୍ ଭ୍ରମଣ ବିଷୟ ମୁଁ ଏକପ୍ରକାର ଭୁଲିଯାଇଥିଲି। ଜୀବନରେ ଆଉ କେତେବେଳେ ପୋଲାଣ୍ଡ୍ ଯିବାର ସୁଯୋଗ ଜୁଟିବ, ସେକଥା ମଧ୍ୟ ଭାବି ନଥିଲି। କିନ୍ତୁ ଅଜାଣତରେ ସେ ସୁଯୋଗ ଆପେଆପେ ଆସିଗଲା।

ଆମେ ଭାରତ ଫେରିବା ପୂର୍ବରୁ ଆମ ପାଖରେ ଆଉ ଗୋଟିଏ ରବିବାର ଥିଲା। ଥରେ ଜଳଖିଆ ଟେବୁଲ୍‌ରେ ଚନ୍ଦନ କହିଲା, "ଆଉ କୁଆଡ଼େ ଯିବ ? ମୋର ଶନିବାର-ରବିବାର ଛୁଟି, କହିଲେ ମୁଁ ନେଇଯିବି। ଏତେବାଟ ଆସିଛ, ଯେତେ ବେଶି ଜାଗା ଦେଖିବ ଭଲ।" ସେତେବେଳକୁ ଚନ୍ଦନର ପୋଲାଣ୍ଡସ୍ଥିତ କ୍ରାକୋକୁ ବଦଳି ହୋଇସାରିଥିଲା। ଆନୁଷ୍ଠାନିକ ବଦଳି ଆଦେଶ ନପାଇଥିଲେ ମଧ୍ୟ ସେ ଅଷ୍ଟ୍ରୋଭାରୁ କ୍ରାକୋକୁ ସପ୍ତାହରେ ଅନ୍ତତଃ ତିନିଦିନ ଯାତାୟାତ କରୁଥିଲା। ମୁଁ କହିଲି, ଆଉ କୁଆଡ଼େ ଯିବାପାଇଁ ଇଚ୍ଛା ନାହିଁ। ତେବେ ପାଖରେ ପୋଲାଣ୍ଡ୍ ବୁଲି ଆସିଲେ ହୁଅନ୍ତା। ମୋ ପ୍ରସ୍ତାବରେ ଚନ୍ଦନ ରାଜିହୋଇ ଗସ୍ତ କାର୍ଯ୍ୟକ୍ରମ ସ୍ଥିର କଲା। ଆମେ ପୋଲାଣ୍ଡ୍‌ର ଦୁଇଟି ପ୍ରମୁଖ ସହର କ୍ରାକୋ ଏବଂ ୱାର୍ସକୁ ଶନିବାର ସକାଳେ ଯାଇ ରବିବାର ସନ୍ଧ୍ୟାରେ ଫେରିବାକୁ ସ୍ଥିରକଲୁ।

## ପର୍ଯ୍ୟଟକଙ୍କ ଭୂସ୍ୱର୍ଗ କ୍ରାକୋ

ପୂର୍ବନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ଆମେ ଶନିବାର ସକାଳୁ ଜଳଖିଆପର୍ବ ଶେଷ କରି ଅଷ୍ଟ୍ରୋଭାରୁ କ୍ରାକୋ ଅଭିମୁଖେ ବାହାରିଲୁ। ଅଷ୍ଟ୍ରୋଭାରୁ କ୍ରାକୋର ଦୂରତା ପ୍ରାୟ ଚାରିଶହ କିଲୋମିଟର। ଆମପାଇଁ କାହିଁ କେତେ ଦୂର। କିନ୍ତୁ ସେଠାକାର ମାପରେ

ଏ ଦୂରତା କିଛିନୁହେଁ। ଚନ୍ଦନ ଆମର କ୍ରାକୋରେ ରହିବା ପାଇଁ ଆଗରୁ ବନ୍ଦୋବସ୍ତ କରିଥିଲା। ତଥାପି ଆମେ ସାଙ୍ଗରେ ଲଞ୍ଚ୍ ପ୍ୟାକେଟ୍ ନେଇଥିଲୁ। ବାଟରେ ଗୋଟିଏ ପେଟ୍ରୋଲ୍‌ପମ୍ପ୍ ପାଖରେ ଅଳ୍ପସମୟ ବିଶ୍ରାମ ନେଇ ଆମେ ବାରଟା ବେଳକୁ କ୍ରାକୋରେ ପହଞ୍ଚିଗଲୁ। ଏକ ସୌନ୍ଦର୍ଯ୍ୟପୂର୍ଣ୍ଣ ସହର ଭାବରେ ସମଗ୍ର ୟୁରୋପ ମହାଦେଶରେ କ୍ରାକୋର ପ୍ରତିଷ୍ଠା ରହିଛି । ଏହାର ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ସହିତ ପ୍ରାକୃତିକ ଦୃଶ୍ୟକୁ ନିଜର କାନ୍‌ଭାସ୍‌ରେ ବାନ୍ଧିରଖିବା ପାଇଁ ଦେଶବିଦେଶର ବହୁ ପ୍ରତିଷ୍ଠିତ ଚିତ୍ରଶିଳ୍ପୀ କ୍ରାକୋକୁ ବରାବର ଯାଆନ୍ତି ।

କ୍ରାକୋର ପ୍ରାକୃତିକ ବିଭବ ସମ୍ପର୍କରେ ଜାଣିବା ପାଇଁ ଆଗରୁ ଗୋଟିଏ ଗାଇଡ୍‌ବୁକ୍ ସଂଗ୍ରହ କରିଥିଲି। ଅତୀତର ଅଭିଜ୍ଞତାରୁ ଏଥିପାଇଁ ମୁଁ ପ୍ରେରଣା ପାଇଥିଲି। ମୁଁ ଦେଖିଥିଲି ବିଦେଶରୁ ଯେତେଜଣ ପର୍ଯ୍ୟଟକ ଆମ ରାଜ୍ୟକୁ ବୁଲିବାକୁ ଆସୁଥିଲେ, ସମସ୍ତଙ୍କ ହାତରେ ପର୍ଯ୍ୟଟନସ୍ଥଳୀ ସମ୍ପର୍କୀୟ ତଥ୍ୟ ଥିବା ଗୋଟିଏ ଗୋଟିଏ ଗାଇଡ୍‌ବୁକ୍ ଥିଲା। ଆମର ଯୋଜନା ଥିଲା, ଶନିବାର ଆମେ କ୍ରାକୋ ସହର ବୁଲି ରାତିରେ ଗେଷ୍ଟହାଉସ୍‌ରେ ବିଶ୍ରାମ ନେବୁ ଏବଂ ପରଦିନ ୱାର୍ସ ସହର ଦେଖି ଅଷ୍ଟ୍ରୋଭା ଫେରିଯିବୁ। ଆମ ହାତରେ ଚାରି ପାଞ୍ଚଘଣ୍ଟା ସମୟ ଥିଲା। ସେତିକି ସମୟ କିପରି ଠିକ୍ ଭାବରେ ବିନିଯୋଗ ହୋଇପାରିବ ସେଥିପାଇଁ ଆମେ ସଚେତନ ଥିଲୁ।

ଆମେ ପ୍ରଥମେ ଯାଇ 'ମେନ୍ ମାର୍କେଟ୍ ସ୍କୋୟାର୍'ରେ ପହଞ୍ଚିଲୁ। ଏହାର ଇତିହାସରୁ ଜଣାଗଲା, ବିଗତ ୧୨୫୭ ମସିହାରେ ଯେତେବେଳେ କ୍ରାକୋ ସହରକୁ ମ୍ୟୁନିସିପାଲ୍‌ର ମର୍ଯ୍ୟାଦା ମିଳିଥିଲା, ସେହି ସମୟରେ ଏହା ନିର୍ମିତ ହୋଇଥିଲା। ଏହି ସ୍କୋୟାର୍‌ଟି ସାରାବର୍ଷ କର୍ମଚଞ୍ଚଳ ଥାଏ। ନାନାଦେଶରୁ ସହସ୍ରାଧିକ ପର୍ଯ୍ୟଟକ ଏହି ସ୍ଥାନର ସୌନ୍ଦର୍ଯ୍ୟକୁ ଉପଭୋଗ କରି ଆନନ୍ଦିତ ହୋଇଥାନ୍ତି। ଆମେ ସେଠାରେ ପହଞ୍ଚିଲା ପରେ ଆମ ଆଖି ଖୋସି ହୋଇଗଲା। ଚାରିଆଡେ ସୁଦୃଶ୍ୟ ଅଟ୍ଟାଳିକାରେ ରେଷ୍ଟୁରାଣ୍ଟ, କ୍ଲବ୍, ବାର୍ ସହିତ ସଂଗ୍ରହାଳୟ, ଆର୍ଟ ଗ୍ୟାଲେରୀ, ଐତିହାସିକ କୀର୍ତ୍ତିରାଜି ଏବଂ ସପ୍ତଦଶ ଶତାବ୍ଦୀର ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ସୌଧମାନ ଶୋଭା ପାଉଥିଲା। ଆମେ ନିର୍ଦ୍ଦିଷ୍ଟ ସ୍ଥାନରେ ଗାଡ଼ି ପାର୍କିଂକରି ମାର୍କେଟ୍ ସ୍କୋୟାର୍‌ରେ ଚାଲିଚାଲି ବୁଲିଲୁ। ସ୍କୋୟାର୍ ମଝିରେ ପର୍ଯ୍ୟଟକମାନଙ୍କର ଚିତ୍ତବିନୋଦନ ନିମିତ୍ତ ଖୋଲା ଜାଗାଟିଏ ଥିଲା। ପାଖରେ ପାଣିଫୁଆରାରୁ ପାଣି ବାହାରି ସ୍ଥାନର ସୌନ୍ଦର୍ଯ୍ୟକୁ ବୃଦ୍ଧି କରୁଥିଲା। ପାଣିରେ ନାନାପ୍ରକାର ଚଢ଼େଇମାନେ ଖେଳୁଥିଲେ। ଚାରିପାଖରେ ପଥରର ବେଞ୍ଚ୍ ପଡ଼ିଥିଲା। ଆମେ ଦୁଇଟି ବେଞ୍ଚ୍ ଦଖଲ କରି ବସିଲୁ। ସେତେବେଳକୁ ସମୟ ପାଖାପାଖି ଦୁଇଟା ହୋଇଥିବ । ସେଠାରେ ମଧ୍ୟାହ୍ନଭୋଜନ ଶେଷ କରିବା ପାଇଁ ଚନ୍ଦନ ପ୍ରସ୍ତାବ ଦେଲା। [illegible] ହୋଇଥିବାରୁ ମୁଁ କେବଳ ଫ୍ରୁଟ୍‌ଜୁସ୍‌ରେ କାମ ଚଳେଇଦେଇଥିଲି।

ପରେ ଆମେ ପୋଲାଣ୍ଡ୍ ରାଜବଂଶଦ୍ୱାରା ନିର୍ମିତ ଦୁର୍ଗ ଦେଖିବାକୁ ଯାଇଥିଲୁ। ସେଠାରେ ଥିବା ପୁରୁଣା ରାଜପ୍ରାସାଦର ସ୍ଥାପତ୍ୟ ଓ ନିର୍ମାଣ କଳା ଆମକୁ ବିମୋହିତ କରିଥିଲା। ଏକସମୟରେ ସେଠାରେ ପୋଲାଣ୍ଡର ରାଜାରାଣୀମାନଙ୍କର ସିଂହାସନ ଆରୋହଣ ଉତ୍ସବ ଅନୁଷ୍ଠିତ ହେବା ସହିତ ସେମାନଙ୍କୁ ସେହି ପରିସର ମଧ୍ୟରେ କବର ମଧ୍ୟ ଦିଆଯାଉଥିଲା। ସେ ସ୍ଥାନଟି ରାଜପରିବାର ପାଇଁ ଆରାଧନାକ୍ଷେତ୍ର ଭାବରେ ପରିଗଣିତ ଥିଲା। ପୋଲାଣ୍ଡରୁ ରାଜତନ୍ତ୍ରର ବିଲୋପ ଘଟିଥିଲେ ସୁଦ୍ଧା ସେ ରାଜପ୍ରାସାଦର ଗୁରୁତ୍ୱ କମିନଥିଲା। ବାଟରେ ଗଲାବେଳେ ଅନେକ ଗୀର୍ଜା ଆମର ଦୃଷ୍ଟିଗୋଚର ହୋଇଥିଲା। ସେଥିମଧ୍ୟରୁ ପ୍ରଧାନ ଗୀର୍ଜା (କାଥେଡ୍ରାଲ୍ ଚର୍ଚ୍ଚ) ପାଖରେ ଆମେ କିଛିସମୟ ଅଟକିଥିଲୁ। ଗୀର୍ଜାର କାରୁକାର୍ଯ୍ୟ ଅତି ଚମତ୍କାର ଥିଲା। ସେ ଗୀର୍ଜାରେ ଲାଗିଥିବା ବଡ଼ ଘଣ୍ଟିଟି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା। ୧୫୨୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଛଅଫୁଟ ଗୋଲେଇ ବିଶିଷ୍ଟ ଏହି ଘଣ୍ଟିର ଓଜନ ପ୍ରାୟ ୧୧ଟନ୍ ଥିଲା। ପୋଲାଣ୍ଡ୍‌ର ସେଇ ଘଣ୍ଟିଟି ସବୁଠାରୁ ବଡ଼ବୋଲି ଶୁଣିଲୁ।

ଅମେ ଯେତେ ବୁଲୁଥିଲୁ ସବୁ ଜାଗାରେ ଆମକୁ ଆନନ୍ଦ ମିଳୁଥିଲା। ଏକ ସମୟରେ ପୋଲାଣ୍ଡର ରାଜଧାନୀ ଭାବରେ କ୍ରାକୋ ସହରର ପ୍ରତିଷ୍ଠା ଥିଲା। ପରବର୍ତ୍ତୀ ସମୟରେ ପୋଲାଣ୍ଡ ଭାଗଭାଗ ହୋଇଯିବା ପରେ କ୍ରାକୋ ସହରଟି ଅଷ୍ଟ୍ରିଆର ଶାସକବର୍ଗଙ୍କ ହାତରେ ରହିଥିଲା। ସେହି ସମୟରେ କ୍ରାକୋ ସହରରେ ଅନେକ କୋଠାବାଡ଼ି ନିର୍ମିତ ହୋଇଥିଲା। ପରବର୍ତ୍ତୀ ସମୟରେ ପୋଲାଣ୍ଡର ରାଜଧାନୀ ଓ୍ୱାର୍ସକୁ ଉଠିଯାଇଥିଲେ ମଧ୍ୟ ଆଧ୍ୟାତ୍ମିକନଗର ଭାବରେ କ୍ରାକୋର ଗୁରୁତ୍ୱ କମିନଥିଲା। ଏହି ସହରରେ ଦିନେ ଖ୍ରୀଷ୍ଟଧର୍ମର ଗୁରୁ ଜନ୍‌ପଲ୍ ଦ୍ୱିତୀୟ ଜନ୍ମଗ୍ରହଣ କରିଥିଲେ। ଦୁଇଟି ବିଶ୍ୱଯୁଦ୍ଧ ସମୟରେ ପୋଲାଣ୍ଡ୍ ଅଧିକ କ୍ଷତିଗ୍ରସ୍ତ ହୋଇଥିଲେ ହେଁ କ୍ରାକୋ ସେଥିରୁ ବର୍ତ୍ତିଯାଇଥିଲା। ୧୯୭୮ ମସିହାରେ ୟୁନେସ୍କୋ ପକ୍ଷରୁ କ୍ରାକୋକୁ 'ବିଶ୍ୱ-ଐତିହ୍ୟ'ର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା।

କ୍ରାକୋ ସହରରେ ବୁଲିଲାବେଳେ ବହୁ ଦେଶର ଲୋକ ବୁଲାବୁଲି କରୁଥିବାର ନଜରରେ ପଡ଼ିଥିଲା। ମୁଁ ଭାବୁଥିଲି ଜଣେଅଧେ କିଏ ଓଡ଼ିଆଲୋକ ଦେଖା ହୋଇଯାଆନ୍ତେ କି, ଦି'ପଦ କଥାବାର୍ତ୍ତା ହୋଇପାରନ୍ତି। କିନ୍ତୁ ଯୋଉ ଲୋକଙ୍କର ଅଧିକାଂଶ ସମୟ ଖାଇବା ଓ ଶୋଇବାରେ କଟିଯାଏ, ସେମାନଙ୍କୁ ସୁଦୂର କ୍ରାକୋ ସହରରେ କୁଆଡୁ ଦେଖିବାକୁ ମିଳିବ? ବୁଲିବାକୁ ଆମଲୋକେ ସବୁଠାରୁ କମ୍ ଅଗ୍ରାଧିକାର ଦେଇଥାନ୍ତି। ଏପରିକି ଦୀର୍ଘ ପଚିଶି ତିରିଶିବର୍ଷ କାଳ ଭୁବନେଶ୍ୱର ସହରରେ ରହୁଥିବା ଲୋକେ କେଦାରଗୌରୀ କିମ୍ବା ଖଣ୍ଡଗିରି ଦେଖିନଥିବାର ବହୁ ନଜିର ରହିଛି। ଏ ଦିଗରେ ପଶ୍ଚିମବଙ୍ଗଳା (କୋଲକାତା ସହର)ର ସ୍ୱତନ୍ତ୍ର୍ୟ ରହିଛି। ଆଉ କିଛି ହେଉ ବା ନହେଉ,

ବଙ୍ଗବାସୀ ଭ୍ରମଣକୁ ଅଗ୍ରାଧିକାର ଦେଇଥାନ୍ତି। ଭାରତବର୍ଷର ଯେକୌଣସି ପର୍ଯ୍ୟଟନସ୍ଥଳକୁ ଗଲେ ସେମାନଙ୍କ ସହିତ ପ୍ରାୟ ସାକ୍ଷାତ ହୋଇଥାଏ।

ସହର ଭିତରେ ଗାଡ଼ିରେ ଗଲେ ବି ବିଭିନ୍ନ ସ୍ଥାନରେ ଗାଡ଼ିରୁ ଓହ୍ଲାଇ ଚାଲିଚାଲି ଯିବା ଓ ପୁଣି ଗାଡ଼ିରେ ବସିବା ଭିତରେ ମୁଁ ଥକିଯାଇଥିଲି। ଆଉ ଯିବାପାଇଁ ଇଚ୍ଛା ହେଉନଥିଲା। କିନ୍ତୁ ଚନ୍ଦନର ଇଚ୍ଛା, ଆମେ ଯେତେ ଜାଗା ଯାଇପାରିବୁ ସେତେ ଭଲ। କାରଣ ସେ ଭଲଭାବରେ ବୁଝିଥିଲା ଯେ ଆଉଥରେ କ୍ରାକୋ ବୁଲିଯିବା ହୁଏତ ଆମପକ୍ଷରେ ସମ୍ଭବ ହୋଇନପାରେ। ମୁଁ ଦେଖିଲି ଦିନଯାକ ଗାଡ଼ି ଡ୍ରାଇଭ୍ କରି ସେ ମଧ୍ୟ କ୍ଳାନ୍ତ ହୋଇପଡ଼ିଥିଲା। ସେକଥା ସେ ମୁହଁରେ ପ୍ରକାଶ କରୁନଥିଲେ ବି ତା' ମୁଖମଣ୍ଡଳରୁ ତାହା ବାରିହୋଇ ପଡୁଥିଲା। ସେଥିପାଇଁ ମୁଁ ତାକୁ କହିଲି, "ଗୋଟିଏ ଦିନରେ କ'ଣ ସବୁ ସାରିଦେବା ? କାଲି ପୋଲାଣ୍ଡର ରାଜଧାନୀ ୱାର୍ସ ଯିବାର କାର୍ଯ୍ୟକ୍ରମ ରହିଛି, ଆଜି ସକାଳ ଆଠଟାରୁ ଆମର ଯାତ୍ରା ଆରମ୍ଭ ହୋଇଥିଲା। ଏବେ ପାଖାପାଖି ଛଅଟା ହେଲାଣି। ଆଉ ଅଧିକ ନବୁଲି ବରଂ ଗେଷ୍ଟହାଉସ୍‌କୁ ଯାଇ ବିଶ୍ରାମ ନେଲେ ଭଲ ହୁଅନ୍ତା।" ସେ କହିଲା ବିଶ୍ରାମ ନେବାରେ ମୋର ଆପତ୍ତି ନାହିଁ। କିନ୍ତୁ କ୍ରାକୋରେ ଆହୁରି ବହୁ ଦର୍ଶନୀୟ ସ୍ଥାନ ରହିଛି। ସନ୍ଧ୍ୟା ପରେ ସହରର ସୌନ୍ଦର୍ଯ୍ୟ ଆହୁରୁ ବଢ଼ିଯିବ। ଆଉ କିଛି ସମୟ ବୁଲିଲେ କେମିତି ହୁଅନ୍ତା ? ପ୍ରମଦା ମୋ କଥାକୁ ସମର୍ଥନ କରି କହିଲେ, "ଯଥେଷ୍ଟ ହେଲାଣି, ଆମେ ଗତ ତିରିଶିବର୍ଷ ହେଲା ଭୁବନେଶ୍ୱରରେ ରହୁଥିଲେ ବି କ'ଣ ଏପର୍ଯ୍ୟନ୍ତ ସବୁକିଛି ଦେଖିପାରିଛୁ ? ଯେତେ ବୁଲିଲେ ବି ନିଶ୍ଚୟ କିଛି ବାକି ରହିଯିବ। ସେଥିପାଇଁ ୯୯ .ର ବ୍ୟସ୍ତ ହେବାର କିଛି ନାହିଁ। ତୁ'ତ ଶ୍ରବଣକୁମାର ଭଳି ଆମକୁ ଚାରିଆଡ଼େ ନେଉଛୁ, ତୋ ଯୋଗୁ ତ ଆମେ ଦେଶ ଦୁନିଆ ଦେଖିଲୁ। ଆଜି ଏତିକି ଥାଉ।" ତା'ପରେ ଆମେ ଗେଷ୍ଟହାଉସ୍ ଚାଲିଲୁ।

ଗେଷ୍ଟହାଉସ୍‌ର ତଳ ମହଲାରେ ଆମପାଇଁ ଦୁଇଟି ସୁଟ୍ ରିଜର୍ଭ କରାଯାଇଥିଲା। ଚନ୍ଦନ ଅଭ୍ୟର୍ଥନାକକ୍ଷରୁ ଚାବି ଆଣିବାପରେ ଆମେ ରୁମ୍‌କୁ ଗଲୁ। ମୁଁ ଶନିବାର ସନ୍ଧ୍ୟାରେ ବିନା ପିଆଜରସୁଣରେ ପ୍ରସ୍ତୁତ ସାମାନ୍ୟ ପରିବା ତରକାରି ଖାଇଥାଏ । ଗେଷ୍ଟହାଉସ୍‌ରେ ପହଞ୍ଚିବା ପରେ ମୋର ଆଶଙ୍କା ଥିଲା ବୋଧହୁଏ ସେଦିନ ବିନା ଭୋଜନରେ ରାତି ପାହିଯିବ। କିନ୍ତୁ ବୋହୁ ସାଲୋନୀ ମୋର ଅଭ୍ୟାସ ବିଷୟରେ ବିଶେଷକରି ଶନିବାରର ଖାଦ୍ୟ ସମ୍ପର୍କରେ ସଚେତନ ଥିଲା। ଆମ ଅଜାଣତରେ ସେ ଘରୁ ଆସିଲାବେଳେ ଗାଡ଼ିରେ କିଛି ଫୁଲକୋବି, ମଟର ପଲିବ୍ୟାଗ୍‌ରେ ନେଇଯାଇଥିଲା। ଆମର ଭାଗ୍ୟଭଲ ସେ ଗେଷ୍ଟହାଉସ୍‌ର କୁକ୍ ଇଂରାଜୀ ବୁଝିପାରୁଥିଲା। ଗେଷ୍ଟହାଉସ୍‌କୁ ବିଭିନ୍ନ ଦେଶର ଅତିଥିମାନେ ଯାତାୟାତ କରୁଥିବାରୁ ସେମାନଙ୍କ ଖାଦ୍ୟପେୟ ବିଷୟରେ ସେ ଅଳ୍ପେବହୁତେ ଜାଣିଥିଲା।

ସାଲୋନୀ ଫ୍ରେସ୍ ହେବାପରେ ଆମ ଖାଇବା ଅଭ୍ୟାସ ସମ୍ପର୍କରେ ତାକୁ ବୁଝାଇବା ସହିତ ରୋଷେଇ କାମରେ ତାକୁ ସାହାଯ୍ୟ କଲା; ଫଳରେ ମୋ ପାଇଁ ପରଟା ଓ ପରିବାସିଝା ପ୍ରସ୍ତୁତ ହୋଇପାରିଲା। ଅନ୍ୟମାନେ ଅନ୍ୟାନ୍ୟ ଖାଦ୍ୟ ଖାଇଥିଲେ।

## ଯୁଦ୍ଧ ବିଭୀଷିକାର ମୂକସାକ୍ଷୀ ୱାର୍ସ ନଗରୀ

ଗେଷ୍ଟହାଉସ୍‌ରେ ରହିବା ପାଇଁ ସବୁପ୍ରକାର ଆରାମଦାୟକ ବ୍ୟବସ୍ଥା ଥିଲେ ହେଁ କେଜାଣି କାହିଁକି ରାତିରେ ଭଲ ନିଦ ହେଲାନାହିଁ। ଶୋଇଲାବେଳେ ମୁଁ ଭାବୁଥିଲି, କାହିଁ ଭୁବନେଶ୍ୱର ଓ କାହିଁ କ୍ରାକୋ ? ସବୁକଥା ସ୍ୱପ୍ନଭଳି ଲାଗୁଥିଲା। ସେଠାରେ ଆମ ଦେଶ ଭଳି ଲୋକେ ବସବାସ କରୁଥିଲେ ହେଁ ସର୍ବସାଧାରଣଙ୍କ ସମ୍ପତ୍ତିକୁ ସେମାନେ କିଭଳି ସୁରକ୍ଷିତ କରି ରଖୁଥିଲେ, ଐତିହାସିକ କୀର୍ତ୍ତିରାଜିଗୁଡ଼ିର ସଂରକ୍ଷଣରେ ସାହାଯ୍ୟ କରୁଥିଲେ, ପର୍ଯ୍ୟଟନସ୍ଥଳିଗୁଡ଼ିକୁ ପରିଷ୍କାର ପରିଚ୍ଛନ୍ନ ରଖିବାରେ ସେ ଦେଶର ଲୋକେ କିପରି ଆନନ୍ଦ ଉପଲବ୍ଧି କରୁଥିଲେ, ଆଉ ଆମ ଲୋକେ ସର୍ବସାଧାରଣ ସମ୍ପତ୍ତି ନଷ୍ଟକରିବାରେ କିଭଳି ଧୁରନ୍ଧର ସେଇକଥା ଭାବୁଭାବୁ ରାତ୍ରିର ଶେଷପ୍ରହରକୁ ନିଦ ହୋଇଯାଇଥିଲା। ନାତୁଣୀ ଏଲିନା ଆସି ହଲାଇଦେବାରୁ ନିଦ ଭାଙ୍ଗିଗଲା। ମୁଁ ଉଠି ଦେଖିଲାବେଳକୁ ଅନ୍ୟମାନେ ଚା'ପର୍ବରେ ବ୍ୟସ୍ତ ଥିଲେ। ମୁଁ ଚା'ର ଭକ୍ତ ନଥିବାରୁ ମତେ ସେମାନେ ଉଠାଇବାକୁ ଚାହିନଥିଲେ।

ନିତ୍ୟକର୍ମ ସାରି ଜଳଖିଆ ପାଇଁ ଡାଇନିଂ ଟେବୁଲ୍‌କୁ ଆସିଲାବେଳକୁ ସକାଳ ଦଶଟା ବାଜିଥିଲା। ଟେବୁଲ୍ ଉପରେ ବ୍ରେଡ୍, ବଟର୍, ଓମ୍‌ଲେଟ୍, କର୍ଣ୍ଣଫ୍ଲେକ୍, ମିଲ୍କ, ଫ୍ରୁଟ୍‌ଜୁସ୍ ସବୁ ପ୍ରସ୍ତୁତ ଥିଲା। ଯିଏ ଯାହା ରୁଚିମୁତାବକ ଗ୍ରହଣ କଲେ। ମୁଁ ଜଳଖିଆ ଖାଇସାରି ୱାସିଂ ବେସିନ୍ ପାଖକୁ ଗଲାବେଳେ ଜଣେ ଭାରତୀୟ ସେଠାରେ ଛିଡ଼ା ହୋଇଥିବାର ଦେଖିଲି। ପ୍ରଥମେ ମୋର ସନ୍ଦେହ ହେଲା। କିନ୍ତୁ ଯେତେବେଳେ ତାଙ୍କ ଧର୍ମପତ୍ନୀ ଅନ୍ୟ ଏକ କୋଠରିରୁ ବାହାରି ତାଙ୍କ ସାଙ୍ଗରେ ହିନ୍ଦୀରେ କଥାବାର୍ତ୍ତା ହେଲେ, ମୋର ସନ୍ଦେହ ଦୂରୀଭୂତ ହୋଇଗଲା। ମନର ଅବେଗକୁ ସମ୍ଭାଳି ନପାରି ତାଙ୍କୁ ପଚାରିଲି, "କ୍ଷମା କରିବେ, ଆପଣ କ'ଣ ଭାରତରୁ ଆସିଛନ୍ତି ?" ମୋ ପ୍ରଶ୍ନରେ ସେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ; କାରଣ ସୁଦୂର କ୍ରାକୋ ସହରରେ ସକାଳ ଜଳଖିଆ ଖାଇବା ସମୟରେ ଆଉଜଣେ ଭାରତୀୟଙ୍କୁ ଭେଟିବେ ବୋଲି ସେ ମଧ୍ୟ ଭାବିନଥିଲେ। ଉତ୍ତରରେ କହିଲେ, "ଆମ ଘର ଉତ୍ତରାଖଣ୍ଡ ରାଜ୍ୟରେ। ଆମେ ପାଞ୍ଚଟି ପରିବାର ବୁଲିବା ପାଇଁ ଆସିଛୁ। ପନ୍ଦରଦିନ ବିତିଗଲାଣି। ଆଉ ପାଞ୍ଚଦିନ ପରେ ଆମେ ଭାରତ ଫେରିଯିବୁ।" ତା'ସହିତ ଆମେସବୁ କେଉଁଠୁ ଆସିଛୁ, କେତେଦିନ ରହିବୁ, କୁଆଡ଼େ କୁଆଡ଼େ ଯିବୁ

ସେସବୁ ପଚାରି ବୁଝିଥିଲେ। ସେଦିନ ସକାଳେ ଜଳଖିଆ ପରେ ନିଜ ଦେଶର ଲୋକଙ୍କ ସହିତ ଦେଖା ହେବାରେ ମନଟା ଖୁସି ହୋଇଗଲା। ମୁଁ ଆମ କାର୍ଯ୍ୟକ୍ରମ ସମ୍ପର୍କରେ ତାଙ୍କୁ ସୂଚନା ଦେଇଥିଲି। ଭଦ୍ରଲୋକ ଏ.କେ. ଶର୍ମା ଜଣେ ସାମରିକ ଅଫିସର। ପାଞ୍ଚବର୍ଷ ପୂର୍ବେ ସୈନ୍ୟବାହିନୀରୁ ଅବସର ନେଇଥିଲେ। ପ୍ରତିବର୍ଷ ସମଭାବାପନ୍ନ ଲୋକଙ୍କ ସହିତ ବିଦେଶଭ୍ରମଣରେ ଯିବା ତାଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିବା କଥା ସେ ପ୍ରକାଶ କରିଥିଲେ।

ଶ୍ରୀ ଶର୍ମା ସାମରିକ ଅଫିସର ହୋଇଥିଲେ ହେଁ ବ୍ୟବହାରରେ ଖୁବ୍ ଅମାୟିକ। ମାର୍ଜିତ ବ୍ୟବହାର ସାଙ୍ଗକୁ ମପାଚୁପା କଥା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଦେଉଥିଲା। ଏହାପୂର୍ବରୁ ସେ ଆଉଥରେ ପୋଲାଣ୍ଡ୍ ଆସିଥିଲେ ବୋଲି ଶ୍ରୀ ଶର୍ମା କଥାପ୍ରସଙ୍ଗରେ ଜଣାଇଥିଲେ। ପୋଲାଣ୍ଡ୍‌ରେ କ'ଣ କ'ଣ ଦେଖିବାର ଅଛି ବୋଲି ପଚାରିବାରୁ ସେ କହିଲେ କ୍ରାକୋ ସହରଟି ପର୍ଯ୍ୟଟନସ୍ଥଳୀ ଭାବରେ ଖ୍ୟାତି ଲାଭ କରିଥିଲାବେଳେ ପୋଲାଣ୍ଡର ରାଜଧାନୀ ୱାର୍ସ ସହରର ଐତିହାସିକ ଗୁରୁତ୍ୱ ରହିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜର୍ମାନୀ ସେନାଙ୍କ ଆକ୍ରମଣରେ ପୋଲାଣ୍ଡ୍‌ର ଅଧିକାଂଶ ଅଞ୍ଚଳ ଛାରଖାର ହୋଇଯାଇଥିଲା। ପରବର୍ତ୍ତୀ ସମୟରେ ସେସବୁ ପୁନର୍ଗଠିତ ହୋଇଛି। ଶ୍ରୀ ଶର୍ମାଙ୍କ ସହିତ ଗପ ଜମିଆସୁଥିଲା। କିନ୍ତୁ ହାତରେ ସମୟ ନ ଥିବାରୁ ବିଦାୟ ନେବାକୁ ପଡ଼ିଲା।

ଶ୍ରୀ ଶର୍ମାଙ୍କ ନିକଟରୁ ଫେରିଆସିଲା ବେଳକୁ ଚନ୍ଦନ ଗାଡ଼ିରେ ବ୍ୟାଗ୍‌ସବୁ ରଖିସାରିଥିଲା। ଅନ୍ୟମାନେ ଗାଡ଼ିରେ ବସି ମୋ ପାଇଁ ଅପେକ୍ଷା କରିଥିଲେ। ମୁଁ ବସିବା ମାତ୍ରେ ଚନ୍ଦନ ଗାଡ଼ି ଷ୍ଟାର୍ଟ କଲା। ଦୁଇଘଣ୍ଟା ଭିତରେ ଆମେ ୱାର୍ସ ସହରରେ ପହଞ୍ଚିଗଲୁ। ମୁଁ ରାଜନୀତିବିଜ୍ଞାନର ଛାତ୍ର ଥିଲାବେଳେ ଆନ୍ତର୍ଜାତିକ ଘଟଣାବଳୀ ସମ୍ପର୍କରେ ପଢ଼ିବା ପାଇଁ ସୁଯୋଗ ପାଇଥିଲି। ଯୁକ୍ତରାଷ୍ଟ୍ର ଆମେରିକାରେ ରାଷ୍ଟ୍ରଦୂତ ହୋଇ ଅବସର ଗ୍ରହଣ କରିଥିବା ଓଡ଼ିଶାର ଅନ୍ୟତମ ସୁଯୋଗ୍ୟସନ୍ତାନ ଲଳିତ ମାନସିଂହ ସେତେବେଳେ ଆମର ଅଧ୍ୟାପକ ଥିଲେ। ମୋର ସ୍ପଷ୍ଟ ମନେଅଛି, 'ଇଣ୍ଟର୍‌ନାସନାଲ୍ ଆଫାୟର୍ସ' ପଢ଼ାଇଲାବେଳେ ଛାତ୍ରମାନେ କିଭଳି ମନ୍ତ୍ରମୁଗ୍ଧ ହୋଇ ତାଙ୍କ କଥାକୁ ଶୁଣୁଥିଲେ। ବିଶ୍ୱଯୁଦ୍ଧ ସମୟର ଘଟଣାବଳୀ ଓ ତା'ର ପରବର୍ତ୍ତୀ ପରିଣତି ସମ୍ପର୍କରେ ତାଙ୍କର ବ୍ୟାଖ୍ୟା ଏତେ ସ୍ପଷ୍ଟ ଥିଲା ଯେ, ପରିଣତ ବୟସ ପର୍ଯ୍ୟନ୍ତ ସେସବୁ ମନେରହି ଯାଇଥିଲା। ସେକାଳର ସେ ପାଠ୍ୟକ୍ରମରେ 'ୱାର୍ସ ପ୍ୟାକ୍ଟ' ଏକ ବିଷୟ ଥିଲା। ସେ ପାଠ୍ୟକ୍ରମରେ ଥିବା ଘଟଣାବଳୀସବୁ ଆଖିଆଗରେ ଭାସିଉଠିଲା। ଯୋଉ ସହର ବିଷୟରେ ଦିନେ ପୋଥିରେ ପଢ଼ିଥିଲି, ତାକୁ ସ୍ୱଚକ୍ଷୁରେ ଦେଖିବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେକଲି। "ଅପଣମାନେ ଆପଣଙ୍କ ଗନ୍ତବ୍ୟସ୍ଥଳ ୱାର୍ସ ସହରର କେନ୍ଦ୍ରସ୍ଥଳୀରେ ପହଞ୍ଚିଗଲେଣି"

ଏହି ସୂଚନା ଗାଡ଼ିରେ ଲାଗିଥିବା ଜି.ପି.ଏସ୍.ରୁ ମିଳିବା ପରେ ଚନ୍ଦନ ଗାଡ଼ିର ବେଗ କମାଇଲା। ମୁଁ ମଧ୍ୟ ଭାବନାରାଜ୍ୟରୁ ଫେରିଆସିଲି।

ଆମର ସୌଭାଗ୍ୟକୁ ପାଖରେ ପାର୍କିଂପ୍ଲେସ୍ ଥିଲା। ସେଠାରେ ଗାଡ଼ି ପାର୍କିଂ କରି ଆମେ ଓହ୍ଲାଇଲୁ। ଓ୍ୱାର୍ସ ସହରଟି ମୁଖ୍ୟତଃ ତିନିଭାଗରେ ବିଭକ୍ତ ହୋଇଥିଲା। ଆମେ ଯେଉଁଠି ଓହ୍ଲାଇଥିଲୁ ତା ନାଁ ଥିଲା 'ଓଲ୍ଡ ଆଣ୍ଡ୍ ନିଉ ଟାଉନ୍'। ତା'ଛଡ଼ା 'ରୟାଲ୍‌ରୁଟ୍' ଏବଂ 'ସିଟି ସେଣ୍ଟର୍' ନାମରେ ଆଉ ଦୁଇଟି ମୁଖ୍ୟସ୍ଥାନ ଥିଲା। ଏ ତିନୋଟି ମୁଖ୍ୟସ୍ଥାନ ପରସ୍ପର ସହିତ ସଡ଼କପଥରେ ସଂଯୁକ୍ତ ଥିଲା।। ଓଲ୍ଡଟାଉନ୍ ବୋଲି ଯେଉଁସ୍ଥାନକୁ କୁହାଯାଉଥିଲା, ତାହା ଓ୍ୱାର୍ସର ସର୍ବପୁରାତନ ସହର। ସହରଟି ମଧ୍ୟଯୁଗୀୟ ସ୍ଥାପତ୍ୟରେ ଭରପୂର। ସହରର ଚାରିପାଖରେ ଗଢ଼ାଯାଇଥିବା ମଧ୍ୟଯୁଗୀୟ ପ୍ରାଚୀର ସୁରକ୍ଷିତ ଥିଲା। ଓଲ୍ଡଟାଉନ୍‌ର ସବୁଠାରୁ ଆକର୍ଷଣୀୟ ସ୍ଥାନ ଥିଲା ମାର୍କେଟ୍ ସ୍କୋୟାର୍। ସେଠାରେ ଥିବା ଗୀର୍ଜା ଏବଂ ରାଜପ୍ରାସାଦ ଦେଖିବା ପାଇଁ ପ୍ରତ୍ୟହ ଶତାଧିକ ଲୋକଙ୍କର ସମାରୋହ ହେଉଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏ ଗୁଡ଼ିକସବୁ ଭାଙ୍ଗିରୁଜି ନଷ୍ଟ ହୋଇଯାଥିଲା। ପରବର୍ତ୍ତୀ କାଳରେ ସେସବୁର ପୁନରୁଦ୍ଧାର କରାଗଲା। ରାସ୍ତାରେ ଉଭୟପାର୍ଶ୍ୱରେ ଅତ୍ୟାଧୁନିକ ରେଷ୍ଟୁରାଣ୍ଟ, ବାର୍‌ରେ ପର୍ଯ୍ୟଟକମାନଙ୍କର ମନୋରଞ୍ଜନ ପାଇଁ ସବୁପ୍ରକାର ବ୍ୟବସ୍ଥା ଥିଲା। ଓ୍ୱାର୍ସର ଓଲ୍ଡଟାଉନ୍ କେବଳ ଯେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଥିଲା, ତା'ନୁହେଁ, ସନ୍ଧ୍ୟା ପରେ ସେଠାରେ ପ୍ରେମିକ-ପ୍ରେମିକାମାନେ ପରସ୍ପରର ବାହୁବନ୍ଧନରେ ଆବଦ୍ଧ ହୋଇ ଜୀବନକୁ ଉପଭୋଗ କରୁଥିଲେ।

ଆମେ ଚାଲିଚାଲି ପାଖରେ ଥିବା ଗୋଟିଏ ଦୋକାନ ଭିତରେ ପଶିଲୁ। ଦୋକାନଟି ତିନିମହଲା ବିଶିଷ୍ଟ। ଆମ ଭୁବନେଶ୍ୱରରେ ଖୋଲିଥିବା 'ବିଗ୍‌ବଜାର୍'ଠାରୁ ଯଥେଷ୍ଟ ବଡ଼। ଆମର କିଣିବାର କିଛି ନଥିଲା। କେବଳ କୌତୂହଳବଶତଃ ଯାଇଥିଲୁ। କିନ୍ତୁ ବୋହୂ ସାଲୋନୀ ମତେ କହିଲା, "ଆପଣ ଏତେ ବାଟ ଆସିଛନ୍ତି, କିଛି ଗିଫ୍ଟ ପ୍ୟାକେଟ୍ ନେଇଯାଆନ୍ତୁ। ଆପଣଙ୍କ ଫ୍ରେଣ୍ଡ୍‌ସର୍କଲ୍ ଏତେବଡ଼ ଯେ, ଯାହା ନେଲେ ବି ନଅଣ୍ଟ ଧରିବ। ତେବେ ବିଦେଶ ଭ୍ରମଣକୁ ମନେ ରଖିବା ପାଇଁ କିଛି ନେବା କଥା।" ମୁଁ ଆଉ ପ୍ରମଦା ଗୋଟିଏ ଜାଗାରେ ଛିଡ଼ାହେଲୁ। ଚନ୍ଦନ ଓ ସାଲୋନୀ ଯାଇ ଆମ ପାଇଁ କେତୋଟି ଗିଫ୍ଟପ୍ୟାକେଟ୍ ନେଇ ଆସିଲେ। ଆମେ ଭୁବନେଶ୍ୱର ଫେରିଲା ପରେ ସେସବୁ କାମରେ ଲାଗିଥିଲା।

ଓ୍ୱାର୍ସ ସହରରେ ଅନେକ ଲୋକ ଇଂରାଜୀ ବୁଝୁଥିଲେ। ସେଥିପାଇଁ ଆମର ବିଶେଷ ଅସୁବିଧା ହୋଇନଥିଲା। ଓ୍ୱାର୍ସରେ ଥିବା ଗୀର୍ଜାଗୁଡ଼ିକ ପର୍ଯ୍ୟଟକମାନଙ୍କ ପାଇଁ ମୁଖ୍ୟ ଆକର୍ଷଣ ଥିଲା। ସେଗୁଡ଼ିକ ଦେଖିବା ପାଇଁ ମନରେ ଆଗ୍ରହ ଜନ୍ମିବାରୁ ଆମେ ପାଖରେ ଥିବା ସେଣ୍ଟ୍‌ଜନ୍ ଗୀର୍ଜାକୁ ଗଲୁ। ଆଗରୁ କୌଣସି ଗୀର୍ଜାଭିତରକୁ ଯିବାପାଇଁ ସୁଯୋଗ ଜୁଟିନଥିଲା; କାରଣ ଆମଦେଶରେ ଅଣଖ୍ରୀଷ୍ଟିଆନ୍‌ମାନଙ୍କୁ ଗୀର୍ଜାଭିତରକୁ ଯିବାକୁ ସାଧାରଣଭାବେ

ସୁଯୋଗ ଦିଆଯାଏ ନାହିଁ। ଏପରିକି ଗୀର୍ଜାର ପ୍ରାର୍ଥନାଗୃହର ଫଟୋଟିଏ ଉଠାଇବା ପାଇଁ ମଧ୍ୟ ଅନୁମତି ମିଳେନାହିଁ। ହେଲେ ସେଠାରେ ଥିବା ଗୀର୍ଜାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ହଜାରହଜାର ଲୋକଙ୍କ ସମାବେଶ ଆମକୁ ମୁଗ୍ଧ କରିଥିଲା। ସେଣ୍ଟ୍‌ଜନ୍ ଗୀର୍ଜାଟି ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା। ପରେ ଅତ୍ୟାଧୁନିକ ନିର୍ମାଣଶୈଳୀରେ ଏହାର ପୁନଃନିର୍ମାଣ କରାଯାଇଥିଲା।

ସେଣ୍ଟଜନ୍ ଗୀର୍ଜା ବୁଲା ସରିଲା ବେଳକୁ ସମୟ ଗୋଟାଏ ହୋଇଥିଲା। ଚନ୍ଦନ ବ୍ୟସ୍ତ ହୋଇପଡ଼ିଲା। ମୁଁ ତାକୁ ବୁଝାଇ କହିଲି, "ଏପରି ପରିସ୍ଥିତି ଉପୁଜିବ ବୋଲି ଜାଣି ମୁଁ ବିଦେଶଗସ୍ତରେ ଆସିଛି। ଯୋଉଠି ଯାହା ମିଳିବ, ତାକୁ ଖାଇବା ପାଇଁ ମୁଁ ମାନସିକସ୍ତରରେ ପ୍ରସ୍ତୁତ ଅଛି। ମୋ'ପାଇଁ ବ୍ୟସ୍ତ ହେବାର କିଛିନାହିଁ। ପଟାଟୋ ଚିପ୍ସ, ଫ୍ରୁଟ୍‌ଜୁସ୍ ହୋଇଗଲେ ମୋର ଚଳିଯିବ। ତମେ ସବୁ ଯାହା ଖାଇବା କଥା ଖାଅ।" ବୋହୂ ସାଲୋନୀ ଆସି କହିଲା, "ବାବା! ଏ ରେଷ୍ଟୁରାଣ୍ଟ୍‌ରେ ଗୋଟିଏ ପିଜା କର୍ଣ୍ଣର ଅଛି। ଯଦି ଚାହିବେ ମୁଁ ପିଜା ଆପଣଙ୍କ ପାଇଁ ନେଇଆସିବି। ପିଜାରେ କିଛି ଆମିଷ ପଦାର୍ଥ ମିଶିନଥିବା କଥା କହିବାରୁ ମୁଁ ତାକୁ ପିଜା ଆଣିବାକୁ କହିଲି।

ମଧ୍ୟାହ୍ନଭୋଜନପର୍ବ ଶେଷ କରି ଆମେ ୱାର୍ସ ସହର ଭିତରେ ଥିବା ନିଉଟାଉନ୍, ରୟାଲ୍‌ରୁଟ୍, ନ୍ୟାସ୍‌ନାଲ୍ ମ୍ୟୁଜିଅମ୍ ଓ ଶେଷରେ ସିଟିସେଣ୍ଟର୍ ଇତ୍ୟାଦି ସ୍ଥାନ ବୁଲିଲୁ। ସିଟିସେଣ୍ଟର୍‌ଟି ୱାର୍ସର ଏକ ସାଂସ୍କୃତିକ ଓ ବାଣିଜ୍ୟ କେନ୍ଦ୍ର ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲା। ସିଟିସେଣ୍ଟର୍ ମଧ୍ୟଭାଗରେ ଥିବା 'ଗ୍ରାଣ୍ଡ୍ ଥିଏଟର୍'ଟି ୟୁରୋପ୍‌ର ଅନ୍ୟତମ ବୃହତ୍ ଥିଏଟର୍‌ହଲ୍ ବୋଲି ଆମେ ଜାଣିବାକୁ ପାଇଲୁ। ସହରର ପଶ୍ଚିମପାଖର ଏକାଧିକ ଟାୱାର୍ ଏବଂ ପୂର୍ବପଟରେ ଅନେକ ଐତିହାସିକ କୀର୍ତ୍ତିସବୁ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଥିଲା। ସହରରେ ବହୁ ଦର୍ଶନୀୟ ସ୍ଥାନ ଥିଲେ ବି ଆମେ ଥକିଯାଇଥିବାରୁ ଆଉ ବୁଲିଲୁ ନାହିଁ। ତା'ଛଡ଼ା ଆମକୁ ପ୍ରାୟ ଚାରିଶହ କିଲୋମିଟର ପଥ ଫେରିବାକୁ ଥିବାରୁ ସନ୍ଧ୍ୟା ପୂର୍ବରୁ ଅଷ୍ଟ୍ରୋଭା ଫେରିବା ପାଇଁ ମୁଁ ଚାହିଥିଲି। ଚନ୍ଦନ ବୋଧେ ମୋ ମନର ଭାବନା ବୁଝିପାରି କହିଲା, "ଫେରିବା ପାଇଁ ବ୍ୟସ୍ତ ହେବାର କିଛି ନାହିଁ। ଆମର ଏଇଟା ନିତିଦିନିଆ ରାସ୍ତା। ଆମକୁ ଚାରିଘଣ୍ଟାରୁ କମ୍ ସମୟ ଲାଗିବ। ପାଞ୍ଚଟାବେଳେ ବାହାରିଲେ ବି ନଅଟା ପୂର୍ବରୁ ପହଞ୍ଚିଯାଇ ହେବ।"

ଯାହାହେଉ, ଆମେ ଅପରାହ୍ନ ପାଞ୍ଚଟାରେ ୱାର୍ସ ସହର ଛାଡ଼ି ଅଷ୍ଟ୍ରୋଭାରେ ରାତି ସାଢ଼େନଅଟାରେ ପହଞ୍ଚିଗଲୁ। ବାଟରେ ଗୋଟିଏ ପେଟ୍ରୋଲ୍ ପମ୍ପରେ ଆମକୁ ଅଧଘଣ୍ଟାଏ ବିଶ୍ରାମ ନେବାକୁ ପଡ଼ିଥିଲା। ସେଇ ସମୟରେ ଚନ୍ଦନ ଗାଡ଼ିରେ ତେଲ ପୂରାଇଥିଲା ଓ ଆମେ ସବୁ କିଛି ସ୍ନାକ୍ସ ସଂଗ୍ରହ କରିଥିଲୁ। ଦୁଇଦିନର ବୁଲାବୁଲି କରି ଫେରିବା ପରେ ସାଲୋନୀ ରାତିରେ କିଛି ଖାଇବା ପ୍ରସ୍ତୁତ କରିବା ସପକ୍ଷରେ ମୁଁ ନଥିଲି। କିନ୍ତୁ ସେ

ନଛୋଡ଼ବନ୍ଦା। ଅଳ୍ପସମୟ ମଧ୍ୟରେ ଭାତ, ଡାଲି, ସାଦା ଦରକାରି, ଭଜା ସବୁ ତିଆରି କରିଦେଲା। ଆଉ କାହାର କିଛି ହେଉ ବା ନହେଉ, ମୋ ପାଇଁ ସେ ରାତିର ଖାଇବା ଅତି ତୃପ୍ତିକର ଥିଲା। ସାଧାରଣ ଭାବରେ ରାତିରେ ମୁଁ ଭାତ ନଖାଉଥିଲେ ବି ସେଦିନ ରାତିରେ ଭାତ ଖାଇ ମୁଁ ସନ୍ତୋଷଲାଭ କରିଥିଲି।

# ୟୁରୋପ ଗସ୍ତର ଶେଷ ସୋପାନ

ଦୁଇଦିନକାଳ ବୁଲାବୁଲିରେ ମୁଁ ଥକିଯାଇଥିଲି। ରାତ୍ରିରେ ଉତ୍ତମ ଭୋଜନ ପରେ ନିଘୋଡ଼ ନିଦରେ ଶୋଇପଡ଼ିଲି। ସକାଳୁ ଉଠିଲାବେଳକୁ ଆଠଟା ବାଜିଯାଇଥିଲା। ଚନ୍ଦନ କେତେବେଳୁ ନିତ୍ୟକର୍ମ ସାରି ଅଫିସ୍ ଚାଲିଯାଇଥିଲା। ପ୍ରମଦା ଓ ସାଲୋନୀ ଡାଇନିଂ ଟେବୁଲ୍‌ରେ ବସି ଚା ପିଉଥିଲେ। ନାତୁଣୀ ଏଲିନା ଟି.ଭି. ପାଖରେ ବସି କାର୍ଟୁନ୍ ଦେଖିବାରେ ମଜ୍ଜିଯାଇଥିଲା। ମୁଁ ଶେଯରୁ ଉଠି ନିତ୍ୟକର୍ମ ସାରି ସେମାନଙ୍କ ସହିତ ଯୋଗଦେଲି। ଟେବୁଲ୍ ଉପରେ ବାରିପଦା ମୁଢ଼ି ଓ କଟକ ମିକ୍‌ଶ୍ଚର ଡବା ଥୁଆ ହୋଇଥିଲା। ସେସବୁ ଆମେ ଗଲାବେଳେ ସାଙ୍ଗରେ ନେଇ ଯାଇଥିଲୁ। ମତେ ଦେଖି କ'ଣ ଜଳଖିଆ ଖାଇବେ ବୋଲି ସାଲୋନୀ ପଚାରିଲା। ମୁଁ କହିଲି ସାମନାରେ ତ ମୁଢ଼ି, ମିକ୍‌ଶ୍ଚର୍ ଅଛି, ଆଉ ଜଳଖିଆ ତିଆରି କରିବା କ'ଣ ଦରକାର? ପତ୍ନୀ ପ୍ରମଦା ଆପତ୍ତି ଉଠାଇ କହିଲେ, "ତମେ ତ ସବୁ ଶେଷ କରିଦେବ ଆଉ ପିଲାଏ କ'ଣ ଖାଇବେ? କ'ଣ ନିଜେ ଖାଇବ ବୋଲି ସାଙ୍ଗରେ ମୁଢ଼ି, ମିକ୍‌ଶ୍ଚର୍ ଆଣିଥିଲ?" ମୁଁ ତାଙ୍କ କଥାର ଉଦ୍ଦେଶ୍ୟ ବୁଝିପାରିଲି। ବାସ୍ତବରେ ବିଦେଶରେ ପିଲାଏ ଭାରତୀୟ ଖାଦ୍ୟ ପାଇପାରୁ ନାହାନ୍ତି। ସେଥିପାଇଁ କେତେ କଷ୍ଟ କରି ଆମେ ସେସବୁ ସାଙ୍ଗରେ ନେଇଥିଲୁ। ମୁଁ ସାଲୋନୀକୁ କହିଲି, "ଠିକ୍ ଅଛି, କୋବି ମଟର ପକାଇ ଉପମା କର, ଖାଇବା।"

ସେଦିନ ସୋମବାର ହୋଇଥିବାରୁ ଅରୁଆଭାତ, ଘିଅରେ ବଘରା ମୁଗଡାଲ୍‌ମା ଓ ଆଳୁଭଜା ହୋଇଥିଲା। ଯେତେ ଅଧିକ ବ୍ୟୟ ହେଉ ପଛେ ଆମ ପିଲାମାନେ ଆମ ଘରର ଖାଇବା ଅଭ୍ୟାସକୁ ବଜାୟ ରଖିଥିଲେ। ସେଥିପାଇଁ ସୁଦୂର ଭିଏନା ସହରକୁ ଯାଇ ସଉଦାପତ୍ର ଓ ପରିବା ଆଣୁଥିଲେ।

ସନ୍ଧ୍ୟାରେ ଚନ୍ଦନ ଫେରିବା ପରେ ଏକାଠି ବସି ଗପ ଆରମ୍ଭ ହୋଇଗଲା। ଆମର ଭାରତ ଫେରିବାକୁ ଆଉ ମାତ୍ର ଚାରିଦିନ ବାକି ଥିଲା। ଶୁକ୍ରବାର ସକାଳେ ଭିଏନାରୁ ବିମାନରେ ଦିଲ୍ଲୀ ଆସିବା ପାଇଁ ଆଗରୁ ଟିକେଟ୍ ହୋଇଥିଲା। ଚନ୍ଦନ ପ୍ରସ୍ତାବ

ଦେଲା, "ଆଉ ସପ୍ତାହେ ରହିଗଲେ ହୁଅନ୍ତା ନାହିଁ ? ଦେଖୁଦେଖୁ ମାସେ ସମୟ କୁଆଡ଼େ ଚାଲିଗଲା, ଜଣା ପଡ଼ିଲାନାହିଁ। ତମେ ହଁ କଲେ ମୁଁ ଟିକେଟ୍ ବଦଳାଇଦେବି।" ପିଲାଙ୍କୁ ଛାଡ଼ିଆସିବା ପାଇଁ ଆମର ମଧ୍ୟ ଆନ୍ତରିକ ଇଚ୍ଛା ନଥିଲା; କିନ୍ତୁ କ'ଣ କରାଯିବ, ପରିସ୍ଥିତି ସହିତ ଖାପଖୁଆଇବାକୁ ତ ପଡ଼ିବ। ମୁଁ ତାଙ୍କୁ କହିଲି, "ଦେଖ ଆଉ କେଇମାସ ପରେ ତମେ ତ ଓଡ଼ିଶା ଯିବ, ଆଉ ଆମକୁ କାହିଁକି ମାୟାରେ ପକାଉଛ ? ଭୁବନେଶ୍ୱରରେ ଆମ ଛୋଟ ସଂସାରକୁ ଆମେ ଅନ୍ୟ ହାତରେ ଛାଡ଼ିଦେଇ ଆସିଛୁ। ସେଠାରେ କ'ଣ ହେଉଥିବ କିଏ ଜାଣେ ? ଆମ କଥାକୁ ଚନ୍ଦନ ଓ ସାଲୋନୀ ମାନିଗଲେ। ଆମେ ଯେଉଁଦିନ ଫେରିବୁ ବୋଲି ଟିକେଟ୍ ହୋଇଥିଲା, ସେଦିନ ଫେରିଆସିବୁ ବୋଲି ସ୍ଥିର ହେଲା।

## ଅଷ୍ଟ୍ରିଆରୁ ଲେଉଟାଣି

ଆମର ବିଦେଶରୁ ଫେରିବା ସମୟ ଯେତିକି ପାଖେଉଥିଲା, ଆମ ମନର ଉଦ୍‌ବେଗ ସେତିକି ବୃଦ୍ଧି ପାଉଥିଲା। ଆମେ ଦିଲ୍ଲୀରୁ ଗଲାବେଳେ କଥାବାର୍ତ୍ତା କରି ଆଉ ପାଞ୍ଚ କିଲୋ ଓଜନର ଜିନିଷ ବିନା ଶୁଳ୍କରେ ନେଇ ଯାଇଥିଲୁ। ଭାବିଥିଲୁ, ଫେରିଲାବେଳେ ସବୁଜିନିଷ ଖଲାସ ହୋଇଯାଇଥିବ, ଆଉ କାହାକୁ ଧରାଧରି କରିବାକୁ ପଡ଼ିବନାହିଁ। କିନ୍ତୁ ପିଲାମାନେ ଏତେ ପରିମାଣରେ ଜିନିଷପତ୍ର କିଣାକିଣି କରିଥିଲେ ଯେ ଆସିବା ସମୟର ଓଜନଠାରୁ ଫେରିବା ବେଳର ଓଜନ ବଳିଗଲା। ସେସବୁ ପ୍ୟାକିଂ କରିବା ପାଇଁ ଆମକୁ ଦୁଇଦିନ ସମୟ ଲାଗିଥିଲା।

ଭିଏନା ବିମାନବନ୍ଦରରୁ ପୂର୍ବାହ୍ନ ଗୋଟାଏବେଳେ ଦିଲ୍ଲୀକୁ ବିମାନ ଛାଡୁଥିଲା। ଅଷ୍ଟ୍ରିଆରୁ ଭିଏନା ଦୂରତ୍ୱ ପ୍ରାୟ ଚାରିଶହ କିଲୋମିଟର। ଆମ ହିସାବରେ ସେତିକି ରାସ୍ତା ଯିବାକୁ ହେଲେ ଅନ୍ତତଃ ଆଠଘଣ୍ଟା ସମୟ ଦରକାର। ସେଥିପାଇଁ ମୁଁ ବ୍ୟସ୍ତ ହୋଇଯାଇଥିଲି। ପୂର୍ବଦିନ ଅସରାଏ ବର୍ଷା ହୋଇଥିବାରୁ ଶୀତ ପ୍ରକୋପ ବଢ଼ିଯାଇଥିଲା। ମୁଁ ଚନ୍ଦନକୁ ପଚାରିଲି, "ଆମେ କ'ଣ ସନ୍ଧ୍ୟାରେ ଯାଇ ଭିଏନାରେ ରହିବା ? ସକାଳ ଏଗାରଟାରେ ଚେକିଂ ଥିବାରୁ ଏତେ ଶୀଘ୍ର କ'ଣ ଯାଇ ପହଞ୍ଚିହେବ ?" ଚନ୍ଦନ କହିଲା, "ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ସକାଳ ଛଅଟାବେଳେ ଘର ଛାଡ଼ିଲେ ଆମେ ଖୁସିରେ ଦଶଟା ବେଳ ସୁଦ୍ଧା ଭିଏନାରେ ପହଞ୍ଚିପାରିବୁ। ମୁଁ ସେହି ଅନୁସାରେ କାର୍ ବ୍ୟବସ୍ଥା କରିଛି। ସକାଳ ଛଅଟାରେ କାର୍ ଆସି ପହଞ୍ଚିବ। ଆମକୁ ଛଅଟା ପୂର୍ବରୁ ପ୍ରସ୍ତୁତ ହେବାକୁ ପଡ଼ିବ।"

ରାତିରେ ଭଲ ନିଦ ହେଲା ନାହିଁ। ବିଦେଶଗସ୍ତର ମୋହ ଭାଙ୍ଗି ଘରର ଚିତ୍ର ମନରେ ଉଙ୍କିମାରିଲା। କିପରି ସକାଳୁ ଉଠି ଯିବୁ, ଭିଏନାରୁ ବିମାନ ଚଢ଼ିବୁ; ଦିଲ୍ଲୀରେ କେତେବେଳେ ପହଞ୍ଚିବୁ, ଏଇସବୁ କଥା ମନକୁ ଭାରାକ୍ରାନ୍ତ କଲା। ସବୁ ବ୍ୟବସ୍ଥା ଠିକ୍

ଭାବରେ ହୋଇଥିଲେ ବି କେଜାଣି କାହିଁକି ମନ ଭିତରେ ଏକ ଅହେତୁକ ଆଶଙ୍କା ସୃଷ୍ଟି ହୋଇଥିଲା। ସବୁ କଥା ଭାବୁଭାବୁ ବିଳମ୍ବିତ ପ୍ରହରରେ ଅଳ୍ପସମୟ ପାଇଁ ନିଦ ହୋଇଯାଇଥିଲା। ମାତ୍ର ରାତି ତିନିଟାବେଳେ ନିଦ ଭାଙ୍ଗିଗଲା। ମୁଁ କିନ୍ତୁ ଆଉ ନଶୋଇ ନିତ୍ୟକର୍ମ ସାରିବାରେ ଲାଗିଲି। ପାଞ୍ଚଟାବେଳକୁ ଅନ୍ୟମାନେ ଉଠିଲେ। ସେତେବେଳକୁ ମୁଁ ବ୍ୟାଗେଜ୍‌ସବୁ ପ୍ରସ୍ତୁତ କରି ବାହାରେ ଥୋଇସାରିଥିଲି। ଛଅଟା ବାଜିବାକୁ ଦଶମିନିଟ୍ ବାକି ଥିଲାବେଳେ କାର୍ ଆସି ପହଞ୍ଚିଗଲା। ଘରେ ଲାଗିଥିବା ବୈଦ୍ୟୁତିକ ଯନ୍ତ୍ରରୁ ଆମକୁ କାର୍ ଆସିବାର ସୂଚନା ମିଳିଥିଲା। ମୁଁ ଭାବିଥିଲି, ନାତୁଣୀ ଏଲିନା ଉଠିନଥିବ, ସେତିକିବେଳେ ଚାଲିଗଲେ ମନ ବେଶି ଖରାପ ହେବନାହିଁ। କିନ୍ତୁ ଆମେ ଯିବାପୂର୍ବରୁ ସେ ଉଠି ଆମ ସାଙ୍ଗରେ ଆସିବାକୁ ବାହାରିଲା। ଗତ କେଇଦିନିର ରହଣି ଭିତରେ ତା'ସାଙ୍ଗରେ କେମିତି ଗୋଟିଏ ବନ୍ଧନରେ ଆମେ ବାନ୍ଧିହୋଇ ଯାଇଥିଲୁ। ମମତାର ସେ ବନ୍ଧନକୁ କାଟି ଆସିଲାବେଳେ ମନର କୋହକୁ ମୁଁ ସମ୍ଭାଳି ପାରିନଥିଲି। ଯେତେ ଚେଷ୍ଟାକଲେ ବି ଆଖିର ଲୁହକୁ ରୋକି ହୋଇନଥିଲା।

## ଭିଏନାରୁ ଫେରନ୍ତା ବିମାନଯାତ୍ରା

ଛଅଟା ବାଜିବାରୁ କାର୍ ଡ୍ରାଇଭର୍ ବ୍ୟସ୍ତ ହୋଇପଡ଼ିଲା। ସମୟର ଗତି ସହିତ ତାଳମିଳାଇ ଚଳିବାରେ ସେମାନେ ଅଭ୍ୟସ୍ତ। ସାମାନ୍ୟ ବିଳମ୍ବକୁ ସେମାନେ ସହଜରେ ଗ୍ରହଣ କରିପାରନ୍ତି ନାହିଁ। ମୁହଁରେ କିଛି ନକହିଲେ ବି ମୁଖମଣ୍ଡଳରୁ ତା'ର ପ୍ରତିକ୍ରିୟା ସ୍ପଷ୍ଟ ବାରି ହୋଇପଡୁଥିଲା। ନାତୁଣୀ କାନ୍ଦୁଥିବା ଅବସ୍ଥାରେ ମୁଁ ତାକୁ ଟିକିଏ ଗେଲକରି ଗାଡ଼ିରେ ବସିଗଲି। କିଛିବାଟ ଯିବାପର୍ଯ୍ୟନ୍ତ ମୁଁ ସ୍ୱାଭାବିକ ଅବସ୍ଥାକୁ ଫେରିପାରି ନଥିଲି। ଆଠଟାବେଳେ ଆମେ ଗୋଟିଏ ପେଟ୍ରୋଲ୍‌ପମ୍ପରେ କିଛିସମୟ ବିଶ୍ରାମ ନେଇ ପୁଣି ଆଗେଇଲୁ। ମୋର ମନେଅଛି, ଠିକ୍ ସାଢ଼େ ଦଶଟାବେଳେ ଆମ କାର୍ ଭିଏନା ବିମାନବନ୍ଦରର ପ୍ରବେଶଦ୍ୱାର ପାଖରେ ପହଞ୍ଚିଗଲା। ଲଗେଜ୍ ଚେକିଂ ପାଖରେ ପହଞ୍ଚି ଦେଖିଲାବେଳକୁ ଲଗେଜ୍‌ର ଓଜନ ପାଖାପାଖି ସତୁରୀ କିଲୋ ଥିଲା। ଆମର ଦୁର୍ଭାଗ୍ୟ, କାଉଣ୍ଟର୍‌ରେ ଯେଉଁ ମହିଳା ବସିଥିଲେ, ସେ ଷାଠିଏ କିଲୋରୁ ଅଧିକା ଲଗେଜ୍ ନେବାପାଇଁ ରାଜି ହେଲେନାହିଁ । ଆମେ ବାଧହୋଇ ସେଠାରେ ଆମ କ୍ୟାବିନ୍‌ବ୍ୟାଗ୍‌ରେ ଦଶକିଲୋ ଓଜନର ଲୁଗାପଟା ଓ ଅନ୍ୟାନ୍ୟ ଜିନିଷ ପୂରାଇ ବୋର୍ଡିଂ ପାସ୍ ନେଲୁ।

ବିମାନ ଛାଡ଼ିବାକୁ ଦୁଇଘଣ୍ଟା ବାକି ଥିଲା। ଆମର ସବୁକାମ ସରିଯାଇଥିଲା। ଚନ୍ଦନ ଚାହୁଁଥିଲା ବିମାନ ଛାଡ଼ିବା ପର୍ଯ୍ୟନ୍ତ ରହିବାକୁ। ଆମେ ତାକୁ ବୁଝାବୁଝି କରି ଫେରାଇଦେଲୁ।

ସାଲୋନୀ ଆମ ପାଇଁ ପରଟା ଓ ଭଜା ପ୍ୟାକିଂ କରି ଦେଇଥିଲା। ଆମେ ଲାଉଞ୍ଜରେ ବସି ସେତକ ଖାଇଲୁ। ଘଣ୍ଟାକ ପରେ ସିକ୍ୟୁରିଟି ଚେକିଂ ପାଇଁ ଘୋଷଣା ହେଲା। ଆମେ ଚେକିଂ କରାଇ ଭିତରକୁ ଗଲୁ। ସେଠାରେ ଯାହା ଦେଖିଲୁ ସେଥିରେ ମନରେ କିଛି ସମୟ ପାଇଁ ଭ୍ରମ ସୃଷ୍ଟିହେଲା। କାହା ପିଲା କାନ୍ଦୁଥିଲା ତ ଆଉକିଏ ବ୍ୟାଗେଜ୍ ରଖି ବାଥରୁମ୍‌ରେ ପଶିଥିଲା। ସବୁ ବିଶୃଙ୍ଖଳିତ ଅବସ୍ଥାରେ ଥିଲା। ତା'ରି ଭିତରେ ଦୁଇଟି ଚଉକି ଦଖଲ କରି ଆମେ ବସିଲୁ। ବସିବା ସମୟରେ ଏକ ତୁଳନାତ୍ମକ ଛବି ମୋ ମନଭିତରେ ଭାସିଉଠିଲା। ଦେଶ ହେଉ ବା ବିଦେଶ, ବିଶୃଙ୍ଖଳ ଆଚରଣ ଅଧିକାଂଶ ଭାରତୀୟଙ୍କ ଅସ୍ଥିମଜ୍ଜାରେ ପଶିଯାଇଥିଲା ଭଳି ମୋର ମନେହେଲା। ବିଦେଶରେ ଯେତେ ଜାଗା ବୁଲିବାର ସୁଯୋଗ ଜୁଟିଥିଲା, ସବୁ ଜାଗା ଶୃଙ୍ଖଳିତ ଓ ଲୋକଙ୍କ ବ୍ୟବହାର ମାର୍ଜିତ।

## ବିମାନ ଭିତରେ ପୁଣି ସାତଘଣ୍ଟା

ସ୍ଥାନୀୟ ସମୟ ଠିକ୍ ଗୋଟାଏବେଳେ ଲୁଫ୍‌ଥାନ୍‌ସା ବିମାନଟି ଭିଏନା ବିମାନବନ୍ଦରରୁ ଉଡ଼ାଣ ଆରମ୍ଭ କଲା। ସେତେବେଳକୁ ଭାରତୀୟ ସମୟ ସାଢ଼େପାଞ୍ଚଟା ହୋଇଥିଲା। ମୁଁ ହିସାବ କରି ଦେଖିଲି, ଇନ୍ଦିରାଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରରେ ପହଞ୍ଚିଲାବେଳକୁ ତାରିଖ ବଦଳିଯାଇଥିବ। ସେଠାରେ କଷ୍ଟମ୍ସ କ୍ଲିଅରାନ୍ସ ପାସ୍‌ପୋର୍ଟ ତନଖି ଇତ୍ୟାଦି କାମସାରି ବାହାରିଲା ବେଳକୁ ରାତି ଦୁଇଟାରୁ କମ୍ ହେବନାହିଁ। ସେଠାରୁ ଘରକୁ ଅତି କମ୍‌ରେ ଘଣ୍ଟାଏ ସମୟ ଲାଗିବ। ତା'ର ଅର୍ଥ ସେଦିନ ରାତିରେ ଆଉ ଶୋଇ ହେବନାହିଁ ଏବଂ ଆମ ପାଇଁ ଅନ୍ୟମାନଙ୍କୁ ମଧ୍ୟ ଉଜାଗର ରହିବାକୁ ପଡ଼ିବ। କିନ୍ତୁ ସମୟର ଗତିକୁ ବଦଳାଇବା ଆମ ସାଧ୍ୟରେ ନଥିବାରୁ ଚୁପ୍ ହୋଇ ବସିରହିବା ଛଡ଼ା ଅନ୍ୟ ଉପାୟ ନଥିଲା। ବିମାନ ଛାଡ଼ିବାପରେ ପରିଚାରିକାମାନେ ଯାତ୍ରୀମାନଙ୍କ ସେବାରେ ଲାଗିପଡ଼ିଲେ। ପ୍ରଥମେ ବିଭିନ୍ନପ୍ରକାର ପାନୀୟ ଦିଆଗଲା। ଆମେ ଅରେଞ୍ଜ୍ ଜୁସ୍ ନେଲୁ। ପାଖରେ ବସିଥିବା ଅଧିକାଂଶ ଯାତ୍ରୀ କିନ୍ତୁ ହ୍ୱିସ୍କି ଗ୍ଲାସ୍ ଧରିଲେ। ମୁଁ ଲକ୍ଷ୍ୟ କରୁଥିଲି, ବିମାନବନ୍ଦରରେ ମଦ୍ୟପାନ କରି ସେମାନେ ଯେପରି ଚରମ ତୃପ୍ତି ଲାଭ କରୁଥିଲେ। ମଦ ପାଇଁ ସେମାନଙ୍କର ବାରମ୍ବାର ଅନୁରୋଧରେ ପରିଚାରିକାମାନେ ଅସ୍ତବ୍ୟସ୍ତ ହୋଇଯାଉଥିଲେ।

ବିମାନରେ ଅଧିକାଂଶ ଭାରତୀୟ ଯାତ୍ରୀ ଥିବାରୁ ମଧ୍ୟାହ୍ନଭୋଜନରେ ଆମକୁ ଭାରତୀୟ ଖାଦ୍ୟ ପରିବେଷଣ କରାଯାଇଥିଲା। ବିମାନ ଚଢ଼ିବା ପୂର୍ବରୁ ପ୍ରାତଃଭୋଜନ ନାଁରେ ଆମେ ଯାହା ଖାଇଥିଲୁ, ସେଥିରେ ଆମର ଏକପ୍ରକାର ମଧ୍ୟାହ୍ନଭୋଜନ କାମ ଚଳିଯାଇଥିଲା। ତେବେ ଅନ୍ୟମାନଙ୍କ ଖାଇବା ଦେଖି ଆମେ ଦୁଇଟି ପ୍ୟାକେଟ୍ ନେଲୁ। ସେଥିରେ ଡେରାଡୁନ୍ ଚାଉଳରେ ତିଆରି ଫ୍ରାଏଡ୍ ରାଇସ୍ ଓ ପନିର୍‌ବଟର୍ ମସଲା ତରକାରି

ସାଙ୍ଗକୁ ଆଉଗୋଟିଏ ସବ୍‌ଜି ଥିଲା। ଆମେ ସେଥିରୁ ଅଳ୍ପ ଖାଇ କିଛିସମୟ ପାଇଁ ଶୋଇଯାଇଥିଲୁ। ବିମାନଭିତରେ ଏକକାଳୀନ ସାତଘଣ୍ଟା ସମୟ କିପରି କଟିବ ବୋଲି ମନରେ ଯେଉଁ ଆଶଙ୍କା ଥିଲା, ଏତେ ଭାରତୀୟଙ୍କ ସାଙ୍ଗରେ ସେ ଆଶଙ୍କା ଦୂର ହୋଇଯାଇଥିଲା।

## ଦିଲ୍ଲୀ ବିମାନବନ୍ଦରରେ କଷ୍ଟମ୍ସ କ୍ଲିଅରାନ୍ସ

ବିମାନ ଅବତରଣର ପୂର୍ବସୂଚନା ଦେଉଥିବା ପରିଚାରିକାଙ୍କ ଘୋଷଣାରେ ନିଦ ଭାଙ୍ଗିଗଲା। ବିମାନ ଅବତରଣ ପୂର୍ବରୁ ସେମାନେ ଆମକୁ ଗୋଟିଏ ଗୋଟିଏ ଫର୍ମ ଦେଇ ତାକୁ ପୂରଣ କରି ନିଜନିଜ ପାଖରେ ରଖିବାକୁ ଅନୁରୋଧ କଲେ। ଦିଲ୍ଲୀ ବିମାନବନ୍ଦର ବାହାରକୁ ଯିବାପୂର୍ବରୁ କଷ୍ଟମ୍ସ କ୍ଲିଅରାନ୍ସ ସମୟରେ ସେ ଫର୍ମଟି ଦାଖଲ କରିବା ପାଇଁ ସେମାନେ ଆମକୁ ପରାମର୍ଶ ଦେଇଥିଲେ। ତା'ପୂର୍ବରୁ ସେମାନେ ରାତିଭୋଜନ ଦେଇସାରିଥିଲେ।

ରାତି ଗୋଟାଏବେଳେ ଆମ ବିମାନ ଇନ୍ଦିରାଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରର ଭୂମି ସ୍ପର୍ଶ କଲା। ଓହ୍ଲାଇବା ପାଇଁ ଯାତ୍ରୀମାନେ ପ୍ରସ୍ତୁତ ହୋଇଗଲେ। କିନ୍ତୁ ଇଏ କ'ଣ! ବିମାନ ଭିତରେ ଏତେ କୋଳାହଳ ଓ ଠେଲାପେଲା କାହିଁକି? ଆମେ ତ ଏତେ ଜାଗା ବୁଲିଲୁ, କୋଉଠି ତ ଏପରି ଦୃଶ୍ୟ ଦେଖିବାକୁ ମିଳିନଥିଲା? ପଛରେ ଥିବା ଯାତ୍ରୀ ଅନ୍ୟକୁ ଠେଲି ଆଗକୁ ଯିବାପାଇଁ ଉଦ୍ୟମ କରିବା ଫଳରେ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା। ସାମାନ୍ୟ କେଇମିନିଟ୍ ଅପେକ୍ଷା କରିବାପାଇଁ କାହାରି ଧୈର୍ଯ୍ୟ ନଥିଲା। ଯାହାହେଉ, ଆମେ କିଛିସମୟ ଅପେକ୍ଷା କରି ବିମାନରୁ ବାହାରିଲୁ। ଟନେଲ୍ ମୁହଁରେ ହୁଇଲ୍‌ଚେୟାର୍ ଧରି ପୋର୍ଟର୍‌ମାନେ ଅପେକ୍ଷା କରିଥିଲେ। ମୁଁ ସେଥିରୁ ଗୋଟିକରେ ପ୍ରମଦାକୁ ବସାଇ ବାହାରକୁ ଆସିଲି।

ବାହାରେ କଷ୍ଟମ୍ସ କ୍ଲିଅରାନ୍ସ ପାଇଁ ସେତେବେଳକୁ ଲମ୍ବା ଧାଡ଼ି ଲାଗିଯାଇଥିଲା। ମୁଁ ଭାବିଲି, ବୋଧହୁଏ ସେଠାରେ କାମ ସାରିବାକୁ ଘଣ୍ଟାଏରୁ ଅଧିକ ସମୟ ଲାଗିଯିବ। କିନ୍ତୁ ହୁଇଲ୍‌ଚେୟାର୍ ନେଇ ଯାଉଥିବା ପୋର୍ଟର୍ ଆମକୁ ସାହାଯ୍ୟ କଲା। ସେ କହିଲା, "ଆପଣମାନଙ୍କର ଲାଇନ୍‌ରେ ଛିଡ଼ାହେବାର ଆବଶ୍ୟକତା ନାହିଁ। ଶାରୀରିକ ଭିନ୍ନକ୍ଷମ ଲୋକଙ୍କ ପାଇଁ ପୃଥକ୍ କାଉଣ୍ଟର୍ ରହିଛି। ସେଠାରେ ଶୀଘ୍ର କାମ ସରିଯିବ। ଆପଣ ମୋ ପଛରେ ଆସନ୍ତୁ।" ବାସ୍ତବରେ ସେ କାଉଣ୍ଟର୍‌ରେ ଭିଡ଼ ନଥିଲା। ତେବେ ସେଠାରେ ବସିଥିବା ଅଧିକାରୀ ଅଯଥାରେ କେତେକ ପ୍ରଶ୍ନ ପଚାରି ଆମର ସମୟ ନଷ୍ଟ କରିଥିଲେ। ଆମେ ବିଦେଶରେ କୁଆଡ଼େ କୁଆଡ଼େ ଯାଇଥିଲୁ, ସାଙ୍ଗରେ କ'ଣ କ'ଣ ସବୁ ଆଣିଛୁ,

ଫରେନ୍ ଏକ୍ସଚେଞ୍ଜ୍ କେତେ ବଳିଛି, ବିଦେଶରେ ଥିଲାବେଳେ ଆମେ କୋଉ ଡାଏରି ଫାର୍ମ କିମ୍ବା ପୋଲଟ୍ରି ଫାର୍ମକୁ ବୁଲିବାକୁ ଯାଇଥିଲୁ କି ନାହିଁ ଇତ୍ୟାଦି କଥା ପଚାରି ଆମ ମନକୁ ଭାରାକ୍ରାନ୍ତ କରିଦେଇଥିଲେ। ଶେଷରେ ମୁଁ ତାଙ୍କୁ ଯେତେବେଳେ ମୋର ପରିଚୟ ଦେଇ କହିଲି, ମୁଁ ଜଣେ ପୁରୁଖା ସାମ୍ବାଦିକ ଓ ବୟସ୍କ ନାଗରିକ, ପତ୍ନୀଙ୍କୁ ନେଇ ପିଲାମାନଙ୍କ ପାଖକୁ ଯାଇଥିଲି, ସେଠାରୁ ଫେରୁଛି; ଆଉ ସାଙ୍ଗରେ କ'ଣ ଆଣିଥିବି ବୋଲି ଆପଣ ଭାବୁଛନ୍ତି ?" ସେ କିଛିକ୍ଷଣ ମୋ ମୁହଁକୁ ଚାହିଁ ପାସ୍‌ପୋର୍ଟରେ ମୋହର ଲଗାଇଥିଲେ।

କଷ୍ଟମ୍ସ କ୍ଲିଅରାନ୍ସ କରି ଆସିଲାବେଳକୁ କନ୍‌ଭେୟର୍ ବେଲ୍ଟରେ ବ୍ୟାଗେଜ୍ ଆସିଯାଇଥିଲା। ମୁଁ ପୋର୍ଟର୍‌କୁ ବୋର୍ଡ଼ିଂ ପାସ ଦେଇ ସେଗୁଡ଼ିକ ସଂଗ୍ରହ କରିବାକୁ କହିଲି। ବାଟରେ ଅସିଲାବେଳେ ଫରେନ୍ ଏକ୍ସଚେଞ୍ଜ୍ କାଉଣ୍ଟର୍ ପଡ଼ିଲା। ଆମ ପାଖରେ କିଛି ୟୁରୋ ବଳିଯାଇଥିଲା। ମୁଁ ସେଠାରେ ସେସବୁ ଭଙ୍ଗାଇ ଭାରତୀୟ ମୁଦ୍ରା ସଂଗ୍ରହ କଲି। ବାହାରକୁ ଆସି ଦେଖିଲାବେଳକୁ ବିରବଲ୍ ସହିତ ଡକ୍ଟର୍ ଜୟଚନ୍ଦ୍ର ଦାସ ଆମକୁ ନେବାପାଇଁ ଅପେକ୍ଷା କରିଥିଲେ। ରାତ୍ରିର ବିଳମ୍ବିତ ପ୍ରହରରେ ବିମାନ ପହଞ୍ଚିବାର ଥିବାରୁ ତାଙ୍କୁ ବିମାନବନ୍ଦରକୁ ନଆସିବା ପାଇଁ ମୁଁ ଅନୁରୋଧ କରିଥିଲି। କେବଳ ଡ୍ରାଇଭର୍ ସହିତ କାର୍ ପଠାଇଦେଲେ କାମ ଚଳିଯିବ ବୋଲି କହିଥିଲି। ମାତ୍ର ସେ ଆମ କଥା ନଶୁଣି ନିଜେ ଚାଲିଆସିଥିଲେ।

ଘରେ ପହଞ୍ଚିଲାବେଳକୁ ରାତି ତିନିଟା ବାଜିଯାଇଥିଲା। ଆମେ ପହଞ୍ଚିବା ପରେ ମୀନୁ ଓ ପଲୁ ଉଠିପଡ଼ିଲେ। ଏତେ ରାତିରେ ପରିବାରର ସମସ୍ତେ ଉଠିବାରୁ ଆମକୁ ଟିକେ ଅଡୁଆ ଅଡୁଆ ଲାଗୁଥିଲା। କିନ୍ତୁ କ'ଣ କରାଯିବ ? ଅକାଳେ ନିୟମୋନାସ୍ତି ଭଳି ସବୁକଥାକୁ ଗ୍ରହଣ କରିବା ଛଡ଼ା ଆମ ପାଖରେ ଆଉ ଉପାୟ କିଛି ନଥିଲା। ଅଳ୍ପ ସମୟ ମଧ୍ୟରେ ଫ୍ରେସ୍ ହୋଇ ଆମେ ଶୋଇଯାଇଥିଲୁ। ବିମାନରେ ରାତ୍ରିଭୋଜନ ସାରିଦେଇଥିବାରୁ ଖାଇବାର ଆବଶ୍ୟକତା ପଡ଼ିନଥିଲା।

## ନୂଆଦିଲ୍ଲୀରେ ଦୁଇଦିନ ରହଣି

ଆମେ ଶନିବାର ଭୋର୍‌ରୁ ଘରେ ପହଞ୍ଚିଥିଲୁ। ଦିଲ୍ଲୀରେ ଦୁଇଦିନ ବିଶ୍ରାମ ପରେ ଭୁବନେଶ୍ୱର ଫେରିବା ପାଇଁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା ଓ ସେହି ଅନୁଯାୟୀ ଦିଲ୍ଲୀରୁ ଭୁବନେଶ୍ୱରକୁ ବିମାନ ଟିକେଟ୍ କଟାଯାଇଥିଲା। ରାତିଅନିଦ୍ରା ଯୋଗୁଁ ସକାଳୁ ଉଠୁଉଠୁ ନଅଟା ପାଖାପାଖି ହୋଇଯାଇଥିଲା। ନିତ୍ୟକର୍ମ ସାରି ବ୍ରେକ୍‌ଫାଷ୍ଟ ଟେବୁଲ୍‌କୁ ଆସିବାପରେ ଗପ ଆରମ୍ଭ ହୋଇଗଲା। ଦୁଇଦିନର ପ୍ରୋଗ୍ରାମ୍ କ'ଣ ହେବ, କୁଆଡ଼େ କୁଆଡ଼େ ଯାଇହେବ, ସେ ବିଷୟରେ ଚର୍ଚ୍ଚା ହେଲା। କଥା ହେଲା, ଦକ୍ଷିଣରେ ଦିଲ୍ଲୀ

ହାଟ, ରବିବାର ସକାଳେ ନଏଡ଼ାର 'ମଲ୍' ଓ ସନ୍ଧ୍ୟାରେ ସରୋଜାନୀ ମାର୍କେଟ୍, ରାତିରେ ସାଉଥ୍ ଏକ୍ସଟେନ୍ସନ୍‌ରେ ଥିବା ଚାଇନିଜ୍ ରେଷ୍ଟୁରାଣ୍ଟ୍‌ରେ ଡିନର୍ ଓ ରେଷ୍ଟ୍। ପରଦିନ ସକାଳେ ଆଠଟାରେ ଦିଲ୍ଲୀ ବିମାନବନ୍ଦର ଅଭିମୁଖେ ଯାତ୍ରା।

ଆମେ ଦିଲ୍ଲୀ ଗଲେ ସାଧାରଣତଃ କିଛି ଗୃହ ଉପକରଣ ସେଠାରୁ କିଣିଥାଉ। ସେଠାରେ ଯେ ସବୁ ଜିନିଷ ଶସ୍ତା, ସେକଥା ନୁହେଁ, କିନ୍ତୁ ଦିଲ୍ଲୀ ମାର୍କେଟରେ ମିଳୁଥିବା ଲୁଗାପଟା, ବେଡ୍‌ସିଟ୍ ଓ ଅନ୍ୟାନ୍ୟ ପଦାର୍ଥ ଭୁବନେଶ୍ୱରରେ ମିଳୁନଥିଲା। ଏବେ ଅବଶ୍ୟ ଭୁବନେଶ୍ୱରରେ ବିଗ୍‌ବଜାର ଖୋଲି କିଛି ପରିମାଣରେ ସେ ଅଭାବ ଦୂର ହେଲାଣି।

ସେଦିନ ଶନିବାର ଥିବାରୁ ମୋର ଭୋଜନ ପାଇଁ ଚିନ୍ତା ନଥିଲା। ଅନ୍ୟମାନେ ଲଞ୍ଚ୍ ସାରି ସାମାନ୍ୟ ବିଶ୍ରାମ ନେବାପରେ ଆମେ ଚାରିଟାବେଳେ ଦିଲ୍ଲୀହାଟ ଆଡ଼େ ଚାଲିଲୁ। ସେତେବେଳେ ଦିଲ୍ଲୀରେ ପାଗ ଖୁବ୍ ଭଲ ଥିଲା। ବର୍ଷା ଛାଡ଼ିଯାଇଥିଲା ଓ ଶୀତ ପଡ଼ିନଥିଲା। ବୁଲାବୁଲି କରିବା ପାଇଁ ବେଶ୍ ଅନୁକୂଳ ଥିଲା। ଦିଲ୍ଲୀହାଟରେ ଅନେକସମୟରେ ବିଭିନ୍ନ ରାଜ୍ୟର ହସ୍ତତନ୍ତ ଓ ହସ୍ତଶିଳ୍ପ ପଦାର୍ଥର ମେଳା ଲାଗେ। ସାଧାରଣ ସମୟରେ ଯେଉଁ ଜିନିଷ ମିଳେନାହିଁ, ମେଳାରୁ ସେସବୁ ମିଳିଥାଏ। ଆମେ ଗଲାବେଳକୁ ରାଜସ୍ଥାନ ରାଜ୍ୟର ମେଳା ଥିଲା। ରାଜସ୍ଥାନର ଶିଳ୍ପଖ୍ୟାତି କେବଳ ଭାରତବର୍ଷ କାହିଁକି, ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରସିଦ୍ଧିଲାଭ କରିଛି। ସେହିଭଳି ରାଜସ୍ଥାନର ହସ୍ତଶିଳ୍ପପଦାର୍ଥ ମଧ୍ୟ ବେଶ୍ ଆକର୍ଷଣୀୟ। ବୁଲାବୁଲି ଭିତରେ କିଛି କିଣାକିଣି ହେଲା। ଦିଲ୍ଲୀ ହାଟକୁ ଗଲେ ସାଧାରଣଭାବେ ସେଠାରେ ରାତ୍ରିଭୋଜନ ହୋଇଥାଏ। ହାଟରେ ବିଭିନ୍ନ ରାଜ୍ୟର ଖାଇବା ଜିନିଷ ମିଳେ। ସେଥିପାଇଁ ଆଇ.ଟି.ଡି.ସି. (ଭାରତୀୟ ପର୍ଯ୍ୟଟନ ଉନ୍ନୟନ ନିଗମ) ପକ୍ଷରୁ ଷ୍ଟଲ୍‌ସବୁ ଯୋଗାଇ ଦିଆଯାଇଥିଲା। ସେଇ ଅନୁଯାୟୀ ଓଡ଼ିଶାର ସ୍ୱତନ୍ତ୍ର ଖାଦ୍ୟ ପରିବେଷଣ ପାଇଁ ଗୋଟିଏ ଷ୍ଟଲ୍ ମିଳିଥିଲା ଏବଂ 'ବ୍ଲାକ୍ ପାଗୋଡ଼ା' ନାମରେ ସେଠାରେ ଗୋଟିଏ ରେଷ୍ଟୁରାଣ୍ଟ୍ ଖୋଲିଥିଲା। ପ୍ରଥମ କେତେଦିନ ରେଷ୍ଟୁରାଣ୍ଟ୍‌ଟି ଭଲ ଚାଲିଥିଲା। ଓଡ଼ିଶାର ଲୋକେ ଖୋଜିଖୋଜି ସେ ରେଷ୍ଟୁରାଣ୍ଟ୍‌କୁ ଯାଉଥିଲେ। କିନ୍ତୁ କେଜାଣି କେଉଁ ଅଜଣା କାରଣରୁ ରେଷ୍ଟୁରାଣ୍ଟ୍ ଖୋଲିଥିବା ଉଦ୍ୟୋଗୀ ସେଥିରେ ଆଉ ଆଗ୍ରହ ପ୍ରକାଶ କଲେ ନାହିଁ ଏବଂ ନିଜର ସୁବିଧା ପାଇଁ ଷ୍ଟଲ୍‌ଟିକୁ ଜଣେ ଅଣଓଡ଼ିଆ ବ୍ୟବସାୟୀଙ୍କୁ ଅଧିକ ଭଡ଼ାରେ ଦେଇଦେଲେ। ଫଳରେ ଦିଲ୍ଲୀହାଟରେ ଆଉ ଓଡ଼ିଶାର ଖାଦ୍ୟ ଦେଖିବାକୁ ମିଳିଲା ନାହିଁ।

ଆମେ ଏପରି ପରିବର୍ତ୍ତନ ସମ୍ପର୍କରେ ସଚେତନ ନଥିଲୁ। ପୂର୍ବଭଳି ଓଡ଼ିଆ ଖାଦ୍ୟ ଖାଇବା ଆଶାରେ ଆମେ 'ବ୍ଲାକ୍-ପାଗୋଡ଼ା' ଆଡ଼େ ମୁହାଁଇଲୁ। କିନ୍ତୁ ସେଠାରେ ପହଞ୍

ଯାହା ଦେଖିଲୁ ସେଥିରେ ମନ ଭାଙ୍ଗିଗଲା। ରେଷ୍ଟୁରାଣ୍ଟ୍ ଆଗରେ ଥିବା ସାଇନ୍‌ବୋର୍ଡ ସେଠାରୁ ଉଠିଯାଇଥିଲା। କାଉଣ୍ଟରଠାରୁ ଆରମ୍ଭ କରି ରୋଷେଇ ପର୍ଯ୍ୟନ୍ତ କେଉଁଠି ଓଡ଼ିଆ ଭାଷା କହିପାରୁଥିବା ଯୁବକମାନଙ୍କୁ ଦେଖିବାକୁ ମିଳିନଥିଲା। ଅନ୍ୟ ଯେଉଁମାନେ ସେଠାରେ କାରବାର ହେଉଥିଲେ ସେମାନେ ଓଡ଼ିଆ ଭାଷା କିଛି ବୁଝିପାରୁନଥିଲେ। ସେଠାରୁ ନିରାଶ ହୋଇ ଆମେ ପଶ୍ଚିମବଙ୍ଗ ଷ୍ଟଲ୍‌ଆଡ଼େ ଯାଇ ଚାରୋଟି ଚଉକି ଦଖଲ କଲୁ। ସେଠାରେ ଭାତ, ମାଛଝୋଳ, ପୁରୀ, ଆଳୁଦମ୍ ସାଙ୍ଗକୁ ସନ୍ଦେଶ ଓ ମିଠାଦହିସବୁ ମିଳୁଥିଲା। ପାଖରେ ଥିବା ଦିଲ୍ଲୀ ଷ୍ଟଲରେ ବିଭିନ୍ନ ପ୍ରକାରର ଆଇସ୍‌କ୍ରିମ୍ ଥିଲା। ଆମର ସେଦିନ ସନ୍ଧ୍ୟାରେ ଖାଇବା ସିନା ହୋଇଗଲା, କିନ୍ତୁ ସେଠାରୁ ଓଡ଼ିଆ ଷ୍ଟଲ୍ ଉଠିଯାଇଥିବାରୁ ମନରେ ଯେଉଁ କ୍ଷୋଭ ଜାତ ହୋଇଥିଲା, ତାହା ବହୁଦିନ ପର୍ଯ୍ୟନ୍ତ ରହିଯାଇଥିଲା। ଶନିବାର ଯୋଗୁଁ ମୁଁ ଯାଇ ଘରେ ଖାଇଥିଲି।

ରବିବାର ସକାଳ, ଦିଲ୍ଲୀବାସୀଙ୍କ ପାଇଁ 'ଫ୍ରି-ଫର୍-ଅଲ୍', ଅର୍ଥାତ୍ ସମସ୍ତେ ମନଖୁସିରେ କାରବାର ହୁଅନ୍ତି। ଅଫିସ୍ କିମ୍ବା ଅନ୍ୟ ସ୍ଥାନକୁ ଯିବାରେ ତରବର ନଥାଏ। ସକାଳୁ ଉଠି ଚା'ଟେବୁଲ୍‌ରେ ଗପ ଜମିଲା। ଚା' ସାଙ୍ଗକୁ କେତେ ରକମର ଫା'। ତା'ରି ଭିତରେ ଆମର ୟୁରୋପଗସ୍ତର ଅନୁଭୂତି କଥା ମଧ୍ୟ ପଡ଼ିଲା। ବାହାର ଦେଶମାନଙ୍କରେ ଶାରୀରିକ ଭିନ୍ନକ୍ଷମଙ୍କ ପାଇଁ ସବୁଠାରେ କିପରି ସ୍ୱତନ୍ତ୍ର ବ୍ୟବସ୍ଥା, ସେମାନେ ବ୍ୟବହାର କରୁଥିବା କାର୍ ପାର୍କିଂ ପାଇଁ ସଂରକ୍ଷିତ ସ୍ଥାନଠାରୁ ଆରମ୍ଭ କରି ମାର୍କେଟ୍, ବିମାନବନ୍ଦରରେ ଲୋକେ କିପରି ସେମାନଙ୍କୁ ସମ୍ମାନ ଦିଅନ୍ତି, ସେମାନଙ୍କ ସୁବିଧା ପ୍ରତି ଅଧିକ ଧ୍ୟାନ ଦିଅନ୍ତି, ସେକଥା ଶୁଣି ଡାକ୍ତର ଦାସ ଓ ମିନୁ ଆଶ୍ଚର୍ଯ୍ୟ ହୋଇଯାଇଥିଲେ।

ଚା'ପର୍ବ ସରୁସରୁ ଦଶଟା ବାଜିଯାଇଥିଲା। ସେଦିନ ଖରାବେଳେ ଆମର ନଏଡ଼ା ଅଞ୍ଚଳ ବୁଲିଯିବାର ଥିଲା। ଆମେ ଜଳଖିଆ ଖାଇ ଏଗାରଟାବେଳକୁ ବାହାରିଲୁ। ନଏଡ଼ାର ମାର୍କେଟ ସେଣ୍ଟରର ମାକ୍‌ଡୋନାଲ୍ଡ ରେଷ୍ଟୁରାଣ୍ଟ୍‌ରେ ମଧ୍ୟାହ୍ନଭୋଜନ ହେଲା। ଖରାବେଳେ ଆମେ ଘରକୁ ନଫେରି ସରୋଜିନୀମାର୍କେଟ୍ ଗଲୁ। ମାର୍କେଟ୍‌ରୁ କିଛି କିଣାକିଣି ଥିଲା। ସନ୍ଧ୍ୟାରେ ସାଉଥ୍ ଏକ୍ସଟେନ୍‌ସନ୍‌ରେ ଥିବା 'ଆଇଚ୍' ରେଷ୍ଟୁରାଣ୍ଟ୍‌ରେ ରାତ୍ରିଭୋଜନ ସାରି ଘରେ ପହଞ୍ଚିଲାବେଳକୁ ରାତି ଦଶଟା ହୋଇଥିଲା। ପ୍ରାୟ ବାରଘଣ୍ଟା ବୁଲାବୁଲିରେ ଆମେ ଥକିଯାଇଥିଲୁ। ବିଛଣା ଧରୁଧରୁ ନିଦ ହୋଇଗଲା।

## ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ

ସୋମବାର ସକାଳେ ଏଗାରଟାବେଳେ ଦିଲ୍ଲୀରୁ ଭୁବନେଶ୍ୱରକୁ ଇଣ୍ଡିଆନ୍ ଏୟାର୍‌ଲାଇନ୍ସ୍ ବିମାନ ଛାଡ଼ିବାକୁ ଥିବାରୁ ଆମକୁ ସକାଳୁ ପ୍ରସ୍ତୁତ ହୋବାକୁ ପଡ଼ିଲା।

ନିୟମ ଦୃଷ୍ଟିରୁ ବିମାନ ଛାଡ଼ିବାର ଦୁଇଘଣ୍ଟା ପୂର୍ବରୁ ଲଗେଜ୍ ଚେକିଂ ବ୍ୟବସ୍ଥା ଥିବାରୁ ଆମେ ଆଠଟାବେଳେ ଘର ଛାଡ଼ିଲୁ। ଆମର ଲଗେଜ୍ କିଛି ଅଧିକ ଥିଲା। କାଳେ ବିମାନବନ୍ଦର ଅଧିକାରୀମାନେ ଆପତ୍ତି ଉଠାଇବେ, ସେଥିପାଇଁ ମନରେ ଶଙ୍କା ଥିଲା। କିନ୍ତୁ ସୌଭାଗ୍ୟକୁ ସେଦିନ ସକାଳେ ଓଡ଼ିଶା କ୍ୟାଡରର ଦୁଇଜଣ ଆଇ.ଏ.ଏସ୍ ଅଫିସର୍ ଦିଲ୍ଲୀରୁ ଭୁବନେଶ୍ୱର ଫେରୁଥିଲେ। ତାଙ୍କର ଖୁବ୍ କମ୍ ଓଜନର ବ୍ୟାଗେଜ୍ ଥିଲା। ତାଙ୍କୁ ଛାଡ଼ିବା ପାଇଁ ଦିଲ୍ଲୀରେ ଥିବା ଓଡ଼ିଶାଭବନର ଜଣେ ଅଫିସର୍ ବିମାନବନ୍ଦର ଆସିଥିଲେ। ସେ ମୋର ଜଣାଶୁଣା ଥିଲେ। ମୁଁ ତାଙ୍କୁ ଆମର ଅଧିକ ଲଗେଜ୍ ଥିବାକଥା କହିଲି। ଦୁଇଜଣ ଅଫିସରଙ୍କ ଲଗେଜ୍ ସହିତ ଆମ ଲଗେଜ୍ ମିଶିଯିବାରୁ ଆଉ ସମସ୍ୟା ରହିଲା ନାହିଁ। ଆମେ ସେ ଅଫିସରଙ୍କୁ କୃତଜ୍ଞତା ଜଣାଇ ସିକ୍ୟୁରିଟି ଚେକିଂ ପାଇଁ ଭିତରେ ପଶିଲୁ।

ବିଦେଶ ରାଷ୍ଟ୍ରରେ ବଡ଼ବଡ଼ ବିମାନରେ ଅଧିକସମୟ ଯାତ୍ରା କରିବା ପରେ ଦିଲ୍ଲୀରୁ ଭୁବନେଶ୍ୱର ଯାତ୍ରା କିଛି ଜଣାପଡ଼ିଲା ନାହିଁ। ଆମେ ପ୍ୟାକ୍ ଲଞ୍ଚ୍ ଖାଉଖାଉ ବିମାନ ବିଜୁପଟ୍ଟନାୟକ ବିମାନବନ୍ଦରରେ ପହଞ୍ଚିଯାଇଥିଲା। ବିମାନରୁ ଓହ୍ଲାଇଲାବେଳେ ବାହାରେ ବର୍ଷା ହୋଇଥିଲା। ଆମେ କୌଣସିମତେ ଆସି ଟ୍ରାଞ୍ଜିଟ୍‌ବସ୍‌ରେ ବସିଗଲୁ। ଭୁବନେଶ୍ୱର ବିମାନବନ୍ଦରରେ ଲଗେଜ୍ ସଂଗ୍ରହ କରିବା ସବୁଠାରୁ କଷ୍ଟଦାୟକ ବ୍ୟାପାର। ମନ୍ତ୍ରୀ, ଯନ୍ତ୍ରୀ, ବଡ଼ ପ୍ରଶାସକମାନଙ୍କର ଲଗେଜ୍ ନେବାପାଇଁ ସିନା ସରକାରୀ ତହବିଲ୍‌ରୁ ଦରମା ପାଇ ଲୋକେ ଆସିଥାନ୍ତି, ହେଲେ ସାଧାରଣ ଲୋକଙ୍କୁ ଅଧଘଣ୍ଟାକାଳ ଅପେକ୍ଷା କରିବାକୁ ପଡ଼ିଥାଏ।

ଯାହାହେଉ, କନ୍‌ଭେୟର୍ ବେଲ୍ଟରୁ ବ୍ୟାଗ୍ ଦୁଇଟି ଆଣି ଆମେ ବାହାରକୁ ଆସିଲୁ। ବାହାରେ ସେଇ ପୁରୁଣା ଦୃଶ୍ୟ। ପାସେଞ୍ଜର୍ ନେବା ପାଇଁ ପୁରୁଣା ଆମ୍ବାସାଡର୍ ଗାଡ଼ି ଆଣିଥିବା କିଛି ଟ୍ୟାକ୍ସି ଡ୍ରାଇଭରଙ୍କ ଭିତରେ କଳିତକରାଳ। ଦୂରରାସ୍ତା ଯିବାପାଇଁ ସେମାନଙ୍କ ଭିତରେ ପ୍ରତିଯୋଗିତା। କିଛି ସମୟ ଅପେକ୍ଷା କଲାପରେ ଆମେ ଗୋଟିଏ ଟ୍ୟାକ୍ସି ଧରି ଘରକୁ ଫେରିଲୁ। ଘର ଯେତିକି ପାଖେଇଉଥିଲା, ଆମର ଭ୍ରମଣର ଅନୁଭୂତି ସେତିକି ବିସ୍ମୃତିଗର୍ଭକୁ ଚାଲିଯାଉଥିଲା ଓ ଘରର ଦୃଶ୍ୟ ଆଖିଆଗରେ ଭାସିଉଠୁଥିଲା।

# ତୃତୀୟ ପର୍ଯ୍ୟାୟ

## ଯୁକ୍ତରାଷ୍ଟ୍ର ଆମେରିକା ଭ୍ରମଣ

ଜର୍ମାନୀର ବର୍ଲିନ ସହରରେ ବୁଲିଲା ବେଳେ ଆମେରିକା ଯିବା ପାଇଁ ମୋ ମନ୍‌ର ଅଭିଳାଷ ରାଜେନ୍ଦ୍ରଭାଇ (ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ)ଙ୍କ ଆଗରେ ବ୍ୟକ୍ତ କରିଥିଲି। ପୃଥିବୀର ବଡ଼ ବଡ଼ ଦେଶ ବୁଲିଥିଲେ ମଧ୍ୟ ଆମେରିକା ନ ଗଲେ ବିଶ୍ୱଭ୍ରମଣ ଅଧୁରା ରହିଯିବ ବୋଲି ମୁଁ ସେଦିନ ତାଙ୍କୁ କହିଥିଲି। ସେ ମତେ ଆଶ୍ୱାସନା ଦେଇ କହିଥିଲେ, "ଇଏ ଗୋଟାଏ କଥା, ତମେ ଯେଉଁଦିନ ଚାହିବ ସେଦିନ ଆମେରିକା ଯିବ, ସେ ବ୍ୟବସ୍ଥା ମୁଁ କରିଦେବି।"

ବିଦେଶ ଗସ୍ତରୁ ଫେରି ସଂସାର ଜଞ୍ଜାଳ ଭିତରେ ଆମେରିକା ଯିବା କଥା ମୁଁ ଏକ ପ୍ରକାର ଭୁଲି ଯାଇଥିଲି। ଅତୀତରେ ଆମେରିକା ଯିବା ପାଇଁ ଏକାଧିକ ସୁଯୋଗ ମିଳିଥିଲେ ବି ମୁଁ ସେସବୁର ସଦ୍‌ବିନିଯୋଗ କରିପାରି ନ ଥିଲି। ଆମ ପରିବାରର ଅନ୍ୟୁନ ଦଶଜଣ ଆମରିକାର ବିଭିନ୍ନ ସ୍ଥାନରେ ଉଚ୍ଚ ପଦପଦବୀରେ ଅବସ୍ଥାପିତ। ଆମ ପଡ଼ୋଶୀ ଗ୍ରାମର ବିଶିଷ୍ଟ ପଶୁଚିକିତ୍ସାବିତ୍ ଡକ୍ଟର କୃଷ୍ଣମୋହନ ଦାସ ଗତ ପଚାଶବର୍ଷରୁ ଅଧିକ କାଳ ଧରି ଆମେରିକାରେ ବସବାସ କରୁଥିଲେ। ମୋର କଲେଜ ବନ୍ଧୁ ଡକ୍ଟର ଦିଗମ୍ବର ମିଶ୍ର ଚାରିଦଶନ୍ଧି ହେଲା ଆମେରିକାରେ ଅଧ୍ୟାପନାରତ ଅଛନ୍ତି। ଏ ସମସ୍ତଙ୍କ ପାଖରୁ ଏକାଧିକ ଥର ଆମେରିକା ଯିବା ପାଇଁ ଆମନ୍ତ୍ରଣ ମିଳିଥିଲା। ତା'ଛଡ଼ା ଆମେରିକାର ଓଡ଼ିଆ ସୋସାଇଟି (ଓଶା) ପକ୍ଷରୁ

ଗତ ୨୦୦୪ ମସିହାରେ ୩୪ତମ ଅଧିବେଶନରେ ଅତିଥି ଭାବରେ ଯୋଗଦେବା ପାଇଁ ଆନୁଷ୍ଠାନିକ ଆମନ୍ତ୍ରଣ ମିଳିଥିଲା। କିନ୍ତୁ କୌଣସି ନା କୌଣସି କାରଣରୁ ଆମେରିକା ଯିବା ସମ୍ଭବ ହୋଇପାରି ନଥିଲା। ସମୟ ଅତିବାହିତ ହେବା ସହିତ ଆମେରିକା ଯିବାର ନିଶା ମଧ୍ୟ ମନରୁ ଓହ୍ଲାଇ ଯାଇଥିଲା।

୨୦୦୮ ମସିହା ମାର୍ଚ୍ଚ ମାସ ୨୭ ତାରିଖ, ମୁଁ ସେଦିନ ସନ୍ଧ୍ୟାରେ ଘରେ ବସିଥିଲି। ହଠାତ୍ ଫୋନ୍ ବାଜି ଉଠିଲା। ସେପଟୁ ଶୁଣାଗଲା, "ମୁଁ ରାଜେନ୍ଦ୍ର କହୁଛି, ତମର ଆମେରିକା ବୁଲିଯିବା ପାଇଁ ଠିକ୍ ହୋଇଯାଇଛି। ଆସନ୍ତା ଜୁଲାଇ ଚାରି ତାରିଖରେ କାନାଡ଼ାର ଟରଣ୍ଟୋଠାରେ 'ଓଶା'ର ୩୯ତମ ଅଧିବେଶନ ଅନୁଷ୍ଠିତ ହେଉଛି। ତମେ ସେଠାରେ ଜଣେ ନିମନ୍ତ୍ରିତ ଅତିଥି ଭାବରେ ଯୋଗଦେବ। ପ୍ରସ୍ତୁତ ହୋଇଯାଅ।" ରାଜେନ୍ଦ୍ର ଭାଇଙ୍କ ଟେଲିଫୋନ ପାଇ ଆମେରିକା ଯିବାର ନିଶା ପୁଣି ମନରେ ସବାର ହୋଇଗଲା। ଭାବିଲି, ଅତୀତରେ ଅନେକ ସୁଯୋଗ ହରାଇଛି। ଏଥରର ସୁଯୋଗକୁ ହାତଛଡ଼ା କରିବା ଉଚିତ ହେବ ନାହିଁ। କାରଣ ଜୀବନରେ ସୁଯୋଗ ବାରମ୍ବାର ଆସେ ନାହିଁ।

## 'ଓଶା' ଅଧିବେଶନରେ ଯୋଗଦେବାକୁ ଆମନ୍ତ୍ରଣ

ରାଜେନ୍ଦ୍ରଭାଇ ଫୋନ କରିବାର ପରଦିନ ଓଶାର ସମ୍ପାଦକ ଡକ୍ଟର ଗଗନ ବିହାରୀ ପାଣିଗ୍ରାହୀଙ୍କଠାରୁ ଗୋଟିଏ ଇ-ମେଲ୍ ପାଇଲି। ସେ ଲେଖିଥିଲେ, 'ଶ୍ରଦ୍ଧେୟ ବସନ୍ତବାବୁ, ଆମେରିକାରେ ଥିବା ଓଡ଼ିଶା ସୋସାଇଟି (ଓଶା) ତାର ୩୯ତମ ଅଧିବେଶନ ଟରଣ୍ଟୋଠାରେ ଆସନ୍ତା ଜୁଲାଇ ୩ ତାରିଖଠାରୁ ୫ ତାରିଖ ପର୍ଯ୍ୟନ୍ତ ପାଳନ କରିବାକୁ ଯାଉଛି। ଏଥରର ଅଧିବେଶନର ମୁଖ୍ୟ ଆଲୋଚ୍ୟ ବିଷୟ ରହିଛି ଓଡ଼ିଶା: ଆମ ମାଟି ଓ ଆମ ମଣିଷ। ଏହି ଉଦ୍ଦେଶ୍ୟରେ ଆମେ ଓଡ଼ିଶାର ଉନ୍ନୟନ ଉପରେ କେତେକ ଆଲୋଚନାଚକ୍ରର ଆୟୋଜନ କରୁଛୁ। ମୁଁ ଅତ୍ୟନ୍ତ ଆନନ୍ଦର ସହିତ ଆପଣଙ୍କୁ ଜଣାଉଛି ଯେ, ଅଧିବେଶନର ଆଲୋଚନାଚକ୍ର କମିଟି ଆପଣଙ୍କୁ ଏହି ଅଧିବେଶନରେ ଜଣେ ଅତିଥି ଭାବରେ ଯୋଗଦେବା ପାଇଁ ଆମନ୍ତ୍ରଣ କରିବା ପାଇଁ ନିଷ୍ପତ୍ତି କରିଛନ୍ତି। ଆପଣ ସେଥିରେ ଯୋଗଦେଲେ ଆମ୍ଭେମାନେ ପ୍ରୀତ ହେବୁ। ଆପଣ ଦୟାପୂର୍ବକ ଆପଣଙ୍କ ବକ୍ତବ୍ୟର ସାରାଂଶ ଆଲୋଚନାଚକ୍ର ଦାୟିତ୍ୱରେ ଥିବା ଶ୍ରୀ ପରାଶର ମିଶ୍ରଙ୍କ ପାଖକୁ ପଠାଇବାକୁ ଅନୁରୋଧ।"

ଧନ୍ୟବାଦ ସହ
ଆପଣଙ୍କର ଶ୍ରଦ୍ଧେୟ
ଗଗନ ବିହାରୀ ପାଣିଗ୍ରାହି
(ଓଶା ଅଧିବେଶନ ଆବାହକ)

ତାଙ୍କ ପରାମର୍ଶକ୍ରମେ ମୁଁ ପରାଶର ମିଶ୍ରଙ୍କ ପାଖକୁ ମେଲ୍ ପଠାଇ ଲେଖିଲି -

ଶ୍ରଦ୍ଧେୟ ପରାଶର ବାବୁ,

'ଓଶା'ର ୩୯ତମ ଅଧିବେଶନରେ ଯୋଗଦେବା ପାଇଁ ମତେ ଆମନ୍ତ୍ରଣ କରିଥିବାରୁ ମୁଁ ଆପଣଙ୍କୁ ଓ ଅନ୍ୟବନ୍ଧୁମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି। ଅଧିବେଶନରେ ଆଲୋଚନା ପାଇଁ ଆପଣ ବ୍ୟାପକ ବିଷୟବସ୍ତୁ ରଖିଛନ୍ତି। ମୁଁ କେଉଁ ବିଷୟରେ କହିବି, ଆପଣ ସେ ସମ୍ପର୍କରେ ସୂଚନା ପ୍ରଦାନ କଲେ ମୁଁ ଉପକୃତ ହେବି। ସଶ୍ରଦ୍ଧ ପ୍ରଣାମ ସହ

– ବସନ୍ତ ଦାସ

ତାଙ୍କର ଉତ୍ତର ଥିଲା, "ଶ୍ରଦ୍ଧେୟ ବସନ୍ତ ବାବୁ, ଆମେ ଓଡ଼ିଶାର ଉନ୍ନୟନ କାର୍ଯ୍ୟକ୍ରମ ଉପରେ ଆଲୋଚନା ପାଇଁ ଗୁରୁତ୍ୱ ଦେଉଛୁ। ଆପଣ 'ଓଡ଼ିଶାର ଶିକ୍ଷା ସ୍ଥିତି' ସମ୍ପର୍କରେ ଆପଣଙ୍କ ବକ୍ତବ୍ୟ ଉପସ୍ଥାପନା କରିପାରନ୍ତି । ଧନ୍ୟବାଦ ସହ ।"

– ପରାଶର ମିଶ୍ର

ଏହିପରି ଭାବରେ ପତ୍ରାଳାପ ଚାଲିଥିଲା ବେଳେ ମନରେ ପୁଣି ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଯିବି କି ନଯିବି। ପ୍ରାୟ ଏକସପ୍ତାହବ୍ୟାପୀ ଏହି ମାନସିକ ଦ୍ୱନ୍ଦ୍ୱ ମତେ ଭାରାକ୍ରାନ୍ତ କରିଥିଲା। ଅନେକ ବନ୍ଧୁଙ୍କୁ ପଚାରିଲି, ଅନେକଙ୍କ ସହିତ ପରାମର୍ଶ କଲି। ଆମେରିକା ଯିବା ପାଇଁ ଅଧିକାଂଶ ପରାମର୍ଶ ଦେଲେ। ସେମାନଙ୍କ ମତରେ ଭବିଷ୍ୟତରେ ହୁଏତ କେବେ ଆମେରିକା ଯାଇହେବ; କିନ୍ତୁ 'ଓଶା' ଅଧିବେଶନରେ ଯୋଗଦାନ ସହିତ ଆମେରିକା ଭ୍ରମଣ ହୁଏତ ସମ୍ଭବ ହୋଇ ନ ପାରେ। ମୁଁ ଦେଖିଲି, ବନ୍ଧୁମାନଙ୍କ ପରାମର୍ଶର ଯଥାର୍ଥତା ଥିଲା। ତଥାପି ଏକା ଏତେବାଟ ଯାଇ କୋଉଠି ରହିବି, କିଏ ମତେ ବୁଲାବୁଲି କରାଇବାରେ ସହାୟକ ହେବେ, ଆମେରିକାରେ କାହାଘରେ ଅତିଥି ହେବି ଇତ୍ୟାଦି ଚିନ୍ତା ମୁଣ୍ଡ ଭିତରେ ପୁଣି ପଶିଲା। ଯିବା ନ ଯିବା ଚିନ୍ତା ଭିତରେ ଦୁଇଦିନ କଟିଗଲା। ଦିନେ ସନ୍ଧ୍ୟାରେ ଗୋଟିଏ ଅନ୍ତର୍ଜାତୀୟ ଟେଲିଫୋନ୍ କଲ୍ ଆସିଲା। ମୁଁ ଖୁସିରେ ଉଠାଇବା ମାତ୍ରେ ସେପଟୁ ରାଜେନ୍ଦ୍ର ଭାଇ କହିଲେ, "କଣ କାନାଡ଼ା ଭିସା ପାଇଁ ଆପ୍ଲାଇ କଲଣି ? ତମ ହାତରେ କମ୍ ସମୟ ଅଛି, ଚାହୁଁ ଚାହୁଁ ଚାଲିଯିବ। ପଛରେ ହୁଏତ ହଇରାଣ ହୋଇପାର। ଶୀଘ୍ର ଭିସା ପାଇଁ କାଗଜପତ୍ର ପଠାଇଦିଅ।" ସବୁ ଶୁଣିସାରିବା ପରେ ମୋ ମନର ଦ୍ୱନ୍ଦ୍ୱ ବିଷୟରେ ତାଙ୍କୁ ଜଣାଇଲି। ସେ କହିଲେ, "ତମେ ଯେତେବେଳେ ଆମେରିକା ଯିବା ପାଇଁ ମତେ କହିସାରିଛ, ସେସବୁ ଦାୟିତ୍ୱ ମୋର। ତମର 'ଓଶା' ଅଧିବେଶନରେ ଯୋଗଦେବାଠାରୁ ଆରମ୍ଭ କରି ଆମେରିକାରେ ରହିବା, ବିଭିନ୍ନସ୍ଥାନ ବୁଲିବା ଇତ୍ୟାଦି ସମସ୍ତ ବନ୍ଦୋବସ୍ତ କରାଯିବ। ତମର ସେଥିରେ ବ୍ୟସ୍ତ ହେବାର କିଛି କାରଣ ନାହିଁ ; ତା'ଛଡ଼ା ତମେ ତ ପ୍ରଥମ ଥର ପାଇଁ ବିଦେଶ ଆସୁନାହିଁ । ଏହା ପୂର୍ବରୁ

ତମେ ଏକାଧିକ ଥର ବିଭିନ୍ନ ଦେଶ ବୁଲାବୁଲି କରିଛ। କୌଣସି ଚିନ୍ତା ମୁଣ୍ଡରେ ନପୂରାଇ ଶୀଘ୍ର 'ଭିସା' ପାଇବା କାମରେ ଲାଗିପଡ଼।"

ଅପ୍ରେଲ ମାସ ୧୨ ତାରିଖ ରବିବାର। ମୁଁ କୌଣସି କାମରେ ବାହାରକୁ ଯାଇଥିଲି। ଫେରୁଫେରୁ ପ୍ରାୟ ତିନିଟା ବାଜି ଯାଇଥିଲା। ଘରକୁ ଫେରି ଦେଖିଲି ଗୋଟିଏ ପ୍ୟାକେଟରେ କଣ୍ଟିନେଣ୍ଟାଲ ଏୟାରଲାଇନ୍ସର ଦୁଇଟି ଟିକେଟ ମୋ ଟେବୁଲ ଉପରେ ଥୁଆହୋଇଥିଲା। ସେଥିରେ ଗୋଟିଏ ଟିକେଟ ଦିଲ୍ଲୀରୁ ନ୍ୟୁୟାର୍କ (ନ୍ୟୁଜର୍ସି) ଏବଂ ନ୍ୟୁୟାର୍କରୁ କ୍ରାମଟନ (ଟରଣ୍ଟୋ) ଯିବା ପାଇଁ ଏବଂ ଅନ୍ୟଟି ଡଲାସରୁ ନ୍ୟୁୟାର୍କ ବାଟଦେଇ ଦିଲ୍ଲୀ ଫେରିବା ପାଇଁ ଉଦ୍ଦିଷ୍ଟ ଥିଲା। ମୁଁ ସେଥିରୁ କିଛି ବୁଝିପାରିଲି ନାହିଁ। ମୁଁ ଯେତେବେଳେ ଆମେରିକା ଯିବା ପାଇଁ ମନ ସ୍ଥିର କରି ନାହିଁ, ଏ ଟିକେଟ କିପରି କୁଆଡୁ ଆସିଲା? ମୋ ଚିନ୍ତାକୁ ଲାଘବ କରିବା ଉଦ୍ଦେଶ୍ୟରେ ପତ୍ନୀ ପ୍ରମଦା କହିଲେ, "ରାଜେନ୍ଦ୍ର ଭାଇ ଆସିଥିଲେ, ଏ ଟିକେଟ ଦେଇ ଆମେରିକା ଯିବା ପାଇଁ ପ୍ରସ୍ତୁତ ହେବାକୁ କହିଗଲେ।" ରାଜେନ୍ଦ୍ର ଭାଇଙ୍କର ଏକ ଭଲଗୁଣ ଯେ, ସେ ଯୋଉକାମ ହାତକୁ ନିଅନ୍ତି ତାକୁ ଶେଷ ପର୍ଯ୍ୟାୟରେ ନ ପହଞ୍ଚାଇ ବିଶ୍ରାମ ନିଅନ୍ତି ନାହିଁ। ତାଙ୍କ ସମ୍ପର୍କରେ ଏପରି ଅନେକ କଥା ଶୁଣିଥିଲି, କିନ୍ତୁ ଏବେ ସେସବୁ ନିଜ ଜୀବନରେ ଅନୁଭବ କଲି। ସେ ଜର୍ମାନୀରୁ କଟକ ଆସିବା ବାଟରେ ସୀତା ଟ୍ରାଭେଲ୍ସକୁ ଯାଇ ହାତରୁ ଟଙ୍କାଦେଇ ମୋପାଇଁ ଅଗ୍ରିମ ଟିକେଟ କାଟି ଆଣିଥିଲେ। ଆମେରିକା ଯିବାରେ ମୋ ମନର ଦ୍ୱନ୍ଦ୍ୱକୁ ସେ ସୁଦୂର ଜର୍ମାନୀରେ ଥାଇ ଅନୁଭବ କରି ଅଗ୍ରିମ ଟିକେଟ୍ କାଟିଥିଲେ ବୋଲି ମୁଁ ପରେ ଶୁଣିଲି।

ସେଦିନ ସନ୍ଧ୍ୟାରେ ଘରେ ବସି ଟିଭି ସିରିଏଲ ଦେଖୁଥିବା ବେଳେ କଟକରୁ ରାଜେନ୍ଦ୍ର ଭାଇ ଟେଲିଫୋନ କରି କହିଲେ, "କ'ଣ ଟିକେଟ ପାଇଗଲ? ଆଉ ଅସୁବିଧା କଣ? ତମର କାନାଡ଼ା ଓ ଆମେରିକା ଗସ୍ତ କାର୍ଯ୍ୟକ୍ରମସବୁ ସ୍ଥିର ହୋଇସାରିଛି। ବାଗଲପୁରର ଡକ୍ଟର ମନୋରଞ୍ଜନ ପଟ୍ଟନାୟକ ତମର କାନାଡ଼ାରେ ରହିବାର ବ୍ୟବସ୍ଥା କରିଛନ୍ତି। ତମର ବନ୍ଧୁ, ପ୍ରଫେସର ଦିଗମ୍ବର ମିଶ୍ର, ଆମେରିକାରେ ତିନିସପ୍ତାହ ଭ୍ରମଣ ସମୟରେ ତମେ କାହା କାହା ଘରେ ରହିବ, କାହା ସାଙ୍ଗରେ କୁଆଡ଼େ କୁଆଡ଼େ ଯିବ, ତମକୁ ବିମାନବନ୍ଦରରେ କିଏ ଆସି ନେବ ଓ କିଏ ଆଣି ଛାଡ଼ିବ ସେସବୁ ବିଷୟ ଠିକ୍ କରି ସାରିଛନ୍ତି। ଓଡ଼ିଶାର ରାଜ୍ୟପାଳଙ୍କ ଆମେରିକା ଗସ୍ତ କାର୍ଯ୍ୟସୂଚୀ ଭଳି ତମର ଗସ୍ତ କାର୍ଯ୍ୟକ୍ରମ ସବୁ ପ୍ରସ୍ତୁତ କରାଯାଇଛି। ମୁଁ ତିନି ଚାରିଦିନ ଅଛି, ଦେଖାହେଲେ ସବୁ କଥା କହିବି।"

## କାନାଡ଼ା ଭିସା ପାଇବାରେ ସମସ୍ୟା

ରାଜେନ୍ଦ୍ରଭାଇଙ୍କ ଟେଲିଫୋନ ମୋର ମନର ଦ୍ୱନ୍ଦ୍ୱକୁ ଅନେକ ପରିମାଣରେ କମାଇ ଦେଲା ଏବଂ 'ଓଶା' ଅଧିବେଶନରେ ଯୋଗଦେବା ପାଇଁ କାନାଡ଼ା ଓ ବୁଲିବା ପାଇଁ ଆମେରିକା ଯିବାକୁ ମୁଁ ଏକପ୍ରକାର ମନସ୍ଥିର କରିନେଲି। ମୁଁ ପୂର୍ବରୁ ଦୁଇଥର ବିଦେଶ ଗସ୍ତରେ ଯିବା ସମୟରେ ଭୁବନେଶ୍ୱରରେ ଥିବା ସୀତା ଟ୍ରାଭେଲ୍‌ସ ସବୁ ଆନୁସଙ୍ଗିକ ବ୍ୟବସ୍ଥା କରିଦେଇଥିଲେ। ତେଣୁ ସେଇ ଟ୍ରାଭେଲ୍ ଏଜେନ୍ସି ମାଧ୍ୟମରେ ଏଥରର ଗସ୍ତ କାର୍ଯ୍ୟକ୍ରମ ଚୂଡ଼ାନ୍ତ କରିବା ଉଦ୍ଦେଶ୍ୟରେ ମୁଁ ବାହାରିଲି। ଇତିମଧ୍ୟରେ ସୀତାଟ୍ରାଭେଲ୍ସର ଅନ୍ୟ ଏକ ଆନ୍ତର୍ଜାତିକ ଟ୍ରାଭେଲ ସଂସ୍ଥା ସହିତ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇ ତା ନାଁ ବଦଳି 'ଏଚ୍‌ଆଇଜି ସୀତା ଇଣ୍ଡିଆ' ହୋଇଯାଇଥିଲେ ବି ସୌଭାଗ୍ୟକୁ ସେଠାକାର ପୁରୁଣା ଅଫିସର ଦୀପ୍ତି ପ୍ରକାଶ ଦାସ ପୂର୍ବଭଳି ସେଠାରେ କାର୍ଯ୍ୟରତ ଥିଲେ। ମୁଁ ତାଙ୍କ ସହିତ ମୋ ବିଦେଶ ଗସ୍ତ ସମ୍ପର୍କରେ ଆଲୋଚନା କଲି। ସେ ଖୁସିହୋଇ ମୋର ସମସ୍ତ ବ୍ୟବସ୍ଥା କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ। ସେଥିସହିତ କାନାଡ଼ା ଭିସା ପାଇଁ କେତେକ କାଗଜପତ୍ର ଧରି ପରଦିନ ଆସିବାପାଇଁ ଅନୁରୋଧ କରିଥିଲେ ।

ଦୀପ୍ତିଙ୍କ ପରାମର୍ଶ ଅନୁଯାୟୀ ପରଦିନ ମୁଁ ଆବଶ୍ୟକ କାଗଜପତ୍ର ସହ ପୁନର୍ବାର ତାଙ୍କ ଅଫିସରେ ପହଞ୍ଚିଲି। ସେ ସବୁ କାଗଜପତ୍ର ଯାଞ୍ଚ କରି ଭିସା ପାଇଁ ଆବଶ୍ୟକ ପଡୁଥିବା ଫଟୋ ନଥିବା କଥା ଦର୍ଶାଇଥିଲେ। ଆତଙ୍କବାଦୀଙ୍କ ଦ୍ୱାରା ନ୍ୟୁୟର୍କ ନଗରୀରେ ଥିବା ବିଶ୍ୱବାଣିଜ୍ୟକେନ୍ଦ୍ର ଧ୍ୱଂସ ପାଇଯିବା ପରେ ଭିସା ଦେବା ଉପରେ ଅଧିକ କଟକଣା ଜାରି ହୋଇଥିଲା ଏବଂ ସେଥିପାଇଁ ବିଭିନ୍ନ ଦେଶ ପାଇଁ ବିଭିନ୍ନ ଧରଣର ପାସପୋର୍ଟ ଫଟୋର ଆବଶ୍ୟକତା ପଡୁଥିଲା। ରାଜଧାନୀ ଭୁବନେଶ୍ୱର ସହରରେ ଶତାଧିକ ଫଟୋ ଷ୍ଟୁଡିଓ ଥିଲେ ମଧ୍ୟ କେବଳ ଦୁଇ ତିନୋଟି ଷ୍ଟୁଡିଓରେ ଭିସା ପାଇଁ ଫଟୋ ଉଠାଯାଉଥିଲା. ଶହୀଦନଗରରେ ହୋଟେଲ ମେଘଦୂତ ସାମନାରେ ଥିବା 'ଶୁଭମ୍' ଫଟୋଷ୍ଟୁଡିଓରେ ଦୁଇଟି ପୃଥକ୍ ପୃଥକ୍ ଫଟୋ ଉଠାଇ କିଛି ସମୟ ଅପେକ୍ଷା କଲି। ଷ୍ଟୁଡିଓ ମାଲିକଙ୍କୁ ଅନୁରୋଧ କରିବାରୁ ଅଧଘଣ୍ଟା ଭିତରେ ସେ ଫଟୋତକ ମତେ ଦେଇଦେଲେ। ଫଟୋ ଆଣିବା ପରେ ଭିସା ଫର୍ମ ପୂରଣ କରି ଦୀପ୍ତି ପରବର୍ତ୍ତୀ ପଦକ୍ଷେପ ନେବା ପାଇଁ ତାଙ୍କ ଦିଲ୍ଲୀ ଅଫିସକୁ ସବୁ କାଗଜପତ୍ର ପଠାଇଦେଲେ। ମୁଁ ଭାବିଲି, ଯାହା ହେଉ ଗୋଟାଏ ଝାମେଲାକାମ ସରିଲା। କାନାଡ଼ା ଭିସା ମିଳିଗଲେ ଯୁକ୍ତରାଷ୍ଟ୍ର ଆମେରିକା ଭିସା ମିଳିବା ସୁଗମ ହେବ ବୋଲି ବିଚାରି ଆମେ ପ୍ରଥମେ କାନାଡ଼ା ହାଇକମିଶନର ଅଫିସକୁ ଭିସାଫର୍ମ ପଠାଇଥିଲୁ। ଫର୍ମ ପଠାଇବାର ଦଶଦିନ ପରେ ଦିପ୍ତି ମନଦୁଃଖରେ ଫୋନ୍ କରି କହିଲେ, ସାର୍ ! ଗୋଟିଏ ଖରାପ ଖବର ଅଛି। ଆପଣଙ୍କୁ କହିବି କି ନାହିଁ ସେଇ କଥା ଭାବୁଛି।

କାନାଡ଼ା ଭିସା ରିଜେକ୍ଟ ହୋଇଯାଇଛି। ଆପଣ ଆସିଲେ ମୁଁ ସବୁ ବିଷୟ କହିବି।” ମୁଁ ତାଙ୍କୁ ବୁଝାଇ କହିଲି, ଏଥିରେ ମନଦୁଃଖ କରିବାର କିଛି ନାହିଁ। ଆମେ ଦରଖାସ୍ତ କରିଥିଲେ, ଯଦି ତାହା ଅଗ୍ରାହ୍ୟ ହୋଇଗଲା, ତେବେ ଆମେ ଆଉଥରେ ଚେଷ୍ଟା କରିବା। ତା'ସତ୍ତ୍ୱେ ଭିସା ନମିଳିଲେ କାନାଡ଼ା ଯିବା ବନ୍ଦ କରିଦେବି। ଏଥିରେ କାହାର କିଛି କ୍ଷତି ହେବାର ନାହିଁ।

କାର୍ଯ୍ୟବ୍ୟସ୍ତତା ଯୋଗୁଁ ମୁଁ ଦୁଇଦିନ ପରେ ସୀତାଟ୍ରାଭେଲ୍ସ ଯାଇ କାଗଜପତ୍ର ସବୁ ଦେଖିଲି। ଆମ ଦରଖାସ୍ତ ଉପରେ ହାଇକମିଶନ ଦପ୍ତରରୁ ଯେଉଁ ଆପତ୍ତି ଦର୍ଶାଯାଇଥିଲା, ସେଥିରେ କୁହାଯାଇଥିଲା ଯେ, “ଆପଣ 'ଓଶା' ଅଧିବେଶନରେ ଯୋଗଦେବା ପରେ ନିଜ ଦେଶକୁ ଫେରିଆସିବା ସପକ୍ଷରେ ଯେଉଁ କାଗଜପତ୍ର ଦାଖଲ କରିଛନ୍ତି, ସେସବୁ ଆମର ବିଶ୍ୱାସଯୋଗ୍ୟ ହେବା ପାଇଁ ଯଥେଷ୍ଟ ନୁହେଁ। ଆପଣ ଯେ ଆମଦେଶରେ ସବୁଦିନ ପାଇଁ ନ ରହିଯିବେ ସେ ସମ୍ପର୍କରେ ଆମର ହୃଦ୍‌ବୋଧ ହେଲାଭଳି ପ୍ରାମାଣିକ ତଥ୍ୟ ନାହିଁ। ଆପଣଙ୍କ ନିଜ ରାଜ୍ୟରେ ଥିବା ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଏବଂ ଆପଣଙ୍କ ନିର୍ଦ୍ଦିଷ୍ଟ ଆୟ ସମ୍ପର୍କରେ ମଧ୍ୟ ଠିକ୍ ବିବରଣୀ ନାହିଁ। ସେ ଦୃଷ୍ଟିରୁ ଆପଣଙ୍କ ଆବେଦନପତ୍ରକୁ ଅଗ୍ରାହ୍ୟ କରାଗଲା।” ବାହାରକୁ ମନର ଭାବ ପ୍ରକାଶ ନ କରିଥିଲେ ମଧ୍ୟ ହାଇକମିଶନଙ୍କ ପତ୍ରଟି ପଢ଼ିବା ପରେ ମନ କିଛିକ୍ଷଣ ପାଇଁ ବିଷାଦଗ୍ରସ୍ତ ହୋଇଯାଇଥିଲା।

ସେଦିନ ସନ୍ଧ୍ୟା ବେଳେ ମୁଁ ମେଲ୍ ଯୋଗେ ସବୁକଥା ଲେଖି ରାଜେନ୍ଦ୍ର ଭାଇଙ୍କୁ ଜଣାଇଦେଲି। ସେ ଅଶ୍ୱାସନା ଦେଇ କହିଲେ, “ସେମାନେ ଯାହା ଚାହିଛନ୍ତି, ସେସବୁ ପୂରଣ କରି ଆଉଥରେ ଦରଖାସ୍ତ କର। ମୋର ସମ୍ପୂର୍ଣ୍ଣ ବିଶ୍ୱାସ, ଏଥର ନିଶ୍ଚୟ ଭିସା ମିଳିଯିବ। କାନାଡ଼ା ଭିସା ମିଳିଲା ପରେ ଆମେରିକା ଭିସା ପାଇଁ ଶୀଘ୍ର ଦରଖାସ୍ତ ପଠାଇବ। ଏସବୁ କାମରେ ଢିଲା କଲେ ଚଳିବ ନାହିଁ।” ରାଜେନ୍ଦ୍ରଭାଇଙ୍କ ଟେଲିଫୋନ୍ ମନରେ ନୂତନ ଉତ୍ସାହ ସୃଷ୍ଟି କଲା। କାନାଡ଼ା ଯିବାର ଆଶା ପୁନଃଉଜୀବିତ ହେଲା। କାନାଡ଼ା ହାଇକମିଶନଙ୍କ ହୃଦ୍‌ବୋଧ ହେବା ପାଇଁ ମୁଁ ଦାଖଲ କରିଥିବା ଆୟକର ଦେୟର ନକଲ, ବ୍ୟାଙ୍କ ଜମାଖାତାର ନକଲ, ବିଭିନ୍ନ ସମ୍ବାଦପତ୍ର ଓ ଇଲେକ୍‌ଟ୍ରୋନିକ୍ ମିଡିଆରୁ ମିଳୁଥିବା ଅର୍ଥର ବିବରଣୀ ସହିତ ଭୁବନେଶ୍ୱର ତହସିଲଦାରଙ୍କ ଅଫିସରୁ ମୋ ନାମରେ ଥିବା ସ୍ଥାବର ସମ୍ପତ୍ତିର ମୂଲ୍ୟ ନିର୍ଦ୍ଧାରଣ ବିବରଣୀ ଏବଂ 'ଓଶା' ନିମନ୍ତ୍ରଣ ପତ୍ରର ନକଲ ସବୁ ସଂଗ୍ରହ କରି ଆଉଥରେ ଭିସା ଫର୍ମ ପଠାଇଲି। ଦୀପ୍ତି ସବୁ କାଗଜପତ୍ର ଦେଖି କହିଲେ, “ଏଥର ନିଶ୍ଚୟ କାମ ହୋଇଯିବ; କାରଣ, ସେମାନେ ଯାହା ଚାହିଥିଲେ ତା'ଠାରୁ ଅଧିକ ଡକ୍ୟୁମେଣ୍ଟ ଆମେ ସଂଲଗ୍ନ କରିଛେ।” ମୁଁ ତାଙ୍କୁ କିଛି ଉତ୍ତର ନ ଦେଇ ଘରକୁ ଫେରି ଆସିଲି।

ପାଞ୍ଚଦିନ ପରେ ଦିପ୍ତି ଫୋନ୍ କରି ମତେ କହିଲେ, "ସାର୍! ଆପଣ ଶୀଘ୍ର ମିଠା ନେଇ ଆମ ଅଫିସକୁ ଆସନ୍ତୁ, ଆପଣଙ୍କ ପାଇଁ ଖୁସି ଖବର ଅଛି। ଆପଣଙ୍କର କାନାଡ଼ା ଭିସା ହୋଇଯାଇଛି।" ସେ ଖବର ପାଇବା ମାତ୍ରେ ମୁଁ ସୀତାଟ୍ରାଭେଲ୍ସକୁ ସାଙ୍ଗେ ସାଙ୍ଗେ ଯାଇଥିଲି ଏବଂ ସାଙ୍ଗରେ କିଛି ମିଠା ନେବାକୁ ଭୁଲି ନଥିଲି। ସେଦିନ ସନ୍ଧ୍ୟା ବେଳେ ମୁଁ ଖୁସି ଖବରଟା ରାଜେନ୍ଦ୍ରଭାଇଙ୍କୁ ଫୋନ୍‌ଯୋଗେ ଜଣାଇଦେଇଥିଲି। ମୋ ଅପେକ୍ଷା ସେ ଅଧିକ ଖୁସି ହୋଇଯାଇଥିଲେ। ତାଙ୍କ କଥାବାର୍ତ୍ତାରୁ ସତେ ଯେପରି ସେ ଏକ ଗଡ଼ ଜିତିଯାଇଥିଲେ । ସେହିପରି ମୋର ମନେ ହୋଇଥିଲା। ସୀତାଟ୍ରାଭେଲ୍ସର ଦିପ୍ତି ମଧ୍ୟ ଅନୁରୂପ ଖୁସି ଜଣାପଡୁଥିଲେ।

## କଲିକତାରୁ ଆମେରିକା ଭିସା ସଂଗ୍ରହ

ଦିନ ଯେତିକି ଗଡୁଥିଲା, ରାଜେନ୍ଦ୍ର ଭାଇଙ୍କଠାରୁ ସେତିକି ମେଲ୍ ଆସୁଥିଲା । ଆମେରିକା ଭିସା ପାଇଁ ଆନୁଷଙ୍ଗିକ କାଗଜପତ୍ର ଯୋଗାଡ଼ ହେଲା କି ନାହିଁ, ଓଶା ଅଧିବେଶନ ଆଲୋଚନାଚକ୍ରର ବିଷୟବସ୍ତୁ ପ୍ରସ୍ତୁତ ହେଲାଣି କି ନାହିଁ, ଇତ୍ୟାଦି ଇତ୍ୟାଦି ବିଷୟ ଜାଣିବା ପାଇଁ ସେ ପ୍ରାୟ ସବୁଦିନେ ମେଲ୍ ପଠାଉଥିଲେ। ସେଥିରେ ତାଙ୍କର ତାଗିଦ୍ ଏପରି ଥିଲା ଯେ, ସେସବୁର ଜବାବ ଦେବା ସବୁଦିନ ମୋ ପକ୍ଷରେ ସମ୍ଭବ ନଥିଲା। କିନ୍ତୁ ସେ ନଛୋଡ଼ବନ୍ଧା। ଦିନେ ଇମେଲ୍ ନ ପାଇଲେ ଫୋନ୍ କରୁଥିଲେ। ସେଥିରୁ ମନେ ହେଉଥିଲା, ସତେଯେପରି ମତେ ଆମେରିକା ପଠାଇବାପାଇଁ ସେ ଦୃଢ଼ପରିକର। ତାଙ୍କ ଚାପରୁ ମୁକୁଳିବା ପାଇଁ ମୁଁ କାଗଜପତ୍ର ଧରି ସୀତା ଟ୍ରାଭେଲ୍ସ ଅଫିସରେ ପହଞ୍ଚି ଅନ୍‌ଲାଇନ ବୁକିଂରେ ଭିସା ଇଣ୍ଟରଭ୍ୟୁ ନିମିତ୍ତ କଲିକତାସ୍ଥିତ ଆମେରିକା କନସୁଲେଟରୁ ତାରିଖ ଧାର୍ଯ୍ୟ କରିବାପାଇଁ ଦୀପ୍ତିଙ୍କୁ ଅନୁରୋଧ କଲି। ଦୀପ୍ତି କାଗଜପତ୍ର ସବୁ ଚେକ୍ କରି ସେଇଦିନ କୋରିଅର ସର୍ଭିସରେ ତାକୁ କୋଲ୍‌କାତା ପଠାଇ ଇଣ୍ଟରଭ୍ୟୁ ତାରିଖ ଧାର୍ଯ୍ୟପାଇଁ କନସଲ ଜେନେରାଲ ଦପ୍ତରରୁ ଅନୁମତି ଲୋଡ଼ିଲେ। ମୋର ଜୁନ୍ ୩୦ ତାରିଖରେ ଭୁବନେଶ୍ୱର ଛାଡ଼ିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ସେଥିପାଇଁ ଜୁନ୍ ପ୍ରଥମ ସପ୍ତାହରେ ଇଣ୍ଟରଭ୍ୟୁ ପାଇଁ ତାରିଖ ଦେବାକୁ ଦୀପ୍ତି ବିଶେଷ ଭାବରେ ଅନୁରୋଧ କରିଥିଲେ।

ଜୁନ୍ ପହିଲାଦିନ ସୀତାଟ୍ରାଭେଲ୍ସରୁ ଫୋନ୍ ମିଳିଲା, ଦୁଇଦିନ ପରେ ଜୁନ୍ ତିନି ତାରିଖ ଦିନ କୋଲ୍‌କାତାରେ ଥିବା ଆମେରିକା କନସୁଲେଟକୁ ଇଣ୍ଟରଭ୍ୟୁ ପାଇଁ ଯିବାକୁ ଖବର ଆସିଛି। ଭିସା ଦରଖାସ୍ତ ଫର୍ମରେ ଯେଉଁସବୁ କାଗଜପତ୍ରର ନକଲ ଦିଆଯାଇଥିଲା ସେସବୁର ମୂଳ କପି ସାଙ୍ଗରେ ଧରି ତିନିତାରିଖ ଏଗାରଟା ବେଳେ ଦେଖା କରିବା ପାଇଁ

କନସୁଲେଟ ଅଫିସରୁ ପରାମର୍ଶ ଦିଆଯାଇଥିଲା। ଏ ଖବର ମୋ ପାଇଁ ଉଭୟ ଖୁସି ଓ ଦୁଃଖଦାୟକ ଥିଲା। ଇଣ୍ଟରଭ୍ୟୁ ପାଇଁ ଡାକିଥିବା ଯୋଗୁଁ ଭିସା ମିଳିବାର ସମ୍ଭାବନା ଉଜ୍ଜ୍ୱଳ ଥିବାରୁ ମନ ଯେତିକି ଖୁସି ହୋଇଥିଲା ଦିନକ ଭିତରେ କିପରି କୋଲ୍‌କାତା ଯିବି, ଟ୍ରେନରେ ରିଜର୍ଭେସନ ମିଳିବ କି ନାହିଁ, କୋଲ୍‌କାତାରେ ଯାଇ କୋଉଠି ରହିବି ଇତ୍ୟାଦି ସମସ୍ୟା ମନକୁ ଭାରାକ୍ରାନ୍ତ କରିଦେଇଥିଲା। ଆଗରୁ କଲିକତା ଯିବା ଏକ ପ୍ରକାର ଅଭ୍ୟାସରେ ପଡ଼ିଯାଇଥିଲା। ଅମୃତବଜାରପତ୍ରିକା ପ୍ରକାଶ ପାଉଥିବା ସମୟରେ ପ୍ରାୟ ମାସେ ଦି'ମାସରେ ଥରେ କୋଲ୍‌କାତା ଯିବାକୁ ପଡୁଥିଲା। ସେତେବେଳେ ସବୁକଥା ଗୋଟିଏ ଧାରାରେ ପଡ଼ିଯାଇଥିଲା। ଦିନେ ଓଳିଏ ପାଇଁ ଗଲେ ଉତ୍କଳଭବନରେ ରୁମ୍ ବୁକ୍‌ର ଆବଶ୍ୟକତା ପଡୁନଥିଲା। ସେଠାରେ କେହି ନା କେହି ଚିହ୍ନା ପରିଚୟ ଲୋକ ମିଳିଯାଉଥିଲେ ସେମାନଙ୍କ ରୁମ୍‌ରେ ଗାଧୁଆ ପାଧୁଆ ସାରି ଅଫିସକୁ ଚାଲିଯାଉଥିଲି ଓ କାମ ସରିଗଲେ ରାତିରେ ପୁରୀ ଏକ୍ସପ୍ରେସରେ ଫେରି ଆସିବାକୁ ହେଉଥିଲା । ଟ୍ରେନରେ କିଛି ହାତଗୁଞ୍ଜା ଦେଲେ ସ୍ଲିପର ସିଟ୍‌ଟିଏ ମିଳିଯାଉଥିଲା ।

ମାତ୍ର ଚାକିରିରୁ ଅବସର ନେବା ପରେ ସେକାଳ ପଖାଳ ଆଉ ନଥିଲା । ଉତ୍କଳ ଭବନର ପୁରୁଣା ମ୍ୟାନେଜର ରୁଦ୍ର ମହାନ୍ତି ଅବସର ନେଇ ସାରିଥିଲେ। ନୂଆ ମ୍ୟାନେଜରଙ୍କ ସହିତ ବ୍ୟକ୍ତିଗତ ସ୍ତରରେ ଜଣାଶୁଣା ନଥିଲା। ସେହିଭଳି ଗୋଟିଏ ଦିନ ଭିତରେ କୋଲ୍‌କାତା ଯିବା ଆସିବା ପାଇଁ ଏସି ସ୍ଲିପର ଟିକେଟ ମିଳିବା ମଧ୍ୟ ସହଜସାଧ୍ୟ ବ୍ୟାପାର ନଥିଲା। ସାମ୍ବାଦିକତା ଜୀବନ ଭିତରେ କୌଣସି କାମ ପାଇଁ ଲାଇନରେ ଛିଡ଼ା ହେବାର ଆବଶ୍ୟକତା ପଡୁ ନଥିଲା। ଖାତିରିରେ ସବୁ କାମ ହୋଇଯାଉଥିଲା। ଏବେ କ'ଣ କରାଯିବ ସେଇକଥା ଚିନ୍ତା କରି ଏମ୍.ଏଲ୍.ଏ. କଲୋନୀରେ ଥିବା ରେଲୱେ ବୁକିଂ କାଉଣ୍ଟରକୁ ଗଲି। ମୋର ସୌଭାଗ୍ୟ, ସେଦିନ ସେଠାରେ ଓଡ଼ିଶା ବିଧାନସଭାର ଚିଫ୍‌ମାର୍ଶାଲ ପ୍ରମୋଦ କୁମାର ପାତ୍ର ଉପସ୍ଥିତ ଥିଲେ। ବିଧାନସଭାର ବାଚସ୍ପତିମାନଙ୍କ ସହିତ ମୋର ଉତ୍ତମ ବ୍ୟକ୍ତିଗତ ସମ୍ପର୍କ ବିଷୟରେ ଶ୍ରୀ ପାତ୍ର ଓ ଅନ୍ୟମାନେ ଅବଗତ ଥିଲେ। ମତେ ରେଲୱେ କାଉଣ୍ଟର ନିକଟରେ ଦେଖି ଚିଫ୍‌ମାର୍ଶାଲ ବୋଧେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ। ମୋର ସେଠାକୁ ଯିବାର କାରଣ ଜାଣିଲାପରେ ମତେ ଅଭ୍ୟର୍ଥନା କକ୍ଷରେ ବସାଇ ସେ ନିଜେ ଟିକେଟ୍ ରୁମ୍ ଭିତରକୁ ଗଲେ। ଅଳ୍ପ ସମୟ ପରେ ଫେରିଆସି କହିଲେ, ସାର୍ ! ଆପଣଙ୍କ ଭାଗ୍ୟ ଭଲ। ଆସନ୍ତାକାଲି ରାତିରେ ପୁରୀରୁ ହାଓଡ଼ାକୁ ଗୋଟାଏ ସ୍ପେଶାଲ ଟ୍ରେନ ଯାଉଛି। ସେଥିରେ ଏସି ଟିକେଟ ମିଳିଯିବ। ଯଦି କହିବେ ମୁଁ ଟିକେଟ ନେଇ ଆସିବି। ଆଉ ଫେରିବା ପାଇଁ ଇଷ୍ଟକୋଷ୍ଟ ଏକ୍ସପ୍ରେସ ଟ୍ରେନ୍‌ରେ ଏସି ଟୁ-ଟାୟାର୍‌ରେ ସିଟ୍ ଖାଲିଅଛି। ଆପଣ ଯାହା କହିବେ ସେଇ ଅନୁସାରେ କରାଯିବ। ମୁଁ ପ୍ରମୋଦବାବୁଙ୍କୁ ଧନ୍ୟବାଦ ଦେଇ କହିଲି, ''ଆଉ ପଚାରୁଛନ୍ତି କ'ଣ ? ଟଙ୍କା ଧରନ୍ତୁ, ତୁରନ୍ତ ଯିବାଆସିବା ପାଇଁ ଟିକେଟ କରିଦିଅନ୍ତୁ।''

ଟିକେଟ ମିଳିଗଲା ପରେ କଲିକତାରେ ରହିବା ଓ ଗାଡ଼ି ପାଇବା ଦିଗରେ ଯେଉଁସବୁ ସମସ୍ୟା ଦେଖାଦେଇଥିଲା ପ୍ରଫେସର ତଥାଗତ ଦତ୍ତ ଅଚିରେ ସେସବୁର ସମାଧାନ କରିଦେଇଥିଲେ। ପ୍ରଫେସର ଦତ୍ତ କଲିକତା ଅଧିବାସୀ। ଘଟଣାକ୍ରମରେ ଭୁବନେଶ୍ୱର ଆସିବା ପୂର୍ବରୁ ତାଙ୍କର ସେଠାରେ 'ଡେଲଟା ଆଡଭରଟାଇଜର୍ସ' ନାମରେ ଏକ ବିଜ୍ଞାପନ ସଂସ୍ଥା କାର୍ଯ୍ୟ କରୁଥିଲା। ତା'ଛଡ଼ା, ସେ ଜାଭିୟର୍ସ ଅନୁଷ୍ଠାନରେ କିଛିବର୍ଷ ଅଧ୍ୟାପନା ମଧ୍ୟ କରିଥିଲେ। କଲିକତା ସମାଜରେ ତାଙ୍କର ଯଥେଷ୍ଟ ପ୍ରତିଷ୍ଠା ଥିଲା। ସେ ତାଙ୍କର ଜଣେ ପ୍ରାକ୍ତନ ଛାତ୍ରଙ୍କୁ ଫୋନ କରି ମୋ ପାଇଁ ସବୁ ବ୍ୟବସ୍ଥା କରିଦେଲେ। ମୁଁ ପୁରୀ ଏକ୍ସପ୍ରେସରୁ ଓହ୍ଲାଇଲାବେଳକୁ ଗାଡ଼ି ସହ ଜଣେ ଭଦ୍ରବ୍ୟକ୍ତି ମୋ ପାଇଁ ହାଓଡ଼ା ଷ୍ଟେସନରେ ଅପେକ୍ଷା କରିଥିଲେ। ମୋ ସମ୍ପର୍କରେ ଦତ୍ତବାବୁ ତାଙ୍କୁ ସବିଶେଷ ବିବରଣୀ ପ୍ରଦାନ କରିଥିବାରୁ ମତେ ଚିହ୍ନିବା ପାଇଁ ତାଙ୍କର ବିଶେଷ ଅସୁବିଧା ହୋଇ ନଥିଲା। ସେ ମତେ ଗୋଟିଏ କମ୍ପାନୀ ଗେଷ୍ଟହାଉସକୁ ନେଇଗଲେ। ସେଠାରେ ନିତ୍ୟକର୍ମ ସାରି ବାହାରିଲା ବେଳକୁ ନଅଟା ବାଜିଯାଇଥିଲା। ଇଣ୍ଟରଭ୍ୟୁ ସମୟ ଯେତିକି ପାଖେଉଥିଲା, ମନର ଆଶଙ୍କା ସେହି ପରିମାଣରେ ବୃଦ୍ଧି ପାଉଥିଲା। ପାଠ ନପଢ଼ି ପରୀକ୍ଷା ହଲ୍‌କୁ ଗଲାଭଳି ଲାଗୁଥିଲା। ଯାହା ହେଉ ନଅଟା ବେଳେ ମୁଁ ଆମେରିକା କନସୁଲେଟ ଅଫିସ ସାମନାରେ ପହଞ୍ଚିଗଲି। ସେଠାରେ ପରିଚୟପତ୍ର ଦେଖାଇବାରୁ ଭିତରକୁ ଯିବା ପାଇଁ ଅନୁମତି ମିଳିଗଲା। ନ୍ୟୁୟର୍କ ସହରରେ ସନ୍ତ୍ରାସବାଦୀଙ୍କ ଦ୍ୱାରା ବିଶ୍ୱବାଣିଜ୍ୟ କେନ୍ଦ୍ର ଧ୍ୱଂସ ହୋଇଯିବା ପରେ କନସୁଲେଟ ଅଫିସର ଆଖପାଖ ଅଞ୍ଚଳରେ ନିରାପତ୍ତା ବ୍ୟବସ୍ଥାକୁ ଅଧିକ ଦୃଢ଼ କରାଯାଇଥିଲା।

ଇଣ୍ଟରଭ୍ୟୁ ସ୍ଥାନରେ ପହଞ୍ଚିଲା ବେଳକୁ କୋଡ଼ିଏ ପଚିଶି ଜଣ ଭିସା ଆବେଦନକାରୀ ପହଞ୍ଚିସାରିଥିଲେ। ସେମାନଙ୍କୁ ଦେଖିଲା ପରେ ମୁଁ ବୋଧେ କାମ ସାରି ରାତିରେ ଭୁବନେଶ୍ୱର ଫେରି ପାରିବି ନାହିଁ ବୋଲି ମନରେ ଆଶଙ୍କା ଜନ୍ମିଥିଲା। ପ୍ରାୟ ଅଧଘଣ୍ଟାକ ପରେ ମୋ ପାଳି ପଡ଼ିଲା। ମୁଁ କାଉଣ୍ଟରକୁ ଯାଇ କାଗଜପତ୍ର ସବୁ ଦାଖଲ କଲି। ସେଥିରେ ପ୍ରଫେସର ଦିଗମ୍ବର ମିଶ୍ର କନସଲ ଜେନେରାଲଙ୍କ ପାଖକୁ ଲେଖିଥିବା ଚିଠିଟି ଥିଲା। ସେଥିରେ ମୁଁ ଆମେରିକାରେ ରହିବା ସମୟରେ ସେ ମୋର ସମସ୍ତ ଖର୍ଚ୍ଚ ବହନ କରିବେ ବୋଲି ସ୍ପଷ୍ଟ ଭାବରେ ଉଲ୍ଲେଖ କରିଥିଲେ। ସେସବୁ ଯାଞ୍ଚ କଲାପରେ ଅଧିକାରୀ ଜଣକ ମତେ ଅପେକ୍ଷା କରିବାକୁ କହିଲେ। ବେଳକୁବେଳ ମନର ଉତ୍ତେଜନା ବଢୁଥିଲା। ମୁଁ ଆସି ଅନ୍ୟମାନଙ୍କ ସହିତ ହଲ୍‌ରେ ଅପେକ୍ଷା କଲି। ସେଠାରେ ଅନ୍ୟମାନଙ୍କ ସହିତ ପୂର୍ବତନ ମୁଖ୍ୟ ଆୟକର କମିଶନର ଅମର ମିଶ୍ର ସସ୍ତ୍ରୀକ ଅପେକ୍ଷା କରିଥିଲେ। ତାଙ୍କର ମଧ୍ୟ ଭିସା ପାଇବା ବିଷୟରେ ମନରେ ଆଶଙ୍କା ରହିଥିଲା। ସେ ଇଣ୍ଟରଭ୍ୟୁ ଦେଇସାରି ଫଳାଫଳ ଶୁଣିବାକୁ ବସିଥିଲେ। ମୁଁ ମୋର ପରିଚୟ ଦେଇ ତାଙ୍କ ସହିତ ଆଳାପରେ ମାତିଲି। କଥାବାର୍ତ୍ତା ଭିତରେ ମୁଁ ବାରମ୍ବାର ଘଣ୍ଟାକୁ ଅନାଉଥିଲି। ଲଞ୍ଚ୍ ଆୱାର ପୂର୍ବରୁ

କାମ ନ ସରିଲେ ସବୁ ଅଡୁଆ ହୋଇଯିବ ଭାବି ମୁଁ ଟିକେ ବିଚଳିତ ହୋଇଯାଇଥିଲି। ଯାରି ଭିତରେ କେତେବେଳେ ଘଣ୍ଟାଏ ସମୟ ଚାଲିଯାଇଥିଲା ଜାଣି ହୋଇ ନଥିଲା। ମୋ ନାଁ ଡକା ହେଲା ପରେ ଅତି ସନ୍ତର୍ପଣ ଭାବରେ ମୁଁ କାଉଣ୍ଟର ପାଖକୁ ଗଲି। ସେଠାରେ ଦୁଇ ହାତର ଦଶଟିଯାକ ଆଙ୍ଗୁଠିର ଛାପ ନିଆଗଲା। ଆଖି ଡୋଳାର ମଧ ଫଟୋ ଉଠିଲା। ମୋର ଯେଉଁ କାଉଣ୍ଟରରେ ଇଣ୍ଟରଭ୍ୟୁ ହୋଇଥିଲା ସେଠାରେ ଜଣେ ଆମେରିକୀୟ ଭଦ୍ରମହିଳା ଥିଲେ। ସେ ଜାଣିବାକୁ ଚାହିଁଥିଲେ ଆମେରିକା ଯିବା ପାଇଁ ଖର୍ଚ୍ଚ କିଏ ଦେବେ ଓ ସେଠାରେ ମତେ କିଏ କିଏ ଅତିଥି କରିବେ। ମୁଁ ବୁଲାବୁଲି କରି ଫେରି ଆସିବି ନା ସେ ଦେଶରେ ରହିବାପାଇଁ ଉଦ୍ୟମ କରିବି। ମୁଁ ସବୁ ପ୍ରଶ୍ନର ସ୍ୱଷ୍ଟ ଉତ୍ତର ଦେଇଥିଲି। ଭଦ୍ର ମହିଳା ସବୁକଥା ଶୁଣି କହିଲେ, "ବେଷ୍ଟ ଅଫ ଲକ୍। ଆଇ ଉଇସ୍, ୟୁ ଉଇଲ୍ ଏଞ୍ଜୟ ୟୋର ଆମେରିକା ଟ୍ରିପ୍। ୟୁ ଉଇଲ୍ ଗେଟ୍ ୟୋର୍ ଭିସା ନେକ୍ସଟ ୱୁଇକ୍। ବାଇ ବାଇ।" ଭଦ୍ର ମହିଳାଙ୍କ କଥା ଶୁଣିଲା ପରେ ମତେ ଆକାଶର ଚାନ୍ଦ ମିଳିଗଲା ଭଳି ଲାଗିଥିଲା।

ସମୟ ଅପରାହ୍ନ ଗୋଟାଏ ବାଜିଯାଇଥିଲା। ବାହାରେ ଗାଡ଼ି ଅପେକ୍ଷା କରିଥିଲା। ମୁଁ ଆଉ କୁଆଡ଼େ ନ ଯାଇ ସିଧା ହାଓଡ଼ା ଷ୍ଟେସନକୁ ଚାଲିଲି। ଗତ କେତେବର୍ଷ ଭିତରେ ହାଓଡ଼ା ଷ୍ଟେସନର ବିରାଟ ପରିବର୍ତ୍ତନ ଘଟିଥିଲା। ଆଗରୁ ଓଡ଼ିଶାରୁ ଯାଉଥିବା ଟ୍ରେନ୍ ସବୁ ଷୋଳ ନମ୍ବର ପ୍ଲାଟଫର୍ମରେ ଲାଗୁଥିଲା ଓ ସେଠାରୁ ଛାଡୁଥିଲା। ହାଓଡ଼ା ଷ୍ଟେସନରେ ଏତେ ପରିମାଣରେ ଓଡ଼ିଆ ଲୋକ କାରବାର ହେଉଥିଲେ ଯେ, ସେଠାରେ କେହି ନା କେହି ଚିହ୍ନା ମୁହଁ ମିଳିଯାଉଥିଲେ। ଷ୍ଟେସନର ଆଧୁନିକୀକରଣ ପରେ ଆମ ଟ୍ରେନ ସବୁ ନୂଆ ତିଆରି ହୋଇଥିବା ଏକୋଇଶି ନମ୍ବର ପ୍ଲାଟଫର୍ମରୁ ଯିବାଆସିବା କରୁଥିଲା। ସେଠାରେ ପାଣି ଗିଲାସେ ମିଳିବାର ମଧ ବ୍ୟବସ୍ଥା ନଥିଲା। ମୁଁ ପୁରୁଣା ପ୍ଲାଟଫର୍ମ ଭିତରେ ଥିବା ସାଉଥ ଇଣ୍ଡିଆନ ହୋଟେଲରେ ମଧ୍ୟାହ୍ନ ଭୋଜନ ସାରିଲା ବେଳକୁ ଇଷ୍ଟକୋଷ୍ଟ ଟ୍ରେନଟି ପ୍ଲାଟଫର୍ମ ଭିତରେ ପ୍ରବେଶ କରି ସାରିଥିଲା।

## ଦିଲ୍ଲୀରୁ କଣ୍ଟିନେଣ୍ଟାଲ ଏୟାରଲାଇନ୍ସ ବିମାନରେ ଚଉଦଘଣ୍ଟା

କଲିକତାରୁ ଫେରିଲା ପରେ ମନ ଅନେକ ପରିମାଣରେ ହାଲୁକା ହୋଇଯାଇଥିଲା। ମୁଁ ସୀତା ଟ୍ରାଭେଲ୍ସକୁ ଯାଇ ଦୀପ୍ତିଙ୍କୁ ସବୁକଥା ଜଣାଇଲି। ସେ ଭାରି ଖୁସି ହୋଇଥିଲେ। ଚାରିଦିନ ପରେ ଭିସା ଷ୍ଟାମ୍ପ ଥାଇ ମୋ ପାସପୋର୍ଟ-ଆମେରିକା କନସୁଲେଟ ଅଫିସରୁ ଆସିଗଲା। ରାଜେନ୍ଦ୍ର ଭାଇ ପ୍ରାୟ ସବୁଦିନ ଇ-ମେଲ ପଠାଇ ସବୁକଥା ବୁଝୁଥିଲେ। ପୁଅ ଚନ୍ଦନ ମଧ ମଝିରେ ମଝିରେ ଫୋନ୍ କରି ଆମେରିକା ଯିବା

ପାଇଁ ନୂଆ ସୁଟ୍ ତିଆରି ହେଲାଣି କି ନାହିଁ, ନୂଆ ଜୋତା କିଣାହେଲା କି ନାହିଁ, ଇତ୍ୟାଦି ଇତ୍ୟାଦି ବିଷୟ ଜାଣିବାକୁ ଚାହୁଁଥିଲା। ମୁଁ ଖଦଡ଼ ପିନ୍ଧୁଥିବାରୁ ତାର ବେଶି ଚିନ୍ତା ଥିଲା। ମୁଁ ତାକୁ କହିଥିଲି "ମୋର ତ ସବୁ ଜିନିଷ ଅଛି, ତୁ କାହିଁକି ବ୍ୟସ୍ତ ହେଉଛୁ। ଆମେରିକାରେ ଜୁଲାଇ ମାସରେ ଭୀଷଣ ଗରମ, ଆଉ ଗରମ ସୁଟ୍ କ'ଣ ହେବ? ସାଧାରଣ ଲୁଗାରେ କାମ ଚଳିଯିବ।"

ମୁଁ ଜୁଲାଇ ପହିଲାରେ ଇଣ୍ଡିଆନ ଏୟାରଲାଇନ୍ସ ବିମାନରେ ଭୁବନେଶ୍ୱରରୁ ଦିଲ୍ଲୀ ଗଲି। ସେଠାରୁ ଦୁଇତାରିଖ ରାତିରେ ନ୍ୟୁୟାର୍କ ପାଇଁ ବିମାନ ଧରିବା କଥା। ମୋର କଣ୍ଟିନେଣ୍ଟାଲ ଏୟାରଲାଇନ୍ସରେ ଟିକେଟ ହୋଇଥିଲା। ମୁଁ କିପରି ବାଟରେ ନ ଓହ୍ଲାଇ ସିଧାସଳଖ ଦିଲ୍ଲୀରୁ ନ୍ୟୁୟାର୍କ ଯାଇ ପାରିବି, ସେଥିପାଇଁ ରାଜେନ୍ଦ୍ର ଭାଇଙ୍କୁ ବହୁତ କସରତ କରିବାକୁ ପଡ଼ିଥିଲା। ସବୁଠାରୁ କମ୍ ଚଉଦ ଘଣ୍ଟାରେ ନନ୍‌ଷ୍ଟପ ଭାବରେ କଣ୍ଟିନେଣ୍ଟାଲ ବିମାନ ଯାଉଥିବାରୁ ସେ ମୋ ପାଇଁ ସେଥିରେ ଟିକେଟ କିଣିଥିଲେ। ଦିଲ୍ଲୀରେ ପହଞ୍ଚି ପ୍ରଥମେ ମୁଁ କିଛି ଡଲାର ସଂଗ୍ରହ କଲି। ମୋର ଆଉ କିଛି କିଣାକିଣି କରିବାର ନଥିଲା।

ରାତି ଏଗାରଟାରେ ବିମାନ ଛାଡ଼ିବା ସମୟ ଥିଲା। ମୁଁ ରହୁଥିବା ବସୁନ୍ଧରା ଏନକ୍ଲେଭରୁ ଇନ୍ଦିରା ଗାନ୍ଧୀ ଅନ୍ତର୍ଜାତୀୟ ବିମାନ ବନ୍ଦରକୁ ଯିବାପାଇଁ ଘଣ୍ଟାକରୁ ଅଧିକ ସମୟ ଲାଗୁଥିବାରୁ ମୁଁ ରାତି ଆଠଟାରେ ବାହାରିପଡ଼ିଲି। ସାଙ୍ଗରେ ଡକ୍ଟର ଦାସ ବିମାନବନ୍ଦରକୁ ଯିବାପାଇଁ ଚାହୁଁଥିଲେ। ତାଙ୍କୁ ବାରଣ କରି ତାଙ୍କ ଡ୍ରାଇଭର ମାଇକେଲ ସାଙ୍ଗରେ ମୁଁ ଆରାମରେ ଯାଇପାରିବି ବୋଲି କହିଲି। ମାଇକେଲ ଖୁବ୍ ଭଦ୍ର, ମାର୍ଜିତ ବ୍ୟବହାର ଓ ଧୀରସ୍ଥିର। ଗାଡ଼ି ଚଳାଇଲା ବେଳେ ଖୁବ୍ ସାବଧାନ ଥାଏ। ଗାଡ଼ି ରାସ୍ତାକୁ ବାହାର କଲାପରେ ପଚାରିଲା, "ସାବ୍, କୌନସା ରୁଟ୍ ଲୋ। ମେରେ ଖୟାଲ ମେଁ ଏ ଟାଇମ୍ ପର ଟୋଲ୍ ଗେଟ୍ ରୋଡ୍ ଛୋଡ଼ ଦେ ନା ଚାହିଏ, କ୍ୟୋଁ କି ଅବ୍ ୱହାଁ କାଫି ଭିଡ଼ ରହେଗା।" ମାଇକେଲର ବୋଧେ ଧାରଣା ଥିଲା ଯେ ତା ଅପେକ୍ଷା ଦିଲ୍ଲୀର ରାସ୍ତାଘାଟ ସମ୍ପର୍କରେ ମୋର ଅଧିକ ଜ୍ଞାନ ଥିଲା। ଗତ କୋଡ଼ିଏ ବର୍ଷରୁ ଅଧିକ କାଳ ହେଲା ପ୍ରତିବର୍ଷ ଅନ୍ତତଃ ଥରେ ଦିଲ୍ଲୀ ଯାଉଥିଲେ ବି ମୁଁ ଯେ ଦିଲ୍ଲୀର ରାସ୍ତାଘାଟ ଓ ଟ୍ରାଫିକ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ, ସେ କଥା ମାଇକେଲ ଅବା କିପରି ଜାଣିବ? କିନ୍ତୁ ମୁଁ ମୋ ଦୁର୍ବଳତାକୁ ତା ପାଖରେ ପ୍ରକାଶ ନ କରି କହିଲି, ଇଣ୍ଡିଆ ଗେଟ୍‌ସେ ଲେ ଲୋ। ବେହ୍‌ତର ହୋଗା।" ସେ ସମ୍ମତି ଜଣାଇ କହିଲା, ହଁ ସାବ୍, ମେଁ ଓହି କରୁଙ୍ଗା।"

ଗାଡ଼ି ଚଳାଉଥିଲା ବେଳେ ମାଇକେଲର ରନିଂକମେଣ୍ଟ୍ରି ଚାଲୁଥିଲା। ସାବ୍! ଆଜକାଲ ଦିଲ୍ଲୀ ମେଁ ଗାଡ଼ି ଚଲାନା ବହୁତ ମୁସ୍କିଲ ହୋ ଗୟା। ବଚକେ ଔର ବଚାକେ ଚଲନା ପଡ଼ତା ହୈ। ଏକ ତରଫ ଟ୍ରାଫିକ ଜାମ୍ ହୋ ଯାତା ହୈ, ଔର ଦୁସରି ତରଫ ଏ ପୁଲିସ୍ ଲୋଗ ବହୁତ ତଙ୍ଗ୍ କରତେ ହେଁ।" ଇଣ୍ଡିଆଗେଟ୍ ଗୋଲଚକର ପାର ହୋଇ

ଆମେ ଆକବର ରୋଡରେ ପହଞ୍ଚିଲା ବେଳେ ମାଇକେଲ ଆରମ୍ଭ କଲା, "ସାବ୍! ଏ ଯୋ ଡାହିନେ ତରଫ ମକାନ ଦେଖ ରହେ, ଓ କଂଗ୍ରେସ ପାର୍ଟିକା ହେଡକ୍ୱାର୍ଟର ହେ, ଯହାଁ ହର୍ ଟାଇମ୍ ଭିଡ଼ ଲଗତା ରହତା ହେ। ଇଲେକ୍ସନ କା ଟାଇମ୍ ଆନେ ସେ ଭିଡ୍ ବଢ଼୍ ଯାତା।" ମାଇକେଲ କଥା ଶୁଣି ମୁଁ ଭାବିଲି, ଲୋକେ ଟଙ୍କା ଖର୍ଚ୍ଚ କରି କାହିଁକି ଏଠିକି ଆସନ୍ତି ? କିଛିଦିନ ତଳେ ଜଣେ କଂଗ୍ରେସ ନେତାଙ୍କୁ ଏଇକଥା ପଚାରିଥିଲି। ସେ ଗୋଟିଏ ପୁରାଣ ଗପର ଅବତାରଣା କରି କହିଥିଲେ, ''ଆପଣ କ'ଣ କାର୍ତ୍ତିକ ଓ ଗଣେଶଙ୍କ କଥା ଶୁଣି ନାହାନ୍ତି। କାର୍ତ୍ତିକ ତାଙ୍କ ମୟୂର ବାହନରେ ପୃଥିବୀ ପ୍ରଦକ୍ଷିଣ କରିବାକୁ ଗଲାବେଳେ ଗଣେଶ କିପରି ହର-ପାର୍ବତୀଙ୍କ ଚାରିପାଖରେ ବୁଲି ଅଧିକ ପୁଣ୍ୟ ଅର୍ଜନ କରିଥିଲେ। ସେହିଭଳି ବାରଆଡ଼େ ବୁଲିବା ଅପେକ୍ଷା ଯଦି ମାଡାମ୍ କିମ୍ବା ତାଙ୍କର କେହି ଚାମଚାଙ୍କ ସହ ଦେଖା ହୋଇଗଲା ତେବେ କାମ ହୋଇଗଲା ବୋଲି ଜାଣ। କାର୍ତ୍ତିକଙ୍କ ପରି ବ୍ରହ୍ମାଣ୍ଡ ବୁଲିବାକୁ କିଏ କାହିଁକି ଯିବ ? ସେଦିନ ସେ ନେତାଙ୍କ କଥାର ଠିକ୍ ଅର୍ଥ ମୁଁ କରି ପାରି ନ ଥିଲି। ସେ ପରେ ବୁଝାଇ କହିଥିଲେ, "ଆମ ଦଳ ଦେଶର ସବୁଠାରୁ ପୁରୁଣା ଗଣତାନ୍ତ୍ରିକ ଦଳ ହୋଇଥିଲେ ବି ଆମର ହାଇକମାଣ୍ଡ କହିଲେ, ଜଣକୁ ବୁଝାଏ। ସେ ହେଉଛନ୍ତି ଅଲ୍-ଇନ୍-ଓ୍ୱାନ୍। ହର୍ତ୍ତା, କର୍ତ୍ତା, ଦୈବବିଧାତା। କଥାଟା ଅଡୁଆ ଲାଗୁଥିଲେ ବି ଆଚ୍ଛା ଆଚ୍ଛା ନେତା ଏହି ସ୍ଥିତିକୁ ମାନି ନେଇଛନ୍ତି। କାହାରି ହୁଁ ଚୁଁ କରିବାର ଶକ୍ତି ନାହିଁ। ଯଦି ଦୈବାତ୍ କିଏ ପାଟି ଫିଟାଇଲା, ତେବେ ତାର କପାଳରେ ପେଟା ବସିଲା ବୋଲି ବୁଝିବାକୁ ହେବ।" ଏଇକଥା ଭାବୁଭାବୁ ଆମ ଗାଡ଼ି ବିମାନ ବନ୍ଦରରେ ପହଞ୍ଚି ଯାଇଥିଲା। ମାଇକେଲକୁ କିଛି ଟିପ୍ସ ଦେଇ ମୁଁ ଭିତରକୁ ଗଲି। ଲଗେଜ ବୁକିଂ କରି ସିକ୍ୟୁରିଟି ଚେକ୍ ପାଇଁ ଭିତରେ ପଶିଲା ବେଳକୁ ଜଣେ ଅପରିଚିତା ଯୁବତୀ ପଛରୁ ପଚାରିଲେ, "ମାଫ୍ କରେଙ୍ଗେ, ନ୍ୟୁୟାର୍କ ଯାନେ କେ ଲିୟେ କହାଁ ପର ସିକ୍ୟୁରିଟି ଚେକିଂ ହୋତା ହେ।" ମୁଁ ତାଙ୍କୁ ବାଟ ଦେଖାଇ ଚାଲିଗଲି। କିଛି ସମୟ ପରେ ପୁଣି ସେ ଯୁବତୀଙ୍କ ସହିତ ଦେଖାହେଲା। କୌତୂହଳବଶତଃ ତାଙ୍କ ଘର କେଉଁଠି ବୋଲି ମୁଁ ତାଙ୍କୁ ପଚାରିଲାରୁ ସେ ଗୋଟିଏ ଛୋଟିଆ ଉତ୍ତର ଦେଲେ, "ଓଡ଼ିଶା।" ମୁଁ କହିଲି, ତା'ହେଲେ କ'ଣ ଆପଣ ଓଡ଼ିଆ, କୋଉଠୁ ଆସିଛନ୍ତି ? "ଭୁବନେଶ୍ୱରରୁ, ମୋ ବାପା ଜଣେ ଅବସରପ୍ରାପ୍ତ ସାମରିକ ଅଫିସର, ମୁଁ ସ୍ୱାମୀଙ୍କ ପାଖକୁ କଲମ୍ବିଆ ଯାଉଛି। ଆଜି ସକାଳେ ଏୟାରଲାଇନ୍ସ ଫ୍ଲାଇଟରେ ଭୁବନେଶ୍ୱରରୁ ଆସିଛି।" ଏକା ନିଃଶ୍ୱାସରେ ଯୁବତୀଜଣକ ତାଙ୍କର ସବୁ ପରିଚୟ ଦେଇଦେଲେ। ଚାରିମାସ ତଳେ ତାଙ୍କର ବିବାହ ହୋଇଛି, ସ୍ୱାମୀ ଏବେ କଲମ୍ବିଆରେ। ମୁଁ ଲକ୍ଷ୍ୟ କରୁଥିଲି, ଗତ ଚାରିମାସର ବିରହ ପରେ ସ୍ୱାମୀଙ୍କ ସହିତ ମିଳନ ପାଇଁ ସେ ଯେପରି ଅଧୈର୍ଯ୍ୟ ହୋଇପଡୁଥିଲେ। ବିରହର ବେଦନା ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇପଡୁଥିଲା। ସେ ତାଙ୍କ କ୍ୟାବିନ ବ୍ୟାଗ ମୋ ଜିମା ରଖି

ତାଙ୍କ ମୋବାଇଲ ଫୋନ୍‌ଟି ଧରି ଏକ ନିଭୃତ କୋଣକୁ ଚାଲିଗଲେ। ମୁଁ ଘରୁ ପ୍ୟାକ୍-ଡିନର ନେଇଥିଲି। ହାତରେ ଯଥେଷ୍ଟ ସମୟ ଥିଲା। ପାଖରେ ଥିବା ରେଷ୍ଟୁରାଣ୍ଟରୁ ପାଣିବୋତଲଟିଏ ଆଣି ଖାଇବା ଆରମ୍ଭ କଲି। ମୋର ଖାଇବା ସରିବା ଯାଏ ଯୁବତୀଙ୍କର ମୋବାଇଲ ଫୋନ କାନ ପାଖରେ ଲାଗିରହିଥିଲା।

ବିମାନରେ ମୋର ଉଇଣ୍ଡୋସିଟ୍ ଥିଲା। ବୋର୍ଡିଂ ପାସ୍ ନେଲା ବେଳେ ଅନୁରୋଧ କରି ମୁଁ ସେ ସିଟ୍‌ଟି ପାଇଥିଲି। ସେଥିରେ ଦୁଇଟି ସୁବିଧା ଥିଲା। ପ୍ରଥମତଃ ରାତିରେ ଟିକିଏ ଆରାମରେ ଶୋଇହେବ ଏବଂ ଦ୍ୱିତୀୟରେ ଦିନରେ ବାହାରର ଦୃଶ୍ୟ ବିମାନ ଭିତରୁ ଉପଭୋଗ କରିହେବ। ମୋ ପାଖ ସିଟ୍‌ରେ କିଏ ଆସିବେ ଏଇକଥା ଭାବୁଥିବା ବେଳେ ଦୁଇଜଣ ବିଦେଶୀ ମହିଳା ଆସି ପହଞ୍ଚିଗଲେ। ପ୍ରଥମେ ଆଳାପ ଓ ଆଳାପରୁ ପରିଚୟ ହେଲା। ସେମାନେ ଥିଲେ ମା' ଓ ଝିଅ। ମା', ମାର୍ସୀ କଲମ୍ବିଆରେ ଜଣେ ସ୍କୁଲ ଶିକ୍ଷୟିତ୍ରୀ ଓ ଝିଅ ଟାନେସା ଜଣେ କଲେଜ ଛାତ୍ରୀ। ସେମାନେ ଭାରତବର୍ଷର କେତେକ ଦର୍ଶନୀୟସ୍ଥାନ ବୁଲିବାକୁ ଆସିଥିଲେ ଏବଂ ଦିଲ୍ଲୀ, ଆଗ୍ରା, ଜୟପୁର ଇତ୍ୟାଦି ବୁଲି ଦେଖିଲାପରେ ସେଦିନ ନିଜ ରାଜ୍ୟକୁ ଫେରୁଥିଲେ।

ବିମାନ ଭିତରେ ଡିନର ଖାଇଲା ବେଳେ ମାର୍ସୀ ମତେ କେତେକ ପ୍ରଶ୍ନ ପଚାରିଥିଲେ ଯାହାର ଉତ୍ତର ମୋ ପାଖରେ ନଥିଲା। ତାଙ୍କର ପ୍ରଶ୍ନ ଥିଲା, ଭାରତ ଏକ ମହାନ୍ ଦେଶ, ଲୋକମାନେ ଖୁବ୍ ଭଦ୍ର, ତେବେ ଏଠି ଏତେ ସଂଖ୍ୟାରେ ଦରିଦ୍ର ଲୋକ କାହିଁ ଅଛନ୍ତି? ଧନୀ ଓ ଦରିଦ୍ରଙ୍କ ଭିତରେ ଏତେ ତାରତମ୍ୟ କାହିଁକି? ଯୁଆଡ଼େ ଗଲେ କାହିଁକି ମାଳମାଳ ଭିକାରି ବୁଲୁଛନ୍ତି। ଏ ଦେଶରେ କ'ଣ ଲୋକେ ନିଜ ଉପାର୍ଜନରେ ଚଳିପାରୁ ନାହାନ୍ତି? ଆପଣ ତ ଜଣେ ବରିଷ୍ଠ ସାମ୍ବାଦିକ, ଏ ସବୁର କାରଣ ବିଷୟରେ କ'ଣ ଆପଣ ଅନୁଧ୍ୟାନ କରି ନାହାନ୍ତି?'' ଏତେଗୁଡ଼ାଏ ପ୍ରଶ୍ନରେ ମୁଁ ଟିକିଏ ହଡ଼ବଡ଼େଇ ଯାଇଥିଲି। ମୁଁ ଜାଣିଥିଲି ସେସବୁ ପ୍ରଶ୍ନର ଠିକ୍ ଉତ୍ତର ମୋ ପାଖରେ ନଥିଲା। ତଥାପି ସମ୍ମାନ ରକ୍ଷା ଦୃଷ୍ଟିରୁ କହିଲି, ଦେଖନ୍ତୁ ଆମ ଦେଶ ଏକ ବିରାଟ ଦେଶ। ଆମର ଲୋକସଂଖ୍ୟା ବୃଦ୍ଧି ସବୁଠାରୁ ବଡ଼ ସମସ୍ୟା। ଷାଠିଏ ବର୍ଷ ତଳେ ଦେଶ ସ୍ୱାଧୀନ ହେବା ସମୟରେ ଆମ ଦେଶର ଲୋକସଂଖ୍ୟା ଥିଲା ପ୍ରାୟ ତିରିଶିକୋଟି। ଗତ ଛଅଦଶନ୍ଧି ମଧ୍ୟରେ ଏହା ବୃଦ୍ଧି ପାଇ ଶହେକୋଟି ଟପି ଗଲାଣି। ଏତେ ସଂଖ୍ୟକ ଲୋକଙ୍କୁ କର୍ମସଂସ୍ଥାନ ଯୋଗାଇବା ସମ୍ଭବପର ନୁହେଁ। ତା'ଛଡ଼ା ଆମ ଯୋଜନାରେ କିଛି ପରିମାଣରେ ତ୍ରୁଟି ରହିଯାଉଛି। ଯେଉଁମାନେ ଶୀତତାପ ନିୟନ୍ତ୍ରିତ କୋଠରିରେ ବସି ଗାଁ ଲୋକଙ୍କ ପାଇଁ ଯୋଜନା ପ୍ରସ୍ତୁତ କରୁଛନ୍ତି, ସେମାନଙ୍କର ଲୋକଙ୍କ ପ୍ରକୃତ ସମସ୍ୟା ସମ୍ପର୍କରେ ବିଶେଷ ଧାରଣା ନଥିବାରୁ ଯୋଜନାର ସଫଳ ରୂପାୟନ ସମାଜର ତଳଶ୍ରେଣୀରେ ବାସ କରୁଥିବା ଲୋକଙ୍କ ପାଖରେ ପହଞ୍ଚି ପାରୁ ନାହିଁ। ତ୍ରୁଟିପୂର୍ଣ୍ଣ ଯୋଜନାରୁ

ଫାଇଦା ଉଠାଇ କିଛି ଲୋକ ଧନୀ ହେଉଥିଲା ବେଳେ ଅଧିକାଂଶଙ୍କର ଅର୍ଥନୈତିକ ସ୍ଥିତି ଦୁର୍ବଳ ହୋଇ ଯାଉଛି।" ମୋ କଥା ଶୁଣି ମାର୍ସୀ କହିଲେ, "ଏ ତ ଅତି ଗୁରୁତର ସମସ୍ୟା। ଏସବୁର ସମାଧାନ ଦିଗରେ ରାଜନୈତିକ ନେତାମାନେ ଉଦ୍ୟମ କରିବା ଆବଶ୍ୟକ।" ରାତ୍ରି ବିଳମ୍ବ ହୋଇଯାଇଥିଲା। ଆମେ ଶୋଇବାକୁ ଚେଷ୍ଟା କଲୁ।

## ବିମାନବନ୍ଦରରେ ଦୃଢ଼ ନିରାପତ୍ତା ବ୍ୟବସ୍ଥା

ଏୟାର ହୋଷ୍ଟେସଙ୍କ ଘୋଷଣାରେ ନିଦ ଭାଙ୍ଗିଗଲା। ଆଉ ଅଧଘଣ୍ଟାକ ମଧ୍ୟରେ ଆମ ବିମାନ ନିଉଜର୍ସି (ନ୍ୟୁୟର୍କ) ବିମାନବନ୍ଦରରେ ଅବତରଣ କରିବା ଶୁଣି ପାସେଞ୍ଜରମାନେ ସଚେତନ ହୋଇଗଲେ। ସ୍ଥାନୀୟ ସମୟ ସାଢ଼େ ପାଞ୍ଚଟାରେ ଆମେ ବିମାନ ଭିତରୁ ବାହାରିଲୁ। ଦୀର୍ଘ ଚଉଦଘଣ୍ଟାର ଯାତ୍ରାରେ ଶରୀର ଅବଶ ହୋଇଯାଇଥିଲା। ମୋର ସେଠୁ କ୍ରାମଟନ (ଟରଣ୍ଟୋ) ଯିବା କଥା। ହାତରେ ଦୁଇଘଣ୍ଟା ସମୟ ଥିଲା। ମୋର ବ୍ୟାଗେଜ୍ ଦିଲ୍ଲୀରୁ କ୍ରାମଟନ ବୁକ୍ ହୋଇଥିଲେ ବି ନିରାପତ୍ତା ଦୃଷ୍ଟିରୁ ନ୍ୟୁୟର୍କ ବିମାନବନ୍ଦରରେ ତାକୁ ସଂଗ୍ରହ କରି ଆଉଥରେ ବୁକିଂ କରିବାର ଆବଶ୍ୟକତା ପଡ଼ିଲା।

ବିମାନରୁ ଓହ୍ଲାଇ କଷ୍ଟମ୍ସ କ୍ଲିଅରାନ୍ସ ପାଇଁ ଗଲାବେଳକୁ ସେଠାରେ ଲମ୍ବା ଲାଇନ୍ ଲାଗିଯାଇଥିଲା। ଏକାଥରକେ ଚାରୋଟି କାଉଣ୍ଟରରେ ଚେକିଂ ହେଉଥିଲା। ବିଶ୍ୱ ବାଣିଜ୍ୟ କେନ୍ଦ୍ର ଧ୍ୱଂସ ଘଟଣା ପରେ ସମଗ୍ର ଆମେରିକାରେ ତନଖି ଓ ନିରାପତ୍ତା ବ୍ୟବସ୍ଥାକୁ ଦୃଢ଼ କରାଯାଇଥିଲା। ସେଥିପାଇଁ ବିଦେଶୀ ରାଷ୍ଟ୍ରରୁ ଯାଉଥିବା ସମସ୍ତ ବ୍ୟକ୍ତିଙ୍କ ଉପରେ ସତର୍କ ଦୃଷ୍ଟି ରଖାଯାଉଥିଲା। ଲାଇନ ଯେତିକି ଯେତିକି ଘୁଞ୍ଚୁଥିଲା ମନରେ ସେତିକି ପରିମାଣରେ ଅଜଣା ଆଶଙ୍କା ସୃଷ୍ଟି ହେଉଥିଲା। ବିଦେଶ ଜାଗା। କେହି ଚିହ୍ନା ପରିଚୟ ପାଖରେ ନ ଥିଲେ। ଯଦି କିଛି ଅସୁବିଧା ହୋଇଯିବ, ତାକୁ କିପରି ମୁକାବିଲା କରାଯାଇ ପାରିବ ସେଇ ଚିନ୍ତା ମୁଣ୍ଡକୁ ଭାରାକ୍ରାନ୍ତ କରୁଥିଲା। କିଛି ସମୟ ବ୍ୟବଧାନରେ ମୋ ପାଳି ଆସିଲା। ମୁଁ ପାସପୋର୍ଟଟି ବଢ଼ାଇ ଦେଇ ଛିଡ଼ା ହୋଇରହିଲି। ସେଠାରେ ମୋ ଆଙ୍ଗୁଠି ଛାପ ନିଆଯାଇ କଲିକତାରେ ଉଠାଯାଇଥିବା ଆଙ୍ଗୁଠିଛାପ ସହିତ ତାର ମେଳ କରାଗଲା। ସେଥିସହିତ ଏକ ଉଜ୍ଜ୍ୱଳ ଆଲୋକରେ ମୋ ଆଖି ଡୋଳାକୁ ପରୀକ୍ଷା କରାଗଲା। ଏସବୁ ପରୀକ୍ଷା ନିରୀକ୍ଷା ଚାଲିଥିଲା ବେଳେ ମୁଁ ଟିକିଏ ଶଙ୍କିତ ହୋଇଯାଇଥିଲି। କାଳେ କୋଉଠି କିଛି ଭୁଲ୍ ବାହାରିଯିବ। କିନ୍ତୁ ସେପରି କିଛି ଅଘଟଣା ଘଟି ନଥିଲା ଓ ଦଶମିନିଟ ମଧ୍ୟରେ ମୋ ପାସପୋର୍ଟ କ୍ଲିଅର ହୋଇଯାଇଥିଲା।

ସେଠାରୁ ଯାଇ ସିକ୍ୟୁରିଟି ଗେଟ୍ ଭିତରେ ପଶିବାକୁ ପଡ଼ିଲା। ସେଠାରେ ଜୋତାଠାରୁ ଆରମ୍ଭ କରି ବେଲ୍ଟ ପର୍ଯ୍ୟନ୍ତ ସବୁ ଖୋଲିବାକୁ କୁହାଗଲା। ଥରେ ଜଣେ ଭାରତୀୟ

ମନ୍ତ୍ରୀଙ୍କୁ ପ୍ୟାଣ୍ଟ ଖୋଲିବା ପାଇଁ କୁହାଯାଇଥିବାରୁ ମୁଁ ଆଗରୁ ସାବଧାନ ହୋଇଯାଇଥିଲି। ତଥାପି ହ୍ୟାଣ୍ଡବ୍ୟାଗରେ କିଛି ଭାରତୀୟ ଔଷଧ ଥିଲା। ମୋର ଆଶଙ୍କା ଥିଲା ହୁଏତ ସେ ଔଷଧ ମୋ ପାଇଁ ସମସ୍ୟା ସୃଷ୍ଟି କରିପାରେ। କିନ୍ତୁ ମୋର ବୃତ୍ତି ଓ ବୟସକୁ ଅନୁଧ୍ୟାନ କଲାପରେ ସେମାନେ ବୋଧହୁଏ ଟିକିଏ କୋହଳ ମନୋବୃତ୍ତି ପୋଷଣ କରିଥିଲେ। ସିକ୍ୟୁରିଟି ଚେକିଂରୁ ବାହାରିଲା ବେଳକୁ କନଭେୟର ବେଲ୍ଟ ଯୋଗେ ବ୍ୟାଗେଜ ଆସିଯାଇଥିଲା। ତାକୁ ସଂଗ୍ରହ କରି ଆଉଥରେ ବୁକିଂ କରିବାକୁ ପଡ଼ିଲା। ଏସବୁ କାମ ଅଧଘଣ୍ଟାଏ ଭିତରେ ସରିଗଲା। ଲଗେଜ ବୁକିଂ ପରେ ଆମକୁ କ୍ରାମଟନ ଯିବା ପାଇଁ ଆଉ ଗୋଟିଏ ଟର୍ମିନାଲକୁ ଯିବାକୁ ପଡ଼ିଲା। ସେଠାରେ ପୂର୍ବ ବ୍ୟବସ୍ଥାର ପୁନରାବୃତ୍ତି। ପାସପୋର୍ଟ ଦେଖାଅ, ବୋର୍ଡିଂ କାର୍ଡ ସଂଗ୍ରହ କର, ସିକ୍ୟୁରିଟି ଜୋନ୍ ଭିତରେ ପ୍ରବେଶ କର, ଇତ୍ୟାଦି ଇତ୍ୟାଦି।

## ନ୍ୟୁୟାର୍କରୁ ଟରଣ୍ଟୋ ଯାତ୍ରା

ବିମାନବନ୍ଦରରେ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ ଶେଷ ହେଲାବେଳକୁ ଟରଣ୍ଟୋ ବିମାନ ଛାଡ଼ିବାକୁ ଆହୁରି ଅଧଘଣ୍ଟା ସମୟ ବାକି ଥିଲା। ଆମର ସେତେବେଳକୁ ସନ୍ଧ୍ୟା ସମୟ। ଆମେରିକା ଓ ଭାରତ ମଧ୍ୟରେ ଚଉଦ ଘଣ୍ଟାର ବ୍ୟବଧାନ। ରାତିରେ ଭଲ ନିଦ ହୋଇ ନ ଥିବାରୁ  ନିଦୁଆ ନିଦୁଆ ଲାଗୁଥିଲା। ଠିକ୍ ଭାବରେ ଦାନ୍ତଘଷା ହୋଇ ନ ଥିଲା। ମୁଁ ଆଉ କୁଆଡ଼େ ନଯାଇ ସିଧା ବିମାନ ଭିତରକୁ ଚାଲିଗଲି। କଣ୍ଟିନେଣ୍ଟାଲ ଏୟାରଲାଇନ୍ସର ସେ ବିମାନଟି ଅପେକ୍ଷାକୃତ ସାନ ଥିଲା। ବାଆସ୍ତରୀ ଆସନ ବିଶିଷ୍ଟ। ସେଦିନ ସେଥିରେ ଦୁଇଜଣ ଭାରତୀୟଙ୍କ ସମେତ ମାତ୍ର ପଚାଶଜଣ ପାସେଞ୍ଜର ଥିଲେ ଓ ଅନ୍ୟ ଆସନଗୁଡ଼ିକ ଖାଲି ପଡ଼ିଥିଲା। କିନ୍ତୁ ଏକଜିକ୍ୟୁଟିଭ କ୍ଲାସ ଫୁଲ୍ ଥିଲା। ବିମାନର ପରିଚାରିକାମାନେ ନିଗ୍ରୋ ଥିଲେ। ସେମାନେ ଏତେ ଡେଙ୍ଗା ଥିଲେ ଯେ ବିମାନ ଛାତରେ ସେମାନଙ୍କର ମୁଣ୍ଡ ବାଜୁଥିଲା। ବିମାନ ଛାଡ଼ିବା ପୂର୍ବରୁ ସେଇ ଚିରାଚରିତ ଘୋଷଣା। ଜରୁରୀକାଳୀନ ପରିସ୍ଥିତିରେ କ'ଣ କରିବାକୁ ପଡ଼ିବ, ଅକ୍ସିଜେନ କମିଗଲେ କିପରି ଅକ୍ସିଜେନ ମାସ୍କକୁ ବ୍ୟବହାର କରାଯିବ, ଲାଇଫସେଭ୍ ଜ୍ୟାକେଟ୍ କିପରି ପିନ୍ଧିବ ଇତ୍ୟାଦି ଇତ୍ୟାଦି। ଶେଷରେ  ସେଫଟିବେଲ୍ଟ ବାନ୍ଧି ନିଜ ନିଜ ସିଟ୍‌ରେ ଚୁପ୍‌ଚାପ୍ ବସିରହିବା ପାଇଁ ଅନୁରୋଧ। ବିମାନ ଛାଡ଼ିବା ମାତ୍ରେ ଆରମ୍ଭ ହୋଇଗଲା ସେବା। ପ୍ରଥମେ ସଫ୍ଟଡ୍ରିଙ୍କସ୍ ଓ ପରେ ବ୍ରେକଫାଷ୍ଟ। ମୋର ଖାଇବାରେ ଆଗ୍ରହ ନଥିଲା। ମୁଁ କେବଳ ଅରେଞ୍ଜ ଜୁସ୍ ନେଲି।

ନ୍ୟୁୟାର୍କରୁ କ୍ରାମଟନ ଘଣ୍ଟାକର ବିମାନଯାତ୍ରା। ବିମାନରେ ବସିଥିଲା ବେଳେ ମନରେ ନାନା ଭାବନା ସୃଷ୍ଟି ହୋଇଥିଲା। କୋଉଠି ଓହ୍ଲାଇବାକୁ ପଡ଼ିବ। ସେଠାରୁ କିପରି ଟରଣ୍ଟୋ ଯାଇହେବ। ବିମାନ ବନ୍ଦରରୁ ନେବା ପାଇଁ କିଏ ଆସିଥିବେ କି ନାହିଁ। ଯଦି ନ ଆସିଥିବେ, ତେବେ କି ଉପାୟ ଅବଲମ୍ବନ କରିବାକୁ ହେବ। ମୋ ପାଖରେ ମୋବାଇଲ ଫୋନ୍ ନଥିଲା। ଭାରତୀୟ ଟେଲିଫୋନ ସେଠାରେ କାମ କରୁ ନ ଥିବାରୁ ମୁଁ ମୋବାଇଲ ନେଇ ନଥିଲି। ବିମାନ ବନ୍ଦରମାନଙ୍କରେ ଥିବା ପେ ଟେଲିଫୋନ୍ ବୁଥ୍‌ରୁ ଫୋନ୍ କରିବାର ସୁବିଧା ଥିବାରୁ ମନରେ ଟିକିଏ ଆଶାର ସଞ୍ଚାର ହୋଇଥିଲା। ସବୁ ଭାବନା ଭିତରେ ଆମେରିକା ଆସି ଦୀର୍ଘଦିନର ଅଭିଳାଷ ପୂରଣ ହୋଇଥିବାରୁ ମନଟା ଟିକିଏ ଖୁସି ଥିଲା।

## ବିମାନବନ୍ଦରରେ ଓଡ଼ିଆ ବୈଜ୍ଞାନିକଙ୍କ ସାନିଧ୍ୟ ଲାଭ

ସମସ୍ତ ଆଶା ଓ ଆଶଙ୍କାର ଅବସାନ ଘଟାଇ କଣ୍ଟିନେଣ୍ଟାଲ ବିମାନଟି କ୍ରାମଟନ ବିମାନ ବନ୍ଦରରେ ଅବତରଣ କଲା। କ୍ରାମଟନ ବିମାନ ବନ୍ଦରଟି ଛୋଟିଆଟିଏ ହୋଇଥିବ ବୋଲି ପୂର୍ବରୁ ଯାହା ଭାବୁଥିଲି ସେଠାରେ ପହଞ୍ଚିବା ପରେ ସେ ଧାରଣା ବଦଳିଗଲା। ବିମାନ ବନ୍ଦରରୁ ଟରଣ୍ଟୋ ସହରକୁ ନେବା ପାଇଁ ସେଠାକାର ବିଶିଷ୍ଟ ବୈଜ୍ଞାନିକ ଓ ଶିଳ୍ପପତି ଶ୍ରଦ୍ଧାନନ୍ଦ ମିଶ୍ର ଆସିବେ ବୋଲି ମତେ କୁହାଯାଇଥିଲା । ମୁଁ ପ୍ରଥମଥର ପାଇଁ ଆମେରିକା ଯାଉଥିବାରୁ ଏବଂ ମତେ ଆଗରୁ କେହି ଦେଖି ନ ଥିବା ହେତୁ ଯେଉଁ ସମସ୍ୟା ସୃଷ୍ଟି ହେବାର ଆଶଙ୍କାଥିଲା, ତାକୁ ଦୂରକରିବା ପାଇଁ ରାଜେନ୍ଦ୍ରଭାଇ ଗୋଟିଏ କୌଶଳ ଅବଲମ୍ବନ କରିଥିଲେ। ମୋର ଗୋଟିଏ ଫଟୋ ସଂଗ୍ରହ କରି ସେ ଇଣ୍ଟରନେଟରେ ସବୁ ବନ୍ଧୁମାନଙ୍କୁ ପଠାଇ ଦେଇଥିଲେ। ମୁଁ ଦିଲ୍ଲୀ ଛାଡ଼ିବା ପୂର୍ବରୁ ମୋର ଆମେରିକା ଭ୍ରମଣକୁ ସଂଯୋଜନା କରୁଥିବା ପ୍ରଫେସର ଦିଗମ୍ବର ମିଶ୍ରଙ୍କୁ ଫୋନ କରିଥିଲି। ବିମାନରୁ ଓହ୍ଲାଇ ବ୍ୟାଗେଜ ସଂଗ୍ରହ ପରେ ଲାଉଞ୍ଜ ବାହାରେ ପଡ଼ିଥିବା ଚେୟାରରେ କିଛି ସମୟ ଅପେକ୍ଷା କରିବା ପାଇଁ ସେ ମୋତେ ପରାମର୍ଶ ଦେଇଥିଲେ। କ୍ରାମଟନ ବିମାନ ବନ୍ଦରଟି ମୋ ପାଇଁ ନୂଆ ହୋଇଥିବାରୁ ପ୍ରଫେସର ମିଶ୍ରଙ୍କ ପରାମର୍ଶକୁ ନିଷ୍ଠାର ସହିତ ପାଳନ କରିବା ବ୍ୟତୀତ ମୋର ଅନ୍ୟ କିଛି ବାଟ ନଥିଲା।

କିଛିସମୟ ଅପେକ୍ଷା କରିବା ପରେ ଗୋଟିଏ ଲମ୍ବା କାର୍ ଆସି ମୋ ପାଖରେ ଛିଡ଼ା ହେଲା। ସେଥିରୁ ଜଣେ ପ୍ରୌଢ଼ ବ୍ୟକ୍ତି ବାହାରି ମୋ ପାଖକୁ ଆସି ପ୍ରଶ୍ନ କଲେ, “ଆର୍ ୟୁ ବସନ୍ତ ଦାସ, ପ୍ଲିଜ୍ କମ୍ ଉଇଥ ମି।” କାର୍‌ରେ ବସିଲା ବେଳେ ସେ ନିଜର ପରିଚୟ ଦେଇ କହିଲେ, “ମୁଁ ଶ୍ରଦ୍ଧାନନ୍ଦ ମିଶ୍ର, ଏଠାରେ ଗୋଟିଏ ଆଇଟି ଫାର୍ମ ଖୋଲିଛି।

ଆପଣଙ୍କୁ ଏଠାରୁ ନେଇ ହୋଟେଲରେ ଛାଡ଼ିବା ପାଇଁ ମୋତେ ଦାୟିତ୍ୱ ଦିଆଯାଇଛି।" ତାଙ୍କ କଥାବାର୍ତ୍ତାରୁ ବୁଝିଲି ଦୀର୍ଘ ୪୫ବର୍ଷ ପୂର୍ବେ ଏକ ଅନିଶ୍ଚିତ ଭବିଷ୍ୟତ ସନ୍ଧାନରେ ସେ ଓଡ଼ିଶା ଛାଡ଼ିଥିଲେ। ସେତେବେଳେ କାନାଡ଼ାରେ ବିଶେଷକରି ଟରଣ୍ଟୋରେ ବେଶି ଓଡ଼ିଆ ଲୋକ ନ ଥିଲେ। କାଁ ଭାଁ ଯେତିକି ଲୋକଥିଲେ, ସେମାନଙ୍କ ମଧ୍ୟରେ କିଛି ସମ୍ପର୍କ ନଥିଲା କିମ୍ବା କେହି କାହାକୁ ଜାଣି ନ ଥିଲେ। ନିଜ ଶିଙ୍ଗରେ ନିଜେ ମାଟି ତାଡ଼ି ଶ୍ରୀ ମିଶ୍ର ନିଜକୁ କାନାଡ଼ାରେ ପ୍ରତିଷ୍ଠିତ କରିପାରିଥିଲେ। କଥା ପ୍ରସଙ୍ଗରେ ଶ୍ରୀ ମିଶ୍ର କହିଲେ, ଆଜି ପରିସ୍ଥିତି ବଦଳିଯାଇଛି। କାନାଡ଼ାର ବିଭିନ୍ନ ସ୍ଥାନରେ ଶତାଧିକ ଓଡ଼ିଆ ପରିବାର ବସବାସ କରୁଛନ୍ତି। ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ରହିଛି। ବର୍ଷରେ ଥରେ ଅଧେ ଦେଖାସାକ୍ଷାତ ହେଉଛି। ସେଥିପାଇଁ ଟରଣ୍ଟୋରେ 'ଓଶା' ଅଧିବେଶନ କରାଇବା ସମ୍ଭବପର ହୋଇଛି।

କଥାବାର୍ତ୍ତା ଭିତରେ ଆମେ ଯାଇ ଶ୍ରୀ ମିଶ୍ରଙ୍କ ଦପ୍ତରରେ ପହଞ୍ଚିଯାଇଥିଲୁ। ଅଫିସ ପରିବେଶରୁ ଆଧୁନିକତାର ଛାପ ବାରିହୋଇ ପଡୁଥିଲା। ପ୍ରଥମେ ସେ ମୋତେ ତାଙ୍କ ଅଫିସ ବୁଲାଇବାକୁ ନେଲେ। ଅଫିସରେ ତିରିଶଜଣ ସଫ୍ଟୱେୟାର ଇଞ୍ଜିନିୟର କର୍ମରତ ଥିଲେ। ସେମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ମହିଳା। ସବୁକାମ ଶୃଙ୍ଖଳିତ ଭାବରେ ଚାଲୁଥିଲା। ଆମ ଭଳି ହୋ-ହାଲ୍ଲା ନଥିଲା। ଶ୍ରୀ ମିଶ୍ର କହିଲେ, "ମୋ ଫାର୍ମରେ ମୁଁ ଭାରତୀୟ ଯୁବ ଇଞ୍ଜିନିୟରମାନଙ୍କୁ ଅଗ୍ରାଧିକାର ଦେଇଥାଏ; କାରଣ ପ୍ରଥମେ କ୍ୟାରିଅର୍ ଆରମ୍ଭ ସମୟରେ କି ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ, ସେକଥା ମୁଁ ଅଙ୍ଗେ ନିଭାଇଛି। ସେଥିପାଇଁ ଆମ ଯୁବକ ବନ୍ଧୁମାନେ ସେପରି ଅସୁବିଧା ଭୋଗ ନକରନ୍ତୁ ବୋଲି ମୁଁ ଚାହେଁ। ଅଫିସ ବୁଲି ଫେରିଲା ପରେ ଶ୍ରୀ ମିଶ୍ର ହୋଟେଲ ମେରିଅଟ୍‌କୁ ଫୋନ୍ କରି ମୋ ରୁମ୍ ବିଷୟରେ ବୁଝିଲେ। ଏଗାରଟା ବେଳେ ରୁମ୍ ରେଡି ହୋଇଯିବ ବୋଲି ସେପାଖରୁ ଜବାବ ମିଳିଲା। ତାଙ୍କ ଅଫିସରେ ସଂଲଗ୍ନ ରେଷ୍ଟରୁମ୍‌ରେ ନିତ୍ୟକର୍ମ ସାରିବା ପାଇଁ ଶ୍ରୀ ମିଶ୍ର ମତେ ଅନୁରୋଧ କରିଥିଲେ। କିନ୍ତୁ ହୋଟେଲକୁ ଯାଇ ଆରାମରେ କାମ ସାରିବି ବୋଲି ମୁଁ ତାଙ୍କୁ ବିନୟର ସହିତ ଜଣାଇଥିଲି।

## ପଞ୍ଚତାରକା ହୋଟେଲରେ ସେଉ ଓ ଚୁଡ଼ାଭଜା ଭୋଜନ

ଠିକ୍ ଏଗାରଟା ବେଳେ ଶ୍ରଦ୍ଧାନନ୍ଦ ବାବୁ ମୋତେ ନେଇ ହୋଟେଲ 'ମେରିଅଟ୍'ରେ ପହଞ୍ଚାଇ ଦେଲେ। କାଉଣ୍ଟରରେ ଚେକ୍ ଇନ କରାଇ ମତେ ରୁମ୍ ଚାବି ଧରାଇ ସେ ମୋଠାରୁ ବିଦାୟ ନେଇଗଲେ। ମେରିଅଟ୍ ହୋଟେଲଟି ପଞ୍ଚତାରକା ବିଶିଷ୍ଟ। ସମ୍ପୂର୍ଣ୍ଣ ବାତାନୁକୂଳ। ସବୁ ଅଟୋମେଟିକ। ଟେଲିଫୋନ ମାଧ୍ୟମରେ ସବୁକାମ ନିୟନ୍ତ୍ରିତ କରାଯାଉଥିଲା । ୪୦୬ ନମ୍ବର କୋଠରିଟି ମୋ ନାମରେ ବୁକ୍ କରାଯାଇଥିଲା।

କୋଠରିଟି ଚାରିମହଲାରେ ଥିଲା । ସେହି ମହଲାରେ ଭାରତୀୟ ରେଲୱେ ବୋର୍ଡର ଚେୟାରମ୍ୟାନ କଲ୍ୟାଣ କୁମାର ଜେନା, ଓଡ଼ିଶୀ ନୃତ୍ୟ ଗବେଷକ ଅକ୍ଷୟ ପରିଜା ଓ ଇଟିଭିର ସଂଯୋଜକ ସଞ୍ଜୟ ପାଠକ ରହୁଥିଲେ । ସେମାନେ ସମସ୍ତେ 'ଓଶା' ଅଧିବେଶନରେ ଯୋଗଦେବାକୁ ଯାଇଥିଲେ । ମତେ ଦିଆଯାଇଥିବା ରୁମ୍‌ଟି ବେଶ୍ ପ୍ରଶସ୍ତ ଥିଲା । ବେଡ୍‌ରୁମ୍ ସାଙ୍ଗକୁ ଛୋଟିଆ ଲାଉଞ୍ଜରେ ଆରାମଦାୟକ ସୋଫା । ଟେବୁଲ ଚେୟାର ଓ କାନ୍ଥରେ କପ୍‌ବୋର୍ଡ । ବେଡ୍ ଉପରେ ଦୁଇଫୁଟ ଉଚ୍ଚର ନରମ ଗଦି, ଚାରୋଟି ଫୋମ୍ ତକିଆ । ବସିଲା ବେଳକୁ ତଳକୁ ଗଳିପଡ଼ିଲା ଭଳି ଲାଗିଲା । ବାଥରୁମ୍‌ରେ ଉଲେନ୍ ଗାଲିଚା । ଗାଧୋଇବା ପାଇଁ ବାଦିଂକ୍ୟୁବିକ୍ଲ । ୱାଶିଂ ବେସିନ ପାଖରେ ଟାୱେଲ ରଡ୍‌ରେ ବିଭିନ୍ନ ସାଇଜର ଚାରୋଟି ଟାୱେଲ । ତା'ଛଡ଼ା ସାମ୍ପୋ, ସାବୁନ, କ୍ରିମ୍ ସବୁ ମହଜୁଦ ଥିଲା । ରୁମ୍‌ରେ ଇଣ୍ଟରକମ୍ ଟେଲିଫୋନ ସାଙ୍ଗକୁ ଟିଭି ଓ ଏସି ଲାଗିଥିଲା । ମୋଟାମୋଟି ଭାବରେ ଆଧୁନିକ ଜୀବନର ସମସ୍ତ ଆବଶ୍ୟକତାକୁ ପୂରଣ କରୁଥିବା ପଦାର୍ଥମାନ ସେ ରୁମ୍‌ରେ ଥିଲା ।

ନିତ୍ୟକର୍ମ ସାରିଲା ବେଳକୁ ସେଠାକାର ସମୟ ବାରଟା ହୋଇଯାଇଥିଲା । ସକାଳେ କିଛି ଜଳଖିଆ ଖାଇ ନଥିବାରୁ ଭୋକ ଲାଗୁଥିଲା । ଯୋଉ ହୋଟେଲରେ ମୁଁ ରହୁଥିଲି, ସେଠାରୁ 'ଓଶା' ଅଧିବେଶନ ସ୍ଥାନ କେତେବାଟ, ସେଠାକାର ଟେଲିଫୋନ ନମ୍ବର କେତେ ସେ ବିଷୟରେ ମୋର କୌଣସି ଧାରଣା ନଥିଲା । ସକାଳ ଜଳଖିଆ ଖାଇବା ସମୟ ଅତିବାହିତ ହୋଇଯାଇଥିବାରୁ ରେଷ୍ଟୁରାଣ୍ଟରେ ଆଉ କିଛି ଜଳଖିଆ ନଥିଲା । କ'ଣ କରାଯିବ ? ଏଇକଥା ଭାବୁଭାବୁ ମନେପଡ଼ିଗଲା ମୁଁ ଭୁବନେଶ୍ୱରରୁ ଯିବା ସମୟରେ ବ୍ୟାଗରେ କିଛି ସେଉ ଏବଂ ଚୁଡ଼ାଭଜା ନେଇଥିଲି । ଚନ୍ଦନ ମତେ ସତର୍କ କରିଦେଇ କହିଥିଲା, "ତମେ ଭେଜିଟାରିଆନ । ବିଦେଶରେ ଅଧିକାଂଶ ଜାଗାରେ ଭେଜ୍ ଖାଦ୍ୟ ପାଇବା କଷ୍ଟ । ସାଙ୍ଗରେ କିଛି ବିସ୍କୁଟ ଓ ଚୁଡ଼ାଭଜା, ସେଉ ନେଇଗଲେ ଜରୁରୀ ଅବସ୍ଥାରେ କାମ ଚଳିଯିବ ।" ମୁଁ ବ୍ୟାଗ ଖୋଲି ଡବା ଦୁଇଟି ବାହାର କଲି । ପଞ୍ଚତାରକା ହୋଟେଲ ହୋଇଥିଲେ ବି ମତେ ଦେଖିବାକୁ କେହି ନଥିଲେ । ଭୋକରେ ଚୁଡ଼ାଭଜା ଓ ସେଉ ଅମୃତ ଭଳି ଲାଗୁଥିଲା । ସେଥିରୁ କିଛି ଖାଇ ପାଣି ପିଇଦେବାରୁ ଆମ ସମୟ ଅନୁସାରେ ଡିନର ଓ ସେଠାକାର ସମୟ ଅନୁଯାୟୀ ଲଞ୍ଚ କାମ ଚଳିଗଲା । ପାଖରେ ପଡ଼ିଥିବା ମାଗାଜିନ ଉପରେ ଆଖି ପକାଉ ପକାଉ କେତେବେଳେ ନିଦ ହୋଇଯାଇଥିଲା ଜାଣି ପାରି ନଥିଲି । ହଠାତ୍ ଫୋନ୍ ବାଜିବାରୁ ନିଦ ଭାଙ୍ଗିଗଲା । ଘଣ୍ଟା ଦେଖିଲା ବେଳକୁ ଆଠଟା ବାଜି ଯାଇଥିଲା । କିନ୍ତୁ ବାହାରେ ଖରା ଦେଖି ମନରେ ଭ୍ରମ ସୃଷ୍ଟି ହେଲା । ସେପଟୁ ପ୍ରଫେସର ଦିଗମ୍ବର ମିଶ୍ର କହୁଥିଲେ, "କଣ କାନାଡ଼ା ଶୋଇବା ପାଇଁ ଆସିଛ ? କାହା ସାଙ୍ଗରେ ଟେଲିଫୋନରେ କଥା ହୋଇନାହଁ ?" ମୁଁ କୌଣସି

ଟେଲିଫୋନ ନମ୍ବର ଜାଣିନଥିବା କଥା କହିବାରୁ ସେ ମତେ ଦୁଇଟି ନମ୍ବର ଦେଇ କହିଲେ, "ମୁଁ ସେମାନଙ୍କୁ କହିଦେଇଛି, ଗାଡ଼ି ନେଇ ଆସି ତମକୁ ନେଇଯିବେ। ଯଦି ଡେରି ହେବ, ସେମାନଙ୍କୁ ଫୋନ କରି କହିବ ଗାଡ଼ି ପଠାଇବେ। ହଁ, ଖରାବେଳେ ତମେ କୋଉଠି କ'ଣ ଖାଇଲ ?" ମୋ ଉତ୍ତର ଶୁଣି ସେ ବହୁତ ମନ ଖରାପ କଲେ।

କିଛିସମୟ ପରେ ମୋ ରୁମ୍‌ର କଲିଂବେଲ୍ ବାଜି ଉଠିଲା। ମୁଁ କବାଟ ଖୋଲି ଦେଖିଲାବେଳକୁ ଜଣେ ଯୁବତୀ ଛିଡ଼ା ହୋଇଥିଲେ। ସେ ମତେ ଦେଖି ନମ୍ରତାର ସହିତ ପଚାରିଲେ, ''ଆପଣ ବସନ୍ତ ଦାସ ? ମୁଁ ଆପଣଙ୍କୁ 'ଓଶା' ଅଧିବେଶନ ସ୍ଥାନକୁ ନେବାକୁ ଆସିଛି। ମୁଁ ତଳେ ଲାଉଞ୍ଜରେ ଅପେକ୍ଷା କରିଛି। ଆପଣ ପ୍ରସ୍ତୁତ ହୋଇ ଆସନ୍ତୁ।" ଅଳ୍ପ ସମୟ ମଧ୍ୟରେ ମୁଁ ପ୍ରସ୍ତୁତ ହୋଇ ତଳକୁ ଗଲି ଓ ସେଠାରେ ଅପେକ୍ଷା କରିଥିବା ଯୁବତୀଙ୍କ ସହିତ ଯାଇ ଅଧିବେଶନ ସ୍ଥାନରେ ପହଞ୍ଚିଲି। ବାଟରେ ଗଲାବେଳେ ଗାଡ଼ି ଡ୍ରାଇଭିଂ କରୁଥିବା ଯୁବତୀଙ୍କ ପରିଚୟ ପଚାରି ବୁଝିଲି। ସେ ଥିଲେ ଜଷ୍ଟିସ ଗୋପାଳ ଦାସଙ୍କ ନାତୁଣୀ। ସେ ଯେପରି ଭଦ୍ର, ସେପରି ମାର୍ଜିତ ଥିଲେ। ତାଙ୍କ ବ୍ୟବହାର ମତେ ଖୁବ୍ ପ୍ରଭାବିତ କରିଥିଲା। ସେଦିନ ସନ୍ଧ୍ୟାରେ ଅନେକ ଓଡ଼ିଆ ପ୍ରବାସୀଙ୍କ ସହିତ ଦେଖା ହେଲା। ଅଧିବେଶନରେ ଯୋଗଦେବା ପାଇଁ ମୁଁ ଯାଇଥିବାରୁ ସେମାନେ ମତେ ଅଭିନନ୍ଦନ ଜଣାଇଥିଲେ। ଓଡ଼ିଶାରେ ଥିବା ସେମାନଙ୍କ ପରିବାରବର୍ଗଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିବାରୁ ଖୁବ୍ କମ୍ ସମୟରେ ଆମର ଗପ ଜମିଗଲା। ମୁଁ ସେମାନଙ୍କ ପରିବାର ସମ୍ପର୍କରେ ଏତେକଥା ଜାଣିଥିବା ଘଟଣା ସେମାନଙ୍କୁ ଆଶ୍ଚର୍ଯ୍ୟ କରିଥିଲା। ରାତି ପ୍ରାୟ ଦଶଟା ବେଳେ ଡିନର ସାରି ମୁଁ ହୋଟେଲକୁ ଫେରିଲି। ଇତିମଧ୍ୟରେ ଜର୍ମାନୀରୁ ରାଜେନ୍ଦ୍ରଭାଇ ଦୁଇଥର ଫୋନ୍ କରି ମୁଁ ଠିକ୍ ସମୟରେ ପହଞ୍ଚିଲି କି ନାହିଁ, ହୋଟେଲ ବ୍ୟବସ୍ଥା ଠିକ୍ ଭାବରେ ହୋଇଛି କି ନାହିଁ, ସବୁ ଟିକିନିଖି ଖବର ବୁଝି ସାରିଥିଲେ।

## ଟରଣ୍ଟୋରେ 'ଓଶା' ଅଧିବେଶନ

ଆମେରିକାରେ "ଓଡ଼ିଶା ସୋସାଇଟି ଅଫ୍ ଆମେରିକାଜ୍" (ଓଶା) ଏକ ପୁରାତନ ଅନୁଷ୍ଠାନ। ଯେତେବେଳେ ଆମେରିକାରେ ବସବାସ କରୁଥିବା ଅନ୍ୟ କୌଣସି ଭାଷାଭାଷୀମାନଙ୍କର କିଛି ଅନୁଷ୍ଠାନ ନଥିଲା, ସେତେବେଳେ ସେ ଦେଶରେ ଥିବା ପ୍ରବାସୀ ଓଡ଼ିଆମାନେ ୧୯୬୯ ମସିହାରେ ଏହି ଅନୁଷ୍ଠାନଟି ଗଢ଼ିଥିଲେ। ୧୯୭୦ ମସିହା ବେଳକୁ ଉଭୟ ଆମେରିକା ଓ କାନାଡ଼ାରେ ମାତ୍ର ୧୨୦ଟି ଓଡ଼ିଆ ପରିବାର ରହୁଥିଲେ। କାହାରି ସାଙ୍ଗରେ କାହାରି ସମ୍ପର୍କ ନଥିଲା। ଓଡ଼ିଆମାନେ ଟେଲିଫୋନ ଡାଇରେକ୍ଟରିରୁ ନାଁ ଦେଖି ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥିଲେ। ସେପରି ଏକ

ପରିସ୍ଥିତିରେ ଯେଉଁ କେତେକ ପ୍ରବାସୀ ଓଡ଼ିଆ 'ଓଶା' ଗଠନରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ, ଡକ୍ଟର ଗୌରୀ ଦାସ, ଡକ୍ଟର ପ୍ରଶାନ୍ତ ପଟ୍ଟନାୟକ ପ୍ରମୁଖ ଅନ୍ତର୍ଭୁକ୍ତ । ଓଡ଼ିଆ ଆସୋସିଏସନ ଗଠନ ପରେ ଆମେରିକାର ନାସବିଲରେ ପ୍ରଥମେ ରଥଯାତ୍ରା ଆରମ୍ଭ ହୋଇଥିଲା । ବର୍ତ୍ତମାନ ଆମେରିକାର ୧୬ଟି ସ୍ଥାନରେ ଏହି ରଥଯାତ୍ରା ଅନୁଷ୍ଠିତ ହେଉଛି ।

ଜୁଲାଇ ୪ତାରିଖ ହେଉଛି ଆମେରିକାର ପ୍ରତିଷ୍ଠା ଦିବସ । ଘଟଣାଚକ୍ରରେ 'ଓଶା' ମଧ୍ୟ ସେହିଦିନ ପ୍ରତିଷ୍ଠିତ ହୋଇଥିଲା । ଗତ ୩୯ବର୍ଷ ମଧ୍ୟରେ ଆମେରିକାରେ ପ୍ରାୟ ଦଶ ହଜାର ଓଡ଼ିଆ ପରିବାର ବସବାସ କଲେଣି । 'ଓଶା' ଅଧିବେଶନ ସେମାନଙ୍କର ଗୋଟିଏ ମିଳନସ୍ଥଳ ଭାବରେ କାର୍ଯ୍ୟ କରୁଛି । ଓଡ଼ିଆଙ୍କୁ ଯେଉଁମାନେ ଚିଲିକା କଙ୍କଡ଼ା ସହିତ ତୁଳନା କରନ୍ତି, 'ଓଶା' ଅଧିବେଶନରେ ଓଡ଼ିଆ ଲୋକଙ୍କ ମଧ୍ୟରେ ଥିବା ଭ୍ରାତୃଭାବ ଓ ସହୃଦୟତା ଦେଖିଲେ ତାହା ଭୁଲ ବୋଲି ସେଇମାନଙ୍କର ନିଶ୍ଚିତ ଭାବରେ ହୃଦବୋଧ ହେବ । ଦୀର୍ଘଦିନ ଧରି ଆମେରିକାର ଆଧୁନିକ ସଭ୍ୟତା ଭିତରେ ବସବାସ କଲେ ମଧ୍ୟ ଓଡ଼ିଆ ଲୋକେ ଯେ ଓଡ଼ିଶାର ଚାଲିଚଳଣ, ଓଡ଼ିଆ ଖାଦ୍ୟକୁ ଭୁଲିପାରି ନାହାନ୍ତି 'ଓଶା' ଅଧିବେଶନରୁ ତାର ସ୍ପଷ୍ଟ ସୂଚନା ମିଳିଥାଏ ।

## ଓଡ଼ିଶା ରାଜ୍ୟପାଳଙ୍କ ଦ୍ୱାରା ଅଧିବେଶନ ଉଦ୍‌ଘାଟିତ

ଟରଣ୍ଟୋରେ 'ଓଶା' ଅଧିବେଶନର ସଫଳତା ପାଇଁ କର୍ମକର୍ତ୍ତାମାନଙ୍କ ଆଖିରେ ନିଦ ନ ଥିଲା । ସେଦିନ ଥିଲା ୨୦୦୮ ମସିହା ଜୁଲାଇ ୪ତାରିଖ । ସମଗ୍ର ଆମେରିକାବାସୀ ଆନନ୍ଦରେ ମସଗୁଲ ଥିଲାବେଳେ ସେ ମହାଦେଶରେ ବସବାସ କରୁଥିବା ପ୍ରବାସୀ ଓଡ଼ିଆମାନେ ସେଦିନଟି ଭିନ୍ନ ଭାବରେ ପାଳନ କରିଥିଲେ । ସେଦିନ ସକାଳେ ଅଧିକାଂଶ ଓଡ଼ିଆ ଧୋତି ପଞ୍ଜାବୀ ଓ ମହିଳାମାନେ ପାଟଶାଢ଼ି ପିନ୍ଧି ଏକାଠି ହୋଇଥିଲେ ରାମଟନ ଥିଏଟର ହଲ୍‌ଠାରେ । ସେମାନଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ଓଡ଼ିଶାର କୌଣସି ଏକ ଜାଗାରେ କିଛି ଉତ୍ସବ ହେଉଥିଲା । ଦିଲ୍ଲୀ ସହରରେ ରହୁଥିବା ଓଡ଼ିଆ ଝିଅ ବୋହୂ ଜିନ୍ ପିନ୍ଧିବାକୁ ଅଧିକ ପସନ୍ଦ କରୁଥିଲା ବେଳେ ସୁଦୂର ଆମେରିକାରେ ଓଡ଼ିଆଣୀମାନଙ୍କୁ ନିଜ ରାଜ୍ୟର ଶାଢ଼ିରେ ଦେଖି ମନ ଆନନ୍ଦରେ ପୂରି ଉଠିଥିଲା ।

ସେଦିନ ସକାଳ ଦଶଟା ବେଳେ 'ଓଶା' ଅଧିବେଶନ ଉଦ୍‌ଘାଟନ ପାଇଁ ସମୟ ଧାର୍ଯ୍ୟ ହୋଇଥିଲା । ଓଡ଼ିଶାର ରାଜ୍ୟପାଳ ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଏହି ଅଧିବେଶନକୁ ଉଦ୍‌ଘାଟନ କରିବା ପାଇଁ ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ଯାଇଥିବାରୁ କର୍ମକର୍ତ୍ତାମାନଙ୍କ ମଧ୍ୟରେ ଅଧିକ ଉତ୍ସାହ ସୃଷ୍ଟି ହୋଇଥିଲା । ଶ୍ରୀ ଭଣ୍ଡାରେ ଅନ୍ୟ

ରାଜ୍ୟପାଳମାନଙ୍କଠାରୁ ଟିକିଏ ଭିନ୍ନ ଧରଣର। ଅନେକ ସମୟରେ ସେ ପ୍ରୋଟୋକଲ ନିୟମ ଭାଙ୍ଗି କାମ କରିଥାନ୍ତି। ସେ ରାଜ୍ୟପାଳ ହୋଇଆସିବା ପରେ ଓଡ଼ିଶାର ରାଜଭବନ ସାଧାରଣ ଲୋକଙ୍କ ପାଇଁ ସର୍ବଦା ଖୋଲା ରହିବ ବୋଲି ଯାହା କହିଥିଲେ, ତାକୁ ବାସ୍ତବରେ ପରିଣତ କଲେ। ଓଡ଼ିଶାର ନିର୍ବାଚିତ ମୁଖ୍ୟମନ୍ତ୍ରୀଙ୍କଠାରୁ ସେ ଅଧିକ ସଭାସମିତି ଓ ଉତ୍ସବକୁ ଯାଇ ଅଳ୍ପଦିନ ମଧ୍ୟରେ ରାଜ୍ୟବାସୀଙ୍କର ଅତିପ୍ରିୟ ହୋଇପାରିଛନ୍ତି। ଯାହାର ଯାହା ଗୁହାରି କରିବାର ଥାଏ, ରାଜ୍ୟପାଳ ଭୁବନେଶ୍ୱରରେ ଉପସ୍ଥିତ ଥିଲେ ସେ ତାଙ୍କୁ ଦେଖା କରି ସବୁକଥା କରିଛନ୍ତି। ଏହାଠାରୁ ଅଧିକ ଆଉ କ'ଣ ଜଣେ ରାଜ୍ୟପାଳଙ୍କଠାରୁ ଆଶା କରାଯିବ ?

ସମସ୍ତଙ୍କୁ ଚକିତ କରି ସେଦିନ ରାଜ୍ୟପାଳ ଉତ୍ସବ ଆରମ୍ଭର ଅଧଘଣ୍ଟା ଆଗରୁ ଯାଇ ଉତ୍ସବସ୍ଥଳୀରେ ପହଞ୍ଚିଗଲେ। ତାଙ୍କ ସାଙ୍ଗରେ ଥିଲେ କାନାଡ଼ାରେ ଅବସ୍ଥାପିତ ଭାରତୀୟ ହାଇକମିଶନର। ରାଜ୍ୟପାଳଙ୍କ ଉପସ୍ଥିତି ଆୟୋଜକମାନଙ୍କୁ ଟିକିଏ ଅଡୁଆରେ ପକାଇ ଦେଇଥିଲା। ମାତ୍ର ଶ୍ରୀ ଭଣ୍ଡାରେ ସବୁକଥା ଚଳେଇନେଲେ। ମହିଳାମାନେ ଓଡ଼ିଶୀ ପରମ୍ପରା ଅନୁଯାୟୀ ରାଜ୍ୟପାଳଙ୍କୁ ପାଛୋଟି ନେଇ ହଲ୍‌ରେ ବସାଇଲେ। ମହିଳାମାନଙ୍କ ହୁଳହୁଳି ଶବ୍ଦ ଏକ ଭିନ୍ନ ଭାବ ସୃଷ୍ଟି କରିଥିଲା। ରାଜ୍ୟପାଳ ଶ୍ରୀ ଭଣ୍ଡାରେ ପ୍ରଦୀପ ପ୍ରଜ୍ୱଳନ କରି 'ଓଶା'ର ୩୯ତମ ଅଧିବେଶନକୁ ଉଦ୍‌ଘାଟନ କରିବା ସମୟରେ ରାମଟନ ହଲରେ ଭରପୂର ଦର୍ଶକ କରତାଳି ଦେଇ ତାଙ୍କୁ ସ୍ୱାଗତ କରିଥିଲେ। ରାଜ୍ୟପାଳ ତାଙ୍କ ଭାଷଣରେ କହିଥିଲେ, "ଆପଣମାନେ ବିଦେଶରେ ନିଜ ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇ ଯେପରି ସୁନାମ ଅର୍ଜନ କରିଛନ୍ତି, ସେଥିରେ ମୁଁ ବିଶେଷ ଆନନ୍ଦିତ। ଏହା ଯେ କୌଣସି ଭାରତୀୟଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ। କିନ୍ତୁ ସେଥି ସହିତ ଆପଣମାନେ ଗୋଟିଏ ବିଷୟ ଭୁଲିଯିବା ଉଚିତ ନୁହେଁ। ଆପଣମାନେ ଯେଉଁ ମାଟିରୁ ଆସିଛନ୍ତି ସେ ମାଟି ପ୍ରତି ଆପଣ ପ୍ରତ୍ୟେକଙ୍କର କିଛି କର୍ତ୍ତବ୍ୟ ରହିଛି। ନିଜେ ସବୁପ୍ରକାର ସୁଖସୁବିଧା ଉପଭୋଗ କଲାବେଳେ ଓଡ଼ିଶାର କିପରି ସାମୂହିକ ବିକାଶ ଘଟିବ ସେ ଦିଗରେ ସର୍ବଦା ସଚେତନ ରହିବା ଆବଶ୍ୟକ।" ରାଜ୍ୟପାଳମାନେ ସେମାନଙ୍କ ବ୍ୟକ୍ତିଗତ ଷ୍ଟାଫ୍‌ଙ୍କ ଦ୍ୱାରା ଲିଖିତ ଭାଷଣକୁ ସାଧାରଣ ଉତ୍ସବମାନଙ୍କରେ ପାଠ କରିବାର ଏକ ପରମ୍ପରା ଦୀର୍ଘଦିନୁ ପ୍ରଚଳିତ ହୋଇ ଆସୁଥିଲେ ହେଁ, ପରିସ୍ଥିତିକୁ ଖାପ ଖାଇଲା ଭଳି ଭାଷଣ ଦେବା ଶ୍ରୀ ଭଣ୍ଡାରେଙ୍କର ଏକ ବ୍ୟତିକ୍ରମ ଥିଲା।

## 'ଆମ ମାଟି - ଆମ ମଣିଷ' ଆଲୋଚନାଚକ୍ରରେ ଅଂଶଗ୍ରହଣ

'ଓଶା' ଅଧିବେଶନ ସମୟରେ 'ଆମ ମାଟି - ଆମ ମଣିଷ' ସମ୍ପର୍କରେ ଏକାଧିକ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା। ସେଥିରେ ଅଂଶଗ୍ରହଣ ନିମିତ୍ତ ଓଡ଼ିଶାରୁ ମୁଁ ଏବଂ ଭୁବନେଶ୍ୱରର ଅତିରିକ୍ତ ଜିଲା ମାଜିଷ୍ଟ୍ରେଟ ଧୀରେନ ପଟ୍ଟନାୟକ ଆମନ୍ତ୍ରିତ ହୋଇଥିଲୁ। ଜୁଲାଇ ଚାରି ତାରିଖ ଶନିବାର ଦିନ 'ଓଡ଼ିଶାର ଶିକ୍ଷା ପଦ୍ଧତି' ସମ୍ପର୍କରେ ଆଲୋଚନାଚକ୍ରରେ ମୋର ଅଂଶଗ୍ରହଣ କରିବାର କାର୍ଯ୍ୟକ୍ରମ ଥିଲା। ଆଗରୁ ମୁଁ ମୋ ବକ୍ତବ୍ୟର ସାରାଂଶ ଆୟୋଜକମାନଙ୍କ ପାଖକୁ ପଠାଇ ଦେଇଥିଲି। ମୁଁ ପହଞ୍ଚିଲାବେଳକୁ ହଲ୍‌ରେ ଅଧିକାଂଶ ଶ୍ରୋତା ପହଞ୍ଚି ସାରିଥିଲେ। ଆମେରିକାରେ ଦୀର୍ଘଦିନ ହେଲା ବସବାସ କରୁଥିଲେ ହେଁ ଓଡ଼ିଶା ସହିତ ସେମାନଙ୍କର ଘନିଷ୍ଠ ସମ୍ପର୍କ ଥିଲା ଏବଂ ଓଡ଼ିଶାର ବିଭିନ୍ନ ସମସ୍ୟା, ବିଶେଷକରି ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁସବୁ ତ୍ରୁଟି ବିଚ୍ୟୁତି ଘଟୁଛି ସେ ବିଷୟରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ସଚେତନ ଥିଲେ।

ମୁଁ ମୋ ବକ୍ତବ୍ୟରେ ମୁଖ୍ୟତଃ ତିନୋଟି ଦିଗ ଉପରେ ଆଲୋକପାତ କରିଥିଲି। ମୁଁ କହିଥିଲି, ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥା କ୍ରମେ ବିପର୍ଯ୍ୟସ୍ତ ସ୍ଥିତିକୁ ଚାଲିଗଲାଣି। ରାଜ୍ୟରେ ଅନ୍ୟୂନ ଦଶହଜାର ଗାଁରେ ପ୍ରାଥମିକ ବିଦ୍ୟାଳୟ ନାହିଁ। ଯେଉଁଠି ସ୍କୁଲ ଅଛି ସେଠି ଆବଶ୍ୟକ ସଂଖ୍ୟକ ଶିକ୍ଷକ ନାହାନ୍ତି। କେତେକ କ୍ଷେତ୍ରରେ ଶିକ୍ଷକମାନେ ଗାଁର ବେକାର ଯୁବକମାନଙ୍କୁ ଅଳ୍ପ ପଇସାରେ ପାଠପଢ଼ାଇବା କାମରେ ଲଗାଇ ନିଜେ ବେପାର ବଣିଜ କିମ୍ବା ଅନ୍ୟ କାର୍ଯ୍ୟରେ ଲାଗିଛନ୍ତି। ମାଧ୍ୟମିକ ଶିକ୍ଷାର ସ୍ଥିତି ଆହୁରି ଶୋଚନୀୟ। ବର୍ଷର ପ୍ରାୟ ଚାରିମାସ ସମୟ ମାଧ୍ୟମିକସ୍କୁଲ ଶିକ୍ଷକମାନେ ରାଜଧାନୀ ଭୁବନେଶ୍ୱର ସହରର ମହାତ୍ମା ଗାନ୍ଧୀ ମାର୍ଗରେ ରାସ୍ତା ଅବରୋଧ କାମରେ ବ୍ୟସ୍ତ ଥାଆନ୍ତି। ସର୍ବସାଧାରଣଙ୍କ ଚଳାଚଳ ପାଇଁ ଉଦ୍ଦିଷ୍ଟ ରାସ୍ତାକୁ ବେଆଇନ ଭାବରେ ଅବରୋଧ କରିରଖିବା, ନିୟମ ଉଲ୍ଲଂଘନ କରି କର୍ତ୍ତବ୍ୟରତ ପୁଲିସ୍ ସାଙ୍ଗରେ ଠେଲାପେଲା ହେବା ସେମାନଙ୍କର ଏକପ୍ରକାର ପେସାରେ ପରିଣତ ହୋଇଗଲାଣି। ସମାଜର ଅନ୍ୟବର୍ଗଙ୍କ ଭଳି ନିଜର ନ୍ୟାୟପୂର୍ଣ୍ଣ ଦାବି ହାସଲ ପାଇଁ ଗଣତାନ୍ତ୍ରିକ ପଦ୍ଧତିରେ ଆନ୍ଦୋଳନ କରିବାର ଅଧିକାର ଶିକ୍ଷକମାନଙ୍କର ରହିଛି ଏବଂ ତାକୁ କେହି ଅସ୍ୱୀକାର କରୁନାହାନ୍ତି। କିନ୍ତୁ ଏକ ପକ୍ଷରେ ନିଜେ ବିଶୃଙ୍ଖଳିତ ହୋଇ ଅନ୍ୟପକ୍ଷରେ ଛାତ୍ରଛାତ୍ରୀମାନଙ୍କୁ ଶୃଙ୍ଖଳିତ ହେବା ପାଇଁ ପରାମର୍ଶ ଦେବା କେତେଦୂର ଯଥାର୍ଥ, ତାହା ବିଚାର କରିବାକଥା। ସେହିଭଳି ଉଚ୍ଚଶିକ୍ଷା ବ୍ୟବସ୍ଥା। କଲେଜ ଅଧ୍ୟାପକମାନଙ୍କ ଭିତରୁ ଅନେକେ ଘରେ ଚାହାଳି ଭଳି ଟ୍ୟୁସନକ୍ଲାସ ଖୋଲି ଅର୍ଥ ଉପାର୍ଜନ କରୁଛନ୍ତି। ପରିସ୍ଥିତି ଏପରି ଅବସ୍ଥାରେ ପହଞ୍ଚିଲାଣି, କେତେକ କ୍ଷେତ୍ରରେ ଅଧ୍ୟାପକଙ୍କ ପାଖରେ ଟ୍ୟୁସନ ନହେଲେ ପରୀକ୍ଷାରେ ନମ୍ବର କମାଇ ଦିଆଯାଉଥିବାର

ଅଭିଯୋଗ ଶୁଣାଗଲାଣି । କିଛିବର୍ଷ ତଳେ ଏହିପରି ଏକ ପରିସ୍ଥିତିରେ ବିଜେବି କଲେଜର ରିଚା ମିଶ୍ର ନାମ୍ନୀ ଜଣେ ଛାତ୍ରୀ ଆତ୍ମହତ୍ୟା କରିବା ଘଟଣା ସମଗ୍ର ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର କେତେକ ଅଧ୍ୟାପକଙ୍କର ଛାତ୍ରୀମାନଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର ଶିକ୍ଷକ ଛାତ୍ରୀ ସମ୍ପର୍କକୁ କଳୁଷିତ କରିଥିଲା ।

ମୁଁ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ସୃଷ୍ଟି ହୋଇଥିବା ସମସ୍ୟା ସମ୍ପର୍କରେ ଏକ ବିସ୍ତୃତ ଚିତ୍ର ପ୍ରଦାନ କଲାବେଳେ ଶ୍ରୋତାମାନଙ୍କ ପାଖରୁ ପ୍ରଶ୍ନ ଉପରେ ପ୍ରଶ୍ନମାନ ପଚରା ଯାଇଥିଲା । "ଯଦି ଶିକ୍ଷା କ୍ଷେତ୍ରରେ ଏପରି ବିଶୃଙ୍ଖଳା ସୃଷ୍ଟି ହେଉଛି, ତେବେ ରାଜ୍ୟ ସରକାର କରୁଛନ୍ତି କ'ଣ ? ସରକାର କିଛି କରୁନାହାନ୍ତି ବୋଲି ଆପଣଙ୍କର ଯଦି ହୃଦ୍‌ବୋଧ ହେଉଛି, ତେବେ ଆପଣମାନେ କାହିଁକି ସରକାରଙ୍କୁ ବଦଳାଇ ଦେଉନାହାନ୍ତି ? ଭାରତୀୟ ଗଣତନ୍ତ୍ର ତ. ସେ ଅଧିକାର ଆପଣମାନଙ୍କୁ ଦେଇଛି ।" ଏକାସାଙ୍ଗରେ ଏତେ ପ୍ରଶ୍ନ, ତା' ପୁଣି ଭେଟେରାନମାନଙ୍କ ପକ୍ଷରୁ । ମୁଁ ସେମାନଙ୍କୁ ବିନମ୍ରତାର ସହିତ କହିଲି, "ଆପଣମାନେ ଯାହା ପଚାରିବା କଥା ପଚାରନ୍ତୁ, ମୁଁ ସେ ସବୁର ଉତ୍ତର ଦେବାକୁ ଯଥାସାଧ୍ୟ ଚେଷ୍ଟା କରିବି ।" ମୋର ଉତ୍ତର ଥିଲା, "ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ କରି ଆମେ ପାଞ୍ଚବର୍ଷରେ ଥରେ ସରକାର ବଦଳାଉଛୁ । କିନ୍ତୁ ଦୁର୍ଭାଗ୍ୟର କଥା ଯେ, ପରବର୍ତ୍ତୀ ସରକାରମାନେ ପୂର୍ବ ସରକାର ଅପେକ୍ଷା ଆହୁରି ଖରାପ ହେଉଛନ୍ତି ।"

ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ଜମିଆସୁଥିଲା, ସେମାନଙ୍କର ସବୁ ପ୍ରଶ୍ନର ଉତ୍ତର ଦେବାପାଇଁ ମୁଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇସାରିଥିଲି; କିନ୍ତୁ ଆଲୋଚନାଚକ୍ର ପାଇଁ ଉଦ୍ଦିଷ୍ଟ ଦୁଇଘଣ୍ଟା ସମୟ ଅତିବାହିତ ହୋଇଯିବାରୁ ଆମକୁ ସେଥିରୁ ନିବୃତ୍ତ ହେବାକୁ ପଡ଼ିଲା । ସେ ଦେଶରେ ସବୁକଥା ଶୃଙ୍ଖଳିତ ଭାବରେ ଚାଲୁଥିବାରୁ କେହି ସେଥିରେ ଆପତ୍ତି ଉଠାଇ ନଥିଲେ ।

## ଟରଣ୍ଟୋରେ ଓଡ଼ିଶୀ ନୃତ୍ୟଗୀତର ଆସର

'ଓଶା' ଅଧିବେଶନ ଆରମ୍ଭ ଦିନ ସନ୍ଧ୍ୟାରେ ଓଡ଼ିଶୀ ନୃତ୍ୟଗୀତର ଆସର ଆରମ୍ଭ ହୋଇଯାଇଥିଲା । ପ୍ରଥମେ ଶ୍ରୀ ଗୋପାଳ ମହାନ୍ତିଙ୍କ କନ୍ୟା ନିହାରିକା ଦଶାବତାର ନୃତ୍ୟ ପରିବେଷଣ କରିଥିଲେ । ଓଡ଼ିଶୀନୃତ୍ୟର ଜନ୍ମସ୍ଥାନ ଓଡ଼ିଶାମାଟିରୁ ଓଡ଼ିଶୀନୃତ୍ୟ କ୍ରମେ ଲୋପ ପାଇ ଯାଉଥିଲାବେଳେ ସୁଦୂର କାନାଡ଼ାରେ ନିହାରିକାଙ୍କ ନୃତ୍ୟ ଦେଖି ମନଟା କିପରି ଆନ୍ଦୋଳିତ ହୋଇଗଲା । ମନେପଡ଼ିଗଲା ଓଡ଼ିଶୀ ନୃତ୍ୟ ସଙ୍ଗୀତର ପ୍ରସାର ପାଇଁ ବାବୁଭାଇ (ସ୍ୱର୍ଗତ ବାବୁଲା ଯୋଶି)ଙ୍କ ତ୍ୟାଗ ଓ ସାଧନା ସମ୍ପର୍କରେ । ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକ ସହରର ବିଭିନ୍ନ ସ୍ଥାନରେ ଘରଭଡ଼ା ନେଇ ମୂଳ ଗୁଜୁରାଟବାସୀ ବାବୁଭାଇ କିପରି ଆରମ୍ଭ କରିଥିଲେ 'କଳାବିକାଶ କେନ୍ଦ୍ର' । କଳାବିକାଶ କେନ୍ଦ୍ରର ନିଜସ୍ୱ ଗୃହ ନିର୍ମାଣ

ପାଇଁ ସେ କିପରି ଖାଲି ପାଦରେ ଚାଲି ଚାଲି ବୁଲୁଥିଲେ। ତାଙ୍କର ପ୍ରେରଣା ଓ ଉତ୍ସାହ ବଳରେ ସୃଷ୍ଟି ହୋଇଥିଲେ ସଂଯୁକ୍ତା ପାଣିଗ୍ରାହୀ, କୁମ୍‌କୁମ୍ ମହାନ୍ତି ଓ କୁକୁମିନା ମହାନ୍ତି ପ୍ରମୁଖ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନୃତ୍ୟାଙ୍ଗନାମାନେ। କିନ୍ତୁ କ'ଣ ହେଲା ? ବାବୁଭାଇଙ୍କ ଅବର୍ତ୍ତମାନରେ କଳାବିକାଶ କେନ୍ଦ୍ର ହୋଇଗଲା ଶସ୍ତା ରାଜନୀତିର କ୍ଷେତ୍ର। ସେଠାରେ ଆଉ କଳାର ଚର୍ଚ୍ଚା ହେଲାନାହିଁ । କିମ୍ବା ଦେଶ ବିଦେଶରେ ନାମ କମାଇଲାଭଳି କେହି ଜଣେ ନୃତ୍ୟାଙ୍ଗନା ଆଉ ସେ ଅନୁଷ୍ଠାନରୁ ବାହାରିଲେ ନାହିଁ। ଅଥଚ ଜନ୍ମମାଟିଠାରୁ କାହିଁ କେତେଦୂରରେ ନିହାରିକା ଓଡ଼ିଶୀନୃତ୍ୟ ଶିକ୍ଷାକରି ସେଦିନ ନିଜର ପାରଦର୍ଶିତାର ପ୍ରମାଣ ଦେଖାଇ ପାରିଥିଲେ। ତାଙ୍କର ନୃତ୍ୟଶୈଳୀ ଦର୍ଶକମାନଙ୍କୁ ବିମୋହିତ କରିଥିଲା। ସେଦିନର ଅନ୍ୟ ଆକର୍ଷଣ ଥିଲା ନୃତ୍ୟନାଟିକା 'କର୍ଣ୍ଣବଧ' । ଏହାର ପରିବେଷଣ ଖୁବ୍ ଉଚ୍ଚକୋଟୀର ହୋଇଥିଲା । ମାଟିରେ ପୋତିହୋଇ ପଡ଼ିଥିବା ରଥକୁ ଟେକିବା ପାଇଁ ଉଦ୍ୟମ କଲାବେଳେ ସାରଥି ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ଅର୍ଜୁନଙ୍କ ଦ୍ୱାରା କର୍ଣ୍ଣଙ୍କ ବଧ ଇତ୍ୟାଦି ଦୃଶ୍ୟ ଉପଭୋଗ କଲାବେଳେ ଦର୍ଶକମାନଙ୍କ ଆଖିରେ ଲୁହ ଜକେଇ ଆସିଥିଲା। 'କର୍ଣ୍ଣବଧ'ର ରଚୟିତା ଗଣକବି ବୈଷ୍ଣବ ପାଣି ଅନେକ ଦିନରୁ ଏ ଧରାଧାମରୁ ବିଦାୟ ନେଇସାରିଲେଣି। ତାଙ୍କ ରଚନାକୁ ଗୀତିନାଟ୍ୟରେ ଉପସ୍ଥାପନା କରିଥିବା ଗୋପାଳ ଛୋଟରାୟ ମଧ ବାହୁଡ଼ି ଗଲେଣି ଓ ସେଥି ସହିତ ଓଡ଼ିଶାମାଟିରୁ ଗୀତିନାଟ୍ୟର ପରିବେଷଣ ମଧ କମିଆସିଲାଣି। କିନ୍ତୁ ସୁଦୂର ଆମେରିକାର ପ୍ରବାସୀ ଓଡ଼ିଆମାନେ ନିଜ ଭିତରେ ବଞ୍ଚାଇ ରଖିଛନ୍ତି ସେଇ କଳାକୁ। 'କର୍ଣ୍ଣବଧ' ଭଳି ଏକ ପୌରାଣିକ ନାଟକ ପରିବେଷଣ ପାଇଁ ସେମାନଙ୍କୁ ଦୀର୍ଘ ତିନିମାସ କାଳ ସାଧନା କରିବାକୁ ପଡ଼ିଥିଲା।

'କର୍ଣ୍ଣବଧ' ପରେ ଆରମ୍ଭ ହୋଇଥିଲା ସମ୍ବଲପୁରୀ ଲୋକସଙ୍ଗୀତ ଓ ସମବେତ କଣ୍ଠରେ 'ଜଗନ୍ନାଥ ସ୍ୱାମୀ... ନୟନପଥଗାମୀ'। ଏହି କଣ୍ଠସଙ୍ଗୀତରେ ଦର୍ଶକମାନେ ଏତେ ପରିମାଣରେ ମଜ୍ଜି ଯାଇଥିଲେ ଯେ, ସେମାନଙ୍କ ମଧ୍ୟରୁ କେତେକ ନିଜକୁ ନିୟନ୍ତ୍ରଣ କରି ନପାରି ଷ୍ଟେଜ୍ ଉପରକୁ ଉଠିଯାଇ ନୃତ୍ୟ କରିବାକୁ ଲାଗିଥିଲେ। ନୃତ୍ୟଗୀତର ତାଳେ ତାଳେ ଦର୍ଶକମାନଙ୍କ କରତାଳି ପ୍ରେକ୍ଷାଳୟରେ ଏକ ଭିନ୍ନ ପରିବେଶ ସୃଷ୍ଟି କରିଥିଲା। ପ୍ରାୟ ତିନିଘଣ୍ଟା କାଳ ଏହି ସାଂସ୍କୃତିକ କାର୍ଯ୍ୟକ୍ରମ ଚାଲୁ ରହିଥିଲା। ସାଂସ୍କୃତିକ ପ୍ରାଣ କେନ୍ଦ୍ର କଟକ ସହରରୁ ଚିତ୍ରାଳୟ ସବୁ ମରିମରି ଯାଉଥିଲା ବେଳେ କାନାଡ଼ାରେ ପୌରାଣିକ ନୃତ୍ୟ ନାଟିକା ପରିବେଷଣ ପାଇଁ ପୋଷାକପତ୍ର କିପରି କେଉଁଠୁ ସଂଗ୍ରହ କଲେ ସେ ବିଷୟ ଜାଣିବା ପାଇଁ ମନରେ କୌତୂହଳ ଜାତ ହେଲା। କାର୍ଯ୍ୟକ୍ରମ ଶେଷରେ 'ଓଶା'ର ସାଂସ୍କୃତିକ ସମ୍ପାଦକ ଶ୍ରୀ ଗୋପାଳ ମହାନ୍ତିଙ୍କୁ ମୁଁ ସେ ବିଷୟରେ ପଚାରିଥିଲି। ସେ କହିଲେ, "ଆମେରିକାରେ ବାସ କରୁଥିବା ଓଡ଼ିଆମାନଙ୍କ ଭିତରୁ ଯିଏ ଯେତେବେଳେ ନିଜ ଜନ୍ମମାଟିକୁ ଯାଉଥିଲେ ସେମାନେ କିଛି କିଛି ପୋଷାକ ସାଙ୍ଗରେ ନେଇ ଆସୁଥିଲେ।

ବିଭିନ୍ନ ସମୟରେ ଓଡ଼ିଶାରୁ ନୃତ୍ୟଗୀତ ପରିବେଷଣ ପାଇଁ ଯେଉଁ କଳାକାରମାନେ ଆମେରିକା ଆସୁଥିଲେ ସେମାନଙ୍କ ପାଖରୁ କିଛି ବାଦ୍ୟଯନ୍ତ୍ର ସଂଗ୍ରହ କରାଯାଉଥିଲା। ଉପଯୁକ୍ତ ଗୁରୁଙ୍କ ଅଭାବରୁ ଓଡ଼ିଶା ମାଟିରେ ଓଡ଼ିଶାର ମୌଳିକ କଳାକୁ ବଞ୍ଚାଇରଖିବା ଏକ ସମସ୍ୟା ଭାବରେ ଦେଖାଦେଇଥିଲାବେଳେ ଆମେରିକାରେ ଥିବା ଓଡ଼ିଆମାନଙ୍କର ଏପରି ଉଦ୍ୟମ ନିଶ୍ଚୟ ପ୍ରଶଂସନୀୟ।

## ବିଦେଶ ମାଟିରେ ଓଡ଼ିଆ ଖାଦ୍ୟ

ସାଂସ୍କୃତିକ କାର୍ଯ୍ୟକ୍ରମ ଶେଷ ହେଲା ବେଳକୁ ରାତି ନଅଟା ବାଜିଯାଇଥିଲା। ରାତ୍ରିଭୋଜନ ସମୟ ଟପିଯାଇଥିଲା। ମୁଁ ଭାବିଥିଲି ସେଠାରେ କେବଳ ଆମିଷ ଭୋଜନର ବ୍ୟବସ୍ଥା ହୋଇଥିବ। ସେଦିନ ଶନିବାର ହୋଇଥିବାରୁ ମୋର ଖାଇବାର କିଛି ନଥିଲା। ତଥାପି କ'ଣ କ'ଣ ସବୁ ରନ୍ଧା ଯାଇଛି ଜାଣିବା ପାଇଁ ଅନ୍ୟମାନଙ୍କ ସହିତ ଯାଇ ଲାଇନରେ ଛିଡ଼ା ହେଲି। ଖାଇବା ପାଇଁ ଦୁଇଶହ ଲୋକ ଜମା ହୋଇଥିଲେ ବି କିଛି ପାଟିତୁଣ୍ଡ ନ ଥିଲା। 'ଓଶା'ର ସଦସ୍ୟମାନେ ପୂର୍ବରୁ ସେମାନଙ୍କର ଖାଇବା କୁପନ ସଂଗ୍ରହ କରିଥିଲେ। ଆମ ଭଳି କେଇଜଣ ଅତିଥିଙ୍କୁ ଗେଷ୍ଟ କୁପନ ଦିଆଯାଇ ଥିଲା।

ଖାଇବା କାଉଣ୍ଟର ପାଖରେ ପହଞ୍ଚି ମୁଁ ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ। ବିଭିନ୍ନ ବାଓ୍ୱଲ୍‌ରେ ବଢ଼ାଯାଇଥିଲା ଫ୍ରାଏଡ୍ ରାଇସ, ହରଡ ଡାଲି, ଆଳୁ ପୋଟଳ ରସା, ଘାଣ୍ଟ ତରକାରି, ଆମ୍ବଖଟା, ପାମ୍ପଡ଼, ସାଲାଡ଼, ଆଚାର ଇତ୍ୟାଦି ନାନା ସୁସ୍ୱାଦୁ ଓଡ଼ିଆ ଖାଦ୍ୟ। ତାକୁ ପରିବେଷଣ କରୁଥିଲେ ଶାଢ଼ି ପରିହିତା ଓଡ଼ିଆ ଗୃହିଣୀମାନେ। ଅନ୍ୟପାଖରେ ଥୁଆ ହୋଇଥିଲା ଛେନାପୋଡ଼। ଆଜିକାଲି ଓଡ଼ିଶାରେ ସାଧାରଣ ଭୋଜିମାନଙ୍କରେ ଏସବୁ ଦେଖିବାକୁ ମିଳୁ ନଥିବା ବେଳେ ପାଶ୍ଚାତ୍ୟ ସଭ୍ୟତା ଭିତରେ ବୁଡ଼ି ରହିଥିବା ପ୍ରବାସୀ ଓଡ଼ିଆମାନେ ଯେ ନିଜ ସଂସ୍କୃତିକୁ ଭୁଲି ନାହାନ୍ତି ସେକଥା ଦେଖି ମନ କୁଣ୍ଢେମୋଟ ହୋଇଗଲା। ଖବର ନେଇ ବୁଝିଲି ଓଡ଼ିଆଣୀମାନେ ଏକାଠି ମିଶି ସେ ସବୁ ରୋଷେଇ କରିଥିଲେ। ସେଦିନ ଶନିବାର ଥିବାରୁ କାକୁଡ଼ି ଓ ଛେନାପୋଡ଼ରେ କାମ ଚଳିଗଲା। କେବଳ ସେଦିନ ନୁହେଁ, 'ଓଶା' ଅଧିବେଶନର ତିନିଦିନଯାକ ସେମାନେ ନିଜ ହାତରନ୍ଧା ଓଡ଼ିଆ ଖାଦ୍ୟ ସମସ୍ତଙ୍କୁ ଖୁଆଇଥିଲେ। ସାଦା ଭାତ ସାଙ୍ଗକୁ ଡାଲମା, ବାଇଗଣଭର୍ତ୍ତା ଓ ବଡ଼ିଚୁନା ଖୁଆଇବାକୁ ସେମାନେ ଭୁଲି ନଥିଲେ। ସେମାନେ ତିଆରି କରିଥିବା ଚାଉଳ ଖିରି ସାଙ୍ଗକୁ ରସଗୋଲା ଅତି ସୁସ୍ୱାଦୁ ହୋଇଥିଲା।

କାନାଡ଼ା ହେଉ କିମ୍ବା ଆମେରିକା ହେଉ, ସେ ଦେଶମାନଙ୍କରେ ମଦ୍ୟପାନ ଉପରେ କେହି ଗୁରୁତ୍ୱ ଦିଅନ୍ତି ନାହିଁ। ବରଂ ମଦ, ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଏକ ସାଧାରଣ

ପାନୀୟ ଭାବରେ ଖାଦ୍ୟର ଏକଅଂଶ ହୋଇଯାଇଛି । ପ୍ରତିଦିନ ସନ୍ଧ୍ୟାରେ 'ଓଶା' ଅଧିବେଶନର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଶେଷରେ 'ମହଫିଲ'ର ଆୟୋଜନ କରାଯାଇଥିଲା ଓ ତାକୁ ସମସ୍ତେ ମନଭରି ଉପଭୋଗ କରିଥିଲେ । ସେଠାରେ ଉପସ୍ଥିତ ଅଧିକାଂଶଙ୍କ ହାତରେ ଗ୍ଲାସ ଥିଲେ ହେଁ କେହି ମାତାଲ ହୋଇ ନଥିଲେ । ମହଫିଲର ବାତାବରଣକୁ ଦେଖି ଆମ ରାଜ୍ୟରେ ଯେ କୌଣସି ସମାଗମରେ ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତିମାନେ ମଦ୍ୟପାନ କରି ନିଜର ନିୟନ୍ତ୍ରଣ ହରାଇ କିଭଳି ଅଶୋଭନୀୟ ବ୍ୟବହାର କରନ୍ତି ସେକଥା ମନେପଡ଼ିଗଲା । ସେ କ୍ଲବ ହେଉ କି ରେସ୍ତୋରାଁ ହେଉ, ମଦ୍ୟପାନ କରି ଅନ୍ୟକୁ ଯନ୍ତ୍ରଣା ଦେବା ଘଟଣାକୁ ଅନେକେ ଏକ 'ଷ୍ଟାଟସ୍ ସିମ୍ବଲ' ବୋଲି ବିଚାରିଥାନ୍ତି । ସେ ମହଫିଲ ପରିବେଶରେ ଅନେକଙ୍କ ସହିତ ଆଳାପ ହେଲା । କଥା ପ୍ରସଙ୍ଗରେ ମଦ୍ୟପାନ କଥା ମଧ୍ୟ ଉଠିଲା । ସେମାନେ କହିଲେ, 'ଏଠାରେ ଜୀବନକୁ ଉପଭୋଗ କରିବା ପାଇଁ ଲୋକେ ମଦ୍ୟପାନ କରନ୍ତି । ମାତ୍ର ଆମ ଦେଶରେ ମାତାଲାମି କରିବାକୁ ଲୋକେ ମଦ ପିଇଥାଆନ୍ତି ।

## ତିନିଦିନର ମେଳା ଶେଷ

'ଓଶା' ଅଧିବେଶନରେ ହସଖୁସି, ମଉଜ ମଜଲିସରେ ତିନିଦିନ କାଳ କଟିଯିବା ପରେ ରବିବାର ସକାଳୁ ଯିଏ ଯାହା କର୍ମକ୍ଷେତ୍ରକୁ ଫେରି ଯିବାକୁ ବାହାରିଲେ । ତିନିଦିନ ଭିତରେ ଯେଉଁମାନଙ୍କ ସାଙ୍ଗରେ ସାକ୍ଷାତ ଆଲୋଚନାର ସୁଯୋଗ ଜୁଟି ନଥିଲା, ବାହୁଡ଼ା ସମୟରେ ତାହା ସମ୍ଭବ ହୋଇ ଥିଲା । ଆୟୋଜକମାନେ ଅଧିବେଶନର ସଫଳତା ପାଇଁ ବ୍ୟସ୍ତ ରହୁଥିବାରୁ ଖୁସି ଗପ ପାଇଁ ସେମାନଙ୍କ ପାଖରେ ସମୟ ନଥିଲା । ମାତ୍ର ସଫଳତାର ସହିତ ଅଧିବେଶନ ଶେଷ ହେବାପରେ ସେମାନେ ଶାନ୍ତିରେ ନିଶ୍ୱାସ ମାରିଥିଲେ । କିଏ କେତେ ଦୂରରୁ ଅଧିବେଶନରେ ଯୋଗଦେବାକୁ ଆସିଥିଲେ । ଆରବର୍ଷ ପୁଣି ଆସିବା ସେମାନଙ୍କ ପକ୍ଷରେ ସମ୍ଭବ ହେବ କି ନାହିଁ ସେ କଥା ଅଧିକାଂଶଙ୍କୁ ବ୍ୟଥିତ କରୁଥିଲା । ବ୍ରେକଫାଷ୍ଟ ପାଇଁ ରେଷ୍ଟୁରାଣ୍ଟରେ ଏକାଠି ହେଲାବେଳେ କଥାରେ ନ କହିଲେ ମଧ୍ୟ ସେମାନଙ୍କର ମନର ଭାବନା ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇପଡୁଥିଲା ।

'ଓଶା' ଅଧିବେଶନ ପରେ ମୋର ନ୍ୟୁଜର୍ସି ଯିବାର କାର୍ଯ୍ୟକ୍ରମ ଥିଲା । ଅଧିବେଶନର ଅନ୍ୟତମ ପ୍ରମୁଖ ଆୟୋଜକ ଡକ୍ଟର ମନୋରଞ୍ଜନ ପଟ୍ଟନାୟକ ମତେ ନ୍ୟୁଜର୍ସି ପଠାଇବାର ଦାୟିତ୍ୱ ନେଇଥିଲେ । ଟରଣ୍ଟୋରୁ କାହା ସାଙ୍ଗରେ ନ୍ୟୁଜର୍ସି ଯିବି, ସେଠାରେ କାହା ଘରେ ରହିବି, ସେମାନେ କେମିତି ଲୋକ ହୋଇଥିବେ, ସେମାନଙ୍କ

ଆଚରଣ ମୋ ପ୍ରତି କିପରି ହେବ, ସେଇସବୁ ପ୍ରଶ୍ନ ମୋ ମନକୁ ଭାରାକ୍ରାନ୍ତ କରିଥିଲା। ମୁଁ ରେଷ୍ଟୁରାଣ୍ଟରେ କିଛି କର୍ଣ୍ଣଫ୍ଲେକ୍ସ ଓ ମିଲ୍କ ନେଇ ଗୋଟିଏ ଟେବୁଲ ଉପରେ ରଖିବା ସମୟରେ ଡଃ ପଟ୍ଟନାୟକ ମତେ ଦେଖି କହିଲେ, ''ମୁଁ ଆପଣଙ୍କୁ କେତେବେଳୁ ଖୋଜିଲିଣି, ଆପଣଙ୍କର ନ୍ୟୁଜର୍ସି ଯିବାର ବନ୍ଦୋବସ୍ତ ହୋଇଯାଇଛି। ଆପଣ ଆମ ଭାଇସପ୍ରେସିଡେଣ୍ଟ ଆଶୁବାବୁଙ୍କ ସାଙ୍ଗରେ ଯିବେ। ସିଏ କଟକର ବାସିନ୍ଦା, ଖୁବ୍ ଭଲ ଲୋକ। ଆପଣଙ୍କର କିଛି ଅସୁବିଧା ହେବ ନାହିଁ।'' ଏକାଥରକେ ଏତିକି କହିଦେଇ ସେ ଆଶୁବାବୁଙ୍କୁ ଖୋଜିବାକୁ ଚାଲିଗଲେ । ସେଇ ରେଷ୍ଟୁରାଣ୍ଟରେ ବସିଥିବା ସମୟରେ କଟକରୁ ଯାଇ ଆମେରିକାରେ ବସବାସ କରୁଥିବା ଅନେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସାଙ୍ଗରେ ଦେଖା ହୋଇଗଲା । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପରିବାର ସହିତ ମୋର ଘନିଷ୍ଠ ସମ୍ପର୍କ ଥିବା ଦୃଷ୍ଟିରୁ କଥାବାର୍ତ୍ତାରେ ଆତ୍ମୀୟତା ବଢ଼ିଯାଇଥିଲା । କଟକର ବିଶିଷ୍ଟ ପୁସ୍ତକ ପ୍ରକାଶକ, କଟକ ଷ୍ଟୁଡେଣ୍ଟସ ଷ୍ଟୋର୍ସର ସ୍ୱତ୍ୱାଧିକାରୀ ସ୍ୱର୍ଗତଃ ଅନନ୍ତ ମିଶ୍ରଙ୍କ ପୁଅ, ଓଡ଼ିଆ ଅଧ୍ୟାପକ ସ୍ୱର୍ଗତ ଗୋପାଳ ମିଶ୍ରଙ୍କ ପୁଅ, ପୂର୍ବତନ ସହକାରୀ ମୁଖ୍ୟ ସଚେତକ ତଥା କଂଗ୍ରେସ ନେତା ଗୁରୁପଦ ନନ୍ଦଙ୍କ ବଡ଼ଭାଇ ପ୍ରମୁଖଙ୍କ ସହିତ ସ୍ୱଳ୍ପକାଳର ଆଳାପ ମନଭିତରେ ଅଭୁଲା ହୋଇ ରହିଗଲା। ସେମାନେ ସମସ୍ତେ  ଆମେରିକାରେ ନିଜନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ।

ସମୟ ଗଡ଼ିବା ସହିତ ରେଷ୍ଟୁରାଣ୍ଟରେ ଭିଡ଼ ବଢ଼ିବାରେ ଲାଗିଲା। ଯେଉଁମାନେ ଗତ ତିନିଦିନ ଧରି ଘଣ୍ଟା କଣ୍ଟା ଓ ମିନିଟ କଣ୍ଟା ସାଙ୍ଗରେ ତାଳଦେଇ ଚାଲୁଥିଲେ ସେମାନେ ସେଦିନ ସମୟାନୁବର୍ତ୍ତିତାକୁ କିଛିକ୍ଷଣ ପାଇଁ ଭୁଲି ଯାଇଥିଲେ। ଅନ୍ୟମାନଙ୍କୁ ବିଦାୟ ଦେଲା ବେଳେ ସେମାନେ ନିଜର ସ୍ଥିତି ଭୁଲିଯାଇଥିଲା ଭଳି ମନେ ହେଉଥିଲା। କିଏ ପରିବାର ସହିତ ଡ୍ରାଇଭ କରି ହଜାରେ ମାଇଲ ଯିବେ, ଆଉ କିଏ ଫ୍ଲାଇଟରେ ଯିବେ ଓ ଅନ୍ୟ କେହି ଆଉ ଟିକିଏ ବୁଲାବୁଲି କରି ଫେରିବେ। ସେଇ ଅନୁସାରେ 'ଓଶା' ଅଧିବେଶନର କର୍ମକର୍ତ୍ତାମାନେ ଆଗରୁ ସବୁକଥା ସ୍ଥିର କରିସାରିଥିଲେ। ପୂର୍ବାହ୍ନ ପ୍ରାୟ ଏଗାରଟା ବେଳକୁ ଲେଉଟାଣି ପର୍ବ ଆରମ୍ଭ ହୋଇଥିଲା।

## ଟରଣ୍ଟୋରୁ ନ୍ୟୁଜର୍ସି

କିଛି ସମୟ ପରେ ମନୋରଞ୍ଜନ ବାବୁ ଜଣେ ସୌମ୍ୟ ଯୁବକଙ୍କୁ ସାଙ୍ଗରେ ନେଇ ମୋ ପାଖକୁ ଆସି କହିଲେ, "ଇଏ ହେଉଛନ୍ତି ଆଶୁତୋଷ ବାବୁ। 'ଓଶା'ର ଉପସଭାପତି । ସେ କଟକର ମୂଳବାସିନ୍ଦା। ଆମେରିକାରେ ଦୀର୍ଘଦିନ ଧରି ରହିଛନ୍ତି। ଆପଣ ତାଙ୍କ ସାଙ୍ଗରେ ଯାଆନ୍ତୁ। ଆମେରିକାରେ ଆପଣଙ୍କର ରହିବାର ସବୁ ବ୍ୟବସ୍ଥା

ହୋଇଛି। ଆପଣ ନ୍ୟୁଜର୍ସିରେ ଆଜି ରହିବେ। ଆସନ୍ତାକାଲି ନ୍ୟୁୟର୍କ ସହର ବୁଲି ଦେଖିଲା ପରେ ଡକ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଘରକୁ ଯିବେ। ସେଠାରୁ ଆପଣ ସାନଜୋସେ ଯିବେ ଏବଂ ଡକ୍ଟର ଗୌରୀ ଦାସ ଆପଣଙ୍କୁ ତାଙ୍କ ଘରେ ରହିବା ପାଇଁ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି। ସାନଜୋସେରେ ତିନିଦିନ ରହଣି ସମୟ ମଧ୍ୟରେ ଆପଣ ଉଭୟ ସାନଜୋସେ ଓ ସାନଫ୍ରାନସିସ୍କୋ ସହର ବୁଲି ପାରିବେ। ସାନଜୋସେରୁ ଆପଣ ୱାଶିଂଟନ ଡି.ସି. ଯିବେ ଓ ସେଠାରେ ଡକ୍ଟର ନରେଶ ଦାସ ଓ ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ ଆପଣଙ୍କୁ ଅତିଥି କରିବେ। ଆପଣଙ୍କ ଶେଷପର୍ଯ୍ୟାୟ କାର୍ଯ୍ୟକ୍ରମରେ ଆପଣ ୱାଶିଂଟନ ଡିସିରୁ ବରମିଙ୍ଗହାମ ଯାଇ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ଘରେ ରହିବେ ଓ ସେଠାରୁ ପୁଣି ନ୍ୟୁଜର୍ସି ବାଟେ ଦିଲ୍ଲୀ ଫେରିବେ। ଆପଣଙ୍କର ପ୍ଲେନ ଟିକେଟ ସବୁ କନଫାର୍ମ ହୋଇଛି। ଆଇ ଉଇସ ୟୁ ଅଲ ଦି ବେଷ୍ଟ।" ଏତିକି କହି ହାଣ୍ଡସେକ୍ କରିବା ପାଇଁ ଡକ୍ଟର ପଟ୍ଟନାୟକ ହାତ ବଢ଼ାଇଲେ। ତାଙ୍କ ପାଖରେ ତାଙ୍କ ପତ୍ନୀ ଡକ୍ଟର ମୀନତି ପଟ୍ଟନାୟକ ଛିଡ଼ା ହୋଇଥିଲେ। ମୁଁ ସେମାନଙ୍କ ପାଖରୁ ବିଦାୟ ନେବା ପୂର୍ବରୁ ମୋ ବ୍ୟାଗରେ ଥିବା ତାରକସି ଖଚିତ ଗୋଟିଏ ରୁପା କଣ୍ଠିମାଳର ପ୍ୟାକେଟ୍‌ଟିଏ ଶ୍ରୀମତୀ ପଟ୍ଟନାୟକଙ୍କ ହାତକୁ ବଢ଼ାଇଦେଲି। ସେ ପ୍ୟାକେଟଟି ଦେଖି ଏତେ ଖୁସି ହୋଇଯାଇଥିଲେ ଯେ ତାକୁ ତାଙ୍କ ଭ୍ୟାନିଟ ବ୍ୟାଗରେ ରଖିବା ପୂର୍ବରୁ ବାରମ୍ବାର ଦେଖିଥିଲେ। ସ୍ମିତହାସ୍ୟ ସହ ଧନ୍ୟବାଦ ଦେଇ ପଟ୍ଟନାୟକ ଦମ୍ପତିଙ୍କ ପାଖରୁ ମୁଁ ବିଦାୟ ନେଇଥିଲି।

## ଓଡ଼ିଆ ପରିବାର ସହିତ କାର୍‌ରେ ଆଠଶହ ମାଇଲ

ଆମର କଥାବାର୍ତ୍ତା ଭିତରେ ଆଶୁବାବୁ, ତାଙ୍କ ପରିବାର ସଦସ୍ୟଙ୍କୁ ସାଙ୍ଗରେ ଗାଡ଼ିରେ ଆଣି ସେଠାରେ ହାଜର ହୋଇଯାଇଥିଲେ। ପରିବାର କହିଲେ ତାଙ୍କ ପତ୍ନୀ ଶର୍ମିଷ୍ଠା, ବଡ଼ପୁଅ ଶ୍ରୀଜୟ ଓ ସାନପୁଅ ଅଭିଜୀତଙ୍କ ସହିତ ତାଙ୍କ ସାନଭାଇ ଗାଡ଼ିରେ ଥିଲେ। ମୁଁ ସାଙ୍ଗେ ସାଙ୍ଗେ ଗାଡ଼ିରେ ବ୍ୟାଗ ରଖିଦେଇ 'ଓଶା' କର୍ମକର୍ତ୍ତାମାନଙ୍କଠାରୁ ବିଦାୟ ନେବା ପାଇଁ ବାହାରିଲି। ପନ୍ଦର ମିନିଟ ମଧ୍ୟରେ ବିଦାୟ ପର୍ବ ସରିଗଲା ଓ ୧ ୧ଟା ପନ୍ଦର ମିନିଟରେ ଆମ ଗାଡ଼ି ଟରଣ୍ଟୋରୁ ନ୍ୟୁଜର୍ସି ଅଭିମୁଖେ ଷ୍ଟାର୍ଟ କଲା। ଗାଡ଼ି ସହର ଟପି ନ୍ୟାସନାଲ ହାଇୱେରେ ପହଞ୍ଚିଲାବେଳକୁ ମୁଁ ଆଶୁବାବୁଙ୍କ ପରିଚୟ ପାଇସାରିଥିଲି। ଆଶୁବାବୁ ହେଉଛନ୍ତି ଅବସରପ୍ରାପ୍ତ ଆଇଏଏସ୍ ଅଫିସର ଗଣେଶ ଦତ୍ତଙ୍କ ବଡ଼ପୁଅ। ଦୀର୍ଘଦିନ ହେଲା ନ୍ୟୁଜର୍ସିରେ ଅବସ୍ଥାନ କରୁଛନ୍ତି। ସେଠାରେ ଏକାଧିକ କମ୍ପାନୀର ସେ ପରାମର୍ଶଦାତା ଭାବରେ କାର୍ଯ୍ୟ କରନ୍ତି। ନ୍ୟୁଜର୍ସିରେ ନିଜର ଘର କିଣିଛନ୍ତି। ତାଙ୍କ ପତ୍ନୀ ଶର୍ମିଷ୍ଠା ମଧ୍ୟ ଚାକିରି କରନ୍ତି। ବଡ଼ପୁଅ ଶ୍ରୀଜୟ ସେଭେନ୍‌ଥ ଷ୍ଟାଣ୍ଡାର୍ଡରେ ଓ ସାନପୁଅ

ଅଭିଜୀତ ଥାର୍ଡ ଷ୍ଟାଣ୍ଡାର୍ଡରେ ଅଧ୍ୟୟନ କରନ୍ତି। ଆଶୁବାବୁଙ୍କ ବାପା ଗଣେଶବାବୁ ଆଗରୁ ଓଡ଼ିଶା ପ୍ରଶାସନିକ ସେବା (ଓଏଏସ୍)ର ଅଫିସର ଥିଲେ। ସେକ୍ରେଟାରୀଏଟର ଚାକିରି କରୁଥିଲା ବେଳେ ତାଙ୍କ ସହିତ ଖୁବ୍ ବନ୍ଧୁତା ଥିଲା। କଟକିଆ ଲୋକ। ଗପ କରିବାକୁ ଭଲପାଆନ୍ତି । ସେ ରେଭେନ୍ୟୁ ଡିପାର୍ଟମେଣ୍ଟ କଣ୍ଟ୍ରୋଲରୁମ୍ ଦାୟିତ୍ୱରେ ଥିଲାବେଳେ ଖବର ଆଣିବାକୁ ଯିବା ସମୟରେ ଖୁବ୍ ଖଟି ହେଉଥିଲା। ବେଳେବେଳେ ଚା' ଜଳଖିଆ ମଧ୍ୟ ଆସୁଥିଲା। ମୁଁ ତାଙ୍କ ବାପାଙ୍କ ବିଷୟରେ ଏତେକଥା ଜାଣିଥିବାର ଶୁଣି ଆଶୁବାବୁ ଓ ତାଙ୍କ ପିଲାମାନେ ଅବାକ୍ ହୋଇଯାଇଥିଲେ।

ଆଶୁତୋଷ ଗାଡ଼ି ଚଳାଉଥିଲେ। ମୁଁ ତାଙ୍କ ପାଖରେ ଆଗ ସିଟ୍‌ରେ ବସିଥିଲି। ଗାଡ଼ିର ମାଇଲ ମିଟର କଣ୍ଟା ମଝିରେ ମଝିରେ ୧୪୦କୁ ଛୁଉଁଥିଲା। ଆଶୁତୋଷ ବାପାଙ୍କ ପରି ଖୁବ୍ ମେଳାପୀ ଓ ଅମାୟିକ। ପଥଶ୍ରମ ଲାଘବ ପାଇଁ ମୁଁ ମଝିରେ ମଝିରେ ରାସ୍ତାଘାଟ ସମ୍ପର୍କରେ ନାନା ପ୍ରଶ୍ନ କରୁଥିଲି ଓ ସେ ତାର ଉତ୍ତର ଦେଉଥିଲେ। ମୁଁ ତାଙ୍କୁ କହିଲି, ଆପଣ ପିଲାମାନଙ୍କୁ ଧରି ଆଠଶହମାଇଲ ରାସ୍ତା ଯିବେ। ସାଙ୍ଗରେ ଡ୍ରାଇଭରଟିଏ ଆଣିଲେ ନାହିଁ? ଆଠଶହ ମାଇଲ ବାଟ ଯିବା ବେଳକୁ ବୋଧେ ରାତି ପାହିଯାଇଥିବ। ଆପଣ କ'ଣ ସାରା ରାତି ଗାଡ଼ି ଚଳାଇବେ? ସେ କହିଲେ, "ଦେଖନ୍ତୁ, ଆପଣ ବାପାଙ୍କର ବନ୍ଧୁ, ସେ ଦୃଷ୍ଟିରୁ ମତେ ଆପଣ ନକହି ତମେ ବୋଲି କହିଲେ ମୁଁ ଖୁସି ହେବି। ହଁ, ଆପଣ ଡ୍ରାଇଭର ଆଣିବା ସମ୍ପର୍କରେ ଯାହା କହୁଥିଲେ, ସେସବୁ ଆମ ଦେଶରେ ସମ୍ଭବ। ଏଠାରେ ସାଧାରଣ ଭାବରେ ଘରୋଇଗାଡ଼ି ଚଳାଇବାପାଇଁ ଡ୍ରାଇଭର ମିଳନ୍ତି ନାହିଁ। ଯଦିବା କେଉଁଠି ମିଳିବେ ତେବେ ସେମାନଙ୍କ ପ୍ରାପ୍ୟ ଏତେ ଅଧିକ ଯେ, ତାକୁ ଦେବା ସବୁବେଳେ ସମ୍ଭବ ହୁଏନାହିଁ। ତା'ଛଡ଼ା ଆଠଶହ ମାଇଲ ଡ୍ରାଇଭ ଏସବୁ ଦେଶରେ ବଡ଼କଥା ନୁହେଁ। ସାଧାରଣ ଭାବରେ ଆଠଶହ ମାଇଲ ରାସ୍ତା ଯିବା ପାଇଁ ଅତିବେଶିରେ ଆଠଘଣ୍ଟାରୁ ଅଧିକ ସମୟ ଲାଗିବ ନାହିଁ। ବାଟରେ ବିଶ୍ରାମ ନେଇ ଗଲେ ବି ଆମେ ରାତି ନଅଟା ପୂର୍ବରୁ ଘରେ ଖୁସିରେ ପହଞ୍ଚି ଯାଇ ପାରିବା।" କଥାବାର୍ତ୍ତା ଭିତରେ ବିଶ୍ୱ ବିଖ୍ୟାତ ନାଏଗ୍ରା ଫଲ୍ ଦେଖିବା ପାଇଁ ମୋର ଇଚ୍ଛା ଥିବା କଥା ଆଶୁତୋଷଙ୍କୁ ଜଣାଇଥିଲି। ସେ କହିଲେ ଠିକ୍ ଅଛି। ଆମେ ଗଲାବେଳେ ନାଏଗ୍ରା ଫଲ୍ ଦେଖିକରି ଯିବା।

## ନାଏଗ୍ରା ଫଲ୍‌ର ଅପୂର୍ବ ଦୃଶ୍ୟ

ଅନେକ ଦିନରୁ ନାଏଗ୍ରା ଫଲ (ଜଳପ୍ରପାତ) ଦେଖିବା ପାଇଁ ମନରେ ଏକ ଦୁର୍ବଳତା ମନରେ ଥିଲା। ଯେଉଁମାନେ ଆମେରିକା ଯାଉଥିଲେ ସେମାନେ ନାଏଗ୍ରା ଫଲ୍‌ର ଫଟୋ ଆଣି ଦେଖାଉଥିଲେ ଓ ଜଳପ୍ରପାତର ମନୋରମ ଦୃଶ୍ୟ ସମ୍ପର୍କରେ ବର୍ଣ୍ଣନା

କରୁଥିଲେ। କିନ୍ତୁ ଦିନେ ଯେ ସେ ସ୍ଥାନକୁ ଯାଇହେବ, ସେ ବିଶ୍ୱାସ ମୋର ନଥିଲା। ଏଇକଥା ଭାବୁ ଭାବୁ ମୁଁ ଟିକିଏ ଅନ୍ୟମନସ୍କ ହୋଇ ଯାଇଥିଲି। ଆଶୁତୋଷ ଯେତେବେଳେ କହିଲେ, "ଅଙ୍କଲ! ଆମେ ବର୍ତ୍ତମାନ ଅଣ୍ଟାରିଓ ସହରରେ ପହଞ୍ଚିଗଲୁଣି। ନ୍ୟାସନାଲ ହାଇୱେରୁ ବାଟ ଭାଙ୍ଗି କିଛିଦୂର ଗଲେ ଆମେ ନାଏଗ୍ରାଫଲ୍ ଦେଖିପାରିବା। ଆମେ ଏହା ଭିତରେ ପ୍ରାୟ ଚାରିଶହ କିଲୋମିଟର ରାସ୍ତା ଆସି ସାରିଲୁଣି।

ଅଜାଣତରେ ମୋ ମନ କୁରୁଳି ଉଠିଲା। ଯାହାହେଉ, ଏଣିକି ମୁଁ ଅନ୍ୟମାନଙ୍କୁ ନାଏଗ୍ରା ଫଲ୍ ସମ୍ପର୍କରେ ବର୍ଣ୍ଣନା କରିପାରିବି। ଏଠାରେ ଫଟୋ ଉଠାଇ ଅନ୍ୟମାନଙ୍କୁ ଦେଖାଇ ପାରିବି। ଏହା ନିଶ୍ଚିତ ଭାବରେ ମୋ ପାଇଁ ବଡ଼ ସାଫଲ୍ୟ ବୋଲି ଧରିବାକୁ ହେବ। ଓଣ୍ଟାରିଓ ସହରର କ୍ଲିଫଟନ ହିଲ୍ ଉପରୁ ନାଏଗ୍ରା ଫଲ୍‌ର ଦୃଶ୍ୟ ଦେଖିହୁଏ। ନାଏଗ୍ରା ଫଲ୍‌ର ଦୁଇଟି ଧାର ଅଛି। ସେଥିରୁ ଗୋଟିଏ ଆମେରିକା ପଟେ ଓ ଅନ୍ୟଟି କାନାଡ଼ା ପଟେ। ଆମେରିକାରୁ ସଡ଼କ ପଥରେ ଗଲେ ଫଲ୍ ପାଖକୁ ଯାଇହୁଏ। କିନ୍ତୁ କାନାଡ଼ା ପଟରୁ ଦୂରରୁ ଦେଖିବାକୁ ପଡ଼େ। ଏ ଦୁଇଟିଯାକ ଫଲ୍ କିନ୍ତୁ ଗୋଟିଏ ନଦୀରୁ ସୃଷ୍ଟି ହୋଇଛି। ନାଏଗ୍ରା ନଦୀରୁ ଏହାର ଉତ୍ପତ୍ତି ହୋଇଥିବାରୁ ଏହି ଫଲ୍‌ର ନାଁ ନାଏଗ୍ରା ଫଲ୍ ହୋଇଛି। ନାଏଗ୍ରା ନଦୀ ଆମେରିକା ପଟରୁ ଆସି କାନାଡ଼ାରେ ପ୍ରବେଶ କରିବା ସମୟରେ ଗୋଟିଏ ପାହାଡ଼ଦ୍ୱାରା ଦୁଇଭାଗରେ ବିଭକ୍ତ ହୋଇଯାଇଛି। କାନାଡ଼ା ପଟରେ ଥିବା ଶାଖାଟି ବଡ଼ ହୋଇଥିଲାବେଳେ ଆମେରିକା ପଟ ଶାଖାଟି ଅପେକ୍ଷାକୃତ ସାନ।

ଆଶୁତୋଷ ପ୍ରସ୍ତାବ ଦେଲେ, "ଆମେ ପ୍ରଥମେ କିଛି ସ୍ନାକ୍ସ ନେଇସାରି ପରେ ଫଲ୍ ପାଖକୁ ଯିବା।" ମୋର ସେଥିରେ ଆପତ୍ତି ନଥିଲା; କିନ୍ତୁ ମନରେ ଗୋଟିଏ ଆଶଙ୍କା ଥିଲା ଯେ ସେଠାରେ ହୁଏତ କିଛି ନିରାମିଷ ଖାଦ୍ୟ ମିଳି ନପାରେ। ଆମେ ଗୋଟିଏ ରେଷ୍ଟୁରାଣ୍ଟକୁ ଯାଇ ଦୁଇଟି ଟେବୁଲ ଦଖଲ କଲୁ। ଆଶୁତୋଷ ଖାଦ୍ୟ ବରାଦ କଲାବେଳେ ମୁଁ ସମ୍ପୂର୍ଣ୍ଣ ନିରାମିଷାଶୀ ଏବଂ କିଛି ପଟାଟୋ ଚିପ୍‌ସ ଓ ଫ୍ରୁଟଜୁସ୍ ହେଲେ ମୋର ଚଳିଯିବ ବୋଲି ତାଙ୍କୁ ସୂଚାଇଥିଲି। ସେ ବହୁତ ବ୍ୟସ୍ତ ହୋଇପଡ଼ିଲେ। ମୁଁ ତାଙ୍କୁ ବୁଝାଇ କହିଲି ବିଦେଶ ଆସିବା ପୂର୍ବରୁ ମୁଁ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିଦେଇଛି। ପାଶ୍ଚାତ୍ୟ ଦେଶମାନଙ୍କରେ ଯେ ମଧ୍ୟାହ୍ନଭୋଜନ ଉପରେ କେହି ଗୁରୁତ୍ୱ ଦିଅନ୍ତି ନାହିଁ, ସେ ବିଷୟରେ ମୁଁ ବେଶ୍ ସଚେତନ। ସେଥିପାଇଁ ବ୍ୟସ୍ତ ହେବାର କ'ଣ ଅଛି? ଅଳ୍ପ ସମୟ ଭିତରେ ଖାଇବାପର୍ବ ଶେଷକରି ଆମେ ନାଏଗ୍ରା ଫଲ୍ ଦେଖିବାକୁ ଚାଲିଲୁ।

ଆମ ଭଳି ଶହଶହ ଲୋକ ସେଠାରେ ଗୁଣ୍ଡ ହୋଇ ନାଏଗ୍ରା ଫଲ୍‌ର ଅପୂର୍ବ ଦୃଶ୍ୟକୁ ଉପଭୋଗ କରୁଥିଲେ। ଫଲ୍‌ର ପାଣି ଯେଉଁଠି ପଡୁଥିଲା ସେଠାରୁ ଜଳକଣାସବୁ ଉପରକୁ ଉଠି ଧୂଆଁର ଭ୍ରମ ସୃଷ୍ଟିକରୁଥିଲା। ତଳେ ପାଣି ଏକ ହ୍ରଦ ମଧ୍ୟ ଦେଇ ପ୍ରବାହିତ

ହୋଇ ଯାଉଥିଲା । ସେ ହ୍ରଦଭିତରେ ଅନେକ ଲୋକ ନୌକାବିହାର କରୁଥିଲେ । ଆମର ନୌକାରେ ବୁଲି ମଜା ନେବାର ଇଚ୍ଛା ଥିଲେ ବି ପରିବେଶ, ପରିସ୍ଥିତି ଓ ସମୟ ଆମକୁ ସହାୟତା କରି ନ ଥିଲା । ଆମେ ସେଠାରୁ ଫେରିବା ପୂର୍ବରୁ ମନେରଖିଲା ଭଳି କିଛି ଜିନିଷ କିଣିବା ପାଇଁ ମୁଁ ଆଶୁତୋଷଙ୍କୁ ଅନୁରୋଧ କଲି । ସ୍ଥାନୀୟ ମାର୍କେଟ ସମ୍ପର୍କରେ ତାଙ୍କର ଧାରଣା ଥିଲା । ସେ ମତେ ନାଏଗ୍ରା ଫଲ୍ ଗିଫ୍ଟସପ୍‌କୁ ନେଇଗଲେ । ତା ଭିତରେ କ'ଣ କିଣିବି ବୋଲି ପ୍ରଥମେ ମୁଁ ସ୍ଥିର କରିପାରିଲି ନାହିଁ; କାରଣ ସେସବୁ ଦୋକାନ ମୁଖ୍ୟତଃ ଧନୀବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ପ୍ରତ୍ୟେକ ପଦାର୍ଥର ମୂଲ୍ୟ ଦଶଡଲାରରୁ ଅଧିକ ଥିଲା । ତାର ଅର୍ଥ ଭାରତୀୟ ମୁଦ୍ରାରେ ଚାରିଶହ ଟଙ୍କାରୁ ଅଧିକ । ମୁଁ ଭାବିଲି, ଦାମ୍ ଅଧିକ ବୋଲି କ'ଣ କିଛି ନିଆଯିବ ନାହିଁ? ଶେଷରେ ନାତୁଣୀ ଏଲିନା ପାଇଁ ନାଏଗ୍ରା ଫଲ୍‌ର ଛାପ ଥାଇ ଗୋଟିଏ ଫ୍ରକ୍ ଓ ଆଉ କେତୋଟି ୱାଲ୍ ହ୍ୟାଙ୍ଗର ଧରି ଆମେ ବାହାରକୁ ଆସିଲୁ । ଗାଡ଼ିରେ ବସିବା ପୂର୍ବରୁ ଆଶୁତୋଷଙ୍କ ସାନଭାଇ ତାଙ୍କ ହାଣ୍ଡବ୍ୟାଗଟି କେଉଁଠି ଛାଡ଼ି ଦେଇଥିବା କଥା କହିଲେ । ସେଥିରେ ତାଙ୍କର ପାସପୋର୍ଟ, ଭିସା, ଆଇଡେଣ୍ଟିଟି କାର୍ଡ ଇତ୍ୟାଦି ସବୁ ଥିଲା । ଆଶୁତୋଷ ସେ କଥା ଶୁଣି ବ୍ୟସ୍ତ ହୋଇପଡ଼ିଲେ । ବିଦେଶ ରାଷ୍ଟ୍ରରେ ପାସପୋର୍ଟ ହେଉଛି ସବୁଠାରୁ ବଡ଼ ଓ ମୂଲ୍ୟବାନ ସମ୍ପତ୍ତି । ଥରେ ପାସପୋର୍ଟ ହାତଛଡ଼ା ହୋଇଗଲେ ମଣିଷ ଚଳାଚଳ କରିବା ଅସମ୍ଭବ । ଆମେ ଆଉ ଡେରି ନକରି ଯେଉଁ ରେଷ୍ଟୁରାଣ୍ଟରେ ସ୍ନାକ୍ସ ଖାଇଥିଲୁ ସେଇଠିକି ଦଉଡ଼ିଲୁ । ଆମର ଭାଗ୍ୟଭଲ, ରେଷ୍ଟୁରାଣ୍ଟର ମାଲିକ ସେ ବ୍ୟାଗଟି ରଖିଥିଲେ ଓ ପରିଚୟ ପାଇ ସେଇଟି ଫେରାଇ ଦେଲେ । ସେଦିନ ବ୍ୟାଗଟି ନମିଳିଥିଲେ ଆମର ଅବସ୍ଥା ଯେ କ'ଣ ହୋଇଥାନ୍ତା ସେ କଥା ଚିନ୍ତା କରାଯାଇ ପାରି ନଥିଲା । ବ୍ୟାଗ ମିଳିଲା ପରେ ଆମେ ମନଖୁସିରେ ନ୍ୟୁଜର୍ସି ଅଭିମୁଖେ ବାହାରିଲୁ । ଅଳ୍ପ ସମୟ ପାଇଁ ହେଲେ ବି ନାଏଗ୍ରାଫଲ୍‌ର ସେ ଅପରୂପ ଦୃଶ୍ୟ ମୋ ମାନସପଟରେ ସବୁଦିନ ପାଇଁ ଅଭୁଲା ହୋଇ ରହିଗଲା ।

## ସୀମାନ୍ତରେ ଇମିଗ୍ରେସନ ଚେକ୍

କିଛିବାଟ ଯିବାପରେ ରାସ୍ତାର ଡାହାଣ ପଟରେ ଶତାଧିକ ଗାଡ଼ି ଅଟକି ରହିଥିବାର ଦେଖି ମନରେ ଶଙ୍କା ଜାତ ହୋଇଥିଲା । ଖବରନେଇ ବୁଝିଲୁ ବଫାଲୋଠାରେ ଥିବା ଆମେରିକାର ପ୍ରବେଶପଥରେ ଗାଡ଼ି ଓ ପାସେଞ୍ଜରମାନଙ୍କୁ ତନଖି କରାଯାଉଥିବାରୁ ରାସ୍ତାରେ ଗାଡ଼ିସବୁ ଅଟକି ଯାଇଥିଲା । ବଫାଲୋରୁ କାନାଡ଼ାର ସୀମା ଶେଷହୋଇ ଆମେରିକାର ସୀମା ଆରମ୍ଭ ହୁଏ । ସେଥିପାଇଁ ସେଠାରେ ଆମେରିକା ଭିତରକୁ ପ୍ରବେଶ କରିବାକୁ ଚାହୁଁଥିବା ବ୍ୟକ୍ତିଙ୍କର ପାସ୍‌ପୋର୍ଟ, ଭିସା ଇତ୍ୟାଦି ଠିକ୍ ଅଛି କି ନାହିଁ ସେସବୁ

ତନଖି କରାଯାଉଥିଲା । ଦୁଇମାଇଲ ପଥ ଅତିକ୍ରମ କରିବାପାଇଁ ସେଦିନ ଆମକୁ ଦୁଇଘଣ୍ଟାରୁ ଅଧିକ ସମୟ ଲାଗିଥିଲା । ଗାଡ଼ିରେ ମୋ ବ୍ୟତୀତ ଅନ୍ୟମାନଙ୍କର ଆମେରିକା ନାଗରିକତ୍ୱର ପ୍ରମାଣପତ୍ର ଥିଲା । ସେଥିପାଇଁ ସେମାନଙ୍କର କିଛି ଅସୁବିଧା ହୋଇନଥିଲା । ମାତ୍ର ମୋ କାଗଜପତ୍ର ଠିକ୍ ନଥିବା କଥା ସେଠାରେ ଦର୍ଶାଯାଇଥିଲା । ଶେଷରେ ଛଅ ଡଲାର ଦାଖଲ କରି ମୁଁ ଆବଶ୍ୟକ ଅନୁମତିପତ୍ର ହାସଲ କଲି । ବଫାଲୋ ଚେକ୍‌ଗେଟରେ କାମ ଶେଷ ହେଲାବେଳକୁ ଛଅଟା ବାଜିଯାଇଥିଲା । ଆମକୁ ଆହୁରି ଚାରିଶହ ମାଇଲ ରାସ୍ତା ଯିବାକୁ ଥିଲା । ଆମେ ଗାଡ଼ିରେ ବସିବା ପୂର୍ବରୁ ଶର୍ମିଷ୍ଠା ଷ୍ଟିଅରିଂ ଧରିଲେ । ତାଙ୍କ ପାଖରେ ଆଶୁତୋଷ ବସିଲେ ଓ ମୁଁ ପଛ ସିଟ୍‌କୁ ଚାଲିଗଲି । ଗାଡ଼ି ଚାଲିଲା । ହେଲେ ଗାଡ଼ିର ସ୍ପିଡ୍ ଯେତିକି ବଢୁଥିଲା ମୋ ମନ ଭିତରେ ଏକ ଅଜଣା ଆଶଙ୍କା ସେତିକି ପରିମାଣରେ ବୃଦ୍ଧି ପାଉଥିଲା; କାରଣ ଆମ ଦେଶରେ ସାଧାରଣତଃ ମହିଳାମାନେ ହାଇୱେରେ ନିଜେ ଗାଡ଼ି ଚଳାଇବାର ଦେଖାଯାଆନ୍ତି ନାହିଁ । ସହର ଭିତରେ ମହିଳାମାନେ ସଡକରେ ନିଜେ ଗାଡ଼ି ଚଳାଇ ମାର୍କେଟିଂ କରିବାକୁ ଯାଆନ୍ତି କିମ୍ବା ସାଙ୍ଗସାଥୀଙ୍କ ଘରକୁ ବୁଲିବାକୁ ଯାଆନ୍ତି । ସେଥିପାଇଁ ଶର୍ମିଷ୍ଠା ଷ୍ଟିଅରିଂ ଧରିବା ପରେ ମୁଁ ଟିକିଏ ଆତଙ୍କିତ ହୋଇଯାଇଥିଲି । ଆଶୁତୋଷ ବୋଧେ ମୋ ମନର ଭାବନାକୁ ବୁଝିପାରିଲେ । ମତେ ପଚାରିଲେ, "ଅଙ୍କଲ, ଆପଣ କାହିଁକି ଚିନ୍ତିତ ଥିଲା ଭଳି ଦେଖାଯାଉଛନ୍ତି, ଦେହ ଭଲ ନାହିଁ କି ? ଶର୍ମିଷ୍ଠା ଗାଡ଼ି ଡ୍ରାଇଭ କରି ପାରିବ କି ନାହିଁ ସେ କଥା ଚିନ୍ତା କରୁଛନ୍ତି କି ? ଦେଖନ୍ତୁ ପାଶ୍ଚାତ୍ୟ ରାଷ୍ଟ୍ରରେ ଉଭୟ ସ୍ୱାମୀ ଓ ସ୍ତ୍ରୀ ଗାଡ଼ି ଚଳାଇବାକୁ ଏକପ୍ରକାର ବାଧ୍ୟ । ଏଠାରେ କେହି କାହା ଉପରେ ନିର୍ଭରଶୀଳ ନୁହନ୍ତି । ସେଥିପାଇଁ ପରିବାରର ସବୁ ସଦସ୍ୟମାନଙ୍କ ପାଇଁ ଅଲଗା ଅଲଗା ଗାଡ଼ି ଥାଏ । ଏପରିକି ପିଲା ଟିକେ ବଡ଼ ହୋଇଗଲେ ସେମାନେ ନିଜେ ତାଙ୍କ ଗାଡ଼ି ଚଳାନ୍ତି । ସେ ଦୃଷ୍ଟିରୁ ଶର୍ମିଷ୍ଠା ଗାଡ଼ି ଚଳାଇବାରେ ବେଶ୍ ଦକ୍ଷ । ଆପଣ ନିର୍ଭୟରେ ଗାଡ଼ିରେ ଆରାମ କରନ୍ତୁ ! ଗାଡ଼ି ଘଣ୍ଟାକୁ ଶହେ ମାଇଲରୁ ଅଧିକ ବେଗରେ ଚାଲୁଥିଲା । ରୋଡ୍ ସରଫେସ୍ ଏତେ ଭଲ ଥିଲା ଯେ ଗାଡ଼ି ଟିକିଏ ହେଲେ ହଲୁ ନଥିଲା । ମୋ ଅଜାଣତରେ ମୁଁ ଗାଡ଼ି ଭିତରେ ଘୁମେଇ ପଡ଼ିଥିଲି ।

ଗୋଟିଏ ରେଷ୍ଟୁରାଣ୍ଟ ସାମନାରେ ଶର୍ମିଷ୍ଠା ଗାଡ଼ିର ବ୍ରେକ୍ ମାରିବାରୁ ମୋ ନିଦ ଭାଙ୍ଗିଥିଲା । ଆଶୁତୋଷ କହିଲେ, "ଦେଖନ୍ତୁ ଅଙ୍କଲ, ଆମେ ଘରେ ପହଞ୍ଚିଲା ବେଳକୁ ବୋଧହୁଏ ରାତି ବାରଟା ହୋଇଯିବ । ବାଟରେ ଆମେ ଅଟକି ନଥିଲେ ଆମେ ଘର ପାଖାପାଖି ହୋଇସାରନ୍ତେଣି । ଯାହାହେଉ, ଆପଣଙ୍କୁ ଭୋକ ଲାଗିବଣି । ଏଠି ଅଳ୍ପ କିଛି ଖାଇଦେଲେ ହେବ । ମୁଁ କହିଲି, ଆମେରିକାର ରେଷ୍ଟୁରାଣ୍ଟରେ ନିରାମିଷ ଲୋକଙ୍କ ପାଇଁ କ'ଣ ମିଳିବ ଯେ ଖାଇବା ? ସେ କହିଲେ, ଏ ରେଷ୍ଟୁରାଣ୍ଟ ଭିତରେ ଗୋଟିଏ ପିଜାକର୍ଣ୍ଣର

ଅଛି। ସେଠାରେ ଭେଜ୍ ପିଜା ମିଳେ। ଯଦି ଆଜି ଥିବ, ତେବେ ତାକୁ ଆପଣ ଖାଇପାରିବେ।

ରେଷ୍ଟୁରାଣ୍ଟର ଟଏଲେଟରେ ଟିକିଏ ଧୁଆଧୋଇ ହୋଇ ଆମେ ପିଜାକର୍ଣ୍ଣର ଆଡ଼େ ଚାଲିଲୁ। ପିଲା ଦି'ଜଣଙ୍କ ପାଇଁ ବରଗର, ସେମାନଙ୍କ ପାଇଁ ଚିକେନ ପିଜା ଓ ମୋ ପାଇଁ ଭେଜ୍‌ପିଜା ବରାଦ ଦିଆଗଲା। ସେ କର୍ଣ୍ଣରରେ ଆମ ଭଳି ଅନେକ ଲୋକ ଖାଇବା ଜିନିଷ ଅର୍ଡର ଦେଇ ବସିରହିଥିଲେ। ପନ୍ଦର ମିନିଟ ପରେ ଆମ ଖାଦ୍ୟ ଆସିଲା। ଖାଇସାରି ଆମେ ସମସ୍ତେ ଫ୍ରୁଟ୍‌ଜୁସ୍ ନେଲୁ। ବାହାରେ ଖୋଲାପବନରେ କିଛି ସମୟ ବସିବା ପରେ ଆମେ ପୁଣି ଗନ୍ତବ୍ୟ ପଥରେ ବାହାରିଲୁ। ଏଥର୍ ଆଶୁତୋଷ ଗାଡ଼ି ଚଳାଇଲେ।

## ଆଶୁତୋଷଙ୍କ ଘରେ ରାତ୍ରିଯାପନ

ନ୍ୟୁଜର୍ସିର କିଛିବାଟ ଦୂରରେ କୌଣସି ଏକ ଅଜଣା କାରଣରୁ ରାସ୍ତାଜାମ୍ ହୋଇଥିଲା। ସେଥିପାଇଁ ଆମକୁ ରାସ୍ତାରେ ପାଖାପାଖି ଘଣ୍ଟାଏ କାଳ ଅପେକ୍ଷା କରିବାକୁ ପଡ଼ିଲା। ପରେ ଶୁଣିଲି, ବେଳେବେଳେ ହାଇୱେରେ ଏପରି ସମସ୍ୟା ସବୁ ସୃଷ୍ଟି ହୋଇଥାଏ। ଗୋଟିଏ ଗାଡ଼ି ବ୍ରେକଡାଉନ ହୋଇଗଲେ କିମ୍ବା ଦୁର୍ଘଟଣାଗ୍ରସ୍ତ ହେଲେ ସେ ରାସ୍ତାରେ ଯାଉଥିବା ହଜାର ହଜାର ଗାଡ଼ିକୁ ଅଟକିବାକୁ ପଡ଼ିଥାଏ। ପରିସ୍ଥିତି ଗୁରୁତର ହୋଇଥିଲେ ପୁଲିସ ଯାନବାହନ ଗୁଡ଼ିକୁ ଅନ୍ୟରାସ୍ତାରେ ଗନ୍ତବ୍ୟସ୍ଥଳକୁ ପଠାଇ ଦିଅନ୍ତି। ବାଟରେ ଦୁଇଜାଗାରେ ଅଟକିବା ଫଳରେ ଆମ ହିସାବ ସବୁ ଭୁଲ୍ ହୋଇଯାଇଥିଲା। ରାତି ନଅଟା ବଦଳରେ ଆମେ ଗୋଟାକରେ ଘରେ ପହଞ୍ଚିଲୁ। ମୁଁ ଏତେ ପରିମାଣରେ ଥକି ଯାଇଥିଲି ଯେ ଗାଡ଼ିରୁ ବ୍ୟାଗ କାଢ଼ିବା ମୋ ପକ୍ଷରେ ସମ୍ଭବପର ନଥିଲା। ପିଲାମାନେ ସାହାଯ୍ୟ କରି ତାକୁ ନେଇ ଗେଷ୍ଟରୁମ୍‌ରେ ରଖିଦେଇ ଆସିଲେ। ଗେଷ୍ଟ ରୁମ୍‌ଟି ଉପର ମହଲାରେ ଥିଲା। ସେଠାକୁ ଯିବା ପାଇଁ କାଠତିଆରି ଶିଡ଼ି। ପାହାଚରେ ମୋଟା ଗାଲିଚା। କଷ୍ଟେମଷ୍ଟେ ଉପରକୁ ଉଠିଲି। ପିଲାମାନେ ବିଛଣା ସଜାଡ଼ି ମୋ ବ୍ୟାଗ ରଖିଦେଇ ପାଖରେ ଥିବା ବାଥରୁମ୍ ଦେଖାଇ ଚାଲିଗଲେ।

ଆମେ ସବୁ ଫ୍ରେସ ହେଲାବେଳକୁ ଶର୍ମିଷ୍ଠା ତାଙ୍କ କାମ ସାରି ରୋଷେଇ ଘରେ ପଶି ସାରିଥିଲେ। ମୁଁ ଗଣେଶବାବୁଙ୍କ ବନ୍ଧୁ ହୋଇଥିବାରୁ ମତେ ଖୁସି କରିବା ପାଇଁ ସମସ୍ତେ ଲାଗିପଡ଼ିଲେ। ଅଳ୍ପସମୟ ମଧ୍ୟରେ ଲୁଚି, ବୁଟଡାଲି ଓ ବାଇଗଣ ଭଜା ହୋଇଗଲା। ଆଶୁତୋଷ ଉପର ମହଲାକୁ ଆସି ରାତ୍ରିଭୋଜନ ପାଇଁ ମତେ ଡାକିଲେ। ଖାଇବାପାଇଁ ମୋର ଆଦୌ ଇଚ୍ଛା କିମ୍ବା ଆଗ୍ରହ ନଥିଲା। କିନ୍ତୁ ଆଶୁତୋଷଙ୍କ ଅନୁରୋଧକୁ ଏଡ଼ାଇ ନପାରି ତଳକୁ ଗଲି। ଗଲାବେଳେ ସାଙ୍ଗରେ ରୁପା ତାରକସି ଖଚିତ କଣ୍ଠିହାର

ଡବାକୁ ନେବା ପାଇଁ ଭୁଲି ନଥିଲି । ମୁଁ ସେଇଟି ଶର୍ମିଷ୍ଠାଙ୍କ ହାତକୁ ବଢ଼ାଇ ଦେବା ପରେ ସେ ତାକୁ ଖୋଲି ଦେଖିଲେ ଓ ବହୁତ ଖୁସି ହୋଇଗଲେ। ମତେ କହିଲେ, ଆପଣ ଏତେଟଙ୍କା ଖର୍ଚ୍ଚ କରି ମୋ ପାଇଁ କାହିଁକି ଏପରି ଏକ ଦାମିକା କଣ୍ଠିମାଳ ଆଣିଲେ ? ଆପଣଙ୍କର ବହୁତ ଜାଗା ଯିବାର ଅଛି। ଅନେକ ଲୋକଙ୍କ ଘରେ ରହିବେ। ଏଇଟା ମତେ ନଦେଇ ବରଂ ସେମାନଙ୍କୁ ଦେଲେ ଭଲ ହେବ।" ମୁଁ କହିଲି, "ଦେଖ ଶର୍ମିଷ୍ଠା, ତମେ ସବୁ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବିତାଉଛ। ତମର ଅଭାବ ବୋଲି କିଛି ନାହିଁ। ଈଶ୍ୱରଙ୍କର ତମ ପ୍ରତି ଆଶୀର୍ବାଦ ରହିଛି। ତମେ ଏତେ ଶ୍ରଦ୍ଧାରେ ମତେ ଘରକୁ ଆଣିଛ। ରାତି ଅଧରେ ମୋ ଖୁସି ପାଇଁ ରୋଷେଇ କରୁଛ। ମୁଁ ସାମାନ୍ୟ ଗିଫ୍ଟଟିଏ ଦେଲେ ତାକୁ ଗ୍ରହଣ କରିବ ନାହିଁ ? ମୁଁ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ଆମେରିକାରେ କୋଉଠିକି ଯିବି, କାହାଘରେ ରହିବି ସେସବୁ ସ୍ଥିର ହୋଇସାରିଥିଲା ଏବଂ ସେଇ ହିସାବରେ ମୁଁ ସମସ୍ତଙ୍କ ପାଇଁ କିଛି ନା କିଛି ଗିଫ୍ଟ ଆଣିଛି। ଏହାକୁ ଗିଫ୍ଟ ବୋଲି ନଭାବି ମୋର ଶ୍ରଦ୍ଧା ଭାବରେ ଗ୍ରହଣ କର।"

ଭୋକ ନଥିଲେ ବି ଶର୍ମିଷ୍ଠା ଶ୍ରଦ୍ଧାରେ ରାନ୍ଧିଥିବାରୁ ମୁଁ ଡାଇନିଂ ଟେବୁଲରେ ବସିଲି। ଅନ୍ୟମାନେ ଆସି ଯୋଗଦେଲେ। ଗରମ ଲୁଚି ସାଙ୍ଗକୁ ବୁଟଡାଲି ଓ ଛଣାହୋଇଥିବା ବାଇଗଣଭଜାର ଲୋଭକୁ ମୁଁ ରୋକିପାରିଲି ନାହିଁ। ଖାଇବାଭିତରେ ଆସନ୍ତାକାଲିର କାର୍ଯ୍ୟକ୍ରମ କ'ଣ ବୋଲି ଆଶୁତୋଷ ଜାଣିବାକୁ ଚାହିଥିଲେ। ମୁଁ ନ୍ୟୁୟର୍କକୁ ବୁଲିଯିବା କଥା ଶୁଣି ସେ ମୋ ପାଇଁ ଗୋଟିଏ ଚାର୍ଟ ତିଆରି କରିଦେଲେ। ମୋ ସାଙ୍ଗରେ ସେ ଯାଇ ପାରିବେ ନାହିଁ ବୋଲି ଦୁଃଖ ପ୍ରକାଶ କରି କହିଲେ, "ଦେଖନ୍ତୁ ଅଙ୍କଲ, ପାଶ୍ଚାତ୍ୟ ଦେଶମାନଙ୍କରେ ୱାର୍କଡେଜ୍ ବହୁତ ଗୁରୁତ୍ୱପୂର୍ଣ୍ଣ। ସେ ଦିନମାନଙ୍କରେ କାହାରି ଫୁରସତ୍ ନଥାଏ। ଏମିତି 'ଓଶା' ଅଧିବେଶନ ପାଇଁ ମୋର ଦି'ଦିନ ଯାଇଛି। ମତେ କ୍ଷମା କରିବେ। ମୁଁ ଆପଣଙ୍କୁ ନ୍ୟୁୟର୍କ ସହର ବୁଲାଇବାରେ ସାହାଯ୍ୟ କରିପାରୁନାହିଁ।" ମୁଁ ତାଙ୍କୁ ବୁଝାଇ କହିଲି, "ଦେଖ ଆଶୁତୋଷ, ମୁଁ ପାଶ୍ଚାତ୍ୟ ସଂସ୍କୃତି ବିଷୟରେ ସମ୍ପୂର୍ଣ୍ଣ ସଚେତନ, ଘର ଛାଡ଼ିଲା ପୂର୍ବରୁ ମୁଁ ମନ ସ୍ଥିର କରିସାରିଛି। ତୁମେ ସବୁ ଯେତିକି ସ୍ନେହ ଶ୍ରଦ୍ଧା ଦେଖାଇଛ, ତାହା ମୋ ପାଇଁ ଯଥେଷ୍ଟ। ସେସବୁ ମୋର ସବୁଦିନ ପାଇଁ ମନେରହିଯିବ।" ରାତି ବେଶି ହୋଇଯାଇଥିଲା। ଡାଇନିଂ ଟେବୁଲରୁ ଉଠି ମୁଁ ଗେଷ୍ଟ ରୁମ୍‌କୁ ଯାଇ ଶୋଇପଡ଼ିଲି।

## ପ୍ରାଚୁର୍ଯ୍ୟଭରା ନ୍ୟୁୟର୍କ ନଗରୀ

ଶରୀର ଅବଶ ଲାଗୁଥିଲେ ବି ମନ ଚଞ୍ଚଳ ଥିଲା। ନୂଆ ଜାଗା, ନୂଆ ଘର, ମନରେ ଅସୁମାରି ଭାବନା। କୋଉଠିକି ଯିବି, କାହା ସାଙ୍ଗରେ ବୁଲିବି ? କାହାରି ସାଙ୍ଗରେ ବିଶେଷ ପରିଚୟ ନାହିଁ। ଏମିତି ଭାବୁଭାବୁ ସକାଳ ହୋଇଗଲା। ମୁଁ ନିତ୍ୟକର୍ମ ସାରିବା ପାଇଁ ବାଥରୁମ୍‌ରେ ପଶିଲି। ଭାବିଥିଲି ବୋଧହୁଏ ମୁଁ ପ୍ରଥମେ ଉଠିଛି ଏବଂ ଅନ୍ୟମାନେ ଶୋଇଥିବେ। କିନ୍ତୁ ପ୍ୟାଣ୍ଟସାର୍ଟ ପିନ୍ଧି ତଳକୁ ଆସି ଦେଖିଲି ଅନ୍ୟମାନେ ନିଜ ନିଜ କାମକୁ ଯିବାପାଇଁ ପ୍ରସ୍ତୁତ ହୋଇ ସାରିଥିଲେ। ଘଣ୍ଟାରେ ସେତେବେଳେ ସାଢ଼େ ଛଅଟା ବାଜିଥିଲା। ବ୍ରେକଫାଷ୍ଟ ପାଇଁ ସେମାନେ ମତେ ଅପେକ୍ଷା କରିଥିଲେ। ମୋର ସେଦିନ ବୁଲାବୁଲି କରିବାର ଥିବାରୁ ମୁଁ କିଛି ଖାଇବି ନାହିଁ ବୋଲି ନମ୍ରତାର ସହିତ ଜଣାଇଥିଲି। ଶର୍ମିଷ୍ଠା ମୋ ହାତକୁ ଗୋଟିଏ ପ୍ୟାକ୍‌ଡ ଲଞ୍ଚ ବଢ଼ାଇଦେଇ କହିଲେ, ଏଥିରେ ସାଣ୍ଡୱିଚ୍, ବିସ୍କୁଟ, ଆପେଲ ଓ କାସ୍ୟୁ ରହିଛି। ଆମେ ଗତ ଚାରିଦିନ ହେବ କେହି ଘରେ ନଥିଲୁ। ଯାହା ଥିଲା ତାକୁ ପ୍ୟାକ୍ କରିଦେଇଛି। ଆପଣ ସାଙ୍ଗରେ ନେଇଯାଆନ୍ତୁ। ଯେତେବେଳେ ଭୋକ ଲାଗିବ ଖାଇନେବେ।" ଶର୍ମିଷ୍ଠାଙ୍କ କଥାରେ ଆତ୍ମୀୟତା ଭରି ରହିଥିଲା। ମୋ ପାଇଁ ଏତେ କଷ୍ଟ କରିଥିବାରୁ କୃତଜ୍ଞତା ଜଣାଇ ପ୍ୟାକେଟ ଗ୍ରହଣ କଲି।

## ଓଡ଼ିଆ ବନ୍ଧୁଙ୍କ ସହ ନ୍ୟୁୟର୍କ ସହର ବୁଲା

ଆମର କଥାବାର୍ତ୍ତା ଚାଲିଥିଲା ବେଳେ ବନ୍ଧୁ ଧୀରେନ ପଟ୍ଟନାୟକ (ଓଶା ଅଧିବେଶନରେ ଯୋଗଦେବାକୁ କାନାଡ଼ା ଯାଇଥିବା ଓଏଏସ୍ ଅଫିସର) ଆଉ ଜଣେ ବନ୍ଧୁଙ୍କ ସହିତ କାର୍‌ରେ ଆସି ପହଞ୍ଚିଗଲେ। ମନରେ ତାଙ୍କର ବ୍ୟଗ୍ରତା। କେତେ ଶୀଘ୍ର ଘରୁ ଯାଇହେବ, କେତେ ଜାଗା ବୁଲିହେବ, ସେଥିପାଇଁ ସେ ବ୍ୟସ୍ତ ଥିଲେ। ମୁଁ ତାଙ୍କ ମାନସିକ ସ୍ଥିତିକୁ ବୁଝି ଶୀଘ୍ର ବାହାରିପଡ଼ିଲି। କିଛି ଖାଇବା ପାଇଁ ଆଶୁତୋଷ ଓ ଅନ୍ୟମାନେ ଅନୁରୋଧ କରୁଥିଲେ। ସେମାନଙ୍କ ଅନୁରୋଧକୁ ଏଡ଼ାଇ ନପାରି ଗୋଟିଏ ପିସ୍ ବ୍ରେଡ୍ ଓ ଗୋଟିଏ କଦଳୀ ଧରି ମୁଁ ଯାଇ ଗାଡ଼ିରେ ବସିଲି।

ପନ୍ଦର ମିନିଟ ଡ୍ରାଇଭ ପରେ ଆମେ ଯାଇ ନ୍ୟୁବର୍ଣ୍ଣଉଇକ୍ ଷ୍ଟେସନରେ ପହଞ୍ଚିଗଲୁ। ସେଠାରୁ ଟିକେଟ କରି ଟ୍ରେନରେ ନ୍ୟୁୟର୍କ ଯିବାକଥା। ଟ୍ରେନ ଟିକେଟ କୋଉଠୁ ମିଳିବ, ସେଇକଥା ଭାବୁଭାବୁ ଜଣେ ଭାରତୀୟଙ୍କ ସାଙ୍ଗରେ ଦେଖା ହୋଇଗଲା। ତାଙ୍କ ନାଁ ହର୍ଷ ସୁଦ୍ଧ, ଜନ୍ମ ହରିଆନାରେ। ଗତ ୩୫ବର୍ଷ ଧରି ନ୍ୟୁଜର୍ସିରେ ରହୁଛନ୍ତି। ଆମକୁ ଦେଖି ସେ ଭାରି ଖୁସି ହୋଇଗଲେ। କ'ଣ ସାହାଯ୍ୟ କରିବେ ବୋଲି ପଚାରିଲେ। ଆମେ ନ୍ୟୁୟର୍କ

ଯିବା ପାଇଁ କାଉଣ୍ଟରକୁ ଯାଇ ଟିକେଟ କିଣିଦେଲେ। ତିନିଜଣଙ୍କ ପାଇଁ ଛତିଶି ଡଲାର ମୂଲ୍ୟର ଟିକେଟ ଲାଗିଥିଲା। ପାଞ୍ଚମିନିଟ ମଧ୍ୟରେ ଟ୍ରେନ ଆସିଗଲା। ଆମେ ଟ୍ରେନ୍‌ରେ ତିନୋଟି ଆସନ ଦଖଲ କଲୁ। ଟ୍ରେନ୍‌ଟି ଖୁବ୍ ପରିଷ୍କାର ଓ ସିଟ୍‌ଗୁଡ଼ିକ ଖୁବ୍ ଆରାମଦାୟକ ଥିଲା। ସମଗ୍ର ଟ୍ରେନଟି ବାତାନୁକୂଳିତ। ଟ୍ରେନ୍‌ରେ ସବୁକଥା ଶୃଙ୍ଖଳିତ ଓ ସୁନିୟନ୍ତ୍ରିତ। ଟ୍ରେନରେ ଗଲାବେଳେ ଆମ ଦେଶରେ ଚାଲୁଥିବା ଲୋକାଲ ଟ୍ରେନର ଦୃଶ୍ୟ ମନରେ ଭାସିଉଠିଲା। ଆମର କଲିକତା ଓ ମୁମ୍ବାଇ ମହାନଗରୀକୁ ପ୍ରତ୍ୟେହ ହଜାର ହଜାର ଲୋକ ଟ୍ରେନରେ ଯାତାୟାତ କରିଥାନ୍ତି ଏବଂ ସେ ଦୁଇ ତିନିଘଣ୍ଟାର ଯାତ୍ରା କେତେ କଷ୍ଟଦାୟକ ସେ କଥା କେବଳ ଅନୁଭବୀମାନେ ହିଁ ଜାଣନ୍ତି। ଠେଲାପେଲାରେ ଧକ୍କା ଖାଇ ଗୋଟାଏ ଜାଗାରୁ ଶରୀର ଆଉ ଗୋଟାଏ ଜାଗାକୁ କିପରି ଘୁଞ୍ଚି ଘୁଞ୍ଚି ଚାଲିଥାଏ, ବୁଲାବିକାଳିମାନେ କିପରି ପାଦ ଉପରେ ଚଢ଼ି ସେମାନଙ୍କର ବେପାର ଚଳାଇଥାଆନ୍ତି ଓ ପକେଟମାରମାନେ ଏହି ସୁଯୋଗରେ କିଭଳି ସେମାନଙ୍କର ପକେଟ କଟା କାମ ଚାଲୁରଖିଥାଆନ୍ତି ସେକଥା ଚିନ୍ତା କରାଯାଇ ପାରେନା। ବିଚରା ଯାତ୍ରୀମାନେ, ଜୁଳୁଜୁଳୁ ହୋଇ ଅନେଇ ରହିବା ଛଡ଼ା ସେମାନଙ୍କର ଆଉ କିଛି ଉପାୟ ନଥାଏ; କାରଣ ସେମାନଙ୍କର ଗୋଟାଏ ହାତ ଟ୍ରେନ ଛାତରୁ ଓହଳିଥିବା ବେଲ୍ଟ ଉପରେ ଓ ଆର ହାତଟିରେ ଟିଫିନ ବାକ୍ସ। ପୁରୁଷ ଓ ମହିଳାମାନଙ୍କ ଭିତରେ କିଛି ବାରଣ ନଥାଏ। ଉଣାଅଧିକେ ସମସ୍ତେ ସେ ଉତ୍‌ପୀଡ଼ନର ଶିକାର ହୋଇଥାଆନ୍ତି। କିନ୍ତୁ ବିଦେଶରେ ଟ୍ରେନଯାତ୍ରା ଅତ୍ୟନ୍ତ ଆରାମଦାୟକ। ଖୁବ୍ ବେଶି ହେଲେ ଅଧଘଣ୍ଟାଏ ସମୟ ଭିତରେ ଗନ୍ତବ୍ୟସ୍ଥଳରେ ପହଞ୍ଚିଯାଇହୁଏ। ଟ୍ରେନରେ ଏତେଲୋକ ଯିବାଆସିବା କରୁଥିଲେ ହେଁ କୌଣସି ପାଟିତୁଣ୍ଡ ନଥିଲା କିମ୍ବା ଆମ ଡେଲିପାସେଞ୍ଜରଙ୍କ ଭଳି କାହାର ଦାଦାଗିରି ନଥିଲା। ଯାହାର ଷ୍ଟେସନ ପାଖ ହୋଇ ଯାଉଥିଲା ସେ ଓହ୍ଲେଇ ଯାଉଥିଲେ। ଆମର ଯେଉଁମାନେ ନୂଆଦିଲ୍ଲୀ ପୁରୀ ନୀଳାଚଳ ଏକ୍ସପ୍ରେସ ଟ୍ରେନରେ ଭୁବନେଶ୍ୱରରୁ ଦିଲ୍ଲୀ ଯାଇଥିବେ କିମ୍ବା ଦିଲ୍ଲୀରୁ ଭୁବନେଶ୍ୱର ଫେରିଥିବେ, ସେମାନେ ଲୋକାଲ ପାସେଞ୍ଜରମାନଙ୍କର ଜୁଲମର ନିଶ୍ଚୟ ଶିକାର ହୋଇଥିବେ। ସେମାନଙ୍କ ପାଇଁ ଏସି ବଗିର କିଛି ଅର୍ଥ ନାହିଁ। ହାତରେ ଖଣ୍ଡେ ଲେଖାଏଁ ବ୍ୟାଗ ଧରି ଦିଲ୍ଲୀରୁ ଟ୍ରେନରେ ଚଢ଼ିବେ ଏବଂ ଦୀର୍ଘ ଛଅଘଣ୍ଟା ପରେ କାନପୁରରେ ଓହ୍ଲାଇବେ। ଟ୍ରେନରେ ଯାତ୍ରା କରୁଥିବା ମହିଳା, ରୋଗୀ କିମ୍ବା ବୟସ୍କ ନାଗରିକମାନଙ୍କ ପାଇଁ ସେମାନଙ୍କର କିଛି ଦରଦ ନଥାଏ। ସତେ ଯେପରି ଟ୍ରେନଟା ସେମାନଙ୍କର ପୈତୃକ ସମ୍ପତ୍ତି। ଯୋଉଠି ଇଚ୍ଛା ସେଇଠି ବସିବେ। ପାଟିରେ ଖଇନି ପକାଇ ଗପ ଆରମ୍ଭ କରିଦେବେ। ସେହିଭଳି ଆମର କଟକ-ଭୁବନେଶ୍ୱର ମଧ୍ୟରେ ଯାତ୍ରା କରୁଥିବା ଡେଲି ପାସେଞ୍ଜରଙ୍କ ଜୁଲମ। ଯଦି ସଟଲ କିମ୍ବା ଡିଏମ୍‌ୟୁ ଫେଲ ହୋଇଗଲେ ତେବେ ଯେକୌଣସି ଟ୍ରେନର ଯେକୌଣସି ଡବାରେ ପଶି ଅନ୍ୟମାନଙ୍କ

ଉପରେ ଆରମ୍ଭ କରିଦେବେ ଅତ୍ୟାଚାର। ଅନ୍ୟମାନେ ଅତ୍ୟାଚାରିତ ହେଲେ ବି ପାଟି ଫିଟାଇବାର ଯୁ' ନଥିବ।

ଟ୍ରେନରେ ବସିଲା ବେଳେ ବାରଟି ଷ୍ଟେସନ ପରେ ଓହ୍ଲାଇ ଅନ୍ୟଟ୍ରେନ ଧରିବା ପାଇଁ ଶ୍ରୀ ସୁଦ୍ଧ ଆମକୁ ପରାମର୍ଶ ଦେଇଥିଲେ। ସେଥିପାଇଁ ମୁଁ ପ୍ରତ୍ୟେକ ଷ୍ଟେସନକୁ ଗଣୁଥିଲି। ଠିକ୍ ବାରଟି ଷ୍ଟେସନ ପରେ ଆସିଲା ୩୪-ପେନ୍ ଷ୍ଟେସନ। ଆମେ ସେଠାରେ ଓହ୍ଲାଇ ଆଉ ଗୋଟିଏ ପ୍ଲାଟଫର୍ମରୁ ୧-ଡାଉନ-ଟାଉନ ଟ୍ରେନରେ ବସିଲୁ। ସେଥିପାଇଁ ଜଣ ପିଛା ୭ଡଲାର ଦେଇ ଅଲଗା ଟିକେଟ କରିବାକୁ ପଡ଼ିଲା। ସେ ଟିକେଟ ଦିନସାରା ଯେ କୌଣସି ଟ୍ରେନ କିମ୍ବା ବସ୍‌ରେ ଯାତାୟାତ ପାଇଁ ପ୍ରଯୁଜ୍ୟ ଥିଲା। ଅଳ୍ପ ସମୟ ପରେ ଆମେ ସେକ୍ସର ଷ୍ଟେସନରେ ଓହ୍ଲାଇଲୁ। ସେଠାରୁ ଚାଲିଚାଲି ବୁଲିବା ପାଇଁ ଆମେ ସ୍ଥିର କରିଥିଲୁ। ନ୍ୟୁୟର୍କ ସହରରେ ବୁଲିବା ଉଦ୍ଦେଶ୍ୟରେ ଧୀରେନବାବୁ ଗୋଟିଏ ଚାର୍ଟ କରିଥିଲେ ଏବଂ ମୋ ପାଖରେ ମଧ୍ୟ ଆଉ ଗୋଟିଏ ଚାର୍ଟ ଥିଲା। ଆମେ ଦୁଇଟିଯାକ ଚାର୍ଟକୁ ମିଳାଇଲୁ। ଦୁଇଟିଯାକ ପ୍ରାୟ ସମାନ ଥିଲା।

## ଏମ୍ପାୟାର ଷ୍ଟେଟ୍ ବିଲଡିଂରୁ ସହରର ଦୃଶ୍ୟ

ଆମର ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ଆମେ ପ୍ରଥମେ ଏମ୍ପାୟାର ଷ୍ଟେଟ୍ ବିଲଡିଂକୁ ଯିବାକୁ ସ୍ଥିର କଲୁ। ନ୍ୟୁୟର୍କ ପୃଥିବୀର ଏକ ଅତ୍ୟାଧୁନିକ ସହର। ପ୍ରାଚୁର୍ଯ୍ୟରେ ଭରପୂର। ଯୁଆଡ଼େ ଦେଖିଲେ ନଭଶ୍ଚୁମ୍ବୀ ଅଟ୍ଟାଳିକା। ଉପରକୁ ଅନେଇଲେ ଆଖି ପାଉନଥିଲା। ଅନ୍ୟାନ୍ୟ ପାଶ୍ଚାତ୍ୟ ସହର ବୁଲାବୁଲି କରିଥିଲେ ବି ନ୍ୟୁୟର୍କ ସହର ଥିଲା ଆମପାଇଁ ନୂଆ। ତଥାପି ମନରେ ସାହସ ସଞ୍ଚୟ କରି ଆମେ ଆଗେଇଲୁ। ପଚରା ପଚରି କରି ଆମେ ଯାଇ ଏମ୍ପାୟାର ଷ୍ଟେଟ ବିଲଡିଂ ପାଖରେ ପହଞ୍ଚିଗଲୁ। ସେଠାରେ ଆମ ଭଳି ବାହାରୁ ଯାଇଥିବା ଅନେକ ଲୋକ ବିଲଡିଂ ଉପରକୁ ଯିବା ପାଇଁ ଲାଇନ୍‌ରେ ଛିଡ଼ା ହୋଇଥିଲେ। ଆମେ ଲାଇନ୍‌ରେ ଯାଇ ଦୁଇଟି ଟିକେଟ କିଣିଲୁ। ବିଲଡିଂ ଉପରେ ସୀମିତ ସଂଖ୍ୟକ ଲୋକଙ୍କ ପାଇଁ ସ୍ଥାନ ଥିବାରୁ ତଳେ ଥିବା ସିକ୍ୟୁରିଟି ଅଫିସରମାନେ ଏକାଥରକେ ସବୁ ଲୋକଙ୍କୁ ନଛାଡ଼ି ବିଭିନ୍ନ ବ୍ୟାଚରେ ଛାଡୁଥିଲେ। ଉପରକୁ ଯିବା ବାଟରେ ବିଶ୍ରାମକକ୍ଷ ସବୁ ଥିଲା। ସେଠାରେ ଲୋକେ ଅଗ୍ରିମ ଡଲାର ଦାଖଲ କରି ଫଟୋ ଉଠାଉଥିଲେ। ଆମେ ଗଲାବେଳେ ସେମାନେ ଆମ ଫଟୋ ଉଠାଇବାକୁ ଚାହିଁଥିଲେ; କିନ୍ତୁ ଆମେ ସେମାନଙ୍କୁ ନାସ୍ତିବାଣୀ ଶୁଣାଇଥିଲୁ।

ଏମ୍ପାୟାର ଷ୍ଟେଟ ବଲିଡିଂଟି ୮୬ ମହଲା ବିଶିଷ୍ଟ। ଆମେ ପ୍ରଥମେ ୮୦ ମହଲା ପର୍ଯ୍ୟନ୍ତ ଯିବାପରେ ଦ୍ୱିତୀୟ ପର୍ଯ୍ୟାୟରେ ଶେଷ ଛଅମହଲାକୁ ଯାଇଥିଲୁ। ଅଶିମହଲାରେ ଥିବା ଦୁଇଟି ବଡ଼ ହଲ୍‌ରେ ସୌଖୀନ ପଦାର୍ଥର ମାର୍କେଟଟିଏ ଥିଲା। ବିଭିନ୍ନ ଦେଶରୁ

ସେଠାକୁ ଯାଇଥିବା ଲୋକେ ନିଜ ପକେଟକୁ ଚାହି ସେଠାରୁ କିଣାକିଣି କରୁଥିଲେ। ଆମର କିଛି କିଣିବାର ନଥିବାରୁ ଆମେ ସବା ଉପରକୁ ଉଠିଗଲୁ। ଉପର ମହଲାରେ ଆଠଟି ଖୋପରେ ଉଚ୍ଚଶକ୍ତି ସମ୍ପନ୍ନ ଦୂରବୀକ୍ଷଣଯନ୍ତ୍ର ଖଞ୍ଜାଯାଇଥିଲା। ଦୂରବୀକ୍ଷଣଯନ୍ତ୍ର ସାହାଯ୍ୟରେ ନ୍ୟୁୟର୍କ ସହରର ଦୃଶ୍ୟ ଉପଭୋଗ କରି ହେଉଥିଲା। ଆମ ପାଳି ପଡ଼ିବାରୁ ଆମେ ଦୂରବୀକ୍ଷଣଯନ୍ତ୍ର ପାଖକୁ ଯାଇ ସେ ଦୃଶ୍ୟ ଦେଖିଲୁ। ଛୟାଅଶି ମହଲା ଉପରୁ ସହରର କୋଠାବାଡ଼ି ସବୁ ଦିଆସିଲି ଖୋଳ ଭଳି ଦେଖାଯାଉଥିଲା। ସେଠାରୁ ସହର ଦୃଶ୍ୟର କିଛି ଫଟୋ ଉଠାଇବା ପାଇଁ ଆମର ଇଚ୍ଛାଥିଲା; କିନ୍ତୁ ପାଗ ମେଘୁଆ ଥିବାରୁ ତାହା ସମ୍ଭବ ହେଲା ନାହିଁ। କିଛି ସମୟ ପରେ ଲିଫ୍ଟରେ ତଳକୁ ଓହ୍ଲାଇବା ପାଇଁ ସଙ୍କେତ ମିଳିବାରୁ ଆମେ ଲିଫ୍ଟ ପାଖକୁ ଗଲୁ। ଲିଫ୍ଟରେ ତଳକୁ ଓହ୍ଲାଇଲା ବେଳେ ମୁଁ ଭାବୁଥିଲି ଯଦି ବାଟରେ କୌଣସି କାରଣରୁ ଲିଫ୍ଟ ଅଚଳ ହୋଇଯିବ ତେବେ କ'ଣ କରାଯିବ? ମାତ୍ର ବୁଝିବାରୁ ଜଣାଗଲା ଯେ ସ୍ୱାଭାବିକ ପରିସ୍ଥିତିରେ ଲିଫ୍ଟ ଖରାପ ହୁଏ ନାହିଁ ଏବଂ ଯଦି କେବେ ଖରାପ ହୁଏ, ତେବେ ସାଙ୍ଗେସାଙ୍ଗେ ତା'ର ମରାମତି କରିଦିଆଯାଏ। ସେଥିପାଇଁ ଲିଫ୍ଟ ଚାଲୁଥିବା ପର୍ଯ୍ୟନ୍ତ ତାର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଥିବା ବ୍ୟକ୍ତିମାନେ ଉପସ୍ଥିତ ଥାଆନ୍ତି। ଏତେବଡ଼ କୋଠା କେତେଦିନରେ କେତେ ଲୋକଙ୍କଦ୍ୱାରା ନିର୍ମିତ ହୋଇଥିଲା ସେ ବିଷୟରେ ଜାଣିବାକୁ ମନରେ କୌତୂହଳ ଜାତ ହେଲା। ଆମେ ତଳକୁ ଆସିବା ପୂର୍ବରୁ ଦ୍ୱିତୀୟ ମହଲାରେ ଥିବା ଅଫିସରେ ଏ ବିଷୟ ଜାଣିବାକୁ ଚାହିଲୁ। ସେଠାରେ ଥିବା କର୍ମକର୍ତ୍ତା ଜଣକ ଆମର ପରିଚୟ ପାଇ ଆମକୁ ବସିବାକୁ କହିଲେ। ତାଙ୍କ ସହିତ କଥାବାର୍ତ୍ତା ଜମିଲା। ତାଙ୍କ କଥାରୁ ଜଣାପଡ଼ିଲା ଯେ ଚାରିହଜାର ଲୋକ ସପ୍ତାହର ସାତଦିନଯାକ କାମ କରି ୧ ବର୍ଷ ୪୫ ଦିନରେ ଏହାର ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ। ଏଥିରେ ୬୦ହଜାର ଟନ୍‌ର ଇସ୍ପାତ, କୋଟିଏ ଇଟା ଓ ତଦନୁପାତିକ ସିମେଣ୍ଟ ବ୍ୟବହୃତ ହୋଇଥିଲା। ସେଥିରେ ଲାଗିଥିବା ବିରଳ ମାର୍ବଲପଥର ସବୁ ଇଟାଲୀ, ଫ୍ରାନ୍ସ, ବେଲଜିୟମ ଓ ଜର୍ମାନୀରୁ ଆମଦାନୀ କରାଯାଇଥିଲା। ସେଥିରେ ଯେଉଁ ୭୩ଟି ଲିଫ୍ଟର ବ୍ୟବସ୍ଥା ରହିଥିଲା, ସେଗୁଡ଼ିକ ପ୍ରତି ମିନିଟରେ ୧୪୦୦ ଫୁଟ ଉଚ୍ଚକୁ ଯାଇପାରୁଥିଲା। ସେ ଅନର୍ଗଳ କହିଚାଲିଥିଲେ ଏବଂ ସେସବୁ ଆମପାଇଁ ଉପଭୋଗ୍ୟ ହେଉଥିଲା। କିନ୍ତୁ ଅନ୍ୟାନ୍ୟ ସ୍ଥାନକୁ ଯିବାର କାର୍ଯ୍ୟକ୍ରମ ଥିବାରୁ ବିନମ୍ରତାର ସହିତ ଆମକୁ ସେଠାରୁ ବିଦାୟ ନେବାକୁ ପଡ଼ିଲା।

## ବିଶ୍ୱ ବାଣିଜ୍ୟ କେନ୍ଦ୍ରର ଧ୍ୱଂସାବଶେଷ

ଏମ୍ପାୟାର ଷ୍ଟେଟ ବିଲଡିଂରୁ ଫେରି ଆମର ଷ୍ଟାଚ୍ୟୁ ଅଫ ଲିବର୍ଟି ଯିବା କଥା। ଯିବା ବାଟରେ ବିଶ୍ୱ ବାଣିଜ୍ୟ କେନ୍ଦ୍ର (ୱାର୍ଲ୍ଡ ଟ୍ରେଡ ସେଣ୍ଟର) ପଡ଼ିବ ଜାଣି ଆମେ

ସେଠାକୁ ଯିବାକୁ ସ୍ଥିର କଲୁ। ଏହି ସେଣ୍ଟରଟି ଆତଙ୍କବାଦୀଙ୍କ ବିମାନ ଆକ୍ରମଣରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିବାର ଦୃଶ୍ୟ ଟେଲିଭିଜନରେ ଦେଖିବାକୁ ମିଳିଥିଲା। ଆତଙ୍କବାଦୀମାନେ କିପରି ବିମାନ ଅପହରଣ କରି ନେଇ ସେ ସେଣ୍ଟର ସହିତ ଧକ୍କା ଲଗାଇ ତାକୁ ଧରାଶାୟୀ କରିଦେଇଥିଲେ ତାର ଫଟୋଚିତ୍ର ବାରମ୍ବାର ପ୍ରସାରିତ ହୋଇଥିଲା। ସେଇ ସେଣ୍ଟରକୁ ଦେଖିବାକୁ ଯାଉଥିବାରୁ ମନରେ ପୁଲକ ସୃଷ୍ଟି ହେଲା। ଏମ୍ପାୟାର ଷ୍ଟେଟ ବିଲଡିଂରୁ ଟ୍ରେଡ୍ ସେଣ୍ଟର ପାଖକୁ ଯିବା ପାଇଁ ପନ୍ଦରମିନିଟ ସମୟ ଲାଗିଲା। ଆମେ ସେଠାରେ ପହଞ୍ଚି ପ୍ରଥମେ କିଛି ବୁଝି ପାରିଲୁ ନାହିଁ। ଯେଉଁ ସ୍ଥାନରେ ଦୁଇଟି ଆକାଶଛୁମ୍ବୀ ଅଟ୍ଟାଳିକା ଥିଲା, ଆତଙ୍କବାଦୀମାନଙ୍କ ଆକ୍ରମଣରେ ସେସବୁ ମାଟିରେ ମିଶିଯାଇଥିଲା । ସେ ସ୍ଥାନକୁ ଆମେରିକୀୟ ପୋଲିସ ତାରଜାଲିର ବାଡ଼ ଘେରାଇଦେଇ ଜଗି ରହିଥିଲେ। ଭିତରକୁ କାହାରିକୁ ଛାଡ଼ି ଦିଆଯାଉ ନଥିଲା। ପ୍ରାୟ ଦୁଇଶହ ମିଟର ଦୂରରୁ ଆମେ ତାରଜାଲି ବାଟେ ପୂର୍ବରୁ ସେଣ୍ଟର ଯେଉଁସ୍ଥାନରେ ଛିଡ଼ା ହୋଇଥିଲା ସେ ସ୍ଥାନକୁ ଦେଖିଲୁ। ଦିନେ ଯେ ସେଠାରେ ୧୧୦ମହଲା ବିଶିଷ୍ଟ ଦୁଇଟି (ଗୋଟିକର ଉଚ୍ଚତା ୧୩୬୮ଫୁଟ ଓ ଆଉ ଗୋଟିକର ଉଚ୍ଚତା ୧୩୬୨ ଫୁଟ) ଅତି ଉଚ୍ଚ ପ୍ରାସାଦ ଥିଲା, ତାର ଧ୍ୱଂସସ୍ତୂପ ଦେଖି ସେକଥା ବିଶ୍ୱାସ କରି ହେଲା ନାହିଁ। ସେ ଦୁଇଟି ଅଟ୍ଟାଳିକା ଉପରକୁ ଯିବା ପାଇଁ କେତୋଟି ହାଇସ୍ପିଡ୍ ଲିଫ୍ଟ ଲାଗିଥିଲା ଏବଂ ଗୋଟିଏ ମିନିଟ ସମୟ ମଧ୍ୟରେ ୧୧୦ମହଲା ଉପରେ ପହଞ୍ଚି ଯାଇ ହେଉଥିବା କଥା ଶୁଣି ଆମେ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ। ଏହି ସେଣ୍ଟରର ଆଖପାଖକୁ ପୁଲିସ କାହାରିକୁ ଛାଡ଼ି ଦେଉନଥିଲା। ତା'ର ଧ୍ୱଂସାବଶେଷର ଫଟୋ ନେବା ପାଇଁ ମଧ୍ୟ କାହାରିକୁ ଅନୁମତି ମିଳୁ ନଥିଲା। ତଥାପି ମନ ବୁଝିବାପାଇଁ ଆମେ ତାରଜାଲି ବାଟେ କେତୋଟି ଫଟୋ ଉଠାଇଲୁ। ସେଠାରେ ରାସ୍ତାକଡ଼ରେ କୋଲ୍ଡ ଡ୍ରିଙ୍କ ଓ ଥଣ୍ଡା ପାଣି ବୋତଲ ବିକ୍ରି ହେଉଥିଲା। ଗୋଟିଏ ବୋତଲକୁ ଗୋଟିଏ ଡଲାର। ସ୍ଥାନୀୟ ଲୋକଙ୍କର ସେଥିପ୍ରତି ଖାତିର ନଥିଲା। ସେମାନଙ୍କୁ ଡଲାରଟା ଟଙ୍କାଟିଏ ଭଳି ଲାଗୁଥିଲା; କିନ୍ତୁ ଆମେ ସବୁବେଳେ ଡଲାରକୁ ଭାରତୀୟ ମୁଦ୍ରାରେ ତଉଲୁଥିବାରୁ ଆମକୁ ସବୁଜିନିଷ ମହଙ୍ଗା ଲାଗୁଥିଲା।

ଏହି ସେଣ୍ଟରକୁ ଆମେରିକାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବ୍ୟାବସାୟିକ କେନ୍ଦ୍ର ବୋଲି ବିଚାର କରାଯାଉଥିଲା; କାରଣ ସେଠାରେ ବହୁ ନାମୀ, ଦାମୀ କମ୍ପାନୀର ଅଫିସ, ବଡ଼ବଡ଼ ବ୍ୟବସାୟ କେନ୍ଦ୍ର, ଅତ୍ୟାଧୁନିକ ରେଷ୍ଟୁରାଣ୍ଟମାନ ରହିଥିଲା। ସେଠାରେ ପ୍ରତ୍ୟହ ହଜାର ହଜାର ଲୋକଙ୍କର କାରବାର ଚାଲିଥିଲା। ସାଧାରଣ ଦର୍ଶକମାନେ ସେଣ୍ଟରର ଉପର ମହଲାକୁ ଯାଇ ନ୍ୟୁୟର୍କ ସହରର ଦୃଶ୍ୟ ଉପଭୋଗ କରୁଥିଲେ। ଉପର ମହଲାରୁ ଷ୍ଟାଚ୍ୟୁ ଅଫ ଲିବର୍ଟିକୁ ମଧ୍ୟ ଭଲଭାବରେ ଦେଖି ହେଉଥିଲା। ଆମେ ସେଠାରେ ଆଉ

କିଛି ସମୟ ଛିଡ଼ା ହେବା ପାଇଁ ମନ କରିଥିଲୁ । କିନ୍ତୁ ପୁଲିସ ଆମକୁ ଚାଲିଯିବା ପାଇଁ ସଙ୍କେତ ଦେବାରୁ ଆମେ ବାଧ ହୋଇ ସେ ସ୍ଥାନ ଛାଡ଼ିଲୁ ।

## ଷ୍ଟାଚ୍ୟୁ ଅଫ୍ ଲିବର୍ଟି ପରିଦର୍ଶନ

ଆମର ସେଦିନ ନ୍ୟୁୟର୍କ ସହର ଭ୍ରମଣର ପ୍ରମୁଖ କାର୍ଯ୍ୟକ୍ରମ ଥିଲା ଲିବର୍ଟି ଦ୍ୱୀପରେ ଥିବା 'ଷ୍ଟାଚ୍ୟୁ ଅଫ ଲିବର୍ଟି' ପରିଦର୍ଶନ । ସେତେବେଳକୁ ଦୁଇଘଣ୍ଟାରୁ ଅଧିକ ସମୟ ବୁଲାବୁଲି କରିବା ଫଳରେ ଦେହ ଟିକିଏ ଅବଶ ହୋଇପଡ଼ିଥିଲା । ଭୁବନେଶ୍ୱର ହୋଇଥିଲେ ଘରକୁ ଯାଇ ଖାଇପିଇ ଶୋଇ ଯାଇଥାନ୍ତି; କିନ୍ତୁ ସୁଦୂର ନ୍ୟୁୟର୍କରେ ଭିନ୍ନ ପରିସ୍ଥିତି । ସେଠି 'ଯେତେ ବୁଲିବ ସେତେ ଦେଖିବ ଓ ଯେତେ ଦେଖିବ ସେତେ ଜାଣିବ' ହେଉଛି ମୂଳମନ୍ତ୍ର । ଏଇକଥା ମନରେ ଭାବି ଆମେ ପୁଣି ବାହାରିଲୁ । କୋଡ଼ିଏ ମିନିଟ ଚାଲିଲା ପରେ ଆମେ ପହଞ୍ଚି ଯାଇଥିଲୁ ବ୍ୟାଟେରି ପାର୍କ ନିକଟରେ ଥିବା ଫେରିଘାଟରେ । ସେଠାରୁ ଲିବର୍ଟି ଦ୍ୱୀପରେ ଥିବା ଷ୍ଟାଚ୍ୟୁ ଅଫ ଲିବର୍ଟି ଦେଖିବା ପାଇଁ ଫେରିରେ ଯିବାକଥା । ଫେରିରେ ଯିବା ପାଇଁ ଆମ ଭଳି ଅନେକ ପର୍ଯ୍ୟଟକ ଲାଇନରେ ଛିଡ଼ା ହୋଇଥିଲେ । ଆମେ ବାର ଡଲାର ଲେଖାଏଁ ଦେଇ ଦୁଇଟି ଟିକେଟ କଲୁ । ସ୍ଥାନୀୟ ସମୟ ଦୁଇଟା ବେଳେ ଆମ ଷ୍ଟିମର 'ଆଡଭେଞ୍ଚର ହର୍ଣ୍ଣ ବ୍ଲୋୟର' ଫେରିଘାଟ ଛାଡ଼ିଲା । ଷ୍ଟିମରଟି ତିନିମହଲା ବିଶିଷ୍ଟ ଥିଲା । ତଳ ମହଲାରେ ଗୋଟିଏ ଆକର୍ଷଣୀୟ ରେଷ୍ଟୁରାଣ୍ଟ ଥିଲା ଏବଂ ସେଠାରେ ସବୁ ରକମର ପାନୀୟଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ସ୍ନାକ୍ସ ମିଳୁଥିଲା । ଷ୍ଟିମର ଛାଡ଼ିଲା ମାତ୍ରେ କିଛି ଲୋକ ରେଷ୍ଟୁରାଣ୍ଟକୁ ଯାଇ ନିଜ ପସନ୍ଦ ମୁତାବକ ପାନୀୟ ସଂଗ୍ରହ କଲେ । ମଝି ମହଲାରେ ଆରାମରେ ବସି ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ଗଦିଲଗା ଚେୟାରସବୁ ପଡ଼ିଥିଲା । ଆମେ ଯାଇ ଦୁଇଟି ଚେୟାର ଦଖଲ କଲୁ ।

ବନ୍ଧୁ ଧୀରେନ ବାବୁ ଗଲାବେଳେ ସାଙ୍ଗରେ ଦୁଇଟି ଭଜାବୁଟ ପ୍ୟାକେଟ ନେଇଥିଲେ । ଅନ୍ୟମାନେ ଭିନ୍ନ ଭିନ୍ନ ସ୍ନାକ୍ସ ପ୍ୟାକେଟ ଧରିଥିଲା ବେଳେ ଆମେ ଭଜାବୁଟ ପ୍ୟାକେଟ ଖୋଲିଲୁ । ଭଜାବୁଟ ହାତରେ ଧରି ନୀଳ ଜଳରାଶି ଉପରେ ଷ୍ଟିମର ଭାସିଭାସି ଯାଉଥିବାର ଦୃଶ୍ୟକୁ ଆମେ ଦେଖୁଥିଲୁ । ଷ୍ଟିମର ଚାଲିବା ସହିତ ମାଇକ୍ରୋଫୋନରୁ ରନିଂ କମେଣ୍ଟ୍ରି ମଧ ଚାଲିଥିଲା । ଷ୍ଟାଚ୍ୟୁ ଅଫ ଲିବର୍ଟି ମୂର୍ତ୍ତିଟି ବିଶ୍ୱର ସବୁଠାରୁ ଉଚ୍ଚ ମୂର୍ତ୍ତି । ଏହାକୁ 'ମୁକ୍ତିର ପ୍ରତୀକ' ବୋଲି ବିଚାର କରାଯାଏ । ଜଣେ ତେଜସ୍ୱିନୀ ମହିଳା ଡାହାଣ ହାତରେ ଗୋଟିଏ ଜଳନ୍ତା ମଶାଲ ଓ ବାମ ହାତରେ ଖଣ୍ଡେ ପୁସ୍ତକ ଧରି ଦଣ୍ଡାୟମାନ ଥିବା ଅବସ୍ଥାରେ ଏହି ମୂର୍ତ୍ତିଟି ଶୋଭାପାଉଛି । ଅଠରଶହ ଶତାବ୍ଦୀରେ ସଂଗଠିତ ହୋଇଥିବା

'ଆମେରିକାନ ରିଭୋଲ୍ୟୁସନ' ସମଗ୍ର ପୃଥିବୀର ରାଜନୀତିକୁ ପ୍ରଭାବିତ କରିଥିଲା। ସାମ୍ରାଜ୍ୟବାଦୀମାନଙ୍କ କବଳରୁ ଦେଶକୁ ମୁକ୍ତ କରିବାପାଇଁ ଏହି ସଂଗ୍ରାମ ଉଦ୍ଦିଷ୍ଟ ଥିଲା ଏବଂ ଶେଷରେ ଆମେରିକାବାସୀ କୃତକାର୍ଯ୍ୟ ହୋଇଥିଲେ। ଆମେରିକାରେ ନିର୍ବାଚିତ ସରକାର ଗଢ଼ା ଯାଇଥିଲା। ଏଥିରେ କେତେକ ଫରାସୀ ଯୁବକ ପ୍ରଭାବିତ ହୋଇ ଷ୍ଟାଚ୍ୟୁ ଅଫ ଲିବର୍ଟିର କଳ୍ପନା କରିଥିଲେ ଏବଂ ଫରାସୀ ଲେଖକ ଏଡୱାର୍ଡ ଡି ଲୋବେଲ ସେମାନଙ୍କ କଳ୍ପନାକୁ ବାସ୍ତବରୂପ ଦେଇଥିଲେ। ଏହି ଷ୍ଟାଚ୍ୟୁର ନିର୍ମାଣ ଦାୟିତ୍ୱ ଅଗଷ୍ଟ ବାର୍ଥଲିଡ୍‌ଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଫ୍ରାନ୍ସର ଜଣେ ଧନୀବ୍ୟକ୍ତି ଏଥିପାଇଁ ଅର୍ଥ ବ୍ୟୟ କରିଥିଲେ। ମୂର୍ତ୍ତିଟି ପ୍ରଥମାବସ୍ଥାରେ ଯେପରି କଳ୍ପନା କରାଯାଇଥିଲା ଶେଷ ହେଲାବେଳକୁ ତା'ଠାରୁ ବହୁତ ବଡ଼ ହୋଇଗଲା। ଏହାକୁ କିପରି କେଉଁଠାରେ ସ୍ଥାପନ କରାଯିବ, ସେନେଇ କେତେକ ସମସ୍ୟା ସୃଷ୍ଟି ହୋଇଥିଲା। ଶେଷରେ ଗୋଟିଏ ଜାହାଜରେ ଏହି ମୂର୍ତ୍ତିଟିକୁ ନ୍ୟୁୟର୍କକୁ ଅଣାଯାଇଥିଲା। ୧୮୮୪ ମସିହା ଜୁଲାଇ ୪ ତାରିଖରେ ନ୍ୟୁୟର୍କ ସହର ନିକଟରେ ଥିବା ହଡ୍‌ସନ ନଦୀ ମୁହାଣରେ ବେଡ୍‌ଲକ୍ ଦ୍ୱୀପରେ ଏହି ମୂର୍ତ୍ତିଟି ସ୍ଥାପିତ ହୋଇଥିଲା। ଷ୍ଟାଚ୍ୟୁ ଅଫ ଲିବର୍ଟି ମୂର୍ତ୍ତିର ନାମାନୁସାରେ ପରବର୍ତ୍ତୀ ସମୟରେ ବେଡଲେକ୍ ଦ୍ୱୀପର ନାମ ପରିବର୍ତ୍ତିତ ହୋଇ 'ଲିବର୍ଟି ଆଇଲାଣ୍ଡ' ହୋଇଥିଲା। ୧୮୮୬ ମସିହା ଅକ୍ଟୋବର ୨୮ ତାରିଖରେ ତତ୍କାଳୀନ ଆମେରିକା ରାଷ୍ଟ୍ରପତି ସୋଭର କ୍ଲେଭଲାଣ୍ଡ ଷ୍ଟାଚ୍ୟୁ ଅଫ ଲିବର୍ଟିକୁ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ।

ଷ୍ଟାଚ୍ୟୁ ଅଫ ଲିବର୍ଟି ଯେତିକି ପାଖଉଥିଲା ଆମ ମନର ଉତ୍କଣ୍ଠା ସେଇ ପରିମାଣରେ ବୃଦ୍ଧି ପାଉଥିଲା । ନଦୀକୂଳରେ ଥିବା ବିଭିନ୍ନ କୋଠାବାଡ଼ିର ମହତ୍ତ୍ୱ ସମ୍ପର୍କରେ ମାଇକ୍ରୋଫୋନ ଯୋଗେ ବୁଝାଇ ଦିଆଯାଉଥିଲା। ମଝି ମହଲାରେ ନ ବସି ଷ୍ଟିମରର ଉପରମହଲାକୁ ଗଲେ ପ୍ରାକୃତିକ ଦୃଶ୍ୟକୁ ଅଧିକ ଉପଭୋଗ କରିହେବ ଭାବି ଉପରକୁ ଯିବା ପାଇଁ ମୁଁ ବନ୍ଧୁ ଧୀରେନ ବାବୁଙ୍କୁ ଅନୁରୋଧ କଲି ଓ ଆମେ ଦୁହେଁ ଶିଡ଼ି ଚଢ଼ି ଉପରକୁ ଗଲୁ। ଉପରର ସ୍ଥିତି ଓ ବାତାବରଣ କିନ୍ତୁ ଭିନ୍ନ ଥିଲା। ସେଠାରେ କିଛି ଲୋକ ମଦ୍ୟପାନରେ ବ୍ୟସ୍ତ ଥିବାବେଳେ କିଛି ଯୁବକଯୁବତୀ କୁଣ୍ଢାକୁଣ୍ଢି ହୋଇ ପରସ୍ପରକୁ ଚୁମ୍ବନ ଦେବାରେ ଲାଗିଥିଲେ। ସେଠାରେ ଅନ୍ୟମାନଙ୍କ ଉପସ୍ଥିତି ସେମାନଙ୍କ ଉପରେ କିଛି ପ୍ରଭାବ ପକାଉ ନଥିଲା। ସେମାନେ କୋଉ କଥାକୁ ଭ୍ରୂକ୍ଷେପ ନ କରି ପ୍ରେମାଲିଙ୍ଗନରେ ମଗ୍ନ ଥିଲେ। ଆମେରିକା ସମେତ ଅନେକ ପାଶ୍ଚାତ୍ୟ ରାଷ୍ଟ୍ରରେ ଏହା ଏକ ସାଧାରଣ ଘଟଣା ଏବଂ ଏହା ଉପରେ କେହି ଗୁରୁତ୍ୱ ଦିଅନ୍ତି ନାହିଁ; ଏପରିକି ସ୍କୁଲ ଯିବା ବୟସରୁ ଝିଅମାନେ ସେମାନଙ୍କ ବୟଫ୍ରେଣ୍ଡମାନଙ୍କ ସହିତ କୁଣ୍ଢାକୁଣ୍ଢି ହେବା କିମ୍ବା ଚୁମା ଦିଆନିଆ ଘଟଣା ସେସବୁ ଦେଶର ସଂସ୍କୃତିର ଅଂଶ ପାଲଟିଯାଇଥିବା କଥା ଶୁଣିଲୁ।

ଷ୍ଟାଚ୍ୟୁ ଅଫ ଲିବର୍ଟି ଦେଖିସାରି ଫେରିଲା ବେଳକୁ ତିନିଟା ବାଜିଥିଲା। ସକାଳ ଆଠଟା ପୂର୍ବରୁ ଘର ଛାଡ଼ିବା ପରେ ଆଉ ଖାଇବା ପିଇବା ହୋଇ ନଥିଲା। ଶର୍ମିଷ୍ଠା ଦେଇଥିବା ପ୍ୟାକ୍‌ଲଞ୍ଚଟି ବ୍ୟାଗରେ ସେମିତି ପଡ଼ିଥିଲା। ମୁଁ ଧୀରେନ ବାବୁଙ୍କୁ କହିଲି, ଆଗେ ପେଟ ପୂଜା ସାରି ଅନ୍ୟ କଥା ଚିନ୍ତା କରିବା। ମୋ ପାଖରେ କିଛି ଖାଦ୍ୟ ପଦାର୍ଥ ଅଛି, ତାକୁ ଆମେ ଭାଗ କରି ଖାଇନେବା। ସେ ମଧ୍ୟ କିଛି ଶୁଖିଲା ଖାଦ୍ୟ ସାଙ୍ଗରେ ନେଇଥିଲେ। ପାଖରେ ଗୋଟିଏ ଫଳ ଦୋକାନରେ କଦଳୀ ବିକ୍ରି ହେଉଥିଲା। ମୁଁ ସେଠାରେ ପହଞ୍ଚି ଜାଣିଲି ଫଳଦୋକାନୀ ଜଣେ ବାଙ୍ଗଲାଦେଶୀ। ମୋଠାରୁ ବଙ୍ଗଳାକଥା ଶୁଣି ଗୋଟିଏ ଡଲାରକୁ ତିନିଟା କଦଳୀ ଜାଗାରେ ଚାରିଟା କଦଳୀ ଦେଲା। ଆମେ ଦୁହେଁ ବ୍ୟାଟେରୀପାର୍କ ପାଖରେ ପଡ଼ିଥିବା ବେଞ୍ଚରେ ବସି ଆମର ମଧ୍ୟାହ୍ନ ଭୋଜନ କାମ ସାରିଲୁ।

ଯୁକ୍ତରାଷ୍ଟ୍ର ଆମେରିକା ଏକ ପ୍ରାଚୁର୍ଯ୍ୟଭରା ଦେଶ ହୋଇଥିଲେ ହେଁ ସେ ଦେଶରେ ଅନେକ ନିର୍ଦ୍ଧନ ବ୍ୟକ୍ତି ଥିବାର ଆମେ ଦେଖିବାକୁ ପାଇଲୁ। ଆମେ ପାର୍କ ସାମନାରେ ବସି ଖାଇଲା ବେଳେ ନିକଟରେ କିଛି ଲୋକ ବାଜା ବଜାଇ ଏକପ୍ରକାର ସାହାଯ୍ୟ ଭିକ୍ଷା କରୁଥିଲେ। ଏହା ସେମାନଙ୍କର ନିତିଦିନିଆ କାମ ବୋଲି ସେଠି ଶୁଣିବାକୁ ପାଇଲୁ। ବ୍ୟାଟେରୀପାର୍କରେ ଥିବା ନାନାଜାତିର ଆକର୍ଷଣୀୟ ଫୁଲର ଶୋଭା ଆମକୁ ବିମୋହିତ କରିଥିଲା। ସେଠାରେ ଥିବା ବେଞ୍ଚ ଉପରେ ଶୋଇପଡ଼ିବାକୁ ଇଚ୍ଛା ହେଉଥିଲେ ବି କର୍ତ୍ତବ୍ୟର ତାଡ଼ନାରେ ଆମକୁ ଆଗେଇବାକୁ ପଡ଼ିଲା।

## ରିକ୍ସାରେ ଟାଇମ୍‌ସ୍କୋୟାର ବୁଲା

ସକାଳେ ଡାଉନ-ଟାଉନ ଟ୍ରେନରେ ଯିବା ପାଇଁ ଯେଉଁ ଟିକେଟ କିଣିଥିଲୁ, ସେଥିରେ ବସ୍‌ରେ ଯାତ୍ରା କରିହେବ ବୋଲି ଶ୍ରୀ ସୁଦ୍ଧ୍ ଆମକୁ କହିଥିଲେ। ତାଙ୍କର ପରାମର୍ଶ ଅନୁସାରେ ଆମେ ଗୋଟିଏ ସିଟି ବସ୍‌ରେ ବସି ପ୍ରଥମେ ୱାଲଷ୍ଟ୍ରିଟକୁ ଗଲୁ। ସେଠାରେ ଯୁକ୍ତରାଷ୍ଟ୍ର ଆମେରିକା ସରକାରଙ୍କ କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ରହିଥିଲା ଓ ସଶସ୍ତ୍ର ପ୍ରହରୀମାନେ ତାକୁ ଜଗିରହିଥିଲେ। ନିକଟରେ ଥିବା ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜର୍ଜ ୱାଶିଂଟନଙ୍କର ଏକ ପୂର୍ଣ୍ଣାବୟବ ମୂର୍ତ୍ତି ରହିଥିଲା। ଆମେ ସେଠାରେ କିଛି ଫଟୋ ଉଠାଇ ପୁଣି ଆଉ ଗୋଟିଏ ବସ୍‌ରେ ଯାଇ ଟାଇମସ୍କୋୟାରରେ ଓହ୍ଲାଇଲୁ।

ଟାଇମସ୍କୋୟାରର ଝିଲିମିଲି ଆଲୁଅ ସାଙ୍ଗକୁ ଅତ୍ୟାଧୁନିକ ବିଜ୍ଞାପନ ହୋର୍ଡିଂ ଦେଖି ଆମେ ଚକିତ ହୋଇଯାଇଥିଲୁ। ବୈଷୟିକ ଜ୍ଞାନକୌଶଳ ପ୍ରୟୋଗ ମାଧ୍ୟମରେ

କ୍ୟାମେରା ସାହାଯ୍ୟରେ କିପରି ବିଭିନ୍ନ ବିଜ୍ଞାପନ ହୋର୍ଡିଂକୁ ଆକର୍ଷଣୀୟ କରାଯାଇଥିଲା ସେଠାରେ ତାର ନିଦର୍ଶନ ଦେଖିବାକୁ ମିଳିଥିଲା। ପ୍ରତ୍ୟେକ କୋଠାରେ ଲାଗିଥିବା ଆଲୋକମାଳା ସତେ ଯେପରି ନିଜନିଜ ଭିତରେ ପ୍ରତିଯୋଗିତା କରୁଥିଲା ଭଳି ମନେହେଉଥିଲା।

ସେତେବେଳକୁ ଆମେ ଥକିଯାଇଥିଲୁ। ଚାଲିକରି ବୁଲିବାପାଇଁ ଗୋଡ଼ଦୁଇଟି ସହଯୋଗ କରିବାକୁ ପ୍ରସ୍ତୁତ ନଥିଲେ। ଦେଖିଲୁ, ପାଖରେ କେତୋଟି ସାଇକେଲରିକ୍ସା ଥୁଆ ହୋଇଥିଲା ଓ ବୁଢ଼ାବୁଢ଼ୀମାନେ ତାକୁ ଭଡ଼ାରେ ନେଇ ବୁଲାବୁଲି କରୁଥିଲେ। ଆମେ ଗୋଟିଏ ରିକ୍ସାବାଲାକୁ ଆମକୁ ବୁଲାଇନେବାକୁ କହିଲୁ। ସେ ଖଣ୍ଡି ଇଂରାଜୀରେ ଦିଜଣଙ୍କୁ କୋଡ଼ିଏ ଡଲାର ପଡ଼ିବ ବୋଲି କହିଲା। ଆମେ ହଁ କରି ସେଥିରେ ବସିଲୁ। ନ୍ୟୁୟର୍କ ସହରରେ ରିକ୍ସାରେ ବୁଲା ଏକ ବିରଳ ଅନୁଭୂତି। ଟାଇମସ୍କୋୟାରର ଯେଉଁ ଆଡ଼କୁ ଆମେ ଗଲୁ ସେଠାକାର ସାଜସଜ୍ଜା ଓ ଆଲୋକମାଳାର ଦୃଶ୍ୟରେ ଆମେ ମୁଗ୍ଧ ହୋଇଯାଇଥିଲୁ। ବଡ଼ ବଡ଼ ବିଜ୍ଞାପନ କମ୍ପାନୀ ଗ୍ରାହକମାନଙ୍କ ମନକୁ ଆକର୍ଷଣ କରିବା ପାଇଁ ଚାରିଆଡ଼େ ଅଭିନବ କୌଶଳ ପ୍ରୟୋଗ କରିଥିଲେ। ରିକ୍ସାବାଲା ଆମକୁ ଅଧଘଣ୍ଟାଏ କାଳ ବୁଲାଇଲା। ରିକ୍ସାରେ ବୁଲିବା ସମୟରେ ସେ ଆମକୁ ଟାଇମସ୍କୋୟାରର ଗୁରୁତ୍ୱ ସମ୍ପର୍କରେ ବୁଝାଇବା ପାଇଁ ଚେଷ୍ଟା କରୁଥିଲା; କିନ୍ତୁ ତାର ଅସ୍ପଷ୍ଟ ଉଚ୍ଚାରଣରୁ ଆମେ ସେସବୁ ବୁଝିପାରି ନଥିଲୁ।

ଛଅଟା ବାଜିଥିଲେ ବି ସନ୍ଧ୍ୟା ହୋଇ ନଥିଲା। ଧୀରେନ ବାବୁ ଆହୁରି ବୁଲିବାକୁ ଚାହୁଁଥିଲେ। ତାଙ୍କର ଯୁକ୍ତି ଥିଲା, "ଆଉଥରେ କ'ଣ ନ୍ୟୁୟର୍କ ଆସି ବୁଲିହେବ? ଯଦି ଥରେ ଏତେ ପରିଶ୍ରମ ଓ ଅର୍ଥବ୍ୟୟ କରି ଆସିଛେ ବୁଲିବା ନାହିଁ କାହିଁକି?" ମୁଁ ତାଙ୍କୁ କହିଲି, "ଆପଣଙ୍କ କଥାର ଯଥାର୍ଥ ଯୁକ୍ତି ରହିଛି; କିନ୍ତୁ ଶରୀରକୁ କଷ୍ଟ ଦେଇ ବୁଲିଲେ କି ଆନନ୍ଦ ମିଳିବ? ତା'ଛଡ଼ା, ଆଉ ଦୁଇଘଣ୍ଟା ବୁଲିଲେ କ'ଣ ଆମେ ନ୍ୟୁୟର୍କର ସବୁ ଦର୍ଶନୀୟସ୍ଥାନ ଦେଖିପାରିବା? ସେ ମୋ କଥାକୁ ଗ୍ରହଣ କଲେ। ଆଉ ଘଣ୍ଟାଏ ବୁଲି ଫେରିବାପାଇଁ ଆମେ ସ୍ଥିର କଲୁ। ଆମର ନ୍ୟୁୟର୍କ ଭ୍ରମଣ ସ୍ମୃତିକୁ ମନେରଖିବା ପାଇଁ କିଛି ଜିନିଷ କିଣିବା ଉଦ୍ଦେଶ୍ୟରେ ପାଖରେ ଥିବା ଗୋଟିଏ ମଲରେ ପଶିଲୁ। ପାଞ୍ଚ ମହଲା ବିଶିଷ୍ଟ ସେ ମଲ୍‌ର ବିଭିନ୍ନ ମହଲାରେ ବିଭିନ୍ନ ବିକ୍ରି ସାମଗ୍ରୀ ରହିଥିଲା; କିନ୍ତୁ ଦଶ ଡଲାରରୁ କୌଣସି ଜିନିଷ କମ୍ ନଥିଲା। ତେବେ ମନବୁଝିବା ପାଇଁ ଗୋଟିଏ ଦୁଇଟି ଜିନିଷ ଧରି ଆମେ ମଲ୍‌ରୁ ବାହାରିଲୁ।

## ଟ୍ରେନରେ ବାଟ ବାଉଳା

ଟାଇମସ୍କୋୟାରରୁ ସେକ୍ସର ଷ୍ଟେସନ ଚଲାବାଟ। ଆମେ ଯାଇ ଷ୍ଟେସନରେ ପହଞ୍ଚି ଗୋଟିଏ ଟ୍ରେନରେ ଚଢ଼ିଗଲୁ। ଆମର ସେଠାରୁ ୧-ଡାଉନ-ଟାଉନ ଷ୍ଟେସନ ଯାଇ ଟ୍ରେନ ବଦଳାଇ ୩୪-ପେନ ଷ୍ଟେସନକୁ ଯିବା କଥା; କିନ୍ତୁ ଆମର ଦୁର୍ଭାଗ୍ୟ ଆମେ ବସିଥିବା ଟ୍ରେନଟି ବିପରୀତ ଦିଗକୁ ଗତି କରୁଥିଲା। କେତୋଟି ଷ୍ଟେସନ ଅତିକ୍ରମ କଲାପରେ ମୋ ମନରେ ସନ୍ଦେହ ଜାତ ହେଲା। ସକାଳେ ଗଲାବେଳେ ଯୋଉସବୁ ଷ୍ଟେସନ ଆମେ ଅତିକ୍ରମ କରିଥିଲୁ, ସେସବୁ ଷ୍ଟେସନ ନ ପଡ଼ିବାରୁ ବୋଧହୁଏ ଆମେ ଭୁଲ ରୁଟ୍‌ରେ ଚାଲିଆସିଛୁ ବୋଲି ଭାବିଲି। ବନ୍ଧୁ ଧୀରେନ ବାବୁଙ୍କ ମନରେ ମଧ୍ୟ ଅନୁରୂପ ସନ୍ଦେହ ସୃଷ୍ଟି ହୋଇଥିଲା। ଆମେ ପରସ୍ପରର ମନକଥା ବୁଝି ପରବର୍ତ୍ତୀ ଷ୍ଟେସନରେ ଓହ୍ଲାଇ ପଡ଼ିଲୁ। ସେଠାରେ ଜଣେ ବାଙ୍ଗଲାଦେଶୀ ରୋଷେୟାଙ୍କ ସହିତ ଭେଟ ହେଲା। ତାଙ୍କ ବେଶପୋଷାକ ଓ ହାବଭାବରୁ ସେ ଜଣେ ଭାରତୀୟ ହୋଇଥିବେ ବୋଲି ଆମେ ଭାବିଥିଲୁ; କିନ୍ତୁ କଥାବାର୍ତ୍ତାରୁ ସେ ଜଣେ ବାଙ୍ଗଲାଦେଶୀ ବୋଲି ଜଣାପଡ଼ିଲା। ତାଙ୍କ ନାମ ଅବଦୁଲ କାଦୀର। ଦୀର୍ଘ କୋଡ଼ିଏବର୍ଷ ତଳେ ପେଟ ପୋଷିବାପାଇଁ ସେ ଘରୁ ଲୁଚିକରି ଆମେରିକା ପଳାଇ ଆସିଥିଲେ। ସେତେବେଳେ ତାଙ୍କ ପାଖରେ ପାସପୋର୍ଟ କିମ୍ବା ଭିସା କିଛି ନଥିଲା। ପକେଟ୍ ମଧ୍ୟ ଶୂନ୍ ଥିଲା। ନିଜର ସାଧନା ଓ ଉଦ୍ୟମ ବଳରେ ଶ୍ରୀ କାଦିର ସେସବୁ ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରି ପରବର୍ତ୍ତୀ ସମୟରେ କିପରି ଆମେରିକାର ନାଗରିକତ୍ୱ ଗ୍ରହଣ କରି ଏକ ପଞ୍ଚତାରକା ହୋଟେଲରେ 'ସେଫ୍' ହୋଇଥିଲେ ଟ୍ରେନ୍‌ଯାତ୍ରାକାଳରେ ଶ୍ରୀ କାଦିର୍ ସେ କଥା ଆମକୁ କହିଥିଲେ। ସେ ଡାଉନ-ଟାଉନ ଷ୍ଟେସନକୁ ଯାଉଥିବାରୁ ତାଙ୍କ ସାଙ୍ଗରେ ଯିବାକୁ ଆମକୁ ପରାମର୍ଶ ଦେଇ ଟ୍ରେନକୁ ଅପେକ୍ଷା କଲେ।

ଦଶମିନିଟ ସମୟ ମଧ୍ୟରେ ଆମର ଉଦ୍ଦିଷ୍ଟ ଟ୍ରେନଟି ଆସିଗଲା। ଅଫିସ ଫେରନ୍ତା ସମୟ ହୋଇଥିବାରୁ ଟ୍ରେନଟି ସକାଳ ଅପେକ୍ଷା ଅଧିକ ଭିଡ଼ ହୋଇଥିଲା। ଆମେ କୌଣସିମତେ ଦୁଇଟି ସିଟ୍ ପାଇଗଲୁ। ତାଙ୍କ ପାଇଁ ସିଟ୍ ମିଳିଲା ନାହିଁ। ସେ ଆମ ପାଖରେ ଛିଡ଼ା ହୋଇ ରହିଲେ। ଗୋଟିଏ ଦୁଇଟି ଷ୍ଟେସନ ପରେ ଟ୍ରେନର ଭିଡ଼ କମିଗଲା ଓ ଶ୍ରୀ କାଦିର ଆମ ପାଖରେ ଗୋଟିଏ ସିଟ୍‌ରେ ବସିଲେ। ଆମ ସାଙ୍ଗରେ ବଙ୍ଗଳାରେ କଥାବାର୍ତ୍ତା କରିବାର ସୁଯୋଗ ପାଇଥିବାରୁ ତାଙ୍କ ମନରେ ଆନନ୍ଦ ଭରିଯାଇଥିଲା। ଅଧଘଣ୍ଟାକ ମଧ୍ୟରେ ଡାଉନ-ଟାଉନ ଷ୍ଟେସନ ପଡ଼ିଲା। ସେ ଆମକୁ ଓହ୍ଲାଇବା ପାଇଁ କହି ନିଜେ ଓହ୍ଲାଇଲେ। ସେଠାରୁ ଆମେ ଆଉ ଗୋଟିଏ ଟ୍ରେନ ବଦଳାଇ ନିଉ ବର୍ଣ୍ଣ ଉଇକ ଷ୍ଟେସନ ଅଭିମୁଖେ ଚାଲିଲୁ। ସେ ଷ୍ଟେସନରେ ଧୀରେନ ବାବୁଙ୍କ ବନ୍ଧୁ ଆମକୁ ଅପେକ୍ଷା

କରିଥିଲେ। ଆମେ ଟ୍ରେନରୁ ଓହ୍ଲାଇ ବାହାରକୁ ଆସି ତାଙ୍କ କାରରେ ବସିଲୁ ଏବଂ ସେମାନେ ମତେ ଆଣି ଆଶୁତୋଷଙ୍କ ଘରେ ଛାଡ଼ିଦେଇଗଲେ। ସେଦିନର ସେ ନ୍ୟୁୟର୍କ ସହର ଭ୍ରମଣ ମନ ଭିତରେ ସବୁଦିନ ପାଇଁ ଅଭୁଲା ହୋଇ ରହିଗଲା।

## ବୀରେନ୍ଦ୍ରବାବୁଙ୍କ ଘରେ ଆତିଥ୍ୟ ଗ୍ରହଣ

ଟରେଣ୍ଟୋରୁ ସିଧାଯାଇ ଚେଷ୍ଟର ସହରରେ ବାସ କରୁଥିବା ବିଶିଷ୍ଟ ପ୍ରବାସୀ ଓଡ଼ିଆ ଡକ୍ଟର ବୀରେନ୍ଦ୍ର ପଟ୍ଟନାୟକଙ୍କ ଘରେ ପହଞ୍ଚିବା ପାଇଁ ମୋର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ମାତ୍ର ଘଟଣାକ୍ରମରେ ଆଶୁତୋଷ ଦତ୍ତଙ୍କ ପରିବାର ସହିତ ସଡ଼କପଥରେ ଟରେଣ୍ଟୋରୁ ନ୍ୟୁଜର୍ସି ଯାତ୍ରା ଏବଂ ବନ୍ଧୁ ଧୀରେନ ପଟ୍ଟନାୟକଙ୍କ ସାଙ୍ଗରେ ନ୍ୟୁୟର୍କ ସହର ବୁଲାରେ ଚବିଶି ଘଣ୍ଟା କଟିଗଲା। ଯା ଭିତରେ ରାଜେନ୍ଦ୍ର ଭାଇ ଜର୍ମାନୀରୁ ଫୋନ କରି ମୁଁ ଡକ୍ଟର ପଟ୍ଟନାୟକଙ୍କ ଘରେ ପହଞ୍ଚି ନଥିବା କଥା ଯେତେବେଳେ ଜାଣିଲେ, ସେ ବ୍ୟସ୍ତ ହୋଇପଡ଼ିଲେ। ମୁଁ ନ୍ୟୁୟର୍କରୁ ଆଶୁତୋଷଙ୍କ ଘରକୁ ଫେରିଲା ବେଳକୁ ସେ ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ଫୋନ କରି ମୋ ସ୍ଥିତି ସମ୍ପର୍କରେ ଅବଗତ ହୋଇ ସାରିଥିଲେ ଏବଂ ମୁଁ ଫେରିଲେ ମତେ ନେଇ ଡକ୍ଟର ପଟ୍ଟନାୟକଙ୍କ ଘରେ ଛାଡ଼ି ଦେଇ ଆସିବା ପାଇଁ ଆଶୁତୋଷଙ୍କୁ ଅନୁରୋଧ କରିଥିଲେ।

ଡକ୍ଟର ବୀରେନ୍ଦ୍ର ପଟ୍ଟନାୟକ ଆମେରିକା ଯିବା ପୂର୍ବରୁ ରେଭେନ୍ସା କଲେଜରେ କେମିଷ୍ଟ୍ରି ଅଧ୍ୟାପକ ଥିଲେ। ସଫା ଗୋରା ଓ ଡଉଲଡାଉଲ ଚେହେରା। ଖୁବ୍ ଭଦ୍ର ଓ ଅମାୟିକ। କମ୍ କଥା କହନ୍ତି। ପଢ଼ିଲାବେଳୁ ସେ କଲେଜରେ ଜଣେ 'ହିରୋ' ଭାବରେ ପରିଚିତ ଥିଲେ। ପରିଣତ ବୟସରେ ଜୀବନକୁ ଅଧିକ ସରସ ଓ ସୁନ୍ଦର କରିବା ଉଦ୍ଦେଶ୍ୟରେ ସେ ଚେଷ୍ଟର ସହରର ଶେଷ ଭାଗରେ ସାତ ଏକର ଜମି ଉପରେ ଚାରିହଜାର ବର୍ଗ କିଲୋମିଟର ବିଶିଷ୍ଟ ଏକ ଦ୍ୱିତଳ ପ୍ରାସାଦ ନିର୍ମାଣ କରିଥିଲେ। ତାଙ୍କ ବାସଭବନ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ଥିଲା। ପାଖରେ ଥିବା ଜଙ୍ଗଲରେ ହରିଣମାନେ ସ୍ୱଚ୍ଛନ୍ଦରେ ବୁଲାବୁଲି କରୁଥିଲେ।

ଆଶୁତୋଷଙ୍କ ଘରଠାରୁ ଡକ୍ଟର ପଟ୍ଟନାୟକଙ୍କ ଘରର ଦୂରତା ପ୍ରାୟ ପଚିଶି ମାଇଲ। ରାତି ନଅଟାରେ ଗାଡ଼ିରେ ନେଇ ମତେ ଡକ୍ଟର ପଟ୍ଟନାୟକଙ୍କ ଘରେ ଛାଡ଼ିଦେଇ ଆସିବାକୁ ଆଶୁତୋଷ ବାହାରିଲେ। ଏତେ ରାତିରେ ସେ ନିଜେ ଗାଡ଼ି ଚଳାଇ ଯିବାଟା ମତେ ଅଡୁଆ ଲାଗୁଥିଲେ ବି ଅନ୍ୟ ଉପାୟ ନଥିଲା। ଆମେ ବାହାରିଲା ବେଳକୁ ଶର୍ମିଷ୍ଠା ଡାଇନିଂ ଟେବୁଲରେ ଡିନର ପ୍ରସ୍ତୁତ କରି ରଖିସାରିଥିଲେ। ସାରାଦିନ ବୁଲାବୁଲି କରିବା ପରେ ଖାଇବା ପାଇଁ ଆଦୌ ଇଚ୍ଛା ନଥିଲା। କିନ୍ତୁ ମୁଁ ସେମାନଙ୍କ ସ୍ନେହକୁ ଏଡ଼ାଇ ନ

ପାରି ବାଧ୍ୟ ହୋଇ ଖାଇଲି । ସେଦିନ ରାତିରେ ଶର୍ମିଷ୍ଠା ଏତେ ରକମର ଖାଇବା ପ୍ରସ୍ତୁତ କରିଥିଲେ ତାକୁ ଦେଖି ମନେହେଲା ସତେଯେପରି ମୁଁ କୌଣସି ଭୋଜିରେ ଖାଉଥିଲି । ଖାଇବା ଶେଷରେ ଶର୍ମିଷ୍ଠା ମତେ ଗୋଟିଏ ସାର୍ଟ ପ୍ରେଜେଣ୍ଟ କଲେ । ସାର୍ଟଟି ବେଶ୍ ଆକର୍ଷଣୀୟ ହୋଇଥିଲା । ମାତ୍ର ମୁଁ ଖଦଡ଼ ପିନ୍ଧୁଥିବାରୁ ସେଇଟି ନୀତିଗତ ଭାବରେ ଗ୍ରହଣ କରି ବିନମ୍ରତାର ସହିତ ସାଙ୍ଗରେ ନଆଣି ତାଙ୍କୁ ଫେରାଇ ଦେଇଥିଲି ।

ରାତି ଦଶଟା ବେଳକୁ ଆମେ ଡକ୍ଟର ପଟ୍ଟନାୟକଙ୍କ ଘର ସାମନାରେ ପହଞ୍ଚିଗଲୁ । ରାସ୍ତାଠାରୁ ତାଙ୍କ ଘରଟି ପ୍ରାୟ ୩୦ଫୁଟ ଉଚ୍ଚରେ ଥିଲା । ଆମ ଗାଡ଼ି ମେନ୍‌ରୋଡ ଛାଡ଼ି ତାଙ୍କ ରାସ୍ତାରେ ପହଞ୍ଚିବା ମାତ୍ରେ ତାଙ୍କ ଘରର ବାହାର ଆଲୁଅ ଜଳି ଉଠିଲା । ଗ୍ୟାରେଜ ପାଖରେ ପହଞ୍ଚିଲାରୁ ଆଉ ଦୁଇଟି ଆଲୁଅ ଜଳିଲା । ମୁଁ ଭାବିଲି ବୋଧହୁଏ ଡକ୍ଟର ପଟ୍ଟନାୟକ ଆମ ଆସିବା ଖବର ପାଇ ବାହାର ଆଲୁଅ ଜଳାଇଲେ ଏବଂ ଅଳ୍ପ ସମୟ ମଧ୍ୟରେ ସେ କବାଟ ଖୋଲିବେ । କିନ୍ତୁ ଆମେ ପହଞ୍ଚିବାର ଦଶମିନିଟ ପର୍ଯ୍ୟନ୍ତ କବାଟ ନ ଖୋଲିବାରୁ ମୁଁ ଆଶ୍ଚର୍ଯ୍ୟ ହେଲି । ଆଶୁତୋଷ ଗାଡ଼ିରୁ ଓହ୍ଲାଇ କଲିଂବେଲ୍ ଟିପିବାରୁ ଡକ୍ଟର ପଟ୍ଟନାୟକ ଆସି କବାଟ ଖୋଲିଲେ । ମୁଁ ଆଶୁତୋଷଙ୍କୁ ବିଦାୟ ଦେଇ ଡକ୍ଟର ପଟ୍ଟନାୟକଙ୍କ ସହିତ ଘର ଭିତରକୁ ଗଲି । ସେ ମତେ ଉପର ମହଲାରେ ଥିବା ଗେଷ୍ଟରୁମ୍‌କୁ ନେଇଗଲେ । ତାଙ୍କ ଘରେ ମଧ୍ୟ ସେଇ ଏକା ବ୍ୟବସ୍ଥା । ୱାଲ-ଟୁ-ୱାଲ ଦାମୀ କାରପେଟ । କାଠ ଶିଡ଼ି ଉପରେ ନରମ ଗାଲିଚାର ଆବରଣ । କଷ୍ଟେମଷ୍ଟେ ଆଟାଚିଟି ଉଠାଇ ଉପରକୁ ଗଲି । ଆଶୁତୋଷଙ୍କ ଘରେ ଡିନର ପର୍ବ ଶେଷ ହୋଇଥିଲା । ଖାଲି ଶୋଇବା କଥା । ମୁଁ ଶୋଇବା ପୂର୍ବରୁ ସାଙ୍ଗରେ ନେଇଥିବା ତାରକସିର ରୁପା କଣ୍ଠିମାଳଟି ଡକ୍ଟର ପଟ୍ଟନାୟକଙ୍କୁ ଦେଇ କହିଲି, "ଏଇଟି ମାଡାମ୍‌ଙ୍କ ପାଇଁ ।" ଆପଣ ଆସିବେ ବୋଲି ସେ ଅପେକ୍ଷା କରି ବେଡରୁମ୍‌କୁ ଚାଲିଗଲେଣି । ହଉ, କାଲି ସକାଳେ ମୁଁ ତାଙ୍କୁ ଏ ପ୍ୟାକେଟଟି ଦେଇଦେବି ।" ମୋ ହାତରୁ ପ୍ୟାକେଟଟି ଗ୍ରହଣ କଲାବେଳେ ଡକ୍ଟର ପଟ୍ଟନାୟକ ମତେ ଜଣାଇଥିଲେ ।

ସକାଳୁ ଉଠି ନିତ୍ୟକର୍ମ ସାରି ତଳକୁ ଆସିଲାବେଳକୁ ଡକ୍ଟର ପଟ୍ଟନାୟକଙ୍କ ପତ୍ନୀ ମିସେସ୍ ନବନୀତା ପଟ୍ଟନାୟକ ତାଙ୍କ କର୍ମକ୍ଷେତ୍ରକୁ ଚାଲିଯାଇଥିଲେ । ଯିବା ପୂର୍ବରୁ ଆମ ପାଇଁ କିଛି ବ୍ରେକଫାଷ୍ଟ ରଖିଯାଇଥିଲେ । ଶ୍ରୀମତୀ ପଟ୍ଟନାୟକ ଉଚ୍ଚଶିକ୍ଷିତା ଓ ଆଧୁନିକା । ରେଭେନ୍ସା କଲେଜରେ ପୂର୍ବତନ ଅଧ୍ୟକ୍ଷ ବିଶିଷ୍ଟ କେମିଷ୍ଟ୍ରି ପ୍ରଫେସର ଡକ୍ଟର ମହେନ୍ଦ୍ର ରାଉତଙ୍କ ଝିଆରୀ । ଦୀର୍ଘ ପଇଁଚାଳିଶି ବର୍ଷ ପୂର୍ବେ ସ୍ୱାମୀଙ୍କ ସହିତ ଆମେରିକା ଯାଇଥିଲେ । ଘଟଣାକ୍ରମରେ ସେଠାକାର ପରିବେଶ ଓ ପରିସ୍ଥିତିକୁ ଆଦରି ନେଲେ । ପୁଅ ନୀକି ଓ ଝିଅ ସିମିକୁ ନିଜ ହାତରେ ଗଢ଼ିଲେ । ନିକି 'ବ୍ୟାଙ୍କ ନ୍ୟୁୟର୍କ'ରେ ବରିଷ୍ଠ ଅଫିସର ଓ ଝିଅ ବାହାହେଇ ମିନିଆପଲିସରେ ଅବସ୍ଥାପିତ । ଘରେ କେବଳ ମିଷ୍ଟର ଓ ମିସେସ ପଟ୍ଟନାୟକ ।

ମିସେସ ପଟ୍ଟନାୟକ ଗୋଟିଏ ବଡ଼ ଫାର୍ମାସ୍ୟୁଟିକାଲ କମ୍ପାନୀର କନସଲଟାଣ୍ଟ । ସକାଳ ଛଅଟାରୁ ଯାଆନ୍ତି, ଫେରୁଫେରୁ ସନ୍ଧ୍ୟା ଛଅଟା । ଆମେରିକାରେ ଦୀର୍ଘଦିନ ରହିଥିଲେ ବି ଓଡ଼ିଶାର ସଂସ୍କୃତିକୁ ଭୁଲି ନାହାନ୍ତି । ଘରେ ପ୍ରଭୁ ଜଗନ୍ନାଥଙ୍କ ଫଟୋ । ସକାଳେ ସନ୍ଧ୍ୟାରେ ଧୂପ, ଦୀପ ଲାଗେ । ବର୍ଷକୁ ଥରେ ଓଡ଼ିଶା ଆସନ୍ତି । ବନ୍ଧୁବାନ୍ଧବ ଓ ପରିବାରବର୍ଗଙ୍କ ସହିତ ସମ୍ପର୍କ ରଖିଛନ୍ତି । ଓଡ଼ିଶାରୁ ଆମେରିକା ଯାଉଥିବା ଲୋକେ ତାଙ୍କ ଘରେ ଅତଥି ହୁଅନ୍ତି ।

ମୁଁ ତଳେ ଯାଇ ଦେଖିଲି ଏକ ପ୍ରକାଣ୍ଡ ହଲ୍ । ହଲ୍‌ର ଗୋଟିଏ ପାଖରେ ବିରାଟ ସୋଫା ଓ ଅନ୍ୟପଟେ ଡାଇନିଂ ଟେବୁଲ । ଟେବୁଲ ଉପରେ ଆଠଜଣଙ୍କ ପାଇଁ ପ୍ଲେଟ, ଚାମଚ ଓ କାଚଗ୍ଲାସ ସଜାହୋଇ ଥୁଆହୋଇଥିଲା । ତା' ଆରପାଖ ହଲ୍‌ରେ ଥିବା କିଚେନ ପାଖରେ ଆଉ ଗୋଟିଏ ଡାଇନିଂ ଟେବୁଲ ଥିଲା । ହେଲେ ତା' ଉପରେ କୌଣସି ପ୍ଲେଟ କିମ୍ବା ଗ୍ଲାସ ନଥିଲା । ମୁଁ ପହଞ୍ଚିଲାକ୍ଷଣି ଡକ୍ଟର ପଟ୍ଟନାୟକ କହିଲେ, "ଆରେ ବସନ୍ତବାବୁ ଆସ ଆସ । ଗତକାଲି ଟାଏଡ ହୋଇ ଟିକେ ଶୋଇପଡ଼ିଲ ବୋଧେ । ହଉ କୁହ ବ୍ରେକଫାଷ୍ଟ କ'ଣ ନେବ ? ନବନୀତା ତମ ପାଇଁ ଉପମା କରି ଯାଇଛନ୍ତି । ଘରେ ବ୍ରେଡ, ବଟର, କର୍ଣ୍ଣଫ୍ଲେକ୍ସ, ମିଲ୍କ ସବୁ ଅଛି । ତମର ଯାହା ପସନ୍ଦ ତମେ ନିଅ ।" ମୁଁ ତାଙ୍କୁ କହିଲି, "ଦେଖନ୍ତୁ ବୟସରେ ମୁଁ ଆପଣଙ୍କଠାରୁ ଅନେକ ସାନ । ଆପଣଙ୍କ ସାନଭାଇ ପରି । ମତେ ଆପଣ, ବାବୁ ନକହି ଖାଲି ବସନ୍ତ କହିଲେ କ'ଣ ଚଳିବ ନାହିଁ ?" ବୀରେନ୍ଦ୍ରବାବୁ କଥାଟାକୁ ସରଳ କରିବା ପାଇଁ କହିଲେ, "ହଉ ହେଲା, ମୁଁ ତମ କଥା ମାନୁଛି । କିନ୍ତୁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଭଦ୍ରାମି ଓ ଶିଷ୍ଟାଚାର ହେଉଛି ବଡ଼କଥା । ଏଠି ସାନ ବଡ଼ ତଉଲ କରାଯାଏ ନାହିଁ । ସମସ୍ତେ ସମସ୍ତଙ୍କୁ ଶ୍ରଦ୍ଧା ଓ ସମ୍ମାନ କରନ୍ତି । ଏଠାକାର ସମାଜ ଦୃଷ୍ଟିରେ କେହି ବଡ଼ ବା ସାନ ନୁହେଁ । ଆମର ଯେମିତି ପଇସା ଓ ପଦବୀ ଅନୁଯାୟୀ ଲୋକଙ୍କୁ ସମ୍ମାନ ଦିଆଯାଏ, ଯିଏ ଯେତେ ସମ୍ପତ୍ତିର ଅଧିକାରୀ ସମାଜରେ ତାର ସେତିକି ପ୍ରତିଷ୍ଠା; ଆମେରିକା ସମାଜ ସେଥିରେ ବିଶ୍ୱାସ କରେ ନାହିଁ ।''

ବୀରେନ୍ଦ୍ରବାବୁଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ବୟସ ତାଙ୍କୁ ପରାସ୍ତ କରିବାକୁ ଯାଇ ନିଜେ ପରାଜିତ ହୋଇଯାଇଛି । ସେ କପ୍‌ବୋର୍ଡରୁ ଦୁଇଟି ପ୍ଲେଟ ଆଣି ଟେବୁଲ ଉପରେ ଥୋଇଲେ । ଫ୍ରିଜରୁ ଉପମା ବୋଲ୍ ଓ ବ୍ରେଡ୍ ବଟର କାଢ଼ିଲେ । ମୁଁ ଉପମା ଖାଇବି ବୋଲି ଜଣାଇଲା ପରେ ସେ ତାଙ୍କ ପାଇଁ ବ୍ରେଡ୍‌କୁ ଟୋଷ୍ଟରରେ ଗରମ କରି ତା ଦେହରେ ବଟର ଲଗାଇଲେ । ବ୍ରେକ୍‌ଫାଷ୍ଟ ଟେବୁଲରେ ନାନାକଥା ପଡ଼ିଲା । ତାଙ୍କ ଘରେ ଦୁଇଟି ଡାଇନିଂ ଟେବୁଲ ଓ ଦୁଇଟି ସେଟ୍ ସୋଫା ପଡ଼ିଥିବାର କାରଣ ସମ୍ପର୍କରେ ପଚାରିବାରୁ ସେ କହିଲେ, "ସେଥିମଧ୍ୟରୁ ଅନ୍ୟପଟେ ଯେଉଁଟି ଦେଖୁଛ, ସେଇଟି ହେଉଛି 'ଫରମାଲ' । ଅର୍ଥାତ୍ ବାହାରୁ କିଏ ଗେଷ୍ଟ ଆସିଲେ ସେମାନଙ୍କୁ ସେଠାରେ ଚର୍ଚ୍ଚା କରାଯାଏ ।

ଆଉ ଯେଉଁଠି ବସିଛ ତାହା ହେଉଛି ଇନଫର୍ମାଲ । ଅର୍ଥାତ୍ ଘରୋଇ । ଏଠି ଆମେ ସବୁବେଳେ ଆଦବ କାଇଦାକୁ ଅଗ୍ରାଧିକାର ଦେଇଥାଉ । ସେଥିପାଇଁ ଇଚ୍ଛା ନଥିଲେ ବି ବେଳେ ବେଳେ ଫରମାଲ ହେବାକୁ ପଡ଼ିଥାଏ ।" ବ୍ରେକ୍‌ଫାଷ୍ଟ ପରେ ସେ କିଛି ଇଂରାଜୀ ନିଉଜ ପେପର ଓ ଖଣ୍ଡେ ମାଗାଜିନ ଧରି ବାହାରେ ପଡ଼ିଥିବା ଚେୟାରଆଡ଼କୁ ଗଲେ । ମୁଁ ତାଙ୍କୁ ଅନୁକରଣ କଲି । ଘର ବହାରେ ସୁନ୍ଦର ଚଟାଣ ଉପରେ ଚାରିଖଣ୍ଡ ଚେୟାର ଓ ଗୋଟିଏ ଟେବୁଲ ପଡ଼ିଥିଲା । ଚାରିପାଖ ଖୋଲା । ଉପରେ ମଧ୍ୟ ଛାତ ନଥିଲା । ମୁଁ କିଛି ପଚାରିବା ପୂର୍ବରୁ ବୀରେନ୍ଦ୍ର ବାବୁ କହିଲେ, "ଏଇଟା ହେଉଛି ଡେକ୍ । ଏଠାରେ ବସି ସକାଳର ସୂର୍ଯ୍ୟକିରଣ ଓ ସନ୍ଧ୍ୟାରେ ଚନ୍ଦ୍ରାଲୋକକୁ ଉପଭୋଗ କରିହୁଏ । ପାଖରେ ଥିବା କାଚଘରକୁ ଦେଖାଇ କହିଲେ ସେ ଘରଟି ହେଉଛି 'ସନ୍‌ରୁମ୍' । ସେଠାରେ ଶୀତଦିନେ ଘର ଭିତରେ ବସି ଖରାର ମଜା ନେଇହୁଏ । ଏ ଦେଶମାନଙ୍କରେ ଖରାର ପ୍ରଭାବ ଖୁବ୍ ବେଶି ନ ଥାଏ ।"

କଥାବାର୍ତ୍ତାରେ ବେଶ୍ ସମୟ ଚାଲିଗଲା । ତାଙ୍କ ଛାତ୍ରାବସ୍ଥାରେ ତାଙ୍କ ପରିବାର ଓ ମୋର ପିଉସା ସ୍ୱର୍ଗତ କୃପାସିନ୍ଧୁ ମହାନ୍ତି କିପରି କଟକର ରାଉସାପାଟଣାରେ ପାଖାପାଖି ଘରେ ରହୁଥିଲେ, ଉଭୟ ପରିବାର ମଧ୍ୟରେ କିପରି ଆତ୍ମୀୟତା ରହିଥିଲା, ସେ ବିଷୟ ମୁଁ ମନେ ପକାଇ ଦେଲାବେଳେ କିଛି ସମୟ ପାଇଁ ସେ ଭାବପ୍ରବଣ ହୋଇଯାଇଥିଲେ । ଦୀର୍ଘ ୪୫ବର୍ଷ ତଳେ ଆମେରିକା ଆସିଥିବା ସମୟରେ ସେ ଯେଉଁସବୁ ପରିସ୍ଥିତିର ସାମନା କରିଥିଲେ, ନିଜକୁ ପ୍ରତିଷ୍ଠା କରିବାପାଇଁ ତାଙ୍କୁ ଯେତିକି ପରିଶ୍ରମ କରିବାକୁ ପଡ଼ିଥିଲା, ତାଙ୍କଠାରୁ ସେସବୁ ଶୁଣି ମୁଁ ଅବାକ୍ ହୋଇଯାଇଥିଲି । ଆମର ସାଧାରଣ ଭାବରେ ଗୋଟିଏ ଧାରଣା ଥିଲା ଯେ, ଯିଏ ଆମେରିକା ଯାଉଥିଲେ, ସେମାନେ ସମ୍ପୂର୍ଣ୍ଣ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବିତାଉଥିଲେ । କିନ୍ତୁ ସେମାନଙ୍କୁ ଯେ କେତେ କଷ୍ଟ କେତେ ସାଧନା କରିବାକୁ ପଡୁଥିଲା ସେକଥା ସେଇମାନେ କେବଳ ଜାଣୁଥିଲେ ।

ଗପସପ, ଟିଭି ଚାନେଲ ଓ ଇଣ୍ଟରନେଟ ଦେଖାରେ ସମୟ କୁଆଡ଼େ ଅତିବାହିତ ହୋଇଗଲା ଜାଣି ହେଲା ନାହିଁ । ବୀରେନ୍ଦ୍ରବାବୁ କହିଲେ, "ଲେଟ୍ ଅସ୍ ହାଭ ଆୱାର ଲଞ୍ଚ୍ । ଇଟ୍ ଇଜ୍ ଅଲ୍‌ରେଡି ଟାଇମ୍ ।" ମୋର ଖାଇବା ପାଇଁ ବିଶେଷ ଆଗ୍ରହ ନଥିଲା । ଭଦ୍ରାମି ଦୃଷ୍ଟିରୁ ତାଙ୍କୁ କମ୍ପାନୀ ଦେଲି । ସବୁ ଖାଦ୍ୟପଦାର୍ଥ ରୋଷେଇ ହୋଇ ଫ୍ରିଜ୍ ଭିତରେ ରଖାଯାଇଥିଲା । ଯାହାର ଯାହା ଇଚ୍ଛା ସେଥିରୁ କାଢ଼ି ମାଇକ୍ରୋଓଭାନରେ ଗରମ କରି ଖାଇବା କଥା । ମୁଁ ଖାଇସାରି ଉପରକୁ ଯାଇ ଗେଷ୍ଟରୁମ୍‌ରେ ଶୋଇପଡ଼ିଥିଲି । ଡକ୍ଟର ପଟ୍ଟନାୟକଙ୍କ ଡାକରେ ନିଦ ଭାଙ୍ଗିଗଲା । ଘଣ୍ଟାକୁ ଅନେଇ ଦେଖିଲି ରାତି ଆଠଟା । ମୁଁ ଟିକିଏ ଲଜ୍ଜିତ ହେଲି । ତଳକୁ ଆସିଲା ବେଳକୁ ଡାଇନିଂ ଟେବୁଲ ଉପରେ ଖାଇବା ଜିନିଷ ବଢ଼ାହୋଇ ଥୁଆ ହୋଇଥିଲା । ମିସେସ୍ ପଟ୍ଟନାୟକ ଅଫିସରୁ ଫେରି ନିଜେ ରୋଷେଇ କରିଥିଲେ । ଡେରାଡୁନ୍‌ଚାଉଳ ଭାତ, ହରଡଡାଲି, ସନ୍ତୁଳା,

ବାଇଗଣଭର୍ତ୍ତା, ଆଳୁ ଚଟଣି, ଘାଣ୍ଟ ତରକାରି ସାଙ୍ଗକୁ ଡକ୍ଟର ପଟ୍ଟନାୟକ ବ୍ରୋକଲି ଭାଜିଥିଲେ । ଖାଇବା ଶେଷରେ ମିଲ୍କକେକ୍ । ମୁଁ ତାଙ୍କ ଘରକୁ ଯିବା ପୂର୍ବରୁ ଉଭୟ ସ୍ୱାମୀ ସ୍ତ୍ରୀ ସମୁଦ୍ର କୂଳରେ ଥିବା ଗୋଟିଏ ହଲିଡେ ରିସର୍ଟକୁ ଯାଇଥିଲେ ଓ ଫେରିବା ବାଟରେ ପରିବାପତ୍ର ସବୁ ନେଇଆସିଥିଲେ । ସେଦିନ ରାତିରେ ଖାଇବା ଯେତିକି ଆନନ୍ଦଦାୟକ ହୋଇଥିଲା, ଖାଇବା ଶେଷରେ ଯେତେବେଳେ ଉଭୟ ସ୍ୱାମୀ ସ୍ତ୍ରୀ ପ୍ଲେଟ୍ ଉଠାଇ ଧୋଇବାକୁ ନେଲେ ମନଟା ସେତିକି ଭାରାକ୍ରାନ୍ତ ହୋଇଗଲା; କାରଣ ଆମର ସାମାଜିକ ଚଳଣି ଭିନ୍ନ । ଆମ ଦେଶରେ ଘରର ମୁରବିଙ୍କୁ କ୍ୱଚିତ୍ ବାସନ ଧୋଇବାକୁ ପଡ଼େ । ମଧ୍ୟବିତ୍ତ ପରିବାରର ଘରେ ମଧ୍ୟ ବାସନ ମାଜିବା, ଘର ଓଳାଇବା ଓ ଲୁଗାସଫା କରିବା ପାଇଁ ଚାକରାଣୀ ନିଯୁକ୍ତ ହୋଇଥାନ୍ତି । ଡାଇନିଂ ଟେବୁଲ ଉପରେ ଜଗ୍‌ରେ ପାଣିଥିଲେ ସୁଦ୍ଧା ଆଉ ଜଣେ କିଏ ଗ୍ଲାସରେ ତାକୁ ବଢ଼େଇ ନଦେଲେ ଆମର କାମ ଚଳେନାହିଁ ।

ପରଦିନ ସକାଳେ ବ୍ରେକଫାଷ୍ଟ ପରେ ଡକ୍ଟର ପଟ୍ଟନାୟକ ନିଜେ ଗାଡ଼ି ଡ୍ରାଇଭ୍ କରି ତାଙ୍କ ଘରଠାରୁ ୫୦ ମାଇଲ ଦୂରରେ ଥିବା 'ଦେଲୱାର ୱାଟର କ୍ୟାମ୍ପ' ନାମକ ଗୋଟିଏ ପର୍ଯ୍ୟଟନସ୍ଥଳୀକୁ ମତେ ନେଇଗଲେ । ପ୍ରାକୃତିକ ପରିବେଶ ମଧ୍ୟରେ ସ୍ଥାନଟି ଖୁବ୍ ଉପଭୋଗ୍ୟ ଥିଲା । ଛୁଟିଦିନମାନଙ୍କରେ ସେଠାରେ ଏତେ ଭିଡ଼ ହୁଏ ଯେ ଗାଡ଼ି ପାର୍କିଂ ପାଇଁ ଜାଗା ମିଳେନାହିଁ । ଆମେ ୱାର୍କିଂ ଡେ'ରେ ଯାଇଥିବାରୁ ଭିଡ଼ କମ୍ ଥିଲା । ନାନା ଦେଶର ପର୍ଯ୍ୟଟକମାନେ ସେଠାକୁ ୱାଟରବୋଟିଂ ପାଇଁ ଆସନ୍ତି । ବୋଟ୍‌ସବୁ ଭଡ଼ାରେ ମିଳେ । ନୌଚାଳନାରେ ସହାୟତା କରିବା ପାଇଁ ତାଲିମ୍‌ପ୍ରାପ୍ତ ବ୍ୟକ୍ତିମାନେ ମଧ୍ୟ ମିଳନ୍ତି । ଆମେ ଦେଖିଲୁ ଦେହରେ ସାମାନ୍ୟ ପୋଷାକ ଥିବା ଜଣେ ପୁରୁଷ ଓ ଜଣେ ମହିଳା (ବୋଧହୁଏ ସ୍ୱାମୀ-ସ୍ତ୍ରୀ) ଗୋଟିଏ ଗାଡ଼ିରେ ଅନେକ ଗୁଡ଼ିଏ ଫାଇବରଗ୍ଲାସରେ ତିଆରି ବୋଟ୍ ଧରି ସେଠାରେ ପହଞ୍ଚିଲେ । ସେମାନଙ୍କ ସହିତ ଆଳାପ ହେଲାପରେ ଜାଣିଲୁ, ପର୍ଯ୍ୟଟକମାନଙ୍କୁ ବୋଟ୍ ଭଡ଼ାରେ ଦେବା ଓ ସେମାନଙ୍କୁ ନୌଚାଳନାରେ ସହାୟତା କରିବା ସେମାନଙ୍କ ଜୀବିକାର୍ଜନର ମାଧ୍ୟମ । ସେଥିରେ ସେମାନେ ଅର୍ଥ ଉପାର୍ଜନ ସହିତ ଆନନ୍ଦ ପାଇଥାନ୍ତି । ଆମେ ସେଠାରେ ଥିବା ସମୟରେ କେତେଜଣ ସେମାନଙ୍କଠାରୁ ବୋଟ ଭଡ଼ାରେ ନେଇ ନଦୀ ଭିତରକୁ ଯାଇଥିଲେ ।

ସେଇଦିନ ସନ୍ଧ୍ୟାରେ ମୋର କାଲିଫର୍ଣ୍ଣିଆର ସାନଜୋସେକୁ ଯିବାର କାର୍ଯ୍ୟକ୍ରମ ଥିଲା । ସେଥିପାଇଁ ଆମକୁ ଶୀଘ୍ର ଫେରିବାକୁ ପଡ଼ିଲା । ଛଅଟାବେଳେ ବିମାନ ଛାଡ଼ିବାକୁ ଥିବାରୁ ଆମେ ସାଢ଼େ ଦିଟାରେ ଘର ଛାଡ଼ିଲୁ ଏବଂ ଘଣ୍ଟାକ ମଧ୍ୟରେ ୫୦ ମାଇଲ ବାଟ ଅତିକ୍ରମ କରି ସାଢ଼େତିନିଟାରେ ନ୍ୟୁୟାର୍କ ବିମାନବନ୍ଦରରେ ପହଞ୍ଚିଲୁ । ସେଠାରେ ଲଗେଜ ବୁକ୍ କଲାବେଳେ ଦ୍ୱିତୀୟ ବ୍ୟାଗ ପାଇଁ ମତେ ଅଧିକ ପଚାଶ ଡଲାର ଦେବାକୁ ପଡ଼ିଲା ।

ଅବଶ୍ୟ ସେ ସମ୍ପର୍କରେ ଡକ୍ଟର ପଟ୍ଟନାୟକ ମତେ ଆଗରୁ ସୂଚନା ଦେଇଥିଲେ । ମୋର ସେକେଣ୍ଡ ବ୍ୟାଗ ନେବାର କୌଣସି ଆବଶ୍ୟକତା ନଥିଲା । କିନ୍ତୁ ବନ୍ଧୁ ଦିଗମ୍ବର ମିଶ୍ର ତାଙ୍କ ପାଇଁ ଓଡ଼ିଶାରୁ ଚୁଡ଼ାଭଜା, ମିକ୍‌ଶ୍ଚର, ତ୍ରିଫଳାଚୂର୍ଣ୍ଣ, ଚା' ଆଦି ନେବାକୁ ଅନୁରୋଧ କରିଥିଲେ ଏବଂ ତାଙ୍କ ବରାଦ ମୁତାବକ ସେସବୁ ଜିନିଷ ଗୋଟିଏ ବ୍ୟାଗରେ ଭର୍ତ୍ତିକରି ମୁଁ ନେଇଥିଲି । ବିମାନବନ୍ଦରରେ ପଚିଶି ଡଲାର ଜରିମାନା ଦେଲାବେଳେ ମତେ ଟିକିଏ ବାଧିଥିଲା । ଅଫିସ ଛୁଟି ସମୟ ହୋଇଥିବାରୁ ଗାଡ଼ି ପାର୍କିଂ ପାଇଁ ଅସୁବିଧା ହେବାରୁ ମୁଁ ଡକ୍ଟର ପଟ୍ଟନାୟକଙ୍କୁ ଫେରିଯିବାକୁ ଅନୁରୋଧ କରି ସିକ୍ୟୁରିଟି ଚେକିଂ ପାଇଁ ଭିତରେ ପଶିଲି ।

## ପ୍ରଗତିଶୀଳ ରାଜ୍ୟ କାଲିଫର୍ଣ୍ଣିଆ

ଆମେରିକାର ଅନ୍ୟାନ୍ୟ ରାଜ୍ୟ ତୁଳନାରେ କାଲିଫର୍ଣ୍ଣିଆ ଅଧିକ ପ୍ରଗତିଶୀଳ । ସେଠାକାର ବାସିନ୍ଦାମାନେ ଅଧିକ ସଚେତନ ଓ ସ୍ୱାଧୀନ ଭାବରେ ଜୀବନ ଉପଭୋଗ କରିବାକୁ ବେଶି ପସନ୍ଦ କରିଥାନ୍ତି । ସେ ରାଜ୍ୟରେ ସମଲିଙ୍ଗୀ ବିବାହକୁ ଆନୁଷ୍ଠାନିକ ଭାବେ ସ୍ୱୀକୃତି ପ୍ରଦାନ କରାଯାଇଛି । ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଚଳିତ ଶାସନ ବ୍ୟବସ୍ଥାରେ ପ୍ରତ୍ୟେକ ରାଜ୍ୟକୁ ସ୍ୱତନ୍ତ୍ର ଆଇନ ପ୍ରଣୟନ କରିବା ନିମିତ୍ତ ଶାସନଗତ ସମ୍ମତି ପ୍ରଦାନ କରାଯାଇଛି ଏବଂ ସେଇ ସୁବିଧାକୁ ଉପଯୋଗ କରି କାଲିଫର୍ଣ୍ଣିଆ ସରକାର ବିବାଦୀୟ ସମଲିଙ୍ଗୀ ବ୍ୟବସ୍ଥାକୁ ଆଇନସମ୍ମତ କରିଛନ୍ତି ।

ନ୍ୟୁୟାର୍କ ବିମାନବନ୍ଦରରେ ସିକ୍ୟୁରିଟି ଚେକିଂ ପରେ ମୋ ହାତରେ ଯଥେଷ୍ଟ ସମୟ ଥିଲା । ମୁଁ ଲାଉଞ୍ଜ ଭିତରେ ଟିକିଏ ବୁଲାବୁଲି କରିବା ବେଳେ ଗୋଟିଏ ଅରେଞ୍ଜ ଜୁସ୍ ଆଣିଲି । ସେଠାରେ ଥିବା ମାକ୍‌ଡୋନାଲ୍ଡ ରେଷ୍ଟୁରାଣ୍ଟରେ ସବୁଜିନିଷ ମିଳୁଥିଲେ ବି ଆମ ଭଳି ଲୋକଙ୍କ ପାଇଁ ସେସବୁ ମହଙ୍ଗା ଥିଲା । ଅରେଞ୍ଜ୍ ଜୁସ୍‌ର ଦାମ୍ ଦୁଇ ଡଲାର, ଅର୍ଥାତ୍ ଭାରତୀୟ ମୁଦ୍ରାରେ ନବେଟଙ୍କାରୁ ଅଧିକ । ଆସିଲା ବେଳେ ଡକ୍ଟର ପଟ୍ଟନାୟକ କିଛି କ୍ରିମ୍ ବିସ୍କୁଟ ଦେଇଥିଲେ । ମୁଁ ରେଷ୍ଟୁରାଣ୍ଟରେ ବସିଥିଲାବେଳେ ଗୋଟିଏ ଭାରତୀୟ ଦମ୍ପତି ଆସି ସେଠାରେ ବସିଲେ । ସେମାନଙ୍କ ବେଶଭୂଷାରୁ ସେମାନେ ଯେ ଭାରତୀୟ ସେକଥା ସ୍ପଷ୍ଟ ବାରି ହୋଇପଡୁଥିଲା । ଘର ଗୁଜରାଟର ଅହମଦାବାଦରେ । ବିବାହର ପ୍ରଥମ ବାର୍ଷିକୀ ମଉଜରେ କଟାଇବାପାଇଁ ବିଦେଶ ଭ୍ରମଣରେ ବାହାରିଥିଲେ । କିନ୍ତୁ ସେମାନେ ନିରାମିଷାଶୀ ହୋଇଥିବାରୁ ଅଳ୍ପଦିନ ମଧ୍ୟରେ ସେମାନଙ୍କ ଆନନ୍ଦର ଜୁଆରରେ ଭଟ୍ଟା ପଡ଼ିଯାଇଥିଲା । ସେମାନେ ଆଣିଥିବା ଗୋଟିଏ ପଟାଟୋ ଚିପ୍‌ସ ଖୋଲି ପ୍ରଥମେ ମତେ ଯାଚିଲେ ଓ ପରେ ଖାଇଲେ । ମୁଁ ସେଇଠି ଅନୁଭବ କଲି ଭାରତୀୟ ସଂସ୍କୃତି କେତେ ମହାନ୍ । ମୁଁ ମଧ୍ୟ ସେମାନଙ୍କୁ ମୋ ପାଖରେ ଥିବା କିଛି ବିସ୍କୁଟ ଦେଲି । ଆମେ

ସମସ୍ତେ ସାକାହାରୀ ହୋଇଥିବାରୁ ବିଦେଶ ମାଟିରେ ଖାଇବା ପିଇବାରେ କିପରି ଅସୁବିଧା ହେଉଥିଲା ସେ ସମ୍ପର୍କରେ ଭାବର ଆଦାନ ପ୍ରଦାନ ହେଲା । ସେମାନେ ସେଠାରୁ କାଲିଫର୍ଣ୍ଣିଆ ଯାଉଥିଲେ ।

## ସାନ୍‌ଯୋସେରେ ପୁରୁଖା ଓଡ଼ିଆଙ୍କ ଘରେ ଅତିଥି

ସାନଯୋସେ ବିମାନବନ୍ଦରରେ ଓହ୍ଲାଇ କୁଆଡ଼େ ଯିବି, କିଏ ମତେ ସେଠାରେ ରିସିଭ୍ କରିବେ, କାହାଘରେ ରହିବି ଏଇସବୁ ଚିନ୍ତା ମନକୁ କିଛି ସମୟ ପାଇଁ ଭାରାକ୍ରାନ୍ତ କରିଦେଇଥିଲା । ଯଦିଓ ଏସବୁ ପ୍ରଶ୍ନର ଆଗରୁ ସମାଧାନ ହୋଇସାରିଥିଲା ଓ ମୁଁ ସାନଯୋସେ ସହରରେ ବାସ କରୁଥିବା ପୁରୁଣା ଓଡ଼ିଆ ପ୍ରବାସୀ ଡକ୍ଟର ଗୌରୀ ଦାସଙ୍କ ଘରେ ଅବସ୍ଥାନ କରିବି ବୋଲି ସ୍ଥିର ହୋଇଥିଲା, ତଥାପି କେଜାଣି କାହିଁକି ମନ ଭିତରେ ନାନା ପ୍ରଶ୍ନ ଉଙ୍କି ମାରୁଥିଲା । ଉଭୟ ଟରଣ୍ଟୋ ଓ ନ୍ୟୁଜର୍ସି ସହରରେ ଯେଉଁମାନଙ୍କ ସାନିଧରେ ଆସିଥିଲି, ଯେଉଁମାନଙ୍କ ଘରେ ରହିଥିଲି, ସେମାନେ ଉଣାଅଧିକେ ଆଗରୁ ଜଣାଶୁଣା ଥିଲେ । ମାତ୍ର ଡକ୍ଟର ଗୌରୀଦାସଙ୍କ ବିଷୟରେ ମୋର ବିଶେଷ ଧାରଣା ନଥିଲା । ସେ ମତେ କିପରି ଗ୍ରହଣ କରିବେ, ତାଙ୍କ ସହିତ କିପରି ଭାବର ଆଦାନ ପ୍ରଦାନ ହୋଇପାରିବ, ସେସବୁ ପ୍ରଶ୍ନ ମୋ ମନରେ ଉଙ୍କିମାରିଥିଲା । ମାତ୍ର ସାନଯୋସେ ବିମାନବନ୍ଦରକୁ ଆସି ତାଙ୍କ ଘରକୁ ନେଇଯିବେ ବୋଲି ଫୋନ୍‌ଯୋଗେ ଡକ୍ଟର ଗୌରୀ ଦାସ ମତେ ଆଗରୁ ସୂଚନା ଦେଇ ବିମାନବନ୍ଦରର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ତାଙ୍କୁ ଅପେକ୍ଷା କରି ରହିବାକୁ ଅନୁରୋଧ କରିଥିବା କଥା ମନେପଡ଼ିବାରୁ ମନ ହାଲୁକା ହୋଇଥିଲା ।

ନ୍ୟୁୟାର୍କରୁ ସାନଯୋସେ ସାଢ଼େ ତିନିଘଣ୍ଟାର ବିମାନଯାତ୍ରା । ସ୍ଥାନୀୟ ସମୟ ରାତି ସାଢ଼େ ନଅଟା ସମୟରେ କଣ୍ଟିନେଣ୍ଟାଲ ବିମାନଟି ସାନଯୋସେ ବିମାନବନ୍ଦରରେ ଅବତରଣ କଲା । ଆଭ୍ୟନ୍ତରୀଣ ବିମାନଯାତ୍ରା ହୋଇଥିବାରୁ ସେଠାରେ ପାସପୋର୍ଟ କିମ୍ବା ଭିସା ଇତ୍ୟାଦି ତନଖି କରିବାର ଆବଶ୍ୟକତା ପଡ଼ିନଥିଲା । ବ୍ୟାଗେଜ ସଂଗ୍ରହକରି ମୁଁ ବାହାରକୁ ଆସିଲି ଓ ଡକ୍ଟର ଗୌରୀ ଦାସ ମୋତେ ଯେଉଁସ୍ଥାନରେ ଛିଡ଼ାହେବାକୁ ପରାମର୍ଶ ଦେଇଥିଲେ ସେଇଠି ଅପେକ୍ଷା କରି ରହିଲି । କିଛି ସମୟ ପରେ ଗୋଟିଏ ଲାନସର ଗାଡ଼ି ଆସି ମୋ ସାମନାରେ ଅଟକିଲା ଓ ଜଣେ ବୟସ୍କବ୍ୟକ୍ତି ସେଥିରୁ ମୋ ଆଡ଼କୁ ଆସିଲେ । ସେ ଯେ ଡକ୍ଟର ଗୌରୀ ଦାସ ସେଥିରେ ମୋର କୌଣସି ସନ୍ଦେହ ନଥିଲା । ଡକ୍ଟର ଦାସ ଆଗରୁ ମୋ ଫଟୋ ପାଇଥିଲେ । ତେଣୁ ମତେ ଚିହ୍ନିବାକୁ ତାଙ୍କ ପକ୍ଷରେ କିଛି ଅସୁବିଧା ହୋଇ ନଥିଲା । ସେ ଆସି ମୋ ସହିତ କରମର୍ଦ୍ଦନ କରି ଟ୍ରାଫିକ୍ ଜାମ ପାଇଁ ଟିକିଏ ଡେରି ହୋଇଗଲା ବୋଲି କହିଲେ । ଅଧଘଣ୍ଟାଏ ଭିତରେ ଆମେ ତାଙ୍କ ଘରେ ପହଞ୍ଚିଗଲୁ । ତାଙ୍କର ଦୋତାଲା ଘରଟିର



ସାନ୍‌ଫ୍ରାନ୍‌ସିସ୍କୋ ସିଭିକ୍ ସେଣ୍ଟର୍ ସାମନାରେ



ସାନ୍‌ଫ୍ରାନ୍‌ସିସ୍କୋ ସହରର ଗୋଲ୍‌ଡେନ୍ ବ୍ରିଜ୍



ସାନ୍‌ଫ୍ରାନ୍‌ସିସ୍କୋର ଏକ ଜନଗହଳି ରାସ୍ତା



ସାନ୍ ଫ୍ରାନ୍‌ସିସ୍‌କୋ ସହରର ୟୁନିଅନ୍ ସ୍କୋୟାର୍



ସାନ୍‌ଫ୍ରାନ୍‌ସିସ୍କୋ ସିଭିକ୍‌ସେଣ୍ଟର୍ ସାମନାରେ




ସାନ୍‌ଫ୍ରାନସିସ୍କୋ ସହରର ଚାଇନା ବଜାର



ସିଭିକ୍‌ସେଣ୍ଟର୍ ଇନ୍‌ଷ୍ଟିଟ୍ୟୁଟ୍ ସମ୍ମୁଖରେ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ସହିତ



ଏଥେନ୍ସ ସହରର ଶ୍ରୀଜଗନ୍ନାଥ ମନ୍ଦିର ଭିତରେ ପ୍ରଫେସର ଦିଗମ୍ବର ମିଶ୍ର ଓ ଡଃ ଲଳିତ ପଟ୍ଟନାୟକଙ୍କ ସହ



ଯୁକ୍ତରାଷ୍ଟ୍ର ଆମେରିକାର ବର୍ମିଙ୍ଗ୍‌ହାମ୍‌ରେ ରଥଯାତ୍ରା

ମିଶ୍ର ଦମ୍ପତି (ଡଃ ଦିଗମ୍ବର ମିଶ୍ର ଓ ଶ୍ରୀମତୀ ଜ୍ୟୋସ୍ନା ମିଶ୍ର)ଙ୍କ ସହିତ ତାଙ୍କ ବାସଭବନ ସମ୍ମୁଖରେ



ୱାଶିଂଟନ୍ ଡ.ସି.ରେ ଥିବା ହ୍ୱାଇଟ୍ ହାଉସ୍



ହ୍ୱାଇଟ୍ ହାଉସ୍ ଫାଟକ ସମ୍ନାରେ



ବଲ୍‌ଟିମୋର ସହରର ହିନ୍ଦୁ ମନ୍ଦିରରେ ଡଃ ନରେଶ ଦାସ (ମଝି)ଙ୍କ ଭଜନ ପରିବେଷଣ




ନ୍ୟୁଆର୍କ ବିମାନବନ୍ଦରରେ ଅପେକ୍ଷା

ପରିପାଟିରୁ ତାଙ୍କ ରୁଚିର ସୂଚନା ମିଳିଥିଲା । ମିସେସ୍ ଦାସ ରୋଷେଇ କରି ଆମପାଇଁ ଅପେକ୍ଷା କରିଥିଲେ । ଆମେ ପହଞ୍ଚିଲା ପରେ ସେ ମତେ ସ୍ୱାଗତ କରି ଗେଷ୍ଟରୁମ୍‌କୁ ନେଇଗଲେ । ଗେଷ୍ଟ ରୁମ୍‌ଟି ଖୁବ୍ ପ୍ରଶସ୍ତ । ଡବଲବେଡ୍ ଖଟ ଓ ଡ୍ରେସିଂ ଟେବୁଲ ସାଙ୍ଗକୁ କାନ୍ଥରେ ଦର୍ପଣଖଚିତ କପ୍‌ବୋର୍ଡ । ପାଖରେ ଦୁଇଟି ଟଏଲେଟ । ଗୋଟିକରେ ୱାସବେସିନ ଓ କମୋଡ ଏବଂ ଅନ୍ୟଟିଏ ବ୍ୟାଥ୍ଂ କ୍ୟୁବିକ୍ଲ । ଚଟାଣରେ ଇଟାଲିରୁ ଆସିଥିବା ରଙ୍ଗବେରଙ୍ଗ ଟାଇଲ । କାନ୍ଥରେ ବଡ଼ ଦର୍ପଣ । ମତେ ରୁମ୍‌ରେ ଫ୍ରେସ ହେବା ପାଇଁ କହି ଡକ୍ଟର ଦାସ ଓ ତାଙ୍କ ପତ୍ନୀ ଉପର ମହଲାକୁ ଗଲେ ।

ଡକ୍ଟର ଦାସଙ୍କ ପତ୍ନୀ ଜଣେ କର୍ମଜୀବୀ ମହିଳା ହେଲେ ବି ଗୃହକର୍ମରେ ନିପୁଣା । ଅତିଥି ସେବା ତାଙ୍କର ଏକପ୍ରକାର 'ହବି' । ପରଦିନ ସକାଳେ ମୋର ସାନଫ୍ରାନସିସ୍କୋ ସହରକୁ ବୁଲିବାକୁ ଯିବାର କାର୍ଯ୍ୟକ୍ରମ ଥିବାରୁ ଆମେ ସମସ୍ତେ ଶୀଘ୍ର ଡିନର ଶେଷ କରିଦେଲୁ । ଶୋଇବାକୁ ଯିବା ପୂର୍ବରୁ ଶ୍ରୀମତୀ ଦାସ ମୋ ପାଇଁ ବିସ୍କୁଟ, କାସ୍ୟୁ ଓ କିଛି ଫଳ ପ୍ୟାକେଟ୍ କରି ରଖିଦେଇଥିଲେ ।

## ବସ୍‌ରେ ସାନ୍‌ଫ୍ରାନସିସ୍କୋ ସହର ଭ୍ରମଣ

ଟୁରିଷ୍ଟ ବସ୍‌ରେ ସାନଫ୍ରାନସିସ୍କୋ ସହର ବୁଲିଯିବା ପାଇଁ ମୋର ଆଗରୁ ଆଡ୍‌ଭାନ୍ସ ଟିକେଟ୍ କରାଯାଇଥିଲା । ମଧ୍ୟାହ୍ନ ଭୋଜନ ସହ ଆରାମଦାୟକ ବାତାନୁକୂଳ ବସ୍‌ରେ ଗୋଟିଏ ଦିନ ପାଇଁ ଜଣ ପିଛା ସତୁରୀ ଡ଼ଲାର (ଭାରତୀୟ ମୁଦ୍ରାରେ ୨୮୦୦ ଟଙ୍କା) ଲାଗୁଥିଲା । ବସଟି ସକାଳ ସାତଟାରେ ଛାଡ଼ି ସାନଫ୍ରାନସିସ୍କୋ ସହରର ମୁଖ୍ୟ ଦର୍ଶନୀୟ ସ୍ଥାନ ବୁଲି ଦେଖିଲା ପରେ ଅପରାହ୍ନ ପାଞ୍ଚଟା ବେଳେ ଆଣି ସାନଯୋସେରେ ପର୍ଯ୍ୟଟକମାନଙ୍କୁ ଓହ୍ଲାଇ ଦେଉଥିଲା । ବହିରେ ପଢ଼ିଥିବା ସାନଫ୍ରାନସିସ୍କୋ ସହରକୁ ଆଖିରେ ଦେଖିବାର ଆବେଗ ଯୋଗୁଁ ମୁଁ ରାତିରେ ଗଭୀର ନିଦ୍ରାରେ ଶୋଇ ପାରି ନଥିଲି । ସକାଳେ ଶୀଘ୍ର ନିତ୍ୟକର୍ମ ସାରି ବାହାରକୁ ଆସିଲା ବେଳକୁ ଡକ୍ଟର ଦାସ ମତେ ଅପେକ୍ଷା କରିଥିଲେ । ତାଙ୍କ ଘରଠାରୁ ୧୫ ମାଇଲ ଦୂରରୁ ଟୁରିଷ୍ଟ ବସ୍ ଛାଡୁଥିଲା । ମୋର ବାରଣ ସତ୍ତ୍ୱେ ସେ ମତେ ନେଇ ବସ୍ ପାଖରେ ଛାଡ଼ିବା ଓ ପୁଣି ଆଣିବା ପାଇଁ ନିଷ୍ପତ୍ତି କରିଥିଲେ । ଆମେ ଯାଇ ୧୭୦୧-ଲଣ୍ଡି ଆଭେନ୍ୟୁରେ ଥିବା 'ପ୍ରାଇମା ଟେଷ୍ଟ ରେଷ୍ଟୁରାଣ୍ଟ' ସାମନାରେ ପହଞ୍ଚିଲା ବେଳକୁ ଟୁରିଷ୍ଟବସ୍ ସେଠାରେ ଅପେକ୍ଷା କରିଥିଲା । ମୋର କାଳେ କିଛି ଅସୁବିଧା ହେବ, ସେଥିପାଇଁ ଡକ୍ଟର ଦାସ ଗୋଟିଏ ମୋବାଇଲ ଫୋନ ମତେ ଦେଇଥିଲେ । ସେଥିରେ କେତେକ ଜରୁରୀ ଟେଲିଫୋନ ସହିତ ଆହୁରି ଅନେକ ଡାଟା ଫିଡ୍ ହୋଇଥିଲା ।

ଟୁରିଷ୍ଟ ବସ୍‌ର ଡ୍ରାଇଭର ହୁଇସ୍କି, ତାଇଓ୍ୱାନ ଅଧିବାସୀ । ଆମେରିକାରେ ଦୀର୍ଘଦିନ ରହି ବିଭିନ୍ନ ଦେଶର ଲୋକଙ୍କ ସାଙ୍ଗରେ ମିଶିବା ଫଳରେ ସ୍ପଷ୍ଟ ଇଂରାଜୀ କହିବାର କଳାକୁ ଆୟତ୍ତ କରିପାରିଥିଲେ । ବସ୍‌ରେ ଆନୁଷ୍ଠାନିକ ଭାବରେ କେହି ଗାଇଡ୍ ଯିବାର ବ୍ୟବସ୍ଥା ନ ଥିଲେ ହେଁ ମାଲେସିଆରୁ ଆସି ଗାଇଡ୍ ଟ୍ରେନିଂ ନେଉଥିବା ଜେସିଲ ଆମ ସାଙ୍ଗରେ ଯାଇ ଆମର ଭ୍ରମଣକୁ ଉପଭୋଗ୍ୟ କରିଥିଲେ । ମାତ୍ର ଦଶଘଣ୍ଟାର ସମୟ, ତା' ମଝିରେ ମଧ୍ୟାହ୍ନଭୋଜନ ପାଇଁ ଅଧଘଣ୍ଟାର ବିଶ୍ରାମ । କିନ୍ତୁ ବୁଲି ଦେଖିବା ପାଇଁ ଅତ୍ୟାଧୁନିକ ସାନଫ୍ରାନସିସ୍କୋ ନଗରର ଅସୁମାରି ପର୍ଯ୍ୟଟନସ୍ଥଳ । ସେଥିପାଇଁ ସମୟ ସହିତ ତାଳଦେଇ ଚାଲିବା ପାଇଁ ଡ୍ରାଇଭର ହୁଇସ୍କି ପ୍ରଥମରୁ ଆମକୁ ଅନୁରୋଧ କରିଥିଲେ ।

ସେ ବସ୍‌ରେ ଅନ୍ୟମାନଙ୍କ ସହିତ ଦୁଇଟି ଭାରତୀୟ ପରିବାର ଥିଲେ । ଗୋଟିଏ ପରିବାର ଆନ୍ଧ୍ରପ୍ରଦେଶର ହୋଇଥିଲା ବେଳେ ଅନ୍ୟ ପରିବାରଟି କେରଳର । ବସ୍‌ରେ ବସିଥିଲା ବେଳେ ମୁଁ ଭାବୁଥିଲି ଗୋଟିଏ ଓଡ଼ିଆ ପରିବାର ସାଙ୍ଗରେ ଭେଟ ହୋଇଯାଆନ୍ତି କି । କିନ୍ତୁ ମତେ ନିରାଶ ହେବାକୁ ପଡ଼ିଥିଲା । ଆମେ ଗଲାବେଳେ ବାଟରେ ୟୁନିଅନ ସ୍କୋୟାରରେ ଥିବା ସିଭିକ୍ ସେଣ୍ଟର ଅପେରା ହାଉସ ବୁଲି ଦେଖିଲୁ । ସହରର ମଧ୍ୟଭାଗରେ ଥିବା 'ଟୁଇନପିକ୍' ଉପରୁ ସାନଫ୍ରାନସିସ୍କୋର ଦୃଶ୍ୟ ଉପଭୋଗ କରିବାପାଇଁ ଯାଇଥିଲୁ । ମାତ୍ର ସେଦିନ ପାଗ ମେଘୁଆ ହୋଇଥିବାରୁ ସ୍ପଷ୍ଟ ଭାବରେ କିଛି ଦେଖାଗଲା ନାହିଁ । ସେହିପରି ଖରାପ ପାଗ ଯୋଗୁଁ 'ଗୋଲଡେନ ଗେଟ୍ ବ୍ରିଜ୍' ଦେଖିବାରୁ ଆମେ ବଞ୍ଚିତ ହୋଇଥିଲୁ । ଏହି ବ୍ରିଜଟି ସାନଫ୍ରାନସିସ୍କୋ ସହିତ ମାଇନ କାଉଣ୍ଟିର ସଂଯୋଗପଥ । ଏହି ବ୍ରିଜ୍‌ରେ ଥିବା ପୃଥିବୀର ସବୁଠାରୁ ବଡ଼ ସ୍ପାନ ଏବଂ ଏହାର ନିର୍ମାଣଶୈଳୀ ଦେଖିବାକୁ ଅନ୍ୟମାନଙ୍କ ଭଳି ଆମେ ସେଠାକୁ ଯାଇଥିଲୁ । ଆମେ ସେଠାରେ ପହଞ୍ଚିବାର ମାତ୍ର କେଇମିନିଟ ମଧ୍ୟରେ ଚାରିଆଡ଼ ଧୂଆଁଳିଆ ହୋଇ ସମଗ୍ର ସ୍ଥାନଟି ଅନ୍ଧାରୁଆ ହୋଇଗଲା । ଥଣ୍ଡାପବନରେ ଦେହ ଥରିବାକୁ ଲାଗିଲା । ଅନେକ ସମୟରେ ସେଠାରେ ପାଗ ଅପ୍ରତ୍ୟାଶିତ ଭାବରେ ବଦଳିଯାଏ ବୋଲି ଗାଇଡ୍ ଜେସିଲଠାରୁ ଶୁଣିବାକୁ ପାଇଲୁ ।

ଆମ ବସ୍‌ଟି ସହର ଭିତର ଦେଇ ଗତି କରୁଥିଲାବେଳେ ଜେସଲି ମୁହଁରୁ ଅବାରିତ ଭାବରେ ରନିଂ କମେଣ୍ଟ୍ରି ଚାଲୁରହିଥିଲା । ବାଟରେ ପଡ଼ିଲା 'ସୋମା', ଯେଉଁଠି ବିଭିନ୍ନଧରଣର ନାଇଟ କ୍ଲବସବୁ ଥିଲା । ସେଠାରେ ସନ୍ଧ୍ୟା ପରେ ଲୋକେ କିପରି ମଦ୍ୟପାନ କରି ମଉଜ ମସ୍ତି କରନ୍ତି, ସମଗ୍ର ଅଞ୍ଚଳଟି କିପରି ବିଳାସମୟ ହୋଇଉଠେ, ଜେସିଲ ବିନାଦ୍ୱିଧାରେ ତା'ର ଏକ ସମ୍ପୂର୍ଣ୍ଣଚିତ୍ର ଦେଇ ଚାଲିଥିଲେ । ଚାରିଘଣ୍ଟା କାଳ ସହରର ବିଭିନ୍ନ ଅଞ୍ଚଳ ବୁଲିଲା ପରେ ମଧ୍ୟାହ୍ନଭୋଜନ ପାଇଁ 'ଫେରି-ବିଲଡିଂ' ନିକଟରେ ଆମ ବସ୍‌ଟି ଯାଇ ରହିଲା । ଯେଉଁମାନେ ବସ୍‌ରେ ଆଡ୍‌ଭାନ୍ସ ଟିକେଟ କାଟିଥିଲେ, ସେମାନଙ୍କୁ ବସ୍‌କମ୍ପାନୀ ପକ୍ଷରୁ ଲଞ୍ଚପ୍ୟାକେଟ୍ ଦିଆଗଲା । ମୋ ପାଇଁ ଗୋଟିଏ ପ୍ୟାକେଟ ଥିଲା । ହେଲେ ସେଥିରେ କ'ଣ ଥିବ, କ'ଣ ନଥିବ ସେକଥା ଭାବି ମୁଁ ସେ ପ୍ୟାକେଟଟି ଫେରାଇଦେଇଥିଲି ଓ ମୋ ପାଖରେ ଥିବା ପ୍ୟାକେଟରୁ ବିସ୍କୁଟ, ଫଳ ଓ କ୍ୟାସୁନଟ୍‌ସରେ

ମଧ୍ୟାହ୍ନଭୋଜନ କାମ ଚଳେଇଦେଲି । ଫେରିବିଲ୍ଡିଂ ପାଖରୁ ଲଞ୍ଚରେ ଘଣ୍ଟାଏ ନଦୀରେ ବୁଲାଇବାର ବ୍ୟବସ୍ଥା କରାଯାଇଥିଲା ଓ ସେଥିପାଇଁ ପ୍ରତି ବ୍ୟକ୍ତିଙ୍କୁ ପାଞ୍ଚ ଡଲାର ଦେବାକୁ ପଡୁଥିଲା । ଲଞ୍ଚରେ ଯିବାପାଇଁ ମୋର ଆଗ୍ରହ ନଥିବାରୁ ମୁଁ ପାଖରେ ଥିବା 'ମଲ୍' ଭିତରେ ପଶିଲି । ଅନ୍ୟାନ୍ୟ ସ୍ଥାନ ଭଳି ବାହାରର ପର୍ଯ୍ୟଟକମାନଙ୍କ ପାଇଁ ସେଠାରେ ମଧ ଭଳିକି ଭଳି ଆକର୍ଷଣୀୟ ପଦାର୍ଥମାନ ରହିଥିଲା । କିନ୍ତୁ ହୋ'ହଲ୍ଲା, ଘୋ'ଘା କିଛି ନଥିଲା । ଲୋକଙ୍କ ଭିଡ଼ ସତ୍ତ୍ୱେ ସବୁକଥା ଶୃଙ୍ଖଳିତ ଭାବରେ ଚାଲିଥିଲା । ବାହାରେ ଶହଶହ ଲୋକ ବୁଲୁଥିଲେ ବି କିଛି ପାଟିତୁଣ୍ଡ ଶୁଣାଯାଉ ନଥିଲା । ସେ ଦୃଶ୍ୟ ଦେଖି ପୁରୀ ସମୁଦ୍ରକୂଳରେ ସ୍ଥାନୀୟ ଟୋକାମାନେ ପର୍ଯ୍ୟଟକମାନଙ୍କୁ କିପରି ମାନସିକ ଯାତନା ଦିଅନ୍ତି, ସେକଥା ମନେପଡ଼ିଗଲା । ସେମାନଙ୍କ ଜୁଲମରେ ସକାଳେ କିମ୍ବା ସନ୍ଧ୍ୟାରେ ପୁରୀ ସମୁଦ୍ରକୂଳରେ ଆରାମରେ ବସିବା କିପରି ଦୁର୍ବିସହ ହୋଇପଡ଼େ ସେକଥା ଭାବି ଲଜ୍ଜାରେ ମୁଣ୍ଡ ନଇଁଗଲା ।

'ମଲ' ଓ ତା'ର ଆଖପାଖ ବୁଲୁବୁଲୁ ଘଣ୍ଟାଏ ସମୟ ବିତିଯାଇଥିଲା । ଯେଉଁ ପର୍ଯ୍ୟଟକମାନେ 'ରେଡ୍ ଆଣ୍ଡ୍ ହ୍ୱାଇଟ୍' ଲଞ୍ଚରେ ବୁଲିବାକୁ ଯାଇଥିଲେ ସେମାନେ ଫେରିଆସିଲେ । ସମୟ ତିନିଟା ବାଜି ଯାଇଥିଲା । ଆଉ ଘଣ୍ଟାକ ପରେ ସେଦିନର ସାନଫ୍ରାନସିସ୍କୋ ସହର ଭ୍ରମଣ କାର୍ଯ୍ୟକ୍ରମ ଶେଷ ହେବ ବୋଲି ଘୋଷଣା କରିବା ପରେ ଆମେସବୁ ସଚେତନ ହୋଇ ଯାଇଥିଲୁ । ଆଉ ଥରେ ଏ ସହରକୁ ଆସିବା ପାଇଁ ସୁଯୋଗ ମିଳିବ କି ନାହିଁ, ଏଇ ଭାବନା ସମସ୍ତଙ୍କ ମନକୁ ଆସିଥିଲା । ମୁଁ ଏକୁଟିଆ ବସିଥିବାର ଦେଖି ଆନ୍ଧ୍ରପ୍ରଦେଶର ହାଇଦ୍ରାବାଦରୁ ଆସିଥିବା ରାମଲିଙ୍ଗମ୍ ନାଇଡୁ ମତେ ଇଂରାଜୀରେ ପଚାରିଲେ, "ଆପଣ କୋଉ ରାଜ୍ୟରୁ ଆସିଛନ୍ତି, ଆପଣଙ୍କ ସାଙ୍ଗରେ କ'ଣ ଆଉ କେହି ନାହାନ୍ତି ?" ମୁଁ ତାଙ୍କୁ ମୋ ବିଦେଶ ଗସ୍ତର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚାଇଥିଲି । ଫେରିଲାବେଳେ ଆମ ବସ୍‌ଟି 'ଚାଇନା ଟାଉନ' ପାଖରେ କିଛି ସମୟ ପାଇଁ ଅଟକିଲା । ଯଦି କେହି କିଛି କିଣିବାକୁ ଚାହାନ୍ତି, ତା' କରପାରନ୍ତି ବୋଲି ଜେସିଲ ଘୋଷଣା କରିବା ସହିତ ପନ୍ଦର ମିନିଟ ମଧ୍ୟରେ ବସ୍‌କୁ ଫେରି ଆସିବା ପାଇଁ ଅନୁରୋଧ କରିଥିଲେ ।

ସମୟ ଠିକ୍ ପାଞ୍ଚଟାବେଳେ ଟୁରିଷ୍ଟ୍‌ବସ୍‌ଟି ଯାଇ ପ୍ରାଇମା ଟେଷ୍ଟ ରେଷ୍ଟୁରାଣ୍ଟ ସାମନାରେ ଅଟକିଲା । ବସ୍‌ରେ ବସିଥିଲାବେଳେ ମୁଁ ଭାବୁଥିଲି, ଯଦି ଗୌରୀ ବାବୁ ମତେ ନେବାପାଇଁ ଆସି ନଥିବେ, ଯଦି ତାଙ୍କ ଘରକୁ ଫୋନ ନ ଲାଗିବ, ତେବେ ମୁଁ କ'ଣ କରିବି ? ସେଠାରେ ସାଧାରଣ ଭାବରେ ଟ୍ୟାକ୍ସି କିମ୍ବା ଅନ୍ୟ କିଛି ଯାନ ଚଳାଚଳ ହେଉ ନଥିବାରୁ ମୋର ଚିନ୍ତା ବଢ଼ିଯାଇଥିଲା । ମାତ୍ର ବସ୍‌ରୁ ଓହ୍ଲାଇବା ସମୟରେ ଯେତେବେଳେ ଗୌରୀବାବୁ 'ଟୁର୍ କିପରି ହେଲା' ବୋଲି ପଚାରିଲେ, ମୋର ସମସ୍ତ ଚିନ୍ତାର ଅବସାନ ଘଟିଲା । ଓଡ଼ିଶାର ବାସିନ୍ଦା ହୋଇଥିଲେ ବି ସେ ଦେଶରେ ରହି ଆମ ଲୋକେ କିଭଳି ସମୟ ସହିତ ତାଳଦେଇ ଚାଲୁଥିଲେ ସେକଥା ଦେଖି ମୁଁ ଆଶ୍ଚର୍ଯ୍ୟ

ହୋଇଥିଲି; କାରଣ ଆମର ସବୁକଥା ଭାଗ୍ୟ ଓ ଭଗବାନଙ୍କ ଉପରେ ଛାଡ଼ି ଦିଆଯାଇଥାଏ। ଥରେ ଟ୍ରେନରେ କିମ୍ବା ବସ୍‌ରେ ବସିଲେ ଗନ୍ତବ୍ୟସ୍ଥଳରେ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚି ହେବ କି ନାହିଁ, ତାର କିଛି ଠିକ୍‌ଠିକଣା ନଥାଏ। ଟ୍ୟାକ୍ସିକୁ ସାତଟାବେଳେ ଆସିବାକୁ କହିଥିଲେ, ସେ ଆସି ପହଞ୍ଚେ ଆଠଟାବେଳେ। ଏପରି କି ଦିଲ୍ଲୀରୁ ଭୁବନେଶ୍ୱର ଯାଉଥିବା ବିମାନ ମଧ୍ୟ ସବୁଦିନେ ଠିକ୍ ସମୟରେ ପହଞ୍ଚି ନଥାଏ। ହେଲେ ଆମେରିକାରେ ସବୁକାମ ଯନ୍ତ୍ରଚାଳିତ ଭଳି। କେହି କାହାକୁ କିଛି କହିବାକୁ ପଡ଼େ ନାହିଁ।

କାର୍‌ରେ ଫେରିଲା ବେଳେ ଗୌରୀବାବୁ ମତେ ଗୋଟିଏ ମଲ୍‌କୁ ନେଇଗଲେ। ସେ ମଲ୍‌ରେ ପୃଥିବୀର ସବୁସ୍ଥାନର ସବୁ ପଦାର୍ଥ ମିଳୁଥିଲା। କୌତୂହଳବଶତଃ ମୁଁ ପରିବା ସେକ୍‌ସନକୁ ଦେଖିବାକୁ ଗଲି। ସେଠାରେ ପଣସ, ଶିମ୍ବ, ସାରୁ, ପୋଟଳ, ଭେଣ୍ଡି, ଜହ୍ନି ଭଳି ପରିବାଠାରୁ ଆରମ୍ଭ କରି ଅଦା, ରସୁଣ, ପିଆଜ, ଯେପରି ଭାବରେ ସଜା ହୋଇ ରଖାହୋଇଥିଲା ସେପରି ଆମ ଦେଶରେ ଗୋଟିଏ ପରିବା ଦୋକାନରେ ଦେଖିବାକୁ ବିରଳ। ମୋ ପଛେ ପଛେ ଗୌରୀବାବୁ ବୁଲୁଥିଲେ। ମୋ ମନର ସଂଶୟ ଦୂର କରିବାକୁ କହିଲେ, ଏଠାକୁ ଯେଉଁ ପଞ୍ଜାବୀମାନେ ପ୍ରଥମେ ବିଭିନ୍ନ କର୍ମସଂସ୍ଥାନ ପାଇଁ ଆସିଥିଲେ, ଏବେ ସେମାନେ ଜମି କିଣି ଚାଷବାସ କରୁଛନ୍ତି। ଭାରତୀୟମାନଙ୍କର ଆବଶ୍ୟକତା ପୂରଣ କରିବା ପାଇଁ ସେମାନେ ଏସବୁ ପରିବା ଯୋଗାଉଛନ୍ତି। ଗୌରୀବାବୁ ମୋ ପସନ୍ଦ ମୁତାବକ ଗୋଟିଏ ଦୁଇଟି ପରିବା କିଣିବାପରେ ଆମେ ପୁଣି ବାହାରିଲୁ।

ଆମେ ଘରେ ପହଞ୍ଚିଲାବେଳକୁ ମିସେସ ଦାସ ଆସି ଘରେ ପହଞ୍ଚି ଯାଇଥିଲେ। "ଖରାବେଳେ କିଛି ଖାଇନଥିବେ, କ'ଣ ଖାଇବେ" ବୋଲି ମୁଁ ପହଞ୍ଚୁ ପହଞ୍ଚୁ ପଚାରିଲେ। ମୁଁ କିଛି ଉତ୍ତର ଦେବା ପୂର୍ବରୁ ସେ କିଛି ଫଳ ଆଣି ଟେବୁଲ ଉପରେ ଥୋଇଦେଲେ। ସେଥିରେ ତରଭୁଜ ଭଳି କିଛି ଫଳ ଦେଖାଯାଉଥିଲା; କିନ୍ତୁ ତାର ସ୍ୱାଦ ଭିନ୍ନ ଥିଲା। ମିସେସ ଦାସ କହିଲେ, "ଏଇଟା ହେଉଛି 'କାଣ୍ଟ୍‌ଲେପ'। ଏଠାରେ ପ୍ରାୟ ସମସ୍ତେ ଏହି ଫଳ ଖାଇଥାନ୍ତି। ଏହା ଖୁବ୍ ସୁସ୍ୱାଦୁ।"

ଡାଇନିଂ ଟେବୁଲରେ ବସି ଗପ କରିବା ଭିତରେ ମିସେସ ଦାସ ଡିନର ପ୍ରସ୍ତୁତ କରିସାରିଥିଲେ। ମୁଁ ରୁପାର ଯେଉଁ କଣ୍ଠିମାଳଟି ତାଙ୍କୁ ପ୍ରେଜେଣ୍ଟ କରିଥିଲି, ସେଇଟା ତାଙ୍କର ଖୁବ୍ ପସନ୍ଦ ହୋଇଥିବାରୁ ମୋତେ ଧନ୍ୟବାଦ ଦେଇ କହିଲେ, "ଆପଣ କ'ଣ ଏଇଟି ନ ଆଣିଥିଲେ ଚଳି ନଥାନ୍ତା। ଏଇଟି ଖୁବ୍ ସୁନ୍ଦର ହୋଇଛି। ଆପଣଙ୍କ ପସନ୍ଦକୁ ମାନିବାକୁ ପଡ଼ିବ।" ମୁଁ ଯାଇ ଫ୍ରେସ ହୋଇ ଆସିବା ପରେ ଆମେ ଏକାଠି ଡିନର କଲୁ। ରୁଟି, ଡାଲି ସାଙ୍ଗକୁ ବେଶନ ଦିଆ ବାଇଗଣ ଭଜା ଓ ଫୁଲକୋବି କଷା, ଖାଇବାର ଆଗ୍ରହକୁ ବଢ଼ାଇ ଦେଇଥିଲା। ଖାଇସାରିବା ପରେ ମିସେସ ଦାସ ଗୋଟିଏ ବଡ଼ କପ୍‌ରେ କ୍ଷୀରଭିଟା ଆଣି ଥୋଇଲେ। ସବୁ କାମ ସରିଲା ବେଳକୁ ରାତି ଦଶଟା ବାଜି ଯାଇଥିଲା। ମୁଁ ସେମାନଙ୍କୁ ଗୁଡ୍‌ନାଇଟ୍ ଜଣାଇ ଶୋଇବାକୁ ଗଲି। ରାତିରେ ଶୋଇଲା ବେଳେ ଦିନଯାକର ଅନୁଭୂତି ଓ ଅନୁଭବକୁ ରୋମନ୍ଥନ କଲାବେଳେ ଘଟିଯାଉଥିବା ଘଟଣାଗୁଡ଼ିକ ସ୍ୱପ୍ନ ଭଳି ବୋଧହେଉଥିଲା।

## ସାନ୍‌ଯୋସେରେ ଭାରତୀୟ ବଜାର

ପରଦିନ ସାନଯୋସେ ସହର ବୁଲିବା ବ୍ୟତୀତ ଅନ୍ୟ କିଛି କାର୍ଯ୍ୟକ୍ରମ ନ ଥିବାରୁ ମନ ହାଲୁକା ଥିଲା । ସକାଳୁ ଉଠିବାଠାରୁ ନିତ୍ୟକର୍ମ ସାରିବା ପର୍ଯ୍ୟନ୍ତ ସବୁ କାମ ଢିଲା ହୋଇଯାଇଥିଲା । ମିସେସ ଦାସ ସକାଳୁ କାର ନେଇ ତାଙ୍କ କର୍ମକ୍ଷେତ୍ରକୁ ଚାଲିଯାଇଥିଲେ । ଡକ୍ଟର ଦାସ ଓ ମୁଁ ଆରାମରେ ବ୍ରେକଫାଷ୍ଟ ସାରି ସାନଯୋସେ ସହରବୁଲିବାକୁ ବାହାରିଲୁ । ପ୍ରଥମେ ଆମେ ଗଲୁ 'ଡାଉନ ଟାଉନ୍' ଅଞ୍ଚଳକୁ । ସେ ଅଞ୍ଚଳରେ ସାନଯୋସେର ବଡ଼ ବଡ଼ ଦପ୍ତର, ବ୍ୟବସାୟ କେନ୍ଦ୍ର, ସିନେମା ହଲ, ରେଷ୍ଟୁରାଣ୍ଟ ଇତ୍ୟାଦି ଥିଲା । ତା'ପରେ ଆମେ 'ଭାରତୀୟ ବଜାର୍'ଆଡ଼େ ଗଲୁ । ସେଠାରେ ପହଞ୍ଚିଲାପରେ ମୁଁ ଭାରତବର୍ଷରେ ଥିଲି କି ବିଦେଶ ମାଟିରେ ବୁଲୁଥିଲି କିଛି ଜାଣିପାରି ନଥିଲି । ସମଗ୍ର ଅଞ୍ଚଳଟି ଅଧିକାଂଶ ଭାରତୀୟଙ୍କ ଦ୍ୱାରା ଭରପୂର ଥିଲା । ସେଠାରେ ଥିବା 'ଇଣ୍ଡିଆ କ୍ୟାସ ଆଣ୍ଡ୍ କ୍ଲିଅର୍ସ' ନାମକ ଗୋଟିଏ ମଲ୍ ଭିତରେ ପଶିଲୁ । ମଲ୍‌ଟିର ମାଲିକ ଥିଲେ ଜଣେ ସର୍ଦ୍ଦାରଜୀ । ଦୀର୍ଘ ୫୦ବର୍ଷ ତଳେ ବାପାଙ୍କ ସହିତ ଆମେରିକା ଆସିଥିଲେ । ପ୍ରାଥମିକ ଅବସ୍ଥାରେ ତାଙ୍କୁ ବହୁ କଷ୍ଟ କରି ଜୀବିକା ଉପାର୍ଜନ କରିବାକୁ ପଡ଼ିଥିଲା । ମାତ୍ର କଠିନ ପରିଶ୍ରମ ଓ ସାଧନା ଯୋଗୁଁ ସେମାନଙ୍କ ଭାଗ୍ୟ ବଦଳିଗଲା । ସେମାନେ ଆମେରିକା ନାଗରିକତ୍ୱ ହାସଲ କଲେ । ଛୋଟିଆ ବ୍ୟବସାୟରୁ ବଡ଼ ମଲ୍‌ର ମାଲିକ ହୋଇପାରିଥିଲେ । ଡକ୍ଟର ଦାସ ସେଠାରୁ କିଛି ଅତ୍ୟାବଶ୍ୟକ ପଦାର୍ଥ କିଣିଲେ । ମୁଁ ମଧ ବାଟ ପାଇଁ କିଛି ଆପେଲ ଓ କଦଳୀ କିଣିଲି ।

ପରେ ଆମେ ଗୋଟିଏ ମିଠା ବଜାରକୁ ଗଲୁ । ସେଠାରେ 'ରଙ୍ଗୋଲି ସୁଇଟସ୍' ନାମରେ ଗୋଟିଏ ଦୋକାନ ଥିଲା । ଦୋକାନ ଭିତରେ ସିଙ୍ଗଡ଼ା, ଆଳୁଚପଠାରୁ ଆରମ୍ଭ କରି ସବୁରକମର ମିଠା ମିଳୁଥିଲା । ମୁଁ ଦୁଇଟି ବରଫି ପ୍ୟାକେଟ କିଣିଲି । କାଉଣ୍ଟରରେ ଦାମ୍ ଦେଲାବେଳେ ଗାମଲାରେ ଗରମ ଗୋଲାପଜାମ ଦେଖି ଖାଇବାର ଲୋଭକୁ ରୋକି ପାରିଲି ନାହିଁ । ଦୁଇଟି ପ୍ଲେଟରେ ଚାରୋଟି ଗୋଲାମଜାମ ଆଣି ଗୋଟିଏ ମୁଁ ଧରିଲି ଓ ଅନ୍ୟଟି ଡକ୍ଟର ଦାସଙ୍କୁ ଧରାଇଲି । ସେ ଖାଇବାପାଇଁ ନାହିଁ କରୁଥିଲେ ହେଁ ମୋ ଅନୁରୋଧକୁ ଏଡ଼ାଇ ନପାରି ଶେଷରେ ଖାଇଲେ । ଦୋକାନୀଙ୍କ ସହିତ କଥାବାର୍ତ୍ତାରୁ ବୁଝିଲି ଭାରତୀୟ କାରିଗରମାନଙ୍କ ଦ୍ୱାରା ସେସବୁ ମିଠା ପ୍ରସ୍ତୁତ କରାଯାଇଥିଲା । ସେମାନେ ଆମେରିକାର ଅଧିକାଂଶ ସହରକୁ ମିଠା ସପ୍ଲାଇ କରୁଥିବା କଥା ମାଲିକ ପ୍ରକାଶ କରିଥିଲେ । ମୁଁ ସେଠାରୁ ଦୁଇଟି କାଜୁ ବରଫି ପ୍ୟାକେଟ କିଣିଥିଲି ।

## ଗୁରୁଦ୍ୱାରରେ ମଧ୍ୟାହ୍ନଭୋଜନ

ଭାରତୀୟ ବଜାରରେ ବୁଲିଲା ବେଳେ ସାନଯୋସେରେ ଥିବା ଗୁରୁଦ୍ୱାର ଦେଖି ଯିବା ପାଇଁ ଗୌରୀବାବୁ ପ୍ରସ୍ତାବ ଦେଲେ । ସେ ଗୁରୁଦ୍ୱାରରେ ଦିନରାତି ପଙ୍ଗତ୍ ଲାଗିଥାଏ ଏବଂ ଯେଉଁମାନେ ସେଠାକୁ ଯାଆନ୍ତି ସେମାନଙ୍କୁ ଭୋଜନରେ ଆପ୍ୟାୟିତ କରି ଗୁରୁଦ୍ୱାରର

କର୍ମକର୍ତ୍ତାମାନେ ଆନନ୍ଦ ଅନୁଭବ କରିଥାନ୍ତି । ଗୌରୀବାବୁଙ୍କ କଥାରେ ମୁଁ ସମ୍ମତି ଜଣାଇଲାପରେ ଆମେ ଗୁରୁଦ୍ୱାର ଆଡ଼େ ଚାଲିଲୁ । ପ୍ରାୟ କୋଡ଼ିଏ ମାଇଲ୍ ବାଟ ଯିବା ପରେ ଗୋଟିଏ ପାହାଡ଼ ଉପରେ ଥିବା ଗୁରୁଦ୍ୱାର ପାଖରେ ଆମ ଗାଡ଼ି ଅଟକିଲା । ଗାଡ଼ିକୁ ପାର୍କିଂ ସ୍ଥାନରେ ରଖି ଗୌରୀବାବୁ ଓ ମୁଁ ଗୁରୁଦ୍ୱାରର ଅଭ୍ୟର୍ଥନା କକ୍ଷ ଆଡ଼େ ଚାଲିଲୁ । ଭୁବନେଶ୍ୱରରେ ଥିବା ଗୁରୁଦ୍ୱାରକୁ ଏକାଧିକବାର ଯିବାର ସୁଯୋଗ ମିଳିଥିବାରୁ ଶିଖଧର୍ମର ପରମ୍ପରା ସମ୍ପର୍କରେ ମୁଁ ଉଣାଅଧିକେ ପରିଚିତ ଥିଲି । ସେଥିପାଇଁ ଅଭ୍ୟର୍ଥନା କକ୍ଷରେ ପହଞ୍ଚିବା ପୂର୍ବରୁ ପକେଟରୁ ରୁମାଲ କାଢ଼ି ମୁଣ୍ଡରେ ବାନ୍ଧିଲି । ଖରାରେ ଝାଳ ବାହାରୁଥିବାରୁ ରୁମାଲ ପକେଟରେ ରଖିବା ଆମ ସମସ୍ତଙ୍କର ଏକ ଅଭ୍ୟାସ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ବର୍ଷର ଅଧିକାଂଶ ସମୟରେ ଥଣ୍ଡାର ପ୍ରଭାବ ଥିବାରୁ ସାଧାରଣ ଭାବେ କନା ରୁମାଲ କେହି ବ୍ୟବହାର କରି ନଥାନ୍ତି । ସେମାନଙ୍କର ସବୁକାମ କାଗଜ ରୁମାଲ (ପେପର ନାପକିନ)ରେ ଚଳେ । ଝାଡ଼ା ଫେରି ଶୌଚ ହେବାଠାରୁ ଖାଇସାରି ହାତ ମୁହଁ ପୋଛିବା ପର୍ଯ୍ୟନ୍ତ ପେପର ନାପକିନ କାମରେ ଲାଗେ । ଗୌରୀବାବୁଙ୍କ ପାଖରେ ରୁମାଲ ନଥିଲା । ଆଉ ମୁଣ୍ଡରେ କିଛି ନ ଘୋଡ଼େଇଲେ ଗୁରୁଦ୍ୱାର ଭିତରକୁ ଯିବା ପାଇଁ ବାରଣ ଥିଲା । ଅଭ୍ୟର୍ଥନା କକ୍ଷରେ ଥିବା ଜଣେ ସ୍ୱେଚ୍ଛାସେବକ ମତେ ସିଧା ନେଇ ଲଙ୍ଗର ସ୍ଥାନରେ ପହଞ୍ଚାଇ ଦେଲେ । ଲଙ୍ଗରରେ ଉଭୟ ପୁରୁଷ ଓ ସ୍ତ୍ରୀମାନେ 'ସେବା' କାମରେ ନିୟୋଜିତ ଥିଲେ । ଗୁରୁଦ୍ୱାରକୁ ଯାଉଥିବା ଲୋକମାନଙ୍କୁ ସେମାନେ 'ଅତିଥି' ବୋଲି ବିଚାରି ସମ୍ମାନ କରୁଥିଲେ ।

ଲଙ୍ଗରରେ ଭାତ, ରୁଟି, ଡାଲି, କୋବି ତରକାରି, ଭେଣ୍ଡିଭଜା, ଆଚାର, ପାମ୍ପଡ଼, ସାଲାଡ ସବୁ ମିଳୁଥିଲା । ହଲ୍‌ରେ ଟେବୁଲ ଚେୟାର ଓ ତଳେ ବସି ଖାଇବା ପାଇଁ ଦରି ପଡ଼ିଥିଲା । ଗୁରୁଦ୍ୱାରରେ ଶୃଙ୍ଖଳା ଦୃଷ୍ଟିରୁ ଲୋକେ ଲାଇନରେ ଯାଇ ଖାଇବା ଜିନିଷ ନେଇ ନିଜ ପସନ୍ଦ ମୁତାବକ ଜାଗାରେ ବସୁଥିଲେ । ମତେ କେହି କିଛି କହିବାକୁ ପଡ଼ିଲା ନାହିଁ। ଅନ୍ୟମାନଙ୍କ ସାଙ୍ଗରେ ମୁଁ ମଧ ଲାଇନରେ ଯାଇ ଗୋଟିଏ ପ୍ଲେଟରେ ସବୁ ଜିନିଷ ଆଣି ଚେୟାରରେ ବସି ଖାଇବା ଆରମ୍ଭ କଲି । ମୋର ଧାରଣା ଥିଲା, ବୋଧହୁଏ ଗୌରୀବାବୁ ମୋ ପଛରେ ଆସୁଥିବେ । ଖାଇବା ଅଧା ହେବା ପର୍ଯ୍ୟନ୍ତ ସେ ନ ଆସିବାରୁ ମନରେ ସନ୍ଦେହ ହେଲା । କିନ୍ତୁ ଅଧା ଖିଆରୁ ଉଠିଯିବା ଅସୁନ୍ଦର ହେବ ଭାବି ଖାଇବା ଶେଷ ପର୍ଯ୍ୟନ୍ତ ଅପେକ୍ଷା କଲି । ତଥାପି ଗୌରୀବାବୁଙ୍କର ଖାଇବା ହଲ୍‌ରେ ଦେଖା ମିଳିଲା ନାହିଁ । ଶେଷରେ ହାତଧୋଇ ଆସି ଦେଖିଲା ବେଳକୁ ସେ ଅଭ୍ୟର୍ଥନା କକ୍ଷରେ ଗୋଟିଏ ଚେୟାରରେ ବସିଥିଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ପଚାରି ବୁଝିଲାରୁ ଜଣାପଡ଼ିଲା ତାଙ୍କ ପାଖରେ ମୁଣ୍ଡରେ ବାନ୍ଧିବାକୁ ରୁମାଲ ନଥିବାରୁ ସେ ଖାଇବା ହଲ୍‌କୁ ନଯାଇ ସେଠାରେ ଅପେକ୍ଷା କରି ରହିଥିଲେ । ମତେ ବହୁତ ଖରାପ ଲାଗିଲା । ଗୁରୁଦ୍ୱାରରେ ମଧ୍ୟାହ୍ନ ଭୋଜନ ପାଇଁ ସେ ମତେ ନେଇକରି ଯାଇଥିଲେ। ମୁଁ ଖାଇଲି, ଅଥଚ ସେ ଉପାସ ରହିଲେ । ଆମେ ସେଠାରେ ଥିବା ସମୟରେ ଗୁରୁଦ୍ୱାରର କର୍ମକର୍ତ୍ତାମାନେ ଆମେ ଖାଇଛୁ କି ନାହିଁ ବୋଲି ଜାଣିବାକୁ ଚାହିଁଥିଲେ । ଗୌରୀବାବୁ ଖାଇ ନଥିବା

ଜାଣି ସେମାନେ ଗୋଟିଏ ବାକ୍ସରେ ଥିବା କେତେକ ରଙ୍ଗିନ ରୁମାଲ ଆଣି ତାଙ୍କୁ ଦେଖାଇଲେ ଓ ସେଥିରୁ ଗୋଟିଏ ମୁଣ୍ଡରେ ବାନ୍ଧି ଭୋଜନ କରିବା ପାଇଁ ଅନୁରୋଧ କଲେ । କିନ୍ତୁ ଅନ୍ୟର ବ୍ୟବହୃତ ରୁମାଲକୁ ସେ ମୁଣ୍ଡରେ ବାନ୍ଧି ପାରିବେ ନାହିଁ ବୋଲି ଗୌରୀବାବୁ ବିନୟର ସହିତ ଜଣାଇ ସେଠାରୁ ବିଦାୟ ନେଲେ । ମଧ୍ୟାହ୍ନଭୋଜନରେ ଅଭ୍ୟସ୍ତ ନଥିବାରୁ ଗୁରୁଦ୍ୱାରରେ ନଖାଇବା ଘଟଣା ତାଙ୍କ ଉପରେ କୌଣସି ପ୍ରଭାବ ପକାଇନଥିଲା ।

## ସାନଯୋସେରୁ ଆଲବାମା

ଗୁରୁଦ୍ୱାରରୁ ଫେରି ଆମେ ଗୋଟିଏ ଟୁରିଷ୍ଟ ପଏଣ୍ଟକୁ ଗଲୁ । ସେଠାରେ ପ୍ରଥମେ ଗାଡ଼ି ପାର୍କିଂ ପାଇଁ ସମସ୍ୟା ଉପୁଜିଥିଲା, କିନ୍ତୁ କିଛି ସମୟ ଅପେକ୍ଷା କଲାପରେ ଆମକୁ ଜାଗା ମିଳିଗଲା । ଛୋଟିଆ ଜାଗାଟିକୁ ଆଧୁନିକ କୌଶଳରେ ମନୋରମ କରାଯାଇ ସେଠାକୁ ବିଦେଶାଗତ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରାଯାଉଥିଲା । ପର୍ଯ୍ୟଟକମାନଙ୍କର ସର୍ବନିମ୍ନ ଆବଶ୍ୟକତା ରେଷ୍ଟୁରାଣ୍ଟ, ଟଏଲେଟ, ପେଟ୍ରୋଲପମ୍ପ ଇତ୍ୟାଦି ସବୁ ସେଠାରେ ଥିଲା । ଆମେ ଅଳ୍ପସମୟ କଟାଇ ଘରକୁ ଫେରିଆସିଲୁ ।

ତା' ପରଦିନ ମୋର ଆଲବାମା ଯିବା କଥା । ସେଥିରେ ଗୋଟିଏ ଅସୁବିଧା ଥିଲା । ସାନଯୋସେରୁ ସିଧାସଳଖ ଆଲବାମାକୁ ବିମାନ ସେବାର ସୁବିଧା ନଥିଲା । ପ୍ରଥମେ ସାନଯୋସେରୁ ହାଉଷ୍ଟନ ଓ ହାଉଷ୍ଟନ ବିମାନବନ୍ଦରରୁ ବର୍ମିଂହାମ୍ ଯିବାକୁ ପଡୁଥିଲା । ସାନଯୋସେରୁ ହାଉଷ୍ଟନ ଯାଉଥିବା ବିମାନଟି ସକାଳ ୬ଟା ୧୫ମିନିଟରେ ଛାଡୁଥିଲା ଏବଂ ପ୍ରଚଳିତ ନିୟମ ଦୃଷ୍ଟିରୁ ବିମାନବନ୍ଦରରେ ଅନ୍ୟୂନ ଦୁଇଘଣ୍ଟା ଆଗରୁ ପହଞ୍ଚିବା କଥା । ସେଥିପାଇଁ ବିମାନବନ୍ଦରକୁ ନେବା ନିମିତ୍ତ ଗୋଟିଏ ଟ୍ୟାକ୍ସି ବନ୍ଦୋବସ୍ତ କରିବାକୁ ମୁଁ ଗୌରୀବାବୁଙ୍କୁ ଅନୁରୋଧ କରିଥିଲି; କାରଣ ରାତି ତିନିଟାବେଳେ ଉଠି ନିଜେ ଡ୍ରାଇଭ କରି ବିମାନବନ୍ଦରକୁ ଗୌରୀବାବୁ ଯାଆନ୍ତୁ ବୋଲି ମୁଁ ଚାହୁଁନଥିଲି । ମାତ୍ର ଗୌରୀବାବୁ ମତେ ବୁଝାଇ ଦେଲେ ଯେ, ରାତି ତିନିଟାରେ ବିମାନବନ୍ଦରକୁ ଯିବା ପାଇଁ କୌଣସି ଟ୍ୟାକ୍ସି ରାଜି ହେବେନାହିଁ । ଆଉ, ଯଦି କେହି ହଁ କରିବେ ସେମାନଙ୍କ ପ୍ରାପ୍ୟ ଏତେ ବେଶି ହେବ ଯେ ସମସ୍ତଙ୍କ ପକ୍ଷରେ ତାହା ଦେବା ସମ୍ଭବ ନୁହେଁ । ସେ ନିଜେ ମତେ ନେଇ ଛାଡ଼ିଦେଇ ଆସିବେ ବୋଲି କହିଲେ ।

ରାତି ତିନିଟାରେ ବିମାନ ବନ୍ଦରକୁ ଯିବାପାଇଁ ଥିବାରୁ ମୁଁ ଶୀଘ୍ର ଶୋଇପଡ଼ିଥିଲି । କିନ୍ତୁ ରାତିରେ ଭଲ ନିଦ ହେଲାନାହିଁ । ରାତିରେ ଶୋଇବା ପୂର୍ବରୁ ପ୍ରଫେସର ଦିଗମ୍ବର ମିଶ୍ର ଫୋନ କରି ମୋ ପୁତୁରା ବାଦଲ ଓ ତା ସ୍ତ୍ରୀ ଅସୀମା ଆସି ବର୍ମିଂହାମ୍ ବିମାନବନ୍ଦରରୁ ମତେ ତାଙ୍କ ଘରକୁ ନେଇଯିବେ ବୋଲି ଜଣାଇଥିଲେ । ଆମେରିକାରେ ଥିବା କୌଣସି ଆତ୍ମୀୟସ୍ୱଜନଙ୍କ ଘରକୁ ଯାଇ ସେମାନଙ୍କ ସ୍ୱାଭାବିକ ଜୀବନଯାତ୍ରାରେ ବ୍ୟାଘାତ ନ ଘଟାଇବା ଉଦ୍ଦେଶ୍ୟରେ ମୁଁ ମୋ କାର୍ଯ୍ୟକ୍ରମ ସମ୍ପର୍କରେ କାହାକୁ କିଛି କହି ନଥିଲି । କିନ୍ତୁ

ପ୍ରଫେସର ମିଶ୍ର କଥା ପ୍ରସଙ୍ଗରେ କେତେବେଳେ ମୋ ଆମେରିକା ଗସ୍ତ ସମ୍ପର୍କରେ ବାଦଲ ଓ ତା ସ୍ତ୍ରୀକୁ କହିଦେଇଥିଲେ । ସେଦିନ ଶନିବାର ଥିବାରୁ ସେମାନେ ମତେ ନେଇ ତାଙ୍କ ଘରେ ରଖିବାକୁ ଚାହୁଁଥିଲେ; କାରଣ ଅନ୍ୟ ୱାର୍କିଂ 'ଡେ'ରେ ସେମାନଙ୍କ ପାଖରେ ସମୟ ନଥିଲା ।

ଆମେ ଭୋର୍ ସାଢ଼େ ତିନିଟାରେ ଘର ଛାଡ଼ି ପଇଁଚାଳିଶି ମିନିଟ ମଧ୍ୟରେ ସାନଯୋସେ ବିମାନବନ୍ଦରରେ ପହଞ୍ଚିଗଲୁ । ଗୌରୀବାବୁ ଗାଡ଼ି ପାର୍କିଂ କରି ମୁଁ ଯିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଚାହୁଁଥିଲେ । କିନ୍ତୁ ମୁଁ ତାଙ୍କୁ ଅନୁରୋଧ କରି ଫେରାଇଦେଲି । ବିମାନବନ୍ଦରରେ ସେଇ ପୁରୁଣା ଘଟଣାର ପୁନରାବୃତ୍ତି । ଜିନିଷର ଓଜନ ବେଶି ନଥିଲେ ବି ଦ୍ୱିତୀୟ ବ୍ୟାଗ ପାଇଁ ପଚାଶ ଡଲାର ଦେବାକୁ ପଡ଼ିଲା । ସାମାନ୍ୟ ଚୁଡ଼ାଭଜା, ସେଉ ଓ ମିକ୍ସର ପାଇଁ ଦୁଇଟି ସ୍ଥାନରେ ପଚାଶ ଡଲାର (ଭାରତୀୟ ମୁଦ୍ରାରେ ଦୁଇ ହଜାର ଟଙ୍କା) ଦେବାପାଇଁ ପଡ଼ିବାରୁ ମନଟା ଖରାପ ହୋଇଗଲା । ଅଧିକ ଦେୟ ପଡ଼ିବ ବୋଲି ଜାଣିଥିଲେ ମୁଁ ଗୋଟିଏ ବଡ଼ ବ୍ୟାଗରେ ସବୁ ଜିନିଷ ନେଇ ପାରିଥାନ୍ତି ବୋଲି ଭାବିଲି । ଯାହାହେଉ 'ଗତସ୍ୟ ଶୋଚନା ନାସ୍ତି' ମନେକରି ଲଗେଜ ବୁକିଂ କରି ବୋର୍ଡିଂ କାର୍ଡ ଧରି ମୁଁ ଭିତରେ ପଶିଲି । ସିକ୍ୟୁରିଟି ଚେକିଂ ସରିଲାବେଳକୁ ପାଞ୍ଚଟା ବାଜିଯାଇଥିଲା । ଛଅଟା ପନ୍ଦରରେ ହାଉଷ୍ଟନ ଅଭିମୁଖେ ବିମାନ ଛାଡ଼ିଲା । ସେଦିନ ଶନିବାର ଥିବାରୁ ବିମାନ ଭିତରେ ମୁଁ ବ୍ରେକଫାଷ୍ଟ ନେଇ ନଥିଲି । ମୋ ପାଖରେ ବିସ୍କୁଟ, ଆପେଲ, କ୍ୟାସୁନଟ୍‌ସ ଇତ୍ୟାଦି ଥିଲା । ସେଇଥିରେ ମୋର ସକାଳ ଜଳଖିଆ କାମ ସରିଗଲା । ସାନ୍‌ଯୋସେ ସମୟଠାରୁ ହାଉଷ୍ଟନ୍ ସମୟ ମଧ୍ୟରେ ଦୁଇଘଣ୍ଟାର ପାର୍ଥକ୍ୟ । ଆମ ବିମାନଟି ହାଉଷ୍ଟନ୍ ବିମାନବନ୍ଦରର ଟର୍ମିନାଲ୍ 'ଏ'ରେ ଓହ୍ଲାଇଲା । ସେଠାରୁ ଯାଇ ଟର୍ମିନାଲ୍ 'ବି'ରେ ବର୍ମିଂହାମ୍ ପାଇଁ ବିମାନ ଧରିବା କଥା । ଟର୍ମିନାଲ 'ଏ'ରୁ 'ବି'କୁ କିପରି ଯିବି, କେତେବାଟ ହୋଇଥିବ, ଯିବାପାଇଁ କିଛି ଯାନବାହନର ସୁବିଧା ଥିବ କି ନାହିଁ – ବିମାନରେ ବସିଥିବା ସମୟରେ ସେଇସବୁ କଥା ମୁଣ୍ଡରେ ଢୁକିଥିଲା । କିନ୍ତୁ ବିମାନବନ୍ଦରରେ ଥିବା ବ୍ୟବସ୍ଥା ଦେଖି ସେ ଚିନ୍ତା ଆପେ ଆପେ ଚାଲିଗଲା । ବିମାନରୁ ଓହ୍ଲାଇ ଏସ୍କାଲେଟରରେ ଉପରକୁ ଯିବାପରେ ଟର୍ମିନାଲ 'ବି'କୁ ନେବାପାଇଁ ସେଠାରେ ଗୋଟିଏ ଟ୍ରେନ ଅପେକ୍ଷା କରି ରହିଥିଲା । ଆମେ ଯେଉଁମାନେ ବର୍ମିଂହାମ୍ ଯିବାକଥା ସେମାନେ ଟ୍ରେନରେ ବସିସାରିଲା ପରେ ଟ୍ରେନଟି ଆମକୁ ନେଇ ଟର୍ମିନାଲ 'ବି'ରେ ଛାଡ଼ିଦେଲା । ମଝିରେ ପ୍ରାୟ ଦୁଇଘଣ୍ଟାର ସମୟ ହାତରେ ଥିଲା । ମୁଁ ବିମାନବନ୍ଦରରୁ ଗୋଟିଏ ମୁଣ୍ଡରୁ ଆଉ ଗୋଟିଏ ମୁଣ୍ଡ ପର୍ଯ୍ୟନ୍ତ ବୁଲିଲି । ମୋ'ଭଳି ଶହଶହ ଲୋକ ସେଠାରେ କାରବାର ହେଉଥିଲେ । କିନ୍ତୁ କୌଣସି ଘୋ'ଘା ନଥିଲା । ସବୁ ଶୃଙ୍ଖଳିତ । ସମୟ ଥିବାରୁ ବିଭିନ୍ନ ଷ୍ଟଲ୍‌ସବୁ ବୁଲି ଦେଖିଲି । ଗୋଟିଏ କର୍ଣ୍ଣରରେ ଭଲ ଆପେଲ ମିଳୁଥିଲା । ଦୁଇଟି ଆପେଲ ନେଇ ଲାଉଞ୍ଜର ସୋଫାରେ ବସି ଖାଇଲି । ଏକୁଟିଆ ବସିଥିଲାବେଳେ ଘରକଥା ସବୁ ମନେପଡ଼ିଲା । ବିମାନବନ୍ଦରରେ ଥିବା ବ୍ୟବସ୍ଥା ଦେଖି ଭୁବନେଶ୍ୱର ବିମାନବନ୍ଦରର ଅବ୍ୟବସ୍ଥାର ଏକ ତୁଳନାତ୍ମକ ବିଚାର ମନକୁ ଆସିଗଲା ।

ଭାବିଲି, ସତରେ କ'ଣ ଆମ ଜୀବଦ୍ଦଶାରେ ଆମେ ଏପରି ଏକ ବିମାନବନ୍ଦର ଦେଖିପାରିବୁ ନାହିଁ ? ବିମାନ ଛାଡ଼ିବା ସମୟ ହେବାରୁ ମୁଁ ଯାଇ ବିମାନରେ ବସିଲି ।

# ଆଲବାମାରେ ଗୋଟିଏ ସପ୍ତାହ

ମୋର ଆମେରିକା ଭ୍ରମଣର କାର୍ଯ୍ୟସୂଚୀ ତିଆରି କଲାବେଳେ ପ୍ରଫେସର ଦିଗମ୍ବର ମିଶ୍ର ତାଙ୍କ ନିଜ ସହର ଆଲବାମାରେ ଗୋଟିଏ ସପ୍ତାହ ରହିବା ପାଇଁ ବ୍ୟବସ୍ଥା କରିଥିଲେ । ପ୍ରଥମେ ସେ କଥାର କିଛି ସୁରାକ ମୁଁ ପାଇ ପାରି ନଥିଲି । ଯେତେବେଳେ ବିମାନ ଟିକେଟକୁ ତନଖି କଲି ସେଥିରୁ ଆଲବାବାରେ କେଇଦିନ ରହିବି ସେକଥା ଜଣାପଡ଼ିଲା । ଗୋଟାଏ ଜାଗାରେ ସାତଦିନ କାଳ ରହି କ'ଣ କରିବି ସେଇକଥା ଭାବି ମନ ଟିକିଏ ଉଣା ହୋଇଥିଲା । କିନ୍ତୁ ଆଲବାମାରେ ପହଞ୍ଚିବାପରେ ସାତଦିନ କେମିତି କଟିଗଲା ଜାଣିହେଲା ନାହିଁ ।

ହାଉଷ୍ଟନରୁ ଆମକୁ ନେଇ ଯାଉଥିବା ବିମାନଟି ବର୍ମିଂହାମ୍ ବିମାନବନ୍ଦରରେ ଅପରାହ୍ନ ଚାରିଟାରେ ପହଞ୍ଚିଲା । ସେଠାରୁ ବାଦଲ ଓ ତା' ସ୍ତ୍ରୀ ଅସୀମା ମତେ ତାଙ୍କଘରକୁ ନେବାପାଇଁ ଆସିବାର ଥିବାରୁ ମୁଁ ନିଶ୍ଚୟ ଥିଲି । ବାଦଲ ଉତ୍କଳ ବିଶ୍ୱବିଦ୍ୟାଳୟର ଷ୍ଟାଟିଷ୍ଟିକ୍ସ ବିଭାଗରେ ଅଧ୍ୟାପନା କରୁଥିଲା । ଆମ ଗାଁ ପାଖର ବିଶିଷ୍ଟ ପଶୁଚିକିତ୍ସାବିତ୍ ଡକ୍ଟର କୃଷ୍ଣମୋହନ ଦାସ ଆମେରିକା ଯିବାପରେ ବାଦଲ ମୁଣ୍ଡରେ ଆମେରିକା ଯିବା ନିଶା ଜୁଟିଥିଲା । ଯାହା କୁହାଯାଏ, 'ଇଚ୍ଛା ଥିଲେ ବାଟ ଆପେ ଆପେ ଖୋଲିଯାଏ', ବାଦଲ କ୍ଷେତ୍ରରେ ସେଇଆ ଘଟିଥିଲା ।

ମୁଁ ବ୍ୟାଗେଜ ସଂଗ୍ରହ କରି ବାହାରକୁ ଆସିଲା ବେଳକୁ ବାଦଲ ଓ ଅସୀମା ଆସି ପହଞ୍ଚି ଯାଇଥିଲେ । ବାଦଲକୁ ମୁଁ ଗତ ପଚିଶିବର୍ଷ ହେଲା ଦେଖିନଥିଲି । ତା' ସ୍ତ୍ରୀ ଅସୀମା ମଧ୍ୟ ମୋ'ପାଇଁ ସମ୍ପୂର୍ଣ୍ଣ ଅପରିଚିତା ଥିଲା । ତା'ସତ୍ତ୍ୱେ ସେମାନଙ୍କ ପକ୍ଷରେ ମତେ ଚିହ୍ନିବା ପାଇଁ କିଛି ଅସୁବିଧା ହୋଇ ନଥିଲା । ସେମାନେ ମୋ ବ୍ୟାଗ ନେଇ ତାଙ୍କ ଗାଡ଼ିରେ ରଖିଦେଲେ । ମୁଁ ଆଗସିଟ୍‌ରେ ବସିଲି । ବାଦଲ ଗାଡ଼ି ଚଲାଇଲା । ଅଧଘଣ୍ଟା ପରେ ଆମେ ବାଦଲ ଘରେ ପହଞ୍ଚିଗଲୁ । ଆମେରିକାର ସବୁ ଜାଗାରେ ପ୍ରାୟ ଗୋଟିଏ ଢାଞ୍ଚା । ରାସ୍ତାଠାରୁ ତିରିଶିଫୁଟ ଉଚ୍ଚରେ ଘର । ଦୋତାଲା ଉପରେ ଗେଷ୍ଟରୁମ୍ । ଚଢ଼ିବାପାଇଁ କାଠ ଶିଡ଼ି । ଘରର ସବୁ ସଦସ୍ୟଙ୍କ ପାଇଁ ଅଲଗାଅଲଗା ରୁମ୍ । ଗ୍ୟାରେଜରେ ଅଟୋମେଟିକ ସଟର । ଗାଡ଼ିରୁ ସୁଇଚ୍ ଦେଲେ ଖୋଲେ ଏବଂ ବନ୍ଦ ହୁଏ । ଗ୍ୟାରେଜରୁ ଉପରକୁ ଯିବାପାଇଁ ଅଲଗା ଶିଡ଼ି । ଗ୍ୟାରେଜର ଅନ୍ୟ ଏକ କୋଠରିରେ ଏସି ପ୍ଲାଣ୍ଟ । ବେଶି କାମ ମେସିନ ଦ୍ୱାରା ହୁଏ । ମଣିଷ କମ୍ କାମ କରନ୍ତି । ଘର ଚାରିପାଖେ ବଗିଚା । ଘରର ଗୋଟିଏ ପଟେ ସନ୍‌ରୁମ୍ ଓ ଅନ୍ୟପଟେ ଡେକ୍ । ଜୀବନକୁ ଉପଭୋଗ କରିବାପାଇଁ ସମସ୍ତ ବ୍ୟବସ୍ଥା ରହିଥାଏ । ଉଣାଅଧିକେ ସବୁଘର ପ୍ରାୟ ଏକାପ୍ରକାରର ।

## ବର୍ମିଂହାମ୍ ସହରରେ ଘରରନ୍ଧା ଖାଦ୍ୟ

କାର୍ ଗ୍ୟାରେଜ୍ ଭିତରେ ପହଞ୍ଚିଲାପରେ ଆମେସବୁ ସେଥିରୁ ଓହ୍ଲାଇଲୁ । ଗ୍ୟାରେଜ୍‌ରୁ ଉପର ଡ୍ରଇଂରୁମ୍ ପର୍ଯ୍ୟନ୍ତ ଶିଡ଼ି ଥିଲା । ବାଦଲ ମୋ ବ୍ୟାଗ ନେଇ ଉପରକୁ ଗଲା, ମୁଁ ପଛେ ପଛେ ଚାଲିଲି । ବାଦଲର ଗୋଟିଏ ପୁଅ ଓ ଗୋଟିଏ ଝିଅ । ଝିଅ ବଡ଼, ମେଡିକାଲ କଲେଜରେ ନାମ ଲେଖାଇବାପାଇଁ ମନୋନୀତ ହୋଇଥିଲା ଓ ପୁଅ ସ୍କୁଲରେ ପଢୁଥିଲା । ମୁଁ ତାଙ୍କ ଘରକୁ ଯିବା ସମୟରେ ଝିଅ ସାଙ୍ଗ ଘରକୁ ଯାଇଥିଲାବେଳେ ପୁଅ ମାଉଣ୍ଟେନିୟରିଂ ଟ୍ରେନିଂ ପାଇଁ କ୍ୟାମ୍ପରେ ଥିଲା । ଘରେ କେବଳ ବାଦଲ ଓ ଅସୀମା ରହୁଥିଲେ । ଅସୀମା ପିପିଲି ପାଖ ଅରିସୋଲ ଗାଁର ଝିଅ । ଗାଁ ଚାଟଶାଳୀରୁ ପାଠପଢ଼ା ଆରମ୍ଭ । ଆମ ଗାଁ ମଇଁନ୍ଦିପୁରର ବୋହୂ । ମଇଁନ୍ଦିପୁରରୁ ବର୍ମିଂହାମ୍, କାହିଁ କେତେଦୂର । ଚାଲିଚଳଣି, କଥାବାର୍ତ୍ତା, ଖାଇବା ପିଇବାରେ କେତେ ଫରକ । ଅସୀମା ନିଜ ଅଧ୍ୟବସାୟ ବଳରେ ସବୁ ପ୍ରତିକୂଳ ପରିସ୍ଥିତିର ସାମନା କରି ପଲିମର୍ କମ୍ପାନୀର ଏକ୍‌ଜିକ୍ୟୁଟିଭ୍ ହୋଇପାରିଛି । ଆମେରିକାରେ ପାଞ୍ଚଜଣଙ୍କ ସାଙ୍ଗରେ ଜଣେ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଛି । ନିଜେ ଚାକିରି କରିବା ସହିତ ଘର ସମ୍ଭାଳିଛି ଓ ପିଲାଙ୍କ ଯତ୍ନ ନେଇଛି । ଅନ୍ୟପକ୍ଷରେ ବାଦଲ ଜୀବନରେ ବହୁ ଚାଲେଞ୍ଜକୁ ସାମନା କରିଛି । ହାତରେ କିଛି ପଇସା ନଥାଇ ଆମେରିକାରେ ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇପାରିଛି । ତା'ର ଅତ୍ୟାଧୁନିକ ଘର ସାଙ୍ଗକୁ ଘରର ଚାରିଜଣ ସଦସ୍ୟଙ୍କ ପାଇଁ ଚାରୋଟି ଆଧୁନିକ କାର ରହିଛି । ଚାଲେଞ୍ଜକରି ଚାକିରି ଛାଡ଼ି ନିଜର ପେଟ୍ରୋଲପମ୍ପ, ବାର, ରେଷ୍ଟୁରାଣ୍ଟ ସବୁ ଖୋଲିଛି । ଭାଗ୍ୟଦେବୀ ତା'ପ୍ରତି ପ୍ରସନ୍ନ ହୋଇଛନ୍ତି । ହେଲେ ସବୁ ଜଞ୍ଜାଳ ଭିତରେ ଜନ୍ମମାଟିକୁ ଭୁଲିନାହିଁ । ଗାଁର ଯୁବକସମିତି ଗୃହ ନିର୍ମାଣ ପାଇଁ ଆର୍ଥିକ ସହାୟତା ଯୋଗାଇଛି । ଆତ୍ମୀୟସ୍ୱଜନଙ୍କ ସହିତ ସମ୍ପର୍କ ରଖିଛି । ଅସୁବିଧା ନହେଲେ ବର୍ଷକୁ ଥରେ ଆସି ଗାଁରୁ ବୁଲିଯାଉଛି ।

ଆମେରିକାରେ ଦୀର୍ଘଦିନ ରହିଥିଲେ ସୁଦ୍ଧା ବାଦଲ ଓ ଅସୀମା ନିଜ ସଂସ୍କୃତିକୁ ଭୁଲି ନାହାନ୍ତି । ଘରେ ଜଗନ୍ନାଥଙ୍କ ଫଟୋ ରଖି ପୂଜାର୍ଚ୍ଚନା କରୁଛନ୍ତି, ଓଡ଼ିଆ ଖାଦ୍ୟ ଖାଉଛନ୍ତି, ଓଡ଼ିଆରେ କଥାବାର୍ତ୍ତା ହେଉଛନ୍ତି; ଅଥଚ ବାହାରକୁ ଗଲେ ଆମେରିକାବାସୀଙ୍କ ସହିତ ସମକକ୍ଷ ହୋଇପାରୁଛନ୍ତି । ସେମାନଙ୍କୁ ଟକ୍କର୍ ଦେଇ ଜୀବନ ସଂଗ୍ରାମରେ ଜିତୁଛନ୍ତି ।

ବାଦଲ ମୋ ବ୍ୟାଗ୍ ନେଇ ଦି'ମହଲାରେ ଥିବା ଗେଷ୍ଟ୍‌ରୁମ୍‌ରେ ରଖିଦେଲା । ମୁଁ ଟିକିଏ ଫ୍ରେଶ୍ ହୋଇ ଆସିଲାପରେ ଗପ ଆରମ୍ଭ ହୋଇଗଲା । କେତେଆଡୁ କେତେ କଥା । ସେଇକଥା ମଧ୍ୟରେ ଅତୀତର ମଧୁର ସ୍ମୃତିସବୁ ଆଖିଆଗରେ ଭାସିଉଠିଲା । ପିଲାଦିନେ ରଜରେ ନଈବାଲିରେ ବାଗୁଡ଼ି ଖେଳ, ନଈବଢ଼ି ସମୟରେ କଦଳୀ ଭେଳା କରି ବୁଲିବାଠାରୁ ବନିଶିରେ ମାଛ ଧରିବା ପର୍ଯ୍ୟନ୍ତ । ଅତୀତର ଘଟଣାବଳୀ ମାନସପଟରେ ଜୀବନ୍ତ ହୋଇଉଠିଲା । ଇଲେକ୍‌ଟ୍ରିସିଟି ନଥିଲାବେଳେ ଗାଁରେ କିପରି ପେଟ୍ରୋମାକ୍ସ ଲାଇଟ୍ ଜାଳି ଡ୍ରାମା କରାଯାଉଥିଲା, ପୁଅମାନେ ଝିଅ ରୋଲ୍ କରୁଥିଲେ, ଡ୍ରାମା ପରେ

ସମସ୍ତେ ମିଳିମିଶି କିପରି ଫିଷ୍ଟ୍ କରୁଥିଲେ । ସେସବୁ ମନେପଡ଼ିଗଲା । ବାଦଲଙ୍କ ପିତୃପୁରୁଷମାନେ ବିଲୁଆଖାଇ ନଈ କୂଳରେ ପ୍ରତିଷ୍ଠା କରିଥିବା ମଠରେ ଅଷ୍ଟପ୍ରହରୀ ନାମଯଜ୍ଞ ବେଳେ ଆମେସବୁ ଭୋଗ ଲୋଭରେ କିପରି କୀର୍ତ୍ତନିଆଙ୍କ ପଛରେ ବୁଲି 'ନାମ' ଧରୁଥିଲୁ, ସେସବୁର ମଧୁର ସ୍ମୃତି ଆଖିଆଗରେ ଭାସିଉଠିଲା । ଗାଁରେ ପିଲାମାନେ କିପରି ମୁରବିମାନଙ୍କୁ ଖାତିର କରୁଥିଲେ, ସେମାନଙ୍କ କଥାକୁ ଆଜ୍ଞା ବୋଲି ବିଚାରି କାମ କରୁଥିଲେ, ସେକଥା ସବୁ ମନେପଡ଼ିଗଲା । ଗାଁରେ ଦଶହରା ସମୟରେ 'ଜନ୍ତାଳ' ପାଇଁ କିପରି ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ଘରୁ ଚାନ୍ଦା କରାଯାଇ ଗାଁ'ମୁଣ୍ଡ ଠାକୁରାଣୀଙ୍କ ପାଖରେ ଏକତ୍ର ଭୋଜନ କରାଯାଉଥିଲା ସେ କଥା ମୁଁ ବାଦଲକୁ ସ୍ମରଣ କରାଇ ଦେଇଥିଲି । ଗପ ଲାଗି ରହିଥାଆନ୍ତା । କିନ୍ତୁ ଅସୀମା ଆସି କହିଲା, "କ'ଣ ଦାଦା ପୁତୁରାଙ୍କ ଗପ ଆଜି ସରିବ ନାହିଁ କି ? ରାତି ନଅଟା ବାଜିଲାଣି । ଆଜି ଶନିବାର ଆପଣ ଦିନଯାକ କିଛି ଖାଇ ନଥିବେ, ଏବେ ଡିନର୍ କରିବେ ଚାଲନ୍ତୁ ।" ମୁଁ ଅସୀମାକୁ କହିଲି, "ଦେଖ୍ ମା, ଖାଇବା ଦି'ଘଣ୍ଟା ଡେରିହେଲେ ଚଳିବ, କିନ୍ତୁ ମୁଁ କ'ଣ ଆଉଥରେ ତୁମମାନଙ୍କ ପାଖକୁ ଆସିପାରିବି ? ସତରେ ଅସୀମା, ଆମ୍ଭମାନଙ୍କ ପିଲାଦିନ କେତେ ମଧୁର ନଥିଲା ! କୁଆଡ଼େ ଗଲା ସେ ଦିନ ? କୁଆଡ଼େ ଗଲା ଭାଇ ଭାଇ ଭିତରେ ଥିବା ସ୍ନେହ ଓ ଆଦରର ଭାବ ? ଆଜି କଥା କଥାକେ ଝଗଡ଼ା, ମାଲିମକଦ୍ଦମା, ଆଉ କ'ଣ ସେ ଦିନ ସବୁ ଫେରିବ ?"

ଅସୀମା ୧୯୮୨ ମସିହାରେ ବାହା ହୋଇ ଆମ ଗାଁକୁ ବୋହୂ ହୋଇ ଗଲାବେଳେ ପ୍ରଳୟଙ୍କରୀ ବନ୍ୟା । ଗାଁ ଦାଣ୍ଡରେ ଆଣ୍ଠୁଏ ପାଣି । ଗାଡ଼ିମଟର ଯିବାର ଉପାୟ ନଥିଲା । ଆଣ୍ଠୁଏ ପାଣିରେ ପଶି ନୂଆବୋହୂ ହୋଇ ଯାଇଥିବା ଅନୁଭୂତିକୁ ଅସୀମା ଭୁଲି ପାରି ନଥିଲା । ଆମେରିକାରେ ପ୍ରାଚୁର୍ଯ୍ୟ ମଧ୍ୟରେ ଜୀବନ ବିତାଉଥିଲେ ମଧ୍ୟ ସେଦିନର ସେ ସ୍ମୃତି ତା' ମନରେ ଅପାସୋରା ହୋଇ ରହିଯାଇଥିଲା ।

ଅସୀମା ପୁରୀ ଛାଣିଥିଲା ଓ ତା ସାଙ୍ଗକୁ ବିନା ପିଆଜ ରସୁଣରେ ବୁଟଡାଲି ଓ ଛଙ୍କା ତରକାରି କରିଥିଲା । ଦିନଯାକର ଯାତ୍ରା ପରେ ସେ ସନ୍ଧ୍ୟାରେ ଭୋଜନ ଅତ୍ୟନ୍ତ ତୃପ୍ତିକର ହୋଇଥିଲା । ସେମାନେ ମୋ'ପାଇଁ ଘରେ ଛେନାପୋଡ଼ ତିଆରି କରିଥିଲେ । ମୁଁ ସେମାନଙ୍କ ପାଇଁ ସାନ୍‌ଯୋସେର ଭାରତ ବଜାରରୁ ବରଫି ମିଠା ନେଇଥିଲି । ଆମେ ସେସବୁ ଆନନ୍ଦରେ ଖାଇଲୁ । ମତେ ଚର୍ଚ୍ଚା କରି ସତେଯେପରି ସେମାନେ ପରମ ଆନନ୍ଦ ଲାଭ କରୁଥିଲେ, ସେକଥା ମୁଁ ସେମାନଙ୍କ ମୁଖମଣ୍ଡଳ ଦେଖି ଜାଣିପାରିଥିଲି ।

## ଆଥେନ୍ସରେ ରାଜ୍ୟପାଳଙ୍କ ସହ ରଥଟଣା

ରାତିରେ ଶୋଇଲା ବେଳକୁ ଡେରି ହୋଇଯାଇଥିବାରୁ ପରଦିନ ସକାଳୁ ଉଠିବାରେ ମଧ୍ୟ ଡେରି ହେଲା । ମୁଁ କାମଦାମ ସାରି ଡ୍ରଇଂରୁମ୍‌କୁ ଗଲାବେଳକୁ ବାଦଲ ଓ ଅସୀମା ନିତ୍ୟକର୍ମ ସାରି ପ୍ରସ୍ତୁତ ହୋଇଯାଇଥିଲେ । ସେଦିନ ଆମର ଶହେମାଇଲ ଦୂରରେ ଥିବା

ଏଥେନ୍ସ ସହରରେ ଅନୁଷ୍ଠିତ ହେଉଥିବା ରଥଯାତ୍ରା ଦେଖିଯିବାର କାର୍ଯ୍ୟକ୍ରମ ଥିଲା । ଆମେରିକାରେ ସବୁସ୍ଥାନରେ ଶ୍ରୀଗୁଣ୍ଡିଚା ତିଥିରେ ରଥଯାତ୍ରା ହୋଇପାରେ ନାହିଁ । ସୁବିଧା ଦୃଷ୍ଟିରୁ କେବଳ ଛୁଟିଦିନମାନଙ୍କରେ ବିଭିନ୍ନ ସ୍ଥାନରେ ଆମେରିକାବାସୀ ଓଡ଼ିଆମାନେ ରଥଯାତ୍ରା ପାଳନ କରିଥାନ୍ତି ।

ଆମେ ଜଳଖିଆ ଖାଇ ବାହାରିଲାବେଳକୁ ଆଠଟା ବାଜିଥିଲା । ଅସୀମା ଗ୍ୟାରେଜ ଖୋଲି ଟୟୋଟାଗାଡ଼ି କାଢ଼ିଲା । ମୁଁ ପଚାରିଲି ଗାଡ଼ି କ'ଣ ଅସୀମା ଚଳାଇବ ? ସବୁଜାଗାରେ ମହିଳାମାନେ ଗାଡ଼ି ଚଳାଉଥିବାର ଦେଖି ମଧ୍ୟ ମନ ବୁଝୁନଥିଲା । ଆମେରିକା ଭଳି ଦେଶମାନଙ୍କରେ ମହିଳାମାନେ ଗାଡ଼ି ଚଳାଇବା ଅପରିହାର୍ଯ୍ୟ, ସେକଥା ମୁଁ ଭୁଲିଯାଉଥିଲି । ଅସୀମା ହାତରେ ଷ୍ଟିଅରିଂ, ପାଖରେ ବାଦଲ, ପଛସିଟ୍‌ରେ ମୁଁ ଓ ଆଇ.ଟି. କମ୍ପାନୀରେ ନୂଆଭାବେ ଯୋଗଦେଇଥିବା ସମ୍ବଲପୁରର ଅବିବାହିତ ଯୁବକ ରଞ୍ଜନ । ଗାଡ଼ି ଚାଲିଲାବେଳେ ମୋର ଦୃଷ୍ଟି ଅଧିକାଂଶ ସମୟରେ ମାଇଲ ମିଟର ଉପରେ ରହୁଥିଲା । ସ୍ପିଡୋମିଟର କଣ୍ଟା ସବୁବେଳେ ଅଶିମାଇଲ୍ ଉପରେ ଥିଲା । ସେମାନେ ସମସ୍ତେ ସେ ସ୍ପିଡ୍‌ରେ ଯିବା ଆସିବାରେ ଅଭ୍ୟସ୍ତ । କିନ୍ତୁ ଆମ ସ୍ପିଡ୍ ତ ଷାଠିଏ କିଲୋମିଟର ଭିତରେ । ମଝିରେ ମଝିରେ ଡର ଲାଗୁଥିଲା; କିନ୍ତୁ ମନର ଭାବ ବାହାରକୁ ପ୍ରକାଶ ନକରି ମୁଁ ସେମାନଙ୍କ ସାଙ୍ଗରେ ଗପସପ କରି ସମୟ କଟାଇଦେବାକୁ ଚେଷ୍ଟା କରୁଥିଲି । ଦେଢ଼ଘଣ୍ଟା ପରେ ଆମେ ଏଥେନ୍ସ ସହରରେ ପହଞ୍ଚିଗଲୁ ।

ଯୁକ୍ତରାଷ୍ଟ୍ର ଆମେରିକାର ଷୋଳଟି ଜାଗାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ହେଁ କେବଳ ଏଥେନ୍ସରେ ଏକମାତ୍ର ଶ୍ରୀଜଗନ୍ନାଥମନ୍ଦିର ଥିଲା । ଏଥେନ୍ସରେ ବସବାସ କରୁଥିବା ବିଶିଷ୍ଟ ଓଡ଼ିଆ ଡାକ୍ତର ଭାଗବତ ସାହୁ ଓ ଅନ୍ୟମାନଙ୍କ ପ୍ରଚେଷ୍ଟାରେ ସେଠାରେ ଯେଉଁ ଶ୍ରୀଜଗନ୍ନାଥମନ୍ଦିର ନିର୍ମିତ ହୋଇଥିଲା, ତାକୁ ଜଗନ୍ନାଥଙ୍କ ପ୍ରଥମସେବକ ପୁରୀର ଗଜପତିମହାରାଜା ଦିବ୍ୟସିଂହ ଦେବ ଉଦ୍‌ଘାଟନ କରିଥିଲେ । ପୂର୍ବରୁ ଉତ୍ତର-ଆଲବାମାରେ 'ହିନ୍ଦୁ କଲ୍‌ଚରାଲ୍ ସେଣ୍ଟର' ନାମରେ ଗୋଟିଏ ଅନୁଷ୍ଠାନ ରହିଥିଲେ ହେଁ ପ୍ରଥମଥର ପାଇଁ ଏଥେନ୍ସରେ ସେବର୍ଷ (୨୦୦୮ ମସିହା) ରଥଯାତ୍ରାର ଆୟୋଜନ କରାଯାଇଥିଲା ଏବଂ ଓଡ଼ିଶାର ରାଜ୍ୟପାଳ ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ସେହି ସମୟରେ ଆମେରିକା ଯାଇଥିବାରୁ ତାଙ୍କୁ ରଥଯାତ୍ରାର ମୁଖ୍ୟପୁରୋଧା ଭାବେ ଆମନ୍ତ୍ରଣ କରାଯାଇଥିଲା । ସେଦିନ ରଥଯାତ୍ରା ଦେଖିବା ପାଇଁ ଆମେରିକାର ବିଭିନ୍ନ ସ୍ଥାନରେ ବାସ କରୁଥିବା ଓଡ଼ିଆ ପରିବାର ଏଥେନ୍ସରେ ବହୁସଂଖ୍ୟାରେ ଏକତ୍ର ହୋଇଥିଲେ ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ପୂଜାର୍ଚ୍ଚନା ଶେଷରେ ଶ୍ରୀଜୀଉମାନଙ୍କୁ ଗୋଟିପହଣ୍ଡି କରାଯାଇ ରଥ ଉପରକୁ ନିଆଯାଇଥିଲା । ରାଜ୍ୟପାଳ ଶ୍ରୀ ଭଣ୍ଡାରେ ଛେରାପହଁରା ସେବା କରିବାପରେ ଭକ୍ତମାନେ ପ୍ରବଳ ଉତ୍ସାହ ମଧ୍ୟରେ ରଥ ଟାଣିଥିଲେ । ରଥଟଣା ଆରମ୍ଭ ସମୟରେ ପ୍ରବଳ ବର୍ଷା ହୋଇଥିଲେ ହେଁ ତାକୁ ଭ୍ରୂକ୍ଷେପ ନକରି

ରଥଟଣା ଅବ୍ୟାହତ ରହିଥିଲା । ସେଦିନ ଜଗନ୍ନାଥମନ୍ଦିରରେ ପ୍ରସାଦ ବ୍ୟବସ୍ଥା ହୋଇଥିଲା । ସେଠାରେ ଦିଗାଭାଇନା (ପ୍ରଫେସର ଦିଗମ୍ବର ମିଶ୍ର)ଙ୍କ ସାଙ୍ଗରେ ଦେଖାହେଲା । ସେ ମତେ ଦେଖି ତାଙ୍କର ବହୁଦିନର ଯୋଜନା କାର୍ଯ୍ୟକାରି ହୋଇଥିବାରୁ ବହୁତ ଖୁସି ହେଲେ । ମନ୍ଦିର ଭିତରେ ଗୋଟିଏ କଣରେ ବସି ମୋର ବାଲ୍ୟବନ୍ଧୁ ସ୍ୱର୍ଗତ ପ୍ରମୋଦ ପଟ୍ଟନାୟକଙ୍କ ପତ୍ନୀ ଫୁଲ ଗୁନ୍ଥୁଥିଲେ । ଦିଗାଭାଇନା ଶ୍ରୀମତୀ ପଟ୍ଟନାୟକଙ୍କ ସହିତ ମୋର ପରିଚୟ କରାଇଦେଲେ । ଶ୍ରୀମତୀ ପଟ୍ଟନାୟକଙ୍କୁ ଦେଖି ମୋର ପ୍ରମୋଦ କଥା ମନେପଡ଼ିଗଲା । ଆମେ ଏକାଠି କେବଳ ଚାରିବର୍ଷ କଲେଜରେ ପାଠ ପଢ଼ିନଥିଲୁ, ଏନ୍‌ସିସି ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ମଧ୍ୟ ଆମେ ଏକାଠି ଭାଗ ନେଉଥିଲୁ । ପ୍ରମୋଦ ସହିତ ମୋର ଘନିଷ୍ଠତା ଥିଲା । ତାର ଅପ୍ରତ୍ୟାଶିତ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଓଡ଼ିଶା ଯାଇଥିଲା ବେଳେ ଆମ ଘରକୁ ଯାଇଥିଲା । ମୋ ପତ୍ନୀ ପ୍ରମଦା ସେଦିନ କାକରାପିଠା କରିଥିଲେ । ସେ ମନଖୁସିରେ ଦୁଇଟି କାକରା ଖାଇଥିଲା ଓ ଆମଠାରୁ ବିଦାୟ ନେବା ପୂର୍ବରୁ ଆମକୁ ଆମେରିକା ଆସିବା ପାଇଁ ଆମନ୍ତ୍ରଣ କରିଥିଲା । ମୋର ଆମେରିକା ଆସିବା ସମ୍ଭବ ହେଲା, ମାତ୍ର ଅଭିନନ୍ଦନ ଜଣାଇବାକୁ ସେ ଆଉ ନଥିଲା । ଖାଲିହାତରେ ଆମେରିକା ଚାଲିଆସି ଅଧ୍ୟବସାୟ ଓ ସାଧନା ବଳରେ ସେ ବିଦେଶ ରାଷ୍ଟ୍ରରେ କିପରି ନିଜକୁ ସୁପ୍ରତିଷ୍ଠିତ କରିପାରିଥିଲା, ଆମେରିକାରେ ଥିବା ପ୍ରବାସୀ ଓଡ଼ିଆମାନଙ୍କୁ ଏକାଠି କରିବାରେ ସେ କିପରି ତ୍ୟାଗ ସ୍ୱୀକାର କରିଥିଲା, ସେକଥା ଭାବି ତା'ର ସ୍ମୃତି ପ୍ରତି ମୁଣ୍ଡ ଆପେଆପେ ନଇଁଗଲା ।

## ଆମେରିକାରେ ଓଡ଼ିଆଙ୍କ ପ୍ରତିନିଧି 'ମିଶ୍ର ଦମ୍ପତି'

ସେଦିନ ଜଗନ୍ନାଥମନ୍ଦିରରେ ସମସ୍ତଙ୍କ ପାଇଁ ପ୍ରସାଦ ତିଆରି ହୋଇଥିଲା ଏବଂ ରାଜ୍ୟପାଳଙ୍କ ସମେତ ସମସ୍ତେ ଆନନ୍ଦରେ ପ୍ରସାଦ ସେବନ କରିଥିଲେ । ପ୍ରସାଦ ସେବନ ପରେ କିଛି ସମୟ ବିଶ୍ରାମ ନେଇ ଆମେ ବର୍ମିଂହାମ୍ ଫେରିଲୁ । ଦିଗାଭାଇନା ମତେ ତାଙ୍କ ଘରକୁ ନେବାକୁ ଚାହିଁଥିଲେ । କିନ୍ତୁ କଥାହେଲା, ସେ ବାଦଲ ଘରକୁ ଯିବେ ଓ ରାତ୍ରି ଭୋଜନ ପରେ ମୁଁ ତାଙ୍କ ଘରକୁ ଯିବି । ଭାଇନା ବାଣୀବିହାରରେ ଆମ ଉପର ବ୍ୟାଚ୍‌ରେ ରାଜନୀତି ବିଜ୍ଞାନ ଶ୍ରେଣୀରେ ପଢୁଥିଲେ । ପଢ଼ା ପରେ କମର୍ସିଆଲ ଟ୍ୟାକ୍ସ ଇନ୍‌ସପେକ୍ଟର ଭାବରେ କିଛିଦିନ କାମ କରିଥିଲେ । କିନ୍ତୁ ସେଥିରେ ତାଙ୍କ ମନ ଲାଗି ନଥିଲା ଓ ସେ ଅଧ୍ୟାପନା ଆଡ଼କୁ ମନ ବଳାଇଲେ । ଶେଷରେ ନିଜର ଭବିଷ୍ୟତ ଗଢ଼ିବା ପାଇଁ ଆମେରିକା ଚାଲିଆସିଥିଲେ । ସେଠାରେ ଆଉଥରେ ପାଠ ପଢ଼ିଲେ । ସ୍ନାତକୋତ୍ତର ଓ ପିଏଚ୍‌ଡି ଡିଗ୍ରୀ ହାସଲ କରି ମାଇଲ୍ସ କଲେଜରେ ଅଧ୍ୟାପକ ଭାବରେ ଯୋଗଦେଲେ । ସେଇଦିନଠାରୁ ସେ ଆଉ ପଛକୁ ଫେରି ଚାହିଁନାହାନ୍ତି । ଜଣେ ଦକ୍ଷ ଅଧ୍ୟାପକ ଭାବରେ ଆମେରିକାରେ ନିଜକୁ ସୁପ୍ରତିଷ୍ଠିତ କରିପାରିଛନ୍ତି ।

ସନ୍ଧ୍ୟା ସାତଟାରେ ଦିଗାଭାଇନା ଆସି ବାଦଲ ଘରେ ପହଞ୍ଚିଲେ । ଅସୀମା ଓଡ଼ିଆ ଢଙ୍ଗରେ ଚକୁଳିପିଠା ଓ ସନ୍ତୁଳା କରିଥିଲା । ଆମେ ସମସ୍ତେ ଏକାଠି ଖାଇଲୁ । ଖାଇବା

ଟେବୁଲ ଉପରେ ଗପ ଆରମ୍ଭ ହୋଇଗଲା । ଅତୀତ ସ୍ମୃତିର ରୋମନ୍ଥନ । ରାତି ନଅଟା ବାଜିଯାଇଥିଲା । ବାଦଲ ଓ ଅସୀମାଙ୍କଠାରୁ ବିଦାୟ ନେଇ ମୁଁ ଦିଗାଭାଇନାଙ୍କ ସାଙ୍ଗରେ ତାଙ୍କ ଘରକୁ ଗଲି । ବାଦଲ ଘରଠାରୁ ଦିଗାଭାଇନାଙ୍କ ଘର ୧୫ ମାଇଲ ଦୂରରେ । କିନ୍ତୁ ସେମାନଙ୍କ ବିଚାରରେ ଖୁବ୍ ପାଖ । ଭାଇନାଙ୍କ ପତ୍ନୀ ଜ୍ୟୋତ୍ସ୍ନାଭାଉଜ ଖୁବ୍ ସ୍ନେହୀ, ଅମାୟିକ ଓ ଭଦ୍ର । ଓଡ଼ିଆ ଲୋକଙ୍କୁ ଦୀର୍ଘ ପଇଁତିରିଶି ବର୍ଷ ଧରି ସେ ଅତିଥି କରି ଆସୁଛନ୍ତି । ଅଧ୍ୟାପନା ସହିତ ଘର ଜଞ୍ଜାଳ ଓ ଅତିଥିସେବାକୁ ସେ ସଫଳତାର ସହିତ ସମ୍ଭାଳି ଆସୁଛନ୍ତି । ନିଜ ହାତରେ ପୁଅ ଅନୁପ ଓ ଝିଅ ଲିକୁନକୁ ମଣିଷ କରିଛନ୍ତି । ପୁଅ ବିବାହିତ ଓ ଦୁଇଟି ପିଲାର ଜନକ । ଭାଇନା ନିଜ ଅର୍ଜିତ ଧନରେ ଘରଟିଏ କିଣିଛନ୍ତି । ସମସ୍ତଙ୍କ ପାଇଁ ସ୍ୱତନ୍ତ୍ର ରୁମ୍‌ର ବ୍ୟବସ୍ଥା ସାଙ୍ଗକୁ ଡ୍ରଇଁ ଓ ଡାଇନିଂ ହଲ୍ । ବାରିରେ ଫଳବଗିଚା; ସେଥିରେ କାକୁଡ଼ି, ବାଇଗଣ, ଲଙ୍କା, ପୋଇ, କଖାରୁ ସବୁ ଲାଗିଛି । ସାମନାରେ ଫୁଲବଗିଚା, ଦେଶୀ ବିଦେଶୀ ଗଛର ସମ୍ଭାର । ଗତ ପଇଁତିରିଶି ବର୍ଷ ମଧ୍ୟରେ ଓଡ଼ିଶାରୁ ଯିଏ ଆମେରିକା ଯାଇଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଭାଇନାଙ୍କ ଘରେ ଅତିଥି ହୋଇଛନ୍ତି, ତାଙ୍କ ଗାଡ଼ିରେ ବୁଲିଛନ୍ତି, ଭାଉଜଙ୍କ ହାତରନ୍ଧା ଖାଇଛନ୍ତି । ଉଭୟେ ଭାଇନା ଓ ଭାଉଜ ଆମେରିକାରେ ଓଡ଼ିଆମାନଙ୍କର ଏକପ୍ରକାର ରାଷ୍ଟ୍ରଦୂତ ପାଲଟିଯାଇଛନ୍ତି । ଆମେରିକାର ପାଣି, ପବନକୁ ଆପଣେଇ ନେଇଥିଲେ ବି ମିଶ୍ରଦମ୍ପତି ଓଡ଼ିଆ ସ୍ମୃତିକୁ ଛାଡ଼ିପାରି ନାହାନ୍ତି । ଘରେ ବିଭିନ୍ନ ଦେବଦେବୀଙ୍କ ଫଟୋ ସକାଳେ ସନ୍ଧ୍ୟାରେ ପୂଜା ପାଉଛନ୍ତି । ରାତିରେ ଭିକାରି ବଳଙ୍କ ଭଜନ ନଶୁଣିଲେ ସେମାନଙ୍କୁ ନିଦ ହୁଏ ନାହିଁ ।

ଆମେ ପହଞ୍ଚିବା ପର୍ଯ୍ୟନ୍ତ ଜ୍ୟୋତ୍ସ୍ନାଭାଉଜ ଅପେକ୍ଷା କରି ବସିଥିଲେ । ଓଡ଼ିଶା ଆସିଥିଲାବେଳେ ସେ ଆମଘରକୁ ଆସିଥିଲେ । ଭାଇନା ଓ ଭାଉଜଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ମୁଁ ଗୋଟିଏ ବନ୍ଧୁମିଳନର ଆୟୋଜନ କରିଥିଲି । ଆମେ ପହଞ୍ଚିଲାରୁ "କ'ଣ ଖାଇବ" ବୋଲି ପଚାରିଲେ । ଆମର ରାତ୍ରିଭୋଜନ କାମ ଶେଷ ହୋଇଛି ଶୁଣି ସେ ଟିକିଏ ମନ ଊଣା କଲେ । ଶୋଇବା ପୂର୍ବରୁ ପାଞ୍ଚଦିନକାଳ କିପରି କଟିବ ବୋଲି ଭାଇନାଙ୍କୁ ପଚାରିଲି । ସେ କହିଲେ, "ଆମର ଏବେ କଲେଜ ବନ୍ଦ ଅଛି । ସେଥିପାଇଁ ତମକୁ ବିଭିନ୍ନ ଜାଗାକୁ ବୁଲାଇବାକୁ ନେବାପାଇଁ ମୁଁ କାର୍ଯ୍ୟକ୍ରମସବୁ ସ୍ଥିର କରିସାରିଛି । ତମେ ସେସବୁ ବିଷୟରେ ମୁଣ୍ଡ ନଖେଳାଇ ମୋ'ଉପରେ ଛାଡ଼ିଦିଅ ।" ମୋ ବ୍ୟାଗରେ ଥିବା ଚୁଡ଼ା, ସେଉ, ମିକ୍ସର, ତ୍ରିଫଳାଚୂର୍ଣ୍ଣସବୁ କାଢ଼ି ଭାଇନାଙ୍କୁ ଦେଲାବେଳେ ଦୁଇଶହ ଟଙ୍କାର ଜିନିଷ ପାଇଁ କିପରି ଦୁଇହଜାର ଟଙ୍କା ଜରିମାନା ଦେବାକୁପଡ଼ିଲା ସେ କଥା କହିଲି । ସେ ଶୁଣି ମନଦୁଃଖ କଲେ ଓ ସେ ଟଙ୍କା ଦେବାପାଇଁ ବାହାରୁଥିଲେ ।

ପନ୍ଦର ଦିନର ବୁଲାବୁଲି ଭିତରେ ଲୁଗାପଟା ମଇଳା ହୋଇଯାଇଥିଲା । ଭାବିଥିଲି ଏକାଥରକେ ଭୁବନେଶ୍ୱର ଫେରିଲେ ସଫା ହେବ । କିନ୍ତୁ ଭାଉଜ ନଛୋଡ଼ବନ୍ଧା । ସେ ନିଜେ ସେସବୁ ସଫା କରି ଆଇରନ କରିଦେଲେ । ସକାଳେ ଡେରିରେ ଜଳଖିଆ ପର୍ବ ହେଲା । ଜଳଖିଆରେ 'ଉପମା, ତରକାରି ଓ ମିଠା । ଘର ଉଳିଆ ଲାଗିଲା । ଜଳଖିଆ ଖାଇଲାପରେ ଭାଇନା ଗାଡ଼ି କାଢ଼ିଲେ ଓ ଆମେ ଦୁହେଁ ଭାଇନାଙ୍କ କର୍ମକ୍ଷେତ୍ର ମାଇଲ୍ସ

କଲେଜ ଆଡ଼େ ଚାଲିଲୁ । ଏକ ସମୟରେ ଗୋରାମାନଙ୍କଦ୍ୱାରା ଅତ୍ୟାଚାରିତ ହୋଇ ସାମାଜିକ ବାସନ୍ଦରେ ଜୀବନ ବିତାଉଥିବା କଳାଲୋକଙ୍କ ଅଧ୍ୟୟନ୍ ଉଦ୍ଦେଶ୍ୟରେ ମାଇଲ୍ସ କଲେଜଟି ସ୍ଥାପିତ ହୋଇଥିଲା । ଅବଶ୍ୟ ପରବର୍ତ୍ତୀ ଅବସ୍ଥାରେ ଉଭୟ କଳା ଓ ଗୋରା ସେଠାରେ ଅଧ୍ୟୟନର ସୁବିଧା ପାଇଲେ । କଲେଜରେ ଭାଇନାଙ୍କର ଖୁବ୍ ସୁନାମ ରହିଛି । ପ୍ରଫେସର ହିସାବରେ ତାଙ୍କୁ ସ୍ୱତନ୍ତ୍ର କୋଠରି, ଲାଇବ୍ରେରୀ ସାଙ୍ଗକୁ ଷ୍ଟେନୋ ଯୋଗାଇ ଦିଆଯାଇଛି । କଲେଜରେ କେତେକ ଛାତ୍ରୀଙ୍କ ସହିତ ଆଳାପ କରିବାର ସୁଯୋଗ ଜୁଟିଥିଲା । ସେତେବେଳେକୁ ଆମେରିକା ରାଷ୍ଟ୍ରପତି ନିର୍ବାଚନ ପାଇଁ ପ୍ରଚାର ଆରମ୍ଭ ହୋଇ ବାତାବରଣ ସରଗରମ ଥିଲା । କଥାପ୍ରସଙ୍ଗରେ ମୁଁ କେତେକ ଶ୍ୱେତାଙ୍ଗୀ ଛାତ୍ରୀଙ୍କୁ ନିର୍ବାଚନ ଫଳାଫଳ ସମ୍ପର୍କରେ ପଚାରିଥିଲି । ସେମାନେ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ଓବାମାଙ୍କୁ ସମର୍ଥନ କରୁଥିବା କଥା ପ୍ରକାଶ କରିଥିଲେ । ଶ୍ୱେତାଙ୍ଗୀ ହୋଇ କିପରି 'କଳା'ଲୋକଙ୍କୁ ସମର୍ଥନ କରୁଛନ୍ତି ବୋଲି ପଚାରିବାରୁ ସେମାନେ କହିଲେ, "ଏଠି କଳା ଗୋରା ପ୍ରଶ୍ନ ବଡ଼ ନୁହେଁ । ପ୍ରଶ୍ନ ହେଉଛି ଆମେରିକାବାସୀ ଏକ ପରିବର୍ତ୍ତନ ଚାହାନ୍ତି । ରାଷ୍ଟ୍ରପତି ବୁଶ୍‌ଙ୍କ ତ୍ରୁଟିପୂର୍ଣ୍ଣ ଅର୍ଥନୈତିକ ବ୍ୟବସ୍ଥା, ବୈଦେଶିକ ବ୍ୟାପାରରେ ଏକଚାଟିଆ ନିଷ୍ପତ୍ତିରେ ଆମେରିକାର ଯୁବସମାଜ ଏକପ୍ରକାର ଚାପିହୋଇଯାଇଛନ୍ତି । ମାକାନ୍, ବୁଶ୍‌ଙ୍କ ପ୍ରତିନିଧି ଭାବରେ ଲଢୁଛନ୍ତି ଏବଂ ନିର୍ବାଚନରେ ମାକାନ୍‌ଙ୍କ ବିଜୟ, ବୁଶ୍‌ଙ୍କ ତୃତୀୟ ପାଳି ଭଳି ହେବ । ଆମେ ପ୍ରଶାସନରେ ପରିବର୍ତ୍ତନ ଚାହୁ ଏବଂ ସେଥିପାଇଁ ଓବାମାଙ୍କୁ ସମର୍ଥନ କରୁଛୁ ।" ଛାତ୍ରୀମାନଙ୍କ ଯୁକ୍ତିକୁ ମୁଁ ସହଜରେ ଗ୍ରହଣ କରିପାରି ନଥିଲି; କାରଣ ଯେଉଁ ଗୋରାମାନେ କଳାମାନଙ୍କ ଛାଇ ଦେଖିବାକୁ ପସନ୍ଦ କରୁନଥିଲେ, ସେମାନଙ୍କୁ ଟ୍ରେନ, ବସରେ ଯିବା ପାଇଁ ସୁଯୋଗ ଦେଉନଥିଲେ, ସ୍କୁଲ କଲେଜରୁ ସେମାନଙ୍କୁ ବାସନ୍ଦ କରୁଥିଲେ, ସେଇ ଶ୍ୱେତାଙ୍ଗ ବଂଶର ଯୁବସମାଜ କିପରି କଳାମାନଙ୍କ ପ୍ରତିନିଧିଙ୍କୁ ସମର୍ଥନ କରୁଛନ୍ତି ତା' ମୋର ଅବୋଧ ହୋଇଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଯେତେବେଳେ ଓବାମା ବହୁ ଭୋଟ୍‌ରେ ବିଜୟୀ ହୋଇ ଆମେରିକାର ରାଷ୍ଟ୍ରପତି ହେଲେ, ସେତେବେଳେ ମାଇଲ୍ସ କଲେଜ୍‌ର ଶ୍ୱେତାଙ୍ଗୀ ଛାତ୍ରୀମାନଙ୍କ ଯୁକ୍ତିର ଯଥାର୍ଥତାକୁ ମୁଁ ଉପଲବ୍ଧି କରିଥିଲି ।

ମାଇଲ୍ସ କଲେଜରେ କିଛିସମୟ କଟାଇ ଆମେ 'ଫାର୍ମର୍ସ ମାର୍କେଟ୍' ଦେଖିବାକୁ ଯାଇଥିଲୁ । ଯେଉଁ ଚାଷୀମାନେ ନିଜ ଉଦ୍ୟମରେ ଫସଲ ଉତ୍ପାଦନ କରୁଥିଲେ ସେମାନଙ୍କୁ ଉତ୍ପାଦିତ ଫସଲର ଉପଯୁକ୍ତ ମୂଲ୍ୟ ଦେବା ଉଦ୍ଦେଶ୍ୟରେ ଫାର୍ମର୍ସ ମାର୍କେଟର ପରିକଳ୍ପନା କରାଯାଇଥିଲା । ସେଠାରେ ସେମାନେ ନିଜର ଦୋକାନ କରି ସିଧାସଳଖ ଖାଉଟୀମାନଙ୍କୁ ନିଜ ଉତ୍ପାଦିତ ପନିପରିବା ଯୋଗାଇ ଦେଉଥିଲେ । ମଝିରେ ଦଲାଲ ନଥିବାରୁ ମାର୍କେଟ୍‌ରେ ସାଧାରଣ ବଜାର ତୁଳନାରେ ପରିବାରପତ୍ର ଶସ୍ତାରେ ମିଳୁଥିଲା । ଲୋକମାନେ ଅଫିସରୁ ଫେରିବା ସମୟରେ ସେଠାରୁ ନିଜ ପସନ୍ଦ ମୁତାବକ ପରିବାରପତ୍ର କିଣି ନେଉଥିଲେ ।

ଫେରିବା ସମୟରେ କିଛି ଖାଇବାପାଇଁ ଭାଇନା ମତେ ବାଧ୍ୟ କରିଥିଲେ । କିନ୍ତୁ ଭୋକ ନଥିବାରୁ ମୁଁ ନାହିଁ କଲି । ଭାଇନା କିଛି ନଶୁଣି ବାଟରୁ ଫ୍ରୁଟ୍‌ଜୁସ୍ ଓ ପଟାଟୋ

ଚିପ୍‌ସ ନେଇଆସିଲେ । ଚିପ୍‌ସ ପାଟିରେ ପକାଇଲାବେଳେ ଆମେରିକାରେ ସାମାଜିକ ସ୍ଥିତି ଓ ପାରିବାରିକ ସମ୍ପର୍କ ବିଷୟରେ ମୁଁ ଭାଇନାଙ୍କୁ ପଚାରିଥିଲି । ସେ କହିଲେ, "ଏଠାରେ ଲୋକଙ୍କର ଜୀବନଦର୍ଶନ ଖୁବ୍ ସ୍ପଷ୍ଟ । ଏମାନେ ମୁଖ୍ୟତଃ ବ୍ୟକ୍ତିକୈନ୍ଦ୍ରିକ । ଗୋଟିଏ ଛାତ ତଳେ ଦୁଇଜଣ ମହିଳା ଏକାଠି ବେଶିଦିନ ରହିବା ବ୍ୟବସ୍ଥାକୁ ଏମାନେ ପସନ୍ଦ କରନ୍ତି ନାହିଁ । ବୟସ୍କମାନଙ୍କ ମନସ୍ତତ୍ୱ ସହିତ ଆଧୁନିକ ଯୁବକ ଯୁବତୀମାନଙ୍କର ଚିନ୍ତାଧାରା ଖାପଖାଏ ନାହିଁ । ସମସ୍ତେ ନିଜ ନିଜ ବାଟରେ ଜୀବନ ଉପଭୋଗ କରିବାକୁ ଚାହାନ୍ତି । ପୁଅଝିଅଙ୍କ ବୟସ ହୋଇଗଲେ ସେମାନେ ନିଜ ପସନ୍ଦର ଜୀବନସାଥୀ ବାଛନ୍ତି ଓ ସେଥିରେ ବାପମା'ମାନଙ୍କର କିଛି କହିବାର ନଥାଏ । ଭାରତୀୟ ସଂସ୍କୃତିରେ ଯେଉଁଭଳି ପରସ୍ପର ପ୍ରତି ସ୍ନେହ, ପ୍ରେମ, ଆଦର, ସହାନୁଭୂତି ଭରିରହିଛି, ଆମେରିକା ସମାଜରେ ତାର ଚିହ୍ନବର୍ଣ୍ଣ ନାହିଁ । 'ନିଜେ ବଞ୍ଚ ଅନ୍ୟକୁ ବଞ୍ଚିବାକୁ ଦିଅ' ବଦଳରେ 'ନିଜେ ବଞ୍ଚିଲେ ବାପର ନାଁ' ହେଉଛି ଏଠାକାର ଲୋକଙ୍କର ମନସ୍ତତ୍ୱ । ଭାରତୀୟ ସମାଜରେ ବିବାହକୁ ଯେପରି ପୁରୁଷ ଓ ନାରୀ ମଧ୍ୟରେ ଏକ ପବିତ୍ର ବନ୍ଧନ ଭାବରେ ଗ୍ରହଣ କରାଯାଏ, ବିବାହ ପରେ ଉଭୟେ ପରସ୍ପରକୁ ଜୀବନସାଥୀ ଭାବରେ ଗ୍ରହଣ କରନ୍ତି, ଆମେରିକୀୟ ସମାଜରେ ସେପରି ବ୍ୟବସ୍ଥା ନାହିଁ । ସେଥିପାଇଁ ବିବାହ ପରେ ଅଧିକାଂଶ କ୍ଷେତ୍ରରେ ଛାଡ଼ପତ୍ର ବା ବିଚ୍ଛେଦ ଘଟଣା ଘଟିଥାଏ, ମାତ୍ର ସେମାନେ ଏହାକୁ ଏକ ସ୍ୱାଭାବିକ ପ୍ରକ୍ରିୟା ଭାବରେ ଗ୍ରହଣ କରିନେଇଛନ୍ତି ।"

କଥା ହେଉ ହେଉ ଆମେ ଭାଇନାଙ୍କ ଘର ପାଖରେ ପହଞ୍ଚି ଯାଇଥିଲୁ । ସନ୍ଧ୍ୟା ହୋଇଯାଇଥିଲା । ତାଙ୍କ ଘରେ କିଛିସମୟ ଗପସପ ଚାଲିଲା । ଜ୍ୟୋତ୍ସ୍ନାଭାଉଜ କଖାରୁଫୁଲ ଭଜା ଓ ବାରି କାକୁଡ଼ି ଦେଲେ । ରାତ୍ରିଭୋଜନ ପରେ ଆମେ ବିଶ୍ରାମ ନେଲୁ ।

## ଟସ୍କାଲୁସା ବିଶ୍ୱବିଦ୍ୟାଳୟ ଏକ ଅତ୍ୟାଧୁନିକ ଶିକ୍ଷାକ୍ଷେତ୍ର

ପରଦିନ ସକାଳେ ଟସ୍କାଲୁସା ବିଶ୍ୱବିଦ୍ୟାଳୟ ବୁଲିଯିବାପାଇଁ ଭାଇନା ପ୍ରସ୍ତାବ ଦେଲେ । ମୋର ନାହିଁ କରିବାର କିଛି ନଥିଲା । ଆମେ ସକାଳେ ଜଳଖିଆ ଖାଇସାରି ବାହାରିପଡ଼ିଲୁ । ଟସ୍କାଲୁସା ଭାଇନାଙ୍କ ଘରପାଖରୁ ଷାଠିଏମାଇଲ ଦୂରରେ ଅନ୍ୟ ଏକ ସହରରେ ଅବସ୍ଥିତ । ଦୀର୍ଘ ୩୨ବର୍ଷ ପୂର୍ବେ ଆଜିର ସୁବିଖ୍ୟାତ ପ୍ରଫେସର ଦିଗମ୍ବର ମିଶ୍ର ସେଠାରେ ଉଭୟ ଅଧ୍ୟୟନ ଓ ଅଧ୍ୟାପନା କରିଥିଲେ । ଗାଡ଼ି ଡ୍ରାଇଭ କଲାବେଳେ ଭାଇନା ତାଙ୍କ ଅତୀତର ସ୍ମୃତିକୁ ରୋମନ୍ଥନ କରୁଥିଲେ । ଖାଲି ପକେଟରେ ଆମେରିକା ଆସି କିପରି ସେ ସ୍ନାତକୋତ୍ତର ଓ ପିଏଚ୍‌ଡି ଡିଗ୍ରୀ ହାସଲ କରିଥିଲେ ସେକଥା ବର୍ଣ୍ଣନା କଲାବେଳେ ତାଙ୍କ ଆଖି ଛଳଛଳ ହୋଇଯାଇଥିଲା ।

ଆମର ଟସ୍କାଲୁସା ଯିବା ସମ୍ପର୍କରେ ଭାଇନା ଆଗରୁ ତାଙ୍କର କେତେକ ବନ୍ଧୁଙ୍କ ପାଖକୁ ଖବର ପଠାଇଥିଲେ ଓ ସେହି ଅନୁସାରେ ଆମକୁ ସ୍ୱାଗତ ଜଣାଇବା ପାଇଁ ସେମାନେ ଅପେକ୍ଷା କରି ରହିଥିଲେ । ସେମାନଙ୍କ ସହିତ ଭାଇନା ମୋର ପରିଚୟ କରାଇଦେଲେ । ତା'ପରେ

ଆମେ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ଓ ରିସର୍ଚ୍ଚ ସେଣ୍ଟର ବୁଲି ଦେଖିବାକୁ ଗଲୁ । ଆମ ସାଙ୍ଗରେ ଥିଲେ କ୍ରସ୍‌ନିଉଜ୍ କମ୍ୟୁନିଟି ସେଣ୍ଟରର ଡାଇରେକ୍ଟର ଡକ୍ଟର ବ୍ରେଭରଲି ହକ୍ । ମଧ୍ୟବୟସ୍କା ମହିଳା; ହୃଷ୍ଟପୁଷ୍ଟ ଚେହେରା ସାଙ୍ଗକୁ ସ୍କଟ ବ୍ଲାଉଜ୍‌ରେ ସେ ଖୁବ୍ ଆକର୍ଷଣୀୟା ମନେହେଉଥିଲେ । ତାଙ୍କ ଇଂରାଜୀ ଉଚ୍ଚାରଣ ଖୁବ୍ ସ୍ୱଚ୍ଛ । ବାଟରେ ଗଲାବେଳେ ସେ ତାଙ୍କ ବିଶ୍ୱବିଦ୍ୟାଳୟର ଗରିମା ସମ୍ପର୍କରେ ବୁଝାଉଥିଲେ । ସେଠାରେ ଅଧ୍ୟାପନା ସାଙ୍ଗକୁ ଶୃଙ୍ଖଳା ଉପରେ କିପରି ଗୁରୁତ୍ୱ ଦିଆଯାଏ ସେ ବିଷୟରେ କହିବାକୁ ମାଡାମ ହକ୍ ଭୁଲି ନଥିଲେ । ବିଶ୍ୱବିଦ୍ୟାଳୟରେ ଆଧୁନିକତାର ଛାପ ବାରିହୋଇ ପଡୁଥିଲା । ଛାତ୍ରଛାତ୍ରୀମାନଙ୍କର ଭବିଷ୍ୟତ ଗଠନ ପାଇଁ ସବୁପ୍ରକାର ସୁବିଧା ସୁଯୋଗ ସେଠାରେ ଯୋଗାଇ ଦିଆଯାଉଥିଲା । ବିଶ୍ୱବିଦ୍ୟାଳୟର ହତାଟି ଗୋଟିଏ ଛୋଟିଆ ସହର ଭଳି ମନେହେଉଥିଲା ।

ବୁଲିବା ଭିତରେ ମଧ୍ୟାହ୍ନଭୋଜନ ସମୟ ହୋଇଯାଇଥିବାରୁ ମାଡାମ ହକ୍ ଆମକୁ ବିଶ୍ୱବିଦ୍ୟାଳୟ ରେଷ୍ଟୁରାଣ୍ଟକୁ ନେଇଗଲେ । 'ସାଇପ୍ରସ ରନ୍' ରେଷ୍ଟୁରାଣ୍ଟଟି ବ୍ଲାକ୍ ୱାରିଅର୍ ନଦୀକୂଳରେ ଅବସ୍ଥିତ । ସେଥିରେ କାଠରେ ତିଆରି ଗୋଟିଏ ବଡ଼ ଡାଇନିଂ ହଲ୍ ସହିତ କିଚେନ୍, ରିସେପ୍‌ସନ୍ ହଲ, କାଉଣ୍ଟର୍ ସବୁ ରହିଥିଲା । ରେଷ୍ଟୁରାଣ୍ଟରେ ବସିଲେ ନଦୀର ମନୋରମ ଦୃଶ୍ୟକୁ ଉପଭୋଗ କରିହେଉଥିଲା । ରେଷ୍ଟୁରାଣ୍ଟର ଗୋଟିଏ କର୍ଣ୍ଣର୍‌ରେ ଆମେ ଯାଇ ବସିଲୁ । ମୁଁ ନିରାମିଷାଶୀ ଏବଂ ମଦ୍ୟପାନ କରେ ନାହିଁ ଶୁଣି ମାଡାମ୍ ହକ୍ ମୁହଁ ଶୁଖାଇଦେଲେ । ଜଣେ ସାମ୍ବାଦିକ ଏ ଦୁଇଟି ପଦାର୍ଥ ଛାଡ଼ି କିପରି ନିଜର କର୍ତ୍ତବ୍ୟ ନିର୍ବାହ କରିପାରେ ସେକଥା ମାଡାମ୍ ବିଶ୍ୱାସ କରିପାରିଲେ ନାହିଁ । ମୁଁ ତାଙ୍କୁ କହିଲି, "ଏଥିରେ ଦୁଃଖ କରିବାର କିଛି ନାହିଁ । ଆମର ମନସ୍ତତ୍ତ୍ୱ ହେଉଛି 'ଆପ୍ ରୁଚି ଖାନା, ପର ରୁଚି ପହନ୍‌ନା' - ଅର୍ଥାତ୍ ନିଜ ପସନ୍ଦ ମୁତାବକ ଖାଦ୍ୟ ଖାଇବ ଆଉ ଅନ୍ୟକୁ ସୁନ୍ଦର ଦେଖାଗଲା ଭଳି ପୋଷାକ ପିନ୍ଧିବ ।" ସେମାନେ ଦୁଇଜଣ କିଛି ହାର୍ଡଡ୍ରିଙ୍କ୍‌ସ ବରାଦ ଦେଇ ମୋ'ପାଇଁ ଆପେଲ ଜୁସ୍ ମଗାଇଲେ । ସେ ରେଷ୍ଟୁରାଣ୍ଟର ହାବଭାବ ଦେଖି ମୋର ଭୋକ ମରିଯାଇଥିଲା; କାରଣ ସେଠାରେ କେହି ନିରାମିଷ ଭୋଜନ କରୁନଥିଲେ । ସେମାନଙ୍କ ପାଇଁ ପୋର୍କ, ବିଫ୍ ସାଧାରଣ ଖାଦ୍ୟ ଥିଲା । ଆଲୋଚନା ପରେ ମୋ'ପାଇଁ ଚିଜ୍ ସାଣ୍ଡୱିଚ୍ ମଗାଗଲା । ହେଲେ ସେ ସାଣ୍ଡୱିଚ୍‌ର ଆକାର ଓ ସ୍ୱାଦ ଭିନ୍ନ ଥିଲା । ଥରେ ପାଟିକୁ ନେଲାପରେ ଆଉ ଖାଇବାର ଆଗ୍ରହ ରହିଲା ନାହିଁ । ନଖାଇ ଉଠିଗଲେ ଅଭଦ୍ରାମି ହେବ ଭାବି କେବଳ ଖାଇବାର ଅଭିନୟ କରି ମୁଁ ବସିରହିଲି । ଖାଇବା ଭିତରେ କେତେକଥା ପଡ଼ିଲା । ରାଜନୀତିଠାରୁ ଦର୍ଶନ ପର୍ଯ୍ୟନ୍ତ । ସେଇ ସୁଯୋଗରେ ଆମେରିକା ରାଷ୍ଟ୍ରପତି ନିର୍ବାଚନର ଫଳାଫଳ କ'ଣ ହେବ ବୋଲି ମୁଁ ମାଡାମ ହକ୍‌ଙ୍କଠାରୁ ଜାଣିବାକୁ ଚାହିଥିଲି । ମାକାନଙ୍କ ପ୍ରାର୍ଥୀତ୍ୱ ପ୍ରତି ସମର୍ଥନ ଥିବା ସମ୍ପର୍କରେ ତାଙ୍କ କଥାବାର୍ତ୍ତାରୁ ମୁଁ ସୂଚନା ପାଇଥିଲି । କିନ୍ତୁ ମାକାନଙ୍କ ବିଜୟର ସମ୍ଭାବନାକୁ ସେ ଦୃଢ଼ ଭାବରେ ପ୍ରକାଶ କରିପାରି ନଥିଲେ ।

ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗ ବୁଲି ଫେରିଲା ବେଳକୁ ପାଞ୍ଚଟା ବାଜିଥିଲା । ସେଦିନ ସନ୍ଧ୍ୟାରେ ଜ୍ୟୋତ୍ସ୍ନା ଭାଉଜ ଘରୁଆ ରୋଷେଇ କରିଥିଲେ । ଅରୁଆ ଭାତ ସାଙ୍ଗକୁ

ହରଡଡାଲି, ବନ୍ଧାକୋବି ମଟର ତରକାରି, ବେସନ ଦିଆ ବାଇଗଣ ଭଜା ଓ ବାଡ଼ିରୁ ତୋଳା କଖାରୁଫୁଲ ଭଜା ଓ କାକୁଡ଼ି, ପିଆଜ ସାଲାଡ। ଦିନରେ ଖାଇବା ଠିକ୍ ଭାବରେ ହୋଇ ନଥିବାରୁ ରାତ୍ରିଭୋଜନ ଖୁବ୍ ତୃପ୍ତିକର ହୋଇଥିଲା। ଖାଇସାରି ଘଣ୍ଟାଏ କାଳ ଓଡ଼ିଆ ଭଜନ ଶୁଣି ଶୋଇବାକୁ ଗଲି।

## ସିଭିଲ୍ ଲିବର୍ଟି ଇନ୍‌ଷ୍ଟିଚ୍ୟୁଟ୍ ପରିଦର୍ଶନ

ଆଲବାମାରେ ରହିବା ସମୟ ମଧ୍ୟରେ ସବୁଠାରୁ ଆକର୍ଷଣୀୟ କାର୍ଯ୍ୟକ୍ରମ ଥିଲା ସିଭିଲ ଲିବର୍ଟି ଇନଷ୍ଟିଚ୍ୟୁଟ ପରିଦର୍ଶନ। ଆମେ ଘରେ ଜଳଖିଆ ଖାଇ ସକାଳ ନଅଟା ବେଳେ ବାହାରିପଡ଼ିଲୁ। ଇନଷ୍ଟିଚ୍ୟୁଟକୁ ଯିବାପାଇଁ ଦିଗାଭାଇନା ଆଗରୁ ପ୍ରବେଶପତ୍ର ସଂଗ୍ରହ କରିଥିଲେ। ଅଭ୍ୟର୍ଥନାକାରୀଙ୍କୁ ଆମର ପରିଚୟ ପ୍ରଦାନ କଲାରୁ ସେ ଆମକୁ ଭିତରକୁ ଯିବାକୁ ଅନୁମତି ଦେଇଥିଲେ। ଆମେରିକାରେ କଳାଗୋରା ଭେଦଭାବ ଓ ଦାସତ୍ୱପ୍ରଥାର ବିଲୋପ ସାଧନ ନିମନ୍ତେ ଯେଉଁ ଦୀର୍ଘ ଆନ୍ଦୋଳନ ଚାଲିଥିଲା, ତାର ବିସ୍ତୃତ ବିବରଣୀ ସିଭିକ୍ ସେଣ୍ଟରରେ ସ୍ଥାନ ପାଇଥିଲା। ଆମେରିକାର କଳାଲୋକମାନଙ୍କ ତ୍ରାଣକର୍ତ୍ତା ଭାବରେ ଜଣାଶୁଣା ପ୍ରଖ୍ୟାତ ନିଗ୍ରୋନେତା ମାର୍ଟିନ୍ ଲୁଥର୍ କିଙ୍ଗ୍ ଜନସାଧାରଣଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ ତାର ବିବରଣୀ ଏଠାରୁ ନିୟମିତ ଭାବରେ ପ୍ରସାରିତ ହେଉଥିଲା। ମାର୍ଟିନ ଲୁଥରଙ୍କ ନିଜ କଣ୍ଠସ୍ୱରରେ 'ମୋର ଗୋଟିଏ ସ୍ୱପ୍ନ ଅଛି'କୁ ଶୁଣିଲାବେଳେ ଶରୀର ରୋମାଞ୍ଚିତ ହେଉଥିଲା। ସେ ତାଙ୍କ ଭାଷଣରେ ଦର୍ଶାଇଥିଲେ, "ସମଗ୍ର ମାନବଜାତି ସମାନ ଭାବରେ ସୃଷ୍ଟି ହୋଇଛନ୍ତି, ମାତ୍ର କେତେକ ନ୍ୟସ୍ତସ୍ୱାର୍ଥୀ ସେମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରୁଛନ୍ତି। ଯେକୌଣସି ସ୍ଥାନରେ ଯଦି କିଛି ଅନ୍ୟାୟକୁ ବରଦାସ୍ତ କରାଯାଏ, ତେବେ ତାହା ସର୍ବତ୍ର ନ୍ୟାୟ ପାଇବାପାଇଁ ବିପଦ ସୃଷ୍ଟି କରିଥାଏ।" ନିଜର ନ୍ୟାୟସଙ୍ଗତ ଦାବି ହାସଲ ପାଇଁ ଆନ୍ଦୋଳନ କରୁଥିବା ଲୋକଙ୍କୁ କିପରି କୁକୁର ଲଗାଇ ଦିଆଯାଉଥିଲା, ପୁଲିସ ସେମାନଙ୍କ ଉପରେ କିପରି ଅମାନୁଷିକ ଅତ୍ୟାଚାର କରୁଥିଲେ, ସେସବୁର ଫଟୋଚିତ୍ର ସେଠାରେ ପ୍ରଦର୍ଶିତ ହୋଇଥିଲା। 'ମୋର ଗୋଟିଏ ସ୍ୱପ୍ନ ଅଛି'ରେ ନିଗ୍ରୋନେତା ସ୍ପଷ୍ଟ ଭାବରେ କହିଥିଲେ ଯେ, "ମୋର ପ୍ରିୟ ଦେଶବାସୀ ଯେ ଦିନେ ଦାସତ୍ୱରୁ ମୁକ୍ତ ହେବେ ସେ ବିଷୟରେ ମୁଁ ନିଃସନ୍ଦେହ ଏବଂ ସେଦିନ ଅତିଶୀଘ୍ର ଉପନୀତ ହେବ।"

ସିଭିଲ୍ ଲିବର୍ଟି ଇନଷ୍ଟିଚ୍ୟୁଟ ବୁଲି ଦେଖିବାରେ ଦୁଇଘଣ୍ଟା ସମୟ ବିତିଯାଇଥିଲେ ବି ସବୁ ଅଂଶ ବୁଲି ଦେଖିବାପାଇଁ ଆମକୁ ସୁଯୋଗ ମିଳିନଥିଲା। ମୁକ୍ତି ସଂଗ୍ରାମର ଯେଉଁସବୁ ରୋମାଞ୍ଚକର କାହାଣୀ ସେଠାରେ ପ୍ରତିଧ୍ୱନିତ ହେଉଥିଲା ସେସବୁକୁ ଅନୁଧ୍ୟାନ କରିବା ପାଇଁ ଆମ ପାଖରେ ସମୟ ନଥିବାରୁ ବାଧହୋଇ ସେଠାରୁ ଫେରିବାକୁ ପଡ଼ିଲା। ଇନଷ୍ଟିଚ୍ୟୁଟର ଗୋଟିଏ କୋଠରିରେ ଭାରତୀୟ ମୁକ୍ତିସଂଗ୍ରାମର ମୁଖ୍ୟ କର୍ଣ୍ଣଧାର, ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଗୋଟିଏ ବ୍ରୋଞ୍ଜମୂର୍ତ୍ତି ଥିବାର ଦେଖି ମୋର କୌତୂହଳ ଜାତ ହୋଇଥିଲା। ପାଖକୁ ଯାଇ ଦେଖିଲି ସେଇଟି ପ୍ରଫେସର ଦିଗମ୍ବର ମିଶ୍ରଙ୍କ ଦ୍ୱାରା ଦାନ କରାଯାଇଥିଲା।

## ଭାରତୀୟ ରେଷ୍ଟୁରାଣ୍ଟରେ ମଧ୍ୟାହ୍ନଭୋଜନ

ସିଭିଲ୍ ଲିବର୍ଟି ଇନଷ୍ଟିଚ୍ୟୁଟ୍‌ରୁ ଫେରିବା ବାଟରେ ବରମିଂହାମ୍‌ରେ କୌଣସି ଭାରତୀୟ ରେଷ୍ଟୁରାଣ୍ଟ ଅଛି କି ନାହିଁ ବୋଲି ମୁଁ ଜାଣିବାକୁ ଚାହିଥିଲି । ସେତେବେଳକୁ ମଧ୍ୟାହ୍ନଭୋଜନ ସମୟ ହୋଇଯାଇଥିଲା । ଦିଗାଭାଇନା କୌଣସି ଉତ୍ତର ନଦେଇ ସିଧାସଳଖ ଗାଡ଼ି ନେଇ ଗୋଟିଏ ଭାରତୀୟ ରେଷ୍ଟୁରାଣ୍ଟ ସାମନାରେ ପାର୍କିଂ କଲେ । ରେଷ୍ଟୁରାଣ୍ଟଟିର ନାଁ ଥିଲା 'କବାବ ଆଣ୍ଡ କରି' । ସେଇଟି ପ୍ରଥମେ ଜଣେ ଆମେରିକୀୟ ଆରମ୍ଭ କରିଥିଲେ ଓ ପରେ ଜଣେ ନେପାଳ ଅଧିବାସୀ ତାକୁ କିଣିନେଇ ଚ଼ଳାଉଥିଲେ । ଅନେକ ଧରଣର ଭାରତୀୟ ଖାଦ୍ୟ ମିଳୁଥିବାରୁ ସେଠାରେ ଗ୍ରାହକମାନଙ୍କର ଭିଡ଼ ଲାଗିରହୁଥିଲା ।

ରେଷ୍ଟୁରାଣ୍ଟର ଗୋଟିଏ ପାଖରେ ଖାଦ୍ୟ ପଦାର୍ଥସବୁ ସଜ୍ଜା ହୋଇ ଥୁଆ ହୋଇଥିଲା ଓ ସେଠାରେ ଦୁଇଟି ବୋର୍ଡ ଝୁଲୁଥିଲା । ଗୋଟିକରେ ଲେଖାଯାଇଥିଲା 'ସେଲ୍ଫ ହେଲ୍ପ' ଓ ଅନ୍ୟଟିରେ 'ଟେକ୍ ଆଜ୍ ୟୁ କ୍ୟାନ୍' । ପ୍ରଥମ ବୋର୍ଡର ଲେଖା ବୁଝିହେଉଥିଲେ ବି ଦ୍ୱିତୀୟ ବୋର୍ଡର ଭାଷା ମୋ'ପାଇଁ ଅବୋଧ ଥିଲା । ମୁଁ ତା'ର ଅର୍ଥ ଭାଇନାଙ୍କୁ ପଚାରିଲି । ସେ କହିଲେ, "ରେଷ୍ଟୁରାଣ୍ଟରେ ଖାଇବାପାଇଁ ଦୁଇଟି ମୂଲ୍ୟ ଧାର୍ଯ୍ୟ କରାଯାଇଛି । ନିଜ ପସନ୍ଦ ଅନୁଯାୟୀ ଯିଏ ଯୋଉ ମୂଲ୍ୟର ଖାଦ୍ୟ ଖାଇବାକୁ ଚାହିବ, ତାହା ଖାଇପାରିବ ଏବଂ ଖାଇବା ଶେଷରେ କାଉଣ୍ଟରରେ ମୂଲ୍ୟ ପଇଠ କରିବ । ଏଠାରେ ଖାଦ୍ୟ ପରିବେଷଣ ପାଇଁ କେହି ନାହାନ୍ତି । ଯାହାର ଯାହା ଇଚ୍ଛା, ଯେତେ ପରିମାଣର ଆବଶ୍ୟକ ତା ସେ ଖାଇପାରିବ । ସେଥିପାଇଁ ଲେଖାଯାଇଛି 'ଟେକ୍ ଆଜ୍ ୟୁ କ୍ୟାନ୍' ।" ସେ ରେଷ୍ଟୁରାଣ୍ଟରେ ଜଣେ ନେପାଳୀ ଯୁବତୀ ସବୁକାମ କରୁଥିଲେ । ଖାଦ୍ୟପଦାର୍ଥ ମହଜୁଦ ରଖିବାଠାରୁ ଗ୍ରାହକମାନଙ୍କୁ ପିଇବା ପାଣି ଦେବା, ଖାଇସାରିବା ପରେ ପ୍ଲେଟ୍ ଉଠାଇବା ଏବଂ ଶେଷରେ କାଉଣ୍ଟରରେ ଖାଇବାର ମୂଲ୍ୟ ରଖି ରସିଦ୍ ଦେବା ସବୁକାମ ତାଙ୍କରି ଦାୟିତ୍ୱରେ ଥିଲା । ଭାଇନା ସେ ଯୁବତୀ ସହିତ କଥାବାର୍ତ୍ତା କରି ବୁଝିଲେ ଯେ, ସେ ଜଣେ କଲେଜ୍ ଛାତ୍ରୀ । କଲେଜ୍ ବନ୍ଦ ହୋଇଯାଇଥିବାରୁ ନିଜ ଗୁଜୁରାଣ ମେଣ୍ଟାଇବା ଉଦ୍ଦେଶ୍ୟରେ ରେଷ୍ଟୁରାଣ୍ଟ୍‌ରେ ସାମୟିକ ଭାବେ କାର୍ଯ୍ୟ କରୁଥିଲେ । ରେଷ୍ଟୁରାଣ୍ଟରେ କାମ କରୁଥିଲେ ହେଁ ତାଙ୍କ ମନରେ କୌଣସି ଗ୍ଲାନି କିମ୍ବା ଅବସାଦ ନଥିବା କଥା ତାଙ୍କ ବଡି ଲାଙ୍ଗୁଏଜ୍‌ରୁ ଜଣାପଡୁଥିଲା ।

ରେଷ୍ଟୁରାଣ୍ଟରେ ନିରାମିଷାଶୀମାନଙ୍କ ପାଇଁ ଭାତ, ଡାଲି, ସାଦା ତରକାରି, ଭଜା, ସାଲାଡ, ପାମ୍ପଡ଼ ସାଙ୍ଗକୁ ମିଠା ମିଳୁଥିଲା । ସେହିପରି ଆମିଷାଶୀମାନଙ୍କ ନିମନ୍ତେ ଚିକେନ, ମଟନ ସବୁ ଥିଲା । ମୁଁ ପସନ୍ଦ ଅନୁଯାୟୀ କିଛି ଖାଦ୍ୟ ନେଇଥିଲି । ମଝିରେ ଦ୍ୱିତୀୟଥର ପାଇଁ ତରକାରି ନେଇ ଆସିଲାବେଳକୁ ମୋର ପ୍ରଥମ ପ୍ଲେଟଟି ଉଠିଯାଇଥିଲା । ମୁଁ କିଛି ବୁଝିନପାରି ଭାଇନାଙ୍କ ମୁହଁକୁ ଅନାଇଲି । ସେ ବୁଝାଇ କହିଲେ, "ଏଠାକାର ପ୍ରଚଳିତ ବ୍ୟବସ୍ଥା ଅନୁଯାୟୀ ଥରେ ପ୍ଲେଟ୍ ଅଇଁଠା ହୋଇଗଲେ ସେଥିରେ ଦ୍ୱିତୀୟଥର ପାଇଁ

ଖାଦ୍ୟପଦାର୍ଥ ଆଣିବା କଥା ନୁହେଁ । ସେଥିପାଇଁ ଫ୍ରେଶ୍ ପ୍ଲେଟ୍‌ସବୁ ରଖାଯାଇଛି । ଭାଇନାଙ୍କ କଥା ଶୁଣି ଅତୀତର ଗୋଟିଏ ଦୃଶ୍ୟ ମୋର ମନେପଡ଼ିଗଲା । ଥରେ ଦିଲ୍ଲୀରେ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର ଜାତୀୟ ପରିଷଦ ବୈଠକରେ ଯୋଗ ଦେବାପାଇଁ ମୁଁ ଯାଇଥିଲାବେଳେ ମୋ ସାଙ୍ଗରେ କେତେକ ସାମ୍ବାଦିକବନ୍ଧୁ ଯାଇଥିଲେ । ଆମ ସଭାପତି ବିକ୍ରମ ରାଓଙ୍କ ଅନୁରୋଧକ୍ରମେ ତାଙ୍କର ବ୍ୟକ୍ତିଗତ ବନ୍ଧୁ ତତ୍କାଳୀନ କେନ୍ଦ୍ର ଶିକ୍ଷମନ୍ତ୍ରୀ ନାରାୟଣ ଦତ୍ତ ତିୱାରୀ ସାମ୍ବାଦିକ ପ୍ରତିନିଧିମାନଙ୍କ ପାଇଁ 'ତାଜ୍ ପ୍ୟାଲେସ' ହୋଟେଲରେ ଗୋଟିଏ ଡିନର ପାର୍ଟିର ଆୟୋଜନ କରିଥିଲେ । ସେଥିରେ ଖାଦ୍ୟ ସହିତ ପାନୀୟର ମଧ୍ୟ ବ୍ୟବସ୍ଥା ଥିଲା । ଆମର କେତେକବନ୍ଧୁ 'ହୋଟେଲ ମ୍ୟାନର୍' ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ସେମାନଙ୍କର ଉଭୟ ଖାଦ୍ୟ ଓ ପାନୀୟ ପାଇଁ ଦୁର୍ବଳତା ଥିଲା । ସେମାନେ ପ୍ରଥମେ ଗ୍ଲାସରେ ପାନୀୟ ଆଣି ବସିଲା ବେଳକୁ ଖାଦ୍ୟ ପରିବେଷଣ ଆରମ୍ଭ ହୋଇଯାଇଥିଲା । କାଳେ ପଛକୁ ଖାଦ୍ୟ ସରିଯିବ, ସେହି ଆଶଙ୍କାରେ ସେମାନେ ଗ୍ଲାସ ଛାଡ଼ି ପ୍ଲେଟରେ ଖାଇବା ଜିନିଷ ଆଣିବାକୁ ଚାଲିଗଲେ । ଫେରିଆସି ଦେଖିଲାବେଳକୁ ମଦ ଥିବା ଗ୍ଲାସଟି ଆଉ ସେଠାରେ ନଥିଲା । ହଲ୍‌ରେ ବୁଲୁଥିବା ୱେଟରମାନେ ସେ ଗ୍ଲାସକୁ ଉଠାଇନେଇଥିଲେ । ସେମାନେ ଖାଇବା ପ୍ଲେଟ୍ ରଖି ଆଉଥରେ ଡ୍ରିଙ୍କ୍‌ସ ଆଣି ଫେରିଲା ବେଳକୁ ଖାଇବା ପ୍ଲେଟ୍ ଯେଉଁଠି ରଖିଦେଇ ଯାଇଥିଲେ ସେସବୁ ସେଠାରେ ଆଉ ନଥିଲା । ଏଥିରେ ସେମାନେ ବ୍ୟସ୍ତ ହୋଇପଡ଼ିଥିଲେ । ମୁଁ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଥିଲି, "ହୋଟେଲରେ ଖାଇବା ପିଇବା ଜିନିଷର ଅଭାବ ନାହିଁ । ପ୍ରଥମେ ପିଇବା ଶେଷ କରି ଖାଇଲେ ଉଭୟର ମଜା ନେଇପାରିବ ।"

ଖାଇସାରିବା ପରେ କାଉଣ୍ଟରରେ ମୁଁ ପ୍ରାପ୍ୟ ଦେବାକୁ ଚାହିଥିଲି; କିନ୍ତୁ ଭାଇନା ସେ ସୁଯୋଗ ମତେ ଦେଲେନାହିଁ । ଭୁବନେଶ୍ୱର ଫେରିବା ପୂର୍ବରୁ ଆତ୍ମୀୟସ୍ୱଜନଙ୍କ ପାଇଁ କିଛି ପ୍ରେଜେଣ୍ଟେସନ୍ ଜିନିଷ କିଣିବାପାଇଁ ମୁଁ ଭାଇନାଙ୍କୁ କହିଲି । ସେ ବିନା ବାକ୍ୟବ୍ୟୟରେ ମତେ ଗୋଟିଏ ବଡ଼ ମଲ୍‌କୁ ନେଇଯାଇଥିଲେ । 'ମାସି' ନାମରେ ପରିଚିତ ସେ ମଲ୍‌ଟି ବରମିଂହାମର ସର୍ବବୃହତ୍ ମଲ । ପ୍ରତ୍ୟେକ ପଦାର୍ଥ ପାଇଁ ଗୋଟିଏ ଗୋଟିଏ ହଲ୍ । ମଲ୍‌ର ଭିତରେ ବୁଲିବା ଭିତରେ ହଠାତ୍ ଗୋଟିଏ ବଙ୍ଗୀୟ ଦମ୍ପତିଙ୍କ ସହିତ ଭେଟ ହୋଇଗଲା । ସେମାନେ ପରସ୍ପର ମଧ୍ୟରେ ବଙ୍ଗଳା ଭାଷାରେ କଥାବାର୍ତ୍ତା ହେଉଥିବାର ଶୁଣି ସେମାନଙ୍କୁ ମୁଁ ଭାରତରୁ ଆସିଛି ବୋଲି ବଙ୍ଗଳାରେ କହିଥିଲି । ମଲ୍ ଭିତରେ ବଙ୍ଗଳା ଭାଷା ଶୁଣି ସେମାନେ ଏତେ ଖୁସି ହୋଇଯାଇଥିଲେ ଯେ, ଆମ ସହିତ ପ୍ରାୟ ଅଧଘଣ୍ଟାଏ କାଳ ଗପରେ ମାତିଯାଇଥିଲେ ।

ମଲ୍‌ରୁ ଘରକୁ ଫେରିବା ବାଟରେ ଭାଇନା ମତେ ଆଉ ଗୋଟିଏ ଦୁଇଟି ଦୋକାନ ବୁଲାଇ ଦେଖାଇଥିଲେ । ସେଦିନ ସନ୍ଧ୍ୟାରେ ଆମେ ୨୮ନର୍ଥ ଆଭେନ୍ୟୁରେ ଥିବା ଗୋଟିଏ ନାଇଟକ୍ଲବକୁ ଯାଇ କିଛିସମୟ କଟାଇଥିଲୁ । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଜୀବନୁକ ଉପଭୋଗ କରିବାପାଇଁ ନାଇଟକ୍ଲବଗୁଡ଼ିକ କାର୍ଯ୍ୟ କରିଥାଏ । ଆମେ ଯାଇଥିବା 'ଫର୍ଣ୍ଣେସ୍' ନାମକ ନାଇଟ୍ କ୍ଲବ୍‌ରେ ମଦ୍ୟପାନ କରିବା ସହିତ ଯୁବତୀମାନଙ୍କ

ଗହଣରେ ନିବିଡ଼ରେ କିଛିକ୍ଷଣ କଟାଇ ମନକୁ ହାଲୁକା କରିବାର ସବୁପ୍ରକାର ବ୍ୟବସ୍ଥା ରହିଥିଲା । ସେଠାକୁ ଯାଉଥିବା ଗ୍ରାହକମାନେ ଗୋଟିଏ ଡଲାର ବିନିମୟରେ ଯୁବତୀମାନଙ୍କୁ ଚୁମ୍ବନ ଦେଇ ଆନନ୍ଦ ଅନୁଭବ କରୁଥିଲେ। ସେହିପରି ଅନ୍ୟ କେହି କେହି ଅଧିକମୂଲ୍ୟ ଦେଇ ଶ୍ୱେତାଙ୍ଗୀ ଯୁବତୀମାନଙ୍କ ସହିତ ଏକାନ୍ତରେ ଦୈହିକ ସମ୍ପର୍କ ସ୍ଥାପନ କରୁଥିଲେ। ସେସବୁ ଦୃଶ୍ୟ ଆମପାଇଁ ଉପଭୋଗ୍ୟ ହୋଇପାରି ନଥିଲା। ସେଠାରୁ ଘରକୁ ଫେରିଲାବେଳକୁ ରାତି ଦଶଟା ବାଜିଥିଲା ।

ଭାଇନାଙ୍କ ଘରେ ପାଞ୍ଚଦିନ ସମୟ କୁଆଡ଼େ କଟିଗଲା, କିଛି ଜାଣିହେଲା ନାହିଁ। ପରଦିନ ସକାଳେ ବର୍ମିଂହାମ୍‌ରୁ ବିଦାୟ ନେଇ ଓ୍ୱାଶିଂଟନ୍ ଡି.ସି. ଯିବାପାଇଁ ମୋର ଆଗରୁ ସବୁ ବନ୍ଦୋବସ୍ତ ହୋଇଥିଲା। ସାଉଥ୍‌ୱେଷ୍ଟ୍ ବିମାନରେ ବର୍ମିଂହାମ୍‌ରୁ ବଲ୍‌ଟିମୋର୍ ଯାଇ ସେଠାରୁ ଓ୍ୱାଶିଂଟନ୍ ଡି.ସି. ଯିବାକଥା। ଓ୍ୱାସିଂଟନ୍‌ରୁ କାହାଘରେ ରହିବି, କିଏ ମତେ ବିମାନବନ୍ଦରୁ ଆସି ନେବେ, ସେମାନେ କିପରି ଲୋକ ହୋଇଥିବେ, ଏସବୁ ପ୍ରଶ୍ନ ପୁନର୍ବାର ମୁଣ୍ଡଟେକିଲା। ଟରେଣ୍ଟୋରେ 'ଓଶା' ଅଧିବେଶନ ସମୟରେ ଡକ୍ଟର ମନୋରଞ୍ଜନ ପଟ୍ଟନାୟକ, ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ନରେଶ ଦାସ ଓ ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସଙ୍କ ସହିତ ମୋର ପରିଚୟ କରାଇଦେଇ ଓ୍ୱାଶିଂଟନ୍‌ରେ ସେମାନଙ୍କର ଅତିଥି ହେବି ବୋଲି ମୋତେ ବୁଝାଇଦେଇଥିଲେ ବି ମନଭିତରେ ଏକ ଚାପା ଉତ୍ତେଜନା ସୃଷ୍ଟି ହୋଇଥିଲା।

ତାଙ୍କ ଘରୁ ବିଦାୟ ନେବା ପୂର୍ବରୁ ଭାଇନା ଗୋଟିଏ ଦାମିକା ସାର୍ଟ ଆଣି ମୋ ପାଖରେ ଥୋଇ କହିଲେ, "ଏଇଟା ତମ ପାଇଁ ଜ୍ୟୋସ୍ନା ଭାଉଜ ଆଣିଛନ୍ତି, ତମେ ତାକୁ ପିନ୍ଧ।" ମୁଁ ତାଙ୍କୁ ବିନୟର ସହିତ କହିଲି, "ମୋର ସାର୍ଟଟି ନେବାରେ କିଛି ଆପତ୍ତି ନାହିଁ; କିନ୍ତୁ ଆପଣ ଜାଣିଛନ୍ତି ମୁଁ ଖଦଡ଼ ପିନ୍ଧେ। ଏ ସାର୍ଟ ଆପଣଙ୍କ ପାଖରୁ ନେଇ କାହିଁକି ଅନ୍ୟକାହାକୁ ଦେବି ? ମୁଁ ଏ ସାର୍ଟଟି ଗ୍ରହଣ କଲି ବୋଲି ଆପଣ ଧରିନିଅନ୍ତୁ।" ଜ୍ୟୋସ୍ନାଭାଉଜ ମଧ୍ୟ କେତେକ ପ୍ରେଜେଣ୍ଟେସନ୍ ପଦାର୍ଥ ଦେଲେ। ତାଙ୍କ ଘରୁ ବାହାରିଲା ବେଳେ କୃତଜ୍ଞତାରେ ମୁଣ୍ଡ ତଳକୁ ହୋଇଯାଇଥିଲା।

# ଆମେରିକା ରାଜଧାନୀ ଓ୍ୱାଶିଙ୍ଗଟନ ଡି.ସି.

ଓ୍ୱାଶିଙ୍ଗଟନ ଡି.ସି. (ଓ୍ୱାଶିଙ୍ଗଟନ-ଡିଷ୍ଟ୍ରିକ୍ଟ କଲମ୍ବିଆ) ହେଉଛି ବିଶ୍ୱର ସବୁଠାରୁ ଧନଶାଳୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକାର ରାଜଧାନୀ । ଏହି ମହାନ୍ ନଗରୀର ଗୋଟିଏ ପାଖରେ ପୋଟମାକ୍ ନଦୀ ଏବଂ ଅନ୍ୟପଟେ ମେରିଲାଣ୍ଡ ରହିଛି । ପରିବର୍ତ୍ତିତ ପରିସ୍ଥିତିରେ ଏଇ ସହରରୁ ବିଶ୍ୱର ରାଜନୀତି ଓ ଅର୍ଥନୀତିକୁ ନିୟନ୍ତ୍ରଣ କରାଯାଉଛି । ଓ୍ୱାଶିଙ୍ଗଟନରେ ଥିବା 'କ୍ୟାପିଟୋଲ'ର ଭିତ୍ତିପ୍ରସ୍ତର ଜର୍ଜ ଓ୍ୱାଶିଙ୍ଗଟନଙ୍କ ଦ୍ୱାରା ୧୭୯୩ ମସିହାରେ ସମ୍ପାଦିତ ହୋଇଥିଲା ଏବଂ ସାତବର୍ଷ ପରେ ଆମେରିକା କଂଗ୍ରେସର ମୁଖ୍ୟ କାର୍ଯ୍ୟାଳୟ ସେଠାକୁ ସ୍ଥାନାନ୍ତରିତ ହୋଇଥିଲା । ୧୮୧୪ ମସିହାରେ ଇଂରେଜମାନଙ୍କ ଆକ୍ରମଣରେ

ଏହାର ବହୁ ଅଂଶ ଭାଙ୍ଗିରୁଜି ଯାଇଥିଲା । ତାକୁ ମରାମତି କରାଯାଇ ପୂର୍ବାବସ୍ଥାକୁ ଆଣିବା ପାଇଁ ପାଞ୍ଚବର୍ଷ ସମୟ ଲାଗିଥିଲା । କ୍ୟାପିଟୋଲର ଉତ୍ତର ଓ ଦକ୍ଷିଣ ପାଖ କୋଠା ୧୮୫୭ ମସିହାରେ ଏବଂ ଗମ୍ବୁଜଟି ୧୮୬୩ ମସିହାରେ ନିର୍ମିତ ହୋଇଥିଲା । ଦୀର୍ଘଦିନ ପରେ ଉନ୍ନବିଂଶ ଶତାବ୍ଦୀରେ ୱାଶିଙ୍ଗଟନ ଡି.ସି. ସହରର ସୌନ୍ଦର୍ଯ୍ୟୀକରଣ କାମ ହାତକୁ ନିଆଯାଇଥିଲା । ନ୍ୟୁୟର୍କରେ ଥିବା ବିଶ୍ୱ ବାଣିଜ୍ୟ କେନ୍ଦ୍ରକୁ ଆତଙ୍କବାଦୀମାନେ ଧ୍ୱଂସ କରିଦେବା ପରେ ୱାଶିଙ୍ଗଟନ ସହରରେ ନିରାପତ୍ତା ବ୍ୟବସ୍ଥାକୁ ଅଧିକ ମଜଭୁତ କରାଯାଇଛି ।

## ଓଡ଼ିଆ ବୈଜ୍ଞାନିକ ଦମ୍ପତିଙ୍କ ଘରେ ତିନିଦିନ

ମଧ୍ୟାହ୍ନ ଭୋଜନ ପରେ ପ୍ରଫେସର ଦିଗମ୍ବର ମିଶ୍ର ମତେ ନେଇ ବର୍ମିଂହାମ୍ ବିମାନ ବନ୍ଦରରେ ଛାଡ଼ି ଦେଇ ଆସିଲେ । କାଳେ ଦୁଇଟି ବ୍ୟାଗେଜ ହେଲେ ଅଧିକା ଭଡ଼ା ଲାଗିବ ସେଥିପାଇଁ ମୁଁ ଗୋଟିଏ ବ୍ୟାଗ ଚେକିଂ କରାଇ ଅନ୍ୟଟି କ୍ୟାବିନ ବ୍ୟାଗ ଭାବରେ ସାଙ୍ଗରେ ନେଇଥିଲି । କିନ୍ତୁ 'ସାଉଥ ୱେଷ୍ଟ' ବିମାନରେ ଦୁଇଟି ବ୍ୟାଗ ବିନା ଶୁଳ୍କରେ ନେଇଗଲେ । ବର୍ମିଂହାମ ବିମାନବନ୍ଦରକୁ ଆମ ବିମାନଟି ଅପରାହ୍ନ ୨ଟା ୫ ମିନିଟରେ ଛାଡ଼ିଲା ଓ ୱାଶିଙ୍ଗଟନ (ବଲଟିମୋର) ବିମାନବନ୍ଦରରେ ଠିକ୍ ପାଞ୍ଚଟା ବେଳେ ଅବତରଣ କଲା । ମୁଁ ବ୍ୟାଗେଜ ନେଇ ବାହାରକୁ ଆସିବାର ଅଳ୍ପ ସମୟ ମଧ୍ୟରେ ଡକ୍ଟର ନରେଶ ଦାସ ଗାଡ଼ିରେ ଆସି ମତେ ସାଙ୍ଗରେ ନେଇଗଲେ । ବାଟରେ ତାଙ୍କ ବଡ଼ ଝିଅ ବାଗ୍ମୀ ଆମ ସାଙ୍ଗରେ ଗାଡ଼ିରେ ଉଠିଲା । ଗୋଟିଏ ମଲ୍‌ରୁ ସେମାନେ କିଛି ଜିନିଷ କିଣିଲେ । ଆମେ ସାଢ଼େ ସାତଟା ବେଳେ ଡକ୍ଟର ଦାସଙ୍କ ଘରେ ପହଞ୍ଚିଲୁ ।

ଡକ୍ଟର ଦାସ ଜଣେ ବୈଜ୍ଞାନିକ ଭାବରେ ଆମେରିକାରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ 'ନାସା'ରେ ଜଣେ ଖ୍ୟାତନାମା ବୈଜ୍ଞାନିକ ଭାବରେ କାର୍ଯ୍ୟରତ । ଛାତ୍ର ଜୀବନରୁ ସ୍ୱାମୀ ସ୍ତ୍ରୀ ଉଭୟ କୃତୀ ଛାତ୍ର ଭାବରେ ସୁନାମ ଅର୍ଜନ କରିଥିଲେ । ପରିବାରରେ ତିନିଜଣ ଝିଅ, ବାଗ୍ମୀ, ମୃଣାଳୀ ଓ ଶାଶ୍ୱତୀ । ବାଗ୍ମୀ ଜଣେ ଉଚ୍ଚକୋଟୀର ଓଡ଼ିଶୀ ନୃତ୍ୟଶିଳ୍ପୀ, ମୃଣାଳୀ ସଙ୍ଗୀତଜ୍ଞ । ଘରେ ସେମାନଙ୍କର କଳାର ଚର୍ଚ୍ଚା ହୁଏ । ସହରରୁ ଟିକିଏ ଦୂରରେ ସୁଦୃଶ୍ୟ ଘରଟିଏ ତୋଳିଛନ୍ତି । ହତା ମଧ୍ୟରେ ମାଛ ପୋଖରୀ ଓ ଫୁଲବଗିଚା । ଦୋତାଲାରେ ରାଧାକୃଷ୍ଣଙ୍କର ମନ୍ଦିରଟିଏ କରିଛନ୍ତି । ପରିବାରର ପ୍ରତ୍ୟେକ ସଦସ୍ୟ ସେଠି ପ୍ରତ୍ୟହ ଭଜନ କୀର୍ତ୍ତନ କରନ୍ତି । ଏକପକ୍ଷରେ ଆଧୁନିକ ବୈଜ୍ଞାନିକ କୌଶଳର ପ୍ରୟୋଗ, ଅନ୍ୟପକ୍ଷରେ ଭକ୍ତିଯୋଗର ଅଭ୍ୟାସ, ଏ ଦୁଇଟି ସ୍ରୋତର ମିଶ୍ରଣ ଘଟିଛି ସେ ପରିବାରରେ । ଆମେ ପହଞ୍ଚିଲା ପରେ ଡକ୍ଟର ଦାସଙ୍କ ଝିଅମାନେ ମୋ ବ୍ୟାଗ ନେଇ ତଳ ମହଲାରେ ଥିବା ଗେଷ୍ଟରୁମ୍‌ରେ ରଖିଦେଲେ । ସେତେବେଳକୁ ମିସେସ ଦାସ କର୍ମକ୍ଷେତ୍ରରୁ ଫେରି ନ ଥିଲେ । ତାଙ୍କୁ ଅପେକ୍ଷା ନ କରି ଡକ୍ଟର ଦାସ ଲୁଗାପଟା ବଦଳାଇ ମୋ ପାଇଁ ସ୍ନାକ୍ସ ପ୍ରସ୍ତୁତି କାମରେ ଲାଗିଗଲେ ଓ ଅଳ୍ପ ସମୟ ମଧ୍ୟରେ

କିଛି ପିଆଜି ପ୍ରସ୍ତୁତ କରି ମତେ ଡାଇନିଂ ଟେବୁଲକୁ ଡାକିଲେ । ମିସେସ ଦାସଙ୍କ ଅନୁପସ୍ଥିତିରେ ପିଆଜି କିପରି ହେଲା ବୋଲି ମୁଁ ଭାବୁଥିଲି । ଡକ୍ଟର ଦାସ କହିଲେ, ପାଶ୍ଚାତ୍ୟ ଦେଶମାନଙ୍କରେ କେହି କାହା ଉପରେ ନିର୍ଭରଶୀଳ ନୁହନ୍ତି । ସବୁକାମ ସମସ୍ତଙ୍କୁ କରିବାକୁ ପଡ଼େ । ଦୀର୍ଘଦିନ ବାହାରେ ରହିବା ଫଳରେ ଆମେ ସବୁ ସେଥିରେ ଅଭ୍ୟସ୍ତ ହୋଇଗଲୁଣି । ପିଲାମାନଙ୍କୁ ମଧ୍ୟ ସେହିପରି ଭାବରେ ଗଢ଼ାଯାଇଛି । ଯେତେ ପ୍ରତିକୂଳ ପରିସ୍ଥିତି ହେଲେ ବି ସେମାନେ ହାର ମାନିବେ ନାହିଁ ।

ପିଆଜି ଖାଇବା ଭିତରେ ନାନାଆଡୁ ନାନାକଥା ପଡ଼ିଲା । ଡକ୍ଟର ଦାସ ଓଡ଼ିଶାର ସାମାଜିକ ଓ ରାଜନୈତିକ ସ୍ଥିତି ବିଷୟରେ ଜାଣିବାକୁ ଚାହୁଥିଲେ । ମୋର ମଧ୍ୟ ଆମେରିକୀୟ ଜନଜୀବନ ବିଷୟରେ ବହୁତ କିଛି ଜାଣିବାର ଥିଲା । ଗପ ଭିତରେ ମିସେସ ଦାସ ଆସି ପହଞ୍ଚିଗଲେ । ତାଙ୍କ ସାଙ୍ଗରେ ଟରଣ୍ଟୋର 'ଓଶା' ଅଧିବେଶନ ସମୟରେ ଦେଖା ହୋଇଥିଲା । ତାଙ୍କ ଘରକୁ ମୋର ଆସିବା ବିଷୟରେ ସେ ଆଗରୁ ଖବର ପାଇଥିଲେ । ନାସାର ବୈଜ୍ଞାନିକ ହେଲେ ବି ତାଙ୍କର ବ୍ୟକ୍ତିଗତ ବ୍ୟବହାରରେ ତାହା ପ୍ରତିଫଳିତ ହେଉ ନ ଥିଲା । ବରଂ ଘରେ ସେ ଜଣେ ଦକ୍ଷ ଗୃହିଣୀ ଭାବରେ ନିଜକୁ ନିୟୋଜିତ କରିଥିଲେ । କଥା ପ୍ରସଙ୍ଗରେ ରାତିରେ ମୁଁ ଭାତ ଖାଇବି ନା ରୁଟି ଖାଇବି ବୋଲି ସେ ମତେ ପଚାରିଲେ । ମୁଁ କହିଲି, ଯାହା ହେଲେ ଚଳିବ । ସେଥିରେ ବ୍ୟସ୍ତ ହେବାର କିଛି ନାହିଁ । ଡକ୍ଟର ଦାସ ଓ ମୁଁ ତାଙ୍କ ଡ୍ରଇଁରୁମ୍‌କୁ ଯାଇ ଇଣ୍ଟରନେଟ୍‌ରେ ଓଡ଼ିଶା ଖବର ଦେଖିବାକୁ ଗଲୁ ଓ ମିସେସ୍ ଦାସ ରୋଷେଇ ଆରମ୍ଭ କଲେ । ଇଣ୍ଟରନେଟ୍‌ରେ 'ସମ୍ବାଦ' ପକ୍ଷରୁ ପରିବେଷଣ କରାଯାଉଥିବା ଓଡ଼ିଶାର ଘଟଣାବଳୀ ଆମେରିକାରେ ଖୁବ୍ ଲୋକପ୍ରିୟ ହୋଇପାରିଥିଲା । ଆମର ଟିଭି ଦେଖା ନସରୁଣୁ ମିସେସ ଦାସ ଟେବୁଲ ଉପରେ ଡିନର ରଖି ସାରିଥିଲେ । ଏତେ ବ୍ୟସ୍ତତା ଭିତରେ ମିସେସ ଦାସ ସେଦିନ ରାତିରେ ଚକୁଳି ପିଠା, ତରକାରି, ଡାଲି ତିଆରି କରିଥିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଖାଇବା ପରେ ମୋ ପାଖରେ ଥିବା ଶେଷ ରୁପାକଣ୍ଠି ମାଳଟି ମୁଁ ଯେତେବେଳେ ମିସେସ ଦାସଙ୍କ ହାତକୁ ବଢ଼ାଇ ଦେଲି, ସେ ଆନନ୍ଦରେ ବିଭୋର ହୋଇଯାଇଥିଲେ । କଥାବାର୍ତ୍ତା ମଝିରେ ଡକ୍ଟର ଦାସ ମତେ କହିଥିଲେ, "ଦେଖନ୍ତୁ ବସନ୍ତବାବୁ, ଆପଣ ଆମେରିକା ଗସ୍ତର ଶେଷ ପର୍ଯ୍ୟାୟରେ ଆସି ଏଠାରେ ପହଞ୍ଚିଛନ୍ତି । ଆପଣଙ୍କ ହାତରେ ମାତ୍ର ତିନିଦିନ ସମୟ । ଏ ସହର ଏତେ ବ୍ୟାପକ ଯେ ମାସ ମାସ ଧରି ବୁଲୁଥିଲେ ମଧ୍ୟ ସବୁ ଜାଗା ଦେଖିହେବ ନାହିଁ । ତେବେ ଯେତେଟା ଦେଖିହେବ, ସେଇ ଅନୁସାରେ ମୁଁ ଆପଣଙ୍କ ପାଇଁ କାର୍ଯ୍ୟକ୍ରମ ସ୍ଥିର କରିଛି । ଆପଣ ଆସନ୍ତାକାଲି ଟୁରିଷ୍ଟ ବସ୍ ଯୋଗେ ୱାଶିଙ୍ଗଟନ ଡି.ସି. ବୁଲି ଦେଖିବେ । ଆମ ଝିଅ ବାଗ୍ମୀ ଆପଣଙ୍କୁ ସେଥିରେ ସହାୟତା କରିବ । ପର୍ଯ୍ୟଟକମାନଙ୍କ ପାଇଁ ଅତି ଆରାମଦାୟକ ଶୀତତାପ ନିୟନ୍ତ୍ରିତ ବସ୍ ସବୁ ଚାଲିଛି । ଆପଣ ଗୋଟିଏ ଟିକେଟ କିଣି ଯେ କୌଣସି ବସ୍‌ରେ ଯେ କୌଣସି ସ୍ଥାନକୁ ଯାଇପାରିବେ । ଆଜି ଶୀଘ୍ର ଶୋଇ ଯାଆନ୍ତୁ । ସକାଳୁ ସାତଟା ପୂର୍ବରୁ ଯିବାକୁ ପଡ଼ିବ ।"

## ଟୁରିଷ୍ଟ ବସ୍‌ରେ ସହର ବୁଲା

ୱାଶିଂଙ୍ଗଟନ ଡି.ସି. ସମ୍ପର୍କରେ କଲେଜ ଜୀବନରୁ ବହୁତ କଥା ଶୁଣିଥିଲି । ତା'ଛଡ଼ା, ଯେଉଁମାନେ ଆମେରିକା ବୁଲିଆସୁଥିଲେ, ଫେରିଲା ପରେ ସେ ସହର ବିଷୟରେ ସେମାନେ ଅନେକ କଥା କହୁଥିଲେ । ସେ ସହରକୁ ବୁଲି ଦେଖିବା ପାଇଁ ସୁଯୋଗ ମିଳିଥିବାରୁ ମନ ଖୁସି ଥିଲା । ସେଥିପାଇଁ ଭୋରରୁ ନିଦ ଭାଙ୍ଗିଗଲା । କାମଦାମ ସାରି ବାହାରକୁ ଆସିଲାବେଳକୁ ମିସେସ ଦାସ ଓ ବାଗ୍ମୀ ପ୍ରସ୍ତୁତ ହୋଇ ସାରିଥିଲେ । ଡକ୍ଟର ଦାସଙ୍କର କାମଥିବାରୁ ସେ ଆଗରୁ ବାହାରକୁ ଚାଲିଯାଇଥିଲେ । ଆମେ ସମସ୍ତେ ଏକାଠି ଜଳଖିଆ ଖାଇଲୁ । ମିସେସ ଦାସ ଆମକୁ ରେଲୱେ ଷ୍ଟେସନରେ ଛାଡ଼ିଦେବା ପରେ ଆମେ ସେଠାରୁ ଟ୍ରେନ ଧରି ୱାଶିଙ୍ଗଟନ ଯିବୁ ବୋଲି ସେମାନେ ସ୍ଥିର ହୋଇଥିଲା । ଅଧଘଣ୍ଟାକ ମଧ୍ୟରେ ଆମେ ଷ୍ଟେସନରେ ପହଞ୍ଚିଗଲୁ । ମିସେସ ଦାସ ଆମକୁ ସେଠାରେ ଛାଡ଼ିଦେଇ ନିଜ କାମରେ ଚାଲିଗଲେ । ବାଗ୍ମୀ, ଓଡ଼ିଆ ଝିଅ ହେଲେ ବି ଆମେରିକାରେ ଜନ୍ମ ହୋଇଥିଲା । ସେ ଯେପରି ଭାବରେ ଇଂରାଜୀରେ କଥାବାର୍ତ୍ତା କରୁଥିଲା ସେଥିରୁ ଅଧାଅଧି ମୁଁ ବୁଝି ପାରୁ ନ ଥିଲି । ସେ ଫଟାଫଟ୍ ଶିଡ଼ିରେ ଓହ୍ଲାଇ ଚାଲିଯାଉଥିଲା, ପୁଣି ଦରକାର ହେଲେ ସେହିପରି ଶିଡ଼ିରେ ଉଠିଯାଉଥିଲା । ତା' ସାଙ୍ଗରେ ତାଳ ଦେଇ ଚାଲିବା ମୋ ପକ୍ଷରେ ସମ୍ଭବ ନ ଥିଲା । ଆସ୍ତେ ଆସ୍ତେ ଯିବାକୁ ବାଧହୋଇ ମୁଁ ବାଗ୍ମୀକୁ ଅନୁରୋଧ କଲି । ବାଟରେ ଦୁଇଟି ଟ୍ରେନ ବଦଳାଇ ଆମେ ୱାଶିଙ୍ଗଟନ ଡି.ସି.ରେ ପହଞ୍ଚିଲୁ । ଗୋଟିଏ ମେଟ୍ରୋ ବିଲଡିଂ ପାଖରେ ମତେ ଛାଡ଼ିଦେଇ ଗଲାବେଳେ ବାଗ୍ମୀ କହିଲା, "ଅଙ୍କଲ ଏଇଠୁ ମୁଁ ଅନ୍ୟଜାଗାକୁ ଯିବି । ଆପଣ ଅଳ୍ପବାଟ ଗଲାପରେ ଟୁରିଷ୍ଟ ବସ୍ ଟର୍ମିନସ୍ ପାଇବେ ଏବଂ ସେଠାରୁ ଟିକେଟ କିଣି ବସ୍‌ରେ ଉଠିଯିବେ । ବସ୍‌ରେ ଥିବା ଗାଇଡ୍ ଆପଣଙ୍କୁ ସବୁ ବୁଝାଇଦେବ । ମୁଁ ପାଞ୍ଚଟା ବେଳକୁ ଆସି ଏଇଠି ଅପେକ୍ଷା କରିଥିବି । ଆପଣ ଫେରିଲେ ସାଙ୍ଗହୋଇ ଯିବା ।" ସେ ଯିବା ପୂର୍ବରୁ ଘରୁ ଆଣିଥିବା ଗୋଟିଏ ଖାଇବା ପ୍ୟାକେଟ ଓ ଗୋଟିଏ ମୋବାଇଲ ଫୋନ ମତେ ଧରାଇ ଦେଇ କହିଲା, "ଆପଣଙ୍କର ଯଦି କିଛି ଅସୁବିଧା ହେବ ତେବେ ମତେ ଫୋନ୍ କରିବେ ।"

ଏତେବଡ଼ ସହର, ମାତ୍ର କେହି ଜଣେ ହେଲେ ମୋର ଜଣାଶୁଣା ନ ଥିଲେ । କୁଆଡ଼େ ଯିବି, କାହାକୁ ପଚାରିବି, ଏଇକଥା ଭାବି ଭାବି ଚାଲୁଥିଲି । ହଠାତ୍ ସାମନାରେ ଦେଖିଲି ଗୋଟାଏ ଜାଗାରେ କିଛି ଲୋକ ଲାଇନ୍‌ରେ ଛିଡ଼ାହୋଇଥିଲେ । ମୁଁ କାହାକୁ କିଛି ନ ପଚାରି ଲାଇନରେ ଛିଡ଼ା ହୋଇଗଲି । କାଉଣ୍ଟର ପାଖରେ ପହଞ୍ଚି ବୁଝିଲି ୱାଶିଙ୍ଗଟନ ମନୁମେଣ୍ଟ ଉପରକୁ ଯିବା ପାଇଁ ସେଠାରେ ପର୍ଯ୍ୟଟକମାନଙ୍କୁ ବିନା ମୂଲ୍ୟରେ ଅଗ୍ରିମ କୁପନ ଦିଆଯାଉଥିଲା । ସକାଳ ନଅଟାରୁ ପ୍ରତି ଅଧଘଣ୍ଟା ଅନ୍ତରରେ ମନୁମେଣ୍ଟ ଉପରକୁ ଯିବାକୁ ବ୍ୟବସ୍ଥା ଥିଲା । ଅଗ୍ରିମ କୁପନ ନେଇ ଯାହାର ଯେତେବେଳେ ପାଳି ପଡୁଥିଲା, ତାକୁ ସେପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡୁଥିଲା । ସେତେବେଳକୁ ସାଢ଼େନଅଟା ବାଜିଥିଲା ଓ ସାଢ଼େ ବାରଟା ବେଳେ ମନୁମେଣ୍ଟ ଉପରକୁ ଯିବାକୁ ମୋତେ କୁପନ ମିଳିଥିଲା । ଦୀର୍ଘ

ତିନିଘଣ୍ଟା କାଳ କ'ଣ କରିବି ଏଇକଥା ଭାବୁ ଭାବୁ ହଠାତ୍ ଗୋଟିଏ ଭାରତୀୟ ପରିବାରଙ୍କ ସହିତ ଦେଖା ହୋଇଗଲା । ସେମାନେ ମୋ ଭଳି ପ୍ରଥମଥର ପାଇଁ ଆମେରିକା ଯାଇଥିଲେ । ମୁଁ ସେମାନଙ୍କୁ ମୋର ପରିଚୟ ଦେଇ କଥାବାର୍ତ୍ତା କଲି । ସେମାନେ ତାମିଲନାଡୁରୁ ବୁଲିବାକୁ ଯାଇଥିଲେ । ଆମେ ଖବର ନେଇ ବୁଝିଲୁ, ସେଠାରୁ ଅଳ୍ପ ଦୂରରେ ଥିବା ଟୁରିଷ୍ଟ ବସ୍ ବୁକିଂ କାଉଣ୍ଟରରୁ ଟିକେଟ ନେଇ ସହର ବୁଲିହେବ । ଆମେ ସମସ୍ତେ ବୁକିଂ କାଉଣ୍ଟର ଆଡ଼େ ଗଲୁ ଓ ସେଠାରୁ ଜଣପିଛା କୋଡ଼ିଏ ଡଲାର ଲେଖାଏଁ ଦେଇ ଟିକେଟ କିଣିଲୁ । ଆମ ଆଗରୁ ଅନେକ ଲୋକ ଟୁରିଷ୍ଟ ବସ୍‌ରେ ଯିବା ପାଇଁ ଅପେକ୍ଷା କରିଥିଲେ । ସେମାନଙ୍କ ମଧ୍ୟରେ କେତକେ ବାଂଲାଦେଶ ନାଗରିକ ମଧ୍ୟ ଥିଲେ । ଆମର ପ୍ରଥମରୁ ସନ୍ଦେହ ହୋଇଥିଲା, ସେମାନେ ପାକିସ୍ତାନ ନା ବାଂଲାଦେଶ ଅଧିବାସୀ; କାରଣ ସେ ଗ୍ରୁପ୍‌ରେ ଥିବା ମହିଳାମାନେ ବୁର୍ଖା ଦ୍ୱାରା ସମସ୍ତ ଶରୀରକୁ ଆବୃତ୍ତ କରିଥିଲେ । କିନ୍ତୁ ସେମାନଙ୍କ କଥାବାର୍ତ୍ତା ଶୁଣି ସେମାନେ ବାଂଲାଦେଶ ଲୋକ ବୋଲି ଆମର ହୃଦ୍‌ବୋଧ ହୋଇଥିଲା ।

ସେ ବସ୍ ଟର୍ମିନସ୍‌ରୁ ସହରର ଉଭୟ ପୂର୍ବ ଓ ପଶ୍ଚିମ ଦିଗକୁ ଟୁରିଷ୍ଟବସ୍ ସବୁ ଯାଉଥିଲା । ଯେଉଁମାନେ ପୂର୍ବ ଦିଗକୁ ପ୍ରଥମେ ଯାଉଥିଲେ, ପରେ ସେମାନଙ୍କୁ ସେଠାରେ ବସ୍ ବଦଳାଇ ଆଉଥରେ ପଶ୍ଚିମକୁ ଯିବାକୁ ପଡୁଥିଲା । ଆମେ କିଛି ନ ବିଚାରି ଯେଉଁ ବସ୍‌ଟି ପ୍ରଥମେ ଆସିଲା ସେଥିରେ ଚଢ଼ିଗଲୁ । ବସ୍‌ର ଗତି ସହିତ ତାଳ ଦେଇ ବସ୍ ଭିତରେ ଥିବା ଗାଇଡ୍‌ଙ୍କ କଣ୍ଠରୁ ଭାସିଆସୁଥିଲା ରନିଂ କମେଣ୍ଟ୍ରି । କିଛିବାଟ ଯିବା ପରେ ବାଟରେ ପଡ଼ିଲା ନ୍ୟାସନାଲ ଆର୍ଟ ଗ୍ୟାଲେରୀ । ଗ୍ୟାଲେରୀଟି ଦୁଇଟି ଭାଗରେ ବିଭକ୍ତ ହୋଇ ରାସ୍ତାର ଦୁଇ ପାଖରେ ଦୁଇଟି କୋଠାରେ କାର୍ଯ୍ୟ କରୁଥିଲା ଏବଂ ଗୋଟିଏ ଭୂତଳ ସଡ଼କ ଦ୍ୱାରା ଦୁଇଟି କୋଠାକୁ ସଂଯୋଗ କରାଯାଇଥିଲା । ଅଳ୍ପ ସମୟ ପରେ ଆସିଲା ଆମେରିକାର ପ୍ରସିଦ୍ଧ 'କ୍ୟାପିଟୋଲ' ବିଲ୍‌ଡିଂ । କ୍ୟାପିଟୋଲକୁ ପାଖରୁ ଦେଖିବା ପାଇଁ ମୁଁ ସେଠାରେ ଓହ୍ଲାଇ ପଡ଼ିଲି । ମୋ ସହିତ ତାମିଲନାଡୁ ପରିବାରଟି ମଧ୍ୟ ଓହ୍ଲାଇ ପଡ଼ିଲେ । ଆମେ କ୍ୟାପିଟୋଲ ସାମନାରେ ଥିବା ଲନ୍‌ରେ କିଛି ସମୟ ବୁଲିଲୁ । ସେମାନେ ସାଙ୍ଗରେ 'ପ୍ୟାକ୍ ଲଞ୍ଚ' ଆଣିଥିଲେ । ସେଠାରେ ବସି ଖାଇଲେ । ସେମାନଙ୍କ ସହିତ ଯୋଗଦେବା ପାଇଁ ମତେ ଅନୁରୋଧ କରିଥିଲେ କିନ୍ତୁ ମୋର ଖାଇବା ସମୟ ହୋଇ ନ ଥିବାରୁ ମୁଁ ନମ୍ରତାର ସହିତ ନାହିଁକଲି । ଅଧଘଣ୍ଟା ପରେ ଆଉ ଗୋଟିଏ ଟୁରିଷ୍ଟ ବସ୍ ଆସି ସେଠାରେ ଅଟକିଲା । ମୋର ବୁଲାବୁଲି ସରିଯାଇଥିବାରୁ ମୁଁ ସେ ବସ୍‌ରେ ଉଠିଗଲି । ବାଟରେ ଅନେକ ଦର୍ଶନୀୟ ସ୍ଥାନ ପଡ଼ିଲା । ମାତ୍ର ସବୁ ଜାଗାରେ ଓହ୍ଲାଇ ସେସବୁ ଦେଖିବା ସମ୍ଭବପର ନ ଥିଲା । ପ୍ରାୟ ଦୁଇଘଣ୍ଟା ବୁଲାଇ ବସ୍‌ଟି ଯେଉଁ ସ୍ଥାନରୁ ଆମକୁ ନେଇଥିଲା, ସେଇଠି ଯାଇ ରହିଲା ଓ ଆମେ ସବୁ ସେଥିରୁ ଓହ୍ଲାଇଗଲୁ ।

ଅପରାହ୍ନ ସାଢ଼େ ବାରଟା ବେଳେ ୱାଶିଙ୍ଗଟନ ମନୁମେଣ୍ଟ ଉପରକୁ ଯିବା ପାଇଁ ମୁଁ କୁପନ ପାଇଥିଲି । ସେତେବେଳକୁ ସମୟ ବାରଟା ହୋଇଯାଇଥିଲା । ମୁଁ ସମୟ ନଷ୍ଟ ନ କରି ମନୁମେଣ୍ଟ ପାଖକୁ ଚାଲିଲି । ଯେଉଁମାନେ ମୋ ଭଳି ସାଢ଼େ ବାରଟାରେ

ଉପରକୁ ଯିବା ପାଇଁ କୁପନ ପାଇଥିଲେ, ସେଠାରେ ଆଗରୁ ଅପେକ୍ଷା କରିଥିଲେ । ମୁଁ ସେମାନଙ୍କ ସାଙ୍ଗରେ ଯାଇ ବସିଲି ଓ ମନୁମେଣ୍ଟ ଉପରକୁ ଯିବା ପାଇଁ ସୂଚନା ମିଳିଲା ପରେ ଆମେ ଅଭ୍ୟର୍ଥନା କକ୍ଷରେ ପଶିଲୁ । ସେଠାରେ ଆମର ସବୁ ଜିନିଷ ତନଖି ହେଲା । ସାଙ୍ଗରେ ଥିବା ବ୍ୟାଗ ମଧ୍ୟ ନେବାକୁ ଅନୁମତି ମିଳିଲା ନାହିଁ । ସେଠାରେ ନିରାପତ୍ତାରକ୍ଷୀଙ୍କ ଦାୟିତ୍ୱରେ ବ୍ୟାଗ ରଖି ଆମେ ସବୁ ଲିଫ୍ଟରେ ଉପରକୁ ଗଲୁ । ପାଞ୍ଚଶହ ପଞ୍ଚାବନ ଫୁଟ ବିଶିଷ୍ଟ ୱାଶିଙ୍ଗଟନ ମନୁମେଣ୍ଟଟି ଆମେରିକାର ସବୁଠାରୁ ଉଚ୍ଚକୋଠା । ତା' ଉପରକୁ ଯିବାକୁ ମାତ୍ର ତିନିମିନିଟ ସମୟ ଲାଗିଥିଲା । ଉପର ମହଲାରେ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜା ଯାଇଥିଲା ଓ ମୋ ଭଳି ବିଭିନ୍ନ ଦେଶରୁ ଯାଇଥିବା ପର୍ଯ୍ୟଟକମାନେ ମନୁମେଣ୍ଟ ଉପରୁ ୱାଶିଙ୍ଗଟନ ସହରର ମନୋରମ ଦୃଶ୍ୟକୁ ଉପଭୋଗ କରିଥିଲେ । ଅଧଘଣ୍ଟା ପରେ ତଳକୁ ଓହ୍ଲାଇବା ପାଇଁ ଘୋଷଣା ଶୁଣି ଲିଫ୍ଟରେ ଆମେ ତଳକୁ ଓହ୍ଲାଇଲୁ । ସେଦିନ ୱାଶିଙ୍ଗଟନ ସହରରେ ଉତ୍ତାପ ଥିଲା ୩୦ ଡିଗ୍ରୀ ସେଲସିଅସ । ଯେଉଁମାନେ ସୁଟ୍ ପିନ୍ଧି ଘରୁ ବାହାରିଥିଲେ ସେମାନଙ୍କର ଦୁର୍ଦ୍ଦଶା ବଢ଼ିଯାଇଥିଲା । ଗୋଟିଏ ହାତରେ ଲାପଟପ୍ ବ୍ୟାଗ ଓ ଅନ୍ୟ ହାତରେ ପିନ୍ଧିଥିବା କୋଟଟି ଧରି ସେମାନେ ରାସ୍ତାରେ ଚାଲୁଥିଲେ । ତଳକୁ ଆସି ଘାସପଡ଼ିଆରେ କିଛି ସମୟ ବସିଲା ବେଳେ ବାଗ୍ଚୀ ଦେଇଥିବା ପ୍ୟାକେଟଟି ଖୋଲିଲି । ସେଥିରେ ସାଦା ସାଣ୍ଡୱିଚ୍, ଆପଲ ସାଙ୍ଗକୁ କିଛି ପେସ୍ତାବାଦାମ ଓ କିସମିସ ଥିଲା । ପଡ଼ିଆରେ ବସି ସେସବୁ ଖାଇଲା ବେଳେ ଭାରି ଏକା ଏକା ବୋଧ ହେଲା । ଜୀବନରେ ପରିବାର ଓ ସାଙ୍ଗସାଥୀଙ୍କ ଉପସ୍ଥିତି ଯେ କେତେ ଗୁରୁତ୍ୱପୂର୍ଣ୍ଣ ସେଦିନ ମୁଁ ସେକଥା ଅନୁଭବ କରିଥିଲି । ୱାଶିଙ୍ଗଟନର ଯେଉଁ ଅଞ୍ଚଳଗୁଡ଼ିକ ଦେଖିବାକୁ ବାକି ରହିଯାଇଥିଲା, ତାକୁ ଦେଖିବା ଉଦ୍ଦେଶ୍ୟରେ ମୁଁ ଟୁରିଷ୍ଟ ବସ୍‌ର ସନ୍ଧାନରେ ଚାଲିଲି । ବସ୍‌ରେ ଗଲାବେଳେ ମୁଁ 'ଭିଏଟନାମ ଭେଟେରାନ୍ସ ମେମୋରିଆଲ' ପାଖରେ ଓହ୍ଲାଇଗଲି । 'ଭି' ଭଳି ଦେଖିବାକୁ ଏହି କୋଠାଟି କଳା ମାର୍ବଲରେ ତିଆରି ହୋଇଥିଲା । ଭିଏଟନାମ ଉପରେ ଆମେରିକାର ଏକଚାଟିଆ ଆକ୍ରମଣ ସମୟରେ ନିହତ କିମ୍ବା ନିଖୋଜ ହୋଇଥିବା ୫୮ ହଜାର ଆମେରିକୀୟମାନଙ୍କର ନାମ ସେ ମନୁମେଣ୍ଟରେ ଲେଖାଯାଇଥିଲା । ମାୟାଲିନ୍ ନାମକ ୨୧ ବର୍ଷ ବୟସ୍କ ଜଣେ ଛାତ୍ରଙ୍କ ଦ୍ୱାରା ସେ ମନୁମେଣ୍ଟର ନକ୍ସା ପ୍ରସ୍ତୁତ କରାଯାଇଥିଲା । ଐତିହାସିକ ଦୃଷ୍ଟିରୁ ଏହି ମନୁମେଣ୍ଟର ଗୁରୁତ୍ୱ ଥିବାରୁ ପ୍ରତିଦିନ ସେଠାକୁ ଶହଶହ ଦର୍ଶକ ଯାଉଥିଲେ ।

ସେଦିନ ଶେଷ ଦର୍ଶନୀୟ ସ୍ଥାନ ଥିଲା 'ହ୍ୱାଇଟ୍ ହାଉସ୍' । ଆମେରିକାର ସବୁଠାରୁ ସମ୍ମାନଜନକ ଓ ଗୁରୁତ୍ୱପୂର୍ଣ୍ଣ ଅଟ୍ଟାଳିକା ଭାବରେ ହ୍ୱାଇଟ୍ ହାଉସ୍‌ର ପ୍ରତିଷ୍ଠା ରହିଛି । ଦୀର୍ଘଦିନ ହେଲା ଏହା ଆମେରିକା ରାଷ୍ଟ୍ରପତିମାନଙ୍କର ବାସଭବନ ଭାବରେ ବ୍ୟବହୃତ ହୋଇଆସୁଛି । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରାଷ୍ଟ୍ରପତିମାନେ ନିଜ ନିଜ ପସନ୍ଦ ମୁତାବକ ଏହି ବିଶ୍ୱବିଖ୍ୟାତ ପ୍ରାସାଦଟିକୁ ସଜାଇଛନ୍ତି । ଜାକଲିନ୍ କେନେଡି ଏହାକୁ ନିଜର ସୌଖୀନ ଇଚ୍ଛା ମୁତାବକ ପୁନର୍ବିନ୍ୟାସ କରିଥିଲା ବେଳେ ଫ୍ରାଙ୍କଲିନ୍ ରୁଜଭେଲ୍ଟ ହ୍ୱାଇଟ୍ ହାଉସ

ଭିତରେ ସନ୍ତରଣାଗାରଟିଏ ତିଆରି କରିଥିଲେ । ସେହିଭଳି ବିଲ୍ କ୍ଲିଣ୍ଟନ ସକାଳେ ଦଉଡ଼ିବା ପାଇଁ ଗୋଟିଏ ରନିଂଟ୍ରାକ୍‌ର ବ୍ୟବସ୍ଥା କରିଥିଲେ । ରାଷ୍ଟ୍ରପତି ଡବ୍ଲ୍ୟୁ. ବୁଶ୍ ଖେଳିବା ପାଇଁ ଗୋଟିଏ ଟେନିସ କୋର୍ଟ ନିର୍ମାଣ କରାଇଥିଲେ । ଆଗରୁ ହ୍ୱାଇଟ୍ ହାଉସ୍ ଭିତରକୁ ସାଧାରଣ ପର୍ଯ୍ୟଟକମାନଙ୍କୁ ଯିବା ପାଇଁ ଅନୁମତି ମିଳୁଥିଲା । ମାତ୍ର ସନ୍ତ୍ରାସବାଦୀଙ୍କ ଦ୍ୱାରା ବିଶ୍ୱବାଣିଜ୍ୟ କେନ୍ଦ୍ର ଧ୍ୱଂସ ହେବା ପରେ ଏହା ଭିତରକୁ ଯିବା ଆସିବା ଉପରେ କେତେକ କଟକଣା ଜାରି କରାଯାଇଥିଲା । ତେବେ ଦଶଜଣିଆ ସଦସ୍ୟ ବିଶିଷ୍ଟ ପର୍ଯ୍ୟଟକମାନେ ଆଗରୁ ଆବେଦନ କଲେ ସେମାନଙ୍କ ଆବେଦନପତ୍ର ଯାଞ୍ଚ କରାଯାଇ ଅନୁମତି ପତ୍ର ମିଳୁଥିଲା । ତା'ଛଡ଼ା ଆମେରିକୀୟମାନେ ସେମାନଙ୍କ ରାଜ୍ୟର କଂଗ୍ରେସ ସଦସ୍ୟମାନଙ୍କ ମାଧ୍ୟମରେ ଏବଂ ବାହାର ଦେଶର ନାଗରିକମାନେ ନିଜ ଦେଶରେ ଥିବା ଆମେରିକା କନସୁଲେଟ କିମ୍ୱା ୱାଶିଙ୍ଗଟନରେ ଥିବା ସେମାନଙ୍କ ଦେଶର କନସୁଲେଟ ଜରିଆରେ ଆବେଦନ କଲେ ସେମାନଙ୍କୁ ଅନୁମତିପତ୍ର ମିଳୁଥିଲା । ନିରାପତ୍ତା ଦୃଷ୍ଟିରୁ ଭିତରେ ପ୍ରବେଶ ବ୍ୟବସ୍ଥା ବନ୍ଦ ଥିବାରୁ ମୁଁ ଓ ଅନ୍ୟମାନେ ସାମନା ଗେଟ ବାଟେ ହ୍ୱାଇଟ୍ ହାଉସ୍‌ର ସାମାନ୍ୟ ଦୃଶ୍ୟ ଦେଖିବାର ସୁଯୋଗ ପାଇଥିଲୁ । ଯେଉଁମାନେ କୌଣସି କାରଣରୁ ଏ ପ୍ରାସାଦ ମଧ୍ୟକୁ ଯାଇପାରୁ ନ ଥିଲେ ସେମାନଙ୍କ ସୁବିଧା ପାଇଁ ହ୍ୱାଇଟ୍ ହାଉସ୍ ସାମନାରେ ଥିବା 'ଭିଜିଟର୍‌ସ ସେଣ୍ଟର'ରେ ଚିତ୍ର ମାଧ୍ୟମରେ ସବୁ ବିଷୟ ବୁଝାଇବାର ବ୍ୟବସ୍ଥା ହୋଇଥିଲା ।

ସମୟ ଚାରିଟା ବାଜି ଯାଇଥିଲା । ଗୋଡ଼ ଥକି ପଡ଼ିଥିଲା ଓ ଦେହ ମଧ୍ୟ ଅବଶ ଲାଗୁଥିଲା । ତା' ସତ୍ତ୍ୱେ ଆହୁରି ବୁଲିବା ପାଇଁ ମନରେ ଆଗ୍ରହ ଥିଲା । କିନ୍ତୁ ମୁଁ ସ୍ଥିର କଲି ଆଉ ନ ବୁଲି ରେଲୱେ ଷ୍ଟେସନକୁ ଫେରିଯିବି । ଷ୍ଟେସନ ସେଠାରୁ ପ୍ରାୟ ଦୁଇମାଇଲ ଦୂର । ଚାଲିକରି ଯିବା ବ୍ୟତୀତ ଅନ୍ୟ କିଛି ଉପାୟ ନ ଥିଲା । ସେତିକି ବାଟ ଚାଲିବା ପାଇଁ ମତେ ଅଧଘଣ୍ଟାକରୁ ଅଧିକ ସମୟ ଲାଗିଥିଲା । ଷ୍ଟେସନରେ ପହଞ୍ଚି ମୁଁ ପ୍ରଥମେ ବାଗ୍ମୀକୁ ଫୋନ କଲି । ସକାଳେ ଯେଉଁ ସ୍ଥାନରେ ଆମେ ଟ୍ରେନରୁ ଓହ୍ଲାଇଥିଲୁ, ସେହିଠାରେ ଅପେକ୍ଷା କରିବାକୁ ସେ ମତେ ଅନୁରୋଧ କରି ପନ୍ଦର ମିନିଟ ଭିତରେ ଆସି ପହଞ୍ଚିବ ବୋଲି କହିଥିଲା । ବାଗ୍ମୀ ଆସିବା ପରେ ଆମେ ଟ୍ରେନ ଧରି ଫେରିଲୁ । ଷ୍ଟେସନ ବାହାରେ ମିସେସ ବିଜ୍ଞାନୀ ଦାସ ଆମପାଇଁ ଅପେକ୍ଷା କରିଥିଲେ । ଆମେ ତାଙ୍କ ସାଙ୍ଗରେ ଘରକୁ ଫେରିଲୁ । "ବୁଲାବୁଲି କେମିତି ହେଲା" ବୋଲି ବାଟରେ ମିସେସ ଦାସ ମତେ ପଚାରିଲେ । ମୁଁ ତାଙ୍କୁ ମୋ ଅନୁଭୂତି ସମ୍ପର୍କରେ କହିଲି, ''ଦେଖନ୍ତୁ, ସ୍ଥାନ ଯେତେ ଆକର୍ଷଣୀୟ ଓ ମନୋରମ ହେଲେ ବି ଏକୁଟିଆ ବୁଲିଲେ ତାକୁ ଉପଭୋଗ କରିହୁଏ ନାହିଁ । ତେବେ ଯେତିକି ବୁଲିଲି ଯେତିକି ଦେଖିଲି ସେସବୁ ମୋ ପାଇଁ ଅଭୁଲା ହୋଇ ରହିଯିବ ।"

## କଲମ୍ବିଆ ପବ୍ଲିକ ଲାଇବ୍ରେରୀରେ କେଇଘଣ୍ଟା

ଡକ୍ଟର ନରେଶ ଦାସ ମୋ ପାଇଁ ଗୋଟିଏ ଦିନ ଖାଲି ରଖିଥିଲେ । ଜଳଖିଆ ପର୍ବ ଶେଷ ପରେ ମତେ ସାଙ୍ଗରେ ନେଇ ବୁଲାଇବା ପାଇଁ ବାହାରିଲେ । ପ୍ରଥମେ ମୁଁ ଟିକିଏ

କୁଣ୍ଠିତ ହେଉଥିଲି । ମୋ ପାଇଁ ସେମାନେ ଏତେ ତ୍ୟାଗକଲେଣି । ଘରେ ରଖି ସବୁ ପ୍ରକାର ଚର୍ଚ୍ଚା କଲେଣି, ତା'ପରେ ପୁଣି ସହର ବୁଲାଇବେ । ମୋ ମନୋଭାବକୁ ଦେଖି ଡକ୍ଟର ଦାସ କହିଲେ, "ଦେଖନ୍ତୁ ମିଃ ଦାସ, ଆପଣ ନିକଟ ଭବିଷ୍ୟତରେ ଆଉ ଥରେ ଆମେରିକା ବୁଲିବାକୁ ଆସିବେ କି ନାହିଁ ସେକଥା ମୁଁ ଜାଣିନାହିଁ । ତେବେ ଯେତେବେଳେ ଥରେ ଆସିଛନ୍ତି, ଯେତେଟା ପାରିବେ ବୁଲିଯାଆନ୍ତୁ । ଆପଣଙ୍କ ଅଭିଜ୍ଞତା ଓ ଅନୁଭୂତି ଅନ୍ୟମାନଙ୍କ ପାଇଁ ନିଶ୍ଚିତ ଭାବରେ ମାର୍ଗଦର୍ଶକ ହେବ । ଆପଣଙ୍କ ଆସିବା ଖବର ପାଇବା ପରେ ମୁଁ ଆପଣଙ୍କ ପାଇଁ ଗୋଟିଏ ଦିନ ଖାଲି ରଖିଛି । ଆପଣ ସେଥିପାଇଁ ଚିନ୍ତା କରୁଛନ୍ତି କାହିଁକି ?" ଡକ୍ଟର ଦାସଙ୍କ କଥା ପରେ ମୋର ଆଉ କିଛି କହିବାର ନ ଥିଲା । ମୁଁ ତାଙ୍କ ସାଙ୍ଗରେ ଯାଇ କାର୍‌ରେ ବସିଲି ।

ଗାଡ଼ିରେ ଗଲାବେଳେ ଅନେକ ବଜାର ବାଟେ ଆମେ ଗଲୁ । ଡକ୍ଟର ଦାସ ସେସବୁ ବଜାର ସମ୍ପର୍କରେ ମତେ ବୁଝାଉଥିଲେ । ତାଙ୍କର କଲମ୍ବିଆ ଡିଷ୍ଟ୍ରିକ୍ଟ ଲାଇବ୍ରେରୀରୁ କିଛି ବହି ଆଣିବାର ଥିଲା । ଲାଇବ୍ରେରୀକୁ ଯିବା ପୂର୍ବରୁ ମୁଁ ସେଠାକୁ ଯିବା ପାଇଁ ଆଗ୍ରହୀ କି ନାହିଁ ସେ କଥା ଜାଣିବା ପାଇଁ ସେ ଚାହିଥିଲେ । ମୁଁ ହଁ କରିବାରୁ ଆମେ ଆଉ କୁଆଡ଼େ ନ ଯାଇ ସିଧାସଳଖ ଲାଇବ୍ରେରୀ ଆଡ଼େ ଚାଲିଲୁ । ଏକ ପ୍ରଶସ୍ତ ଅଟ୍ଟାଳିକା ସାମନାରେ ଆମ ଗାଡ଼ି ଅଟକିଲା । ପାର୍କିଂରେ ଗାଡ଼ି ରଖି ଆମେ ଦୁହେଁ ଲାଇବ୍ରେରୀ ଭିତରେ ପଶିଲୁ । ତା ଭିତରକୁ ଯିବା ପାଇଁ ଡକ୍ଟର ଦାସଙ୍କର ଅନୁମତିପତ୍ର ଥିଲା ଓ ତାଙ୍କ ଅତିଥି ଭାବରେ ମୁଁ ଭିତରକୁ ଯାଇପାରିଲି । ଲାଇବ୍ରେରୀଟିରେ ଚାରୋଟି ପ୍ରକାଣ୍ଡ ହଲ୍ ଥିଲା । ସେଥିମଧ୍ୟରୁ ଗୋଟିଏ ରିଡିଂ ରୁମ୍ ବା ପଠନାଗାର ଏବଂ ଅନ୍ୟ ତିନୋଟି ପୁସ୍ତକାଗାର । ଆମେ ଲାଇବ୍ରେରୀରେ ପହଞ୍ଚିଲା ବେଳକୁ ସେଠାରେ ଶତାଧିକ ଛାତ୍ରଛାତ୍ରୀ ଓ ଗବେଷକ ଅଧ୍ୟୟନରତ ଥିଲେ । କିନ୍ତୁ କେଉଁଠି କିଛି ଶବ୍ଦ ଶୁଣାଯାଉ ନ ଥିଲା । ଆମେ ଯାଇ ଖାଲିଥିବା ଦୁଇଟି ଚଉକିରେ ବସିଲୁ । ସବୁ ଟେବୁଲରେ କମ୍ପ୍ୟୁଟର ଲାଗିଥିଲା । ଲାଇବ୍ରେରୀରେ ଥିବା ପୁସ୍ତକଗୁଡ଼ିକର ତାଲିକା କମ୍ପ୍ୟୁଟରରେ ରଖାଯାଇଥିଲା । ଯାହାର ଯେଉଁ ପୁସ୍ତକ ଆବଶ୍ୟକ ହେଉଥିଲା ସେ କମ୍ପ୍ୟୁଟର ମାଧ୍ୟମରେ ସେ ପୁସ୍ତକ ଲାଇବ୍ରେରୀର କେଉଁ ହଲ୍‌ର କେଉଁ ଥାକରେ ଅଛି, ସେସବୁ ବିଷୟରେ ସ୍ପଷ୍ଟ ସୂଚନା ପାଇଯାଉଥିଲା । ସମଗ୍ର ଲାଇବ୍ରେରୀଟି ବୈଜ୍ଞାନିକ ଜ୍ଞାନକୌଶଳରେ ପରିଚାଳିତ ହେଉଥିଲା । ଲାଇବ୍ରେରୀରେ ଶୃଙ୍ଖଳା ରକ୍ଷା ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଉଥିବା ଫଳରେ ପଠନରତ ଛାତ୍ରଛାତ୍ରୀ କିମ୍ବା ଗବେଷକମାନଙ୍କର କୌଣସି ଅସୁବିଧା ହେଉ ନ ଥିଲା । ସ୍ୱଳ୍ପ ସମୟ ମଧ୍ୟରେ ସେମାନେ ଚାହୁଁଥିବା ପୁସ୍ତକ ପାଇଯାଉଥିଲେ । ଡକ୍ଟର ଦାସ ସେ ଲାଇବ୍ରେରୀକୁ ବାରମ୍ବାର ଯାତାୟାତ କରି ସେଠାକାର ପ୍ରଚଳିତ ପଦ୍ଧତି ସହିତ ପରିଚିତ ଥିବାରୁ ତାଙ୍କ ପକ୍ଷରେ ବହି ପାଇବା ପାଇଁ କିଛି ଅସୁବିଧା ହେଲା ନାହିଁ ।

ଲାଇବ୍ରେରୀର ପରିଚାଳନା ସମ୍ପର୍କରେ ମୁଁ ଜାଣିବାକୁ ଚାହିଁଲାରୁ ଡକ୍ଟର ଦାସ ମତେ ଅଧ୍ୟକ୍ଷଙ୍କ ରୁମ୍‌କୁ ନେଇଗଲେ । ଅଧ୍ୟକ୍ଷ ଆମକୁ ସ୍ୱାଗତ କଲାବେଳେ ମୁଁ ଜଣେ

ସାମ୍ବାଦିକ ହୋଇଥିବା ଜାଣି ବହୁତ ଖୁସି ହେଲେ । ତାଙ୍କ କଥାବାର୍ତ୍ତାରୁ ଜାଣିଲି, ଲାଇବ୍ରେରୀର ଦୁଇଟି ଶ୍ରେଣୀର ସଦସ୍ୟ ରହିଥିଲେ । ଗୋଟିଏ ଶ୍ରେଣୀର ସଦସ୍ୟ ଲାଇବ୍ରେରୀକୁ ଯାଇ ଅଧ୍ୟୟନ ଓ ଗବେଷଣା କରୁଥିଲା ବେଳେ ଅନ୍ୟ ଶ୍ରେଣୀର ସଦସ୍ୟମାନେ ଘରକୁ ପୁସ୍ତକ ନେଉଥିଲେ । ଆମେରିକାରେ ବାସକରୁଥିବାର ପ୍ରମାଣପତ୍ର ସହ ବ୍ୟକ୍ତିଗତ ପରିଚୟପତ୍ର ଦେଖାଇ ଯେ କୌଣସି ବ୍ୟକ୍ତି ସେ ଲାଇବ୍ରେରୀର ସଦସ୍ୟ ହୋଇପାରୁଥିଲେ । ଯେଉଁ ସଦସ୍ୟମାନେ ଘରକୁ ପୁସ୍ତକ ନେଉଥିଲେ, ସେଥିପାଇଁ ସେମାନଙ୍କୁ ନିର୍ଦ୍ଦିଷ୍ଟ ଦେୟ ଦେବାକୁ ପଡୁଥିଲା ଏବଂ ନିର୍ଦ୍ଧାରିତ ସମୟ ମଧ୍ୟରେ ପୁସ୍ତକ ଫେରାଇବାକୁ ହେଉଥିଲା । ନିୟମ ଭଙ୍ଗକାରୀମାନଙ୍କ ବିରୋଧରେ ଦଣ୍ଡବିଧାନର ବ୍ୟବସ୍ଥା ଥିଲେ ହେଁ ସଦସ୍ୟମାନଙ୍କର ସଚେତନତାବୋଧ ଯୋଗୁ ଦଣ୍ଡବିଧାନ କରିବାର କୌଣସି ଆବଶ୍ୟକତା ପଡୁ ନ ଥିଲା । ଲାଇବ୍ରେରୀର ବିଭିନ୍ନ ବିଭାଗ ବୁଲିଲା ବେଳକୁ ଦୁଇଘଣ୍ଟା ସମୟ ବିତିଯାଇଥିଲା ।

## ଡଲାର ସପ୍: ସାଧାରଣ ନାଗରିକଙ୍କ ଦୋକାନ

ବାଟରେ ଆସିଲା ବେଳେ ଗୋଟାଏ ଜାଗାରେ 'ଡଲାର ସପ୍' ଲେଖାଥିବା ସାଇନବୋର୍ଡଟିଏ ଦେଖି ଏପରି ନାମକରଣ କାହିଁକି ହୋଇଛି ବୋଲି ଡକ୍ଟର ଦାସଙ୍କୁ ପଚାରିଲି । ସେ ତାର ଅର୍ଥ ବୁଝାଇବା ସହିତ ଗାଡ଼ି ନେଇ ଡଲାର ସପ୍ ସାମନାରେ ଥିବା ପାର୍କିଂରେ ରଖି ତା ଭିତରକୁ ଯିବାକୁ ମତେ କହିଲେ । 'ଡଲାର ସପ୍'ର ଦୁଇଟି ବିରାଟ ହଲ୍ ଥିଲା । ଗୋଟିକରେ ଖାଦ୍ୟ ସାମଗ୍ରୀ ଥିଲା ବେଳେ ଅନ୍ୟଟିରେ ଗୃହୋପକରଣମାନ ବିକ୍ରି କରାଯାଉଥିଲା । ସେଠାରେ ବିକ୍ରି ହେଉଥିବା ପ୍ରତ୍ୟେକ ପଦାର୍ଥର ମୂଲ୍ୟ ଗୋଟିଏ ଡଲାର ହୋଇଥିବାରୁ ଦୋକାନଟିର ନାଁ 'ଡଲାର ସପ୍' ହୋଇଥିବା କଥା ଜାଣିଲି । ଭିତରକୁ ଯାଇ ଦେଖିଲି ଦୋକାନରେ ଜୋତାଠାରୁ ଛତା ପର୍ଯ୍ୟନ୍ତ ସମସ୍ତ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଗଚ୍ଛିତ ଥିଲା । ତାକୁ ଦେଖି ଆମ ପିଲାଦିନେ କିପରି ଠେଲାଗାଡ଼ିରେ ବିଭିନ୍ନ ପ୍ରକାର ଆବଶ୍ୟକ ଦ୍ରବ୍ୟ ରଖି 'ହରେକ୍ ମାଲ ସାଢ଼େ ଛ ଅଣା' ବୋଲି ଡାକି ଡାକି ହକରମାନେ କଟକ ସହରର ଗଳିକନ୍ଦିରେ ବୁଲୁଥିଲେ ସେ କଥା ମନେପଡ଼ିଗଲା । ସେ ଠେଲାଗାଡ଼ିରେ କାଠରେ ଫିତା ଲାଗିଥିବା 'ଖଡମ୍', କାଚ ଲ୍ୟାମ୍ପ, ପିଲାଙ୍କ ପାଇଁ ବଲ୍ ସାଙ୍ଗକୁ ନାନା କିସମର ଖେଳନା, ତାଲା ଚାବି, ସାଇକେଲ ରେଞ୍ଚି, ପେଚକସ, ବେଲଣାପେଡି, କାଠି ସବୁ ଥିଲା । ପରବର୍ତ୍ତୀ ସମୟରେ ରେଭେନ୍ସା କଲେଜ ସାମନାରେ ଉଠାଦୋକାନ କରି ହକରମାନେ ଦୀର୍ଘଦିନ ଧରି ସେସବୁ ପଦାର୍ଥ ବିକ୍ରି କରୁଥିଲେ ।

ଦୋକାନ ଭିତରେ ପଶି ବହୁ ଜିନିଷ କିଣିବା ପାଇଁ ମନ ହେଲା । କିନ୍ତୁ ବିମାନ ବନ୍ଦରରେ ଅଧିକ ଲଗେଜ ଚାର୍ଜ ହେବାର ଭୟ ଥିବାରୁ ଆଉ ସେଥିରେ ମନ ଦେଲି ନାହିଁ । ସେଠାରେ ଯେଉଁମାନେ ସଉଦା କିଣୁଥିଲେ ସେମାନଙ୍କ ମଧ୍ୟରେ ଅଧିକାଂଶ ବୟସ୍କ ନାଗରିକ ଥିଲେ । ସହରର ଅନ୍ୟାନ୍ୟ ସ୍ଥାନରେ ଥିବା ଦୋକାନମାନଙ୍କରେ ଅଧିକ ମୂଲ୍ୟର

ବ୍ୟବହାର୍ଯ୍ୟ ପଦାର୍ଥ ବିକ୍ରି ହେଉଥିବାରୁ ଡଲାର ସପ୍‌ରେ ସ୍ୱଳ୍ପ ଆୟକାରୀମାନଙ୍କ ଭିଡ଼ ହେଉଥିଲା । ଗ୍ରାହକମାନେ ନିଜ ମନମୁତାବକ ପଦାର୍ଥ ସଂଗ୍ରହ କରି କାଉଣ୍ଟରରେ ମୂଲ୍ୟ ଦେଇ ସୁରୁଖୁରୁରେ ନିଜ ନିଜ ଘରକୁ ଯାଉଥିଲେ । ବହୁବର୍ଷ ପୂର୍ବେ ଆମ ରାଜ୍ୟରେ ଗ୍ରାହକମାନଙ୍କୁ ସୁଲଭ ମୂଲ୍ୟରେ ସୁବିଧାରେ ସଉଦା ପତ୍ର ଯୋଗାଇଦେବା ଉଦ୍ଦେଶ୍ୟରେ ସମବାୟ ଷ୍ଟୋରମାନ ଖୋଲିଥିଲା । ରାଜଧାନୀ ଭୁବନେଶ୍ୱର ସହରର କେନ୍ଦ୍ର ସ୍ଥଳରେ ଥିବା ମାର୍କେଟ ବିଲଡିଂରେ 'ଅଳକା' ନାମରେ ସମବାୟ ଷ୍ଟୋରଟିଏ ଖୋଲିଥିଲା । କିଛିଦିନ ଚାଲିଲା ପରେ ରାଜନୈତିକ ହସ୍ତକ୍ଷେପ ଓ ପରିଚାଳନାଗତ ତ୍ରୁଟି ଯୋଗୁ କିପରି ଅଳକା ବସ୍ତୁତଃ ଅକାମୀ ହୋଇଗଲା ସେ କଥା ଭାବି ଦୁଃଖଲାଗିଲା । ଡକ୍ଟର ଦାସ ତାଙ୍କ ଘର ପାଇଁ ଗୋଟିଏ ଦୁଇଟି ଜିନିଷ କିଣିଲେ । ଲୋଭ ସମ୍ଭାଳି ନ ପାରି ମୁଁ ମଧ୍ୟ ଟର୍ଚ୍ଚ ଲାଇଟ, ଛତା ଓ ଆଉ କେତୋଟି ଜିନିଷ କିଣିଲି । ଭାବିଥିଲି ସେସବୁ ମେଡ଼୍‌ଇନ୍ ୟୁଏସ୍ଏ ହୋଇଥିବ, କିନ୍ତୁ ଘରେ ଆସି ଦେଖିଲା ବେଳକୁ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଚାଇନା ତିଆରି ଥିଲା ।

ଘରକୁ ଫେରିଲା ବେଳକୁ ସମୟ ଦୁଇଟା ହୋଇଥିଲା । ଡକ୍ଟର ଦାସଙ୍କର ମଧ୍ୟାହ୍ନଭୋଜନ କରିବାର ଆବଶ୍ୟକତା ନ ଥିଲା । ହେଲେ ମୋ ଖାଇବା ପାଇଁ ମିସେସ ଦାସ କିଛି ଖାଦ୍ୟପଦାର୍ଥ ପ୍ରସ୍ତୁତ କରି ରଖିଯାଇଥିଲେ । ଆମେ ଦୁହେଁ ଏକାଠି ବସି ମଧ୍ୟାହ୍ନ ଭୋଜନ କଲୁ । ସେଦିନ ଅପରାହ୍ନରେ ଆଉ କୌଣସି କାର୍ଯ୍ୟକ୍ରମ ନ ଥିଲା । ବହୁଦିନ ହେଲା ବୁଲାବୁଲି କରିବା ପରେ ସେଦିନ ବିଶ୍ରାମ ନେବାକୁ ଅଧିକ ସମୟ ମିଳିଥିଲା । ଅପରାହ୍ନ ତିନିଟାରେ ଶୋଇ ଉଠିଲା ବେଳକୁ ସନ୍ଧ୍ୟା ସାତଟା ହୋଇଯାଇଥିଲା ।

## ଆମେରିକାର ହିନ୍ଦୁ ମନ୍ଦିରରେ ଭଜନ, କୀର୍ତ୍ତନ ଓ ଭୋଜନ

ପରଦିନ ଥିଲା ଜୁଲାଇ ମାସର ତୃତୀୟ ଶନିବାର । ଆମେରିକା ଭ୍ରମଣ ସମୟରେ ଯେତେ କମ୍ ଶନିବାର ପଡ଼ିବ ସେଥିପ୍ରତି ମୁଁ ଦୃଷ୍ଟି ଦେଇଥିଲି । ତା' ସତ୍ତ୍ୱେ ତିନୋଟି ଶନିବାର ପଡ଼ିଥିଲା । ପ୍ରଥମ ଶନିବାରଟି ଟରଣ୍ଟୋରେ ଏବଂ ଦ୍ୱିତୀୟ ଶନିବାରଟି ବାର୍‌ମିଂହାମ୍‌ରେ ବାଦଲ ଘରେ ସୁରୁଖୁରୁରେ କଟିଯାଇଥିଲା । ତୃତୀୟ ଶନିବାରଟି କିପରି କଟିବ ସେ ଚିନ୍ତା ମୁଣ୍ଡ ଭିତରେ ଥିଲା; କାରଣ ଶନିବାର ଦିନରେ ମୁଁ କୌଣସି ରନ୍ଧା ଖାଦ୍ୟ ନ ଖାଇ କେବଳ ଫଳ ଉପରେ ନିର୍ଭର କରିଥାଏ ଏବଂ ରାତିରେ ବିନା ପିଆଜ ରସୁଣରେ ପ୍ରସ୍ତୁତ କିଛି ଖାଦ୍ୟ ଖାଇଥାଏ । ବିଦେଶ ରାଷ୍ଟ୍ରରେ ଏ ସବୁ ସମ୍ଭବ ହେବ କି ନାହିଁ, ସେଥିପାଇଁ ମନ ଚିନ୍ତାଗ୍ରସ୍ତ ଥିଲା । ଡକ୍ଟର ଦାସଙ୍କ ସାଙ୍ଗରେ ବୁଲିଲା ବେଳେ କଥା ପ୍ରସଙ୍ଗରେ ମୁଁ ତାଙ୍କୁ ଶନିବାର ସମ୍ପର୍କରେ ସୂଚାଇଥିଲି ।

ସେ ଦିନ ସକାଳେ ନିତ୍ୟକର୍ମ ସାରି ରାମାୟଣ ପଢ଼ି ବାହାରକୁ ଆସିଲା ବେଳକୁ ଡକ୍ଟର ଦାସଙ୍କ ଘରେ କୋଳାହଳ ଆରମ୍ଭ ହୋଇଯାଇଥିଲା । ତାଙ୍କର ତିନିଝିଅ ସେଦିନ ଘରେ ଏକାଠି ହୋଇଥିଲେ । ବିଭିନ୍ନ ବିଷୟରେ ସେମାନଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଥିଲା ।

ଜଣେ ଅନ୍ୟର ମତକୁ ମାନି ନେବାକୁ ପ୍ରସ୍ତୁତ ନ ଥିଲେ । ମୁଁ ଆଗରୁ ତାଙ୍କ ବଡ଼ଝିଅ ବାଗ୍ମୀକୁ ଦେଖିଥିଲି, ଅନ୍ୟ ଦୁଇଝିଅ ବାହାରେ ରହୁଥିବାରୁ ସେମାନଙ୍କ ସାଙ୍ଗରେ ଦେଖା ହୋଇ ନ ଥିଲା । ଡ୍ରଇଂରୁମ୍‌କୁ ଆସିଲା ପରେ ସେମାନେ ମତେ ମୁଣ୍ଡ ନୁଆଁଇ ନମସ୍କାର କଲେ । ମୁଁ ପ୍ରଥମେ କିଛି ବୁଝି ପାରି ନ ଥିଲି । ଆମେରିକାରେ ଜନ୍ମ ହୋଇ ନଗ୍ନ ଆଧୁନିକ ସଭ୍ୟତାରେ ଚଳି ସେମାନେ ଯେ ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ଭୁଲି ନାହାନ୍ତି ସେ କଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଡକ୍ଟର ଦାସ ସମସ୍ତଙ୍କୁ ଡାଇନିଂ ଟେବୁଲକୁ ଡାକିଲେ । ସେମାନଙ୍କ ପାଇଁ ଉପମା ଓ ତରକାରି ପ୍ରସ୍ତୁତ ହୋଇଥିଲା ଓ ମୋ ପାଇଁ ରଖାଯାଇଥିଲା ନାନା ଜାତିର ଫଳ ସାଙ୍ଗକୁ କ୍ୟାସୁନଟ୍‌ସ, କିସମିସ ଓ ପେସ୍ତାବାଦମ ପ୍ୟାକେଟ । ସେଥିରୁ ମୁଁ କିଛି ଫଳ ଖାଇଲି । ଡକ୍ଟର ଓ ମିସେସ ଦାସ ବାଧକରି ବାଦାମ, କିସମିସ ଓ କ୍ୟାସୁନଟ୍‌ସ ଖୁଆଇଲେ । ଅପରାହ୍ଣରେ ଚାଳିଶି ମାଇଲ ଦୂରରେ ବଲିଟିମୋର ସହରରେ ଥିବା ହିନ୍ଦୁ ମନ୍ଦିରରେ ସେମାନଙ୍କର ଗୋଟିଏ ଭଜନ କାର୍ଯ୍ୟକ୍ରମ ଥିଲା । ମୋର ସେଥିରେ ଯୋଗଦେବାରେ କିଛି ଆପତ୍ତି ଅଛି କି ବୋଲି ସେମାନେ ମତେ ପଚାରିଲେ । ମୁଁ କହିଲି, ଇଏତ ଭାଗ୍ୟର କଥା । ବିଦେଶ ମାଟିରେ ଭଜନ କାର୍ଯ୍ୟକ୍ରମରେ ସାମିଲ ହେବା କେତେ ଲୋକଙ୍କ ଭାଗ୍ୟରେ ଜୁଟୁଛି ? ଆପଣମାନେ ପଚାରୁଛନ୍ତି କଣ ? ବରଂ ଆପଣମାନଙ୍କର ଆପତ୍ତି ନ ଥିଲେ ମୁଁ ସେ ଭଜନ ସମାରୋହରେ ଯୋଗଦେବାକୁ ଚାହୁଁଛି । ମୋ ଉତ୍ତରରେ ସେମାନେ ଖୁସି ହୋଇଗଲେ । ମୁଁ ଗେଷ୍ଟରୁମ୍‌କୁ ଫେରିଯାଇ ଗୋଟିଏ ମାଗାଜିନ୍ ଉପରେ ଆଖି ବୁଲାଉ ବୁଲାଉ ଶୋଇପଡ଼ିଲି । କବାଟରେ ମୃଦୁ ଆଘାତରେ ନିଦ ଭାଙ୍ଗିଲା ବେଳକୁ ଦେଖିଲି ଚାରିଟା ବାଜିଥିଲା । ଡକ୍ଟର ଦାସଙ୍କ ମଝିଆଁ ଝିଅ ଆସି କହିଲା, ''ଅଙ୍କଲ, ଆମେ ସବୁ ରେଡି ହୋଇଗଲୁଣି, ଆପଣ ବାହାରିଲେ ଆମେ ବଲଟିମୋର ଯିବା ।'' ମୋ ପାଇଁ ସେମାନଙ୍କର କାର୍ଯ୍ୟକ୍ରମରେ ବିଳମ୍ବ ହୋଇଥିବାରୁ ମୁଁ ଦୁଃଖ ପ୍ରକାଶ କରିବା ସହିତ ଦଶମିନିଟ ମଧ୍ୟରେ ପ୍ରସ୍ତୁତ ହୋଇଯିବି ବୋଲି ମୃଣାଳୀକୁ ପ୍ରତିଶ୍ରୁତି ଦେଇ ବାଥରୁମ୍‌ରେ ପଶିଲି ।

ମୁଁ କାର୍ ପାଖକୁ ଆସିଲା ବେଳକୁ ସେଥିରେ ହାରମୋନିୟମ, ମୃଦଙ୍ଗ ଓ ଗିନି ନଦା ହୋଇସାରିଥିଲା । ପିଲାମାନେ କାର୍‌ରେ ବସି ସାରିଥିଲେ । ମୁଁ ବସିବା ପରେ ଡକ୍ଟର ଦାସ ଗାଡ଼ି ଷ୍ଟାର୍ଟ କଲେ । ରାସ୍ତାରେ ଟ୍ରାଫିକ୍ ଜାମ୍ ଥିବାରୁ ବଲଟିମୋର ସହରରେ ପହଞ୍ଚିବାକୁ ଅଧଘଣ୍ଟା ସମୟ ଲାଗିଥିଲା । ସେଠାରେ ଥିବା ହିନ୍ଦୁ ମନ୍ଦିରରେ ଭାରତର ବିଭିନ୍ନ ରାଜ୍ୟର ଅଧିବାସୀମାନେ ଭିନ୍ନ ଭିନ୍ନ ଦେବାଦେବୀଙ୍କ ମୂର୍ତ୍ତି ସ୍ଥାପନ କରି ପୂଜାର୍ଚ୍ଚନା କରୁଥିଲେ । ଡକ୍ଟର ନରେଶ ଦାସଙ୍କ ପରିବାର ଓ ଅନ୍ୟମାନଙ୍କ ସହାୟତାରେ ସେ ମନ୍ଦିର ଭିତରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଇଥିଲା । ଦୀର୍ଘ ସତର ବର୍ଷ ହେଲା ଆୟୋଜକମାନେ ମାସର ତୃତୀୟ ଶନିବାର ଦିନ ଶ୍ରୀ ଜୀଉଙ୍କ ସମ୍ମୁଖରେ ଭଜନ, କୀର୍ତ୍ତନ ସହିତ ଏକତ୍ର ସାକାନ୍ନ ଭୋଜନ କରୁଥିଲେ । ସେଦିନ ସେ ମନ୍ଦିରରେ ଆମକୁ ମିଶାଇ ପଚିଶିଜଣ ଭକ୍ତଙ୍କର ସମାଗମ ହୋଇଥିଲା । ଭକ୍ତମାନେ ଶ୍ରୀଜଗନ୍ନାଥ ଜଣାଣ ପରିବେଷଣ

କଲାବେଳେ ଡକ୍ଟର ଦାସ ମୃଦଙ୍ଗରେ ତାଳ ଦେଇଥିଲେ । ଡକ୍ଟର ଦାସଙ୍କ ଝିଅ ମୃଣାଳୀ ଯେତେବେଳେ 'ଆହେ ନୀଳ ଶଇଳ, ପ୍ରବଳ ମତ୍ତ ବାରଣ' ଭଜନ ବୋଲିଲେ ତାଙ୍କୁ ଶୁଣି କିଛି କ୍ଷଣ ପାଇଁ ମୁଁ ଚକିତ ହୋଇଯାଇଥିଲି । ଆମେରିକାରେ ଜନ୍ମିତ ମୃଣାଳୀଙ୍କ ଶିକ୍ଷା ଇଂରାଜୀ ଭାଷାରେ ହୋଇଥିଲା । ଏପରିସ୍ଥଳେ ସେ କିପରି କଠିନ ଜଗନ୍ନାଥ ଜଣାଣକୁ ଆୟତ୍ତ କରି ପରିବେଷଣ କଲେ ତାହା ମୁଁ ବୁଝି ପାରି ନ ଥିଲି । ମା' ଡକ୍ଟର ବିଜ୍ଞାନୀ ଦାସଙ୍କ ଉଦ୍ୟମ ଫଳରେ ଯେ ମୃଣାଳୀ ସାଧାରଣରେ ଓଡ଼ିଆ ଭଜନ ବୋଲିବା ପାଇଁ ସକ୍ଷମ ହୋଇଥିଲେ ସେ କଥା ମୁଁ ପରେ ଜାଣିଲି । ବିଜ୍ଞାନୀ, ଇଂରାଜୀ ଅକ୍ଷରରେ ଓଡ଼ିଆ ଭଜନ ଲେଖି ତାକୁ ପିଲାମାନଙ୍କୁ ଶିଖେଇଥିଲେ । ଏହା ଯେ ଏକ ଦୁଃସାଧ୍ୟ ଉଦ୍ୟମ ଥିଲା ସେଥିରେ ସନ୍ଦେହ ନାହିଁ ।

ଭଜନ, କୀର୍ତ୍ତନ ଶେଷରେ ମହାପ୍ରଭୁଙ୍କ ପାଖରେ 'ବାଳଭୋଗ' ହୋଇଥିଲା ଓ ପରେ ଆମେ ସବୁ ଗୋଟିଏ ହଲ୍‌ରେ ବସି ଏକତ୍ର ଭୋଜନ କଲୁ । ସେଦିନ ଭୋଜନ ସାମଗ୍ରୀରେ ଥିଲା ସରୁ ଅରୁଆ ଚାଉଳ ଭାତ, ହରଡ ଡାଲି, ସାଦା ତରକାରି, ଦହି ବାଇଗଣ ଓ ତା' ସାଙ୍ଗକୁ କାଲାକନ୍ଦ ମିଠା । ଭୋଜନ ଶେଷ ବେଳକୁ ଦଶଟା ବାଜିଥିଲା ଓ ଆମେ ଅନ୍ୟମାନଙ୍କଠାରୁ ବିଦାୟ ନେଇ ଘରକୁ ଫେରିଲୁ ।

# ବିଦେଶ ମାଟିରୁ ଫେରନ୍ତା ଯାତ୍ରା

ରବିବାର ଅପରାହ୍ଣରେ ଆମେରିକା ଭ୍ରମଣ କାର୍ଯ୍ୟକ୍ରମ ସାରି ମୋର ଭାରତ ଫେରିଆସିବା ପାଇଁ ସ୍ଥିର ହୋଇଥିଲା । ସେତେବେଳକୁ ଘରୁ ଯିବାର ପଚିଶି ଦିନ ପୂରି ଯାଇଥିଲା । ଆମେରିକା ଯିବାବେଳେ ମନରେ ଯେତିକି ଉତ୍ସାହ, ଉତ୍କଣ୍ଠା ସୃଷ୍ଟି ହୋଇଥିଲା ବୁଲାବୁଲି ସାରିଲା ପରେ ଘରକୁ ଫେରି ଆସିବା ପାଇଁ ତା'ଠାରୁ ଅଧିକ ଆବେଗ ଜନ୍ମିଥିଲା । ନିଜର ଜନ୍ମମାଟି, ପରିବାର ଓ ସାଙ୍ଗସାଥୀଙ୍କ ମୋହ ମନକୁ ଆଛନ୍ନ କରିଥିଲା ଓ ବିଦେଶ ରାଷ୍ଟ୍ର ଭ୍ରମଣର ଆକର୍ଷଣ କମିଯାଇଥିଲା । ମୁଁ ଯେଉଁ ସହରରେ ରହୁଥିଲି, ତା'ର ନିକଟବର୍ତ୍ତୀ ବିମାନବନ୍ଦର ଥିଲା ଓ୍ୱାଶିଙ୍ଗଟନ ଡି.ସି. । କିନ୍ତୁ ମୋର ଡଲାସ ବିମାନବନ୍ଦର ବାଟ ଦେଇ ଫେରିବାର ଥିଲା । ଡଲାସ ବିମାନବନ୍ଦରଟି ଡକ୍ଟର ନରେଶ ଦାସଙ୍କ ଘରୁ ପଚାଶ ମାଇଲ ଦୂରରେ ଥିଲା । ମତେ ତାଙ୍କ କାର୍‌ରେ ନେଇ ଡଲାସ ବିମାନ ବନ୍ଦରରେ ଛାଡ଼ିଦେଇ ଆସିବେ ବୋଲି ଡକ୍ଟର ଦାସ ଆଗରୁ ସୂଚାଇଥିଲେ । ମୋ ପାଇଁ ଏତେବାଟ ଯିବାକୁ ମୁଁ ପସନ୍ଦ କରୁ ନ ଥିଲେ ବି ମୋ ପାଖରେ ଆଉ କିଛି ବିକଳ୍ପ ପନ୍ଥା ନ ଥିବାରୁ ତାଙ୍କ ପ୍ରସ୍ତାବକୁ ମୁଁ ବାଧହୋଇ ଗ୍ରହଣ କରିଥିଲି ।

## ଡଲାସରୁ ନ୍ୟୁୟାର୍କ

ଡଲାସ ଆନ୍ତର୍ଜାତିକ ବିମାନବନ୍ଦରରେ ଅପରାହ୍ଣ ଦି'ଟାରେ ପହଞ୍ଚିବା ପାଇଁ ଥିବାରୁ ଆମେ ଶୀଘ୍ର ମଧ୍ୟାହ୍ନ ଭୋଜନ ସାରି ଗୋଟାଏ ବେଳେ ବାହାରି ପଡ଼ିଲୁ । ବାହାରିଲା

ବେଳକୁ ମିସେସ ଦାସ ଗୋଟିଏ ବଡ଼ ପେସ୍ତାବାଦାମ ପ୍ୟାକେଟ ଓ ଆଉ କିଛି ପ୍ରେଜେଣ୍ଟେସନ ସାମଗ୍ରୀ ଆଣି ମୋ ପାଖରେ ଥୋଇଲେ । ମୋର ବ୍ୟାଗେଜର ଓଜନ ପଚିଶି କେଜିରୁ ଅଧିକ ହୋଇସାରିଥିଲା ଓ କ୍ୟାବିନ ବ୍ୟାଗ୍ ମଧ୍ୟ ଫୁଲ୍ ଥିଲା । ଉନ୍ନତ ଧରଣର ପେସ୍ତାବାଦାମ ଦେଖି ମନରେ ଲୋଭ ହୋଇଥିଲେ ବି ଏକ୍ସଟ୍ରା ଲଗେଜ ଭଡ଼ା କଥା ଚିନ୍ତା କରି ମୁଁ ବାଦାମ ପ୍ୟାକେଟଟିକୁ ଛାଡ଼ିଦେଇ ଆସିବାକୁ ବାଧ୍ୟହେଲି । ପାଖାପାଖି ତିନିଟା ବେଳେ ଆମେ ବିମାନବନ୍ଦରରେ ପହଞ୍ଚିଲୁ । ଡକ୍ଟର ଦାସଙ୍କର ଇଚ୍ଛା ଥିଲା ମୋର ବ୍ୟାଗେଜ ଚେକିଂ କରାଇ ସାରିବା ପରେ ସେ ଫେରିଥାନ୍ତେ; କିନ୍ତୁ ସେସବୁ କାର୍ଯ୍ୟ ସହିତ ମୁଁ ଅଭ୍ୟସ୍ତ ହୋଇଯାଇଥିବାରୁ ସବୁକଥା ସମ୍ଭାଳି ନେବି ବୋଲି କହି ତାଙ୍କୁ ଫେରାଇଦେଲି । କାଉଣ୍ଟରରେ ପହଞ୍ଚିଲା ବେଳକୁ ସେଠାରେ ଲାଗିଥିବା ଗୋଟିଏ ମନିଟର ପର୍ଦ୍ଦାରେ ମୋର ଟିକେଟଟି ଠିକ୍ ଅଛି କି ନାହିଁ ସେ କଥା ଯାଞ୍ଚ କରିବାକୁ ପଡ଼ିଲା । ଅନ୍ୟ କୌଣସି ବିମାନ ବନ୍ଦରରେ ସେପରି ବ୍ୟବସ୍ଥା ନଥିବାରୁ ଆଗରୁ ମୋର ସେ ଅନୁଭୂତି ନ ଥିଲା । କିନ୍ତୁ କମ୍ପ୍ୟୁଟର ଚଳାଇବାର ଅଭିଜ୍ଞତା ଥିବାରୁ ମୋର କିଛି ଅସୁବିଧା ହେଲା ନାହିଁ ।

ଡଲାସରୁ ନ୍ୟୁୟାର୍କ ବାଟେ ଦିଲ୍ଲୀ ଫେରିବା ପାଇଁ ଦୁଇଟି ପୃଥକ୍ ବିମାନ ଟିକେଟ କଟାଯାଇଥିଲେ ବି ଡଲାସ ବିମାନବନ୍ଦରରୁ ସିଧାସଳଖ ଦିଲ୍ଲୀ ପର୍ଯ୍ୟନ୍ତ ବ୍ୟାଗେଜ ବୁକିଂ ହୋଇଥିଲା ଓ ଦୁଇଟି ବୋର୍ଡିଂ ପାସ୍ ଯୋଗାଇ ଦିଆଯାଇଥିଲା । ବୋର୍ଡିଂ ପାସ୍ ନେଲା ବେଳେ ବିମାନରେ ମୁଁ ଦୁଇଟି ଉଇଣ୍ଡୋ ସିଟ୍ ପାଇଁ ଅନୁରୋଧ କରିଥିଲି । ଡଲାସରୁ ନ୍ୟୁୟାର୍କ ପର୍ଯ୍ୟନ୍ତ ବିମାନର ଉଇଣ୍ଡୋ ସିଟ୍ ମିଳିଥିଲା, ମାତ୍ର ଯେଉଁ ଯାତ୍ରାଟି ଅଧିକ କଷ୍ଟଦାୟକ ଥିଲା ସେଥିପାଇଁ ଉଇଣ୍ଡୋ ସିଟ୍ ମିଳିଲା ନାହିଁ । ସେ ସିଟ୍ ଗୁଡ଼ିକ ଆଗରୁ ଇସୁ୍ୟ ହୋଇସାରିଥିବା କଥା କାଉଣ୍ଟରରେ ବସିଥିବା ଯୁବତୀ ନମ୍ରତାର ସହିତ ଜଣାଇ ମତେ ସାହାଯ୍ୟ କରିପାରି ନ ଥିବାରୁ ଦୁଃଖ ପ୍ରକାଶ କରିଥିଲେ ।

ସ୍ଥାନୀୟ ସମୟ ଚାରିଟା ଅଣଚାଶ ମିନିଟରେ ଡଲାସ ବିମାନବନ୍ଦର ଛାଡ଼ି ଆମ ବିମାନଟି ଉପରକୁ ଉଠି ଛଅଟା ତିରିଶ ମିନିଟରେ ନ୍ୟୁୟାର୍କ ବିମାନବନ୍ଦରର ସି ଟର୍‌ମିନାଲରେ ଅବତରଣ କରିଥିଲା । ବିମାନ ଭିତରେ କେତେକ ଭାରତୀୟ ପରିବାର ଯାତ୍ରା କରୁଥିଲେ । ମାତ୍ର ସେମାନଙ୍କ ସହିତ କଥାବାର୍ତ୍ତା କରିବାର ସୁଯୋଗ ହୋଇ ନ ଥିଲା ।

## ବିମାନବନ୍ଦରରେ ନିରାପତ୍ତା ତନଖି

ନ୍ୟୁୟାର୍କ ବିମାନବନ୍ଦରରେ ପହଞ୍ଚିବା ପରେ ଆଉ ମାନସିକ ଯାତନା ଭୋଗ କରିବାକୁ ପଡ଼ିବ ନାହିଁ ବୋଲି ଭାବିଥିଲି । କିନ୍ତୁ ଆମେ ବିମାନରୁ ଓହ୍ଲାଇବା ପରେ ପରେ ପୂର୍ବ ଘଟଣାର ପୁନରାବୃତ୍ତି ଆରମ୍ଭ ହୋଇ ଯାଇଥିଲା । ପାସପୋର୍ଟ ଓ ଭିସା ଚେକିଂ ସାଙ୍ଗକୁ ଆମେ ପ୍ରଥମେ କେବେ ଆମେରିକା ମାଟିରେ ପାଦ ଥାପିଥିଲୁ, କୁଆଡ଼େ କୁଆଡ଼େ

ଗଲୁ, ଶେଷରେ କେଉଁ ବିମାନବନ୍ଦରରୁ କେଉଁ ସ୍ଥାନକୁ ଯିବୁ ଇତ୍ୟାଦି ଇତ୍ୟାଦି ପ୍ରଶ୍ନରେ ମୁଣ୍ଡ ଭାରାକ୍ରାନ୍ତ ହୋଇଯାଇଥିଲା । ପାସପୋର୍ଟ ଭିସା ସବୁ ଠିକ୍ ଥିଲେ ବି ଅନ୍ୟକୁ ଅସୁବିଧାରେ ପକାଇ କେତେକ ଅଫିସର ଆନନ୍ଦ ଅନୁଭବ କରୁଥିଲା ଭଳି ମନେହେଲା । ସେମାନଙ୍କ ଆଚରଣରେ ମନରେ କ୍ରୋଧ ସୃଷ୍ଟି ହେଉଥିଲେ ମଧ୍ୟ ଅଗତ୍ୟା ସେମାନଙ୍କ ଅତ୍ୟାଚାରକୁ ସହିବାକୁ ପଡ଼ିଲା । ଉଣାଅଧିକେ ସବୁ ଯାତ୍ରୀଙ୍କୁ ନିରାପତ୍ତା ତନଖି ବେଳେ ମାନସିକ ଯନ୍ତ୍ରଣା ଭୋଗିବାକୁ ପଡ଼ିଥିଲା । ବିଦେଶ ରାଷ୍ଟ୍ର, କାଳେ କୋଉଠି କିଛି ଅସୁବିଧା ହୋଇଗଲେ ବିମାନଯାତ୍ରା ଅଟକିଯିବ, ସେଥିପାଇଁ କେହି କିଛି ତୁଣ୍ଡ ଖୋଲି ନ ଥିଲେ ।

ସିକ୍ୟୁରିଟି ଚେକିଂ ବେଳେ ମୋ କ୍ୟାବିନ ଭିତରେ ଗୋଟିଏ ଛୋଟିଆ ପାଣି ବୋତଲ ଥିବାର ଜଣାପଡ଼ିଲା । ସେଇଟି କ'ଣ ବୋଲି ନିରାପତ୍ତାରକ୍ଷୀମାନେ ମତେ ପ୍ରଶ୍ନ କଲେ । ତାହା ଗୋଟିଏ ପିଇବା ପାଣି ବୋତଲ ବୋଲି କହିଲେ ବି ସେମାନେ ତାକୁ ଛାଡ଼ି ନ ଥିଲେ । ସିକ୍ୟୁରିଟି ଚେକିଂରେ ଜୋତା, ବେଲ୍ଟ, ମନିପର୍ସ, ମୋବାଇଲ, ପେନ୍, ଘଣ୍ଟା ସବୁ କାଢ଼ିବାକୁ ପଡ଼ିଲା । ଗୋଟିଏ ପ୍ଲାଷ୍ଟିକ ଟ୍ରେ ଭିତରେ ସେଗୁଡ଼ିକୁ ଏକତ୍ରରେ ମେସିନ ଜରିଆରେ ଯାଞ୍ଚ କରାଯାଇଥିଲା । ସେମାନଙ୍କ ତନଖି ବ୍ୟବସ୍ଥା ପ୍ରଶଂସାର ପାତ୍ର ହୋଇଥିଲେ ବି ଗୋଟିଏ ପ୍ରଶ୍ନ ମୋ ମନରେ ଉଙ୍କି ମାରିଥିଲା । ଏତେ ନିରାପତ୍ତା ବ୍ୟବସ୍ଥାକୁ ଆତଙ୍କବାଦୀମାନେ କିପରି ସଫଳତାର ସହିତ ଟପି ବିଶ୍ୱ ବାଣିଜ୍ୟ କେନ୍ଦ୍ରକୁ ଧ୍ୱଂସ କରିପାରିଲେ ? ଏତେ କଡ଼ା ତନଖି ଭିତରେ ଆତଙ୍କବାଦୀମାନେ କିଭଳି ଆଗ୍ନେୟାସ୍ତ୍ରମାନ ବିମାନ ଭିତରକୁ ନେବାରେ ସଫଳ ହେଉଛନ୍ତି ? ସେ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମୁଁ ହଠାତ୍ ପାଇପାରି ନ ଥିଲି ।

ହାତରେ ଦି ଘଣ୍ଟା ସମୟ ଥିଲା, କାମ କିଛି ନ ଥିଲା । ବିମାନ ବନ୍ଦର ଲାଉଞ୍ଜରେ କିଛି ସମୟ ବୁଲାବୁଲି କରିବା ଭିତରେ ପାଖରେ ଥିବା ଗୋଟିଏ ଦୁଇଟି ଦୋକାନକୁ ଗଲି । ପାଖରେ କିଛି ଡଲାର ବଳିଥିଲା । ସେଠାରୁ କେତୋଟି ପେନ୍ ଓ ନାତୁଣୀ ପାଇଁ ଖେଳନା କିଣିଲି । ଯେଉଁ ଟର୍ମିନାଲରୁ ବିମାନ ଛାଡ଼ିବାକଥା, ସେ ଟର୍ମିନାଲ ପାଖକୁ ଯାଇ ଗୋଟିଏ ସୋଫା ଦଖଲ କରି ବସିଲି । ସେଠାରେ ଆଗରୁ ଅବିଭକ୍ତ ବିହାର ରାଜ୍ୟର ସ୍ୱାମୀ ସ୍ତ୍ରୀ ଦି'ଜଣ ବସିଥିଲେ । ଆମେ ସମସ୍ତେ ଭାରତୀୟ ହୋଇଥିବାରୁ ପରସ୍ପର ମଧ୍ୟରେ ପରିଚୟ ହେଲା । ସେମାନଙ୍କ ଝିଅ ଭୁବନେଶ୍ୱରରେ ବିଭା ହୋଇଥିବା କଥା ସେମାନେ ପ୍ରକାଶ କରିଥିଲେ । ଆମେରିକାରେ ଥିବା ପୁଅ ପାଖକୁ ସେମାନେ ତିନିମାସ ପାଇଁ ଆସିଥିଲେ । ମାତ୍ର ପନ୍ଦରଦିନ ପରେ ସେମାନେ ଅତିଷ୍ଠ ହୋଇପଡ଼ିଲେ । ସେଠାକାର ଖାଦ୍ୟପେୟ, ପୋଷାକ ପରିଚ୍ଛଦ ଓ ଚାଲିଚଳଣ ସେମାନଙ୍କର ପସନ୍ଦ ହେଲା ନାହିଁ । ତୁରନ୍ତ ଘରକୁ ଫେରି ଯିବାକୁ ନିଷ୍ପତ୍ତି କଲେ ଓ ପୁଅକୁ କହି ଫେରନ୍ତା ବିମାନ ଟିକେଟ ଯୋଗାଡ଼ କଲେ । ଆମେରିକାର ଚଳଣି ସେମାନଙ୍କୁ କାହିଁକି ଭଲ ଲାଗିଲା ନାହିଁ ବୋଲି ପଚାରିଲାରୁ ସେମାନେ କହିଲେ, "ୟେ ଦିଲ୍ଲୀ କା ଲଡୁ ଜୈସେ, ଯୋ ଖାୟା ୱ ପସ୍ତାୟା, ଔର ଯୋ ନହିଁ ଖାୟା ୱ ଭି ପସ୍ତାୟା ।'' ବ୍ୟାଗ ଚେକିଂର

ଝିନ୍‌ଝଟ୍ ନ ଥିଲା । ସେଥିପାଇଁ ଆମେ ଆରାମରେ ବସିରହିଲୁ । ଅଳ୍ପ ସମୟ ମଧ୍ୟରେ ଭାରତୀୟ ବିମାନଯାତ୍ରୀମାନଙ୍କ ଦ୍ୱାରା ଲାଉଞ୍ଜଟି ଭର୍ତ୍ତି ହୋଇଗଲା ।

## ପୁଣି ଚଉଦ ଘଣ୍ଟା ଯାତ୍ରା

କିଛି ସମୟ ପରେ ଘୋ ଘୋ ଶୁଣାଗଲା । ମୁଁ କିଛି ବୁଝି ପାରିଲି ନାହିଁ । ଶୃଙ୍ଖଳିତ ବିମାନବନ୍ଦରରେ ପୁଣି ପାଟିତୁଣ୍ଡ କାହିଁକି ? ଘଟଣାସ୍ଥଳକୁ ଯାଇ ଦେଖିଲି ସିକ୍ୟୁରିଟି ଚେକିଂ ପାଇଁ ବିମାନଯାତ୍ରୀମାନଙ୍କ ମଧ୍ୟରେ ଚାଲିଥିଲା ଠେଲାପେଲା, କିଏ ଆଗ ଯିବ । ବିମାନ ଭିତରେ କିଏ କୋଉ ଆସନରେ ବସିବେ ସେକଥା ବୋର୍ଡିଂ ପାସ୍ ଦେଲା ବେଳୁ ସ୍ଥିର ହୋଇ ସାରିଥିଲେ ବି ଅଯଥାରେ କିଛି ଲୋକ ବ୍ୟସ୍ତ ହେଉଥିଲେ । ତା'ଛଡ଼ା, ସବୁ ଟିକେଟଧାରୀ ବ୍ୟକ୍ତି ବିମାନ ଭିତରକୁ ନ ଯିବା ପର୍ଯ୍ୟନ୍ତ ବିମାନ ଯେ ଛାଡ଼ିବ ନାହିଁ ସେ ବିଷୟରେ ସମସ୍ତ ବିମାନଯାତ୍ରୀ ସଚେତନ ଥିଲେ ବି କାହିଁକି ବିଶୃଙ୍ଖଳା ସୃଷ୍ଟି କରୁଥିଲେ ତାହା ଅବୋଧ ହୋଇ ରହିଗଲା ।

ସିକ୍ୟୁରିଟି ଚେକିଂ ପରେ ବିମାନ ଭିତରେ ପଶିଲା ବେଳକୁ ପୂର୍ବଭଳି କୋଳାହଳ ଚାଲିଥିଲା । କିଏ ଆଗ ଯାଇ ନିଜ କ୍ୟାବିନ ବ୍ୟାଗଟି ନିରାପଦରେ ରଖିଦେବ, ଅନ୍ୟମାନଙ୍କ ବ୍ୟାଗ ଯାଉ ବା ନ ଯାଉ ସେଥିପାଇଁ ଚାଲିଥିଲା ଏକପ୍ରକାର ପ୍ରତିଯୋଗିତା । କର୍ତ୍ତବ୍ୟରତ ଏୟାର ହୋଷ୍ଟେସମାନେ ସେ ବାଟ ଦେଇ ଯିବା ଆସିବା କଲାବେଳେ କେବଳ ସ୍ମିତହାସ୍ୟ ଦେଉଥିଲେ । ସେମାନେ ଯେ ଭାରତୀୟ ଯାତ୍ରୀମାନଙ୍କ ଆଚରଣକୁ ପସନ୍ଦ କରୁ ନ ଥିଲେ ସେକଥା ସେମାନଙ୍କ ସ୍ମିତହାସ୍ୟ ସୂଚନା ଦେଉଥିଲା । ମୁଁ ବୋର୍ଡିଂ ପାସ୍ କାଢ଼ି ମୋ ଆସନ ନିକଟକୁ ଯାଇ ଦେଖିଲି ତିନିଟିକିଆ ଆସନରେ ମୋ ଆସନଟି ମଝିରେ ଥିଲା । ତାକୁ ଦେଖି ମନ ଫିକା ପଡ଼ିଗଲା । ଭାବିଲି, ମଝି ଆସନରେ ବସି କିପରି ଚଉଦ ଘଣ୍ଟା କଟାଇବି ? ଏଇ କଥା ଭାବୁଛି ପଛରୁ ଜଣେ ଶ୍ୱେତାଙ୍ଗୀ ଯୁବତୀ ଆସି ମତେ ପ୍ରଶ୍ନ କଲେ, ''ସାର୍ ଏକ୍ସକ୍ୟୁଜ୍ ମିଁ, ଡୁ ୟୁ ହାଵ୍ ଏନି ପ୍ରବ୍ଲମ୍ । କ୍ୟାନ ଆଇ ହେଲ୍‌ପ ୟୁ ।'' ଏପରି ପ୍ରଶ୍ନରେ ମୁଁ ଟିକିଏ ହତବଢ଼େଇ ଯାଇଥିଲି; କାରଣ ସେ ଯୁବତୀ ମୋର ପରିଚିତା ନ ଥିଲେ କିମ୍ବା ମୁଁ ତାଙ୍କ ସାହାଯ୍ୟ ଲୋଡ଼ି ନ ଥିଲି । ତେବେ ମତେ ସାହାଯ୍ୟ କରିବା ପାଇଁ ସେ କାହିଁକି ଆଗେଇ ଆସିଲେ ? ମୁଁ ତାଙ୍କୁ କହିଲି, ''ଥ୍ୟାଙ୍କ ୟୁ ମ୍ୟାଡାମ୍ ଫର ଇୟୋର ଗୁଡ୍ ଜେଶ୍ଚର । ଆଇ ୱାଜ୍ ଆକଚୁଆଲି ଇଣ୍ଟରଷ୍ଟେଡ୍ ଫର ଦି ଉଇଣ୍ଡୋ ସିଟ୍, ବଟ୍ ଆଇ ଡୋଣ୍ଟ ନୋ ହ୍ୱେଦର ଆଇ ଉଇଲ୍ ହାଵ୍ ଇଟ୍ ।'' ସେ ସାଙ୍ଗେ ସାଙ୍ଗେ କହିଲେ, ''ଦିସ୍ ଇଜ୍ ନୋ ପ୍ରବ୍ଲମ୍ । ଦ୍ୟାଟ୍ ଉଇଣ୍ଡୋ ସିଟ୍ ଇଜ୍ ମାଇନ୍ । ୟୁ କ୍ୟାନ୍ କମ୍ଫର୍ଟେବଲି ସିଟ୍ ଦେୟାର, ଆଣ୍ଡ ଆଇ କ୍ୟାନ୍ ମ୍ୟାନେଜ୍ ଇନ୍ ଦି ମିଡିଲ ସିଟ୍ ।'' ଏହା କହି ସେ ଉଇଣ୍ଡୋ ସିଟ୍‌ରୁ ନିଜ ହାଣ୍ଡବ୍ୟାଗଟି କାଢ଼ି ନେଲେ । ମୁଁ ତାଙ୍କୁ ଧନ୍ୟବାଦ ଦେଇ କହିଲି, ''ଥ୍ୟାଙ୍କ ୟୁ ଭେରିମଚ୍ ଫର ଦି କାଇଣ୍ଡ୍ ହେଲ୍ପ ।'' ସେ ଯୁବତୀ ଜଣକ ତାଙ୍କ ବ୍ୟାଗରୁ ତକିଆ ଭଳିଆ ଗୋଟିଏ ପୁଡ଼ିଆ ବାହାର କରି ମୁଣ୍ଡ ତଳେ ରଖିଲେ । ଭଦ୍ରାମି

ଦୃଷ୍ଟିରୁ ମୁଁ ତାଙ୍କ ପରିଚୟ ପଚାରିଲି । ସେ ଦିଲ୍ଲୀରେ ''ଇଣ୍ଟରନ୍ୟାସନାଲ ବ୍ୟାଙ୍କିଙ୍ଗ୍ ସିଷ୍ଟମ'ରେ ଜଣେ ଜୁନିୟର ଏକଜିକ୍ୟୁଟିଭ୍ ଭାବରେ କାର୍ଯ୍ୟରତ ଥିଲେ । ତାଙ୍କ ନାଁ ମ୍ୟାରିଆ ଓ ସେ କାଲିଫର୍ଣ୍ଣିଆର ବାସିନ୍ଦା । ଛୁଟିରେ ନିଜ ରାଜ୍ୟକୁ ଆସିଥିଲେ । ଛୁଟି ପରେ ସେ ଫେରୁଥିଲେ ।

କଥା ପ୍ରସଙ୍ଗରେ ସେ ମୋର ପରିଚୟ ଚାହିଁଥିଲେ । ମୁଁ ତାଙ୍କୁ କିଛି ନ କହି ମୋ ଭିଜିଟିଂ କାର୍ଡଟିଏ ବଢ଼ାଇ ଦେଲି । କାର୍ଡରୁ ମୁଁ ବୃତ୍ତିରେ ସାମ୍ବାଦିକ ହୋଇଥିବା ଜାଣି ସେ ବହୁତ ଖୁସି ହେଲେ । ସେତେବେଳକୁ ଆମେରିକା ରାଷ୍ଟ୍ରପତି ପଦ ପାଇଁ ନିର୍ବାଚନ ପ୍ରଚାର ଜୋରସୋର ଚାଲିଥିଲା । ନିର୍ବାଚନ ଫଳାଫଳ କାହା ସପକ୍ଷରେ ଯିବ ବୋଲି ପଚାରିବାରୁ ମ୍ୟାରିଆ କହିଲେ, ''ଦଳୀୟ ଦୃଷ୍ଟିକୋଣରୁ ନୀତିଗତ ଭାବରେ ସେ ମାକାନଙ୍କୁ ସମର୍ଥନ କରୁଥିଲେ ବି ଶେଷ ନିଷ୍ପତ୍ତି ଓବାମାଙ୍କ ସପକ୍ଷରେ ଯିବ । ସେ ମୋଠାରୁ ଭାରତର ସାମାଜିକ ଓ ରାଜନୈତିକ ସ୍ଥିତି ସମ୍ପର୍କରେ କେତେକ କଥା ଜାଣିବାକୁ ଚାହିଁଥିଲେ । କଥାବାର୍ତ୍ତା ଜମି ଆସୁଥିଲା । ମୁଁ ଚାହୁଁଥିଲି ଯେତେ ସମୟ ଗପସପରେ କଟିଯିବ ସେତେ ଭଲ । ବିମାନଯାତ୍ରାର ଶ୍ରମ ଲାଘବ ହୋଇଯିବ । କିନ୍ତୁ ହଠାତ୍ ଏୟାର ହୋଷ୍ଟେସଙ୍କ ଉପସ୍ଥିତିରେ ଗପର ଖିଅ ଛିଣ୍ଡିଗଲା । ଏୟାରହୋଷ୍ଟେସ୍ ଡିନର ପ୍ଲେଟ ଧରି ମୁଁ ଭେଜ୍ କି ନନ୍‌ଭେଜ୍ ସେ କଥା ଜାଣିବାକୁ ଅପେକ୍ଷା କରିଥିଲେ । ମୁଁ ନିରାମିଷାଶୀ ଜାଣି ସେ ଭେଜ୍ ପ୍ଲେଟଟିଏ ମୋ ହାତରେ ଧରାଇ ଦେଲେ । ପ୍ଲେଟର ପ୍ୟାକ ଖୋଲି ଦେଖିଲା ବେଳକୁ ସେଥିରେ ସମ୍ପୂର୍ଣ୍ଣ ଭାରତୀୟ ଖାଦ୍ୟ ଥିଲା । ଫ୍ରାଏଡ୍ ରାଇସ୍ ସାଙ୍ଗକୁ ଡାଲ ଫ୍ରାଏ, ପନିର ମଟର ମସଲା ସବ୍‌ଜି, ସାଲାଡ, ଆଚାର ଓ ଗୋଟିଏ ମିଠା । ଡିନର ପରେ ଅରେଞ୍ଜ ଜୁସ୍ । ବସିବା ଓ ଖାଇବା ଆରାମଦାୟକ ହେବା ପରେ ଖାଲି ଯାହା ଶୋଇବା କଥା ବାକି ଥିଲା । ଘଣ୍ଟାକ ଭିତରେ ଅନ୍ୟମାନଙ୍କର ଖାଇବା ପର୍ବ ଶେଷ ହୋଇଗଲା ଓ କେବଳ ବିମାନ କର୍ମଚାରୀଙ୍କ ବ୍ୟତୀତ ଅନ୍ୟମାନେ ନିଜ ନିଜ ଆସନରେ ଶୋଇପଡ଼ିଲେ । ମୁଁ ସାମନାରେ ଥିବା ଟିଭି ସ୍କ୍ରିନ୍‌ରେ କିଛି ସମୟ ସିନେମା ଦେଖିବା ଭିତରେ ଶୋଇପଡ଼ିଥିଲି । ସକାଳ ହେବା ପୂର୍ବରୁ ନିଦ ଭାଙ୍ଗିଗଲା । ସେତେବେଳକୁ ବିମାନର ଅଧିକାଂଶ ଯାତ୍ରୀ ନିଦ୍ରାଗତ ଥିଲେ । ମୁଁ ଦେଖିଲି ଏଇଟା ହେଉଛି ଠିକ୍ ସମୟ, ଯେତେବେଳେ ଟଏଲେଟ୍ ଯାଇହେବ । ହିସାବ କରି ଦେଖିଲି ଭାରତୀୟ ସମୟ ଅନୁସାରେ ଅପରାହ୍ଣ ପାଞ୍ଚଟା ହେବ । ବିମାନ ଭିତରକୁ ପ୍ରବେଶ କଲାବେଳେ ଦୀର୍ଘ ଚଉଦଘଣ୍ଟା ସମୟ କେମିତି କଟିବ ବୋଲି ଯେଉଁ ଦୁଶ୍ଚିନ୍ତା ଥିଲା, ନିଦରୁ ଉଠିଲା ବେଳକୁ ତାହା ଅନେକ ପରିମାଣରେ ଦୂର ହୋଇଯାଇଥିଲା । ମୁଁ ଶୀଘ୍ର ଯାଇ ନିତ୍ୟକର୍ମ ସାରିଦେଲି । କିଛି ସମୟ ମଧ୍ୟରେ ବିମାନ ଭିତରେ ପୁଣି କୋଳାହଳ ଆରମ୍ଭ ହୋଇଗଲା । ଟଏଲେଟ ପାଇଁ ଲାଇନ୍ । ସକାଳ ଚା' ପାଇଁ ବରାଦ । ସାନ ପିଲାଙ୍କ କ୍ଷୀର ତିଆରି କରିବା ପାଇଁ ମା'ମାନଙ୍କର ଗରମ ପାଣି ପାଇବା ପାଇଁ ଅନୁରୋଧ ଇତ୍ୟାଦି ଇତ୍ୟାଦି । ଏୟାରହୋଷ୍ଟେସ୍‌ମାନେ ଯତ୍‌ପରୋନାସ୍ତି ଉଦ୍ୟମ କରି ବିମାନଯାତ୍ରୀମାନଙ୍କର ଚାହିଦା ପୂରଣ କରୁଥିଲେ । କୋଳାହଳ ଥମିବା ପରେ ସେମାନେ ବ୍ରେକଫାଷ୍ଟ ସର୍ଭ କରିଦେଲେ ।

## ଦିଲ୍ଲୀରେ ସମୟ ଓଲଟପାଲଟ

ଭାରତୀୟ ସମୟ ଠିକ୍ ରାତି ନଅଟା ବେଳେ କଣ୍ଟିନେଣ୍ଟାଲ ଏୟାରଲାଇନ୍ସର ବିମାନଟି ଇନ୍ଦରାଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରରେ ଅବତରଣ କଲା । ଆଗରୁ ବିମାନ ଭିତରେ ଇମିଗ୍ରେସନ ଫର୍ମ ପୂରଣ ହୋଇସାରିଥିଲା । ସେଥିପାଇଁ ବିମାନ ବନ୍ଦରରେ ଆନୁଷଙ୍ଗିକ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଅଧିକ ସମୟ ଲାଗି ନ ଥିଲା । ସେଦିନ ଆରାଇଭାଲ ଟର୍ମିନାଲରେ ବେଶି ଭିଡ଼ ନ ଥିଲା । କାଗଜପତ୍ର କାମ ସାରି ମୁଁ ବ୍ୟାଗେଜ୍ ସଗ୍ରହ କରିବାକୁ ଗଲି । କନଭେୟରବେଲ୍ଟରେ ଅନେକ ବ୍ୟାଗ ଆସିଲା ପରେ ମୋ ବ୍ୟାଗ ନ ଦେଖି ମୁଁ ଟିକିଏ ଚିନ୍ତିତ ହୋଇପଡ଼ିଥିଲି; କାରଣ ଦିଲ୍ଲୀ ବିମାନବନ୍ଦରରେ ବ୍ୟାଗ ବଦଳ ହୋଇଯିବା କିମ୍ବା ହଜିବା କିଛି ନୂଆକଥା ନୁହେଁ । ମୁଁ ନ୍ୟୁୟାର୍କଠାରେ ବିମାନ ବଦଳାଇ ଆସିଥିବାରୁ କାଳେ ସେଠାରେ ମୋ ବ୍ୟାଗ ଲୋଡ ହୋଇ ନ ଥିବ ସେଇ କଥା ମୋ ମୁଣ୍ଡରେ ପଶିଲା । ମୁଁ ପାଖରେ ଥିବା ଇନକ୍ୱାରୀ ଅଫିସକୁ ଯାଇ ପଚାରିଲି । ସେମାନେ କହିଲେ, ''ଆପଣଙ୍କ ବ୍ୟାଗ ପ୍ରଥମରୁ ଲୋଡ ହୋଇଥିବାରୁ ଶେଷରେ ଆସିବ । ସେଥିରେ ଚିନ୍ତା କରିବାର କିଛି ନାହିଁ । ଆପଣ ଅପେକ୍ଷା କରନ୍ତୁ । ଯଦି ବ୍ୟାଗ ନ ପାଇବେ, ଆମକୁ କହିବେ ।'' ସେମାନଙ୍କର ସେ ଆଶ୍ୱାସନା ମୋ ମୁଣ୍ଡବ୍ୟଥାକୁ ଅନେକ ପରିମାଣରେ ଲାଘବ କରିଦେଇଥିଲା ।

ଆଗରୁ ଡ୍ରାଇଭର ମାଇକେଲ ଗାଡ଼ି ନେଇ ଆସି ଅପେକ୍ଷା କରିଥିଲା । ମୋ ପାଖରୁ ମୋବାଇଲରେ ଖବର ପାଇ ବିମାନବନ୍ଦରର ପ୍ରସ୍ଥାନ ଫାଟକ ପାଖକୁ ଆସିଲା । ଗତ କିଛିବର୍ଷ ହେଲା ବିମାନବନ୍ଦରକୁ ବାରମ୍ବାର ଯିବା ଆସିବା କରିବା ଫଳରେ ମାଇକେଲର ବିମାନବନ୍ଦରର ସ୍ଥିତି ସମ୍ପର୍କରେ କିଛିଟା ଧାରଣା ହୋଇଯାଇଥିଲା । ଗାଡ଼ିରେ ବସିବା ପରେ ମାଇକେଲର ପୁଣି ରନିଂ କମେଣ୍ଟ୍ରି ଆରମ୍ଭ ହୋଇଯାଇଥିଲା । ''ସାବ୍ ଆମେରିକା ଟ୍ରିପ୍ କୈସା ରହା? ଆପ କାହାଁ କାହାଁ ଘୁମେଁ । ଖାନାପିନା କା ପ୍ରବନ୍ଧ କୈସେ ଥା । '' ମାଇକେଲର ଏତେଗୁଡ଼ାଏ ପ୍ରଶ୍ନର ଏକାଠି ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ନ ଥିଲା । ମୁଁ ତାକୁ ଖାଲି ଗୋଟିଏ ବାକ୍ୟରେ କହିଲି, ''ହମାରା ଟ୍ରିପ୍ ବହୁତ ଆଚ୍ଛା ରହା ।''

ରାତି ଏଗାରଟାରେ ଆମେ ଘରେ ପହଞ୍ଚିଲୁ । ସ୍ୱାଭାବିକ ଭାବରେ ଡିନର ହେଲା । ଡିନର ଟେବୁଲରେ କେତେ କଥା ପଡ଼ିଲା । ଡିନର ପରେ ଡକ୍ଟର ଦାସଙ୍କ ଗେଷ୍ଟରୁମ୍‌କୁ ଶୋଇବାକୁ ଗଲି । କିନ୍ତୁ ସମୟ ଅଦଳବଦଳ ହୋଇଯାଇଥିବାରୁ ରାତିରେ ନିଦ ହେଲା ନାହିଁ । ସକାଳେ ଉଠି ନିତ୍ୟକର୍ମ ସାରି ଅନ୍ୟମାନଙ୍କ ସହିତ ବ୍ରେକଫାଷ୍ଟ କଲି । ଭାବିଥିଲି ମାର୍କେଟ ଆଡ଼େ ଯାଇ ବୁଲିଆସିବି । କିନ୍ତୁ ବ୍ରେକଫାଷ୍ଟ ପରେ ଖଟ ଉପରେ ଗଡ଼ପଡ଼ ହେଉହେଉ ନିଦ ହୋଇଗଲା । ଉଠିଲା ବେଳକୁ ଭାରତୀୟ ସମୟ ଦୁଇଟା ହୋଇଥିଲା । ଡକ୍ଟର ଦାସ ତାଙ୍କ କର୍ମକ୍ଷେତ୍ରରୁ ଓ ତାଙ୍କ ଝିଅ ପଲୁ ସ୍କୁଲରୁ ଫେରି ଆସିଥିଲେ । ଆମେ ସମସ୍ତେ ମିଶି ଲଞ୍ଚ୍ ଖାଇଲୁ । ତା'ପରଦିନ ମୋର ଭୁବନେଶ୍ୱର ଫେରି ଆସିବାର ଥିବାରୁ ସନ୍ଧ୍ୟାରେ ଆମେ ସମସ୍ତେ କିଛି ସମୟ ପାଇଁ ବାହାରକୁ ବୁଲିବାକୁ ଯାଇଥିଲୁ ।

## ଘରକୁ ପ୍ରତ୍ୟାବର୍ତ୍ତନ

ଭୁବନେଶ୍ୱରକୁ ଆସୁଥିବା ଇଣ୍ଡିଆନ ଏୟାରଲାଇନ୍ସର ଘରୋଇ ବିମାନ ସକାଳ ୧୧ଟାରେ ଦିଲ୍ଲୀ ବିମାନବନ୍ଦର ଛାଡ଼ୁଥିଲା । ବିମାନ ଛାଡ଼ିବାର ଦୁଇଘଣ୍ଟା ପୂର୍ବରୁ ଲଗେଜ ବୁକିଂ, ବୋର୍ଡିଂକାର୍ଡ ସଂଗ୍ରହ ଇତ୍ୟାଦି ସମ୍ପାଦନ କରିବା ପାଇଁ ନିୟମ ଥିବାରୁ ମୁଁ ସକାଳେ ବ୍ରେକଫାଷ୍ଟ ପରେ ବିମାନବନ୍ଦରକୁ ବାହାରିପଡ଼ିଲି । ମନ ଘରମୁହାଁ ହୋଇଥିଲା ଓ ବିଦେଶ ବୁଲାର ମୋହ ତୁଟି ଯାଇଥିଲା । ମାସକ ତଳେ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ମନରେ ଯେଉଁ ଚାପା ଉତ୍ତେଜନା ଥିଲା ତାହା ମଧ୍ୟ ଦୂର ହୋଇଯାଇଥିଲା ।

ଦିଲ୍ଲୀ ବିମାନବନ୍ଦରରେ ଓଡ଼ିଶାର ଅନେକ ଲୋକଙ୍କ ସାଙ୍ଗରେ ଦେଖାହେଲା । ସେମାନଙ୍କ ମଧ୍ୟରେ ଅଧିକାଂଶ ସାଂସଦ ଥିଲେ । ମୁଁ ଆମେରିକାରୁ ଫେରି ଯେଉଁଦିନ ଦିଲ୍ଲୀରେ ରହିଥିଲି, ସେଦିନ ଭାରତୀୟ ରାଜନୀତିରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା । ଆଣବିକ ଚୁକ୍ତି ସ୍ୱାକ୍ଷରକୁ କେନ୍ଦ୍ର କରି ଶାସନ କ୍ଷମତାରେ ଥିବା ଭାରତୀୟ ଜାତୀୟ କଂଗ୍ରେସ ଓ ସିପିଏମ୍ ମଧ୍ୟରେ ମତଭେଦ ସୃଷ୍ଟି ହୋଇଥିଲା । ସିପିଏମ୍ ପ୍ରତିକ୍ରିୟା ସ୍ୱରୂପ ମନମୋହନ ସିଂହଙ୍କ ନେତୃତ୍ୱରେ ପରିଚାଳିତ ୟୁପିଏ (ୟୁନାଇଟେଡ୍ ପ୍ରୋଗ୍ରେସିଭ୍ ଆଲାଏନ୍ସ) ସରକାରରୁ ସମର୍ଥନ ପ୍ରତ୍ୟାହାର କରିନେବା ଫଳରେ କେନ୍ଦ୍ର ସରକାର ସଂଖ୍ୟାଲଘୁରେ ପରିଣତ ହୋଇଯାଇଥିଲା । କଂଗ୍ରେସ ଦଳ ପକ୍ଷରୁ ଏହାକୁ ଏକ ସମ୍ମାନର ପ୍ରଶ୍ନ ବୋଲି ବିଚାର କରାଯାଇ ପାର୍ଲାମେଣ୍ଟରେ ସରକାରଙ୍କ ପଛରେ ବହୁମତ ଥିବା କଥା ପ୍ରମାଣ କରିବାକୁ ଉଦ୍ୟମ ହୋଇଥିଲା । ସମସ୍ତ ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେଇ ପଞ୍ଚାୟତ ସ୍ତର ଭଳି କଂଗ୍ରେସ ଦଳ ପକ୍ଷରୁ ଘୋଡ଼ା ବେପାର ଆରମ୍ଭ ହେଲା । ଅନ୍ୟପକ୍ଷରେ ସିପିଏମ୍ ନେତୃବୃନ୍ଦ ଅନ୍ୟ ସମଭାବାପନ୍ନ ଦଳଗୁଡ଼ିକ ସହିତ ସମ୍ପର୍କ ରଖି କଂଗ୍ରେସ ସରକାରର ପତନ ପାଇଁ ସବୁପ୍ରକାର ଉଦ୍ୟମ କରିଥିଲେ । ଏପରିକି ନିଜ ଦଳର ବରିଷ୍ଠ ସଦସ୍ୟ ଲୋକସଭାର ବାଚସ୍ପତି ସୋମନାଥ ଚାଟାର୍ଜୀଙ୍କୁ ତାଙ୍କ ପଦବୀରୁ ଇସ୍ତଫା ଦେଇ ସରକାର ବିରୁଦ୍ଧରେ ଭୋଟ ଦେବା ପାଇଁ ଦଳ ପକ୍ଷରୁ ନିର୍ଦ୍ଦେଶ ଦିଆଯାଇଥିଲା । ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶରେ ବିଶ୍ୱାସ କରୁଥିବା ଶ୍ରୀ ଚାଟାର୍ଜୀ ଦଳୀୟ ସ୍ୱାର୍ଥ ଅପେକ୍ଷା ସଂସଦୀୟ ଗଣତାନ୍ତ୍ରିକ ପରମ୍ପରାକୁ ଅଧିକ ଗୁରୁତ୍ୱ ଦେଇ ଦେଶର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବାଚସ୍ପତି ପଦରୁ ଇସ୍ତଫା ଦେବେ ନାହିଁ ବୋଲି ଦଳକୁ ରୋକ୍‌ଠୋକ୍ ଭାବେ ଜଣାଇ ଦେଇଥିଲେ । ଶେଷରେ ସିପିଏମ୍, ଦଳର ପତିଆରା ବଜାୟ ରଖିବା ଉଦ୍ଦେଶ୍ୟରେ ଶ୍ରୀ ଚାଟାର୍ଜୀଙ୍କୁ ଦଳରୁ ନିଲମ୍ବନ କରିଥିଲା ।

ପାର୍ଲାମେଣ୍ଟରେ ଭୋଟ୍‌ର ଫଳାଫଳ ଯାହା ହେବ ବୋଲି ଆଶା କରାଯାଉଥିଲା ତାହା ହିଁ ଘଟିଲା । କ୍ଷମତା ଓ ଅର୍ଥର ପ୍ରଲୋଭନକୁ ଏଡ଼ାଇ ନ ପାରି ଅନେକ ଘୋଡ଼ା ବେପାରରେ ଧରା ହେଲେ ଓ ତା' ଫଳରେ ୟୁପିଏ ସରକାର ନିଜର ସଂଖ୍ୟାଗରିଷ୍ଠତା ପ୍ରମାଣ କରିପାରିଲା । ବିରୋଧୀଦଳର ଯେଉଁ ସାଂସଦମାନେ ଦଳୀୟ ହୁଇପ୍ ନ ମାନି କଂଗ୍ରେସ ସରକାର ସପକ୍ଷରେ ଭୋଟ୍ ଦେଇଥିଲେ ସେମାନଙ୍କ ମଧ୍ୟରେ ଆସ୍କା

ନିର୍ବାଚନମଣ୍ଡଳୀରୁ ବିଜେଡି (ବିଜୁ ଜନତା ଦଳ)ର ସଦସ୍ୟ ହରିହର ସ୍ୱାଇଁ ଅନ୍ତର୍ଭୁକ୍ତ ଥିଲେ ବୋଲି ଜଣାପଡ଼ିଥିଲା । ଘଟଣାକ୍ରମେ ସେଦିନ ସେ ବିମାନରେ ଶ୍ରୀ ସ୍ୱାଇଁଙ୍କ ସମେତ ପାର୍ଲାମେଣ୍ଟରେ ଥିବା ବିଜେଡିର ଚିଫ ହୁଇପ୍ ଭର୍ତ୍ତୃହରି ମହତାବ, ବିଜେପି ସଦସ୍ୟ ବି.କେ.ଦେଓ ଏବଂ ଅନ୍ୟମାନେ ଥିଲେ । ସେମାନେ ବିଭିନ୍ନ ଦଳ ଓ ଗୋଷ୍ଠୀର ହୋଇଥିଲେ ହେଁ ସେମାନଙ୍କ ସାଙ୍ଗରେ ମୋର ଦୀର୍ଘଦିନର ସମ୍ପର୍କ ଥିଲା । ସେମାନେ ସମସ୍ତେ ଏକଜିକ୍ୟୁଟିଭ କ୍ଲାସରେ ବସିଥିଲେ ଓ ମୁଁ ଇକୋନମି କ୍ଲାସରେ ଥିଲି । ସେମାନଙ୍କ ଡକରାରେ ମୁଁ ଯାଇ ସେମାନଙ୍କ ପାଖରେ କିଛି ସମୟ ପାଇଁ ବସିଲି । ଶ୍ରୀ ସ୍ୱାଇଁ ମୋଟା ଅଙ୍କର ଧନ ନେଇ ଦଳ ବଦଳ କରିଥିଲେ ବୋଲି ସେତେବେଳେ ଗୁଜବ ଶୁଣିବାକୁ ମିଳିଥିଲା । ମୁଁ ତାଙ୍କୁ ପରିହାସରେ ପଚାରିଲି, ''ହଇ କିଏ ସ୍ୱାଇଁବାବୁ, ମାଲ୍ ସବୁ କୋଉଠି ରଖିଲ ହେ, ସେଥିରୁ ଆମକୁ କିଛି ମିଳୁ ।'' ସେ ସାଙ୍ଗେ ସାଙ୍ଗେ ଉତ୍ତରଦେଲେ, ''ଅଖା ମୁଣା ନେଇ ଆସ ହେ, ମାଲ ନେଇଯିବ । ଶୁଖିଲାରେ କଥା ହେଲେ କିସ ହେବ ?'' ଶ୍ରୀ ସ୍ୱାଇଁଙ୍କ ମନ୍ତବ୍ୟରେ ରାଜନୀତି ଦୃଷ୍ଟିକୋଣରୁ ତାଙ୍କୁ ବିରୋଧ କରୁଥିବା ସଦସ୍ୟମାନେ ମଧ୍ୟ ହସି ପକାଇଥିଲେ ।

ଇତିମଧ୍ୟରେ ବିମାନ ଭୁବନେଶ୍ୱରସ୍ଥିତ ବିଜୁ ପଟ୍ଟନାୟକ ବିମାନବନ୍ଦରରେ ଅବତରଣ କରିବାର ସୂଚନା ଦିଆ ସରିଥିଲା । ମୁଁ ସେମାନଙ୍କଠାରୁ ବିଦାୟ ନେଇ ମୋ ନିଜ ଆସନକୁ ଫେରି ଆସି ଅଣ୍ଟାରେ ବେଲ୍ଟ ବାନ୍ଧି ବିମାନ ଅବତରଣ ମୁହୂର୍ତ୍ତକୁ ଅପେକ୍ଷା କରି ରହିଲି ।

ମୁଁ ସେତେବେଳେ ଭାବୁଥିଲି, ରାଜନୀତି କ୍ଷେତ୍ର ବଡ଼ ବିଚିତ୍ର । ସେଥିରେ କିଏ କାହାର ଶତ୍ରୁ ଆଉ କିଏ କାହାର ମିତ୍ର ସେକଥା ବୁଝିବା ସହଜ ନୁହେଁ । ଆଗରୁ କୁହାଯାଉଥିଲା, ଯୁଦ୍ଧ ଏବଂ ପ୍ରେମରେ ସବୁକଥା ସମ୍ଭବ; ମାତ୍ର ଏବେ ରାଜନୀତିରେ ସବୁକଥା ସମ୍ଭବ ବୋଲି କୁହାଗଲାଣି । ଯେଉଁମାନେ ଏକାଠିହୋଇ ସାଂସଦ ହରିହର ସ୍ୱାଇଁଙ୍କ ଆଚରଣକୁ ସମାଲୋଚନା କରୁଥିଲେ, ପରବର୍ତ୍ତୀ ଅବସ୍ଥାରେ ସେମାନେ ନିଜ ନିଜ ସ୍ୱାର୍ଥ ଦୃଷ୍ଟିରୁ ଅଲଗା ହୋଇଯାଇ ପରସ୍ପର ବିରୋଧରେ ପୁଣି ନିର୍ବାଚନ ଲଢ଼ିଥିଲେ ।

ଯୁକ୍ତରାଷ୍ଟ୍ର ଆମେରିକା ଭଳି ପ୍ରାଚୁର୍ଯ୍ୟପୂର୍ଣ୍ଣ ଦେଶରେ ପାଖାପାଖି ମାସେ କାଳ ବୁଲିବା ଭିତରେ ଯେଉଁ ରୋମାଞ୍ଚକର ଅନୁଭୂତି ହୋଇଥିଲା, ଭୁବନେଶ୍ୱର ବିମାନବନ୍ଦର ପାଖେଇବା ସହିତ ସେସବୁ ଅତୀତରେ ପରିଣତ ହୋଇଗଲା । ପୁଣି ମନ ଭିତରେ ଭାସିଆସିଲା ସେହି ପୁରୁଣା ଦୃଶ୍ୟ – ନିଜ ଘର, ପରିବାର ଓ ସାଥୀସହୋଦରଙ୍କ କଥା ।

ଠିକ୍ ସମୟରେ ଆମ ବିମାନଟି ବିଜୁ ପଟ୍ଟନାୟକ ବିମାନବନ୍ଦରରେ ଅବତରଣ କରିଥିଲା । ବିମାନରୁ ଓହ୍ଲାଇ ବ୍ୟାଗେଜ୍ ସଂଗ୍ରହ କରିବା ପାଇଁ ସେହି ପୁରୁଣା ଅନୁଭୂତିର ପୁନରାବୃତ୍ତି ଘଟିଲା । ଏହା ଗୋଟିଏ ଛୋଟିଆ ବିମାନବନ୍ଦର । ଦିଲ୍ଲୀରୁ ଯେଉଁ ଚାଳିଶି ଜଣ ଯାତ୍ରୀ ସେହି ବିମାନରେ ଆସିଥିଲେ, ବ୍ୟାଗେଜ୍ ସଂଗ୍ରହ କରିବାକୁ ସେମାନଙ୍କୁ ଅନ୍ୟୂନ ଅଧଘଣ୍ଟା ଅପେକ୍ଷା କରିବାକୁ ପଡ଼ିଥିଲା । ତା' ସହିତ ଯେତେସବୁ ବିଶୃଙ୍ଖଳା,

କେମିତି କିଏ ଆଗ ବ୍ୟାଗ୍ ନେବ ସେଥିପାଇଁ ଏକପ୍ରକାର ଅସ୍ୱାସ୍ଥ୍ୟକର ପ୍ରତିଯୋଗିତା । ବିମାନରେ ଯେଉଁ ସାଂସଦ ଓ ଉଚ୍ଚ ପଦାଧିକାରୀ ପ୍ରଶାସକମାନେ ଆସିଥିଲେ, ସେମାନଙ୍କ ବ୍ୟାଗେଜ୍ ସଂଗ୍ରହ ପାଇଁ ସରକାରୀ ଧନରେ ପ୍ରତିପାଳିତ କର୍ମଚାରୀମାନେ ଆଗରୁ ଆସି ପ୍ରସ୍ତୁତ ଥିଲେ । କିନ୍ତୁ ଆମ ଭଳି ସାଧାରଣ ଲୋକେ ନିଜ ବ୍ୟାଗ୍ ନେବା ପାଇଁ ସେଠାରେ କସରତ କରିବାକୁ ପଡ଼ିଥିଲା ।

ବିମାନବନ୍ଦରରୁ ମତେ ନେବା ପାଇଁ ଗାଡ଼ି ଧରି ମୋ ବୋହୂ ସାଲୋନୀ ଆସି ଅପେକ୍ଷା କରିଥିଲା । ଆମେ ପହଞ୍ଚିବା ପୂର୍ବରୁ ଅସରାଏ ଦି ଅସରା ବର୍ଷା ହୋଇ ଛାଡ଼ିଯାଇଥିଲା । ଜୁଲାଇ ମାସ ଶେଷ ସପ୍ତାହ ହେଲେ ବି ପ୍ରବଳ ଗରମ ଓ ଗୁଳୁଗୁଳି ଅନୁଭୂତ ହେଉଥିଲା । ବିମାନରୁ ଓହ୍ଲାଇଲା ପରେ ପ୍ରଥମେ ପ୍ରଥମେ କିପରି ଅଶ୍ୱସ୍ତିକର ବୋଧ ହେଉଥିଲା; କିନ୍ତୁ କିଛି ସମୟ ପରେ ସବୁକଥା ଦେହସୁହା ହୋଇଗଲା ।

ସେଦିନ ବିମାନବନ୍ଦରର ପ୍ରସ୍ଥାନ ଦ୍ୱାର ନିକଟରେ ଅନେକ ପ୍ରେସ୍ ଫଟୋଗ୍ରାଫର ବନ୍ଧୁ କ୍ୟାମେରା ଧରି ଛିଡ଼ାହୋଇଥିବାର ଦେଖିଲି । ସେମାନେ ଏତେ ସଂଖ୍ୟାରେ ଏଠାକୁ କାହିଁକି ଆସିଥିଲେ ସେକଥା ମୁଁ ପ୍ରଥମେ ଜାଣି ପାରିନଥିଲି । ପରେ ଖବର ନେଇ ବୁଝିଲି ଯେ, ସାଂସଦ ହରିହର ସ୍ୱାଇଁ ସେହି ବିମାନରେ ଦିଲ୍ଲୀରୁ ଫେରୁଥିବାରୁ ତାଙ୍କ ଫଟୋ ନେବା ପାଇଁ ସେମାନେ ଅପେକ୍ଷା କରିଥିଲେ । ରାଜନୈତିକ ଦୃଷ୍ଟିକୋଣରୁ ସେଦିନ ଶ୍ରୀ ସ୍ୱାଇଁଙ୍କର ଗୁରୁତ୍ୱ ଅଧିକ ବଢ଼ିଯାଇଥିଲା । ଦଳୀୟ ହ୍ୱିପ୍ ଅମାନ୍ୟ କରିଥିବା ଅଭିଯୋଗରେ ପରେ ବିଜୁ ଜନତା ଦଳ ପକ୍ଷରୁ ତାଙ୍କ ସଭ୍ୟପଦ ରଦ୍ଦ କରିବା ନିମନ୍ତେ ଲୋକସଭା ବାଚସ୍ପତିଙ୍କ ନିକଟରେ ନିବେଦନ କରାଯାଇଥିଲା ଏବଂ ଶେଷରେ ଶ୍ରୀ ସ୍ୱାଇଁ ଲୋକସଭା ସଦସ୍ୟ ପଦ ହରାଇଥିଲେ । ପରବର୍ତ୍ତୀ ସମୟରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଇ ନିର୍ବାଚନ ଲଢ଼ିଥିଲେ ।

ମୁଁ ଘରେ ପହଞ୍ଚିଲା ବେଳକୁ ମୋ ଫେରିବା ଖବର ପାଇ ମୋତେ ଶୁଭେଚ୍ଛା ଜଣାଇବା ପାଇଁ ଅନେକ ବନ୍ଧୁବାନ୍ଧବ ଆମ ଘରେ ପହଞ୍ଚିଯାଇଥିଲେ । ବିଦେଶ ଭ୍ରମଣ ମୋ ପାଇଁ ନୂଆ ହୋଇ ନ ଥିଲେ ମଧ୍ୟ ସେମାନେ ସେଥିପାଇଁ ଅତ୍ୟନ୍ତ ଆନନ୍ଦିତ ଥିଲେ । ଟରଣ୍ଟୋଠାରେ ଅନୁଷ୍ଠିତ 'ଓଶା' ଅଧିବେଶନର ସଫଳତାଠାରୁ ଆରମ୍ଭ କରି ଆମେରିକାର ବିଭିନ୍ନ ସ୍ଥାନରେ ମୋର ରହିବା, ଖାଇବା ଆଦି କିପରି ହେଲା ସେ ସମ୍ପର୍କରେ ଅନେକ ବନ୍ଧୁ ଅନେକ କଥା ଜାଣିବା ନିମନ୍ତେ ବ୍ୟଗ୍ର ହୋଇ ଉଠିଥିଲେ । ଘଟଣାକ୍ରମେ ଆମ ଘରେ ସେଦିନ ଏକପ୍ରକାର ଗହଳି ଲାଗିଯାଇଥିଲା । ମଧ୍ୟାହ୍ନଭୋଜନ ପରେ ମୁଁ ଆମେରିକା ଭ୍ରମଣର ଅନୁଭୂତି ସମ୍ପର୍କରେ ସେମାନଙ୍କୁ ବର୍ଣ୍ଣନା କରିଥିଲି, ଯାହାକି ମୋ ପାଇଁ ଏ ପର୍ଯ୍ୟନ୍ତ ଅଭୁଲା ହୋଇରହିଛି ।

– ୦ –









ଓଡ଼ିଶାର ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ଏକ ସୁପରିଚିତ ସଂବୋଧନ: ବସନ୍ତ ଦାସ । ଜଣେ ସ୍ତମ୍ଭକାର ଓ ରାଜନୈତିକ ବିଶ୍ଳେଷକ ଭାବରେ ତାଙ୍କର ପ୍ରତିଷ୍ଠା ଅବିସଂବାଦିତ । ସେ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଦଶଟି ପୁସ୍ତକର ପ୍ରଣେତା । ତାଙ୍କର ସାହିତ୍ୟକୃତି ଓ ସାମ୍ବାଦିକତା କ୍ଷେତ୍ରକୁ ଅବଦାନର ସ୍ୱୀକୃତି ସ୍ୱରୂପ ଶ୍ରୀ ଦାସ ଉତ୍କଳ ସାହିତ୍ୟସମାଜ ସମେତ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ । ଅର୍ଦ୍ଧଶତାବ୍ଦୀବ୍ୟାପୀ ସାମ୍ବାଦିକ ଜୀବନରେ ଶ୍ରୀ ଦାସ ଅବିଭକ୍ତ ସୋଭିଏଟ୍ ଋଷ୍, ଉତ୍ତରକୋରିଆ, ନେଦରଲାଣ୍ଡ, ଜର୍ମାନୀ, ସ୍ୱୀଜରଲାଣ୍ଡ, ଫ୍ରାନ୍ସ, ଇଂଲଣ୍ଡ, ବେଲଜିଅମ୍, ଅଷ୍ଟ୍ରିଆ, ଚେକ୍ ରିପବ୍ଲିକ୍, ପୋଲାଣ୍ଡ ସହିତ କାନାଡ଼ା ଓ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟୁଜର୍ସି, ନ୍ୟୁୟର୍କ, କାଲିଫର୍ଣ୍ଣିଆ, ଆଲବାମା, ୱାସିଂଟନ୍ ଡ଼ି.ସି. ଇତ୍ୟାଦି ରାଷ୍ଟ୍ର ଭ୍ରମଣ କରିବାର ସୁଯୋଗ ଲାଭ କରିଛନ୍ତି । ଏଇସବୁ ଦେଶ ଭ୍ରମଣର ଅନୁଭୂତି ଓ ଅଭିଜ୍ଞତାର ଅନନ୍ୟ ଅଙ୍କନ - 'ଯେ ଦେଶ ଯାଇ ସେ ଫଳ ଖାଇ' ।

